*BAKULA KATHA*
*(A Bengali Novel)*
*by Ashapurna Devi*
*Translated by Basantakumari Devi*
*Published by Vidyapuri, Cuttack 753 002*

ISBN 81-7411-231-6

ପ୍ରଥମ ପ୍ରକାଶ
ଭୁବନେଶ୍ୱର ପୁସ୍ତକମେଳା
୨୬ ଫେବୃୟାରୀ ୧୯୯୮

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ଶିଳ୍ପରୂପମ୍, କଟକ

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୁଦ୍ରଣ
ରୟାଲହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୧୫୦.୦୦

# ଭୂମିକା

ଏହି ପୁସ୍ତକର ସ୍ୱନାମଧନ୍ୟା ଲେଖିକା ସ୍ୱର୍ଗୀୟା ଆଶାପୂର୍ଣ୍ଣା ଦେବୀ ଭାରତୀୟ ସାହିତ୍ୟ-ଆକାଶର ଏକ ସମୁଜ୍ଜ୍ୱଳ ନକ୍ଷତ୍ର । ୧୯୭୭ ମସିହାରେ ସେ ତାଙ୍କର ଉପନ୍ୟାସ 'ପ୍ରଥମ ପ୍ରତିଶ୍ରୁତି' ପାଇଁ ଜ୍ଞାନପୀଠ ପୁରସ୍କାର ଲାଭ କରିଥିଲେ । 'ପ୍ରଥମ ପ୍ରତିଶ୍ରୁତି' ତାଙ୍କର ପ୍ରଖ୍ୟାତ ଉପନ୍ୟାସତ୍ରୟୀ ବା Trilogyର ପ୍ରଥମ ଖଣ୍ଡ । ପରବର୍ତ୍ତୀ ଖଣ୍ଡଗୁଡ଼ିକ ହେଲା 'ସୁବର୍ଣ୍ଣଲତା' ଓ 'ବକୁଳ କଥା'' ।

ଆଶାପୂର୍ଣ୍ଣା ଦେବୀ ବିଂଶ ଶତକର ପ୍ରାରମ୍ଭରେ (୧୯୦୯ ମସିହା ଜାନୁୟାରୀ ୮ ତାରିଖ) ଜନ୍ମ ହୋଇ ଶେଷ ଭାଗରେ ୧୯୯୫ ମସିହାରେ ପୃଥିବୀରୁ ଚିରବିଦାୟ ନେଇଥିଲେ ।

ତାଙ୍କର ପିତା ହରେନ୍ଦ୍ରନାଥ ଗୁପ୍ତ ଥିଲେ ଜଣେ ଚିତ୍ରକର । ମାତା ସ୍ୱଳ୍ପଶିକ୍ଷିତା ସରଳାସୁନ୍ଦରୀ ସାହିତ୍ୟର ଗଭୀର ଅନୁରାଗିଣୀ ଥିଲେ । ବଙ୍ଗଳାର ସେ କାଳର ଏକ ବିରାଟ ଏକାନ୍ନବର୍ତ୍ତୀ ରକ୍ଷଣଶୀଳ ପରିବାରର ପିତାମାତାଙ୍କର ନଅଟି ସନ୍ତାନଙ୍କ ଭିତରେ ଆଶାପୂର୍ଣ୍ଣା ଥିଲେ ଚତୁର୍ଥ ସନ୍ତାନ । ସେହି ପରିବାରରେ ପୁଅମାନଙ୍କୁ ପାଠ ପଢ଼ା ଯାଉଥିଲା, କିନ୍ତୁ ଝିଅମାନଙ୍କୁ ନୁହେଁ । ଯେଉଁ ବୁଢ଼ୀମା ଲେଖିକାଙ୍କୁ 'ଆଶାପୂର୍ଣ୍ଣା' ନାମ ଦେଇଥିଲେ, ତାଙ୍କର ଏକଛତ୍ରବାଦିତା ଯୋଗୁଁ ସ୍ତ୍ରୀ-ଶିକ୍ଷା ଆଦୌ ସେ ପରିବାରରେ ପ୍ରବେଶ କରିପାରି ନ ଥିଲା । ସ୍କୁଲକୁ ଯିବାତ ଦୂରର କଥା, ଆଶାପୂର୍ଣ୍ଣା ଶୈଶବରେ ଏକାକିନୀ କେବେ ନିଜ ଘରର ବାହାରକୁ ମଧ୍ୟ ଯାଇ ନ ଥିଲେ ।

ମୂଳରୁ ଆଶାପୂର୍ଣ୍ଣା ଅତ୍ୟନ୍ତ ଜ୍ଞାନପିପାସୁ ଥିଲେ । ଭାଇମାନେ ଯେଉଁଠି ବସି ପଢ଼ାପଢ଼ି କରୁଥା'ନ୍ତି, ସେଠି ସେ ଚୁପ୍ ହୋଇ ବସିଥାନ୍ତି, ଯାହା ଶୁଣନ୍ତି ତାହା ମନେରଖନ୍ତି ।

ତିନିବର୍ଷ ବୟସ ହେଲାବେଳକୁ ଶିଶୁ ଆଶାପୂର୍ଣ୍ଣା ସ୍ୱଚେଷ୍ଟାରେ ଅକ୍ଷର ଜ୍ଞାନ ଲାଭ କରିସାରିଥିଲେ । ତାଙ୍କର ସାଢ଼େ ପାଞ୍ଚବର୍ଷ ବୟସରେ ପିତା ହରେନ୍ଦ୍ରନାଥ ନିଜ ପରିବାରଟିକୁ ଧରି କଲିକତା ଚାଲିଆସିଲେ । ଏଥର ନିଜର ଜନନୀଙ୍କ କଲ୍ୟାଣରୁ ଆଶାପୂର୍ଣ୍ଣା ପତ୍ରପତ୍ରିକା ପଢ଼ିବାକୁ ପାଇଲେ । ତାଙ୍କର ଈଶ୍ୱରପ୍ରଦତ୍ତ ସୃଜନପ୍ରତିଭା ବିକଶିତ ହେବାକୁ ଆରମ୍ଭ କଲା । ତେରବର୍ଷ ବୟସରେ ଗୋଟିଏ ଶିଶୁ ସାହିତ୍ୟ ପତ୍ରିକାରେ ତାଙ୍କର 'ସ୍ନେହ' ନାମକ ପଦ୍ୟଟିଏ ପ୍ରକାଶିତ ହେଲା ଓ ତାହା ଏକ ପୁରସ୍କାର ଲାଭ କଲା ।

ପନ୍ଦରବର୍ଷ ବୟସରେ ସେ ଶ୍ରୀଯୁକ୍ତ କାଳିଦାସ ଗୁପ୍ତଙ୍କୁ ବିବାହ କରି ଆଉ ଏକ ବିରାଟ ଏକାନ୍ନବର୍ତ୍ତୀ ପରିବାରକୁ ବୋହୂ ହୋଇ ଆସିଲେ । ଶ୍ୱଶୁରଙ୍କ ଘର ଥିଲା ଦୁଇଶହ ବର୍ଷର । ସେହି ବଂଶର ପ୍ରଥମ ଚାକିରିଆ ହେଉଛନ୍ତି କାଳିଦାସ ଗୁପ୍ତ । ସେ କଲିକତାରେ କିରାଣିଟିଏ ଥିଲେ । କୋଡ଼ିଏ ବର୍ଷ ବୟସରେ ଆଶାପୂର୍ଣ୍ଣା ସ୍ୱାମୀଙ୍କ ସହିତ ଦୀକ୍ଷା ନେଇ ଆମିଷ ଖାଇବା ଛାଡ଼ି ଦେଲେ ।

୧୯୩୮ରେ ତାଙ୍କର ସାହିତ୍ୟିକ ଜୀବନର ଯଥାର୍ଥ ଅୟମାରମ୍ଭ ହେଲା । ସେହି ମସିହାରେ ପିଲାଙ୍କ ପାଇଁ ଲିଖିତ ତାଙ୍କର ଗୋଟିଏ ଗଳ୍ପସଂଗ୍ରହ ପ୍ରକାଶିତ ହେଲା । ୧୯୪୦ରେ ବଡ଼ଙ୍କ ପାଇଁ ପ୍ରକାଶିତ ହେଲା ତାଙ୍କର ଏକ ଗଳ୍ପସଙ୍କଳନ 'ଜଲ୍ ଓ ଆଗୁନ୍' ।

ତା'ପରେ ତାଙ୍କର ଲେଖନୀରୁ ଛୁଟିଛି ଅଜସ୍ର ଧାରା ଜନମନକୁ ଆନନ୍ଦ ଓ ଉଦ୍ଦୀପନାରେ, ରସରେ ପ୍ଲାବିତ କରି ଦୀର୍ଘ ଜୀବନର ପ୍ରାୟ ଶେଷ ପର୍ଯ୍ୟନ୍ତ । ଲେଖିଛନ୍ତି ପ୍ରାୟ ପାଞ୍ଚଶହ କ୍ଷୁଦ୍ରଗଳ୍ପ ଓ ପ୍ରାୟ ଦୁଇଶହ ଉପନ୍ୟାସ । ବଙ୍ଗଳା ତଥା ସର୍ବଭାରତୀୟ ସ୍ତରରେ ସେ ବହୁ ସମ୍ମାନ ଓ ପୁରସ୍କାର ଲାଭ କରିଥିଲେ । ଭାରତର ଶ୍ରେଷ୍ଠ ସାହିତ୍ୟ ପୁରସ୍କାର 'ଜ୍ଞାନପୀଠ' ପୁରସ୍କାର ବ୍ୟତୀତ ପଶ୍ଚିମବଙ୍ଗ ସାହିତ୍ୟ ଏକାଡେମୀ ପୁରସ୍କାର, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରଭୃତି ଅନ୍ୟାନ୍ୟ ବହୁ ପୁରସ୍କାର ଲାଭ କରିଥିଲେ । ବର୍ଦ୍ଧମାନ ବିଶ୍ୱବିଦ୍ୟାଳୟ ତାଙ୍କୁ ଡି.ଲିଟ୍ ଉପାଧିରେ ଓ ବିଶ୍ୱଭାରତୀ ତାଙ୍କୁ 'ଦେଶିକୋତ୍ତମ' ଉପାଧିରେ ଭୂଷିତ କରିଥିଲେ । ଭାରତ ସରକାର ତାଙ୍କୁ ପଦ୍ମଶ୍ରୀ ସମ୍ମାନରେ ଅଳଙ୍କୃତ କରିଥିଲେ । ୧୯୯୪ ମସିହାରେ ତାଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀର ଫେଲୋସିପ୍ ମିଳିଥିଲା ।

ପ୍ରଥମ ପ୍ରତିଶ୍ରୁତି, ସୁବର୍ଣ୍ଣଲତା ଓ ବକୁଳ କଥା— ଏହି ତିନୋଟି ବିରାଟ ଉପନ୍ୟାସର ସମଷ୍ଟି Trilogy ଆଶାପୂର୍ଣ୍ଣାଙ୍କର ଶ୍ରେଷ୍ଠ କୃତି । ଗତିଶୀଳ କାଳ ସହିତ ସମାଜବ୍ୟବସ୍ଥା ଧୀରେ ଧୀରେ ବଦଳିଯାଉଛି ଏବଂ ତାକୁ ବଦଳାଇବା ପାଇଁ ଯୁଗେ ଯୁଗେ ଯେଉଁ ପ୍ରତ୍ୟକ୍ଷ ସଂଗ୍ରାମ ଦେଖା ଦେଇଛି, ବିପ୍ଳବର ବାଣୀ ଧ୍ୱନିତ ହୋଇଛି, ତାହା ଆଶାପୂର୍ଣ୍ଣାଙ୍କ ମତରେ କେବଳ ବାହାର ଜଗତରେ କିମ୍ବା ବାହାରର କଣ୍ଠଫଟା ଚିତ୍କାରରେ ନୁହେଁ— ଅନ୍ତଃପୁରର ସ୍ତିମିତ ଅନ୍ଧକାରରେ । ଯେଉଁଠି କଣ୍ଠ ଖୋଲି ପଦଟିଏ କଥା କହିବାର ଅଧିକାର ମିଳି ନାହିଁ, ସେହି ନିସ୍ତବ୍ଧ ଅନ୍ଧକାର ଭିତରେ ବି ବିପ୍ଳବ ତାର ସ୍ୱର ଉତ୍ତୋଳନ କରିଛି, କିନ୍ତୁ ସରବରେ ନୁହେଁ— ନୀରବରେ ।

ନିଜେ ଆଶାପୂର୍ଣ୍ଣା କହିଛନ୍ତି, "ବାହାର ବିଶ୍ୱର ଭଙ୍ଗାଗଢ଼ା କାହାଣୀକୁ ନେଇ ରଚିତ ହୁଏ ବିଗତ କାଳର ଇତିହାସ— ସେହି ଇତିହାସ ପରବର୍ତ୍ତୀ କାଳ ପାଇଁ ପ୍ରେରଣା, ଉନ୍ମାଦନା ଓ ରୋମାଞ୍ଚ ସଞ୍ଚୟ କରି ରଖେ । କିନ୍ତୁ ସୀମିତ ଅନ୍ତଃପୁରର ଅନ୍ତରାଳରେ କ'ଣ ଭଙ୍ଗାଗଢ଼ା ଘଟେ ନାହିଁ ? ଯେଉଁ ନିଭୃତ ସ୍ଥାନଟିରୁ ସମାଜର ରଙ୍ଗ ବଦଳେ, ଯୁଗର ସମାଜ ମନୁଷ୍ୟମାନଙ୍କ ମାନସିକତାର ରଙ୍ଗ ବଦଳେ ! ଆମର ରଚିତ ଇତିହାସଗୁଡ଼ିକ ସବୁକାଳେ ଏହି ଅନ୍ତଃପୁରର ଭଙ୍ଗାଗଢ଼ା ପ୍ରତି ଉଦାସୀନ !"

ତେଣୁ ନିଭୃତ ଅନ୍ତଃପୁରବାସିନୀ ଅବହେଳିତା ଭାରତୀୟ ନାରୀମାନଙ୍କର ଭଙ୍ଗାଗଢ଼ାର ଇତିହାସ ରଚନା ପାଇଁ ହିଁ ଯେପରି— 'ପ୍ରଥମ ପ୍ରତିଶ୍ରୁତି', 'ସୁବର୍ଣ୍ଣଲତା' ଓ 'ବକୁଳ କଥା'ର ସୃଷ୍ଟି । Trilogyଟି ମୁଖ୍ୟତଃ ନାରୀ ସମାଜର ସମସ୍ୟାଗୁଡ଼ିକୁ ନେଇ ରଚିତ । ବିବର୍ତ୍ତନଶୀଳ ସମାଜବ୍ୟବସ୍ଥାର ତିନୋଟି ପର୍ଯ୍ୟାୟର ଚିତ୍ର ।

'ପ୍ରଥମ ପ୍ରତିଶ୍ରୁତି'ର ନାୟିକା 'ସତ୍ୟବତୀ' । ସେକାଳର ସଂସ୍କାରାଚ୍ଛନ୍ନ ପଟ୍ଟଭୂମିରେ, ଆଚାରନିଷ୍ଠାର ସୁଦୃଢ଼ ପରିବେଷ୍ଟନୀ ମଧ୍ୟରେ, ବିରାଟ ଏକାନ୍ନବର୍ତ୍ତୀ ପରିବାରର ବନ୍ଦିଶାଳା ତୁଲ୍ୟ ପରିବେଶ ମଧ୍ୟରେ ଆଠ ବର୍ଷର ବାଳିକା ସତ୍ୟବତୀ ଆଗାମୀ ଯୁଗର ବାର୍ତ୍ତାବାହିକା ରୂପେ ଆବିର୍ଭୂତ ହୋଇଛି । ଆଶାପୂର୍ଣ୍ଣା ଯେପରି ନିଜର ଛବି ଆଙ୍କିଛନ୍ତି ଆଠବର୍ଷର ବିଦ୍ରୋହିଣୀ ସତ୍ୟବତୀର ଚରିତ୍ରରେ । ବିଦ୍ରୋହ କରିଛି ସେ, ସଂଗ୍ରାମ କରିଛି, କବିତା ରଚନା କରିଛି, ସନ୍ତାନମାନଙ୍କୁ କୁସଂସ୍କାରର ବନ୍ଦିଶାଳାରୁ ମୁକ୍ତ କରି ଶିକ୍ଷା ଦେଇଛି । କିନ୍ତୁ ଅବଶେଷରେ ତା'ର ପରିକଳ୍ପନା କାଚଘର ଭଳି ଖଣ୍ଡ ବିଖଣ୍ଡ ହୋଇଯାଇଛି ଯେତେବେଳେ ତା'ର ଅଜ୍ଞାତରେ ତା'ର ସ୍ୱାମୀ ଓ ଶାଶୁ ତା'ର କଳ୍ପନାର ପ୍ରତୀକ କନ୍ୟା ସୁବର୍ଣ୍ଣଲତାକୁ ନଅ ବର୍ଷ ବୟସରେ ବାହା ଦେଇ ଦେଇଛନ୍ତି । ବ୍ୟଥିତ କ୍ଷୁବ୍ଧ ସତ୍ୟବତୀ ବିବାହର 'ଅଚ୍ଛେଦ୍ୟ ବନ୍ଧନ'ରୁ ମୁକୁଳିବାର ବ୍ୟବସ୍ଥାର ଆବଶ୍ୟକତା ଉପଲବ୍ଧି କରିଛି ।

ସତ୍ୟବତୀଙ୍କର ସେହି କନ୍ୟା ସୁବର୍ଣ୍ଣଲତା, 'ସୁବର୍ଣ୍ଣଲତା' ଉପନ୍ୟାସର ନାୟିକା । କୁସଂସ୍କାରରୁ ପରାଧୀନତାରୁ ରକ୍ଷା ପାଇବା ପାଇଁ ସାରା ଜୀବନ ବିଷର ଜ୍ୱାଳାରେ ଜଳି ଜଳି ସଂଗ୍ରାମ କରିଛନ୍ତି । ସାହିତ୍ୟ ରଚନା କରିବାର କାମନା, ମୁକ୍ତିର ଆଶା ତାଙ୍କୁ ଉଜ୍ଜୀବିତ କରିରଖିଛି । କିନ୍ତୁ ପାରିବାରିକ ବେଷ୍ଟନୀର ପ୍ରାଚୀରରେ ମଥା ପିଟି ପିଟି ନିଜ ଲଲାଟ ହିଁ ତାଙ୍କର ରକ୍ତାକ୍ତ ହୋଇଯାଇଛି ସିନା, ମୁକ୍ତିର ଦ୍ୱାର ଖୋଲିନାହିଁ । ପ୍ରାଣର ନିଭୃତ କନ୍ଦରର କବିପ୍ରତିଭା କରକା ଆଘାତରେ କଇଁଫୁଲ ପରି ହତଶ୍ରୀ ହୋଇଯିବା ପରି ମଉଳିପଡ଼ିଛି— ମଉଳିପଡ଼ିଛି ତାଙ୍କର ଦେଶାତ୍ମବୋଧର ଉଚ୍ଛ୍ୱସିତ ଆବେଗ । କିନ୍ତୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଲଢ଼ିଛନ୍ତି । 'ସୁବର୍ଣ୍ଣଲତା' ସୁବର୍ଣ୍ଣଲତାର ସଂଗ୍ରାମର ଓ ବିଫଳତାର ମର୍ମସ୍ପର୍ଶୀ କାହାଣୀ ।

'ବକୁଳ କଥା'ରେ ଅଛି ସୁବର୍ଣ୍ଣଲତାଙ୍କର ଦୁଇ ସନ୍ତାନ ପାରୁଲ୍ ଓ ବକୁଳଙ୍କ କାହାଣୀ— କାହାଣୀ ପାରୁଲ୍‌ର ପୁଅ ଶୋଭନ ଓ ତା'ର ସ୍ତ୍ରୀ ରେଖାଙ୍କର କାହାଣୀ— କାହାଣୀ ନୂତନ ଯୁଗର, ଆଧୁନିକ ଯୁଗର, ନାରୀ ସ୍ୱାଧୀନତା ଯୁଗର— କାହାଣୀ ପୁଣି ଏକ ନୂତନ ପ୍ରକାର ବ୍ୟର୍ଥତାର । ବିଗତ କାଳର ଅବହେଳିତ ନାରୀ-ସମାଜର ଦୁଃଖ ଦୁର୍ଦ୍ଦଶାରେ ଆଶାପୂର୍ଣ୍ଣା ଅଧୀରା ହୋଇଛନ୍ତି । ପୁଣି ପ୍ରବହମାନ କାଳ ସହିତ ସମତାଳ ଦେଇ ଗତି କରି ଆସିଥିବା ଆଧୁନିକ ନାରୀ-ସମାଜର ସ୍ୱକୃତ ଦୁର୍ଦ୍ଦଶାରେ ବି ବ୍ୟଥିତ ହୋଇ ପ୍ରଶ୍ନ କରିଛନ୍ତି 'ବକୁଳ କଥା'ରେ ପାରୁଲ୍‌ର ମୁହଁରେ— ''ଆମ୍ଭେମାନେ କ'ଣ ସ୍ତ୍ରୀ ଜାତିର ଏହି ସ୍ୱାଧୀନତାର ସ୍ୱପ୍ନ ଦେଖିଥିଲୁ ?''

ଶୋଭନ ପାରୁଲ୍‌ର ପୁଅ, ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ, ତା'ର ସ୍ତ୍ରୀ ରେଖା, ଆଧୁନିକା, ସୁନ୍ଦରୀ, ଶିକ୍ଷିତା, ଗୃହକର୍ମ-ସୁନିପୁଣା । ଦୁଇଟି ନରମ ସୁନ୍ଦର ସନ୍ତାନଙ୍କର ପିତାମାତା ସେମାନେ । କିନ୍ତୁ ରୁଚିର ଅମେଳ ଓ ମତର ଅମେଳ ଯୋଗୁଁ ଦୁହିଁଙ୍କ ଭିତରେ ଘଟିଛି ପ୍ରବଳ ସଂଘର୍ଷ । ସହି ସମ୍ଭାଳି ଚଳିବାରେ ଅକ୍ଷମତା, ଫମ୍ପା ଆତ୍ମସମ୍ମାନ (Prestige) ବୋଧ ଦୁହିଁଙ୍କୁ ଅଲଗା କରିଦେଇଛି । ପୁଅ ଯାଇ ରହିଛି ହଷ୍ଟେଲରେ, ଝିଅ

ମା' ପାଖରେ । ସେହି ସନ୍ତାନମାନଙ୍କର– ଆଧୁନିକତା ନାମରେ ଲକ୍ଷ ଲକ୍ଷ ବିଚ୍ଛିନ୍ନ ପରିବାରର ସନ୍ତାନମାନଙ୍କର ଦୁରବସ୍ଥା କାତର କରିଛି ଆଶାପୂର୍ଣ୍ଣାଙ୍କୁ– ପାରୁଲ୍‌ର ଭାଷାରେ ଫୁଟିଛି ଆଶାପୂର୍ଣ୍ଣାଙ୍କର ଦ୍ୱିଧା– ''ଏ ଯୁଗ କ'ଣ ବ୍ୟକ୍ତିସ୍ୱାଧୀନତା ଓ ସ୍ତ୍ରୀଲୋକମାନଙ୍କର ସ୍ୱାଧୀନତାର ପ୍ରତିଷ୍ଠା ବିନିମୟରେ ଏ ଦେଶରେ ସେହି ଏକ ହତଭାଗ୍ୟ ଜାତି''– (ପିତାମାତାଙ୍କ ସସ୍ନେହ ବେଷ୍ଟନୀରୁ ବିଚ୍ୟୁତ ସନ୍ତାନଜାତ) ସୃଷ୍ଟିକଲା, ପୃଥିବୀର ସମସ୍ତ ସଭ୍ୟ ଜାତିମାନେ ଯାହା ନେଇ ଦୁଶ୍ଚିନ୍ତା ଭୋଗୁଛନ୍ତି.... ?

ଅତୀତ ଯୁଗର ସତ୍ୟବତୀମାନେ ଓ ପରବର୍ତ୍ତୀ ଯୁଗର ସୁବର୍ଣ୍ଣଲତାମାନେ ଅନ୍ୟାୟ ଅତ୍ୟାଚାରର ଏହି (ବିବାହ) ବନ୍ଧନକୁ ଛିନ୍ନ କରିବାର କାମନା କରିଛନ୍ତି, ଯାହା ପରବର୍ତ୍ତୀ କାଳରେ ରୂପ ପରିଗ୍ରହ କରି ହିନ୍ଦୁ ବିବାହ ବିଚ୍ଛେଦ ଆଇନ୍‌ରେ ପରିଣତ ହୋଇଛି, କିନ୍ତୁ ସଂଗ୍ରାମ ପରେ ଯେଉଁଠି ଶାନ୍ତି ବିରାଜିବା କଥା, ସେଠାରେ ଦେଖାଦେଇଛି ଦେଶବ୍ୟାପୀ ଏକ ଅସ୍ଥିରତା । ଆଶାପୂର୍ଣ୍ଣାଙ୍କର ଦ୍ୱିଧା ଦ୍ୱନ୍ଦ୍ୱ ଦେଖାଦେଇଛି ।

କିନ୍ତୁ ଖାଲି ନୂତନ ସମାଜର ଭଙ୍ଗୁରତା ଆଶାପୂର୍ଣ୍ଣା ଦେଖିନାହାନ୍ତି, ସମସ୍ତ ଆପାତତଃ ଅନ୍ଧକାର ଭିତରେ ଦେଖିଛନ୍ତି ଆଲୋକର ଅମଳିନ ରେଖା– ଶମ୍ପା, ଯେ କି ଜାଣିଶୁଣି ଜଣେ ଅସୁନ୍ଦର, ଅସହାୟ, ଅର୍ଦ୍ଧଶରୀର ବିଶିଷ୍ଟ ବ୍ୟକ୍ତିକୁ ଗ୍ରହଣ କରିନେଇଛି ବିନା ଦ୍ୱିଧାରେ ନିଜର ଜୀବନସାଥୀ ରୂପେ ।

ବକୁଳକଥା କେବଳ ବ୍ୟର୍ଥତାର, ଭଗ୍ନ ଆଶାର, ବିଶ୍ୱାସର କାହାଣୀ ନୁହେଁ– ପୂର୍ଣ୍ଣତା, ବିଶ୍ୱାସର କାହାଣୀ ମଧ୍ୟ ଏଥିରେ ଅଛି, ଯଦିଚ ବିଷାଦର ଛାୟାରୁ ଏହା ମୁକ୍ତ ନୁହେଁ ।

ଏହି ଉପନ୍ୟାସତ୍ରୟୀର ଧାରାବାହିକ ଗଦ୍ୟକାହାଣୀର ଅନ୍ତରାଳରେ ଯେପରି ଏକ ଗୁରୁଗମ୍ଭୀର ବିଷଣ୍ଣ ସଙ୍ଗୀତର ଧ୍ୱନି ଛନ୍ଦାୟିତ ଭାବରେ ବହିଚାଲିଛି । ତେଣୁ Trilogyଟିକୁ ଏକ ମହାକାବ୍ୟ ବୋଲି କୁହାଯାଇ ପାରିବ ।

Trilogyର ପ୍ରତ୍ୟେକଟି ଉପନ୍ୟାସ ଆପାତତଃ ସ୍ୱୟଂସମ୍ପୂର୍ଣ୍ଣ, କିନ୍ତୁ ଏକ ସଙ୍ଗେ ତିନୋଟିଯାକ ପାଠ କଲେ ଆଶାପୂର୍ଣ୍ଣାଙ୍କର ସାମୂହିକ ଦୃଷ୍ଟିଭଙ୍ଗୀର ପରିଚୟ ମିଳିବ ।

'ବିଦ୍ୟାପୁରୀ'ର ସ୍ୱନାମଧନ୍ୟ ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର ଏଥିପୂର୍ବରୁ 'ପ୍ରଥମ ପ୍ରତିଶ୍ରୁତି' ଓ 'ସୁବର୍ଣ୍ଣଲତା'ର ଓଡ଼ିଆ ଅନୁବାଦ ପ୍ରକାଶ କରିଛନ୍ତି । ବର୍ତ୍ତମାନ ମୋ ଦ୍ୱାରା ଅନୂଦିତ 'ବକୁଳ କଥା' ପ୍ରକାଶ କରି ଦେଶବାସୀଙ୍କ ସମ୍ମୁଖରେ ଆଶାପୂର୍ଣ୍ଣାଙ୍କର Trilogyର ସାମଗ୍ରିକ ରୂପ ଉପସ୍ଥାପନା କରିଛନ୍ତି । ସେଥିପାଇଁ ସେ ଏକାନ୍ତ ଧନ୍ୟବାଦାର୍ହ । ତାଙ୍କୁ ଏହି ଅବସରରେ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଅଛି । ପାଠକମାନଙ୍କ ଦ୍ୱାରା ଏହି ପୁସ୍ତକଟି ଆଦୃତ ହେଲେ ମୁଁ ନିଜକୁ ଧନ୍ୟ ମନେ କରିବି ।

ପ୍ଲଟ ନଂ-୨୧୬/୧୪୮-୪୯-୫୦
ଏରୋଡ୍ରମ୍ ଏରିଆ, ଭୁବନେଶ୍ୱର
ତା ୨୦।୨।୯୮

ବସନ୍ତକୁମାରୀ ଦେବୀ

## ॥ ୧ ॥

ଧ୍ୱନିଟା ଅତି ପରିଚିତ, ଶବ୍ଦଗୁଡ଼ାକ ମଧ୍ୟ ବହୁତ ପରିଚିତ, ଚଉକିରୁ ଉଠି ଝରକା କଡ଼କୁ ନ ଗଲେ ମଧ୍ୟ ଜଣା ପଡ଼ିଥାନ୍ତା । କୋଉମାନେ ଶୋଭାଯାତ୍ରା କରି ଆହୁରି କ'ଣ ସବୁ କହି ଚାଲିଛନ୍ତି । ଶୋଭାଯାତ୍ରା ତ ଚନ୍ଦ୍ରସୂର୍ଯ୍ୟଙ୍କ ପରି ନିତ୍ୟ ଘଟନା । କାନର ପର୍ଦ୍ଦାରେ ଯେମିତି ଧ୍ୱନିଟା ଲାଗି ରହିଥାଏ– ଚଳିବନି ! ଚଳିବନି !.... ଯେମିତି ଅହର୍ନିଶି ମସ୍ତିଷ୍କର ପ୍ରତ୍ୟେକ କୋଷରେ ଧକ୍କା ଦେଉଥାଏ, ମାନିବାକୁ ପଡ଼ିବ, ମାନିବାକୁ ପଡ଼ିବ, ଆମର ଦାବି ମାନିବାକୁ ପଡ଼ିବ ।

ତେବେକେ ହାତର କଲମ ରଖିଦେଇ ଅନାମିକା ଦେବୀ ଯାଇ ଠିଆହେଲେ ଝରକା ପାଖରେ ।

କିନ୍ତୁ କାହିଁକି ଠିଆହେଲେ ?

ଶୋଭାଯାତ୍ରାର ସେହି ଉଚ୍ଚ ଧ୍ୱନିରେ ଲେଖାର ବ୍ୟାଘାତ ଘଟିଥିଲା ବୋଲି ? ନା ନିହାତି ଅକାରଣ କୌତୂହଳରେ ? ହୁଏତ ସେଇୟା । ଖାଲି ଜାଣିବା କଥା, ନୂଆ କୌଣସି ଅନ୍ୟାୟ ବା ଅତ୍ୟାଚାର ବିରୋଧରେ ଆଜିର ଏ ପ୍ରତିବାଦ ଚାଲିଛି । ନ ହେଲେ ରାସ୍ତାର ଗୋଳମାଳରେ ଲେଖାରେ ବ୍ୟାଘାତ ଘଟିଲେ ଚଳିବନି ।

କଲିକତା ସହରରେ ଏଭଳି ଗୋଟିଏ ଜନବହୁଳ ରାସ୍ତା ଏକାବେଳେ ମୋଡ଼ ପାଖରେ ଥିବା ଘରଟାରେ ଯେଉଁମାନେ ଜନ୍ମରୁ ବାସ କରିଆସୁଛନ୍ତି, ଏ କୋଳାହଳର ମଝିରେ ବସି ଯାହାର କଲମ ଧରିବା ଆରମ୍ଭ ହୋଇଛି, ତାଙ୍କ ପକ୍ଷରେ କିପରି ଏ ଦାବି କରିବା ସମ୍ଭବ ହେବ– ନିଃଶବ୍ଦରେ ନିର୍ଜ୍ଜନତାର ଗଭୀରରେ ମଗ୍ନ ହୋଇ ମୁଁ ଲେଖିବାକୁ ଚାହେଁ !

ବିଚିତ୍ର ଶବ୍ଦ, ବିରକ୍ତିକର କୋଳାହଳ ଆଉ ଅଗଣିତ ମଣିଷଙ୍କର ଯାଆସ ଭିତରେ ରହି ତ ସାଧନା କରିଯିବାକୁ ହୁଏ ସହରୀ ସାହିତ୍ୟିକମାନଙ୍କୁ, ପ୍ରତିକ୍ଷଣରେ ହିଁ କରିବାକୁ ପଡ଼େ ପ୍ରତିକୂଳତା ସହିତ ସଂଗ୍ରାମ ।

କିନ୍ତୁ ଏକାବେଳେ ସ୍ତବ୍ଧ ଶାନ୍ତ ସ୍ତିମିତ ପଲ୍ଲୀଜୀବନର ପରିବେଶ ହିଁ କ'ଣ ସାଧନାର ନିତାନ୍ତ ଅନୁକୂଳ ? ସେଭଳି ପରିବେଶ ପାଇଥିଲେ କ'ଣ ଅନାମିକା ଆହୁରି ଅଧିକ ଲେଖି ପାରିଥାନ୍ତେ ? ଅଧିକତର ଉଚ୍ଚମାନର ? ଅଧିକତର ମନନଶୀଳ ?

ଅନ୍ୟାନ୍ୟ ସହରବାସୀ କବି, ସାହିତ୍ୟିକମାନେ କ'ଣ କହନ୍ତି, କି ମନୋଭାବ ପୋଷଣ କରନ୍ତି ଅନାମିକା ଜାଣନ୍ତି ନାହିଁ, ମନକଥା ଆଦାନପ୍ରଦାନ ହେବ ଏଭଳି ଅନ୍ତରଙ୍ଗତା ହିଁ ବା କାହା ସଙ୍ଗରେ ଅଛି ? ତେବେ ନିଜେ ସେ ତାହା କହନ୍ତି ନାହିଁ । ତାହା ଭାବନ୍ତି ନାହିଁ ।

ତାଙ୍କର ମନେହୁଏ – ସହରର ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତନଶୀଳ ଉତ୍ତାଳ ଜୀବନ-ରଙ୍ଗ ଭିତରେ ହିଁ ରହିଛି ସାହିତ୍ୟର ତୀବ୍ର ତପ୍ତ ଜୀବନୀରସ । ସହରର ଅସରନ୍ତି ବୈଚିତ୍ର୍ୟ ଭିତରେ ହିଁ ରହିଛି ସାହିତ୍ୟର ଅସରନ୍ତି ଉପାଦାନ ।

ନିର୍ଜନତାର ଶାନ୍ତିରେ 'ଗତିବେଗ' କାହିଁ ? ସହରର ନାଡ଼ୀ ସର୍ବଦା ଜ୍ୱରତପ୍ତ, ଚଞ୍ଚଳ । ସେହି ଜ୍ୱର ଛଡ଼ାଇବାର ଔଷଧ କେହି ଜାଣି ନାହାନ୍ତି, ତେବେକେ ସମସ୍ତେ ଜାଣିଛନ୍ତି ସେହି ଜ୍ୱରଟା ହିଁ ପ୍ରେରଣା ଦେଉଛି ଶିଳ୍ପକୁ, ସାହିତ୍ୟକୁ, ଜୀବନଚିନ୍ତାକୁ । ସେହି ଜ୍ୱରଟା ହିଁ ବରଂ ରୋଗୀକୁ ସତେଜ କରି ରଖିଛି ।

ସେଥିପାଇଁ କୋଳାହଳକୁ କେବେହେଲେ ବାଧା ସ୍ୱରୂପ ମନେ ହୋଇ ନାହିଁ ଅନାମିକା ଦେବୀଙ୍କର । ସେ ସବୁବେଳେ ଏ କଥା କହନ୍ତି– ମୁଁ ଜନତାଙ୍କ ଭିତରୁ ଜଣେ, ମୁଁ ଜନତାଙ୍କର ସାହିତ୍ୟିକ । କୋଳାହଳରୁ ହିଁ ରସ ଆହରଣ କରିନେବା ମୋର କାମ ।

କିନ୍ତୁ ଅନାମିକାଙ୍କର ସେ କବି ମଝିଆନାନୀ ? ସେ କିନ୍ତୁ ଅନ୍ୟ କଥା କହେ । ସେ ବରଂ କହେ– ତତେ ଧନ୍ୟବାଦ ଦେଉଛି । ଏ ଗୋଳମାଳ ଭିତରେ ଲେଖୁଛୁ !

ସେ ଯେ ଏ କଥା କହିବ ସେଇଟା ତ ସ୍ୱାଭାବିକ । ଅନାମିକା ଯଦି ଜନତାର ତ ସେ ନିର୍ଜ୍ଜନତାର ।

ସେ କବି ।

ଇଚ୍ଛାରେ କବି ।

ସେ ତାଙ୍କର ସେହି ମଫସଲର ଘରଟିରେ ନିଃସଙ୍ଗତାରେ ନିମଗ୍ନ ହୋଇ ବସି ସେହି ଇଚ୍ଛାର ଫୁଲଗୁଡ଼ିକ ଫୁଟାଏ । ହୁଏତ ସେଗୁଡ଼ିକ ହିଁ ତା'ର ସଙ୍ଗୀ ।

ଅନାମିକା ଦେବୀଙ୍କ ଭୂମିକା ଅଲଗା ।

ଏ ଯୁଗର ଅନ୍ୟ ସମସ୍ତଙ୍କ ପରି– ଅହର୍ନିଶି ପରର ଇଚ୍ଛାର ବଇନି ପୂରାଇବାକୁ ପଡ଼େ ତାଙ୍କୁ । ପରର ଇଚ୍ଛାରେ ପରିଚାଳିତ ହେବାକୁ ପଡ଼େ ।

ମନ ଭିତରେ ଏ ଶୋଭାଯାତ୍ରାର ଧ୍ୱନି ଉଠୁଥିଲେ ମଧ୍ୟ କରିବାକୁ ପଡ଼େ ।

ଝରକା ପାଖରେ ଆସି ଠିଆହେଲେ ଅନାମିକା, ତଳକୁ ଚାହିଁଲେ, ମଣିଷମାନଙ୍କର ପ୍ରାଚୀରଟା ଗୋଟାଏ ଅଖଣ୍ଡ ମୂର୍ତ୍ତିରେ ଆଗେଇ ଚାଲିଛି, ଆଉ ଗୋଟାଏ ଯାନ୍ତ୍ରିକ ଶବ୍ଦ ଶୁଭୁଛି ତା ଭିତରୁ– ଚଳିବନି ! ଚଳିବନି !

ହଠାତ୍ ଅଦ୍ଭୁତ ଏକ କୌତୁକ ବୋଧ କଲେ ଅନାମିକା ।

ଗୋଟିଏ ଦିଗରୁ ଅବିରାମ ପ୍ରତିବାଦ ଉଠିବ– ଚଳିବନି, ଚଳିବନି, ଆଉ ଗୋଟିଏ ଦିଗରେ ଅବ୍ୟାହତ ଗତିରେ ଗତିଶୀଳ ରହିବ ସେହି ଅସହନୀୟ !

କୋଟି କଳ୍ପକାଳର ପୃଥିବୀ ବୁକୁରେ କୋଟି କୋଟି ବର୍ଷ ଧରି ଚାଲୁଛି ଏହି ଲୀଳା । ପାଖାପାଖି ହୋଇ ଚାଲିଛନ୍ତି ଅନ୍ୟାୟ ଆଉ ତା'ର ପ୍ରତିବାଦ । ଆଜିର ଶୋଭାଯାତ୍ରାଟା ଯେ ବିଶେଷ ଗୋଟାଏ କିଛି ଧରଣର ତାହା ଜଣାପଡୁଛି ତା'ର ଦୈର୍ଘ୍ୟରୁ, ସରିଯାଇ ମଧ୍ୟ ସରୁ ନାହିଁ ।

ଥରେ ଧ୍ୱନିଟା ସ୍ତିମିତ ହୋଇ ଆସୁଛି, ପୁଣି ପଛରୁ ଆସୁଛି ନୂତନ ଧ୍ୱନିର ଢେଉ ।

ଅବଶେଷରେ ଅନେକକ୍ଷଣ ପରେ ଦଳଟି ହାଲୁକା ହୋଇ ଆସିଲା । ଧ୍ୱନିଟା ଧିମେଇ ଆସିଲା, ଯେଉଁମାନେ ପଛେଇ ଯାଇଥିଲେ ସେମାନେ ଦଉଡ଼ି ଦଉଡ଼ି ଆସୁଛନ୍ତି । ସେମାନଙ୍କ ଫାଙ୍କ ଫାଙ୍କରେ ଅନ୍ୟାନ୍ୟ ପଥଚାରୀମାନଙ୍କ ଚେହେରା ଦେଖାଯାଉଛି ।

ଦୂରକୁ ଆଗେଇ ଯାଇଥିବା ଧ୍ୱନିଟା ନିୟମ ଅନୁସାରେ କମି କମି ଆସୁଛି ।

ଝରକା ପାଖରୁ ପୁଣି ଫେରିଆସିଲେ ଅନାମିକା । ଚଉକିରେ ଆସି ବସିଲେ । ହାତରେ ଉଠାଇ ନେଲେ କଲମଟାକୁ । କିନ୍ତୁ ଚଟ୍‌କିନା କ'ଣ ଲେଖୁଥିଲେ ସେ କଥାଟା ଯେମିତି ମନେପଡ଼ିଲା ନାହିଁ । ଅନ୍ୟମନସ୍କ ଭାବରେ ସମ୍ପୂର୍ଣ୍ଣ ଅବାନ୍ତର କଥାଟିଏ ଆସିଲା ମନକୁ । ଲେଖାର କଥା ନୁହେଁ, ସେହି ଶୋଭାଯାତ୍ରାର କଥା ନୁହେଁ, ଦେଶର ବହୁବିଧ ଅନ୍ୟାନ୍ୟ ଅନାଚାର ଦୁର୍ନୀତି ଆଉ ରାଜନୀତିର କଥା ମଧ୍ୟ ନୁହେଁ, ମନକୁ ଆସିଲା ଏ ଘରଟା ଯେତେବେଳେ ତିଆରି ହୋଇଥିଲା ସେତେବେଳେ ଏ ପାଖରେ ସେ ପାଖରେ ମେଲା ମେଲା ପଡ଼ିଆସବୁ ରହିଥିଲା ।

ବର୍ତ୍ତମାନ ଗୋଟା ରାସ୍ତାଟା ଯେମିତି ଦମ୍ ଅଟକାଇ ଠିଆ ହୋଇ ରହିଛି !

କିନ୍ତୁ ଘରଟା କ'ଣ ଆଜି ତିଆରି ହୋଇଛି ? କେତେ ଦିନ, ମାସ, ବର୍ଷ ଚାଲିଗଲାଣି, ତା'ର ହିସାବ କରିବାକୁ ହେଲେ ବୋଧହୁଏ ଖାତା ପେନ୍‌ସିଲ୍ ନେଇ ବସିଲେ ଭଲ ହୁଅନ୍ତା ।

ଅନାମିକା ଭାବିଲେ, ମୁଁ ଯାର ଶୈଶବ, ବାଲ୍ୟ, ଯୌବନ ଆଉ ଏ ପ୍ରୌଢ଼ ଅବସ୍ଥା ପ୍ରଭୃତି ସବୁ ଅବସ୍ଥାର ସାକ୍ଷୀ । ଅଥବା ଏହି ଘରଟା ହିଁ ମୋର ସମସ୍ତ ଦିନ, ମାସ, ବର୍ଷର ସାକ୍ଷୀ । ଯାର ପ୍ରତିଟି କାନ୍ଥରେ ମୋର ସବୁକଥା ଲେଖା ହୋଇ ରହିଛି ।

ଆଚ୍ଛା, କାନ୍ଥ କ'ଣ ସତରେ ସାକ୍ଷୀ ଦେଇପାରେ ? ସେ କ'ଣ ସବୁକଥା ଧରି ରଖିପାରେ ଅଦୃଶ୍ୟ କୌଣସି ଅକ୍ଷରରେ ? ବିଜ୍ଞାନ ଏତେକଥା କରୁଛି, ଏଇଟା କୌଣସିଦିନ କରିପାରିବନି ? ମଉନ ମୂକ କାନ୍ଥଗୁଡ଼ାକୁ କଥା କୁହାଇ ଇତିହାସକୁ ପୂରେଇ ଦେଇପାରିବ ହାତର ମୁଠାରେ ? ନିର୍ଭୁଲ ଇତିହାସ !

ଘରକୋଣରୁ ଟେଲିଫୋନ୍‌ଟା ଡାକଦେଲା । ପୁଣି ଚଉକି ଛାଡ଼ି ଉଠିଲେ ଅନାମିକା, ହାତରେ ଟେକିନେଲେ ରିସିଭର୍‌ଟାକୁ ।

ଟେଲିଫୋନ୍‌ଟାକୁ ଲେଖା-ଟେବୁଲଟାରେ ରଖିବା ସୁବିଧାଜନକ, ସମୟ ବଞ୍ଚିବ, ପରିଶ୍ରମ ବଞ୍ଚିବ, ତେବେବି କୋଣରେ ପଡ଼ିଥିବା ସେଇ ଛୋଟ ଟେବୁଲ୍‌ଟା ଉପରେ ହିଁ ସେଇଟାକୁ ରଖନ୍ତି ଅନାମିକା । ଏଇଟା ତାଙ୍କର ଗୋଟାଏ ସଉକ୍ । ଥରକୁ ଥର ଉଠିବାକୁ ପଡୁଥାଏ ।

ରହି ରହି, କଟେଇ କଟେଇ କହିଲେ— "ହଁ, ମୁଁ କଥା କହୁଛି, କହନ୍ତୁ କ'ଣ କହିବେ ।...... ନୂଆ ପତ୍ରିକା ବାହାର କରୁଛନ୍ତି ? ଶୁଣି ଖୁସୀ ହେଲି । ଶୁଭେଚ୍ଛା ଜଣାଉଛି, ସାଫଲ୍ୟ କାମନା କରୁଛି ।...... ଲେଖା ? ମାନେ ଗଳ୍ପ ? ପାଗଳ ହୋଇଛନ୍ତି ?...... କ'ଣ କରିବି କହନ୍ତୁ ? ଅସମ୍ଭବ, ସମ୍ପୂର୍ଣ୍ଣ ଅସମ୍ଭବ ।...... ଉପାୟ ଥିଲେ ତ କହି ନ ଥାନ୍ତି । ଭଲକଥା ତ...... କାମ ଚାଲିଥାଉ, ପରେ ହେବ । କ'ଣ କହୁଛନ୍ତି ? 'ଆପଣ' କହିବିନି ? ବୟସରେ ଆପଣ ମୋଠାରୁ ବହୁତ ଛୋଟ ? ଠିକ୍ ଅଛି, ନ ହେଲା ଏବେ ତମେ ବୋଲି କହିବି । କିନ୍ତୁ ଗଳ୍ପ ତ ଦେଇପାରୁନି ।...... କ'ଣ ? କ'ଣ କହୁଛନ୍ତି ? କଥା ଦେଇ ରଖିବି ? ନା ନା ସେଇଟା ପାରିବିନି, କଥା ଦେଇ ବନ୍ଧି ରହି ପାରିବିନି । ତାହେଲେ ମତେ କଙ୍କଡ଼ାବିଛା କାମୁଡ଼ିଲା ଭଳି ଲାଗିବ ।...... ହଁ ତା ନିଶ୍ଚୟ ବୁଝୁଛି ତମର ଭାରି ଦରକାର, ହେଲେ ଉପାୟ କ'ଣ ?"

'ଉପାୟ କ'ଣ ?' ଅପର ଅର୍ଥ 'ନିରୁପାୟ' । ତା' ସତ୍ତ୍ୱେ ସେ ପକ୍ଷ ତା' ନିଜର ନିରୁପାୟତାର କଥା ବ୍ୟକ୍ତ କରି ଚାଲେ ଏବଂ କଥାର ମଝିରେ ଏଭଳି ଟିକିଏ କମା, ସେମିକୋଲୋନ୍ ରଖେ ନାହିଁ ଯେ ସେହି ଫାଙ୍କରେ 'ଫୁଲ୍‌ଷ୍ଟପ୍' ବସେଇ ଦେଇପାରନ୍ତେ ଅନାମିକା ଦେବୀ ।

ଅତଏବ ଶେଷପର୍ଯ୍ୟନ୍ତ କହିବାକୁ ପଡ଼େ ବାଧ ହୋଇ– ଆଚ୍ଛା ଦେଖିବି । ସେପଟର ଉଦଣ୍ଡ କଣ୍ଠସ୍ୱରର ଧ୍ୱନି ଏ ଘରର କାନ୍ଥରେ ଧକ୍କା ମାରେ– ନା, ନା ଦେଖାଦେଖି ନାହିଁ । ମୁଁ ନାଁଟା ଆନାଉନ୍ସ କରି ଦେଉଛି ।

ଏଥର ସେ ଛାଡ଼ିଦେଲା ଅନାମିକା ଦେବୀଙ୍କୁ ଆଉକିଛି କହିବାର ଅବକାଶ ନ ଦେଇ ।

ଅନାମିକା ଦେବୀ ଜାଣିଛନ୍ତି, ୟାପରେ ସେ ଯଦି ଠିକ୍ ସମୟରେ ଲେଖାଟି ଦେଇପାରିବେ ନାହିଁ, ତା'ହେଲେ ସେହି ଭାରି ସଂପାଦକ ଭଦ୍ରଲୋକ ଏଠି ସେଠି ସକରୁଣ ଗଳାରେ କହିବୁଲିବେ– କ'ଣ କରିବି କହନ୍ତୁ, କଥା ଦେଇ ଯଦି କଥା ନ ରଖିବେ । ଆମ ଦେଶର ଅବସ୍ଥା ତ ଏଇୟା । କାହାର ଟିକିଏ ନାଁ ହୋଇଗଲା ତ କି ଅହଙ୍କାର ! ଆମମାନଙ୍କର ବି ହେଇଛି ଶଙ୍ଖ ଉକରତ ସେମାନଙ୍କର ଲେଖା ନ ନେଲେ ନ ଚଳେ–

କହନ୍ତି ସିନା– 'ନ ନେଲେ ନ ଚଳେ' କିନ୍ତୁ ଅସଲରେ ସେମାନେ ଭରସା ରଖନ୍ତି ସିନେମାଷ୍ଟାର୍‌ମାନଙ୍କର ଚିତ୍ର ଉପରେ । ସେମାନେ କିପରି ଚାଲନ୍ତି, କିପରି ଚଳନ୍ତି, କେଉଁ ଭଙ୍ଗୀରେ କଦଳୀ ଛଡ଼ାଇ ମୁହଁରେ ଦିଅନ୍ତି, କେଉଁ ଭଙ୍ଗୀରେ ଦୋଳରେ ଅବିର ପକାନ୍ତି ଇତ୍ୟାଦି ପ୍ରଭୃତି ସବୁ । ଏହି 'ଭଙ୍ଗୀ'ଗୁଡ଼ିକ ହିଁ ସେମାନଙ୍କ ପତ୍ରିକାର ମୂଳ ଜୀବନୀରସ, ତାଛଡ଼ା ତ ଅଛି 'ଫିଚର୍' । ତଥାପି ଗଳ୍ପ-ଉପନ୍ୟାସ ମଧ ଆବଶ୍ୟକ, ସବୁ ଶ୍ରେଣୀର ପାଠକଙ୍କୁ ତ ମୁଠାରେ ପୂରାଇବାକୁ ପଡ଼ିବ । ଆଉ ସେ କ୍ଷେତ୍ରରେ ସେହି 'ଖ୍ୟାତନାମା' ହୋଇଯାଇଥିବା ଲେଖକମାନଙ୍କର ଲେଖା ନେବାହିଁ ନିରାପଦ, ପାଣ୍ଡୁଲିପିରେ ଆଖି ବୁଲାଇବାକୁ ପଡ଼େ ନାହିଁ, ସିଧାସଳଖ ପ୍ରେସ୍‌କୁ ପଠାଇ ଦିଆଯାଏ । ନୂଆ କାଗଜର ସମ୍ପାଦକ ମଧ ଏହା ଛଡ଼ା ନୂଆ କିଛି କରିବେ କି ?

ଆଗେ କୁଆଡ଼େ ସାମ୍ବାଦିକତାର ଗୋଟିଏ ପବିତ୍ର ଦାୟିତ୍ୱ ଥିଲା । ସମ୍ପାଦକମାନେ କୁଆଡ଼େ ଲେଖକ ତିଆରି କରୁଥାନ୍ତି, ପାଠକ ମଧ ତିଆରି କରୁଥାନ୍ତି । ଅନାମିକା ଦେବୀ ଯେ ସେ କଥା ଦେଖି ନାହାନ୍ତି ତା ନୁହେଁ, ତାଙ୍କ ଜୀବନରେ ହିଁ ସେ ଏକଦା ସେହି ଆଶ୍ରୟ ପାଇଛନ୍ତି ।

ହେଲେ କେତେଦିନ ପାଇଁ ବା ? ଲୋକଟି ଚାଲିଗଲେ ।

ତା'ପରେ କେମିତି କେଜାଣି ଅନାମିକା ଆସି ଏ ହାଟରେ ଠିଆ ହୋଇଯାଇଛନ୍ତି, ଚଳେଇ ନେଉଛନ୍ତି । ବଙ୍ଗଳା ଦେଶର ପାଠକପାଠିକାମାନେ ଅନାମିକାଙ୍କୁ ଭଲ ପାଆନ୍ତି । ରିସିଭରକୁ ରଖିଦେଇ ପୁଣି ଆସି କଲମ ଧରି ବସିଲେ ଅନାମିକା, ଆଉ ତାଙ୍କର ଝିଆରୀ ଶମ୍ପାର କଥାଟା ପୁଣି ନୂଆ କରି ମନକୁ ଆସିଲା ।

—ଆଚ୍ଛା ପିଉସୀ, ଏତେଥର ଉଠାଉଠି କରିବାକୁ ପଡୁଛି, ସେଇଟାକୁ ତମର ଲେଖିବା ଟେବୁଲରେ ରଖିଦେଇଥିଲେ ତ ଚଳନ୍ତା ।

ଅନାମିକା ନିଜର ଉତ୍ତରଟାକୁ ଭାବିଲେ— ନାଃ ଟେବୁଲ୍‌ରେ ଟେଲିଫୋନ୍ ରଖିଲେ, ଘରଟା ଯେମିତି ଅଫିସଘର ଅଫିସଘର ବୋଲି ଲାଗେ ।

ହଁ, ଏ କଥାଟା କହନ୍ତି, କିନ୍ତୁ ଆହୁରି କାରଣ ଅଛି । ଆଉ ସେଇଟାହିଁ ବୋଧହୁଏ ପ୍ରକୃତ କାରଣ । ମଝି ମଝିରେ ଗୋଟିଏ ସତେଜ ଓ ସୁପ୍ରତିଭ ଗଳା କଥା କହେ— ଶମ୍ପାକୁ ଟିକିଏ ଡାକିଦିଅନ୍ତୁ ତ !

ଡାକିଦିଅନ୍ତି ଅନାମିକା ।

ଶମ୍ପା ଆହ୍ଲାଦରେ ଉଚ୍ଛୁଳି ପଡୁ ପଡୁ ଆସି ଫୋନ୍‌ଟା ଧରେ । ପିଉସୀ ଆଡ଼କୁ ପିଠି ଆଉ କାନ୍ଥଆଡ଼କୁ ମୁହଁ କରି ସ୍ୱରକୁ ନିମ୍ନ କରି କଥା କହେ ମିନିଟ୍ ପରେ ମିନିଟ୍, ଘଣ୍ଟାରେ ଯାଇ ପହଞ୍ଚେ ।

ଟେବୁଲ୍‌ରେ ଫୋନ୍‌ଟା ରଖିଲେ ଉଭୟପକ୍ଷର ଅସୁବିଧା । ଶମ୍ପାର ଜୀବନରେ ଏଇଲେ ଗୋଟିଏ ନୂଆ ପ୍ରେମର ଘଟଣା ଚାଲିଛି । ଏଇଲେ ଶମ୍ପା ସବୁବେଳେ ଆହ୍ଲାଦରେ ଭାସୁଛି ।

ଅନାମିକା ସଠିକ ଖବର ଜାଣନ୍ତି ନାହିଁ, କିଛି ସତ ଖବର ମଧ୍ୟ ରଖନ୍ତି ନାହିଁ, ତେବେକେ ଯେତିକି ଧାରଣା ସେଥିରେ ହିସାବ କରନ୍ତି, ଏ କଥାରେ ଏଥରକୁ ମିଶାଇ ଶମ୍ପାର ସାଢ଼େ ପାଞ୍ଚଥର ହେଲା । ସାଢ଼େ ଅର୍ଥର ମାନେ ହେଉଛି ଏଇଟା ଏବେ ମଧ୍ୟ ଚାଲିଛି, ତା'ର ଅର୍ଥ ଅର୍ଦ୍ଧପଥରେ ଅଛି ।

ପ୍ରଥମେ ଶମ୍ପା ପ୍ରେମରେ ପଡ଼ିଥିଲା ତା'ର ଜଣେ ଦୂର-ସମ୍ପର୍କୀୟ ମାମୁ ପୁଅ ଭାଇ ବୁବୁଲ୍ ସାଙ୍ଗରେ । ସେତେବେଳେ ଶମ୍ପାକୁ ହୋଇଥିଲା ଏଗାରବର୍ଷ, ବୁବୁଲ୍‌ର ବୟସ ସତର ।

ଚାନ୍ଦପ୍ରତିମା ପରି ପୁଅ, ମହୁ ପରି ସ୍ୱଭାବ, ନିଃସ୍ୱ ମଧ୍ୟ ନୁହେଁ । ବାପା ଟଙ୍କା ପଠାନ୍ତି ନିୟମିତ । କାହାର ଆଉ ଆପତ୍ତି ହେବ ? ପିଉସୀର ମଧ୍ୟ ହେଲା ନାହିଁ । ଅନାମିକାଙ୍କ ସାନଭାଉଜଙ୍କର ଆପତ୍ତି ହେଲା ତାଙ୍କର ପୁତୁରା ସହିତ ଝିଅ ଯେତେବେଳେ ପ୍ରେମରେ ପଡ଼ିଲା ।

ସେ ପ୍ରଥମେ ବିନା ପଇସାରେ ଘରକୁ ଆସୁଥିବା (ଯେଉଁଥି ପାଇଁ ଅନାମିକା ଦାୟୀ) ଗଦା ଗଦା ସିନେମା ପତ୍ରିକାକୁ ଦୋଷ ଦେଲେ, ଅନାମିକା ଦେବୀଙ୍କ ରଚିତ ପ୍ରେମକାହାଣୀଗୁଡ଼ିକ ପ୍ରତି କଟାକ୍ଷପାତ କଲେ, ତା'ପରେ ଝିଅକୁ ତୁଳା ଭିଣାରେ ଭିଣିଲାପରି ଭିଣିଲେ ଏବଂ ପୁତୁରାକୁ ତା'ର ନିଜର ବାଟ ଦେଖିବାକୁ କହିଲେ ।

ଏଗାରବର୍ଷର ଝିଅ ଉପରେ ଏ ଚିକିତ୍ସା କରାଗଲା । ଅନାମିକାଙ୍କର ସାନଭାଉଜ ଭାବିଲେ— ଯା ହେଉ ଶିକ୍ଷା ହୋଇଗଲା । ଆଉ ଝିଅ ପ୍ରେମରେ ପଡ଼ିବାକୁ ଯିବନି ।

କିନ୍ତୁ କି ଅଳୀକ ସେହି ଆଶା !

ସାଢ଼େ ବାରବର୍ଷ ବୟସରେ ପୁଣି ପ୍ରେମରେ ପଡ଼ିଲା ଶର୍ମୀ, ସାହିର ଜଣେ ଷ୍ଟେସନାରୀ ଦୋକାନର ସେଲ୍ସ୍‌ମ୍ୟାନ ଟୋକା ସଙ୍ଗେ । ଖାତା ପେନ୍ସିଲ୍ ରବର ଆଲ୍‌ପିନ୍ ଚକୋଲେଟ୍ ଇତ୍ୟାଦି କିଣିବାକୁ ଯାଇ ଆଳାପ ଆରମ୍ଭ ହେଲା, ତା'ପରେ କୋଉ ସୁଯୋଗରେ ଆଳାପ ଯାଇ ପ୍ରେମାଳାପର ପର୍ଯ୍ୟାୟରେ ଚଢ଼ିବସିଲା । ବିନା ପଇସାରେ ଚକୋଲେଟ୍ ଆସିବାକୁ ଲାଗିଲା ।

କଥାଟା ବେଶ୍ କିଛିଦିନ ଲୁଚି ରହିଥିଲା, ଦିନେ ଉଦ୍‌ଘାଟିତ ହେଲା ସାହିର ଆଉ ଜଣେ ପୁଅପିଲା ଦ୍ୱାରା । ହୁଏତ ନିଜେ ସେ ପ୍ରାର୍ଥୀ ଥିଲା, ସେଥିପାଇଁ କହିଦେଇ ଆକ୍ରୋଶ ମେଣ୍ଟାଇଲା ।

ଖବରଟା ଘରେ ଜଣାଜଣି ହୋଇଯିବା ପରେ କେତେଦିନ ଶର୍ମୀର ଗତିବିଧି ଆଡ଼କୁ ସତର୍କ ଦୃଷ୍ଟି ରଖାଗଲା, ଶର୍ମୀର ପ୍ରୟୋଜନୀୟ ଜିନିଷପତ୍ର କିଣିଆଣି ଦେବାର ଭାର ନେଲେ ତା' ବାପା । କିନ୍ତୁ ଶର୍ମୀର ତ ଜିନିଷର ପ୍ରୟୋଜନ ନ ଥିଲା, ଥିଲା ପ୍ରେମର ।

ଅତଏବ କିଛିଦିନ ମନମାରି ଘୂରିବୁଲିଲା ଶର୍ମୀ, ତା'ପରେ ପୁଣି ନୂଆ ଗଛରେ ବସା ବାନ୍ଧିଲା । ଏଥର ଜଣେ ସହପାଠିନୀର ବଡ଼ଭାଇ ।

ଏ ଖବରଟା ଘରକୁ ଆସି ପହଞ୍ଚିବାର କଥା ନୁହେଁ, କାରଣ ସହପାଠିନୀ ସହାୟିକା । ସେ ତା'ର ବାନ୍ଧବୀକୁ ଏବଂ ବଡ଼ଭାଇକୁ ଆଗୁଳି ରଖିବାକୁ ଯେତେ ପ୍ରକାର ବୁଦ୍ଧି କୌଶଳ ପ୍ରୟୋଗ କରିବା ସମ୍ଭବ ତା କରିବାକୁ ତ୍ରୁଟି କରି ନ ଥିଲା ।

କିନ୍ତୁ ଖବରଟା ତଥାପି ଆସିଲା ।

ଆସିଲା ଅନାମିକା ଦେବୀଙ୍କ ପାଖକୁ ।

ପ୍ରଣୟଭଙ୍ଗ ପରେ ।

ଶର୍ମୀ ନିଜେ ହିଁ ତା'ର ଲେଖିକା ପିଉସୀ ପାଖରେ କହିଦେଲା । କାରଣ ସେତେବେଳକୁ ଶର୍ମୀର ବୟସ ବଢ଼ିଲାଣି । ଦିନେ ଅନାମିକା ଦେବୀଙ୍କର ଏଇ ତିନିତାଲାର ଘରକୁ ଆସି କହିଲା— ପିଉସୀ, ଗୋଟାଏ ଗଳ୍ପର ପ୍ଲଟ୍ ନେବ ?

ତା'ପରେ ସେ ଗୋଟିଏ ସୁନ୍ଦର ପ୍ରେମକାହାଣୀ କହିବା ପରେ ପ୍ରକାଶ କଲା । ପ୍ଲଟ୍‌ର ନାୟିକା ହେଉଛି ସେ ନିଜେ ଏବଂ ସ୍ୱଚ୍ଛନ୍ଦ ଗତିରେ ସବୁ କିଛି କହିବା ପରେ ହସି ହସି ଗଡ଼ିଯାଇ କହିବାକୁ ଲାଗିଲା— କହିଲ ପିଉସୀ ! ଏମିତି ବୁଦ୍ଧୁ ମାର୍କା ପୁଅ ସାଙ୍ଗରେ କେବେହେଲେ ପ୍ରେମ କରିହେବ ? ନା ତାକୁ ସହ୍ୟ କରିହେବ ?

ଅନାମିକାଙ୍କର ନିଜର ଗଳ୍ପର ଅନେକ ନାୟିକା ହିଁ ଦୁଃସାହସିକା, ବେପରୁଆ, ମୁଖରା, ପ୍ରଖରା । ତଥାପି ଅନାମିକା ତାଙ୍କର ନିଜର ବଡ଼ଭାଇନାଙ୍କ ଝିଅ, ତାଙ୍କର ବାପାଙ୍କର ନାତୁଣୀର ଏହି ସ୍ୱଚ୍ଛନ୍ଦ ବାକ୍‌ଭଙ୍ଗୀ ଆଡ଼କୁ ଚାହିଁରହିଲେ ଅଭିଭୂତ ପରି ଦୃଷ୍ଟି ମେଲାଇ !

ଶମ୍ପା କହିଲା— ଲିଲି ତ ମୋ ଉପରେ ମହା ଖପ୍ପା ହୋଇଯାଇଛି, ତା'ର ଭାଇନାକୁ କୁଆଡ଼େ ଅପମାନିତ କରାଯାଇଛି ।

'ହଁ, ସେଇଟା ହିଁ ସ୍ୱାଭାବିକ'— କହିଥିଲେ ଅନାମିକା ।

ଶମ୍ପା ହସି ହସି କହିଥିଲା— ହେଲେ କ'ଣ କରାଯିବ ? ଉଣେଇଶି ବର୍ଷ ଏଇଲେ ପାରି ହୋଇନି, ସେଇକ୍ଷଣି ଥାର୍ଡ଼ ଇଅର୍‌ରେ ପଶିଛି, କହୁଛି କ'ଣ ନା ତମର ପିଉସୀଙ୍କୁ କହିପୋଛି— ହି ହି ହି— ବାହା ପ୍ରସ୍ତାବଟା ପକାଅ ।

ଅନାମିକା ଅଳ୍ପ ହସି କହିଥିଲେ— ତୁ ମଧ୍ୟ ତ ଏବେ ସ୍କୁଲର ସୀମା ପାର ହୋଇନୁ, ଏଇକ୍ଷଣି ତ ପନ୍ଦର ବର୍ଷରେ ପାଦ ଦେଇଛୁ—

—ହେଲେ ମୁଁ କ'ଣ, ହି, ହି, ବାହାହେବା ଚିନ୍ତା କରୁଛି ?

—ପ୍ରେମ କରୁଛୁ ?

ଶମ୍ପା ଲେଶମାତ୍ର ଅପ୍ରସ୍ତୁତ ନ ହୋଇ କହିଥିଲା— ସେଇଟା ଅଲଗା କଥା, ସେଇଟା ହେଉଛି ଗୋଟାଏ ଚାର୍ମ । ଗୋଟାଏ ଥ୍ରିଲ୍ ବୋଲି ମଧ୍ୟ କହିପାର । ତା' ବୋଲି ବାହା ? ହି ହି ହି !

ହଁ, ସେହି ବୁଦ୍ଧୁଟାକୁ ତ୍ୟାଗ କରିବା ପରେ ଶମ୍ପା ଅନ୍ତତଃ ମନ ମାରି ବୁଲିଲା ନାହିଁ । ପହଁରା ଶିଖିବା କ୍ଲବ୍‌ରେ ନାଁ ଲେଖାଇଲା, ଜିଦ୍ କରି ସେତାର କିଣିଲା ।

ମା, ପିଉସୀ, ବାପା, ଜେଜେମା ସମସ୍ତେ ଭାବିଲେ, ଏଇଟା ମନ୍ଦ ନୁହେଁ, ପୁଅପିଲାମାନଙ୍କ ସହିତ ଟୋ ଟୋ ହୋଇ ବୁଲିବାଠାରୁ ଭଲ । ଭାଇନା ସେତେବେଳେ ନିଜ କଥାରେ ମଗ୍ନ, ଗୋଟାଏ ସ୍କଲର୍‌ସିପ୍ ଯୋଗାଡ଼ କରି ବିଲାତ ଯିବାକୁ ଉଦ୍ୟମ କରୁଥିଲା, ତୁଚ୍ଛ ଗୋଟାଏ ଭଉଣୀ ଅଛି କି ନାହିଁ ସେ କଥା ମନେ

ନାହିଁ ତା'ର । ତା'ଛଡ଼ା ଶର୍ମାର ମା' ମଧ୍ୟ ଝିଅର କଥାଟାକୁ ସାବଧାନରେ ପୁଅର କର୍ଣ୍ଣଗୋଚର ନ ହେଲା ଭଳି ଦୂରରେ ରଖିବାକୁ ଚେଷ୍ଟା କରୁଥିଲେ । ଯାହା କିଛି ଶାସନ କରୁଥିଲେ, ଚୁପ୍‌ଚାପ୍ କରୁଥିଲେ ।

କିନ୍ତୁ ଶର୍ମା ଚାହେଁ 'ଚାର୍ମ' ।

ସେଥିପାଇଁ ସେମାନଙ୍କର ସେହି ସନ୍ତରଣ ଶିକ୍ଷାକ୍ଲବ୍‌ର ଜଣେ ମାଷ୍ଟରଙ୍କ ପ୍ରେମରେ ଉବୁଟୁବୁ ହୋଇ ବୁଡ଼ିବାକୁ ଆରମ୍ଭ କଲା । ବୋଧହୁଏ ସେ ମଧ୍ୟ ସେଥିର ସଦ୍‌ବ୍ୟବହାର କରିବାକୁ ଲାଗିଲେ ।

ପହଁରା ଶିକ୍ଷାର ଘଣ୍ଟା ବଢ଼ିବାକୁ ଲାଗିଲା ଆଉ ବଢ଼ିଚାଲିଲା ଶର୍ମାର ସାହସ ।

ଅତଏବ କ୍ରମଶଃ ମା' ବାପା ଶାସନ କରିବାର ସାହସ ହରାଇବାକୁ ଲାଗିଲେ । ଶର୍ମାର ଭାଇନା ତ ସେତେବେଳକୁ ସମୁଦ୍ର ଆରପାରିକୁ ଯାତ୍ରା ଆରମ୍ଭ କରିଦେଲାଣି । ଶର୍ମାର ସାହସ ଆହୁରି ବଢ଼ିଗଲା । ଶର୍ମାକୁ ଗୋଟିଏ କଥା କହିଲେ ସେ ଶହେଟା କଥା ଶୁଣାଇଦିଏ, ଘରକୁ ଫେରିବାକୁ ରାତି ହେଉଛି ବୋଲି ରଗାରଗି କଲେ ତା'ପରଦିନ ଆହୁରି ବେଶୀ ରାତି କରେ । 'ବାହାରିବାକୁ ହେବ ନାହିଁ' କହିଲେ ତତ୍‌କ୍ଷଣାତ୍ ଚଟି ପିନ୍ଧିପକାଇ ବାହାରିପଡ଼େ । କହେ— ତମେମାନେ କ'ଣ ହାରେମ୍‌ର ଯୁଗରେ ବାସ କରୁଛ ?

ବାପା ରାଗିଯାଇ କହୁଥିଲେ— ମରୁ । ଯାହା ଖୁସୀ କରୁ ।

ଅନାମିକା କହିଲେ— ଭଲ ବରଟିଏ ଖୋଜ, ସବୁ ଠିକ୍ ହୋଇଯିବ । ଠିକ୍ ସମୟରେ ବର ନ ପାଇ ଆଜିକାଲି ଝିଅଗୁଡ଼ାକ ବର୍ବର ହୋଇଯାଉଛନ୍ତି— କଥାଟା ଅବଶ୍ୟ ଲେଖିକା ଭଳି ନୁହେଁ— ନିହାତି ମାଉସୀ-ପିଉସୀଙ୍କ ଭଳି କଥା ।

ଶର୍ମାର ମା' କଥାଟାକୁ ଉଡ଼ାଇଦେଲେ । କହିଲେ ଏଇକ୍ଷଣି ତ ଫାଷ୍ଟ ଇଅର୍‌ରେ ପଢୁଛି, ଏଇଲେ ବାହା କରିଦେବା କଥା କହିଲେ ଲୋକେ କ'ଣ କହିବେ ? ତା'ଛଡ଼ା ତା'ରି ବୟସକୁ ମାନିଲା ଭଳି କୃତୀ ପାତ୍ର ବା କୋଉଠୁ ପାଇବି ? ଆମ ଅମଳ ଭଳି ଦଶ-ବାର ବର୍ଷ ବୟସରେ ବଡ଼ ବର ତ ଆଉ ବାହା କରିଦେଇ ପାରିବିନି ?

ତା'ହେଲେ ଆଉ କ'ଣ କରାଯିବ ?

ଶର୍ମା ନିଜେ ପୁଅଙ୍କୁ ଧରି ବୁଲିବାକୁ ଲାଗିଲା । ଲୋକଙ୍କର କଥାବାର୍ତ୍ତା ବଡ଼ ଘସରା ଭାବି ସନ୍ତରଣ-ଶିକ୍ଷକକୁ ମଧ୍ୟ ଦିନେ ଛାଡ଼ିଦେଲା ।

ତା'ପରେ କିଛିଦିନ ଭାରି ଜୋର୍‌ରେ ପଢ଼ି ଉଠି ଲାଗି ଲାଗି ଲେଖାପଢ଼ା କଲା ଶର୍ମା, ମନେହେଲା ଏଥର ବୋଧହୁଏ ବୁଦ୍ଧି ହେଲା ।

କିନ୍ତୁ ଦିନେ ନିଜ ମୁହଁରେ ହିଁ ପିଉସୀ ପାଖରେ ସ୍ୱୀକାର କରିଗଲା ଶର୍ମା – ଗୋଟାଏ ପ୍ରେମ-ପ୍ରେମ ନ ଥିବ, କିଏ ମୋ ପାଇଁ ଜଗି ବସି ନ ଥିବ, ମତେ ଦେଖିଲେ ଧନ୍ୟ ହେବନି, ଏଇଟା ଭଲ ଲାଗୁନି, ବୁଝିଲ ପିଉସୀ ? କିନ୍ତୁ ପ୍ରକୃତରେ ପ୍ରେମ କରିପାରେ ଏମିତି ପୁଅ ଦେଖୁନି ।

ହେଲେ ଯେତେବେଳେ 'ସତ୍ୟ ପ୍ରେମ'ର ପ୍ରଶ୍ନ ନାହିଁ, ସେତେବେଳେ ଆଜେବାଜେଠାରେ ଖାଲି 'ପ୍ରେମ' ଖୋଜିଲେ କ୍ଷତି କ'ଣ ? ସେତେବେଳେ ଶର୍ମା ଜଣେ 'ଫାଲ୍‌ତୁ ମାର୍କା' ପ୍ରଫେସରଙ୍କ ପ୍ରେମରେ ପଡ଼ିଲା ।

ଯଦିଚ ପ୍ରଫେସର ଜଣକ ବିବାହିତ ।

– ହେଲେ ସେଥିରେ କ୍ଷତି କ'ଣ ? – କହିଲା ଶର୍ମା – ମୁଁ ତ ତାଙ୍କୁ ବାହା ହେବାକୁ ଚାହୁଁନି । ଖାଲି ଟିକିଏ ଯାହା ଘୋଳଦହି ପିଆଇବା କଥା !

ସେହି ଘୋଳ ଖାଇବା ପର୍ବଟା ପରେ କଲେଜ-ଲାଇବ୍ରେରୀର ଲାଇବ୍ରେରୀୟାନ୍ ଟୋକା ସହିତ ଏଇଲେ କିଛିଦିନ ହେଲା ଶର୍ମାର ଖେଳ ଚାଲିଛି ।

ଅନାମିକା ଆଉଥରେ ଲେଖାରେ ମନ ଦେବାକୁ ଚେଷ୍ଟା କରୁଥିଲେ । ପୁଣି ଫୋନ୍‌ଟା ବାଜିଲା ।

ତାଜା ସପ୍ରତିଭ କଣ୍ଠଟିଏ କହିଉଠିଲା – ଶର୍ମାକୁ ଟିକିଏ ଡାକିଦିଅନ୍ତୁ ତ !

ଡାକିଦେଲେ ଅନାମିକା । ଶର୍ମା ସିଡ଼ିରେ ଚଢ଼ି ଆସିଲା । କହିଲା – ବାବାଃ, ତମର ଏ ତିନିତାଲାରେ ଚଢ଼ୁ ଚଢ଼ୁ ମୋର ଗଲା ସବୁ । କାହିଁ ଦେଖି ପୁଣି କିଏ ମତେ ବକର ବକର କରେଇବାକୁ ଡାକୁଛି ?...... ହେଇଟି ନିଅ, ତଳେ ତମର ଗୋଟାଏ ଚିଠି ଆସିଥିଲା –

ଟେବୁଲ୍ ଉପରେ ଲଫାଫାର ଚିଠିଟା ରଖି ପିଉସୀଆଡ଼କୁ ପିଠି ଆଉ କାନ୍ଥଆଡ଼କୁ ମୁହଁ କରି ଠିଆହେଲା ଶର୍ମା ରିସିଭରଟାର କାନମୁହଁ ଚିପିଧରି ।

ଅନାମିକା ଲଫାଫାର ମୁହଁଟା ନ ଖୋଲୁଣୁ ହାତରେ ଧରି ହଲଚଲ କରିବାକୁ ଲାଗିଲେ । ସାନମଝିଆନାନୀର ଚିଠି ।

ଅନେକଦିନ ପରେ ଆସିଛି । ନାନୀ ଆଜିକାଲି ଆଉ ବେଶୀ ଚିଠି ଲେଖୁନି ।

କିନ୍ତୁ ଅନାମିକା ବା କେତେ ଚିଠି ଦେଉଛନ୍ତି ? କେବେ ଯେ ଲେଖିଥିଲେ ମନେପଡୁନି । ଅଥଚ କେତେ ଚିଠି ତ ଲେଖି ଚାଲିଛନ୍ତି ପ୍ରତିଦିନ । ଗଦା

ଗଦା ଚିଠି । ଆଜେବାଜେ ଲୋକଙ୍କୁ । ସାନମଝିଆନାନୀ ଭାରି ଅଭିମାନୀ । କାମ ସାରିଦେଲା ଭଳି ଚିଠି ସେ ଚାହେଁ ନାହିଁ ।

॥ ୨ ॥

ନାନୀ ବଡ଼ ଅଭିମାନୀ ।

ସେ ଅଭିମାନର ମୂଲ୍ୟ ମଧ୍ୟ ଅଛି ଅନାମିକାଙ୍କ ପାଖରେ । ଅନେକ ଅଛି । ତେବେକେ ତା'ର ଚିଠିର ଉତ୍ତର ଦେଇପାରୁ ନାହାନ୍ତି । ନିଜ ପକ୍ଷରୁ ମଧ୍ୟ ଖଣ୍ଡେ ଚିଠି ନାନୀକି ଦିଆ ହୋଇପାରୁଛି କି ? ଅଥଚ ସେହି ନ ହୋଇପାରିବାର କଣ୍ଟାଟା ମନ ଭିତରେ ଗଳିଯାଇ ରହୁଛି । ଆଉ ସେ କଣ୍ଟା ଗଳିବା ମନଟାକୁ ନେଇ ହୁଏତ ଅନ୍ୟ ସାତଟା ଚିଠି ଲେଖିଦିଅନ୍ତି, ଅର୍ଥାତ୍ ଲେଖିବାକୁ ପଡ଼େ ।

ଏ ଦେଶର ଅସଂଖ୍ୟ ପାଠକ-ପାଠିକା ଅନାମିକା ଦେବୀଙ୍କର ଲେଖାକୁ ଭଲ ପାଆନ୍ତି, ସେଥିପାଇଁ ଅନାମିକା ଦେବୀଙ୍କୁ ମଧ୍ୟ ଭଲ ପାଆନ୍ତି । ସେହି ସ୍ନେହର ଗୋଟିଏ ପରିପ୍ରକାଶ ଚିଠି ଲେଖି ଉତ୍ତର ପାଇବାର ପ୍ରାର୍ଥନା ଜଣାନ୍ତି । ସେହି ପ୍ରାର୍ଥନାରେ ଥାଏ କେତେ ବିନୟ, କେତେ ଆବେଗ, କେତେ ସନ୍ଦେହ, କେତେ ଆକୁଳତା ।

ଅନାମିକା କ'ଣ ସେମାନଙ୍କୁ ବଞ୍ଚିତ କରିବେ ?

ସେମାନଙ୍କର ସେହି ସଂଶୟ ଭଞ୍ଜନ କରିବେନି ?

ସାମାନ୍ୟ ଗୋଟିଏ ଚିଠି ଛଡ଼ା ଆଉ କିଛି ତ ନାହିଁ ?

ଚିଠି ମଧ୍ୟ ନୁହେଁ, ଚିଠିର ଉତ୍ତର । କିଞ୍ଚିତ ଭଦ୍ରତା, କିଞ୍ଚିତ ମମତା, କିଞ୍ଚିତ ଆନ୍ତରିକତା, ମାତ୍ର ଏତିକି । ସେହି ଟିକକ ଦେଇ ନ ପାରିଲେ ନିଜକୁ କ୍ଷମା କରିପାରିବେ କିପରି ଅନାମିକା ? ତା'ଛଡ଼ା ସେମାନଙ୍କ ନିକଟରେ ବା ଅନାମିକା ଦେବୀଙ୍କ ମୂର୍ତ୍ତିଟା କୋଉଭଳି ପ୍ରକାଶିତ ହେବ ?

ହୁଏତ ସେହି କେତୋଟି ଧାଡ଼ି ଲେଖିବା ଅଭାବରେ ସେମାନଙ୍କ କ୍ୟାମେରାରେ ଅନାମିକା ଦେବୀଙ୍କ ଚେହେରାଟା ଉନ୍ନାସିକ, ଅହଙ୍କାରୀ, ଅଭଦ୍ର ହୋଇ ଦେଖାଯିବ ।

ଅନାମିକା ତାହା ଚାହାନ୍ତିନି ।

ଅନାମିକା ନିଜର ବାହାରର ଚେହେରାଟା ନିଜର ଭିତରର ଚେହେରା ପରିହିଁ ରଖିବାକୁ ଚାହାନ୍ତି । ସାମାନ୍ୟ ଅସତର୍କତାରେ, ଈଷତ୍ ଅବହେଳାରେ ସେଥିରେ

ଧୂଳି ପକାଇବାକୁ ଚାହାନ୍ତି ନାହିଁ । ତା' ଛଡ଼ା ପ୍ରୟୋଜନୀୟ ଚିଠିପତ୍ରର ସଂଖ୍ୟା ମଧ୍ୟ ତ କମ୍ ନୁହେଁ ? ଗତାନୁଗତିକ ସାଧାରଣ ଜୀବନର ବାହାରେ ଅନ୍ୟ କୌଣସି ଜୀବନ ଭିତରେ ଆସିଗଲାକ୍ଷଣି ତାହାର ଗୋଟାଏ ଅଲଗା ଦାୟିତ୍ୱ ରହିଛି ।

ସମ୍ଭବ ଅନୁଯାୟୀ ସେ ସବୁ ଦାୟିତ୍ୱ ପାଳନ କରିବାକୁ ପଡ଼େ । ଅନ୍ତତଃ ତା'ର ଚେଷ୍ଟାଟା ମଧ୍ୟ କରିବାକୁ ପଡ଼େ— ବ୍ୟବହାରଟା ଯେପରି ତ୍ରୁଟିହୀନ ହେବ ।

ଅତଏବ କିଛିହେଲେ ହୁଏ ନାହିଁ ଖାଲି ପ୍ରିୟଜନଙ୍କ କ୍ଷେତ୍ରରେ ।

ସେଠାରେ ଅଛି ତ୍ରୁଟିର ପାହାଡ଼ ।

ସେଠାରେ ଦିନ ପରେ ଦିନ, ମାସ ପରେ ମାସ, ଭାରୀ ହୋଇ ଉଠେ ଅପରାଧର ବୋଝ । ତେବେକେ ହୋଇପାରେ ନାହିଁ ।

କିନ୍ତୁ କାରଣଟା କ'ଣ ? ସେହି ସାତଟି ସହିତ ଆଉ ଖଣ୍ଡିଏ ମିଶାଇବା କ'ଣ ଏତେ ଅସମ୍ଭବ ?

ହୁଏତ ଅସମ୍ଭବ ନୁହେଁ । କିନ୍ତୁ ଅସମ୍ଭବ ମଧ୍ୟ । ପ୍ରିୟଜନଙ୍କ ଚିଠି ଖାଲି କାମ ସାରିଦେବା ଭଳି ଲେଖା ହୋଇପାରିବନି । ଅନ୍ତତଃ ଅନାମିକା ପାରନ୍ତି ନାହିଁ । ସେଥିପାଇଁ ଅନାମିକା ଚାହାନ୍ତି ଟିକିଏ ନିଭୃତି । ମୁଠାଏ ଅବକାଶ । ଅନାମିକା ଦେବୀଙ୍କର ଖୋଳ ଭିତରୁ ନିଜକୁ ବାହାର କରି ଆଣି ଖୋଲା ମନର ଛାତରେ ଆସି ବସିବା ଦରକାର ।

କିନ୍ତୁ କେଉଁଠି ସେ ନିଭୃତି ? କେଉଁଠି ସେ ଅବକାଶ ?

କେଉଁଠି ସେ ନିଜକୁ ଏକାନ୍ତରେ ବସିବାର ଖୋଲା ଛାତ ?

ନାହିଁ । ମାସ ପରେ ମାସ ସେ ଅବସ୍ଥା ଅନୁପସ୍ଥିତ ।

ସେଥିପାଇଁ ତ୍ରୁଟିର ପାହାଡ଼ ଜମିଯାଏ । ସେଥିପାଇଁ ପ୍ରିୟଜନଙ୍କ ଚିଠି ଖୋଲିବା ଆଗରୁ ଛାତିଟା ଦୁରୁଦୁରୁ ହୁଏ । ମନେହୁଏ ଖୋଲିବା ସଙ୍ଗେ ସଙ୍ଗେ ତା' ଭିତରୁ ଠୁକ୍‌କିନା ଯେଉଁ ଟିକକ ଖସିପଡ଼ିବ, ତାହା ହେଉଛି ଟୁକୁରାଏ ଉଦାସୀନ ଅଭିମାନ ।

କିନ୍ତୁ ପ୍ରିୟଜନଙ୍କ ସଂଖ୍ୟା କେତେ ଅନାମିକା ଦେବୀଙ୍କର ?

ଲଫାଫାଟା ଖୋଲିବା ଆଗରୁ ତା' ଉପରେ ଟିକିଏ ଧୀରେ ହାତ ବୁଲାଇଲେ ଅନାମିକା । ଯେପରି ସାନମଝିଆନାନୀର ଅଭିମାନର ଆବେଗ ଟିକକ ପୋଛିଦେବାକୁ ଚାହିଁଲେ ତା'ପରେ ଆସେ, ଲଫାଫାର ମୁହଁଟାକୁ ଖୋଲିଲେ ।

ଆଉ ସେତିକିବେଳେ ଟେଲିଫୋନ୍‌ଟା ପୁଣି ଝଣଝଣ ହେଲା ।

'ଅନାମିକା ଦେବୀ ଅଛନ୍ତି ?'

'କଥା କହୁଛି ।'

'ଶୁଣନ୍ତୁ ମୁଁ ବାଣୀନଗର ବିଦ୍ୟାମନ୍ଦିରରୁ କହୁଛି......'

ସେ ତାଙ୍କର ବକ୍ତବ୍ୟ କହିଲେ । ଅନାମିକା ଦେବୀଙ୍କ କଥାରେ କାନ ଟିକିଏ ନ ଦେଇ ଜୋର୍ ଗଳାରେ ଯାହା ଜଣାଇଲେ, ତା' ହେଉଛି ଏହି ଉଚ୍ଚ ଆଦର୍ଶପୂତ ବିଦ୍ୟାମନ୍ଦିରର ପାରିତୋଷିକ ବିତରଣ ଉତ୍ସବରେ ଏହା ପୂର୍ବରୁ ଅନେକ ମହା ମହା ବ୍ୟକ୍ତି ଆସିଲେଣି, ଏଥର ଅନାମିକାଙ୍କର ପାଳି ।

ଅତଏବ ଧରିନେବାକୁ ହେବ ଏ ସୂତ୍ରରେ ଅନାମିକା ଦେବୀ ମହାମହାମାନଙ୍କର ତାଲିକାରେ ସାମିଲ୍ ହେଲେ । ଅଥବା ଏଥିପୂର୍ବରୁ ଉଠି ବସିଥିଲେ, ଖାଲି ପାଳିଟା ଆସିବାକୁ ବାକି ଥିଲା ।

ଅନାମିକା ଦେବୀଙ୍କର କ୍ଷୀଣ ପ୍ରତିବାଦ 'ମୃଦୁ ଆପତ୍ତି' ବନ୍ୟାଜଳରେ ଭାସିଗଲା । ସେପଟୁ ସବଳ ଘୋଷଣା ଶୁଭିଲା– କାର୍ଡ଼ ଛପାଇବାକୁ ପଠାଇ ଦେଉଛି ।

ନାନୀର ଚିଠିଟାକୁ ଆଉ ଅନେକସମୟ ପର୍ଯ୍ୟନ୍ତ ପଢ଼ିବାକୁ ଇଚ୍ଛା ହେଲାନି । ଯେପରି ଗୋଟାଏ କୋମଳ ସ୍ୱରର ଧ୍ୱନି ଉପରେ କିଏ ତବଲା ପିଟିଦେଇଗଲା ।

ତା'ପରେ ଖୋଲି ପଢ଼ିଲେ ।

ମଝିଆନାନୀ ଲେଖିଛି–

ବହୁତ ତ ଲେଖୁଛୁ । କାଗଜ ଖୋଲିବାମାତ୍ରେ ଅନାମିକା ଦେବୀ, ତହେଲେ ସେଇଟାର କ'ଣ ହେଲା ? ସେଇ ବକୁଳର ଖାତାଟାର ?

ଖାତାଟାକୁ ପୋକମାନେ କାଟି ଶେଷ କରିଦେଲେଣି ? ନା ହଜିଗଲାଣି ? କିନ୍ତୁ–

'କିନ୍ତୁ' ଲେଖି ଛାଡ଼ିଦେଇଛି ନାନୀ ।

ଆଉ କୌଣସି କଥା ଲେଖିନି ।

ଖାଲି ତଳେ ନାଁ ଦସ୍ତଖତ କରିଛି– ସାନମଝିଆ ନାନୀ ।

ଚିଠି ଲେଖିବାର ଧରଣଟା ନାନୀର ସବୁବେଳେ ଏପରି । ଚିଠିର ରୀତିନୀତି ସମ୍ପର୍କରେ ଜମା ନିଷ୍ଠା ନାହିଁ ତା'ର । ଘରର ଯାହା ପାଖକୁ ଚିଠି ଲେଖ, ଘରର ଅନ୍ୟାନ୍ୟ ସଦସ୍ୟମାନଙ୍କୁ 'ଯଥାବିହିତ' ସମ୍ମାନ ଓ ଆଶୀର୍ବାଦ ଜଣାଇବା ଯେ ଏକାନ୍ତ ଆବଶ୍ୟକ, ଚିଠିଟା ଯେ ପ୍ରଧାନତଃ କୁଶଳ ବିନିମୟ ଉଦ୍ଦେଶ୍ୟରେ

ଲେଖାହୋଇଛି, ଆଉ ପରିଚିତ ଜଗତର ସବୁ କିଛି ଖବରର ଆଦାନ-ପ୍ରଦାନଟା ହିଁ ଯେ ଅସଲ ପ୍ରସଙ୍ଗ ହେବା ଉଚିତ, ଏ ବୋଧ ନାହିଁ ନାନୀର । ଚିଠିରେ ନାନୀ ଯେମିତି ହଠାତ୍ କଥା କହିପକାଏ । ଆଉ କଥା କହୁ କହୁ ହଠାତ୍ ଅଟକିଯିବାଟା ଯେମିତି ତା'ର ସ୍ୱଭାବ, ସେମିତି ହଠାତ୍ ରହିଯାଏ । ସେଥିପାଇଁ କିନ୍ତୁ କହି ରହିଯାଇଛି ।

କିନ୍ତୁ ବକ୍ତବ୍ୟଟା ସାରିଦେଲେ ବୋଧହୁଏ ଅନାମିକାର ମନ ଭିତରେ ଏଭଳି ଗୋଟାଏ କଣ୍ଟା ଭୂକି ଦେଇ ରଖିଦେଇ ପାରିଥାଆନ୍ତା ନାନୀ ।

ଅନାମିକା ଚିଠିଟା ପଢ଼ିସାରି ତା'ର ସେ ଅଶେଷ ବାଣୀଟିର କଥା ଭାବିବାକୁ ଲାଗିଲେ ।

ବକୁଳ ଖାତାଟାର କ'ଣ ହେଲା ?

ଅନାମିକା କ'ଣ ସେଇଟା ସତରେ ହଜାଇ ଦେଇଛନ୍ତି ? ନା ସତରେ ଅବହେଳାରେ ଉଦାସୀନତାରେ ପୋକମାନେ କାଟି ଶେଷ କରି ଦେଇଛନ୍ତି ?

ସେ ଖାତାଟା କାହିଁ ?

ଅନାମିକା କ'ଣ ଖୋଜିବସିବେ ?

କିନ୍ତୁ ସେହି ଅନେକଦିନ ଆଗର ଅନାଦୃତ ଖାତାଟା ଖୋଜିବାକୁ ଅନାମିକାଙ୍କର ସମୟ କାହିଁ ? ଆଜି କ'ଣ ଗୋଟାଏ ସାହିତ୍ୟ ସମ୍ମିଳନୀ ଉପଲକ୍ଷରେ ତାଙ୍କୁ ଉତ୍ତରବଙ୍ଗକୁ ଯିବାକୁ ପଡୁନି ? ତିନିଦିନଖଣ୍ଡେ ସେଠି କଟିବ, ତା'ପରେ ଫେରି ଆସିଲାକ୍ଷଣି ସେ ବାଣୀନଗର ବିଦ୍ୟାମନ୍ଦିର, ତା' ପରଦିନ ବିଶ୍ୱନାରୀ ପ୍ରଗତି ସଂଘ, ତା' ପରଦିନ ଯୁବ ଉତ୍ସବ, ତା'ପରେ ପର ପର ହୋଇ ତିନିଦିନ କୋଉଠି କୋଉଠି ତ ଡାଏରୀ ଖାତା ଦେଖିବାକୁ ପଡ଼ିବ ।

ତାହେଲେ କେତେବେଳେ ବକୁଳର ଖାତାଟାକୁ ଖୋଜାଯାଇପାରିବ ? ଧୂଳିର ସ୍ତର ଝାଡ଼ି କେତେବେଳେ ଖୋଲି ଦେଖା ଯାଇପାରିବ ? ଦିନ ଯାଉଛି ଝଡ଼ ପରି, ସେହି ଝଡ଼ର ଧୂଳି ଯାଇ ପଡ଼ି ପଡ଼ି ଜମୁଛି ସମସ୍ତ କିଛି ପୁରୁଣା ଉପରେ, ଟେକିଦେଇ ରଖିଥିବା ସମସ୍ତ କିଛି ସଞ୍ଚୟ ଉପରେ ।

ସାନମଝିଆନାନୀର ସେହି 'ଏଠାରେ ପବନ ନାହିଁ' ନାମକ କବିତାରେ ଲେଖା ହୋଇଥିବା ଚିଠିଟା କଥା ମନେପଡ଼ିଲା । ବର ଉପରେ ଅଥବା ଜୀବନ ଉପରେ ହିଁ ଅଭିମାନ କରି ନାନୀ ସେ ଧରଣର କବିତା ଲେଖିବା ବନ୍ଦ କରି ଦେଇଥିଲା । ପ୍ରେମ କବିତା ଆଉ ଲେଖୁନଥିଲା ।

ମଝିଆନାନୀର ବର ଅମଳବାବୁଙ୍କର ଧାରଣା ଥିଲା ଭିତରେ ଭିତରେ ଗୋଟିଏ ପ୍ରଣୟକାଣ୍ଡ ଆଉ ଗୋପନ କୌଣସି ପ୍ରେମାସ୍ପଦ ନ ଥିଲେ ଏଭଳି ଗଭୀର ପ୍ରେମର କବିତା ଲେଖିବା ସମ୍ଭବ ନୁହେଁ ।

ଆଦି ଅନ୍ତକାଳର ସମସ୍ତ ମଣିଷଙ୍କ ଭିତରେ ହିଁ ଯେ ଉଣାଅଧିକେ ଗୋଟିଏ 'ପ୍ରଣୟକାଣ୍ଡ' ଥାଏ, ଆଉ ଚିରନ୍ତନ ଜଣେ ପ୍ରେମାସ୍ପଦ ମଧ୍ୟ ଅବିନଶ୍ୱର ମହିମାରେ ବିରାଜିତ ଥାଆନ୍ତି, ହୃଦୟର ସମସ୍ତ ଆକୁଳତା ସେଠାକୁ ଯାଇ ଅଜାଡ଼ି ହୋଇପଡ଼େ, ଏକଥା ବୁଝିବାର ମନଟା ନ ଥିଲା ଅମଳବାବୁଙ୍କର ।

ସେଥିପାଇଁ ଅମଳବାବୁ ତାଙ୍କର ଆପଣା ହୃଦୟର ଅଧୀଶ୍ୱରୀର ହୃଦୟ ଉପରେ କଡ଼ା ନଜର ରଖୁଥିଲେ, ସେ ହୃଦୟର ଝରକା ଦୁଆରରେ କିଳୁଣୀ ଯେପରି କେତେବେଳେ ହେଲେ ଖୋଲା ନ ଯିବ । ଯେପରି ବାହାରର ଧୂଳି ଅଳିଆ ଆସି ପଶି ନ ଯିବ, ଅଥବା 'ଭିତରଟା' ହିଁ ଖସିଯାଇ ବାହାରି ପଳାଇ ନ ପାରିବ କେଉଁ ଫାଙ୍କ ବାଟେ ସେ କଥା ଦେଖୁଥିଲେ ।

ଛିଟିକିଣୀ କିଳୁଣୀଗୁଡ଼ିକୁ ସେଥିପାଇଁ ନିଜ ହାତରେ ବନ୍ଦ କରିବାକୁ ଚେଷ୍ଟା କରୁଥିଲେ ।

ମଝିଆନାନୀ ମଧ୍ୟ ଚୋର ଉପରେ ରାଗି ଭୂଇଁ ଉପରେ ଭାତ ଖାଉଥିଲା । ପ୍ରେମ କବିତା ଲେଖିବା ଛାଡ଼ି ଦେଇଥିଲା ସେ । ତା'ପରେ ତ –

ହଁ, ତା'ପରେ ତ ଅମଳବାବୁ ମରିଗଲେ ।

କିନ୍ତୁ ତା'ପରେ ସେହି ନିଃସଙ୍ଗତାର ଭୂମିରେ ମଧ୍ୟ ଆହୁରି 'ଗଭୀର ଗଭୀର' ପ୍ରେମକବିତା ଲେଖି ନ ଥିଲା ସାନମଝିଆନାନୀ, ବରଂ ତଳେଇ ଯାଉଥିଲା ଆହୁରି ଗଭୀରତାକୁ । ସେଠାରେ ବୁଦ୍‌ବୁଦ ଉଠୁ ନ ଥିଲା । ଅଥବା 'ହୃଦୟ' ନାମକ ବସ୍ତୁଟା ତଳମହଲାର ଘରୁ ଚଢ଼ି ଯାଇଥିଲା ମସ୍ତିଷ୍କର ଚିଲକୋଠାରେ ।

ସୁବିଖ୍ୟାତା ଲେଖିକା ଅନାମିକା ଦେବୀ ସୁଦ୍ଧା କହନ୍ତି– ତୋ କବିତା ଏଇଲେ ଆଉ ପଢ଼ି ବୁଝିପାରୁନି ବାବା !

ପ୍ରାୟ ଦେଖାସାକ୍ଷାତ ହୁଏ ନାହିଁ । ଜୀବନରେ ଆଉ ବାପଘରକୁ ନ ଆସିବାର ପ୍ରତିଜ୍ଞା କରି ମଝିଆନାନୀ ଦୂରରେ ରହିଛି, ଅଥଚ ଅନାମିକାଙ୍କର ସେହି ବାପଘରଟା ହିଁ ଏକମାତ୍ର ଭରସା । ନିଜର କୌଣସି ଘର ନାହିଁ ଅନାମିକାଙ୍କର । କଦାପି କ୍ୱଚିତ୍ ନିଜେ ଯାଆନ୍ତି ମଝିଆନାନୀ ପାଖକୁ । ସେ ତ କ୍ୱଚିତ୍– ଚିଠି ଭିତରେ ହିଁ ସବୁ । ନୂଆ କବିତା ଲେଖିଲେ ଲେଖି ପଠାଏ ମଝିଆନାନୀ । ମତାମତ ପଠାନ୍ତି ଅନାମିକା ।

ତେବେ ଆଉଥରେ ମଝିରେ ମଝିରେ ଭାରି ସରଳ ଭାଷାରେ ଆଉ ସାଦାସିଧା ଛନ୍ଦରେ କବିତାର ଚିଠି ଲେଖେ ମଝିଆନାନୀ ଅନାମିକାଙ୍କୁ, ଆଉ ତା'ର ସେ ଛୋଟ ବନ୍ଧୁ ମୋହନକୁ । ଅସମବୟସୀ ସଙ୍ଗେ ବନ୍ଧୁତ୍ୱ କରିବାର ଆଶ୍ଚର୍ଯ୍ୟ ଗୋଟାଏ କ୍ଷମତା ଅଛି ପାରୁଲର । ଆଉ ସେହି ଅସମମାନେ ମଧ୍ୟ ଭାରି ସହଜରେ ଦ୍ୱିଧାହୀନ ଭାବରେ ନାନୀ ସହିତ ସମାନ ହୋଇଯାଇ ମିଶିଯାଆନ୍ତି ।

ଏ କ୍ଷମତା ସମସ୍ତଙ୍କର ନ ଥାଏ, ଏ କ୍ଷମତା ଦୁର୍ଲଭ । 'ଶିଶୁର ବନ୍ଧୁ' ହୋଇପାରିବା କ୍ଷମତାଟା ଈଶ୍ୱରପ୍ରଦତ୍ତ ।

କେତେବେଳେ ଥରେ ନାନୀର ପାଖଘରର ବାସିନ୍ଦା ଥିଲେ ମୋହନ ହେରିକା । ଅର୍ଥାତ୍ ତା'ର ବାପା ମା' । ସେମାନେ ବଙ୍ଗାଳୀ ନୁହଁନ୍ତି, ସେହି ପରିବାର ସହିତ ମଝିଆନାନୀର ଅଳ୍ପ ପରିଚୟ ଥିଲା, କିନ୍ତୁ ସେମାନଙ୍କର ଚାରି ପାଞ୍ଚ ବର୍ଷର ପୁଅଟା ସବୁବେଳେ ମଝିଆନାନୀ ପାଖରେ ରହିଯାଉଥାଏ । ନାନୀ ସହିତ ଗପ କରି କରି ବଙ୍ଗଳା ଭାଷାରେ ପ୍ରବୀଣ ହୋଇଯାଇଥିଲା ସେ ।

କେବଠାରୁ ସେମାନେ ଅନ୍ୟତ୍ର ଚାଲିଗଲେଣି, ହୁଏତ ଏବେ ମୋହନ ସ୍କୁଲର ସୀମା ଛାଡ଼ି କଲେଜରେ ଯାଇ ପଢ଼ିଲାଣି, ତେବେକେ 'ଆଣ୍ଟି' ସହିତ ସମ୍ପର୍କଟାକୁ ବଞ୍ଚାଇ ରଖିଛି ।

କୁଆଡ଼େ ମଝିଆନାନୀକୁ ମଝିରେ ମଝିରେ ତା' ପାଖକୁ ଛନ୍ଦ ଦେଇ ଚିଠି ଲେଖିବାକୁ ପଡ଼େ ଠିକ୍ ଯେମିତି ପିଲାଦିନେ ତା'ର ଲେଖୁଥିଲା । ସେ ମଧ୍ୟ କୁଆଡ଼େ ଆଜିକାଲି ବଙ୍ଗଳା କବିତା ଲେଖିବାରେ ହାତକୁ ସିଦ୍ଧି କଲାଣି । ଆଉ ସେଇଟା ମଝିଆନାନୀ ପାଖକୁ ହିଁ ଲେଖେ । ଅତଏବ ସେଇଯା ଚାଲିଛି ।

ଆଉ ଚାଲେ ଅନାମିକା ସହିତ ।

'ଏଠାରେ ପବନ ନାହିଁ' କେବେ ଗୋଟାଏ ଲେଖିଥିଲା । ଟିକିଏ ଟିକିଏ ମନେ ପଡୁଛି—

'ଏଠାରେ ପବନ ନାହିଁ, ଦିନ ରାତ୍ରି ସ୍ତବ୍ଧ ହୋଇ ରହେ ।<br>
ସେଠି ଉନ୍ମତ୍ତ ଝଡ଼ ତତେ ଆଚ୍ଛନ୍ନ କରି ରଖେ ।<br>
ତୋର କାମର ଡେଣା ଅବିଶ୍ରାମ ପରକୁ ହଲାଏ,<br>
ମୋର 'ବିଶ୍ରାମ ସୁଖ' ସମୟର ସମୁଦ୍ରରେ ହଜିଯାଏ ।<br>
ଏଠାରେ ପବନ ନାହିଁ, କାନ୍ଥର କ୍ୟାଲେଣ୍ଡର ଚୁପ୍ ।<br>
ତୋର ତାରିଖପତ୍ର ଝଡ଼ରେ ଉଡ଼ିଯାଏ ଝୁପ୍ ଝୁପ୍ ।

ଘଣ୍ଟାମିନିଟ୍‌ମାନେ ଯେମିତି–

ନାଃ, ଆଉ ମନେପଡୁନି । ଆହୁରି ଅନେକ ଲାଇନ୍ ଥିଲା । ଅନାମିକା ଯେହି ତୁଳନାମୂଳକ ଭଙ୍ଗୀରେ ଲେଖା ଯାଇଥିବା କବିତାପତ୍ର ପଢ଼ି ଅବାକ୍ ହୋଇଯାଇଥିଲେ । ଭାବିଥିଲେ ମଝିଆନାନୀ ସହିତ ମୋର ଯେ କେତେଦିନ ହେଲା ଦେଖା ହୋଇ ନାହିଁ । ସେ ମୋର ଏଇ ଝଡ଼୍'ଟାକୁ ତ ଆଖିରେ ମଧ ଦେଖିନି, ତେବେକେ ଏତେ ପରିଷ୍କାର କରି କେମିତି ସେ ବୁଝିପାରିଲା ? ଖାଲି ନିଜର ବିପରୀତ ଦେଖି ?

ଅଥଚ ଏହି ଝଡ଼ର ଗତିବେଗଟାକୁ ସବୁବେଳେ ଯେଉଁମାନେ ଦେଖନ୍ତି, ସେମାନେ ତ ଟିକିଏ ଚାହିଁ ସୁଦ୍ଧା ଦେଖନ୍ତି ନାହିଁ । ବରଂ କହନ୍ତି– ବେଶ୍ ଭଲରେ ଅଛି ବାବା । ମଜାରେ ଟେବୁଲ ଚଉକିରେ ବସି ବନେଇ ଚୁନେଇ ଯାହା ଇଚ୍ଛା ଲେଖ, ଆଉ ତା ବଦଳରେ ମୋଟା ମୋଟା ଚେକ୍–

ଯାଉ, ସେ କଥା ସେମାନଙ୍କର ଥାଉ, ବକୁଳର ଖାତାଟାକୁ ଖୋଜିବାକୁ ପଡ଼ିବ । କିନ୍ତୁ ଖୋଜିବାର ସେ ଜାଗାଟା କେଉଁଠାରେ ଅଛି ? ବାକ୍ସ ? ଆଲମାରି ? ପୁରୁଣା ସିନ୍ଦୁକ ? ନା ଆଉ ଅନ୍ୟ କୋଉଠି ?

ସେହି ଅନ୍ୟ କେଉଁଠାରେ ଥିବା ସ୍ଥାନଟା କ'ଣ ଅନାମିକାଙ୍କର ଅଛି ଏବେସୁଦ୍ଧା ?

ତିନିତାଲାରୁ ଓହ୍ଲାଇଆସିଲେ ଅନାମିକା । କିଏ ସବୁ ଆସି ଦେଖାକରିବା ପାଇଁ ଅପେକ୍ଷା କରୁଛନ୍ତି ।

ଏଭଳି ଅବସ୍ଥା ସାରାଦିନରେ ଅନେକଥର ଘଟେ, ତିନିତାଲାରୁ ଓହ୍ଲାଇ ଓହ୍ଲାଇ ଆସିବାକୁ ପଡ଼େ । ମଝିଆଭାଇନା କହନ୍ତି– ତା'ଠୁ ବରଂ ବାବା ତୁ ତଳମହଲାର ଗୋଟାଏ ଘରେ ପଡ଼ି ରହିଥା । ଏତେଥର ପାହାଚରେ ଓହ୍ଲାଇବାଠାରୁ ବରଂ ସେଇଟା ଭଲ ।

ଆଦର କରି କହନ୍ତି, ଅନ୍ୟ କୌଣସି ମତଲବରେ ନୁହେଁ । ତିନିତାଲାର ଲୋଭନୀୟ ଘରଟିକୁ ଭଉଣୀ ଆଗୁଳି ରଖିଛି ବୋଲି କୌଶଳରେ ତାକୁ ତଳମହଲାକୁ ଓହ୍ଲାଇ ଦେବାକୁ ଚାହିଁବେ, ଏଭଳି ନୀଚ ବୋଲି ଭାଇନାମାନଙ୍କୁ ଭାବିବା ଉଚିତ ନୁହେଁ । ଏଇଟା ଠିକ୍ କଥା ବାପାଙ୍କର ଉଇଲ୍‌ର ଅଧିକାରରେ ହିଁ ସେ ରହିଛନ୍ତି, ତଥାପି ଭାଇନାମାନେ ସେମିତି ହେଇଥିଲେ ରହିପାରିବାଟା ସମ୍ଭବ ହୋଇଥାନ୍ତା କି ?

ନା, ଅନାମିକାଙ୍କ ପ୍ରତି କୌଣସି ଦୁର୍ବ୍ୟବହାର କରାଯାଏନି । ହେଇଟି, ଏଇ ଯୋଉ ଦିନରାତି ଘରକୁ ଲୋକବାକ ଆସୁଛନ୍ତି, ହେଇଟି ଯେତେବେଳେ ସେତେବେଳେ

ସ୍ତ୍ରୀଲୋକମାନେ ଘରକୁ ବୁଲିବାକୁ ଆସୁଛନ୍ତି, ଭାଉଜମାନେ ତାକୁ କ'ଣ କହିବାକୁ ଆସନ୍ତି ?

ନା । ଅନାମିକାଙ୍କୁ କେହି କିଛି ଶୁଣାଇବାକୁ ଆସନ୍ତି ନାହିଁ । ଯିଏ ଯାହା ଶୁଣାନ୍ତି ତାହା ନିଜ ନିଜ ସ୍ୱାମୀ-ପୁତ୍ରଙ୍କୁ ଅଥବା ଭଗବାନ୍‌ଙ୍କ ପବନକୁ ।

ବଡ଼ ପକ୍ଷର ଅବଶ୍ୟ ଭାଇନା ବଞ୍ଚି ନାହାନ୍ତି, ଆଉ ବଡ଼ଭାଉଜ ଥାଇ ମଧ୍ୟ ନ ଥିଲା ପରି, ତା'ହେଲେ ବଡ଼ର ଅଂଶଟିକକ ଆଗୁଳି ବାସ କରୁଛି ତାଙ୍କର ପୁଅ ଅପୂର୍ବ । ସମସ୍ତେ ଅଛନ୍ତି, ତେବେ ଅପୂର୍ବ ତା'ର ସ୍ତ୍ରୀ-କନ୍ୟାଙ୍କୁ ଧରି ଘର ଭିତରେ ଅଲଗା ରହୁଛି ।

ଅପୂର୍ବର ସ୍ତ୍ରୀ ନିଜର ରୁଚି, ନିଜର ପସନ୍ଦ ଅନୁସାରେ ଚଳେ, ବହୁତ ସୌଖୀନ୍, ଝିଅକୁ ଆଧୁନିକ ଷ୍ଟାଇଲ୍‌ରେ ମଣିଷ କରିବାକୁ ଚାହେଁ, ଖୁଡ଼ୀଶାଶୁମାନଙ୍କ ସହିତ ମେଣ୍ଢା ଗୁହାଳରେ ରହିବାକୁ ସେ ରାଜି ନୁହେଁ । ସେଥିପାଇଁ ଘର ଭିତରେ ହିଁ କାଠର ସ୍କ୍ରିନ୍ ଦେଇ ନିଜର ବିଭାଗକୁ ଭାଗ କରି ଦେଇଛି ଅପୂର୍ବ ।

ଦୋତାଲାର ଦକ୍ଷିଣରେ ଥିବା ବାରଣ୍ଡାଟା ଅପୂର୍ବର ଭାଗରେ ପଡ଼ିଛି । ଅବଶ୍ୟ ବାରଣ୍ଡାଟାକୁ ଆଉ ବାରଣ୍ଡା କରି ରଖିନି ଅପୂର୍ବ, କାଚର ଝରକା ଆଉ ଗ୍ରୀଲ୍ ବସାଇ ଗୋଟିଏ ସୁନ୍ଦର 'ହଲ୍'ରେ ପରିଣତ କରିଦେଇଛି । ସେଠାରେ ତା'ର ଖାଇବା ଟେବୁଲ ଆଉ ବସିବା ସୋଫାସେଟ୍‌ଟା ଦୁଇ ଭାଗରେ ସଜା ହୋଇଛି ।

ଅପୂର୍ବର ସ୍ତ୍ରୀ ଅଳକାର 'ମୁଣ୍ଡ'ଟା ଚମତ୍କାର । ତା ମୁଣ୍ଡରୁ ହିଁ ତ ବାହାରିଛି ଏସବୁ ପରିକଳ୍ପନା । ତା ନ ହେଲେ ଏହି ଚିରକାଳର ସନାତନୀ ଘରଟା ତ ସେହି ସନାତନ ଧାରାରେ ହିଁ ଚାଲିଆସୁଥିଲା ।

ଘରର ମେଜିଆ ଉପରେ ସେମିତି ଆସନ ପକାଇ ବସି ଖାଇବା, ସେଇ ମେଜିଆ ଉପରେ ସରଞ୍ଜାମଯାକ ଏଣେ ତେଣେ ରଖି ଚାହା ତିଆରି କରିବା, କୋଉଠି କିଛି ସୁକୁମାରପଣିଆର ଚିହ୍ନ ନ ଥିଲା ।

ଘରଟି ନିହାତି ଛୋଟ ନୁହେଁ, କିନ୍ତୁ ସବୁଯାକ କେମିତି ଏକାକାର । ଫ୍ଲାଟ୍ ଘରର ଷ୍ଟାଇଲ୍ କୋଉଠି ହେଲେ ନାହିଁ । ସେଥିପାଇଁ ଘରୁ କିଛିହେଲେ ଆୟ କରିବାର ଉପାୟ ନାହିଁ । ଘର ତିଆରି କରିବାର ଭବିଷ୍ୟତ ବୁଦ୍ଧି ନ ଥିଲା ଆଉ କ'ଣ !

ଏସବୁ ଦେଖାଦେଖି କରି ଅଳକା ହତାଶ ହୋଇ ନିଜର ସୀମାଟିକକକୁ ନିଜ ମନକୁ ପାଇଲା ଭଳି ସଜାଇ ରଖିଛି । ତା'ର ଝିଅ ଅଭିଜାତମାନଙ୍କ ସ୍କୁଲରେ ପଢ଼େ, ତା'ର ଚାକର ବୁଶ୍ ସାର୍ଟ ଆଉ ପାଇଜାମା ପିନ୍ଧେ, ଚଟି ପାଦରେ ପିନ୍ଧି ରାନ୍ଧେ ।

ଅନାମିକାଙ୍କର ବଡ଼ମଝିଆଭାଉଜ ଆଉ ସାନମଝିଆଭାଉଜ ପ୍ରଥମେ ପ୍ରଥମେ ଦେଢ଼ଶୁରଙ୍କ ବୋହୂର ଅନେକ ସମାଲୋଚନା କରିଥିଲେ, ବିଦ୍ରୂପର ଫୁଲଝରି ବିଞ୍ଚିଥିଲେ ଅନେକ, କିନ୍ତୁ କ୍ରମଶଃ ନିଜେ ସେହି ଆଧୁନିକତାର ସୁବିଧାଗୁଡ଼ାକୁ ଅନୁଧାବନ କରିଥିଲେ ଏବଂ କେତେବେଳେ ଅଲକ୍ଷ୍ୟରେ ସେଗୁଡ଼ିକ ପ୍ରବର୍ତ୍ତନ ମଧ୍ୟ କରିଥିଲେ । ଏଇଲେ ସେମାନେ ଅନ୍ତତଃ ପୁରୁଷମାନଙ୍କୁ ଟେବୁଲ୍‌ରେ ଦେବାଟାକୁ ଭାରି ଭଲ ଭାବନ୍ତି ।

ଅନାମିକା ଅବଶ୍ୟ ଏସବୁ ଭିତରେ କେବେହେଲେ ପଶନ୍ତି ନାହିଁ । କିଛି କହନ୍ତି ନାହିଁ କି ମତପ୍ରକାଶ କରନ୍ତି ନାହିଁ । ଆଜୀବନର ଏହି ଜାଗାଟିରେ ସେ ଯେପରି ଆଜୀବନଯାକ ଅତିଥି ।

ଅତିଥିର ସୌଜନ୍ୟ, ଅତିଥିର କୁଣ୍ଠା ଏବଂ ଅତିଥିର ନିର୍ଲିପ୍ତତା ଧରି ସେ ବିରାଜିତ ।

ତଳକୁ ଓହ୍ଲାଇଯାଇ ଦେଖିଲେ, ଚାରିଜଣ ବିଜ୍ଞ ଭଦ୍ରଲୋକ । ଅନାମିକାକୁ ଦେଖି ସମ୍ଭ୍ରମ ସହିତ ନମସ୍କାର କଲେ । ପ୍ରତି-ନମସ୍କାରର ପାଲା ଛିଡ଼ିଲା । ତା'ପରେ କାମ କଥା ପକାଇଲେ ସେମାନେ ।

ଗୋଟିଏ ଆବେଦନପତ୍ରରେ ସ୍ୱାକ୍ଷର କରାଇବାକୁ ଆସିଛନ୍ତି । ଦେଶର ସବୁ ମାନ୍ୟଗଣ୍ୟ, ବିଶିଷ୍ଟ ଚିନ୍ତାବିଦ୍ ଶିକ୍ଷାବିଦ୍ ସମାଜକଲ୍ୟାଣୀ ଆଉ ଶୁଭବୁଦ୍ଧି-ସମ୍ପନ୍ନମାନଙ୍କର ସ୍ୱାକ୍ଷର ସଂଗ୍ରହ କରିବାକୁ ବାହାରିଛନ୍ତି ସେମାନେ । ଅନାମିକା ଦେବୀଙ୍କୁ ମଧ୍ୟ ସେହି ଦଳରେ ରଖିଛନ୍ତି ।

କିନ୍ତୁ କେଉଁଥିର ଆବେଦନ ?

ଆବେଦନଟା ହେଉଛି ଦୁର୍ନୀତିର ବିରୋଧରେ ।

ଏହି ଦୁର୍ନୀତି ସାଗରରେ ନିମଜ୍ଜିତ ଦେଶର ଅନ୍ଧକାର ଭବିଷ୍ୟତ୍ ଦେଖି ବିଚଳିତ ବିପର୍ଯ୍ୟସ୍ତ ଏମାନେ ସମୁଦ୍ରରେ ବନ୍ଧ ବାନ୍ଧିବାକୁ ଆସିଛନ୍ତି ।

ଓଜସ୍ୱିନୀ ଭାଷାରେ ଏବଂ ବିକ୍ଷୁବ୍ଧ ଗଳାରେ ସେମାନେ କହିଲେ, ଭାବିପାରୁଛନ୍ତି ଆଜି ଦେଶ କେତେ ତଳକୁ ଓହ୍ଲାଇଗଲାଣି ? ଖାଦ୍ୟରେ ଭେଜାଲ ଦେଉଛନ୍ତି, ଔଷଧରେ ଭେଜାଲ ଦେଉଛନ୍ତି, ଶିକ୍ଷାକୁ ନେଇ ଖେଳ ଖେଳୁଛନ୍ତି—

ଏପରି କହିଲେ ସେମାନେ, ଯେମିତିକି ମାତ୍ର ଏଇକ୍ଷଣି ସେମାନେ ଜାଣିପାରିଛନ୍ତି, ତାଙ୍କ ଦେଶରେ ଏସବୁ ଭୟଙ୍କର ଦୁର୍ଘଟଣା ଘଟୁଛି ।

ଅନାମିକା ମନେ ମନେ କହିଲେ— ଛୁଆଗୁଡ଼ାକ ଏଇକ୍ଷଣି ବୋଧହୁଏ ସ୍ୱର୍ଗରୁ ଖସିପଡ଼ିଛ ? ବିଧାତାଙ୍କର ହାତରୁ ଫସକି ଯାଇ ଖସିଗଲ ?

କିନ୍ତୁ ତାହା କେବଳ ମନେ ମନେ । ମୁହଁରେ ଶାନ୍ତ ସୌଜନ୍ୟର ପାଲିସ୍ ଦେଇ ଈଷତ୍ ଦୁଃଖର ନକ୍ସା ରଚନା କରି କହିଲେ– ତା' ତ ହେଉଛି ।

–ହେଉଛି ବୋଲି ତୁନି ହୋଇ ରହିଲେ ଚଳିବନି ଅନାମିକା ଦେବୀ । ସମାଜର ଦୁର୍ନୀତିରେ ଆପଣମାନଙ୍କର ରହିଛି ସର୍ବାଧିକ ଦାୟିତ୍ୱ । ଶିଳ୍ପୀ-ସାହିତ୍ୟିକମାନେ ଯଦି ଦାୟିତ୍ୱ ଆଡ଼େଇ ଆପଣାର ଉଚ୍ଚମାନସର ଗଜଦନ୍ତ ମିନାରରେ ବସି ଖାଲି କଳ୍ପନାର ସ୍ୱର୍ଗ ଗଢ଼ନ୍ତି, ତା'ହେଲେ ତା' ହେବ ଦେଶ ପ୍ରତି ବିଶ୍ୱାସଘାତକତା ।

ଚମକିପଡ଼ିଲେ ଅନାମିକା ।

ନା, ଭୟଙ୍କର ନୂତନ ସେହି କଥାଟାରେ ନୁହେଁ, ଭଦ୍ରଲୋକଙ୍କ କଣ୍ଠସ୍ୱରରେ ଚମକିପଡ଼ିଲେ । ତାଙ୍କର ମନେହେଲା । ଘରର ଲୋକମାନେ ଶୁଣିଲେ ଭାବିବେ, କିଏ ମତେ ଧମକ ଦେବାକୁ ଆସିଛନ୍ତି । କିନ୍ତୁ ଚମକି ପଡ଼ିଲେ ମଧ୍ୟ ଶାନ୍ତ ସ୍ୱରରେ ହିଁ କହିଲେ ।

–କିନ୍ତୁ ଆବେଦନଟା କରିବେ କାହା ନିକଟରେ ?

–କାହା ନିକଟରେ ?–"ଭଦ୍ରଲୋକ ଉଦ୍ଦୀପ୍ତ ହେଲେ– ମଣିଷର ଶୁଭବୁଦ୍ଧି ନିକଟରେ ।"

–ମଣିଷ ? ମାନେ ଏସବୁ ଭେଜାଲବାଲା ଚୋରାକାରବାରୀଙ୍କ ପାଖରେ ? ଭାରି ଧୀରେ, ଭାରି ନରମ କରି କଥାଟା କହିଲେ ଅନାମିକା ଦେବୀ, ତେବେକେ ଭଦ୍ରଲୋକମାନେ ଯେପରି ଆହତ ହେଲେ, ଆଉ ତାହା ଅପ୍ରକାଶ ମଧ୍ୟ ରଖିଲେ ନାହିଁ । କ୍ଷୁବ୍ଧ ଗଳାରେ ହିଁ କହିଲେ– ଆପଣ ହୁଏତ ଆମର ପ୍ରଚେଷ୍ଟାକୁ ଲଘୁ ଦୃଷ୍ଟିରେ ଦେଖୁଛନ୍ତି, କିନ୍ତୁ ଆମେମାନେ ବିଶ୍ୱାସ କରୁଛୁ, ମଣିଷର ଶୁଭ ବୁଦ୍ଧି କେବେ ନା କେବେ ଜାଗ୍ରତ ହେବ ।

–ତା ତ ନିଶ୍ଚୟ ।...... ନମ୍ର ଗଳାରେ ଅନାମିକା ଦେବୀ କହିଲେ– ଦେଖେ, ଆପଣମାନଙ୍କର ଆବେଦନ ପତ୍ରର ଲିପିଟାକୁ ।

ବ୍ୟାଗ୍ ଖୋଲି ସନ୍ତର୍ପଣରେ ବାହାର କଲେ ଭଦ୍ରଲୋକ । ଭାରି ଜୋର ଦେଇ କହିଲେ– ଦେଶର ଏ ଦୁର୍ଦ୍ଦିନରେ ଆପଣମାନେ ଉଦାସ ହୋଇ ରହିଲେ ଚଳିବ ନାହିଁ ଅନାମିକା ଦେବୀ । ଅନ୍ଧକାରରେ କିଏ ରାସ୍ତା ଦେଖାଇବ ? କଲ୍ୟାଣର ବତି କିଏ ଜଳାଇବ ? ଯୁଗେ ଯୁଗେ କାଳେ କାଳେ ଦୁର୍ନୀତିଗ୍ରସ୍ତ ସମାଜକୁ ପଙ୍କଶଯ୍ୟାରୁ ପୁଣି ଟାଣି ନେଇ ଆସିଛି ସାହିତ୍ୟ ଆଉ ଶିଳ୍ପ ।

ଅନାମିକା ମୃଦୁ ହସି କହିଲେ– ତା' କ'ଣ ଠିକ୍ ?

–ଠିକ୍ ନୁହେଁ ? କ'ଣ କହୁଛନ୍ତି ?

—"ତାହେଲେ ତ ସମ୍ଭବାମି ଯୁଗେ ଯୁଗେ କଥାଟାର ଅର୍ଥ ହିଁ ହୁଏନା—" କହି ମୃଦୁ ହସି କାଗଜଟାରେ ଦୃଷ୍ଟି ବୁଲାଇଲେ ଅନାମିକା ।

ଭାଷା ସେହି ଏକ । ଯାହା ଭଦ୍ରଲୋକମାନେ ଆବେଗୋଦ୍ଦୀପ୍ତ ଗଳାରେ କହିଛନ୍ତି,

—ଦେଶ ପାପପଙ୍କରେ ନିମଜ୍ଜିତ, ମଣିଷମାନଙ୍କ ଭିତରେ ଆଉ ଆଦର୍ଶ ନାହିଁ, ବିଶ୍ୱାସ ନାହିଁ, ଶ୍ରଦ୍ଧା ନାହିଁ, ପ୍ରେମ ନାହିଁ, ପରାର୍ଥପରତା ନାହିଁ, ମାନବିକତାବୋଧ ନାହିଁ, ସର୍ବସ୍ୱ ହରାଇ ମଣିଷ ଧ୍ୱଂସର ପଥରେ ଚାଲିଛି । କିନ୍ତୁ ଚାଲୁଛି ବୋଲି କେବଳ କ'ଣ ଚାଲିବାକୁ ଦେବାକୁ ପଡ଼ିବ ? ବନ୍ଧ ପକାଇବାକୁ ହେବନି ?

ମନେ ମନେ ହସିଲେ ଅନାମିକା । ଭାବିଲେ— ମୋର ଗୋଟିଏ ସ୍ୱାକ୍ଷର ହିଁ ଯଦି ଏତେଗୁଡ଼ିଏ 'ନାହିଁ' ହୋଇଯିବା ଦାମୀ ବସ୍ତୁକୁ ଫେରାଇ ଆଣିବାରେ ସାହାଯ୍ୟ କରିବ ତ ସେଇଟା ଦେବି ।

ତେବେ 'ବିଶ୍ୱାସ' ଜିନିଷଟା ଯେ ସତରେ ବହୁତ ବେଶୀ ଚାଲିଗଲାଣି ସେଥିରେ ଆଉ କ'ଣ ସନ୍ଦେହ ଅଛି ? ନଚେତ୍ ତମମାନଙ୍କର ଏହିସବୁ ମହତ ଚିନ୍ତା ଆଉ ମହତ କଥାଗୁଡ଼ିକ ଭିତରେ କିଛି ଆଶାର ରସ ପାଉନି କାହିଁକି ? କାହିଁକି ମନେହେଉଛି, କେବଳମାତ୍ର ଦୁର୍ନୀତିଗ୍ରସ୍ତ ମଣିଷକୁ ଶୁଭବୁଦ୍ଧିର ଶୁଭ୍ର ଆଲୋକ ଦେଖାଇବାର ବ୍ରତ ନେଇ ତମେମାନେ ଏହି ଦିପହର ଖରାରେ ଝାଳବୁହାଇ ଘୂରିବୁଲୁଛ, ଏଇଟା କ'ଣ ସତ ? ଏଇଟା ବୋଧହୁଏ ତମମାନଙ୍କର କୌଣସି ମତଲବ— ଗ୍ରନ୍ଥର ସୁଚାରୁ ମଲାଟ !

ତା'ପରେ ଭାବିଲେ— ମଲାଟକୁ ନେଇ ଆମର କାରବାର । ଏହି ଯେ ସାହିତ୍ୟ ନେଇ ଏତେ ସରସ କଥା, ସେ ସାହିତ୍ୟ ମଧ୍ୟ ତ ତା'ର ମଲାଟର ଜୋର୍‌ରେ ବିକ୍ରି ହୁଏ । ଯାହାର 'ଗେଟ୍ ଅପ୍' ଯେତେ ଚମକିଆ ତାହାର ସେତେ ବିକ୍ରି ।

କଲମଟା ଟେକିନେଇ ସ୍ୱାକ୍ଷର କରିଦେଲେ ସେ ।

ସେମାନେ ପ୍ରସନ୍ନ ମୁହଁରେ ଫେରିଗଲେ ।

ଅନାମିକା ଅନେକକ୍ଷଣ ଚାହିଁରହିଲେ ସେହି ଚାଲିଯିବା ପଥ ଆଡ଼କୁ, ତା'ପରେ ଭାବିଲେ— ଯଦି ମତଲବବାଜ୍ ନ ହୁଅ ତ ତମେମାନେ ଅବୋଧ । ସେଥିପାଇଁ ଚୋରାବେପାରୀର ଶୁଭବୁଦ୍ଧିର ଦୁଆର ଆଗରେ ହାତ ପତେଇବାକୁ ଯାଉଛ ।

ଯାଉ, ଯାହାହେଉ ଉଦ୍ଦେଶ୍ୟସିଦ୍ଧିର ଆନନ୍ଦ ଦେଖାଗଲା ସେମାନଙ୍କ ମୁହଁରେ । ସେଦିନ ଦେଖାଯାଇନି ସେମାନଙ୍କର, ସେହି ଆଉ ଏକ ମାନବ କଲ୍ୟାଣ— ବ୍ରତୀମାନଙ୍କର ମୁହଁରେ ।

ତିନି ଚାରିଜଣ ଶୁଖିଲା ରୋଗିଣା କଳା କଳା ପୁଅ ଓ ଝିଅଟିଏ ଆସିଥିଲେ ସେଦିନ ଏଇ ଏକାପରି କଥାରେ ।

ଆବେଦନପତ୍ରରେ ସ୍ୱାକ୍ଷର ।

ସେମାନଙ୍କର ଚିନ୍ତା ଖାଲି ଦେଶର ପରିଧି ଭିତରେ ସୀମାବଦ୍ଧ ନୁହେଁ । ସମଗ୍ର ବିଶ୍ୱର ପରିପ୍ରେକ୍ଷୀରେ ରହିଛି ସେମାନଙ୍କର ଚିନ୍ତା । ଏହି ଯୁଦ୍ଧୋନ୍ମାଦ ପୃଥିବୀକୁ ଶାନ୍ତିର ମନ୍ତ୍ର ଦେବାପାଇଁ ସ୍ୱାକ୍ଷର ସଂଗ୍ରହ କରି ବୁଲୁଛନ୍ତି ସେମାନେ ।

ଅନାମିକା ଦେବୀ କହିଥିଲେ– ମୋର ମନେହୁଏନି ଯେ ଏହି ପ୍ରକାର ପଦ୍ଧତିରେ ପ୍ରକୃତ କାର୍ଯ୍ୟ ହେବ ।

ସେମାନେ କ୍ଷୁବ୍ଧ ହୋଇ ନ ଥିଲେ, ଆହତ ହୋଇ ନ ଥିଲେ । ଫଁ କିନା ମୁହଁ ଟେକିଥିଲେ ।

କହିଥିଲେ– ତା'ହେଲେ କେଉଁଥିରେ ପ୍ରକୃତ କାର୍ଯ୍ୟ ହୋଇପାରେ ବୋଲି ଆପଣଙ୍କର ମନେହୁଏ ?

ହସିପକାଇଥିଲେ ଅନାମିକା, କହିଥିଲେ– ମୋର ଏମିତି କି ବୁଦ୍ଧି ଅଛି ଯେ ଚଟ୍‌କିନା ଗୋଟାଏ ଅଭିମତ ଦେବି ! ତେବେ ମନେହେଉଥିଲା ଉନ୍ମାଦ ପାଖରେ ଶାନ୍ତିର ଆବେଦନର ମୂଲ୍ୟ କ'ଣ ?

ଯୁକ୍ତି ଛାଡ଼ି ସେମାନେ କ୍ରୋଧର ଶରଣ ନେଇଥିଲେ । କହିଥିଲେ– ତାହେଲେ ଆପଣ ଯୁଦ୍ଧକୁ ଚାହୁଁଛନ୍ତି ? ଶାନ୍ତି ଚାହୁଁ ନାହାନ୍ତି ?

ତା'ପରେ ପଦେ ଦୁଇପଦ କଥା ବିନିମୟ ପରେ ପରେ– "ଆଚ୍ଛା ଠିକ୍ ଅଛି, ସ୍ୱାକ୍ଷର କରିବା ନ କରିବା ଆପଣଙ୍କର ଇଚ୍ଛା । ତେବେ ଏଥିରୁ ଆପଣମାନଙ୍କ ମାନେ ସାହିତ୍ୟିକମାନଙ୍କର ମନୋଭାବ ଜଣାପଡୁଛି ।" କହି ଛିଟିକିପଡ଼ିଲା ପରି ବାହାରି ଯାଇଥିଲେ ।

ଶାନ୍ତି ପାଇଁ ଦୁଆରେ ଦୁଆରେ ଆବେଦନ କରି ବୁଲୁଛନ୍ତି ସେମାନେ, କିନ୍ତୁ 'ସହିଷ୍ଣୁତା' ଶବ୍ଦଟାର ବନାନ ଭୁଲି ଯାଉଛନ୍ତି ।

ସେଦିନ ସେମାନେ ରାଗିଯାଇ ଚାଲିଯାଇଥିଲେ ।

ଅନାମିକା ଦେବୀ ଅସ୍ୱସ୍ତି ବୋଧ କରିଥିଲେ ।

ଆଜି ଆଉ ଅସ୍ୱସ୍ତି ନାହିଁ । ଆଜି ଏମାନେ ପ୍ରସନ୍ନ ମୁହଁରେ ବିଦାୟ ନେଇଛନ୍ତି । ସ୍ୱସ୍ତି କିଣିବାର ଉପାୟ କ'ଣ ଏଇଟା ?

ଅନ୍ୟର ବାସନା ଚରିତାର୍ଥ କରିବାର ଉପକରଣ ହୁଅ, ଅନ୍ୟର ମତଲବର ଶିକାର ହୁଅ, ଆଉ ସେମାନଙ୍କର ସେହି ଉପରର ମଲାଟଟାକୁ ଦେଖି ପ୍ରଶଂସାରେ ପଞ୍ଚମୁଖ ହୁଅ । ଭିତର ପୃଷ୍ଠାରେ କ'ଣ ଅଛି ତା ବୁଝିପାରିଛ, ଏକଥା ବୁଝିବାକୁ ଦିଅ ନାହିଁ । ବାସ୍, ସ୍ୱସ୍ତି ପାଇବ । ନଚେତ୍ ବିପଦ, ନଚେତ୍ ଦୁଃଖର ଆଶଙ୍କା ।

ବାହାରେ ଏବେ ଖରା ଟାଇଁ ଟାଇଁ ହେଉଛି, ଗରମର ଦିପହର କଟି ମଧ କଟୁ ନାହିଁ । କେତେ କାମ ଜମା ହୋଇଗଲାଣି, କେତେ ଦାବିର ପାହାଡ଼ ଗଢ଼ିଉଠୁଛି, ତେବେକେ ଏହି ସମୟଟାକୁ ଯେପରି କାମରେ ଲଗା ଯାଉ ନାହିଁ । ସାନମଝିଆନାନୀକୁ କ'ଣ ଚିଠି ଲେଖିବେ ଏଇଲେ ?

ସାନମଝିଆନାନୀକୁ ଏଇଲେ ଚିଠି ଲେଖିବେ ?

ସାନମଝିଆନାନୀର ଚନ୍ଦନନଗରର ସେ ଗଙ୍ଗାତୀରର ଘରଟା କଥା ମନେପଡ଼ିଲା । ଅମଳବାବୁ ସାନମଝିଆନାନୀର ଜୀବନରେ ଆଉ କୌଣସି ସଞ୍ଚୟ ରଖି ଯାଇଛନ୍ତି କି ନାହିଁ ଜଣା ନାହିଁ, ତେବେକେ ସ୍ୱୀକାର ନ କରି ଉପାୟ ନାହିଁ, ଏହି ଏକ ପରମ ସଞ୍ଚୟ ରଖି ଯାଇଛନ୍ତି ସେ ସାନମଝିଆନାନୀର ଜୀବନରେ । ଗଙ୍ଗାତଡ଼ର ସେ ଛୋଟଘରଟା ।

ସେଠାରେ ଏକୁଟିଆ ରହେ ସାନମଝିଆନାନୀ ।

ଖାଲି ନିଜକୁ ନେଇ ।

ଦୁଇଜଣ କୃତୀ ପୁଅ, ନିଜ ନିଜର କାମର ଜାଗାରେ ଥାଆନ୍ତି ; ସେମାନଙ୍କର ବିରାଟ ଘର, ବିରାଟ ବଗିଚା, ଆରାମ ବିଶ୍ରାମ ସ୍ୱାଚ୍ଛନ୍ଦ୍ୟ ରହିଛି—

କିନ୍ତୁ ସାନମଝିଆନାନୀର ଦରକାର ଅନେକବେଶୀ ଆକାଶ, ଆହୁରି ଅନେକବେଶୀ ପବନ । ସେଥିପାଇଁ ଗଙ୍ଗା ତୀରର ବାରଣ୍ଡା ଦରକାର ପଡ଼େ ତାର ।

ତେବେକେ ମଝିଆନାନୀ ଲେଖେ— 'ଏଠାରେ ପବନ ନାହିଁ' ।

ପବନର ଯୋଗାଣକାରୀ ତେବେ କିଏ ?

## ॥ ୩ ॥

ଶମ୍ପା ସଜଡ଼ାସଜଡ଼ି ହୋଇ ଆନନ୍ଦରେ ଛଳ ଛଳ କରୁ କରୁ ଆସି ଠିଆହେଲା— ସିନେମାକୁ ଯାଉଛି ପିଉସୀ । ମାର୍ଭଲେସ୍ ଚିତ୍ରଟିଏ ଆସିଛି, ଲାଇଟ୍‌ହାଉସ୍‌କୁ । ଯାଉଛି, ବୁଝିଲୁ ? ସଜାଡ଼ିହେବାକୁ ଡେରି ହୋଇଗଲା । ସେହି ହତଭାଗ୍ୟ ପୁଅଟା

ଟିକେଟ୍ ଧରି ଅାଁ କରି ବସିରହିଛି ତୀର୍ଥକାକ ଭଳି, ଆଉ ବୋଧହୁଏ ଶହେଥର ଅଭିଶାପ ଦେଉଛି । ଚାଲିଲି । ମା'ଙ୍କୁ କହିଦେବ, ବୁଝିଲ ?

ତା'ର ସେହି ଆହ୍ଲାଦରେ ଭାସୁଥିବା ଚେହେରା କ'ଣ କୌଣସି ଦିନ ଦେଖି ନାହାନ୍ତି ଅନାମିକା ଦେବୀ ? ପ୍ରତିଦିନ ତ ଦେଖୁଛନ୍ତି । ତେବେ ହଠାତ୍ କାହିଁକି ଆଜି ବହୁ ଯୁଗର ସେପାରିରୁ ଆଷାଢ଼ ଆସି ତାଙ୍କୁ ଆଡୁଆଳ କରିପକାଇଲା ? ସେହି ଛାୟାରେ ଶମ୍ପାର ଛାୟାକୁ ହଠାତ୍ ବକୁଳ ବୋଲି ମନେହେଲା ଅନାମିକା ଦେବୀଙ୍କର ।

ତା'ର ସେହି ପବନରେ ଭାସିବା ଦେହଟା ସଙ୍ଗେ ଖାପ ଖୁଆଇଥିବା ଶାଢ଼ିଟାର ଜାଗାରେ ଗୋଟାଏ 'ସ୍ୱଦେଶୀ ମିଲ୍'ର ମୋଟା ଶାଢ଼ିର ଏକାଂଶ ଦେଖିବାକୁ ପାଇଲେ ଯେପରି ।

ବକୁଳର ସେ ଶାଢ଼ିଟା ଚାବିବନ୍ଧା କାନିର ଧରଣରେ ଘରୋଇ ଭାବରେ ପିନ୍ଧା ହୋଇଛି, ବକୁଳର କେଶରାଶି ଟାଣିଟୁଣି କୁଣ୍ଡାଇ ତାଳ ପରି ଗୋଟିଏ ଖୋଷା ବନ୍ଧା ହୋଇଛି, ବକୁଳର ପାଦ ଖାଲି । ବକୁଳର ହାତରେ ଦୁଇଟା ବହି ।

କିନ୍ତୁ ଶମ୍ପାକୁ ହଠାତ୍ ବକୁଳ ବୋଲି ମନେହେଉଛି କାହିଁକି ?

ବକୁଳର ତ ଶମ୍ପା ଭଳି ଏମିତି ଆନନ୍ଦରେ ଭାସିବା ଚେହେରା ନୁହେଁ ?

ବକୁଳ ଭୀରୁ କୁଣ୍ଠିତ ନମ୍ର ।

ବକୁଳ ଭିତରେ ଦୁଃସାହସର ଭଙ୍ଗୀ କାହିଁ ?

ନାହିଁ ।

ତେବେବି ଶମ୍ପାକୁ ଆଡୁଆଳ କରି ବକୁଳ ଆସି ଠିଆହୋଇଛି । ଆଉ ସେ ମୁଣ୍ଡ ପୋତି ଠିଆ ହୋଇଥିବା ବକୁଳକୁ କୋଉମାନେ ଯେପରି ଧମକ ଦେଉଛନ୍ତି, 'ଖବରଦାର ଆଉ ସେମାନଙ୍କ ଘରକୁ ତୁ ଯିବୁନି । ଖବରଦାର ! ନାଇଁ । ଏଡ଼େ ବଡ଼ ବଢ଼ିଲାଝିଅ ହେଇଚୁ । ରାତିଦିନ ନାଟକ ନଭେଲର ଶ୍ରାଦ୍ଧ କରୁଛୁ, ଆଉ ଏ ଜ୍ଞାନ ନାହିଁ କୋଉଥିରେ ନିନ୍ଦା ହୁଏ ?'

ବକୁଳର ଚେହେରାରେ ଦୁଃସାହସର ଭଙ୍ଗୀ ନାହିଁ, ତେବେବି ବକୁଳ ଗୋଟାଏ ଦୁଃସାହସିକ କଥା କହିଦେଲା । ହୁଏତ ଏଇଥିପାଇଁ ଶମ୍ପାକୁ ଦେଖି କେମିତି ଗୋଟାଏ ସାଦୃଶ୍ୟ ବୋଲି ହଠାତ୍ ମନେହେଉଛି ।

କହିଲା ହଠାତ୍— ନିନ୍ଦା ହେବ କାହିଁକି ? ସବୁବେଳେ ତ ଯାଉଛି ।

—ସବୁବେଳ ସାଙ୍ଗରେ ଏବର ତୁଳନା କରନା । ଗୋଟାଏ ଭଙ୍ଗା ଭଙ୍ଗା ପ୍ରୌଢ଼ ଗଳା କହୁଛି— 'ଏବେ ତୋ ମୁଣ୍ଡ ଉପରେ ମା ନାହିଁ । ତା'ଛଡ଼ା ସେମାନଙ୍କ ଘରେ ବଡ଼ ପୁଅ—'

ହଁ, ଏଭଳି ଏକ ଅସଭ୍ୟ କଥା ଅନାୟାସରେ ଉଚ୍ଚାରଣ କରନ୍ତି ସେ ।

ବକୁଳର କ୍ଷୀଣକଣ୍ଠରୁ ଉଚ୍ଚାରିତ ହେଲା— ଆଚ୍ଛା ବେଶ, ଆଉ ଯିବିନି, ଆଜି ଖାଲି ଏ ବହି ଦିଇଟା ଫେରାଇ ଦେଇ ଆସିବି ।

—କି ବହି ?

—ଏମିତି ।

—ଏମିତି ମାନେ ? ନାଟକ— ନଭେଲ ?

ବକୁଳ ତୁନିହୋଇ ରହିଲା ।

—ସେଇୟାତ, ସେଇଟାହିଁ ହୋଇଛି କୁଅର ମୂଳ ତିନି ପୁରୁଷରେ ଗୋଟାଏ ରୋଗ । ଶୁଣୁଛି ଆଇର ଥିଲା, ମା'ର ତ ଷୋହଳଅଣା ଥିଲା, ତା'ପରେ ପୁଣି ଝିଅର ମଧ୍ୟ— ଦେଖେ କି ବହି !

ବକୁଳ ହାତରୁ ବହି ଦୁଇଟାକୁ ପ୍ରାୟ ସେ ଛଡ଼ାଇନେଲେ । ଖୋଲି ଦେଖିଲେ । ତା'ପରେ ବିଦ୍ରୂପର ଗଳାରେ କହିଲେ— ଓଃ, ପଦ୍ୟ ! ରବି ଠାକୁର ! ଖାଲି ଖାଲିଟାରେ କ'ଣ କହୁଛି ତିନିପୁରୁଷର ଗୋଟିଏ ରୋଗ ! ହଁ, ଠିକ୍ ଅଛି । ମୁଁ ଦେଇଦେବି । ବହି କାହାର ? ସେହି ନିର୍ମଳଟାର ନିଶ୍ଚୟ ।

ବକୁଳ ପଥର ହୋଇ ଠିଆ ହୋଇଥିଲା । ଉତ୍ତର ଦେଇପାରି ନ ଥିଲା ।

ପ୍ରୌଢ଼ର ଗଳାରୁ ଗୋଟିଏ ଏକାକ୍ଷର ଶବ୍ଦ ବାହାରିଲା, "ହୁଁ ।"

ସେହି ଶବ୍ଦର ଅନ୍ତର୍ନିହିତ ଧିକ୍କାରରେ ପଥରର ବକୁଳ ଆଷାଢ଼ର ଛାୟାର ଆଢୁଆଳରେ ମିଳାଇଗଲା ।...... ଶମ୍ପାର ଆହ୍ଲାଦରେ ଭାସୁଥିବା ମୂର୍ତ୍ତିଟା ଝଲସିଉଠିଲା ସେହି ଶୂନ୍ୟତା ଉପରେ ।

ଝଲସିଉଠିଥିବା ଶମ୍ପା କହିଲା— ଯାଉଛି ତା'ହେଲେ । ମା'କୁ ଟିକିଏ ମୁଡ୍ ଦେଖି କହିବ ।

ଅନାମିକା ଟିକିଏ କଠିନ ସ୍ୱରରେ କହିଲେ— ତୁ ନିଜେ କହିଯାଉନୁ, ମୁଁ ତୋ'ର ମା'ର ମୁଡ୍ ଫୁଡ୍ ବୁଝି ପାରିବିନି ।

"—ତମେ ପାରିବନି ?" ହି ହି ହୋଇ ହସିଉଠିଲା ଶମ୍ପା, "ତମେ ତ ସେଇୟା କରି ଖାଉଛ । ମୋ ରାଣ ପିଉସୀ । ଏବେ ମା'ଙ୍କୁ କହିବାକୁ ଗଲେ

ସିନେମାର ବାରଟା ବାଜିଯିବ । ହତଭାଗାଟା ହୁଏତ କଟା ହୋଇଥିବା ଟିକେଟ୍‌କୁ ଛିଣ୍ଡାଇ ପକାଇ ରେଳ ତଳେ ପଡ଼ିବାକୁ ଯିବ ।

ହସି ହସି ଘରୁ ବାହାରିଗଲା ଶମ୍ପା ପିଉସୀକୁ 'ଟା ଟା' କରିବା ଭଙ୍ଗୀ କରି ।

ଅନାମିକା ଦେବୀ ଅପଲକଭାବରେ ଚାହିଁରହି ହଠାତ୍ ଭାବନ୍ତି, ଆଶ୍ଚର୍ଯ୍ୟ ! ସେ ଏ ଘରର ଝିଅ ? କେତେଯୁଗ ପରର ଝିଅ ?

ଶମ୍ପା ଯେତେବେଳେହେଲେ ଟିକିଏ ଦୁଃସାହସିକ ଅଭିଯାନରେ ବାହାରିଲେ ପିଉସୀକୁ ଜଣାଇ ଯାଏ । ପିଉସୀ ସହିତ ତା'ର ମାଇ-ଡିଯରି ସ୍ନେହ ରହିଛି । ସେଥିପାଇଁ ତା'ର ପ୍ରେମାସ୍ପଦର ଗଳ୍ପଗୁଡ଼ିକ ପିଉସୀ ସହିତ ଜମେଇବାକୁ ଆସେ ।

ହୁଏତ ଅନାମିକା ସମୟ ଅଭାବ ପାଇଁ ଛଟପଟ ହୋଇ ମରୁଛନ୍ତି । ହୁଏତ ପ୍ରତିଶ୍ରୁତି ଲେଖା ପ୍ରତିଶ୍ରୁତି ଅନୁଯାୟୀ ସମୟରେ ଦେଇ ନ ପାରିବାରୁ ଖବର ପରେ ଖବର ଆସୁଛି, ଟିକିଏ ମାତ୍ର ସମୟ ସଂଗ୍ରହ କରି ବସିଛନ୍ତି ସେ ଖାତା କଲମ ନେଇ, ସେତେବେଳେ ଶମ୍ପା ତିନିତାଲା ଉପରକୁ ଚଢ଼ିଆସି ଆସନ ଜମେଇ ବସିଗଲା— ବୁଝିଲ ପିଉସୀ 'ହତଭାଗା' କହିଲି ବୋଲି ବାବୁଙ୍କର କି ରାଗ ! କହିଲା ଭବିଷ୍ୟତ୍‌ରେ ମଧ୍ୟ ତମେ ତାହେଲେ ମତେ ଏହିପରି ଗାଳିମନ୍ଦ କରିବ ? ଶୁଣିଲ ନା । ଏ 'ଅବତାର' ମଧ୍ୟ ସେହି 'ଭବିଷ୍ୟତ'ର ସ୍ୱପ୍ନ ଦେଖୁଛନ୍ତି । ଅର୍ଥାତ୍ ଟିକିଏ 'ପ୍ରେମ ପ୍ରେମ' ଭାବ ଦେଖିଲାମାତ୍ରେ ବାହାଘରର ଚିନ୍ତା କରିବାକୁ ଆରମ୍ଭ କରିଛି । ପୁଅଗୁଡ଼ାକ ଯେ କାହିଁକି ଏମିତି ବୋକା ହୁଅନ୍ତି ! ହେଲେ ବୁଝିଲ ପିଉସୀ ମୁଁ ମଧ୍ୟ ତାକୁ କହିଦେଲି— "ହତଭାଗା ନୁହେଁ ତ ଆଉ କ'ଣ ? ହତଭାଗା ନ ହେଲେ ମୋ ଛଡ଼ା ଆଉ ଭଲ ସୁନ୍ଦର ଗୋଟିଏ ସୁଇଟ୍-ହାର୍ଟ ଜୁଟିଲାନି ତମକୁ ?" ପିଉସୀ, ଠିକ୍ କଥା କହିନି ?

ଅନର୍ଗଳ କଥା କହିଯାଏ ଶମ୍ପା ।

ଅନାମିକା ତାକୁ ଶାସନ କରିପାରନ୍ତି ନାହିଁ । କହିପାରନ୍ତି ନାହିଁ, ଏତେ ବାଚାଳତା କରି ବୁଲୁଛୁ କାହିଁକି ?

ନା, କହିପାରନ୍ତି ନାହିଁ । ବରଂ ପ୍ରଶ୍ରୟହିଁ ଦିଅନ୍ତି କୁହାଯାଇପାରିବ ।

ପ୍ରଶ୍ରୟ ଦିଅନ୍ତି ହୁଏତ ନିଜ ସ୍ୱାର୍ଥରେ । ଏହି ଝିଅଟିର ପାଖକୁ ଗଲାକ୍ଷଣି ଯେପରି ଅନାମିକା ଦେବୀଙ୍କ ପଞ୍ଜୁରୀରୁ ବାହାରିଆସେ ବନ୍ଦୀ ପକ୍ଷୀଟିଏ, ଆସି ଆଲୁଅର ଦ୍ୱାର ପାଖରେ ମୁହଁ ଗଳାଇ ଚାହେଁ ।

ସେ ଯେ 'ଅନାମିକା ଦେବୀ'ଙ୍କୁ ବେଖାତିର କରିଦେଇ ତା'ର 'ପିଉସୀ' ପାଖରେ ଆସି ଠିଆହୁଏ, ଏହାହିଁ ଯେପରି ଅନାମିକାଙ୍କର ସର୍ବାଙ୍ଗରେ ସ୍ନେହର ପ୍ରଲେପ ବୁଲାଇଦିଏ ।

ଜିନିଷଟା ବଡ଼ ଦୁର୍ଲଭ ।

କିନ୍ତୁ ଅନାମିକାଙ୍କର ଏଭଳି କାଙ୍ଗାଳିପଣିଆ କାହିଁକି ?

ତାଙ୍କ ପାଇଁ କ'ଣ ନାହିଁ ଯେ ?

ଯଶ ଅଛି, ଖ୍ୟାତି ଅଛି, ଶ୍ରଦ୍ଧା-ସମ୍ମାନ ଅଛି, ସ୍ନେହ ମଧ୍ୟ ଅଛି । ଅଜସ୍ର ହିଁ ଅଛି । କିନ୍ତୁ ଏ ସବୁର 'ହେତୁ' ମଧ୍ୟ ଅଛି ।

ଅହେତୁକ ସ୍ନେହ ହିଁ ବଡ଼ ଦୁର୍ଲଭ ବସ୍ତୁ । ତାଛଡ଼ା ଯାହା ଅଛି, ସବୁତ ଅଛି ଅନାମିକା ଦେବୀ ନାମକ 'ଖୋଳପା'ଟା ପାଇଁ ।

ସେଥିପାଇଁ ଶମ୍ପାର ସେହି ବାଚାଳତା, ସେହି ବେପରୁଆ ଭଙ୍ଗୀ, ସେହି ଲାଜଫାଙ୍କ ନ ଥିବା, ବାଡ଼ବତା ନ ଥିବା କଥାବାର୍ତ୍ତା, ସବୁ କିଛି ସହ୍ୟ ହୋଇଯାଏ । ବରଂ ଭଲ ଲାଗେ । ମନେହୁଏ, ଯେମିତି ଶମ୍ପାକୁ ଏହା ଛଡ଼ା ଆଉ କୌଣସି ଭଙ୍ଗୀରେ ମାନିବ ନାହିଁ ।

ଘରଲୋକେ ଅନେକ ଅନ୍ୟ କିଛି ନ ବୁଝନ୍ତୁ ପଛକେ, ଏଇଟା ବୁଝନ୍ତି ।

ସେଥିପାଇଁ ପ୍ରତ୍ୟକ୍ଷରେ ଏବଂ ପରୋକ୍ଷରେ ଅନାମିକା ଦେବୀଙ୍କୁ ହିଁ ଦାୟୀ କରନ୍ତି ଶମ୍ପାର ବେପରୁଆ ଚଳଣି ପାଇଁ ।

'ବଡ଼ ଗଛରେ ଡଙ୍ଗା ବାନ୍ଧିଛି ନା—' ସାନଭାଉଜ କାଛକୁ ହିଁ ଉଦ୍ଦେଶ୍ୟ କରି କହନ୍ତି ''—ଭୟ କାହିଁକି ରହିବ ? ଖାଲି ମୋ ହାତରେ ଝିଅ ଥିଲେ, କେମିତି ସଳଖେଇ ନ ଥାନ୍ତି ସମସ୍ତେ ଦେଖିଥାନ୍ତେ !' ପୁଅ ଜନ୍ମହେବା ପରେ ଗୁଡ଼ିଏ ବର୍ଷ ବାଦ୍ ଶମ୍ପାର ଆବିର୍ଭାବ ଘଟିଥିଲା । ବୟସରେ ବଡ଼ ହୋଇଯାଇଥିବା ଏ ଝିଅକୁ କେବେହେଲେ ପାରୁ ନ ଥିଲେ ସାନଭାଉଜ, କିନ୍ତୁ ଦୋଷ ଦିଅନ୍ତି ଅନାମିକାକୁ ।

ସେଇଥିପାଇଁ ମଝିରେ ମଝିରେ ଅନାମିକା କହନ୍ତି— ତୋ ମା'କୁ ପଚାରୁନୁ ତୁ ? ତୋର ମା'କୁ କହିଯାଉନୁ ?

ଶମ୍ପା ଆଖି ଖୋଲା କରି କହେ— ମା'କୁ ? ତାହେଲେ ଆଜି ଆଉ ବାହାରିଯିବାଟା ହବନି । 'କାହିଁକି', 'କି ବୃତ୍ତାନ୍ତ', 'କୋଉଠିକୁ', 'କାହାସଙ୍ଗେ' ? ଇତ୍ୟାଦି, ପ୍ରଭୃତି ସେ କି ଜେରା ! ଓଃ, କି ଗୋଟାଏ ବ୍ରେନ୍ ! ମା'ର

ବାପା ଯଦି ମା'କୁ ଲେଖାପଢ଼ା ଶିଖାଇ ଓକିଲ କରି ଛାଡ଼ି ଦେଇଥାନ୍ତେ, ତାହେଲେ ଦେଶର, ଦଶର ଉପକାର ହୁଅନ୍ତା, ଆଉ ଏ ଶମ୍ପାଟାର ମଧ୍ୟ ପ୍ରାଣ ବଞ୍ଚିଥାନ୍ତା । କାହିଁକି ଯେ ସେ ବୁଦ୍ଧିଟା ସେତେବେଳେ ଭଦ୍ରଲୋକଙ୍କ ମୁଣ୍ଡକୁ ଜୁଟିଲାନି !

ଅନାମିକା ତା'ର ସେ କଥା ଶୁଣି ହସି ଦେଉଥିଲେ, କିନ୍ତୁ ଅନାମିକାଙ୍କର ସେହି ହସର ଅନ୍ତରାଳରେ ଗୋଟିଏ ଗଭୀର ଦୀର୍ଘଶ୍ୱାସ ସ୍ତବ୍ଧ ହୋଇ ରହିଥାଏ ।

ତମେ ଆଜିକାଲିର ଝିଅମାନେ ଜାଣି ନାହଁ, ଭାବି ପାରିବନି ମଧ୍ୟ, ସେତେବେଳେ କୌଣସି ଭଦ୍ରଲୋକଙ୍କ ମୁଣ୍ଡରେ ହିଁ ଏ ବୁଦ୍ଧିଟା ଆସୁ ନ ଥାଏ । ଆଉ ଯଦି ବା ଦୈବାତ୍ କାହାରି ମୁଣ୍ଡକୁ ଆସୁଥିଲା, ଲୋକେ ତାକୁ ସେତେବେଳେ ଆଉ ଭଦ୍ରଲୋକ ବୋଲି କହୁ ନ ଥିଲେ ।

ସେଥିପାଇଁ ଏଭଳି କେତେ 'ମସ୍ତିଷ୍କ' ଯେ ଅପଚୟ ହୋଇଯାଇଛି, କେତେ ଜୀବନ ଅପବ୍ୟୟିତ ହୋଇଛି । ଆଜି ପୃଥିବୀ ତମମାନଙ୍କର ପାଦ ତଳେ, ଆକାଶ ତମମାନଙ୍କର ମୁଠାରେ, ତମେମାନେ ନିଜର 'ଜୀବନ'କୁ ନିଜ ହାତରେ ପାଉଛ, ଆଉ ତା ଆଗରୁ ତାହାକୁ ଗଢ଼ିଦେଉଛନ୍ତି ସେମାନଙ୍କର ଅଭିଭାବକମାନେ ।

ତମେମାନେ କ'ଣ ବୁଝିବ ଗଠନ-ଶୂନ୍ୟ ମେଞ୍ଚାଏ କାଦୁଅର ଜୀବନଟା କେମିତି ? ତା' ମଧ୍ୟ ସେହି ବଙ୍କାତେଢ଼ା ଅସମାନ ମେଞ୍ଚାଏ ସୁଦ୍ଧା ଅନ୍ୟର ହାତରେ ରହିଥାଏ ।

ଅନ୍ୟ ହାତର ଚାପରେ ବିକୃତ ଅସମାନ କାଦୁଅର ଜୀବନକୁ ଆମେମାନେ ଦେଖିଛୁ, ସେଥିପାଇଁ ଭାବୁଛୁ ତମେମାନେ କେତେ ପାଉଛ ! କିନ୍ତୁ ସେ ବୋଧ କ'ଣ କୋଉଦିନ ତମମାନଙ୍କର ହୁଏ ? କିନ୍ତୁ କାହିଁକି ବା ହେବ ? ପ୍ରାପ୍ୟ ପାଉଣା ପାଇବା ପାଇଁ କ'ଣ କୃତଜ୍ଞତା ହୁଏ ?

ଛାତିଭରି ନିଃଶ୍ୱାସ ନେବା ଭଳି ପବନ ଥିଲେ କ'ଣ କେହି ଭାବିବାକୁ ଯିବ କିଏ କେବେ କେଉଁଠି ପବନ ଅଭାବରେ ଦମ୍ ଅଟକିଯାଇ ମରୁଛି ?

ବକୁଳର ଚିତ୍ରଟା ଥରେ ଭାସିଆସିଥିଲା ବହୁ ଯୁଗର ସେପାରିରୁ, କିନ୍ତୁ ତା'ର ଖାତାଟା ? ସେଇଟାକୁ ତ କେତେ ଖୋଜି ମଧ୍ୟ ପାଉ ନାହାନ୍ତି ଅନାମିକା । ଖୋଜିବା ସ୍ଥାନଟିକୁ ହିଁ ଖୋଜି ପାଉ ନାହାନ୍ତି !

ଚାହିଁ ଚାହିଁ ଦେଖୁଛନ୍ତି, ଆଉ ମନେହେଉଛି, ଏସବୁ ନିତାନ୍ତ ଅକିଞ୍ଚିତ୍କର ଉପାଦାନ ଭିତରେ ବକୁଳକୁ କେଉଁଠି ପାଇବି ?

ବକୁଳ ବାପଭାଇଙ୍କର କଠୋର ଶାସନରେ ତା'ର 'ଭଲପାଇବା'କୁ ଲୁହାର ସିନ୍ଦୁକରେ ପୂରାଇ ପକାଇଲା, ଏଇ ଟିକକ ତ ଦେଖିପାରିଲି । କିନ୍ତୁ ସେଇଟା

କ'ଣ ଗୋଟାଏ କହିବା ଭଳି ସାମଗ୍ରୀ ? ଅଥଚ ବକୁଳର କଥା ଲେଖିବା ପାଇଁ କେଉଁଠାରେ ଯେପରି ଅଙ୍ଗୀକାର ରହିଥିଲା । ସେ ଅଙ୍ଗୀକାରକୁ କ'ଣ ଭୁଲି ଯାଇଛନ୍ତି ଅନାମିକା ?

ହୁଏତ ଭୁଲି ଯାଇ ନାହାନ୍ତି, ତେବେକେ କେତେ ହଜାର ପୃଷ୍ଠା ଲେଖା ହେଲା ଜୀବନରେ, କେତେ ହଜାର ହଜାର ତିଆରି ମଣିଷଙ୍କର କଥା, ଅଥଚ ସେ କଥାଟା ବନ୍ଦ ହୋଇ ରହିଗଲା ।

କିନ୍ତୁ ସେକଥା ବିଚାରି ଏବେ ଆଉ ଚିନ୍ତା କରିବାର ସମୟ ନାହିଁ । 'ବନବାଣୀ'ର ସମ୍ପାଦକ ଟେଲିଫୋନ୍ ଯୋଗରେ ହତାଶ ଗଳାରେ ଜଣାଉଛନ୍ତି 'ଆପଣଙ୍କ କପିଟା ପାଇଁ କାଗଜ ବାହାରିପାରୁନି ଅନାମିକା ଦେବୀ । ସାମନା ସପ୍ତାହରେ ବାହାରିବାର କଥା, ଅଥଚ—'

'ବନବାଣୀ'ର ପରେ ହିଁ 'ସୀମାନ୍ତ'ର କପି, ତା'ପରେ 'ଅନ୍ତହୀନ ସାଗର'ର ପ୍ରୁଫ୍ । ତା ଭିତରେ ହିଁ ତ ଉତ୍ତରବଙ୍ଗ ସାହିତ୍ୟ ସମ୍ମିଳନୀ ।

ଆଠଦିନ ଖଣ୍ଡେ ଗଲା ପରେ ସାନମଝିଆନାନୀର ଚିଠିର ଉତ୍ତର ଦେଲେ ଅନାମିକା— ବକୁଳର ଖାତାଟା କୋଉଠି ପାଇଲିନି । ମନେହେଉଛି ହଜାଇ ପକାଇଛି । ଆଉ ତା ସଙ୍ଗେ ମନେ ହେଉଛି, ହୁଏତ ତୋରି ପାଖରେ ହିଁ ଅଛି । ଟିକିଏ ଖୋଜି ଦେଖୁନୁ ?

## ॥ ୪ ॥

ଆଗକାଳେ ଝିଅମାନେ ଶାଢ଼ିକୁ କୁଞ୍ଚାଇ ଦେଇ ପିନ୍ଧୁଥିଲେ । ହାଲୁକା ପତଳା 'ଖଡ଼ିକା ଡୋର' 'ଚନ୍ଦ୍ର ଆଲୁଅ' 'ଗଙ୍ଗାଜଳୀ' ଶାଢ଼ି । କଡ଼ା କରି ମୋଡ଼ି ମୋଡ଼ି ବଳିଥିବା ସେହି କୁଞ୍ଚ ଶାଢ଼ିର ବନ୍ଧା ଖୋଲିଦେଇ ବିଛାଇଦେଲେ କୁନି କୁନି ଢେଉଭଳି ଦେହଟା ତା'ର ଯେମିତି ଦିଶେ, ଗଙ୍ଗା ଏବେ ଠିକ୍ ସେମିତି ଦିଶୁଛି ! ଜୁଆର ନାଇଁ, ଭଟ୍ଟା ନାଇଁ, ସ୍ଥିର ଗଙ୍ଗା !

ଖାଲି ପବନର ଧକ୍କାରେ ଉଠୁଛି ଛୋଟ ଛୋଟ ତରଙ୍ଗ । ସେହି ତରଙ୍ଗ କୁଞ୍ଚ ଯାଇଥିବା 'ଗଙ୍ଗାଜଳୀ' ଶାଢ଼ୀ ପରି ଏ କୂଳଠାରୁ ସେ କୂଳ ପର୍ଯ୍ୟନ୍ତ କାନି ବିଛେଇ ଦେଇ ସିର୍‌ସିର୍ ହୋଇ ଥରୁଛି ।

ବର୍ତ୍ତମାନ ଅପରାହ୍ଣ ନଇଁଆସୁଛି, ବର୍ତ୍ତମାନ ଗଙ୍ଗା ଆଉ ଗଙ୍ଗାତୀରର ଶୋଭାର ତୁଳନା ନାହିଁ । ଏହି ଶୋଭାର ଶେଷ ବିନ୍ଦୁଟିକକ ସୁଦ୍ଧା ପାନ କଲାପରେ ଯାଇ ଉଠିବ ପାରୁଲ୍ । ଯାହାକୁ ନାଁ ଧରି ଡାକିବାକୁ ଏଠି କେହି ନାହାନ୍ତି ।

ଏ ତା'ର ପୂଜା, ଏ ତା'ର ଧ୍ୟାନ, ଏ ହେଉଛି ତା'ର ନିଶା । ଖରା ପଡ଼ିଲାକ୍ଷଣି ସେ ଆସି ବସେ ଗଙ୍ଗାତଡ଼ର ଏ ବାରଣ୍ଡାରେ । ହୁଏତ ହାତରେ ବହିଟିଏ ଥାଏ, କିନ୍ତୁ ସେ ବହି ପଢ଼ା ହୁଏ ନାହିଁ । ଏ ସମୟରେ ନିଜକୁ ଧରି ସେ ଯେପରି ସେହି ଗଙ୍ଗାପରି ହିଁ କେଉଁ ଅତଳ ତଳକୁ ବୁଡ଼ିଯାଇଥାଏ ।

ଧଳାରଙ୍ଗ, ଧାରୁଆ ମୁହଁ, ଈଷତ୍ କୁଞ୍ଚିତ ହାଲୁକା ରୂକ୍ଷ କେଶରାଶିରେ ରୁପେଲି ବ୍ରଶ୍ୱର ସ୍ପର୍ଶ ଲାଗିଛି ସଂପୂର୍ଣ୍ଣ ନିରାଭରଣ ହାଲୁକା ପତଳା ପତଳା ଦେହଟିକୁ ଘେରି ରହିଛି ଯେଉଁ ଧଳା ଶାଢ଼ି ଆଉ ବ୍ଲାଉଜ, ତା'ର ଶୁଭ୍ରତା, ଯେପରି ଦୁଧକୁ ମଧ ହରାଇଦେବ । ବରଂ ଧଳାଫୁଲ ସଙ୍ଗେ ହିଁ ତୁଳନୀୟ ।

ସାହିର ସ୍ତ୍ରୀଲୋକମାନେ କେବେ କେବେ ବୁଲିଆସନ୍ତି, ସଧବା ବିଧବା ଦୁଇ ଦଳର ଆସନ୍ତି । ଆଉ ରାସ୍ତାକୁ ବାହାରିଲେ ଅବଶ୍ୟ ସଫା ଲୁଗା ପିନ୍ଧନ୍ତି, କିନ୍ତୁ ଏଠାକୁ ଆସି ବସିଲେ ସେମାନଙ୍କର ସେ ଶୁଭ୍ରତା ସମ୍ଭ୍ରମ ହରାଇଦିଏ । କୋଉ ଧୋବା ଆପଣଙ୍କର ଲୁଗା କାଚୁଛି ? କେତେ ଧଳା କରୁଚି ! ଆଉ ଘରେ ମଧ ଯେ ଆପଣ ଲୁଗାକୁ ଏତେ ଧଳା ସଫା କରି ରଖିପାରନ୍ତି ! ଆମେ ରନ୍ଧାଘରକୁ ଗଲୁ ତ, ଗଲା ଲୁଗାଟା ଗଲା ।

ଏତେଗୁଡ଼ିଏ କଥାର ଉତ୍ତରରେ ପାରୁଲ ଖାଲି ଅଳ୍ପ ହସି କହେ, ମୋର ପୁଣି କି ରନ୍ଧା ଯେ !

ପାରୁଲ ଅଳ୍ପକଥାର ମଣିଷ । ଅନେକ କଥାର ଉତ୍ତରରେ ସାନ ସାନ ଦୁଇଟି ଲାଇନରେ କାମ ସାରି ଦେଇପାରେ । ମହିଳାମାନେ ନିଜେ ହିଁ ଅନେକ କଥା କହନ୍ତି, ତା'ପରେ— "ନାନୀ ଯାଉଛୁ । ଆପଣଙ୍କର ଅନେକ ସମୟ ନଷ୍ଟ କରି ଦେଇଗଲୁ" କହି ଚାଲି ଯାଆନ୍ତି ।

ଏକଥାରେ ସଶବ୍ଦରେ ପ୍ରତିବାଦ କରେ ନାହିଁ ପାରୁଲ୍ । ଖାଲି ସେମିତି ଟିକିଏ ହସିଦେଇ କହେ— ମୋର ପୁଣି ସମୟ ନଷ୍ଟ ! ସବୁବେଳେ ତ ସମୟ ଅଛି ।

ଯିବାପାଇଁ ଉଦ୍ୟତ ମହିଳାଦଳ ଅଟକିଯାଆନ୍ତି । ଟିକିଏ ଈର୍ଷା, ଟିକିଏ ପ୍ରଶଂସା କରି କହନ୍ତି— କେଜାଣି ନାନୀ ଆପଣ କେମିତି ଯେ ଏତେ ସମୟ ପାଆନ୍ତି ! ଆମେ ତ ଏତିକି ଟିକିଏ ସମୟ ବାହାର କରିବାକୁ ଅଧାପ୍ରାଣ ହୋଇଯାଉଛୁ । ଇହ-ସଂସାରର ଖଟଣା ଆଉ ସରେନି ଆମର !

ଏକଥାର ଉତ୍ତର ଦେବାକୁ ଯାଏନି ପାରୁଲ୍— ଆପଣମାନଙ୍କର କାମର ତାଲିକା ତ ବିରାଟ ! ପ୍ରତିଦିନ ଗଙ୍ଗାସ୍ନାନ କରିବେ । ବିଗ୍ରହମାନଙ୍କ ଅନୁଗ୍ରହ ପାଇବାକୁ

ପ୍ରତିଦିନ ଯିବେ । ପ୍ରତିଦିନ ବାହାରିବେ ଭାଗବତ ପାଠ ଶୁଣିବାକୁ । ତା'ଛଡ଼ା ଘରେ ମଧ୍ୟ କୌଣସି ଜଣେ ଠାକୁରଙ୍କୁ ଫୁଲଚନ୍ଦନ ଦେବେ, କିଏ ତୁଳସୀମାଳ ଧରି ହଜାରେଥର ନାମ ଜପ କରିବାକୁ ବସିବେ !

ଏତେଗୁଡ଼ିଏ 'ନିତ୍ୟର ନୈବେଦ୍ୟ' ଯୋଗାଇ ତେବେଯାଇ ଆପଣମାନେ ଅନିତ୍ୟ ଇହ ସଂସାରକୁ ଖଜଣା ଦେବାକୁ ଯାଆନ୍ତି ? ତା' ଭିତରେ ପୁଣି ଥାଏ ଇଚ୍ଛାକୃତ କାମ ବଢ଼ାଇବାର ଅଭ୍ୟାସ । ଭର୍ତ୍ତି କରାଯାଇଥିବା ପାଣି ମାଠିଆକୁ ପୁଣି ଭର୍ତ୍ତି କରିବା, ମଜା ଗରା ପୁଣି ମାଜିବା, କଚା ଲୁଗାକୁ ପୁଣି କାଚିବା, ଏସବୁ ପରେ ମଧ୍ୟ ତୁଚ୍ଛ ଜିନିଷକୁ ଉଚ୍ଚମୂଲ୍ୟ ଦେବାକୁ ଆକାଶକୁ ତଣ୍ଟି ଚିପି ମାରନ୍ତି । ମୁଠାଏ ଗୋଡ଼ି-ମିଶା ଚାଉଳ, ମୁଠାଏ କୋଇଲା-ଗୁଣ୍ଡ, ଏ ଯେ ଆପଣଙ୍କ ପାଖରେ ସମୟଠାରୁ ଅଧିକ ମୂଲ୍ୟବାନ ।

ନା, ପାରୁଲ୍ ଏସବୁ କଥା କହେନି । ସେ ଖାଲି ହସିଦେଇ କହେ— ଆପଣମାନଙ୍କ ଘରକରଣା ଆଉ ମୋର ଘରକରଣା ! କି ଘର ମୋର !

ନିଜର ଆଉ ନିଜ ଜୀବନ ନିର୍ବାହ ପାଇଁ ହେଉଥିବା ଆୟୋଜନ କଥାରେ ପାରୁଲ୍‌ର ବହୁତ କୁଣ୍ଠା । କ'ଣ ରାନ୍ଧିଛନ୍ତି ବୋଲି କିଏ ଯଦି ପଚାରିଦେବ ତ ପାରୁଲ୍ ଯେପରି ଲାଜରେ ମରିଯାଏ । ତା'ଛଡ଼ା ରନ୍ଧା ବିଷୟରେ କହିବାକୁ ଗଲାମାତ୍ରେ ବିପଦ । ପାରୁଲ୍‌ର ଅନ୍ନପାତ୍ରରେ ଏକାଧିକ ପଦର ଆବିର୍ଭାବ ହେବାଟା ଏକ ଦୈବାତ୍‌ର ଘଟଣା । ଖାଲି ଯେତେବେଳେ ଛୁଟିରେ ପୁଅମାନେ କେବେ ବୁଲିବାକୁ ଆସନ୍ତି ସେତିକିବେଳେ—

ପୁଅମାନେ ବାହାରେ ଥାଆନ୍ତି, ଛୁଟି ହେଲାକ୍ଷଣି କଲିକତା ସେମାନଙ୍କୁ ଟାଣେ । ଛୁଟି ହେଲାମାତ୍ରେ ସ୍ତ୍ରୀ ପିଲାଙ୍କୁ ନେଇ ଟ୍ରେନ୍‌ରେ ଚଢ଼ିବସନ୍ତି, କହନ୍ତି— ଚାଲ କଲିକତାକୁ !

ଅବଶ୍ୟ ଏଇଟା ସମ୍ଭବ ହୁଏ ଦୁଇ ପୁଅଙ୍କ ଶ୍ୱଶୁରଘର କଲିକତାରେ ବୋଲି । ତା' ନ ହେଲେ ହୁଏତ କହିବାକୁ ପଡ଼ିଥାନ୍ତା— ଚାଲ 'ମଧ୍ୟପ୍ରଦେଶ', ଚାଲ 'ଉତ୍ତରବଙ୍ଗ' ।

ସ୍ୱାମୀମାନଙ୍କ ଛୁଟିର ସୁଯୋଗରେ ବୋହୂମାନଙ୍କ ଗନ୍ତବ୍ୟସ୍ଥଳ ଆଉ କେଉଁଟା ହେବ ବାପଘର ଛଡ଼ା ? ଆଦି ଅନ୍ତକାଳ ଯେ ଏହି ନିୟମ ଚାଲିଆସୁଛି । ସ୍ୱୟଂ ମା ଦୁର୍ଗା ହେଉଛନ୍ତି ଏହାର ପ୍ରମାଣ । ବୃନ୍ତଚ୍ୟୁତ ଫୁଲର ମର୍ମକଥା କାହାକୁ ଜଣା ନାହିଁ କିନ୍ତୁ ବୃନ୍ତଚ୍ୟୁତ ନାରୀ-ସମାଜର ମର୍ମକଥା ଧରାପଡ଼େ ତା'ର ଏହି ପିତ୍ରାଳୟ-ପ୍ରୀତିରେ । ପ୍ରୀତି ତ ନିଶ୍ଚେ ରହିଥିବ ।

ଶୈଶବର ଶେଷ ଦିନଗୁଡ଼ିକ ଯେଉଁଠି ଜଡ଼ିତ ଅଛି ସ୍ମୃତିର ସୁରଭି ହୋଇ । କୈଶୋରର ରଙ୍ଗିନ୍ ଦିନଗୁଡ଼ିକ ଯେଉଁଠି ବିକଶିତ ହୋଇଛି, କମ୍ପିତ ହୋଇଛି, ଝୁଲିଛି ଆଶା ଆଉ ଆନନ୍ଦରେ, ସେ ଜାଗାଟା ପାଇଁ ମନଟା ଧାଇଁବନି ? ଯେଉଁଠାକୁ ଯାଇ ଠିଆହେଲାକ୍ଷଣି ଏକାନ୍ତ ପ୍ରିୟଜନଙ୍କ ମୁହଁ ଦିଶେ, ସେଠାରେ ଆକର୍ଷଣ ଦୁର୍ବାର ହେବ ନାହିଁ ? ହେବ ।

ସେଥିପାଇଁ ବୋହୂମାନେ ସ୍ୱାମୀମାନଙ୍କ ଛୁଟି ହେଲାକ୍ଷଣି କହନ୍ତି– ଛୁଟିରେ କାଶ୍ମୀରକୁ ଯିବାକଥା କହୁଛ ? ହେଲେ ମା' ଅନେକ ଦିନ ତଳୁ କହିଛନ୍ତି–

ଅତଏବ ପୁଅମାନେ ବାକ୍ସବିଛଣା ବାନ୍ଧି ସ୍ତ୍ରୀ-ପୁତ୍ରଙ୍କୁ ଧରି ଶିବ ଠାକୁରଙ୍କ ପରି ଗିରିଜାଙ୍କ ଘରେ ହିଁ ଆସି ଉଦିତ ହୁଅନ୍ତି । ଶଶୁର ଘର ଛୋଟ, ଘର କମ୍ କି ଅନ୍ୟ ଅସୁବିଧା ଅଛି, ଏସବୁ ଚିନ୍ତା କିଛି କରନ୍ତି ନାହିଁ । ଖାଲି ହୁଏତ ଛୁଟିର ତିରିଶି ଦିନ ଭିତରୁ ତିନିଦିନ କାଟି ବାହାରକରି ନେଇ ନିଜ ମା' ପାଖକୁ ଯାଇ ବୁଲିଆସନ୍ତି ।

ଏ କଥା ଅବଶ୍ୟ ଅନାମିକା ଦେବୀଙ୍କ ସାନମଝିଆନାନୀ ଘରେ ହିଁ କେବଳ ଘଟୁଛି ତା ନୁହେଁ, ପ୍ରତି ଘରେ ଘରେ ଘଟୁଛି ଏହି ଘଟଣା । ସ୍ତ୍ରୀଲୋକମାନେ ଅନେକ କଥା ବୁଝନ୍ତି । ଖାଲି ବୁଝନ୍ତି ନାହିଁ ଯେ 'ସ୍ୱାମୀ'ର ମଧ୍ୟ 'ହୃଦୟ' ନାମରେ ଗୋଟିଏ ବସ୍ତୁ ଅଛି ।

ପ୍ରବାସକୁ ଚାଲିଗଲେ ବିଚରା ପୁରୁଷମାନଙ୍କର ମଧ୍ୟ ଯେ ଶୈଶବ-ବାଲ୍ୟର ସେହି ସ୍ମୃତିମୟ ଘରଟି ପାଇଁ ହୃଦୟର କିଛି ଅଂଶରେ ଥାଏ, ଏକ ଗଭୀର ଶୂନ୍ୟତା ସେକଥା ସ୍ତ୍ରୀଲୋକମାନେ ବୁଝିବାକୁ ଚାହାନ୍ତି ନାହିଁ । ପୁରୁଷମାନଙ୍କର ପୁଣି ମନ କେମିତି ଲାଗିବ କଣ ? ସେଥିପାଇଁ ସେହି ତିନିଦିନର ବରାଦ୍‌ରେ ଯଦି ଆଉ ଦୁଇଟା ମାତ୍ର ଦିନ ଯୋଗ ହୋଇଯାଏ, ବୋହୂ ଅନାୟାସରେ ଝଙ୍କାର ଦେଇ କହିଉଠେ– ତମେ ତ ସାରା ଛୁଟିଟା ସେଇଠାକୁ ଯାଇ କଟାଇ ଦେଇ ଆସିଲ !

ଅନେକକିଛି ପ୍ରୋଗ୍ରାମ୍ ଥାଏ ସେମାନଙ୍କର, ତିରିଶିଦିନର ଘଣ୍ଟ ଭାବେ ବୁଣାଯାଇଥିବା ପ୍ରୋଗ୍ରାମ ! ସେହି ବୁଣାରୁ ଗୋଟାଏ ଦୁଇଟା ସୂତା ସୁଦ୍ଧା କାଢ଼ିନେଲେ ଫାଙ୍କଟା ପ୍ରକଟ ହୋଇଯାଏ ।

ପାରୁଲ୍‌ର ଦୁଇବୋହୂ, ଦୁଇ ପ୍ରକାରର, କିନ୍ତୁ ଛୁଟିରେ ବାପଘରକୁ ଆସିବା କଥାରେ ଦୁଇଜଣଯାକ ଅଭିନ୍ନ । ତେବେକେ ବଡ଼ବୋହୂ କ୍ୱଚିତ୍ କେମିତି ଚନ୍ଦନନଗରକୁ ଆସେ, ସାନବୋହୂ କଦାପି ଆସେ ନାହିଁ ।

ସେମାନେ ଆସିଲେ ପାରୁଲ୍‌ର ଘରଟା ଦୁଇ ତିନିଦିନ ପାଇଁ 'ଘର'ର ରୂପ ନିଏ । ତା' ଛଡ଼ା ବର୍ଷଟାଯାକ ସେଠି ଖାଲି ବିରାଜମାନ କରେ ଏକ ଅଖଣ୍ଡ ସ୍ତବ୍ଧତା ।

ସାହିର ସ୍ତ୍ରୀଲୋକମାନେ କ୍ୱଚିତ ଆସନ୍ତି, କାରଣ ମୋହନର 'ମାଆ' ସହିତ ତାଙ୍କର ସ୍ୱର ମିଶେ ନାହିଁ । ଯାହା ବା ଆସନ୍ତି ନିହାତି କୌତୂହଳବଶତଃ ଆସନ୍ତି । କେବଳ ସମ୍ବାଦ ସଂଗ୍ରହ ଆଶାରେ, ନଚେତ୍ କହିବାକୁ ଗଲେ ପାରୁଲ୍ ତ ଜାତିଚ୍ୟୁତ ।

ଗଙ୍ଗାଙ୍କ ବକ୍ଷରେ ବାସ କରି ସୁଦ୍ଧା ମୋହନର ମା' ନିତି ତ ଦୂରର କଥା 'ଯୋଗ' ପଡ଼ିଲେ ମଧ୍ୟ ଗଙ୍ଗାରେ ସ୍ନାନ କରେ ନାହିଁ ! ପୂଜା କରେନି ! ହିନ୍ଦୁବିଧବା— ଉଚିତ ବହୁବିଧ ଆଚାରକୁ ମାନେ ନାହିଁ । ଏମିତିକି ଜାଣେନି ସୁଦ୍ଧା ! ବିଧବାକୁ ଯେ ହରିଶୟନ ପଡ଼ିବା ପରେ ପୋଟଳ ଆଉ କଳମ ଶାଗ ଖାଇବାକୁ ମନା, ଏକଥା ସେ ଜାଣି ନ ଥିଲା । ତାରକର ମା' କହିବାରୁ ହସିଦେଇ କହିଥିଲା— ସେଇୟା ନା କ'ଣ ? କିନ୍ତୁ ହରିଙ୍କ ଶୟନକାଳ ସହିତ ପୋଟଳ ଆଉ କଳମ ଶାଗର ସମ୍ପର୍କ କ'ଣ ?

ତାରକର ମା' ଗାଲରେ ହାତ ଦେଇଥିଲେ— ଏ ମା', କଥା ଶୁଣ ! ହଇହେ ମୋହନର ମା', ତମେ କୋଉ ବିଲାତରେ ମଣିଷ ହୋଇଥିଲ ? ଶ୍ରୀହରି ଯେ କଳମ ଶାଗର ବିଛଣାରେ, ପୋଟଳର ତକିଆ ମୁଣ୍ଡରେ ଦେଇ ଶୁଅନ୍ତି, ସେକଥା ମଧ୍ୟ ଜାଣିନ ? ଆଉ ସେଦିନ— ତମର ସେ ଅମ୍ବୁବାଚୀ ଦିନର କଥା ଦେଖି ଆମେ ତ କାବା ! ଦତ୍ତଙ୍କ ସ୍ତ୍ରୀ ଫୁଲକୁମାରୀ ଆଉ ମୁଁ, ହସି ହସି ଆମର ପେଟ ଫାଟିଗଲା ! ରଜପର୍ବରେ ବିଧବା ମଣିଷ କିଆଁ ଛୁଇଁବାକୁ ମନା ଶୁଣି ତମେ ଯେମିତି ଆକାଶରୁ ଖସିପଡ଼ିଲ ! ଯାହା କହ ଭଉଣୀ, ତମର ଆଖି କାନ ବନ୍ଦ ହୋଇ ରହିଛି ସତରେ ! ଘରେ ଏବେ ହେଲା ଶାଶୁ କି ନଣନ୍ଦ ନ ଥିଲେ, ହେଲେ ମଣିଷ ତ ଫେରେ ସାହିପଡ଼ିଶାଙ୍କୁ ଦେଖି ଶିଖେ !

ପାରୁଲ୍‌ର ବଡ଼ପୁଅର ନାଁ ମୋହନ । ସେଇଥିପାଇଁ ପାରୁଲ୍ ଅନେକଙ୍କ ପାଖରେ ମୋହନର ମା' ନାମରେ ପରିଚିତ ।

ପାରୁଲ୍‌ର ସ୍ୱାମୀ ଅମଳବାବୁଙ୍କର ବଦଳି ଚାକିରି ଥିଲା । ଜୀବନର ଅନେକ ଦିନ ପାରୁଲ୍‌ର ବାହାରେ ବାହାରେ କଟିଛି । ଶେଷଆଡ଼କୁ ଗାଁର ପୁରୁଣା ଘରର ସଂସ୍କାର କରି, ଗଙ୍ଗାର ତୀରକୁ ଲାଗି ଏ ବାରଣ୍ଡାଟିକୁ ତିଆରି କରି ଦେଇଥିଲେ ସେ କହିଥିଲେ— ଏ ବାରଣ୍ଡାଟା ତମରି ପାଇଁ ! ତମେ କବି ମଣିଷ ! ସ୍ୱାମୀ

ପାରୁଲ୍‌କୁ ଭଲପାଉଥିଲେ ସତ, ଭାରି ଭଲପାଉଥିଲେ, କିନ୍ତୁ ତାଙ୍କର ନିଜସ୍ୱ ଧରଣ ସେହି ଭଲପାଇବା— କିନ୍ତୁ ଆଉ ସେ କଥା । ପୃଥିବୀରେ ତ କେତେ ମଣିଷ ଅଛନ୍ତି ?

କିନ୍ତୁ କିଏ କାହାର ଛାଞ୍ଚରେ ଢଳା ହୋଇଛି ? କେହି ନୁହେଁ ?

ତେବେକେ ଯେଉଁମାନେ ବୁଦ୍ଧିମାନ୍ ସେମାନେ ସୁବିଧା ଆଉ ଶାନ୍ତିର ମୁହଁ ଚାହିଁ ନିଜର ଧାରୁଆ କୋଣଗୁଡ଼ିକୁ ଘଷି ଦଛଡ଼ା କରି ଅନ୍ୟ ସହିତ ଚଳେଇ ନିଅନ୍ତି ନିଜକୁ । ସର୍ବଦା ଲାଗିରହିବା ସଂଘର୍ଷକୁ ଆଡ଼େଇ ଦିଅନ୍ତି ।

ସେମାନେ ଜାଣନ୍ତି 'ଘରସଂସାର' କରିବାର ଇଚ୍ଛା ଥିଲେ ସେହି ଧାରୁଆ କୋଣଗୁଡ଼ିକ ତ ରହିବନି, ନିଶ୍ଚେ କ୍ଷୟ ହୋଇଯିବ । ଖାଲି ସେଇଟା କ୍ଷୟ ହେବ ନିୟତି ସଂଘର୍ଷର ଯନ୍ତ୍ରଣାମୟ ଅଭିଜ୍ଞତାରେ । ତା'ଠାରୁ ବରଂ "ନିଜେ ହିଁ ଘଷି ନିଏ" କଥାଟା ଭଲ ।

ଆଉ ଯେଉଁମାନେ ବୁଦ୍ଧିମାନ ନୁହଁନ୍ତି ଏବଂ ସଂଘର୍ଷକୁ ଡରନ୍ତି, ସେମାନେ ଗୋଟାଏ କରକୁ ଘୁଞ୍ଚି ଯାଇଥାଆନ୍ତି, ନିଜକୁ ସଙ୍କୁଚିତ କରିଦିଅନ୍ତି । ସେମାନେ କେବେ କଦାଚିତ୍ ଗୋଟିଏ ମନ ପରି ମନ ପାଇଲେ ତେବେ ଯାଇଁ ନିଜକୁ ସେଇଠି ଉନ୍ମୁକ୍ତ କରନ୍ତି ।

ପାରୁଲ୍ ବୁଦ୍ଧିମତୀ ନୁହେଁ, ପାରୁଲ୍ ପଛ ଦଳରେ । ପାରୁଲ୍ ସେଥିପାଇଁ ସେ ତାରକର ମା', ଫୁଲକୁମାରୀ ହେରିକାଙ୍କ ସହିତ ଏକଥା କହି ତର୍କ କରିବାକୁ ଯାଏନି— ଆପଣଙ୍କ ଶ୍ରୀହରିଙ୍କୁ କ'ଣ ଗୋଲୋକ ବୈକୁଣ୍ଠରେ ଅନ୍ୟ ବିଛଣା ଜୁଟିଲା ନାହିଁ ? ମା'-ଲକ୍ଷ୍ମୀଙ୍କ ଭଣ୍ଡାର କ'ଣ ଶୂନ୍ୟ ? ସେଥିପାଇଁ ଭଦ୍ରଲୋକଙ୍କୁ କଳମ ଆଉ ପୋଟଳର ଶରଣାପନ୍ନ ହେବାକୁ ପଡ଼େ ?.... ଅଥବା ଏ ତର୍କ ମଧ୍ୟ କରେ ନାହିଁ, ଘରେ ଖାଲି ଯଦି ବିଧବା ମା' ଆଉ ପୁଅମାନେ ଥାଆନ୍ତି, ମା' କ'ଣ ସେ ନିଆଁକୁ ନ ଛୁଇଁବା ନିଷେଧ ପାଳନ କରିବାକୁ ପିଲାଙ୍କୁ ଉପବାସରେ ରଖିବ ? ରାନ୍ଧି ଖାଇବାକୁ ଦେବନି ?

କଥାଗୁଡ଼ାକ ପାରୁଲର ମନକୁ ଆସିଥିଲା ।

ହୁଏତ ଏହି ତର୍କକୁ ସେ ବୃଥା ବୋଲି ଭାବିଲା ଅଥବା ମହିଳାଦଳଙ୍କ ସମାଲୋଚନାକୁ ସେଭଳି ଗୁରୁତ୍ୱ ଦିଏ ନାହିଁ ସେ । ହୁଏତ ସେମାନଙ୍କୁ ସେ ସେଭଳି ଗ୍ରାହ୍ୟ ସୁଦ୍ଧା କରେ ନାହିଁ । ବାହାରେ ଯେତେ ଅମାୟିକ ହେଲେ ମଧ୍ୟ ଭିତରେ ଭିତରେ ପାରୁଲ୍ ଅତି ଉଦାସିକ ହୋଇଯାଇଛି । ସେଇଥିପାଇଁ ପୁଅମାନେ ବିଦାୟ ନେଲାବେଳେ କେବେ ଆଖିପତାକୁ ଓଦା କରେ ନାହିଁ, କେବେ ସଜଳ ମିନତି ଜଣାଏନି

ଯେ 'ପୁଣି ଶୀଘ୍ର ଆସିବୁ' । ହସ– କଥାବାର୍ତ୍ତା ମଝିରେ ହିଁ ସେମାନଙ୍କୁ ବିଦାୟ ଦିଏ ସେ ।

ଯଦି ନାତୁଣୀଙ୍କୁ ଦେଖିବାକୁ ଭାରି ଇଚ୍ଛାହୁଏ ପାରୁଲ୍‌ର, ସେମାନେ ଆସିଲେ ଯେ ମନଟା ପୂରିଉଠେ ଏକଥା ପାରୁଲ୍‌ର ମୋହନ କି ଶୋଭନ ଜାଣନ୍ତି ନାହିଁ । ସେଥିପାଇଁ ସେମାନେ ଥରେହେଲେ ଭାବନ୍ତି ନାହିଁ ଯେ ପିଲାଙ୍କୁ ଟିକିଏ ମା'ଙ୍କ ପାଖକୁ ନେଇଯିବା ।

ଖାଲି ଶୋଭନ, ଝିଅଟା ତା'ର ଦେଖିବାକୁ ଅତିବେଶୀ ସୁନ୍ଦରୀ ହୋଇଛି ବୋଲି ଥରଟେ ଦେଖାଇବାକୁ ମା' ପାଖକୁ ନେଇଆସିଥିଲା । ମୋହନର 'ସାନ'ଟିକୁ 'ପକ୍ସ' ହେବାରୁ କିଛିଦିନ ପାଇଁ ନିଜର ବଡ଼ଟିକୁ ଖାଲି ଆଣି ରଖିଦେଇଯାଇଥିଲା ମା' ପାଖରେ । ପୁଅର ଆଇହେରିକା ସେତେବେଳେ ସପରିବାରରେ ଯାଇଥିଲେ ତୀର୍ଥକୁ ।

ମୋହନ ଥାଏ ଆସାନ୍‌ସୋଲ୍‌ରେ । ବେଶୀ କିଛି ଦୂର ନୁହେଁ । ଶୋଭନ ଅନେକ ଦୂରରେ ଥାଏ । ଶୋଭନର ଦୂରତ୍ୱ କ୍ରମଶଃ ବଢ଼ିଯାଉଛି । ମାଇଲର ହିସାବ ଦେଇ ସେ ଦୂରତ୍ୱକୁ ଆଉ ମପା ଯାଇପାରୁନି ।

ଅଥଚ ଆଗ ଶୋଭନ ହିଁ ମା'ର ବଡ଼ 'ନିକଟ'ର ଥିଲା । ପ୍ରଥମ କରି ଭଲ ଆଭା, ବଡ଼ କ୍ୱାର୍ଟର୍ ପାଇବାମାତ୍ରେ ମା'କୁ ନିଜ ପାଖକୁ ନେଇଯାଇଥିଲା । ଶୋଭନ କହିଥିଲା, ତମର ଆଉ ଏକୁଟିଆ ପଡ଼ି ରହିବା ଚଳିବନି ।

କିନ୍ତୁ ଶୋଭନର ଏହି ବୋକାଳିଆ ସେଣ୍ଟିମେଣ୍ଟ୍ ଶୋଭନର ସ୍ତ୍ରୀ ସହନ୍ତା କାହିଁକି ? ବରର ଏହି ଗେହ୍ଲାପଣିଆର ତାଳରେ ତାଳ ମିଳାଇବାକୁ ଗଲେ ତା'ର ନିଜର ଜୀବନର ସବୁ ତାଳ ବେତାଳ ହୋଇଯିବନି ? ସବୁ ଛନ୍ଦପତନ ହୋଇଯିବନି ?

ତାରା ଏହି ଛବି ପରି ସଜାଇଥିବା ଘରେ 'ଶାଶୁ' ବସ୍ତୁଟା ଗୋଟାଏ ଅଦ୍ଭୁତ ଛନ୍ଦପତନ ଛଡ଼ା ଆଉ କ'ଣ ?...... ଦି' ଚାରିଦିନ ପାଇଁ ଆସି ରହ, ଆଦର କରିବି, ଯତ୍ନ କରିବି, କାହାକୁ ବ୍ୟବହାର କହନ୍ତି ତା ଦେଖାଇଦେବି । କିନ୍ତୁ ଚେର ବଢ଼େଇବାକୁ ଚାହିଁଲେ ?

ଅଶ୍ୱତ୍ଥର ଚେରକୁ ଚେର ଅବସ୍ଥାରେ ହିଁ ବିନଷ୍ଟ କରିବାକୁ ପଡ଼େ ।

ଆଦରର ବିରାଡ଼ିକୁ ପ୍ରଥମ ରାତିରେ ହିଁ କାଟିବାକୁ ପଡ଼େ ।

ଶୋଭନର ସ୍ତ୍ରୀ ଏକଥା ଜାଣିଥିଲା ।

ଶୋଭନର ସ୍ତ୍ରୀ ତା'ର ଜାଣିଥିବା ବିଦ୍ୟାଟାକୁ ପ୍ରୟୋଗ କରିବାକୁ ଡେରି କରି ନ ଥିଲା ।

ହୁଏତ କିଛିଦିନ ଡେରି କରିଥାନ୍ତା, ହୁଏତ ଥରଟେ ସୁଦ୍ଧା ଶୋଭନତା-ଅଶୋଭନତାର ମୁହଁକୁ ଚାହିଁଥାନ୍ତା; ଯଦି ଶାଶୁ ତା'ର ସାଧାରଣ ବିଧବା ବୁଢ଼ୀ ପରି ଭଣ୍ଡାରଘର, ପୂଜାଘର ଭିତରେ ହିଁ ରହିଥାନ୍ତେ । ଯଦି କୃତୀ ପୁତ୍ରର ସ୍ତ୍ରୀ ସଙ୍ଗେ ଯେମିତି ସସମ୍ଭ୍ରମ ବ୍ୟବହାର କରିବାକୁ ହୁଏ ତା' କରିଥାନ୍ତେ, ଯଦି ଘୋଡ଼ାକୁ ଡେଇଁ ଘାସ ଖାଇବାର ପଦ୍ଧତିରେ ବୋହୂକୁ ଡେଇଁ ପୁଅ ସହିତ ବସି ଗପ କରିବା ଆରମ୍ଭ କରି ନ ଥାନ୍ତେ !

କିନ୍ତୁ ଶୋଭନର ନିର୍ବୋଧ ମା' 'ସାହେବ' ପୁଅକୁ ସାହେବ ଦୃଷ୍ଟିରେ ନ ଦେଖି ପୁଅ ଦୃଷ୍ଟିରେ ହିଁ ଦେଖିବାକୁ ଗଲେ । ଶୋଭନର ମା' ଭଣ୍ଡାରଘର ପୂଜା-ଘରର ଛାଇକୁ ସୁଦ୍ଧା ନ ଯାଇ ଡ୍ରଇଂରୁମ୍‌କୁ ଆସି ସୋଫାରେ ବସି ଖବର କାଗଜ ପଢ଼ିବାକୁ ଆରମ୍ଭ କରିଦେଲେ, ଉଲ୍ ବୁଣିବାକୁ ଆରମ୍ଭ କଲେ ।

ଅବଶ୍ୟ ଶୋଭନ ପାଇଁ ହିଁ ବୁଣିଲେ, କିନ୍ତୁ କିଏ ଚାହୁଁଛି ସେ ଜିନିଷ ? ବୋହୂ କ'ଣ ବୁଣିବା ଜାଣିନି ? ଆଉ ସେ ଜାଣିବାଟା ଜଣାଇ ନ ଥାନ୍ତା ?

ସେଇଥିପାଇଁ ପାରୁଲ୍ ପୁଅକୁ କହିଲା, କହିଲେ ତୁ ମତେ ମାରିବୁ ଶୋଭନ, ଗଙ୍ଗାତଡ଼ର ସେହି ବାରଣ୍ଡାଟା ପାଇଁ କିନ୍ତୁ ମୋ ମନଟା ଝୁରି ହେଉଛି । ମତେ ଟିକିଏ ସେଠି ଛାଡ଼ିଦେଇ ଆ ବାପା । ତୋ'ର ଛୁଟି ନ ଥିଲେ ତୋ'ର ଚପରାସୀହେରିକା କାହାକୁ ସାଙ୍ଗରେ ଦେଇ—

ଶୋଭନ ହୁଏତ ଭିତରେ ଭିତରେ ଅଳ୍ପ କ'ଣ ଜାଣିଥିଲା, ଶୋଭନ ହୁଏତ ଏକ ଅଦୃଶ୍ୟ ଉତ୍ତାପ ଭିତରେ ହିଁ କଟାଉଥିଲା, କିନ୍ତୁ ଅକସ୍ମାତ୍ ଏତେଦୂର ହେବ ସେଥିପାଇଁ ଜମା ପ୍ରସ୍ତୁତ ନ ଥିଲା । ମା'ର ଶକ୍ତି ଉପରେ ଆସ୍ଥା ଥିଲା ତା'ର ।

ଅତଏବ ଶୋଭନର ଅଭିମାନ ହେଲା ।

ହୁଏତ ଶୋଭନ ତା'ର ମା'ର ପ୍ରକୃତିର ବେଶୀ ଭାଗ ପାଇଛି । ସେଥିପାଇଁ ଶୋଭନ 'ନାଇଁ ନାଇଁ' କହିଲାନି । ଶୋଭନ ଖାଲି କହିଲା, ଆଜି ଯିବାକୁ ଚାହୁଁଛ ?

—କି କଥା ! ଆଜି କାହିଁକିରେ ! କାଲି କି ପଅରଦିନ ତୋର ସୁବିଧା ଦେଖି—

—ରହିବାଟା କ'ଣ ଏକବାରେ ଅସମ୍ଭବ ହେଲା ?

ଶୋଭନର ମା' ହାଲୁକା ଗଳାରେ ହସି କହିଲା, ବାଃ, ଦେଖୁଛି ତୁ ବହୁତ ରାଗିଯାଉଛୁ । କିନ୍ତୁ ସତରେ ତ ରେ, କେତେଦିନ ହେଲା ମୋର ଗଙ୍ଗା ଗଙ୍ଗା ବୋଲି ମନ ଡାକୁଛି ।

ଶୋଭନ କହିଲା, ଆଚ୍ଛା ଠିକ୍ ଅଛି ।

ଅର୍ଥାତ୍ ସବୁଠାରୁ ବେଶୀ ବେଠିକ ସମୟରେ ଯେଉଁ କଥାଟା ଲୋକେ କହନ୍ତି । 'ଠିକ୍ ଅଛି' – ଅର୍ଥାତ୍ 'ଠିକ୍ ନାହିଁ' ।

ପାରୁଲ୍‌ର ପୁଅ କ'ଣ ମା'କୁ ନିଷ୍ଠୁର ବୋଲି ଭାବିଲାନି ? ସେ କ'ଣ ଭାବିଲାନି– ମା' ମୋ ମନର ଦିଗଟାକୁ ଦେଖିଲେନି ? ମା'ଙ୍କର ଅହମିକାଟା ହିଁ ବଡ଼ ହେଲା ? ଜାଣେ ରେଖା ସେମିତି ନମ୍ର ନୁହେଁ, କିନ୍ତୁ କ'ଣ କରାଯିବ ? ସମସ୍ତେ କ'ଣ ସମାନ ହୁଅନ୍ତି ? ମୁଁ ତାକୁ ଧରି ଘର କରୁଛି ତ ?

ହୁଏତ ଶୋଭନର ମା' ପୁଅର ମୁହଁର ରେଖାରେ ଏହି ଭାଷା ପଢ଼ିପାରିଲା । କିନ୍ତୁ ସେ କହିବାକୁ ଗଲା ନାହିଁ, "ଆରେ ତୁ ଯେଉଁଟିକକ ଦେଖିପାରୁଛୁ, ସେହିଟିକକ ହିଁ ସବୁ ନୁହେଁ ।"

ଶୋଭନର ମା' ସମସ୍ତ ଅପରାଧର ବୋଝ ନିଜର ମୁଣ୍ଡ ଉପରକୁ ଟେକିଦେଇ ହସ ହସ ମୁହଁରେ ପୁଅର ଘରୁ ଚାଲିଆସିଲା । ଏହି ଅପସରି ଆସିବାଟା କ'ଣ ପାରୁଲ୍‌ର ଅପରାଧ ହେଲା ? ଅନାମିକା ଦେବୀଙ୍କ ସାନମଝିଆନାନୀର ? ମୋହନ – ଶୋଭନର ମା'ର ଅପରାଧ ହେଲା ?

ହଁ ଅପରାଧ ନିଶ୍ଚୟ ।

ପୁଅ-ବୋହୂଙ୍କ ଏକାନ୍ତ ଭକ୍ତିର ନୈବେଦ୍ୟକୁ ପାଦରେ ଠେଲି ଗୋଟାଏ ତୁଚ୍ଛା ମାନ ଅଭିମାନ ଧରି ଏମିତି ଟମଟମ ହୋଇ ଚାଲିଆସିବାଟା କ'ଣ ଅପରାଧ ନୁହେଁ ?

ଆଖପାଖ ସବୁ କ୍ୱାର୍ଟର୍‌ର ବାସିନ୍ଦାମାନେ ଏଇ ହଠାତ୍ ଚାଲିଯିବାଟାକୁ ଦେଖି ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ ପଚାରିବାକୁ ଯାଇ ଆହୁରି ଅଧିକ ଆଶ୍ଚର୍ଯ୍ୟ ହୋଇଗଲେ ।

ଦିନେ କୁଆଡ଼େ ବୋହୂ ଶାଶୁଙ୍କର ରାତିର ଆହାର ଘନକ୍ଷୀର ବା ରାବିଡ଼ି ପ୍ରସ୍ତୁତ କରି ରଖିଦେଇ ଯିବାକୁ ଭୁଲିଯାଇ ବୁଲିବାକୁ ଚାଲି ଯାଇଥିଲା । ତା'ବୋଲି ପୁଅର ଘର ଛାଡ଼ି ମଣିଷ ଚାଲିଯିବ ? ଛିଃ !

କିଏ କିଏ କହିଲେ– ହେଲେ ଦେଖିଲେ ତ ଠିକ୍ ଏଇଭଳି ବୋଲି ସେ ଜଣାପଡୁ ନ ଥିଲେ !

ରେଖା ମୁହଁର ରେଖାରେ ଗୋଟାଏ ଅପୂର୍ବ ବ୍ୟଞ୍ଜନ ଫୁଟାଇ କହିଲା – ମଣିଷର ବାହାରୁ ଯାହା ଦିଶେ, ସବୁତକ ସେଥିର ସତ ନୁହେଁ ।

– ଆଶ୍ଚର୍ଯ୍ୟ !

—ଆଶ୍ଚର୍ଯ୍ୟ କିଛି ହେଲେ ନାହିଁ, ବଡ଼ପୁଅ ଘରେ ମଧ୍ୟ ତ ଠିକ୍ ଏମିତି କରିଥିଲେ !

ଯେଉଁମାନେ ପାରୁଲ୍‌କୁ ଭଲ ପାଉଥିଲେ, ସେମାନଙ୍କର ମନ ଟିକିଏ କ୍ଷୁଣ୍ଣ ହେଲା, ଯେଉଁମାନେ ବାନ୍ଧବୀର ଶାଶୁଙ୍କୁ ବା ବନ୍ଧୁର ମା'ଙ୍କୁ ଭଲ ପାଇବା ଭଳି ହାସ୍ୟକର କଥା ନେଇ ମଥା ଘୂରାନ୍ତି ନାହିଁ, ସେଇମାନେ ଖାଲି ଟିକେ ନିନ୍ଦା କଲେ ।

ତା'ପରେ ଆଉ ଶୋଭନର ଘରେ ଶୋଭନର ମା'ଙ୍କର ଅସ୍ତିତ୍ୱର କୌଣସି ସ୍ମୃତି ରହିଲା ନାହିଁ । ଶୋଭନ ପାଇଁ ଅଧାବୁଣା ହୋଇଥିବା ସେହି ସୁଏଟରଟା ଅନେକ ଦିନ ପର୍ଯ୍ୟନ୍ତ ଟ୍ରଙ୍କ୍ ଉପରେ ପଡ଼ି ରହୁ ରହୁ କୁଆଡ଼େ ହଜିଗଲା ଯେମିତି !

ଶୋଭନର ଦାମିକା କ୍ୱାର୍ଟରରେ ସୁନ୍ଦର 'ଲନ୍' ଗେଞ୍ଜି-ଟ୍ରାଉଜର ପିନ୍ଧା ସାହେବମାନଙ୍କ ଓ ଅଣ୍ଟାରେ ଲୁଗାକାନି ଭିଡ଼ିଥିବା ମେମ୍ ସାହେବମାନଙ୍କର ଟେନିସ୍ କଲ୍ଲୋଳରେ ମୁଖରିତ ହୋଇଥିଲା । ଶୋଭନର ଖାଇବା ଟେବୁଲ୍ ପ୍ରାୟ ସବୁଦିନ ନିମନ୍ତ୍ରିତ ଅତିଥିଙ୍କ ଅଭ୍ୟର୍ଥନାର ଆୟୋଜନରେ ପ୍ରଫୁଲ୍ଲିତ ହୋଇ ରହିଲା, ଶୋଭନର ଘର ଯେତେବେଳେ ସେତେବେଳେ ରେଖାର ଉଚ୍ଛ୍ୱସିତ ହସରେ ମୁଖରିତ ହେବାକୁ ଲାଗିଲା ।

ତେବେ ଶୋଭନ ଆଉ ତା' ଭିତରର ଗୋଟିଏ ବିଷଣ୍ଣ ଶୂନ୍ୟତାକୁ ଲାଳନ କରି କରି ଦୁଃଖ ପାଇବାକୁ ଯିବ କାହିଁକି ?

ହୃଦୟ ଭାରାବନତ ଜନନୀ, ଆଉ ଅଭିମାନ ଉତପ୍ତ ସ୍ତ୍ରୀ, ଏହି ଦୁଇଜଣଙ୍କ ମଝିରେ ଅପରାଧୀର ଭୂମିକା ଧରି ପଡ଼ିରହିଲେ ସୁଖ ବା ମିଳିବ କେଉଁଠାରୁ ? ଗୋଟାକୁ ହେଲେ ଜୀବନରୁ ଓହ୍ଲାଇ ଦେବାକୁ ପଡ଼ିବ ନିଶ୍ଚେ ।

॥ ୫ ॥

ଫେରିବା ବାଟରେ ଟ୍ରେନ୍‌ର ଝରକାରେ ମୁହଁ ରଖି ବାହାରର ଗଭୀର ଅନ୍ଧକାର ଆଡ଼କୁ ଚାହିଁ କିଛିକ୍ଷଣ ଭାବିଥିଲା ପାରୁଲ୍, ଧାରଣା ଥିଲା ଯୁଗର ନିୟମଟା ଅନେକାଂଶରେ ପାହାଚର ନିୟମ ପରି, ପ୍ରତ୍ୟେକ ଉଠାଣିରେ ପରିବର୍ତ୍ତିତ ହୋଇ ହୋଇ ଚାଲେ...... ତା' ହେଲେ କ'ଣ ମୋର ଅନ୍ୟମନସ୍କତାର ଅବକାଶରେ ଗୋଟିଏ ଯୁଗ ତା'ର କାମ ସାରିଦେଇ ଚାଲିଯାଇଛି, ମୋର ଖିଆଲ ହୋଇନି ?

ନ ହେଲେ ସେ ଯୁଗଟା ଗଲା କୁଆଡ଼େ ?

ମୋ ଯୁଗଟା ?

ମୁଁ ମୋର ମା'ମାନଙ୍କୁ ଦେଖିଛି– ଦେଖିଛି ଦେଠେଇ, ଖୁଡ଼ୀମାନଙ୍କୁ ଓ ପିଉସୀମାନଙ୍କୁ, ଦେଖିଛି ମୋ ଶାଶୁ ଓ ଖୁଡ଼ୀଶାଶୁମାନଙ୍କୁ । ଉପରବାଲାଙ୍କ ଯନ୍ତାରେ ନିଷ୍ପେଷିତ ସେହି ଜୀବନଗୁଡ଼ିକ ଖାଲି ଅପଚୟ ହିସାବରେ ରଖି ଚାଲି ଯାଇଛନ୍ତି...... ଆମେ ମଧ ଆମର ବଧୂ ଜୀବନରେ ସେହି ଅପଚୟର ଦଉଡ଼ିକୁ ଟାଣି ଟାଣି ଚାଲିଆସିଛୁ, ଆଉ ଭାବିଛୁ ଆମମାନଙ୍କ 'କାଳ' ଆସିବାକୁ ବୋଧହୁଏ ଏବେ ମଧ ବାକି ଅଛି । ତା' ଆସିବାର ପଦଧ୍ୱନି ଶୁଣିବା ଆଶାରେ କାନ ପାତି ବସି ରହୁ ରହୁ ଦେଖୁଛୁ ଆମେମାନେ କେତେବେଳେ ଯେପରି ବାତିଲ୍‌ର ଘରେ ଆଶ୍ରୟ ପାଇ ଯାଇଛୁ !

ସେ 'କାଳ'ଟା ତା'ହେଲେ ଗଲା କୁଆଡ଼େ ?

ଯାହା ପାଇଁ ଆମର ଆଶା ଥିଲା, ତପସ୍ୟା ଥିଲା, ସ୍ୱପ୍ନ ଥିଲା ?

ବର୍ତ୍ତମାନ ଯେଉଁମାନଙ୍କର 'କାଳ' ସେମାନେ ଏକାବେଳେ ନୂଆ, ଏକାବେଳେ ଅପରିଚିତ । ସେମାନଙ୍କ ପାଖକୁ ଯାଇ ପଚାରିହେବନି– ହଁ ଗୋ, ସେହି 'କାଳ'ଟା କୋଉ ଛିଦ୍ରବାଟେ ଗଳିପଡ଼ିଲା ? ଦେଖିପାରୁନି ତ ? ମୋ ତପସ୍ୟାଟା ତା'ହେଲେ ଖାଲି ବୃଥା ହୋଇଗଲା ?

ଆମେ ସ୍ତ୍ରୀଲୋକମାନେ ଲଢ଼େଇ କରିଥିଲୁ–

ମନେ ମନେ ପାରୁଲ୍ ଉଚ୍ଚାରଣ କରିଥିଲା, ଅନ୍ୟାୟର ବିରୋଧରେ, ଉତ୍ପୀଡ଼ନର ବିରୋଧରେ, ପରାଧୀନତାର ବିରୋଧରେ– ମୁଁ, ଆଉ ମୋର ପୂର୍ବଜା ମାନେ ଲଢ଼େଇ କରିଥିଲୁ ।...... ସେହି ଲଢ଼େଇରେ ତା' ହେଲେ ଆମମାନଙ୍କର ଜୟ ହୋଇଛି । ସ୍ତ୍ରୀଲୋକମାନଙ୍କ ହାତକୁ ସବୁ ଶକ୍ତି ଚାଲିଆସିଛି । ଆସିଛି ସବୁ ଅଧିକାର ।

......ଖାଲି ପ୍ରକୃତିର ଅସତର୍କତା ଯୋଗୁଁ ଆମମାନଙ୍କର ଭାଗଟା ପାଇଲୁନି । ଆମର ଯୁଗଟା କେତେବେଳେ ଖସିଯାଇ ପଡ଼ିଗଲା !

ତା'ହେଲେ ଆଉ କ'ଣ କରିବି ?

ତାହେଲେ ପ୍ରତ୍ୟାଶାର ପାତ୍ରଟାକୁ ଧରି ଆଉ ବୋହି ବୁଲିବି କାହିଁକି ?

ଝରକାଟା ବନ୍ଦ କରି ଖଣ୍ଡେ ବହି ଖୋଲି ବସିଥିଲା ପାରୁଲ୍, ତା' ମୁହଁରେ ଫୁଟିଉଠିଥିଲା ଏକ ସୂକ୍ଷ୍ମ ହସ । ଭାବିଥିଲା, ଏ ଯୁଗର ନାଟକରେ ତେବେ

ଆମମାନଙ୍କର ଭୂମିକା କ'ଣ ? ହଣା ହୋଇଯାଇଥିବା ସୈନିକର ? ଷ୍ଟେଜ୍ ଉପରକୁ ଆସିବା ଆଗରୁ ହିଁ ଯେଉଁମାନଙ୍କୁ ମଲାପରି ପଡ଼ି ରହିବାକୁ ହୁଏ !

କିନ୍ତୁ ଏସବୁତ ଅନେକଦିନ ଆଗର କଥା । ସେତେବେଳେ ତ ଶୋଭନର ସେହି 'ଡଲ୍' କଣ୍ଢେଇ ଭଳି ଝିଅଟା ଜନ୍ମ ହୋଇ ନ ଥିଲା । ଯାହାକୁ ସାଙ୍ଗରେ ଧରି ଆସି ସେଥର ଶୋଭନ ଦେଖାଇ ଦେଇଗଲା ଆହ୍ଲାଦରେ । ଗୌରବରେ ଉଦ୍‌ଭାସିତ ହୋଇ । ଝିଅର ଅଲୌକିକ ବୁଦ୍ଧିମତ୍ତାର ପରିଚୟ ଦେଇ କେତେ ବକର ବକର ହେଲା ।

ଝିଅଟାକୁ ଦେଖି ସତରେ ପାରୁଲ୍‌ର ବୁକୁ ପୂରି ଉଠିଥିଲା । ମନେ ହୋଇଥିଲା ଏଭଳି ଏକ ଅନିନ୍ଦ୍ୟସୁନ୍ଦର ବସ୍ତୁର ଅଧିକାରୀ ହୋଇପାରିବାଟା କି ସୌଭାଗ୍ୟର କଥା !

କିନ୍ତୁ ସେମାନେ ଚାଲିଗଲାବେଳେ ତ କାହିଁ କହିଲାନି— ଆଉଥରେ ଆଣିବୁରେ । ଚାଲିଯିବାର ଏତେଦିନ ଭିତରେ ତ କାହିଁ ଚିଠିରେ ଅନୁରୋଧ ଜଣାଇ ନାହିଁ, "ଆଉଥରେ ଦେଖିବାକୁ ଭାରି ଇଚ୍ଛା ହେଉଛି ରେ !"

ଶୋଭନ ନିଜେ ମନକୁ ମନ ଝିଅର ନୂଆ ନୂଆ ଅବସ୍ଥାର ଆଉ ବୟସର ଫଟୋ ପଠାଏ ମା' ପାଖକୁ । ସେଥିରୁ ହିଁ ପାରୁଲ୍ ଜାଣିଛି ଝିଅଟା ଏବେ ୟୁନିଫର୍ମ ପିନ୍ଧି ସ୍କୁଲକୁ ଯିବାକୁ ଆରମ୍ଭ କରିଛି ।

ସୁଖରେ ରହନ୍ତୁ, ଭଲରେ ରହନ୍ତୁ । ତେବେବି ତ ଏଇ ସ୍ନେହଟିକକ ମା' ପାଇଁ ରଖିଛି ଶୋଭନ । ପାରୁଲ୍ ସେମାନଙ୍କ ପାଖରେ କୃତଜ୍ଞ ।

ଏ ବାରଣ୍ଡାଟା ପାଇଁ ତା'ର ପରଲୋକଗତ ସ୍ୱାମୀଙ୍କ ପ୍ରତି ମଧ୍ୟ କୃତଜ୍ଞ ପାରୁଲ୍ । ଏଠାରେ— ଯେତେବେଳେ ନଇଁ ଆସୁଥିବା ଦି'ପହରର ଆଲୁଅ ମୁହଁରେ ବୋଳିହୋଇ ଆକାଶ ଆଡ଼କୁ ଚାହିଁ ଚାହିଁ ଭାବୁଥିଲା, କି ଆଶ୍ଚର୍ଯ୍ୟ ତୁଳନା କବି ରଖିଯାଇଛନ୍ତି !

'ହେଇଟି ଯେଉଁଠି ଜଳୁଛି ସନ୍ଧ୍ୟାର କୂଳେ ଦିନର ଚିତା ।'

ଦିନର ଚିତା ! କି ଅଭାବନୀୟ ମୌଳିକତା ଆଗ କ'ଣ କେହି କେବେ ଦେଖିଲା ଏ 'ଚିତା'କୁ ?

ବହୁତ ଦିନ ତଳେ ପଢ଼ିଥିବା, ମୁଖସ୍ଥ କରିଥିବା ଏ କବିତାଟା ହିଁ ହଠାତ୍ ଯେପରି ନୂତନ ଏକ ଅର୍ଥ ବହନ କରି ଆସି ଠିଆହୋଇଛି, ସେ ଅର୍ଥକୁ ଯେପରି କେଉଁଠି ମିଳାଉଛି ପାରୁଲ୍, ସେତିକିବେଳେ ଆସିଲା ଅନାମିକା ଦେବୀଙ୍କର ଚିଠିଟା ।

'ବକୁଳର ଖାତାଟା ମୁଁ ଖୋଜିପାଉନି, ତୁ ଖୋଜି ଦେଖିବୁ ।'

ବକୁଳର ସାନମଝିଆନାନୀକୁ କିନ୍ତୁ ଖୋଜି ଦେଖିବାକୁ ପଡ଼େନି । ତା'ରି ସିନ୍ଦୁକରେ ସବୁ ରହିଥାଏ । କିଏ ଜାଣିଛି ନାନୀର ସିନ୍ଦୁକଟା କେତେ ବଡ଼ !

ପାରୁଲ୍ ଚିଠିଟାକୁ ହାତମୁଠାରେ ଚିପିଧରି ମନେ ମନେ କହିଲା, ଅଛି ମୋ ପାର୍କରେ ଅଛି, ତେବେ ସବୁତକ ନୁହେଁ, ଅନେକାଂଶ ଅଛି । କିନ୍ତୁ ମୁଁ ସେଇଟାକୁ ବାହାର କରି କ'ଣ କରିବି ? ମୁଁ କ'ଣ ଲେଖିପାରେ ?

ମଝିଆନାନୀ ଲେଖିପାରେନି । କବିତା ଲେଖିପାରେ । ଗଦ୍ୟ ନୁହେଁ । ସେଇଥିପାଇଁ ମନେ ମନେ ଉଚ୍ଚାରଣ କରେ, "ମୁଁ ଖୋଜି ପାଇ କ'ଣ କରିବି ?"

ତା'ପରେ କହିଲା— ବକୁଳ କହିଥିଲା ନିଜର କଥା ଆଗ କହିବା କଥା ନୁହେଁ । ପ୍ରଥମେ ପିତାମହୀ ପ୍ରପିତାମହୀଙ୍କ ଋଣ ସୁଝିବାକୁ ପଡ଼େ ।...... ସେ ଋଣ ତା'ହେଲେ ସୁଝୁନି କାହିଁ ବକୁଳ ? ନା କେତେବେଳେ ସୁଝିଛି, ତା'ମଧ୍ୟ ମୋର ଅସତର୍କତା ଯୋଗୁଁ ଆଖିରେ ପଡ଼ିନି ?

॥ ୬ ॥

ଉତ୍ତରବଙ୍ଗର ସାହିତ୍ୟ ସମ୍ମିଳନୀର ଆୟୋଜନ ଶୋଚନୀୟ ଭାବେ ବ୍ୟର୍ଥ ହେଲା ।

'ତିନିଦିନ ବ୍ୟାପୀ ଅଧିବେଶନ'ର ପ୍ରଥମ ଦିନରେ ହିଁ ଅଧିବେଶନ ମଝିରେ ପ୍ରଧାନ ଅତିଥିଙ୍କ ଭାଷଣକୁ ଉପଲକ୍ଷ୍ୟ କରି ଏକ ଉଦ୍ଦାମ ଗଣ୍ଡଗୋଳ ଆରମ୍ଭ ହୋଇ ସଭା ପଣ୍ଡ ହୋଇଗଲା ।

ଆଉ ଯେ ଖାଲି ସେଦିନ ପାଇଁ ଶେଷ ହେଲା ତା' ନୁହେଁ, ଆଗାମୀ କାଲି ଆଉ ପଅରଦିନର ଆଶା ମଧ୍ୟ ରହିଲା ନାହିଁ । କାରଣ ପରିସ୍ଥିତି ଶୋଚନୀୟ ତ ନିଶ୍ଚୟ, ଆଶଙ୍କାଜନକ ମଧ୍ୟ । ଏହି ସାମାନ୍ୟ ସମୟ ଭିତରେ ସଭାର ସାଜସଜ୍ଜା ଭାଙ୍ଗିଭୁଙ୍ଗି ପୋଡ଼ି ଏମିତି ନାରଖାର ହୋଇଯାଇଛି ଯେ, ସେଥିରୁ ପରିଷ୍କାର ଦେଖାଯାଉଛି ସମ୍ମିଳନୀର ଭବିଷ୍ୟତ ଲଲାଟ ଲିପି ।

ଭୟଙ୍କର ହୋ ହା କମିଗଲା ପରେ ଦେଖାଗଲା ସଭାରେ ସଜ୍ଜା ହୋଇଥିବା ଫୁଲଦାନି ଭାଙ୍ଗିଛି, ମଙ୍ଗଳ ଘଟ ଭାଙ୍ଗିଛି, ବରେଣ୍ୟ ମନୀଷୀମାନଙ୍କର ଫଟୋଗୁଡ଼ିକ ଭାଙ୍ଗିଛି, ସେକ୍ରେଟେରୀଙ୍କ ଘରୁ ପ୍ରଧାନ ଅତିଥି ଆଉ ଉଦ୍‌ବୋଧକଙ୍କ ପାଇଁ ଅଣାଯାଇଥିବା ଚଉକି ଟେବୁଲ ଭାଙ୍ଗିଛି ଏବଂ ଅଭ୍ୟର୍ଥନା ସମିତି ସଭାପତିଙ୍କ ନାକର ହାଡ଼ ଭାଙ୍ଗିଛି ।

ପ୍ୟାଣ୍ଡେଲ୍‌ର ବାଉଁଶ, ଡେକୋରେଟର୍‌ର ପର୍ଦ୍ଦା, ଚାନ୍ଦୁଆ, ସ୍ଥାନୀୟ ଏକ ଶିଳ୍ପୀଙ୍କର ବହୁଯତ୍ନରେ ତିଆରି ମଣ୍ଡପର ରୂପସଜ୍ଜା ଏବଂ ପରୋକ୍ଷରେ, ସମ୍ମିଳନୀ ଆହ୍ୱାନକାରୀମାନଙ୍କର କପାଳ ପୋଡ଼ିଛି । ଏହି ସମ୍ମିଳନୀକୁ ସାଫଲ୍ୟମଣ୍ଡିତ କରିବାକୁ ଅର୍ଥ ଏବଂ ସାମର୍ଥ୍ୟ ତ କମ୍ ବ୍ୟୟ କରି ନ ଥିଲେ ସେମାନେ ?

ଆୟୋଜନରେ ଟିକିଏ ହେଲେ ତ୍ରୁଟି ନ ଥିଲା । ବିଶେଷ ଆମନ୍ତ୍ରିତମାନଙ୍କର ସମୟ ଓ ଶ୍ରମ ବଞ୍ଚାଇବାକୁ ସେମାନଙ୍କର ଆସିବା ପାଇଁ ଆକାଶଯାନର ବ୍ୟବସ୍ଥା କରିଥିଲେ ଏମାନେ, ଆକାଶଠାରୁ ଭୂମିଷ୍ଠ ହେଲାମାତ୍ରେ ହୁଳହୁଳି ଓ ଶଙ୍ଖଧ୍ୱନିର ବ୍ୟବସ୍ଥା କରିଥିଲେ, ମାଳା ଚନ୍ଦନ ତିଳକରେ ଭୂଷିତ କରି ସସମ୍ମାନରେ ମଟରରେ ବସାଇ ତାଙ୍କର ବିଶ୍ରାମ ନିକେତନକୁ ନେଇଯାଇଥିଲେ ।

ସେମାନଙ୍କର ଶ୍ରମ ହୋଇ ନ ଥିଲେ ମଧ୍ୟ ଶ୍ରମ ଅପନୋଦନର ପ୍ରଚୁର ବ୍ୟବସ୍ଥା ଥିଲା, ଆଉ ତା' ସଙ୍ଗେ ଥିଲା କୃତକୃତାର୍ଥର ଭଙ୍ଗୀ ।

ବଙ୍ଗ ସାହିତ୍ୟର ଏହି ଶ୍ରେଷ୍ଠ ଶ୍ରେଷ୍ଠ ଦିଗପାଳଗଣ ଯେ ନିଜ ନିଜର ବହୁ ମୂଲ୍ୟବାନ ସମୟ ବ୍ୟୟ କରି ଉତ୍ତର-ବଙ୍ଗର ଏହି ସାହିତ୍ୟ-ସମ୍ମିଳନୀକୁ ଗୌରବାନ୍ୱିତ କରିବାକୁ ଆସିଛନ୍ତି, ଏଥିରେ ସ୍ଥାନୀୟ ଆହ୍ୱାନକାରୀମାନଙ୍କର ଯେପରି କୃତଜ୍ଞତାର ସୀମା ନାହିଁ !

ଅବଶ୍ୟ ପ୍ରଧାନ ଅତିଥି ହିଁ ହେଉଛନ୍ତି ମଧ୍ୟମଣି, ବାକି ସମସ୍ତେ ମଧ୍ୟ ସଙ୍ଗଗୁଣରେ ପ୍ରାପ୍ୟର ଅତିରିକ୍ତ ହିଁ ପାଇଛନ୍ତି । ଅନ୍ତତଃ ଅନାମିକା ଦେବୀ ସେଇୟା ଭାବିଥିଲେ— ଏ ନୈବେଦ୍ୟ ଅମଳେନ୍ଦୁ ଘଟକଙ୍କ ପାଇଁ— ଆମେ 'ସର୍ବଦେବତା'ମାନଙ୍କ ଭିତରୁ ଜଣେ ଜଣେ ।

ହଁ ସତ୍‌ସଙ୍ଗରେ ସ୍ୱର୍ଗବାସ, ଏଇଟା ତ ଶାସ୍ତ୍ରର ବଚନ ।

ଅନାମିକା ଦେବୀ ନିଜେ ଏକଥା ଭାବିଲେ ମଧ୍ୟ ସ୍ଥାନୀୟମାନେ ଅମଳେନ୍ଦୁ ଘଟକଙ୍କଠାରୁ ତାଙ୍କର କିଛି କମ୍ ସ୍ତବଗାନ କରୁ ନ ଥିଲେ । ବିଶେଷତଃ ମହିଳା-ପାଠିକାକୁଳ । ଅନାମିକା ଦେବୀଙ୍କ ଲେଖାରେ ସେମାନେ କୁଆଡ଼େ ଅଭିଭୂତ, ବିଚଳିତ, ବିଗଳିତ । ସେ କୁଆଡ଼େ ଏକାବେଳେ ସ୍ତ୍ରୀଲୋକଙ୍କ ହୃଦୟର କଥା ବୁଝି ଲେଖନ୍ତି । ସ୍ତ୍ରୀଲୋକମାନଙ୍କର ସୁଖ-ଦୁଃଖ, ବ୍ୟଥା-ବେଦନା, ଆଶା-ହତାଶା, ବ୍ୟର୍ଥତା-ସାର୍ଥକତା ଅନାମିକା ଦେବୀଙ୍କ ଲେଖନୀରେ ଯେପରି ଫୁଟେ ସେମିତି ବୋଧହୁଏ କାହାର ନୁହେଁ ।

ଉଚ୍ଛ୍ୱାସର ଫେଣଟାକୁ ବାଦ୍ ଦେଲେ ମଧ୍ୟ, ଏହାର କିଛି ଯେ ସତ୍ୟ, ସେକଥା ଅନାମିକା ଦେବୀ କଲିକତାର ବାହାରେ ସୁଦୂର ମଫସଲରେ ସଭା କରିବାକୁ

ଆସି ଅନୁଭବ କରି ପାରୁଥିଲେ । ଯେଉଁମାନେ ଦୂରରୁ ଖାଲି ଲେଖା ଭିତରଦେଇ ତାଙ୍କୁ ଚିହ୍ନିଛନ୍ତି, ଭଲପାଇଛନ୍ତି, ସେମାନଙ୍କ ସେ ସ୍ନେହର ଏକାନ୍ତ ମୂଲ୍ୟ ଦିଅନ୍ତି ଅନାମିକା ଦେବୀ ।

ସେ ଥାଆନ୍ତି କଲିକତାରେ, ସେଠାରେ ମଧ ଅଜସ୍ର ପାଠିକା, କିଏ ବା ତାଙ୍କୁ ଦେଖିବାକୁ ଆସନ୍ତି ? କିନ୍ତୁ ଏସବୁ ଜାଗାରେ– ଯେମିତି ଏମାନେ ତାଙ୍କୁ ଖାଲି ଥରଟିଏ ମାତ୍ର ଆଖିରେ ଦେଖିବାକୁ ପାଗଳ !

ଏହି ଆଗ୍ରହ-ଉତ୍ସର ମୁହଁଗୁଡ଼ିକ ଭିତରେ ଅନାମିକା ଦେବୀ ତାଙ୍କର ଜୀବନବ୍ୟାପୀ ସାଧନାର ସାର୍ଥକତା ଖୋଜି ପାଆନ୍ତି । ମନେ ମନେ କହନ୍ତି, ହଁ ମୁଁ ତମରି ଲୋକ । ତମର ନିଭୃତ ଅନ୍ତରର କଥାଗୁଡ଼ିକ ଖୋଲି ଧରିବା ପାଇଁ ମୁଁ କଲମ ଧରିଛି । ମୁଁ ଯେ ଦେଖୁଛି ଏ ଭୟଙ୍କର ପ୍ରଗତିର ହାଉଆ ଭିତରେ ମଧ ଅନେକ ଜାଗାରେ ବନ୍ଦୀ ହୋଇ ରହିଛି ସେହି ଚିରକାଳର ଦୁର୍ଗତିର ରୁଦ୍ଧଶ୍ୱାସ । ଦେଖିପାରୁଛି ଆଜି ମଧ ଲକ୍ଷ ଲକ୍ଷ ଝିଅ, ସେହି ଆଲୋକହୀନ, ପବନହୀନ ଅବରୋଧ ମଧରେ ରହିଛନ୍ତି । ଏମାନଙ୍କ ବାହାରର ଅବଗୁଣ୍ଠନ ହୁଏତ ମୋଚନ ହୋଇଛି, କିନ୍ତୁ ଭିତରର ଶୃଙ୍ଖଳ ଏବେ ମଧ ଅତୁଟ ରହିଛି ।

କଲିକତାର ବାହାରକୁ ଆସିଲେ ଅନାମିକା ଦେବୀ ଖୁସୀ ହୁଅନ୍ତି । କିନ୍ତୁ ଏଥରର ପରିସ୍ଥିତି ଭିନ୍ନ ହୋଇଗଲା ।

ଅବଶ୍ୟ ସଭାରେ ଆସି ବସିବା ପର୍ଯ୍ୟନ୍ତ ଯଥାରୀତି ସୁନ୍ଦର ସୌଷ୍ଠବଯୁକ୍ତ ପରିବେଶ ଥିଲା । ଏୟାରପୋର୍ଟରୁ ଅଲଗା ଅଲଗା ଗାଡ଼ିରେ ଉଦ୍‌ବୋଧକ, ପ୍ରଧାନ ଅତିଥି ଏବଂ ସଭାନେତ୍ରୀଙ୍କୁ ଅଲଗା ଅଲଗା ଜାଗାରେ ପ୍ରତିଷ୍ଠିତ କରାଯାଇଥିଲା । ସଭାନେତ୍ରୀଙ୍କୁ ଅଭ୍ୟର୍ଥନା ସମିତିର ସଭାପତିଙ୍କ ଘରେ, ଉଦ୍‌ବୋଧକଙ୍କୁ ଗୋଟିଏ ବିଶେଷ ସ୍କୁଲ ଘରେ ଏବଂ ପ୍ରଧାନ ଅତିଥିଙ୍କୁ ସ୍ୱୟଂ ସେକ୍ରେଟେରୀଙ୍କ ଘରେ ।

ଅଲଗା ଅଲଗା କରି ରଖିବାର କାରଣ ହେଉଛି ସମାନଭାବେ ଯତ୍ନ କରିପାରିବାର ସୁଯୋଗ ପାଇବା । ହୁଁ, ସାରାଦିନ ଯତ୍ନର ସମୁଦ୍ରରେ ବୁଡ଼ି ରୁଦ୍ଧନିଃଶ୍ୱାସ ହୋଇଯାଉଥିଲେ ଅନାମିକା ଦେବୀ । ଘରର ବୋହୂଟି ହେଉଛି କଲିକତାର ଝିଅ, ସେ ଏତେ ବିଗଳିତ ଚିତ୍ତରେ ପାଖରେ ପାଖରେ ବୁଲୁଥିଲା, ଯେମିତି ତା'ର ପିତ୍ରାଳୟର ବାର୍ତ୍ତା ହିଁ ନେଇ ଆସିଛନ୍ତି ଅନାମିକା ଦେବୀ ।

ଏଥିପୂର୍ବରୁ ଅନାମିକା ଦେବୀ କେବେ ଉତ୍ତର-ବଙ୍ଗକୁ ଆସି ନ ଥିଲେ, ବେଶ ଭଲ ଲାଗୁଥିଲା । ଅଧିବେଶନର କାମ ସରିଲେ ଯଥାରୀତି ଆମନ୍ତ୍ରିତ ଅତିଥିମାନଙ୍କୁ

ନେଇ ବହିର୍ଦ୍ଦୃଶ୍ୟ ଦେଖାଇ ଆଣିବାର ବ୍ୟବସ୍ଥା ଅଛି । ସେ କଥାଟା ମଧ୍ୟ ଭଲ ଲାଗୁଥିଲା ।

ମୋଟକଥା, କଲିକତାରୁ ଆସିବାବେଳେ ଯେଉଁ କ୍ଲାନ୍ତି ଆଉ ଅବସାଦ ଭଳି ଗୋଟାଏ ଅନିଚ୍ଛା ଗ୍ରାସ କରିଥିଲା, ଏଠି ଆସି ଠିଆହେବା ସଙ୍ଗେ ସଙ୍ଗେ ସେଇଟା ଅନ୍ତର୍ହିତ ହୋଇ ସବୁତକ ଭଲ ଲାଗୁଥିଲା । ଆଉ ଅବିରତ ଗୋଟାଏ କଥା ମନେହେଉଥିଲା— କେତେ ଆଗ୍ରହ ଆଉ ଉତ୍ସାହ ଥିଲେ ଏଭଳି ହରିଦ୍ୱାର—ଗଙ୍ଗାସାଗରକୁ ଏକ କରିଦେଇ ଗୋଟିଏ ସମ୍ମିଳନୀର ଆୟୋଜନ କରିବା ସମ୍ଭବ !

ସେହି ଆୟୋଜନ ଭୟଙ୍କର ଏକ ନିଷ୍ଠୁରତାରେ ନାରଖାର ହୋଇଗଲା । ନିଷ୍ଠୁରତା କାହାର ? ମଣିଷର ? ନା-ଭାଗ୍ୟର ? ଗୋଳମାଳ ଆରମ୍ଭ ହେଉ ହେଉ ସଂପାଦକ ଏବଂ ସ୍ୱୟଂ ଅଭ୍ୟର୍ଥନା ସମିତିର ସଭାପତି ମଧ୍ୟ ଜଣ ଜଣ କରି ମାଇକ୍‌ରେ ମୁହଁ ରଖି ଅମାୟିକ କଣ୍ଠରେ କରଯୋଡ଼ି ପ୍ରାର୍ଥନା କରିଥିଲେ— ଆପଣମାନେ କ୍ଷାନ୍ତ ହୁଅନ୍ତୁ, ଆପଣମାନେ ଶାନ୍ତ ହୁଅନ୍ତୁ । ଆପଣମାନଙ୍କର ଯାହା ବକ୍ତବ୍ୟ ତା' କହିବାକୁ ସୁଯୋଗ ଦିଆଯିବ ଆପଣଙ୍କୁ । ପ୍ରତିନିଧି ସ୍ଥାନୀୟ କହି ଉଠିଆସନ୍ତୁ ମଞ୍ଚ ଉପରକୁ ।

କିନ୍ତୁ ସେ ଆବେଦନ କାମରେ ଲାଗିନି । ଥରଟେ ବନ୍ଧ ଭାଙ୍ଗିଗଲେ ଉଦ୍ଦାମ ଜନସ୍ରୋତକୁ କିଏ ବାଧାଦେଇ ପାରିବ ?

ପ୍ରଧାନ ଅତିଥିଙ୍କ ଭାଷଣର ସ୍ୱରରେ କ୍ଷିପ୍ତ ହୋଇ ଯେଉଁମାନେ ସଭାରେ ଟେକାଟିଏ ଫୋପାଡ଼ି ଚିତ୍କାର କରି ଉଠିଥିଲେ— ବନ୍ଦ କରି ଦିଆଯାଉ, ବନ୍ଦ କରି ଦିଆଯାଉ, ଏକଥା ଚଳିବନି, ତାଙ୍କଛଡ଼ା ତ ଆହୁରି ଅନେକ ଥିଲେ । ଯେଉଁମାନଙ୍କର ବକ୍ତବ୍ୟ ମଧ୍ୟ ନାହିଁ, ପ୍ରତିବାଦ ମଧ୍ୟ ନାହିଁ, ଅଛି ଖାଲି ଦୁର୍ଦ୍ଦାନ୍ତ ମଜା ଦେଖିବାର ଉନ୍ମାଦ ଉଲ୍ଲାସ ।

ଏମାନେ ହିଁ ଭାଙ୍ଗିବାର ଓ ଯୋଡ଼ିବାର ଭାର ଗ୍ରହଣ କରିଥିଲେ । ହୁଏତ ସେମାନେ ସବୁବେଳେ ସେଇୟା କରନ୍ତି । ଏ ଦାୟିତ୍ୱ ସେମାନେ ହିଁ ନିଅନ୍ତି ।

ସାଦା-ପୋଷାକ ପିନ୍ଧା ପୁଲିସ୍ ପରି ଏମାନେ ଶାନ୍ତ-ଚେହେରାରେ ସବୁଠାରେ ବିରାଜ କରନ୍ତି । ପ୍ରୟୋଜନ ନ ହେଲେ ହୁଏତ ଦିବ୍ୟ ଭାବରେ ଭଦ୍ରମୁଖରେ ମଗ୍ନ ହୋଇଯାଇ ଉପଭୋଗ କରନ୍ତି ରବୀନ୍ଦ୍ର ସଙ୍ଗୀତ ଅଥବା ଯନ୍ତ୍ରସଙ୍ଗୀତରେ ତାଳ ଦିଅନ୍ତି । ଅତି ବେଶୀ ହେଲେ କୌଣସି ଗାୟିକାଙ୍କ ଗୀତଟା ଭଲ ଲାଗିଲେ, ଭିଡ଼ ଭିତରୁ ଆଉ ଗୋଟିଏ ହେଉ ବା ନାନୀ— କହି ଚିତ୍କାର କରି ଝପ୍‌କିନା ପୁଣି ବସିପଡ଼ନ୍ତି । ଯାଠାରୁ ଅଧିକ ନୁହେଁ ।

କିନ୍ତୁ ଦରକାର ହେଲେ ? ବନ୍ଧ ଭାଙ୍ଗିଗଲେ ? ମୁହୂର୍ତ୍ତକରେ ଏମାନଙ୍କ କର୍ତ୍ତବ୍ୟବୋଧ ସଜାଗ ହୋଇଯାଏ । ଏମାନେ ସେହି ଭଙ୍ଗା ବନ୍ଧକୁ ଆହୁରି ଭାଙ୍ଗି ବନ୍ୟାର ସ୍ରୋତକୁ ଘର ଅଗଣାକୁ ଡାକିଆଣନ୍ତି । ରେଲ୍‌ୱେ ଷ୍ଟେସନ୍‌ର କୁଲି ପରି ନିଜ ଭିତରେ ଗୋଳମାଳ ଉଠାଇ ଠେଲାଠେଲି, କହୁଣୀ ମରାମରି କରି ଆଗେଇ ଯାଆନ୍ତି ଚଉକି ଭାଙ୍ଗିବାକୁ, ଟେବୁଲ ଭାଙ୍ଗିବାକୁ, ମଣ୍ଡପରେ ନିଆଁ ଲଗାଇବାକୁ ।

ସେହି ଟିକକ ଆରମ୍ଭ । ବୋଧହୁଏ ଅତି ପ୍ରଗତିବାଦୀ କୌଣସି ଦୁଃସାହସିକ ଦଳ ତାହା କରିଥିଲେ । ତା'ପରେ ଯାହା ହେବାର ହେଲା ।

ମାଇକ୍‌ର ଘୋଷଣା, କରଯୋଡ଼ି ପ୍ରାର୍ଥନା କିଛି କାମରେ ଆସିଲାନି, ଢେଲା ପରେ ଢେଲା ପଡ଼ିବାକୁ ଲାଗିଲା ଠକ୍‌ଠାକ୍ ହୋଇ ।

ଅତଏବ ଉଦ୍ୟୋକ୍ତାମାନେ ସେମାନଙ୍କର ପରମ ମୂଲ୍ୟବାନ ଅତିଥିମାନଙ୍କୁ ନେଇ ପଳାଇଯାଇ ପ୍ରାଣ ବଞ୍ଚାଇଲେ । ସେକ୍ରେଟେରୀଙ୍କ ଘର ମଣ୍ଡପ ପାଖରେ, ସେଠାରେ ହିଁ ଏହି ବିଶେଷ ତିନିଜଣ ଏବଂ ଅବଶେଷରେ କେତେଜଣ ଆସି ଆଶ୍ରୟ ନେଲେ ଏବଂ ସେଠାରୁ ମଣ୍ଡପ ଭିତରର ଗଣ୍ଡଗୋଳ ଶୁଣିପାରିଲେ ।

ଯେଉଁମାନେ ଅନେକ ଆଗ୍ରହ ନେଇ, ଅନେକ ଆୟୋଜନ କରି ହୁଏତ ଦୂରଦୂରାନ୍ତରୁ ଆସିଥିଲେ ଯୋଗଦେବାକୁ, ସେମାନେ ଛତ୍ରଭଙ୍ଗ ହୋଇଗଲେ । ଶିଶୁ, ବୃଦ୍ଧ ମହିଳା ସମେତ ଏଣେତେଣେ ଦୌଡ଼ିଲେ ।

କାରଣ କିଛି ସମୟ ଭିତରେ ଭଙ୍ଗା-ପର୍ବ ସାରି ଜଳାଇବା କାମରେ ନିଯୁକ୍ତ ହୋଇଥିଲେ ସେମାନେ ।

ଯାହାର ମାଇକ୍, ସେମାନେ ଅବସ୍ଥା ଦେଖି ତା'ର ଦଉଡ଼ି ଗୋଟେଇନେଇ ଚାଲିଯାଇଥିଲେ । ସେମାନଙ୍କ ଭିତରୁ ଜଣକ ହାତରୁ ଗୋଟାଏ ମାଇକ୍ କାଢ଼ିନେଇ ଜଣେ କିଏ କର୍ତ୍ତବ୍ୟନିଷ୍ଠ ଚିତ୍କାର କରି ଗୀତ ଆରମ୍ଭ କରିଦେଇଥିଲା – "ଜୀର୍ଣ୍ଣ ପ୍ରାଣର ଆବର୍ଜନା ପୋଡ଼ିଦେଇ ନିଆଁ ଜାଳ, ନିଆଁ ଜାଳ, ନିଆଁ ଜାଳ" ।

ସେ ଗୀତ ଶୁଣି ହେଉଥିଲା ଏଠାରୁ । ଅମଳେନ୍ଦୁ ଘଟକ କ୍ଷୁବ୍ଧ ହସ ହସି କହିଲେ – ସମସ୍ତଙ୍କର ଯେ ରବୀନ୍ଦ୍ରନାଥ ସେକଥାର ପ୍ରମାଣ ମିଳୁଛି ।...... ସମସ୍ତଙ୍କ ପାଇଁ ଗୀତ ଲେଖିଦେଇ ଯାଇଛନ୍ତି ସେ ।

ତରବରରେ ମଞ୍ଚରୁ ଓହ୍ଲାଇବାକୁ ଯାଇ ଲୁଗାକୁଞ୍ଚରେ ପାଦ ଅଟକି ଝୁଣ୍ଟି ତାଙ୍କର ଚଷମାଟା ଛିଟିକିଯାଇ କେଉଁଠି ପଡ଼ିଯାଇଥିଲା, ସେଥିପାଇଁ ତାଙ୍କର ଆଖି ଦୁଇଟା କେମିତି ଅଦ୍ଭୁତ ଅସହାୟ-ଅସହାୟ ମନେହେଉଛି ।

ଉଦ୍‌ବୋଧକ କହିଲେ – ମୋର ମନେହେଉଛି ଏଇଟା ସଂପୂର୍ଣ୍ଣ ପଲିଟିକ୍ସ ।

ସେକ୍ରେଟେରୀଙ୍କ କାନ ଆଉ ପ୍ରାଣ ସେହି ଉଲ୍ଲସିତ କଳରବ ଆଡ଼େ ରହିଥିଲା, ତେବେବେ ସେ ଏମାନଙ୍କ ଆଲୋଚନାରେ ଯୋଗ ଦେବାଟା କର୍ତ୍ତବ୍ୟ ବୋଲି ମନେକଲେ । ଶୁଖିଲା ମୁହଁରେ କହିଲେ, 'ଠିକ୍ ତା ମନେ ହେଉନି । ସାହିରେ କେତେଜଣ ବଦ୍‌ମାସ୍ ଟୋକା ଅଛନ୍ତି, ସେମାନେ ବିନା ପଇସାରେ ସଭାଦିନର ଟିକେଟ୍ ଚାହିଁଥିଲେ, ମିଳିନି । ଧମକାଇ ରଖିଥିଲେ— ଆଚ୍ଛା ଆମେ ଦେଖିନେବୁ, ସଭା କରିବା ଛଡ଼େଇ ଦେବୁ । ସେତେବେଳେ କଥାଟାରେ ଗୁରୁତ୍ୱ ଦେଇନି, ଏଇଲେ ବୁଝୁଛି ଶନି ଆଉ ମନସାଙ୍କ ପୂଜା ଆଗରୁ କରି ରଖିବା ଉଚିତ ।

ସମ୍ମିଳନୀକୁ ଆସିଥିବା କେତେଜଣ କଥାଟାକୁ ସାହିର କେତେଜଣ ଦୁଷ୍ଟ ପିଲାଙ୍କ ଅସଭ୍ୟତା ବୋଲି ଉଡ଼ାଇ ଦେବାକୁ ରାଜି ହେଲେନି, ସେମାନେ ଏଥିରୁ ନକ୍‌ସାଲବାଡ଼ିର ପଦଧ୍ୱନି ଆବିଷ୍କାର କଲେ । ଅର୍ଥାତ୍ କଥାଟାକୁ ସମାପ୍ତ କରିଦେବାକୁ ଚାହିଁ ନ ଥିଲେ ।

ସେକ୍ରେଟେରୀଙ୍କ ଘର ବଡ଼, ଅଗଣା ମଧ ବଡ଼ । ଅନେକ ଲୋକ ଆଶ୍ରୟ ନେଇଥିଲେ । ସେମାନଙ୍କ ଭିତରେ କେହି କେହି ଆଲୋଚନାର ଧାରାକୁ ଅନ୍ୟ ଖାତରେ ପକାଇଲେ । କଣ୍ଠସ୍ୱରକୁ ନିମ୍ନକରି ସେମାନେ କୁହାକୁହି କରିବାକୁ ଲାଗିଲେ— ପ୍ରଧାନ ଅତିଥି ମୂର୍ଖାମୀ କରିଛନ୍ତି, ଏଭଳି ସଭାରେ ଫଟ୍‌କିନା ଆଧୁନିକ ସାହିତ୍ୟରେ ଶ୍ଳୀଳତା ଓ ଅଶ୍ଳୀଳତା ନେଇ ପ୍ରଶ୍ନ ଉଠାଇବା ଠିକ୍ ହୋଇନି ତାଙ୍କର । ମହୁଘରାକୁ ଢେଲା ମାରିବାକୁ ଗଲେ ତ ଢେଲା ନିଶ୍ଚେ ବାଜିବ, ସାପ-ଲାଞ୍ଜରେ ପାଦ ରଖିବାକୁ ଗଲେ ଚୋଟ......

ଆରେ ବାପା, ବୁଝିଲ ତମେ ଜଣେ ପ୍ରତିଷ୍ଠିତ ସାହିତ୍ୟିକ, ବଜାରରେ ତମର କାଟ୍‌ତି ଅଛି, ଯଥେଷ୍ଟ ନାଁ ଡାକ ଅଛି, ସେଇଟିକକ ନେଇ ଚୁପ୍‌ଚାପ୍ ହୋଇ ରହୁନ ତମେ ? ଜାଣିନ ଏ ଯୁଗ କାହାକୁ ଅମର ହେବାକୁ ଦେବାପାଇଁ ରାଜି ନୁହେଁ ! ସବୁକିଛି ଓଳାଇ ସାଫ୍ କରି ନିଜର ଆସନ ପାତିବାର ସଙ୍କଳ୍ପ ନେଇ ଚାଲିଛି ତା'ର ଅଭିଯାନ ।

ଅନାମିକା ଦେବୀ ଘର ଭିତରେ ବସିଥିଲେ 'ଭି.ଆଇ.ପି.'ମାନଙ୍କ ସଙ୍ଗେ, ବାହାରର ସେ କଥାଗୁଡ଼ାକ ଶୁଣି ପାରୁ ନ ଥିଲେ ସେ । ଖାଲି ରାଜନୀତି କଥା ଶୁଣିଥିଲେ, ଆଉ ଭାବିଥିଲେ, ନିଆଁ ଧୂଆଁଳିଆ ହୋଇ ରହିଛି, ଯେ କୌଣସି ମୁହୂର୍ତ୍ତରେ ଜଳିଉଠିବା ପାଇଁ ହିଁ ତା'ର ପ୍ରସ୍ତୁତି ଚାଲିଛି, କେବଳ ଗୋଟିଏ ଦିଆସିଲି-କାଠି ଦରକାର ।

ହୁଏତ ସେହି ପ୍ରସ୍ତୁତିଟା ଭିନ୍ନ ଭିନ୍ନ ରୂପର । କିନ୍ତୁ ନିଆଁ ଯେତେବେଳେ ଜଳିଉଠେ ସବୁ ନିଆଁର ଚେହେରାହିଁ ଏକାପ୍ରକାର । ସେହି ଭଙ୍ଗାଭଙ୍ଗି, ନାରଖାର ।

କାହାର ଜିନିଷ କିଏ ଭାଙ୍ଗୁଛି, କିଏ କାହାକୁ କ୍ଷତିଗ୍ରସ୍ତ କରୁଛି, ସେଥିର ହିସାବ ନାହିଁ ।

ହଠାତ୍ ଏ ସମୟରେ ସେ ଖବରଟା ଆସି ପହଞ୍ଚିଲା । ଗୋଟାଏ ମାଇକ୍‌ର ରଡ୍‌ରେ ମାରି ଅଭ୍ୟର୍ଥନା ସମିତିର ସଭାପତିଙ୍କ ନାକର ହାଡ଼ ଭାଙ୍ଗି ଦେଇଛନ୍ତି ।

॥ ୭ ॥

ଖବରଟା ଶୁଣି ସ୍ତବ୍ଧ ହୋଇଗଲେ ଅନାମିକା ଦେବୀ ।

ସେହି ସଦା ହାସ୍ୟମୁଖ ପ୍ରିୟଦର୍ଶନ ଭଦ୍ରଲୋକ ଜଣକ !

ତାଙ୍କରି ଘରେ ଅନାମିକା ଦେବୀ ରହିଛନ୍ତି । ଆଉ ଦିନକରେ ହିଁ ଯେମିତି ଏକ ଆତ୍ମୀୟତା ଭାବ ଆସିଯାଇଛି ।

ଭଦ୍ରଲୋକଙ୍କ ନାଁ ଅନିଳ । ତାଙ୍କ ମା' କିନ୍ତୁ ତାଙ୍କୁ ଡାକିଥିଲେ 'ବେନୁ ବେନୁ' ବୋଲି । ଭଦ୍ରଲୋକ ହସି କହିଥିଲେ— ନା, ତମେ ମୋର ଆଉ ମାନସମ୍ମାନ କିଛି ରଖାଇ ଦେବନି ମା' ! ଦେଖନ୍ତୁ ତ— ଏଡ଼େ ବଡ଼ ପୁଅକୁ ଆପଣଙ୍କ ଭଳି ଜଣେ ଲେଖିକାଙ୍କ ସାମନାରେ ଏଭଳି ଏ ନାଁରେ ଡାକିବା !

ସୁନ୍ଦର ଘରୋଇ ପରିବେଶ । ପ୍ରୀତିକର । ଅନ୍ତତଃ ଅନାମିକା ଦେବୀଙ୍କ ପାଖରେ । ଅନେକ ସମୟରେ ଅନେକ ଘରେ ଦେଖିଛନ୍ତି, ଅଦ୍ଭୁତ ଶୁଷ୍କ ଗୋଟାଏ କୃତ୍ରିମତା । ଅନାମିକା ଦେବୀ ଯେ ଜଣେ ଲେଖିକା, ଏ କଥାଟା ଯେମିତି ସେମାନେ ସବୁବେଳେ ମନ ଭିତରେ ଜାଗ୍ରତ ନ ରଖି ରହିପାରି ନାହାନ୍ତି । ବଡ଼ ଅସ୍ୱସ୍ତିକର ।

ଅନାମିକା ସେତେବେଳେ ଅନିଳ-ବାବୁଙ୍କ କଥା ଶୁଣି ହସି କହିଥିଲେ— ଏଥିରେ ମୁଁ ଆଶ୍ଚର୍ଯ୍ୟ ହେଉନି । ମୋର ମଧ୍ୟ ଗୋଟିଏ ଡାକନାମ ଅଛି, ଯାହା ଶୁଣିଲେ ମୋତେ ଜଣେ ଲେଖିକା ବୋଲି ଲାଗିବନି ।

ଭଦ୍ରଲୋକ କହିଥିଲେ— ଅଧିବେଶନ ସରୁ, ଆପଣଙ୍କ ଲେଖାର କାହାଣୀ ଶୁଣିବି । 'ଲେଖାର ପୁଣି କାହାଣୀ କ'ଣ ?' ହସିଥିଲେ ଅନାମିକା ।

ଅନିଳବାବୁ କହିଥିଲେ, ବାଃ କାହାଣୀ ନାହିଁ ? ଆଚ୍ଛା କାହାଣୀ ନ ହେଉ, ଇତିହାସ । କିପରି ଲେଖିଲେ ? ପ୍ରଥମେ କି ଭାବରେ ଲେଖାର ପ୍ରେରଣା ଆସିଲା ? କିପରି ପ୍ରଥମ ଲେଖା ଛପାହେଲା ? ଏ ସବୁ କଥା ।

ଅନାମିକା କହିଥିଲେ— ବାଲ୍ମୀକିଙ୍କ ଗପ ଜାଣିଛନ୍ତି ତ ? ମରା ମରା କହୁ କହୁ ରାମ । ମୋର ମଧ୍ୟ ପ୍ରାୟ ସେଇୟା । 'ଲେଖା' ଶବ୍ଦଟା ସେତେବେଳେ

ଓଲଟା ଭାବରେ ସଜା ହୋଇଥିଲା । ଥିଲା 'ଖେଳା' । ସେଇ ଖେଳ ଖେଳୁ ଖେଳୁ ଦେଖିଲି କେତେବେଳେ ଅକ୍ଷର ଦୁଇଟା ଜାଗା ବଦଳାଇ ଦେଇଛନ୍ତି । ତେଣୁ କାହିଁକି ଲେଖିବାକୁ ଇଚ୍ଛା ହେଲା, କାହାର ପ୍ରେରଣା ପାଇଲି, ଏସବୁ କହି ପାରିବିନି ।

ଅନିଲବାବୁଙ୍କ ସ୍ତ୍ରୀ କହିଥିଲେ— ଆଚ୍ଛା, ତାଙ୍କୁ ତମେ ଗାଧୋଇବାକୁ, ଖାଇବାକୁ ଦବନି । ଯାଅ ଏଇଲେ ଯାଅ । ପରେ ଗପ କରିବ ।

ସେହି 'ପର'ଟା ଆଉ ମିଳିଲାନି ।

ସମସ୍ତ ପରିବେଶ ହିଁ ଧ୍ୱଂସ ହୋଇଯାଇଛି ।

ହଠାତ୍ ଅନାମିକାଙ୍କ ମନରେ ଗୋଟାଏ ଭୟାନକ କୁଣ୍ଠା ଜାତ ହେଲା, ନିଜକୁ ହିଁ ଯେପରି ଅପରାଧୀ ମନେହେଉଛି ।

ସେଇ ଅନିଲବାବୁଙ୍କ ଘରେ ହିଁ ତ ସେ ରହିଛନ୍ତି । ଏ ବିପଦବେଳେ ଅନିଲବାବୁଙ୍କ ମା' ଆଉ ସ୍ତ୍ରୀ ହୁଏତ ଅନାମିକା ଦେବୀଙ୍କ ସୁବିଧା ଅସୁବିଧା ନେଇ, ଆହାରର ଆୟୋଜନ ନେଇ ବ୍ୟସ୍ତ ହେବେ । ହୁଏତ ଅନାମିକା ଦେବୀଙ୍କୁ—

ନା, ସେମାନେ ଯଦିଚ ଭାବିବେନି, ନିଜେ ନିଜକୁ 'ଅଶୁଭ' ଭାବୁଛନ୍ତି ଅନାମିକା । ଭାବିବାର ହେତୁ ନ ଥିଲେ ମଧ୍ୟ ଭାବୁଛନ୍ତି । ଆଉ ଭାବି ତାଙ୍କର କୁଣ୍ଠାର ସୀମା ନାହିଁ । ଏଇଲେ ତାଙ୍କରି ଘରକୁ ଯିବାକୁ ପଡ଼ିବ ଅନାମିକାଙ୍କୁ, ଖାଇବାକୁ ପଡ଼ିବ, ଶୋଇବାକୁ ପଡ଼ିବ । ଇସ୍ ! ତାଠୁ ବରଂ ଯଦି ତାଙ୍କୁ ମଧ୍ୟ ସେ ସ୍କୁଲଘରର କୌଣସି ଗୋଟାଏ ଘର ଦେଇଥାନ୍ତେ ! କିନ୍ତୁ ତା ଦେବେନି ।

ମହିଳାଙ୍କୁ ମହିଳା ଭଳି ସସମ୍ମାନରେ ରଖିବେ । ସେଥିପାଇଁ ରଖିଛନ୍ତି ମୂଳ ମାଲିକର ଘରେ ।

ଅଥଚ ଅନାମିକା ଦେବୀଙ୍କୁ ଲାଗୁଛି ମୁଁ କେମିତି ଅନିଳବାବୁଙ୍କ ମା'ଙ୍କ ସାମନାରେ ଯାଇ ଠିଆହେବି ? ହଠାତ୍ କାନକୁ ଶୁଭିଲା— ନାକର ହାଡ଼ ! ଆରେ ନାଇଁ ମ ! ସେ ଏମିତି କିଛି ମାରାତ୍ମକ ନୁହେଁ ।

ଶୁଣି ଖରାପ ଲାଗିଲା । ମାରାତ୍ମକ ନୁହେଁ ବୋଲି କ'ଣ କିଛି ନୁହେଁ ? ଯେଉଁ ଆଘାତରେ ଉତ୍ସବର ସୁର ଅଟକିଯାଏ, ନୃତ୍ୟର ତାଳ କଟିଯାଏ, ବୀଣାର ତାର ଛିଣ୍ଡିଯାଏ— ସେଇଟା ମଧ୍ୟ ଦୁଃଖର ନିଶ୍ଚୟ ।

କେତେ ସମୟରେ ସେହି ତୁଚ୍ଛ ଆଘାତରେ କେତେ ମୁହୂର୍ତ୍ତ ବ୍ୟର୍ଥ ହୋଇଯାଏ !

ମାରାତ୍ମକ ନୁହେଁ, କିନ୍ତୁ ବେଦନାଦାୟକ ନିଶ୍ଚୟ ।

ଘରଟା ଯେମିତି ଥମଥମ ଲାଗୁଛି ।

ଯେମିତି ଶୋକର ଛାୟା କେଉଁଠି ଲୁଚିରହିଛି, ଅପ୍ରତ୍ୟାଶିତ ଏହି ଆଘାତରେ ଯେ ସେଇ ଉତ୍ସାହୀ ମଣିଷଟାର ମନର କେତେ କ୍ଷତି ହେବ ସେହିକଥା ଭାବି ଜନନୀ ଓ ଜାୟା ଶଙ୍କିତ ହେଉଛନ୍ତି ।

ଡାକ୍ତରଖାନାରୁ ତାଙ୍କୁ ରାତିରେ ଛାଡ଼ି ନାହାନ୍ତି, କାଲି କେମିତି ରହିବେ ଦେଖି ତା'ପରେ ଛାଡ଼ିବେ । ମନ ଭାଙ୍ଗିପଡ଼ିଥିବା ସ୍ତ୍ରୀ ଆଉ ମା' ଅନାମିକା ଦେବୀଙ୍କ ସହିତ ପଦେ, ଦି'ପଦ କଥା ହେଲେ, ତା'ପରେ ସେହି ବୋହୂଟିର ହାତରେ ତାଙ୍କୁ ସମର୍ପଣ କରିଦେଲେ । ଯେଉଁ ବୋହୂଟି ହେଉଛି କଲିକତାର ଝିଅ, ଯେ କି ଅନାମିକା ଦେବୀଙ୍କ ପାଖରେ ପାଖରେ ଆଜି ଗୋଟା ଦିନଟାଯାକ ବୁଲୁଛି ।

ଭୋକ ନାହିଁ କହି ସାମାନ୍ୟ ଟିକିଏ ଜଳଖିଆ ଖାଇ ଶୋଇପଡ଼ିଲେ ଅନାମିକା ଦେବୀ ।

ବୋହୂଟି ତାଙ୍କର ମଶାରି ଖୋଷିଦେବାକୁ ଆସି ହଠାତ୍ ବିଛଣାରେ ପାଦ ପାଖକୁ ବସିପଡ଼ି ଦୀର୍ଘନିଃଶ୍ୱାସଟିଏ ପକାଇ କହିଲା– ଆପଣ ଏତେ ନୂଆ ନୂଆ ପ୍ଲଟର ଗଳ୍ପ ଲେଖନ୍ତି, ତେବେକେ ଆପଣଙ୍କୁ ଗୋଟିଏ ପ୍ଲଟ୍ ମୁଁ ଦେଇପାରେ ।

ଶୁଣି ଅନାମିକା ଦେବୀଙ୍କର ମନ ଭିତରେ ଟିକିଏ ସୂକ୍ଷ୍ମ ହସର ରେଖା ଫୁଟିଉଠିଲା । ପ୍ଲଟ୍ !

ତା' ମାନେ ନିଜର ଜୀବନକାହାଣୀ !

ଯାହାକୁକି ଅନେକେ ଭାବନ୍ତି ଆଶ୍ଚର୍ଯ୍ୟରକମର ମୌଳିକ ଆଉ ପୃଥିବୀର ସବୁଠାରୁ ବେଶୀ ଦୁଃଖାବହ ।

ହଁ, ଦୁଃଖ କେବଳ ।

ସୁଖୀ ସନ୍ତୁଷ୍ଟ ମଣିଷମାନେ ନିଜର ଜୀବନଟାକୁ 'ଉପନ୍ୟାସର ପ୍ଲଟ୍' ବୋଲି ଭାବନ୍ତି ନାହିଁ । ଭାବନ୍ତି ଦୁଃଖୀମାନେ, ଦୁଃଖ ବିଳାସୀମାନେ ।

ଦିନଯାକ ଦେଖିଲାବେଳେ ବୋହୂଟିକୁ ତ ବେଶ୍ ହସଖୁସି ମଣିଷଟିଏ ବୋଲି ଲାଗୁଥିଲା, କିନ୍ତୁ ଏବେ ହଠାତ୍ ଦେଖିଲେ ତା ମୁହଁରେ ବିଷଣ୍ଣତା । ସେ ଦୀର୍ଘଶ୍ୱାସ ପକାଇ କହୁଛି, ଆପଣଙ୍କୁ ଗୋଟିଏ ପ୍ଲଟ୍ ଦେଇପାରେ ।

ତା'ହେଲେ ଦୁଃଖବିଳାସୀ । ନିଜ ପ୍ରତି ଥିବା ଅଧିକ ମୂଲ୍ୟବୋଧରୁ ଯେଉଁ ବିଳାସର ଉତ୍ପତ୍ତି । 'ମୁଁ ମୋର ଉପଯୁକ୍ତ ପାଇଲି ନାହିଁ ।' ଏହି ଚିନ୍ତା କରି ସମସ୍ତ 'ପାଇବା' ଟିକକକୁ ବି 'ବିସ୍ୱାଦ' କରିପକାଇ ଏମାନେ ଅହରହ ଦୁଃଖ ପାଆନ୍ତି ।

ବୋହୂଟିର ନାଁ ନମିତା ।

'ଅନିଲବାବୁଙ୍କର ଭଣଜାବୋହୂ । ହେଲେ ମାମୁଁଶଶୁରଙ୍କ ଘରେ ସେ କାହିଁକି ରହେ ? ତା' ସ୍ୱାମୀ କେଉଁଠି ଅଛି ? ଏ ପ୍ରଶ୍ନ ଉଠିଥିଲା ଅନାମିକା ଦେବୀଙ୍କ ମନରେ । କିନ୍ତୁ ଏ ପ୍ରଶ୍ନ ଉଚ୍ଚାରଣ କରିହେବ ନାହିଁ । ତେବେବେଳେ ଭାବି ନ ଥିଲେ ହଠାତ୍ ଗୋଟିଏ ଦୀର୍ଘନିଃଶ୍ୱାସ ଶୁଣିବାକୁ ପଡ଼ିବ । ଶୁଣି ମଧ୍ୟ ନ ବୁଝିଲାପରି ଛଳନା କଲେ ସେ ।

କହିଲେ — ଆମମାନଙ୍କର ଏ ଜୀବନ ପଥର ଧୂଳିରେ, ବାଲିରେ ତ ଉପନ୍ୟାସର ଉପାଦାନ ବିଞ୍ଚି ରହିଛି । ପ୍ରତି ମୁହୂର୍ତ୍ତରେ ଜମିଯାଉଛି ପ୍ଲଟ୍ ! ହେଇଟି ଦେଖିଲ, ଆଜି ଯାହା ଘଟିଗଲା, ଏଇଟା ମଧ୍ୟ କ'ଣ ଗୋଟାଏ ନାଟକର ପ୍ଲଟ୍ ହୋଇପାରିବନି ?

ନମିତା ଯେପରି ଟିକିଏ ଚଞ୍ଚଳ ହୋଇପଡ଼ିଲା । ଜଣାଗଲା ନମିତାକୁ ଏସବୁ ତତ୍ତ୍ୱକଥା ଭଲ ଲାଗିଲା ନାହିଁ । ସେଇଥିପାଇଁ କେମିତି ଅନ୍ୟମନସ୍କ ଭାବରେ କହିଲା — ହଁ ତା' ନିଶ୍ଚୟ । କିନ୍ତୁ ଏଇଟା ତ ଗୋଟାଏ ସାମୟିକ ଘଟନା । ହୁଏତ ଆସନ୍ତାବର୍ଷ ଯାଠାରୁ ଅଧିକ ଜାକଜମକରେ ସାହିତ୍ୟ ସଭା ହେବ । କିନ୍ତୁ ଯେଉଁ ନାଟକ ଆଉ ଦ୍ୱିତୀୟଥର ଅଭିନୀତ ହୁଏ ନାହିଁ ? ତା'ର କ'ଣ ହେବ ?

ଟିକିଏ ଚମକିପଡ଼ିଲେ ଅନାମିକା । ଯେମିତି ସେଇ ରୋଗା ପତଳା ସୁଶ୍ରୀ ହେଲେ ମଧ୍ୟ ସାଦାସିଧା ଚେହେରାର ତରୁଣୀ ବୋହୂଟିର ମୁହଁରୁ ଏ ଧରଣର କଥା ପ୍ରତ୍ୟାଶା କରି ନ ଥିଲେ । ଆସ୍ତେ କହିଲେ — ତା'ର ମଧ୍ୟ କେଉଁଠାରେ ହେଲେ କିଛି ସାର୍ଥକ ପରିସମାପ୍ତି ନିଶ୍ଚୟ ଅଛି ।

"— ନାଃ, ନାଇଁ ।" ଖଟରୁ ଓହ୍ଲାଇପଡ଼ିଲା ନମିତା । ମଶାରି ଖୋଷିଦେବାକୁ ଲାଗିଲା । ଯେମିତି ନିଜକୁ ହଠାତ୍ ସଂଯତ କରିପକାଇଲା ।

ମଶାରି ବାହାରକୁ ଚାଲିଆସିଲେ ଅନାମିକା । କହିଲେ — ଏଇଲେ ନିଦ ଲାଗିବନି, ବସ ତମସଙ୍ଗେ ଟିକେ ଗପ କରିବି ।

— ନା, ନା ଆପଣ ଶୁଅନ୍ତୁ । ବହୁତ ହାଲିଆ ହେଲେଣି । ମୁଁ ଆପଣଙ୍କୁ ବକର ବକର କରାଉଛି ଦେଖିଲେ ମାଇଁ ରାଗିବେ ।

— ବାଃ, ତମେ କୁଆଡ଼େ ବକର ବକର କରାଉଛ ? ମୁଁ ନିଜେ ତ ବକ୍ ବକ୍ କରିବି ବୋଲି ଉଠିଲି । ବସ, ବସ ନା ତମକୁ ନିଦ ଲାଗୁଛି ?

— 'ମତେ ? ନିଦ ?' ଝିଅଟି ହସିଲା ଟିକିଏ ।

ବୁଲାଣିଆ ବାଟ ଧରି ଯାଇ ଆଉ ଡେରି କଲେନି ଅନାମିକା । ଏକାବେଳେ

ସିଧାସଳଖ ପଚାରିଦେଲେ— ଆଚ୍ଛା, ତମ ସ୍ୱାମୀଙ୍କୁ ତ ଦେଖିଲିନି ? କଲିକତାରେ କାମ କରନ୍ତି ବୋଧହୁଏ ?

ନମିତା ଟିକିଏ ଚୁପ୍ ହୋଇ ରହିଲା । ତା'ପରେ ହଠାତ୍ କହିଲା— କଲିକତାରେ ନୁହେଁ, କାମ କରନ୍ତି ଋଷିକେଶରେ । ପରକାଳର କାମ । ସାଧୁ ହୋଇଯାଇଛନ୍ତି ।

କହିଦେଇ ଘର ଭିତରୁ ଚାଲିଗଲା ।

ଅତଏବ ପ୍ଲଟ୍‌ଟା ପାଣି ଢାଳି ପରିଷ୍କାର ହୋଇଗଲା । ଯଦିଚ ଏଭଳି ଆଶ୍ଚର୍ଯ୍ୟ ଏକ ପ୍ଲଟ୍ କଥା ଆଦୌ ଭାବି ନ ଥିଲେ ଅନାମିକା ।

ଭାବିଥିଲେ ସାଂସାରିକ ଘାତ-ପ୍ରତିଘାତର ଅତି ଗତାନୁଗତିକ କୌଣସି କାହାଣୀ କହିବସିବ ନମିତା ଅଥବା କାହାଣୀ କହିବ ଜୀବନର ପ୍ରଥମ ପ୍ରେମର ବ୍ୟର୍ଥତାର ! ଯାହା ଆହୁରି ଅମୌଳିକ ।

ପ୍ରଥମ ପ୍ରେମରେ ବ୍ୟର୍ଥତା ଛଡ଼ା ସାର୍ଥକତା କେଉଁଠି ?

କିନ୍ତୁ ନମିତା ନାମର ସେହି ବୋହୂଟି ଯେପରି ଘରର ଏଭଳି ଗୋଟିଏ ଝରକା ଖୋଲିଦେଲା, ଦୃଶ୍ୟଟି ସମ୍ପୂର୍ଣ୍ଣ ଅପରିଚିତ । ଅନାମିକା ଅବାକ୍ ହୋଇ ଭାବିଲେ, ପୁଅଟି ଯଦି ଏଡ଼େ ସିଦ୍ଧ ତା'ହେଲେ ବାହା ହୋଇଥିଲା କାହିଁକି ? କେତେଦିନହେଲା ବା ବାହାଘର ହୋଇଛି ? ବୋହୂଟି ତ କେଡ଼େ ପିଲାଳିଆ ?

ଆହା ତାକୁ ଆଉ ଟିକିଏ ସ୍ନେହସ୍ପର୍ଶ ଦେଇଥିଲେ ହୋଇଥାନ୍ତା । ତାକୁ ଆଉ ଟିକିଏ ପାଖରେ ବସାଇଲେ ହୋଇଥାନ୍ତା ।

ତାକୁ କ'ଣ ଡାକିବେ ? ଝରକା ପାଖରେ ଆସି ଠିଆହେଲେ । ସଂପୂର୍ଣ୍ଣ ଅପରିଚିତ ତ ଗୋଟିଏ ଦୃଶ୍ୟ— ନୀରନ୍ଧ୍ର ଅନ୍ଧକାର, ମୁଣ୍ଡ ଉପରେ ନକ୍ଷତ୍ରର କ୍ଷୀଣ ଆଲୋକ । ସମସ୍ତ ପଟ୍ଟଭୂମିକାଟା ଯେମିତି ବର୍ତ୍ତମାନକୁ ପୋଛିଦେଉଛି । କେତେସମୟ ଠିଆହୋଇ ଆସ୍ତେ ଆସ୍ତେ ଆସି ବିଛଣାରେ ବସିଲେ ଅନାମିକା । ଆଉ ଠିକ୍ ସେଇ ମୁହୂର୍ତ୍ତରେ ବକୁଳ ଆସି ଠିଆହେଲା ଆଗରେ । ସେହି ଅନ୍ଧକାରରେ ।

ଅନ୍ଧାରରେ ତାକୁ ସ୍ପଷ୍ଟ ଦେଖି ହେଲା ନାହିଁ । କିନ୍ତୁ ତା'ର ବ୍ୟଙ୍ଗ ହସଟା ସ୍ପଷ୍ଟ ଶୁଣାଗଲା ।

କି ଆଶ୍ଚର୍ଯ୍ୟ ! ମତେ ଏକାବେଳେ ଭୁଲିଗଲ ? ସିଧା କହିଦେଲ ଖାତାଟା ହଜାଇ ଦେଇଛ ?

× × × × ×

ଅନାମିକା ଆଗେଇଗଲେ ସେ ଛାଇଟା ପାଖକୁ । କହିଲେ, ନା ନା ! ହଠାତ୍ ଦେଖିଲି ହଜାଇ ଦେଇନି । ରହିଛି, ମୋରି ପାଖରେ ହିଁ ଅଛି । ତମର ସବୁ ଛବିଗୁଡ଼ାକ ଦେଖୁଛି ।

ହେଇଟି ତମେ ନିର୍ମଳ ନାମକ ପୁଅଟାର ମୁହାଁମୁହିଁ ହୋଇ ଠିଆ ହୋଇଛ, ହେଇଟି ତମେ ତମର ବଡ଼ଭାଇନାର ଆଗରୁ ମୁଣ୍ଡ ତଳକୁ କରି ଚାଲିଯାଉଛ, ହେଇଟି ତମର ସାନମଝିଆନାନୀ ପାରୁଲ୍ ଆଉ ତମେ କବିତା ମିଳାଇବା (ପଦ୍ୟାନ୍ତ) ଖେଳ ଖେଳୁଛ, ହେଇଟି ତମେ ତମର ମୃତ୍ୟୁଶଯ୍ୟାଶାୟିନୀ ମା'ଙ୍କର ଆଖି ବନ୍ଦ ରହିଥିବା ମୁହଁ ଆଡ଼କୁ ନିଷ୍ପଲକରେ ଚାହିଁ ରହିଛ, ସବୁ ଦେଖୁଛି ।

ଦେଖିପାରୁଛି ମାତୃଶୋକର ଗଭୀର ବିଷଣ୍ଣତା ଭିତରେ ମଧ ତମର ଉତ୍ସୁକ ଦୃଷ୍ଟିର ପ୍ରତୀକ୍ଷା । ସେଇ ମୃତ୍ୟୁ ଗୋଳମାଳରେ ଦୁଇଟା ପରିବାର ଭିତରେ ଘନିଷ୍ଠତା ବଢ଼ିଯାଇଛି, ବନ୍ଧଟା ଅଳ୍ପ ଭାଙ୍ଗିଯାଇଛି । ବକୁଳର ବଡ଼ଭାଇନା ସେତେବେଳେ ଆଉ ସର୍ବଦା ତୀକ୍ଷ୍ଣ ଦୃଷ୍ଟି ମେଲାକରି ଦେଖୁ ନାହାନ୍ତି, ନିର୍ଲଜ୍ଜ ବକୁଳଟା ପଡ଼ିଶାଘରର ପୁଅଟା ସହିତ ମୁହାଁମୁହିଁ ହୋଇ ଠିଆ ହୋଇଛି କି ନାହିଁ ।

## ॥ ୮ ॥

ହଁ, ବକୁଳର ବଡ଼ଭାଇ ନାହିଁ । ଏ ଗୁରୁଦାୟିତ୍ୱ ମୁଣ୍ଡକୁ ଉଠାଇ ନେଇଥିଲା ବକୁଳ ପିଲାଦିନୁ । ବକୁଳଟା କୋଉ ଫାଙ୍କରେ ଖସି ପଳାଇ ଯାଇ ପଡ଼ିଶାଘରର ପୁଅଟାର ମୁହାଁମୁହିଁ ହୋଇ ଠିଆ ହୋଇଛି କି ନାହିଁ ସେ କଥା ଦେଖିବା ।

ଆଚ୍ଛା ବାଲ୍ୟ ଆଉ କୈଶୋରର ସୀମାରେଖାଟା ବୟସର କେଉଁ ରେଖାରେ ଟଣା ହେଉଥିଲା ସେ ଯୁଗରେ ? ସେକଥା ବକୁଳ ଜାଣିନି । ବକୁଳ ଦଶ ଏଗାର ବର୍ଷ ବୟସରୁ ହିଁ ଶୁଣିଆସୁଛି— ନିର୍ଲଜ୍ଜ ଝିଅ, ବାରଣ୍ଡାରେ ଏତେ ଠିଆହେବା ଦରକାର କ'ଣ ତୋର ?...... ଅଣ୍ଡିରାଚଣ୍ଡୀଟେ ! ଏଘର ସେଘର ଖାଲି ବୁଲା ହେଉଛି । ଘରକାମ କରୁନୁ, ଯାଉନୁ ? ଛାତରେ ବୁଲିବା ଦରକାର କ'ଣ ? କାହିଁକି ? ବଡ଼ ହେଲୁଣି, ସେ ବୁଦ୍ଧି କେବେ ହେବ ?

ବଡ଼ଭାଇ କହୁଥିଲେ । ବାପା କହୁଥିଲେ । ତେବେ ବଡ଼ଭାଇ କହୁଥିଲେ ବେଶୀ ।

ଆଉ ବଡ଼ଭାଇନାର ସେହି ଶାସନ-ବାଣୀ ଭିତରେ ଯେମିତି ହିତଚେଷ୍ଟାଠାରୁ ବେଶୀ ଆକ୍ରୋଶଟା ହିଁ ପ୍ରକାଶ ହୋଇଯାଉଥିଲା । ପଡ଼ିଶାଘରର ସେଇ ନିର୍ମଳଟାର ଯେ ଏ ଘରର 'ବକୁଳ' ନାଆଁର ଝିଅଟି ପ୍ରତି ବେଶ୍ ଟିକିଏ ଦୁର୍ବଳତା ଅଛି,

ସେ ସତ୍ୟ ବଡ଼ଭାଇନାର ଆଖିରେ ଧରା ପଡ଼ିବାକୁ ଡେରି ହୋଇନି । ତେଣୁ ଏପଟକୁ କି ସେପଟକୁ ଟିକିଏ ଚାହିଁଲାମାତ୍ରେ ଭାଇନାର ଶିରାରେ ଶିରାରେ ପ୍ରବାହିତ 'ସନାତନୀ ରକ୍ତ' ଉତ୍ତପ୍ତ ହୋଇଉଠୁଥାଏ ଏବଂ ଶାସନର ମାତ୍ରା ଚଢ଼ି ଯାଉଥାଏ । ଭାଇନା ନିର୍ମଳକୁ ଦୁଇଆଖିର ବିଷ ଭଳି ଦେଖୁଥିଲା ।

ତା'କଣ ନିର୍ମଳ ବଡ଼ଲୋକର ଏକମାତ୍ର ପୁଅ ବୋଲି ? ତେବେଙ୍କେ ବକୁଳର ମା' ବଞ୍ଚିଥିଲାବେଳେ ବଳ ଥିଲା ବକୁଳର । ମା' ତାଙ୍କର ଏ ବଡ଼ପୁଅର ପାରିବାରିକ ପବିତ୍ରତା ରକ୍ଷାର କର୍ତ୍ତବ୍ୟ ପାଳନ ଦେଖି ରାଗିଯାଇ କହୁଥାନ୍ତି— ଏତେ ସବୁଆଡ଼େ ତୋର ନଜର ଦେଇ ବୁଲିବା ଦରକାର କ'ଣ ? ଯାହା ବାରଣ କରିବା କଥା ମୁଁ କରିବି ।

—ତମେ ଦେଖୁଥିଲେ ତ କିଛି ଚିନ୍ତା ନ ଥିଲା, ଭାଇନା କହୁଥାଏ, ଅମ୍ଳାନ ବଦନରେ ମା'ଙ୍କ ମୁହଁ ଉପରେ ହିଁ କହୁଥାଏ— ହେଲେ ଦେଖିବାର ତ କାହିଁ ଦେଖୁନି । ବରଂ ଆମମାନଙ୍କୁ ଶାସନ କରି ଝିଅକୁ ମୁଣ୍ଡ ଉପରେ ବସେଇବାଟାହିଁ ଦେଖୁଛି । ଭାରି ମନକୁ ପାଇଲା ଭଳି ଝିଅଟା ନା !

ତୁନିହୋଇ ରହୁଥିଲେ ମା ।

ଖାଲି କେବେ କେବେ ମା'ଙ୍କ ଆଖି ଭିତରେ ଯେମିତି ଅଗ୍ନିସ୍ଫୁଲିଙ୍ଗ ଜଳି ଉଠୁଥିଲା । ତେବେଙ୍କେ ମା' ବକୁଳକୁ ହିଁ ପାଖକୁ ଡାକି କହୁଥାନ୍ତି, ଭାଇନାକୁ ଯାହା ଭଲ ଲାଗୁନି, ତା' ଭାଇନା ଆଗରେ କରନା ।

ପିଲାଟି ଦିନରୁ ମା' ବକୁଳକୁ ଶିଖାଇଥିଲେ । "ଯାହା କରିବୁ ସାହସର ସହିତ କରିବୁ । ଲୁଚାଚୋରାର ଆଶ୍ରୟ ନେଇ କିଛି କରିବାକୁ ଯିବୁନି ।

ଅଥଚ ମା' ତାଙ୍କର ବଡ଼ପୁଅର ତୀବ୍ର ତିକ୍ତ ବ୍ୟଙ୍ଗଭରା ମୁହଁଟାକୁ ମନେପକାଇ କହନ୍ତି, "ତା ଆଗରେ କରନା ।" କହୁ ନ ଥିଲେ, "କେବେହେଲେ କରିବୁନି ।"

କିନ୍ତୁ ମା' ଆଉ ବକୁଳର ଭାଗ୍ୟରେ କେତେଦିନ ବା ଥିଲେ ? ମୃତ୍ୟୁର ଅନେକଦିନ ଆଗରୁ ତ ସଂସାରର ଦୃଷ୍ଟିରେ 'ମୃତ' ହୋଇଯାଇଥିଲେ ସେ । କ'ଣ ଛାୟା ଦାନ କରିପାରୁଥିଲେ ?

ତା'ପରେ ତ ପ୍ରଖର ସୂର୍ଯ୍ୟାଲୋକ ତଳେ, 'ସନାତନୀ ସଂସାର'ର ଯନ୍ତା ଭିତରେ ବଡ଼ଭାଇନା ସଙ୍ଗେ ବକୁଳ ହିଁ ଠିଆହେଲା ମୁହାଁମୁହିଁ ହୋଇ ।

ଅକାରଣରେ ହଠାତ୍ ହଠାତ୍ ଭାଇନା କହୁଥାଏ, "ତାଙ୍କ ଘରର ଝରକାକୁ ଆଁ କରି ଚାହିଁ କ'ଣ କରୁଥିଲୁ ?"...... କହୁଥାଏ, "ବାରଣ୍ଡାରେ ଠିଆହୋଇ କାହାସଙ୍ଗେ ଠରାଠରି ହୋଇ କଥା ହେଉଥିଲୁ ?"

ଅପରାଧଟା ସତ ହେଉ ବା କାଳ୍ପନିକ ହେଉ, ପ୍ରତିବାଦ କରିବାର ସାହସ ନ ଥିଲା ବକୁଳର । ବକୁଳ ଖାଲି ମୁଣ୍ଡଟି ତଳକୁ କରିଦେଇ ଅସ୍ଫୁଟ ଭାବରେ କହୁଥାଏ, ''କାହା ସଙ୍ଗେ ଫେରେ, ବାଃ !''

କହୁଥାଏ – ଝରକା ପଟେ ଠିଆହେବି କାହିଁକି ଯେ ?

ଯାଠାରୁ ବେଶୀ 'ଜବାବ' ଦେବାର ସାହସ ନ ଥିଲା ବକୁଳର । ଭୟରେ ବକୁଳର ଛାତିଭିତରଟା ଧଡ଼୍ ଧଡ଼୍ ହେଉଥାଏ ।

ଏ ଯୁଗର ଝିଅମାନେ ଯଦି ବକୁଳର ସେଇ ଅବସ୍ଥାଟା ଦେଖିପାରନ୍ତେ କେଜାଣି କେତେ ଜୋର୍‌ରେ ହସି ଉଠିଥାଆନ୍ତେ !

ଅନାମିକାଙ୍କ ଝିଆରୀଟି ସୁଦ୍ଧା ଯଦି ସେ ଅତୀତ ଛବିର ଦର୍ଶକ ହୋଇଥାଆନ୍ତା ? ହେଲେ, ସେ ହୁଏତ ହସି ନ ଥାନ୍ତା । ତା' ପ୍ରାଣରେ ମାୟା-ମମତା ଅଛି । ସେ ହୁଏତ ଖାଲି ମୁହଁର ରେଖାରେ କୃପାର ପ୍ରଲେପଟିଏ ବୋଳି କହିଥାନ୍ତା – ବିଚରା !

ଖାଲି ଝିଆରୀ କାହିଁକି, ଅନାମିକାଙ୍କର ମଧ୍ୟ ସେହି ଭୀରୁ ନିର୍ବୋଧ ଝିଅଟା ଆଡ଼କୁ ଚାହିଁ ମନେହେଉଛି – ବିଚରା ! କି ଭୀରୁ ! କି ଭୀରୁ !

କିନ୍ତୁ ଭୀରୁ ହେବା ଛଡ଼ା ବକୁଳର ଉପାୟ ବା କ'ଣ ଥିଲା ? କାହାର ଭରସାରେ ସାହସୀ ହେବ ? ପଡ଼ିଶାଘରର ସେହି ପୁଅଟିର ଭରସାରେ ? ଅନାମିକାଙ୍କ ମୁହଁରେ ସୂକ୍ଷ୍ମ କୃପାର ହସଟିଏ ଫୁଟିଉଠିଲା ।

ହାତରେ ଥରଟିଏ ହାତ ଛୁଆଁଇଦେଲେ ଶୀତଦିନେ ମଧ୍ୟ ଝାଳ ବୋହି ପଡୁଥିଲା ତା'ର । ଟିକିଏ ଭଲ ପାଇବାର ଭଳି କଥା କହିବାକୁ ଗଲେ କଥାଟା ଜିଭରେ ଜଡ଼ିତ ହୋଇଯାଉଥାଏ ଆଉ ଦେଠେଇ ଓ ପିଉସୀଙ୍କ ଭୟରେ ଆଖିରେ ସୋରିଷଫୁଲ ଦେଖୁଥାଏ ସେ !

ସେତେବେଳେ ତ ଶାସନ କରିବାକୁ ଦେଠେଇ ଓ ପିଉସୀମାନଙ୍କର ଖୁବ୍ ରାଇଟ୍ ଥିଲା । ନିର୍ମଳ ତା'ର ଦୁର୍ଦ୍ଦାନ୍ତ ଦେଠେଇଙ୍କ ଭୟରେ ତଟସ୍ଥ ହୋଇ ରହୁଥିଲା । ଦେଠେଇଙ୍କ ଆପ୍ରାଣ ଶକ୍ତିଟା ମଧ୍ୟ ଥିଲା ତୀବ୍ର । ବିରାଡ଼ିମାନେ ଯେମିତି ମାଛ ଜିନିଷଟା ଘରର ଯେଉଁଠି ଥିଲେ ବି ତା'ର ଗନ୍ଧ ବାରି ଦେଉଥିଲେ ଦେଠେଇ ମଧ୍ୟ ସେମିତି ଘରର ଯେଉଁଠି ହେଲେ କୌଣସି ଅପରାଧ ସଂଘଟିତ ହେଲେ ତା'ର ବାସ୍ନା ବାରି ଦେଉଥିଲେ ।

ଅତଏବ ନିର୍ମଳ ଘରର ତିନିତାଲା ଛାତର ସିଡ଼ି-ଘରଟାକୁ ଅଥବା ସାତଜନ୍ମ ହେଲା ପଡ଼ି ରହିଥିବା ଘରର ପଛପଟ ଅଗଣାଟାକୁ ଯେତେବେଳେ ଭଲ, ନିଶ୍ଚିନ୍ତ,

ନିରାପଦ ଭାବି ସେମାନେ ଦି'ମିନିଟ୍ ଠିଆହୋଇ କଥାବାର୍ତ୍ତା ହେଉଥାନ୍ତି, ହଠାତ୍ ଦେଓଠେଈଙ୍କର ଧଳା ଫରଫର ଥାନୀ ଧୋତି କାନିର କୋଣଟା ସେମାନଙ୍କ ଆଖି ଆଗରେ ଦୋହଲି ଉଠିଲା ।

—ଏ ମା' ! ନିର୍ମଳ ତୁ ଏଠି ? ଆଉ ମୁଁ ଘରଟାସାରା ତତେ ଗୋରୁଙ୍କୁ ଖୋଜିଲାପରି ଖୋଜି ବୁଲୁଛି ।

ସେଇ ଦୁଇମିନିଟ୍ ଆଗର ମିନିଟ୍‌ଟାରେ ନିର୍ମଳ ଦେଓଠେଈଙ୍କ ଆଖି ଆଗରେ ହିଁ ଥିଲା, ମାନେ କ'ଣ ଆଉ ଛାଣି ଛାଣି ଆଖି ଆଗରେ ବୁଲିବାଲି ଆସିଥିଲା, ଯେଉଁଥିରେ ତା'ର ଅନୁପସ୍ଥିତିରେ ପିରିଅଡ୍‌ଟା 'ଅନେକକ୍ଷଣ'ର ଧୂସରତାରେ ପ୍ରକାଶ ପାଇ ଯିବ ନାହିଁ ? ତେବେକେ ଦେଓଠେଈ ଏତିକିଭିତରେ ନିର୍ମଳକୁ ଗୋରୁଖୋଜିବା ପରି ଖୋଜିଦେଇ ଘରର ଏହି ଅବ୍ୟବହୃତ ଅବାନ୍ତର ସ୍ଥାନଟିକୁ ଖୋଜିବାକୁ ଆସିଯାଇଛନ୍ତି !

କିନ୍ତୁ ଖୋଜିବାର କାରଣ ?

ସେଇଟା ତ ଅନୁକ୍ତ ହିଁ ରହିଯାଏ ।

ଦେଓଠେଈଙ୍କ ବିସ୍ମୟୋକ୍ତିଟାହିଁ ଯେ ଶ୍ରୋତାଯୁଗଳଙ୍କ ବୁକୁ ଭିତରେ ଛୁରୀରେ କାଟି କାଟି ଲୁଣ ଦେଇଦିଏ ।

—ଏ ମା ! ବକୁଳ ମଧ ତ ଏଠି ? କେତେବେଳହେଲା ଆସିଲୁଣି ମା ? ଆହା ମା'-ହରା ପ୍ରାଣ, ଘରେ ରହିପାରୁନି, ଧାଇଁ ଧାଇଁ ସାହିଯାକ ଘୂରିବୁଲୁଛି । ଆରେ ମା' ଆସେ, ମୋ ପାଖରେ ଆସି ବସ ।

ଅତଏବ ମାତୃହୀନା ବାଳିକାକୁ ସେହି ମାତୃସ୍ନେହର ଛାୟାରେ ଆଶ୍ରୟ ନେବାକୁ ପାଦେ ପାଦେ କରି ଆଗେଇଯିବାକୁ ପଡ଼େ !

ଦେଓଠେଈ ବାଳବିଧବା, ତେଣୁ ଦେଓଠେଈ ନିଃସନ୍ତାନ । କିନ୍ତୁ ଦେଓଠେଈଙ୍କର ସୀମାହୀନ ସ୍ନେହ-ସମୁଦ୍ର ଅହରହ ଅଭିଷିକ୍ତ କରୁଛି ଦିଅରଙ୍କ ପୁଅଝିଅଙ୍କୁ । ସେହି ଅଭିଷିକ୍ତ ପ୍ରାଣୀଗୁଡ଼ିକ କ'ଣ ଏଭଳି ଅକୃତଜ୍ଞ ହେବେ ଯେ ତାଙ୍କୁ ଶ୍ରଦ୍ଧା କରିବେନି, ସମ୍ମାନ କରିବେନି ?

ବକୁଳର ମଧ ଏ ଦୁଇଟା ଜିନିଷ ନ ଦେଖାଇବାର ଚାରା କାହିଁ ? ବକୁଳକୁ ମଧ ସେ ଦେଓଠେଈଙ୍କ ସଙ୍ଗେ ତାଙ୍କର ନିରାମିଷ ରନ୍ଧାଘର ପର୍ଯ୍ୟନ୍ତ ଯାଇ ଦୁଆର ପାଖରେ ବସିବାକୁ ପଡୁଥାଏ ଏବଂ ଦେଓଠେଈ ଶାଗ ବାଛୁ ବାଛୁ କିମ୍ବା ଲୁହାଖଡ଼ିକା ଚଳାଉ ଚଳାଉ ସୁମଧୁର ପ୍ରଶ୍ନ କରୁଥାନ୍ତି, ହଁଲୋ ବକୁଳ ତୋ'

ବାପା କ'ଣ ନାକରେ ସୋରିଷତେଲ ପକାଇ ନିଶ୍ଚିନ୍ତରେ ଶୋଉଛନ୍ତି ? ତୋ' ବାହାଘର ପାଇଁ କିଛି କରୁ ନାହାନ୍ତି ?

କହିବା ବାହୁଲ୍ୟ, ବକୁଳ ଆଡୁ ଏ କଥାର ଜବାବ କିଛି ଦିଆଯାଉ ନ ଥିଲା । ଦେଠେଈ ପୁଣି କହୁଥିଲେ । ''କଥାବାର୍ତ୍ତା କ'ଣ ଚାଲିଛି ? କ'ଣ ଶୁଣୁଛୁ ?'' ତା'ପରେ ସେ ନିରୀହ ପ୍ରାଣୀଟା ଆଡୁ ଦୃଷ୍ଟି ଫେରାଇନେଇ ନିର୍ମଳର ମା' ଆଡ଼କୁ ଚାହିଁ କହୁଥିଲେ, ବୁଝିଲୁ ସାନବୋହୂ ? ବକୁଳର ବାପା ଆଉ ଝିଅଟାର ବାହାଘର ଫାହାଘର କରିବେନି । ଲାଉ, କଖାରୁ ପରି 'ସଢ଼' କରି ରଖିବେ ।

ନିର୍ମଳର ମା' ମଣିଷଟା ବଡ଼ ସଭ୍ୟ ଥିଲେ, ଏ ଧରଣର କଥାରେ ବିବ୍ରତ ହୋଇଯାଉଥିଲେ, କିନ୍ତୁ ଦୁର୍ଦ୍ଦଣ୍ଡପ୍ରତାପୀ ବଡ଼ ଯା'ଙ୍କ କଥା ଉପରେ କଥା କହିବାର କ୍ଷମତା ନ ଥିଲା ତାଙ୍କର ।

ଅତଏବ ସେ ଶ୍ୟାମ ଓ କୂଳ ଦୁଇଟାକୁ ରଖିବା ପଦ୍ଧତିରେ କହୁଥିଲେ । ମା'ଟି ମରିଗଲାକୁ ଆହୁରି ଡେରି ହୋଇଗଲା । ନ ହେଲେ ନାନୀ, ଏତେବେଳକୁ ହୋଇସାରନ୍ତାଣି । ଭଦ୍ରଲୋକ ତ ଆହୁରି ତିନି ତିନିଟା ଝିଅକୁ ପାର କରେଇଛନ୍ତି ।

ଏ ଯୁକ୍ତିରେ ତୁନି ହୋଇଯାଆନ୍ତି ନାହିଁ ଦେଠେଈ । ତିକ୍ତ କଣ୍ଠରେ କହନ୍ତି, ଯେତେବେଳେ ବୟସ ଥିଲା କରିଥିଲେ ଝିଅମାନେ ନିଜେ ନିଜେ ସିଆଣିଆ ହେବା ଆଗରୁ । ଏଥର ଯେତେ ବୟସ ଯାଉଛି, ସେତେ ଭଲ । ବକୁଳ ହେଲା ନଭେଲପଢ଼ା ଏ କାଳର ଝିଅ । ସେ ହୁଏତ କ'ଣ 'ଲଭ୍' 'ଫଭ୍' କରି ବାପକୁ କହିବ— ''ବାପା, ହାଡ଼ି, ଡମ୍ବ, ବାହ୍ମଣୁ, କରଣ ଯାହାହେଉ, 'ଅମୁକ' ଲୋକଟାକୁ ନିଶ୍ଚେ ବାହାହେବି ।'' କିଲୋ ବକୁଳ କହିବୁ ନା ?

ହସୁଥିଲେ ଦେଠେଈ । ଦେଠେଈଙ୍କ ଆଗର ଦାନ୍ତ ଗୋଟିଏ ଭାଙ୍ଗି ଯାଇଥିଲା, ସେହି ଭଙ୍ଗା-ଦାନ୍ତର ଗହ୍ୱର ବାଟେ ଛିଟିକି ପଡୁ ପଡୁ ହସଟା ବାହାରି ଆସୁଥିଲା ।

କିନ୍ତୁ ଦେଠେଈ ସ୍ନେହମୟୀ । ସେଥିପାଇଁ ଦେଠେଈ କେତେଟା ମିନିଟ୍ ପରେ ହିଁ କହିବେ— ବକୁଳ, କଖାରୁଫୁଲ ବଡ଼ା ଭଜା ଖାଇବୁ ?...... କାହିଁକି 'ନା' କାହିଁକି ? ପିଠଉ ବଟା ଦେଇ ମସ ମସ କରି ଭାଜିଛି । ନେ ଗୋଟାଏ ଧରିଲୁ । ପ୍ରଥମେ ତମେମାନେ ଯେତେବେଳେ ଏ ଘରକୁ ଆସିଲ, ତୁ ତ କନ୍ଥାରେ ଶୋଇଲା ଝିଅଟିଏ ହୋଇଥିଲୁ, ତୋ'ର ମା' ମଝିରେ ମଝିରେ ବୁଲିବାକୁ ଆସୁଥାଏ । ଦିନଟେ କ'ଣ ହେଇଛି, ମୁଁ ଏମିତି କଖାରୁଫୁଲର ବଡ଼ା କରୁଛି, କହିଲି, ''ଗରମ ଗରମ ଭାଜୁଛି, ଦି'ଖଣ୍ଡ ଖାଅ ।''— ଖାଇଦେଇ ଅବାକ୍ ହୋଇଗଲା, ଖାଇସାରି କହିଲା—

ଚାଉଳ ପିଠଉ ଏମିତି ବଡ଼ା ହୁଏ, ଏ କଥା ତ ମୁଁ ଜମା ଜାଣିନି, ଲଙ୍କାବଟା ଗୋଳି କରାଯାଏ ସେ କଥା ଜାଣିଛି ।

ବକୁଳର ସେହି ଏକ ଆବେଗ ଥରଥର ମୁହୂର୍ତ୍ତ ଉପରେ ଚିଲର ଡେଣା ମାଡ଼ ବସେଇ ଦେଇ ଝାମ୍ପି ନେଇ ଆସି ଏହିପରି ସବୁ ଏଣୁତେଣୁ ଅବାନ୍ତର କଥା କହିବାକୁ ଆରମ୍ଭ କରୁଥିଲେ ସେ, ହୁଏତ କିଛି ଖୁଆଇ ମଧ ଛାଡୁଥିଲେ । ଅବଶେଷରେ ବକୁଳକୁ ତା ଘରର ଦୁଆର ମୁହଁ ପର୍ଯ୍ୟନ୍ତ ନେଇ ଛାଡ଼ି ତେବେ ଯାଇ ଫେରୁଥିଲେ ।

ଆଉ ଶେଷ ମୁହୂର୍ତ୍ତରେ ମଧ ଥରଟେ କହିଦେଉଥିଲେ – ଏଥର ଦେଖୁଛି ତୋ ବାପାଙ୍କୁ ହିଁ କହିବାକୁ ପଡ଼ିବ । ବଢ଼ିଲା ଝିଅ ଶୂନ୍ୟପ୍ରାଣ ଧରି ଏଠି ସେଠି ଘୂରି ବୁଲିବ, ଘରସଂସାରରେ ମନ ଲଗାଇବନି, ଆଉ ବାପ ବସି ସ୍ତ୍ରୀ ଶୋକରେ ଚକ୍ଷୁ ପୋଡ଼ିଗଲା ପରି ହେଉଥିବେ ଏଇଟା ତ କାର୍ଯ୍ୟ ନୁହେଁ ।

ସରମରେ ମରିଯାଉଥିଲା ବକୁଳ, ଲାଜରେ ଲାଲ୍ ହୋଇଯାଉଥିଲା, ସେ ମୁଣ୍ଡ ଟେକି ପାରୁ ନ ଥିଲା ।

ସେହି ମଥା ପୋତି ରହିଥିବା ଚେହେରାଟା ଆଡ଼କୁ ଚାହିଁ ଅନାମିକାର ଆଉଥରେ ମନେହେଲା – ବିଚରା !

ଦେଠେଇଙ୍କ ସେ 'ନ୍ୟାଯ୍ୟ' କଥାର 'ଶୁଙ୍ଖ'ର ଜ୍ୱାଳାଟା ସହଜରେ ଛାଡୁ ନ ଥିଲା, ସେଥିପାଇଁ ଅନେକଦିନ ପାଇଁ ସେ ଘରର ଚଉକାଠରେ ବକୁଳର ପାଦଚିହ୍ନ ପଡୁ ନ ଥିଲା । ସମସ୍ତ ଆବେଗ ଆକାଂକ୍ଷାକୁ ଦମନ କରି ବକୁଳ ଆପଣା ଖାତାପତ୍ରର ଜଗତରେ ନିମଗ୍ନ ରହିବାର ଚେଷ୍ଟା କରୁଥିଲା । କିନ୍ତୁ ସେ ତପସ୍ୟା କ'ଣ ସ୍ଥାୟୀ ହେଉଥିଲା ? ଗୋଟାଏ ଦୁର୍ବାର ଆକର୍ଷଣ ଯେପରି ବକୁଳକୁ ଅବିରତ ଟାଣୁଥିଲା ସେଇ ଘରଟା ଆଡ଼କୁ । ତା'ଛଡ଼ା ସେ ଘରର ରାସ୍ତାପଟର ଝରକା ପାଖରେ, ଛାତର ବାଡ଼କୁ ଧରି ବିଷଣ୍ଣ-ବିଷଣ୍ଣ ମୁହଁଟିଏ ମିନତିର ଇସାରାରେ ତପୋଭଙ୍ଗ କରି ଛାଡୁଥିଲା ବକୁଳକୁ ।

ଭାବିଲେ ହସ ଲାଗୁଛି, ପୁରୁଷ ପିଲାଟିଏ ପ୍ରାୟ ଜଣେ ଭୀରୁ ଲାଜକୁଳୀ ତରୁଣୀ ଝିଅର ଭୂମିକାରେ ରଖି ଦେଉଥିଲା ନିଜକୁ ।

ବକୁଳ ସେହି ଆବେଦନ-ଭରା ଆଖିର ଆହ୍ୱାନକୁ ଅଗ୍ରାହ୍ୟ କରିପାରୁ ନ ଥିଲା । ପୁଣି ଦିନେ କୌଣସି ଗୋଟାଏ ବାହାନା କରି ଆସ୍ତେ ଆସ୍ତେ ଯାଇ ଠିଆ ହେଉଥିଲା ସେ ଘରର ଦୁଆର ମୁହଁରେ !

ବକୁଳର ସେ 'ବାହାନା'ଟା ହୁଏତ ଆଦୌ ଶକ୍ତିଶାଳୀ ହେଉ ନ ଥିଲା, ତେଣୁ ବାହାନାଟା ଅତି ସହଜରେ 'ବାହାନା' ବୋଲି ଧରା ପଡୁଥିଲା ।

କିନ୍ତୁ ଅବୋଧ ବକୁଳ ଆଉ ତା'ର ଅବୋଧ ପ୍ରେମାସ୍ପଦ ଢି'ଙ୍ଗଣଯାକ ଭାବିପକାଉଥିଲେ ବଡ଼ମାନଙ୍କୁ ବେଶ୍ ଠକି ଦିଆଯାଇପାରେ ।

ଯେମିତି ହେଇଟି ଦିନକର କଥା— ବାପାଙ୍କର ପୁଣି ଆଉଥରେ ଶ୍ୱାସ ଭଳି ହୋଇଛି ଆଉ ହୋମିଓପାଥିକ୍ ଉପରେ ବକୁଳର ବାପାଙ୍କର ବିଶ୍ୱାସ ଅଛି, ପଡ଼ିଶାଘରର ନିର୍ମଳ କୁଆଡ଼େ ଜଣେ ଭଲ ହୋମିଓପାଥିକ୍ ଡାକ୍ତରଙ୍କ ନାଁ ଜାଣିଛି । ଏଇଟା କ'ଣ ଗୋଟାଏ କମ୍ ବଡ଼ ସୁଯୋଗ ?

ଅତଏବ ବକୁଳ ଆସି ଅନାୟାସରେ ନିର୍ମଳର ମା'ଙ୍କୁ ପଚାରିପାରିଲା— ଖୁଡ଼ୀ, ନିର୍ମଳ-ଭାଇନା କ'ଣ ଘରେ ଅଛନ୍ତି ? ବାପା କହୁଥିଲେ ନିର୍ମଳଭାଇନା କୁଆଡ଼େ କୋଉ ହୋମିଓପାଥିକ୍ ଡାକ୍ତରଙ୍କୁ— ମାନେ ସେ ପେଲିହେବାଟା ଆଉଥରେ ଟିକିଏ —

ସ୍ପଷ୍ଟ ଭାବରେ 'ନିର୍ମଳଭାଇନା' ନାଁଟାକୁ ଉଚ୍ଚାରଣ କରିବାକୁ ହୁଏ, ଯେମିତି କିଛି ନାହିଁ । ଯେମିତି ସେ ନାଁଟା ଉଚ୍ଚାରଣ କରିବାକୁ ଯାଇ ତା'ର ଗଳା ଧରି ଯିବନି, ଛାତି ଭିତରଟା ତା'ର ଭୟରେ ଥରିବନି । ତେବେ ନିର୍ମଳର ମା' ତ ଅତି ଭଲ ମଣିଷ, ଅତଏବ ସରଳଚିତ୍ତ । ପିଲାଦିନରୁ ପରିଚିତ ପୁଅଝିଅ ଦିଇଟା ଯେ ପୁଣି କେଉଁ ନୂଆ ପରିଚୟ ଭିତରେ ନୂଆ ହୋଇଯାଇପାରନ୍ତି ଏଭଳି ସମ୍ଭାବନା ତାଙ୍କ ମୁଣ୍ଡକୁ ଆସେନି ଏବଂ ତାଙ୍କର 'ଭଲପିଲା' ପୁଅଟା ଆଉ ପଡ଼ିଶାଘରର ଏ ନିରୀହ ଝିଅଟା ଯେ ତାଙ୍କ ସଙ୍ଗେ ଏମିତି ଚାତୁରୀ ଖେଳିପାରନ୍ତି, ସେକଥା ଭାବିପାରନ୍ତି ନାହିଁ ସୁଦ୍ଧା ।

ଫଳରେ ଝରକାବାଟେ ଆଖିର ଆହ୍ୱାନ ପାଇ ବିଭ୍ରାନ୍ତ ହୋଇ ଚାଲିଆସିଥିବା ବକୁଳ ତାଙ୍କ ଆଗରେ ବେଶ୍ ସହଜ ଗଳାରେ କହି ପାରୁଥିଲା,

—ଖୁଡ଼ୀ, ନିର୍ମଳ-ଭାଇନା କ'ଣ ଘରେ ଅଛନ୍ତି ?

କେର୍‌ପାଲରେ ଡିଜାଇନ୍ ଦେଇ ଆସନ ବୁଣିବାଟା ହେଉଛି ଖୁଡ଼ୀଙ୍କର ଗୋଟାଏ ବଡ଼ ନିଶା, ସେଥିପାଇଁ ସେ ଘରକାମର ମଝିରେ ପ୍ରଖରା ବଡ଼ଯାଆ ଓ ଦୁଷ୍ଟ ନଣନ୍ଦଙ୍କ ଆଖିକୁ ଆଡ଼େଇ ଯେତେବେଳେ ସେତେବେଳେ କେରପାଲର ଆସନ ବୁଣିବାକୁ ବସିଯାଉଥିଲେ । ସେହି ଆସନର 'ଘର' ଉପରୁ ଆଖି ନ ଉଠାଉଣୁ ସେ ଉତ୍ତର ଦେଲେ, ''ନିର୍ମଳ ? ହଁ, ଟିକିଏ ଆଗରୁ ତ ଥିଲା । ଅଛି ବୋଧହୁଏ । ଯା' ଗଲୁ ତା ପଢ଼ାଘରେ ଦେଖିବୁ ! ବାପାଙ୍କ ଦେହଟା ପୁଣି ଖରାପ ହେଲା ?''

'ହଁ—'

"ଆହା ! ତୋ'ର ମା' ଗଲାଠୁ ତାଙ୍କର ଯାହା ଅବସ୍ଥା ହେଲାଣି ! ଲୋକଟି ବୋଧହୁଏ ଆଉ ବଞ୍ଚିବେନି । ଯା ଦେଖିବୁ ଯା । କୋଉ ଡାକ୍ତର କେଜାଣି ? ଆମର ଅନାଦିବାବୁ ତ—"

ସେତେବେଳକୁ ବକୁଳ ଉଭେଇଗଲାଣି । ପହଞ୍ଚିଗଲାଣି ନିର୍ମଳର "ପଢ଼ାଘରେ" ମାନେ ଏମାନଙ୍କର ତିନିତାଲାର ଚିଲକୋଠା ଘରଟିରେ ।

କିନ୍ତୁ ଆସି କ'ଣ ବକୁଳ ତା'ର ପ୍ରେମାସ୍ପଦର ଛାତିରେ ଲୋଟି ପଡୁଥିଲା ? ନା ନିବିଡ଼ ସାନ୍ନିଧର ସ୍ୱାଦ ନେଉଥିଲା ?

କିଛି ନାହିଁ । କିଛି ନାହିଁ ।

ଏ ଯୁଗର ପୁଅଝିଅମାନେ ସେକାଳର ସେହି ପାଣିଚିଆ ପ୍ରେମକୁ ସହରିଆ ଗଉଡ଼ମାନଙ୍କର ଗାଈଦୁଧ ସଙ୍ଗେ ତୁଳନା କରିବେ ।

ଧର ସେଦିନର କଥାକୁ ହିଁ ଦେଖ—

ଧଇଁସଇଁ ହୋଇ ଆସି ବକୁଳ କହିଲା— ବାପାଙ୍କ ଶ୍ୱାସଟା ଆଉଥରେ ବଢ଼ିଛି ବୋଲି କହିବାକୁ ପଡ଼ିଲା, ସେଇ ପାପରେ ମତେ ମଧ୍ୟ ଶ୍ୱାସ ଧରିଦେଲା ।

ନିର୍ମଳ ଆଗେଇଆସି ହାତଟାକୁ ଧରିଲାନି, ଖାଲି କୃତାର୍ଥ ହୋଇଗଲା ପରି ଦୃଷ୍ଟିରେ ଚାହିଁ କହିଲା— କାହାକୁ କହିଲ ?

—କହିଲି ଖୁଡ଼ୀଙ୍କୁ । ତମରି ପାଇଁ ଏ ମିଛ କହିବାର ପାପଟି ହେଲା ।

ନିର୍ମଳର ମୁହଁରେ ଅପ୍ରସ୍ତୁତର ଛାୟା ପଡ଼ିଲା । ସେ କହିଲା— ଭାରି ମିଛ କଥା ହେଲା କେମିତି ଯେ ? ମଉସା ତ ଭୋଗୁଛନ୍ତି—

ନିର୍ମଳର ମା'ଙ୍କୁ ବକୁଳ ଖୁଡ଼ୀ ବୋଲି କହେ, ନିର୍ମଳର ଦେଠେଇଙ୍କୁ ଦେଠେଇ । କିନ୍ତୁ ନିର୍ମଳ ବକୁଳର ମା'ଙ୍କୁ ଯେ କେଉଁ ନିୟମରେ 'ମାଉସୀ' କହୁଥାଏ, ଆଉ ବାପାଙ୍କୁ ମଉସା— କିଏ ଜାଣିଛି । ତେବେ ସେଇୟା ଡାକୁଥାଏ ।

—କାହିଁକି ଡକରା ହେଉଥିଲା ଯେ ?

—ଏମିତି ! ଆଉ ତ ଦେଖାସାକ୍ଷାତ ଜମା ହେଉନି । ଅଥଚ ଲାଇବ୍ରେରୀରୁ ସୌରୀନ୍ଦ୍ରନାଥ ମୁଖୋପାଧ୍ୟାୟଙ୍କର ଖଣ୍ଡେ ନୂଆ ବହି ଆଣି ରଖାହୋଇଛି ।

ବକୁଳ ଉତ୍ସୁକ ଗଳାରେ କହିଲା— କାହିଁ ?

—ଦେଖିବ ପରେ, ଆଗେ ଟିକିଏ ବସ, ତା'ପରେ ଯାଇ ।

—ବସି କ'ଣ ହେବ ?

—ଏମିତି ।

—ଖାଲି ଏମିତି ଆଉ ଏମିତି । ବାବୁ ନିଜେ ଯାଇପାରୁ ନାହାନ୍ତି !

—ନିଜେ ? "ନିର୍ମଳ ଡରିଗଲା ପରି ବାହାନା କରି କହିଲା— ଏ ବାପା ! ତମର ବଡ଼ଭାଇନାଙ୍କ ରକ୍ତଚକ୍ଷୁ ଦେଖିଲାମାତ୍ରେ ଦେହର ରକ୍ତ ବରଫ ହୋଇଯାଉଛି । ମୋ ଆଡ଼କୁ ଯେମିତି ଚାହାଁନ୍ତି ନା ?

—ବଡ଼ଭାଇନା ତମଠୁ ଏମିତି କେତେ ବଡ଼ ଯେ ଏତେ ଡରୁଛ ! ବାପା ତ କିଛି କହନ୍ତି ନାହିଁ । ମା' ତ ତମକୁ କେତେ—

—ହଁ, ମାଉସୀ ତ କେତେ ଭଲପାଉଥିଲେ ! ମୁଁ ଗଲେ କେତେ ଖୁସୀ ହେଉଥିଲେ ! ହେଲେ ବଡ଼ଭାଇନା ? ମାନେ ବେଶୀ ବଡ଼ ନ ହେଲେ ମଧ୍ୟ ସାଂଘାତିକ ମ୍ୟାନ୍ ! ପୁଲିସ୍ ଅଫିସର ହେବାହିଁ ତାଙ୍କର ଉପଯୁକ୍ତ ପେସା ଥିଲା ।

—ହେଲେ ମୋର ହିଁ କ'ଣ ବେଶୀ ଇଏ ? ଦେଠେଈ ଆଉ ପିଉସୀ ଆଗରେ ପଡ଼ିଗଲେ—

—ଏଇ ! ଆଜି ପଡ଼ିନ ତ ?

—ନାଃ ! ଦେଠେଈ ବୋଧହୁଏ ଠାକୁରଘରେ । ଆଉ ପିଉସୀ ରନ୍ଧାଘରେ—

—ସତରେ ସେମାନଙ୍କ ପାଇଁ ତମକୁ...... "ହତାଶ ନିଃଶ୍ୱାସଟିଏ ପକାଇଲା ନିର୍ମଳ । ବକୁଳର ଆଖିରେ ଆବେଗର ଛାୟା । କ୍ଷୁବ୍ଧ ଅଭିମାନଭରା ଗଳାରେ ବକୁଳ କହିଲା, "ସତରେ ସେମାନଙ୍କ ପାଇଁ ତମର" କହି ନିଃଶ୍ୱାସ ପକାଇଦେଲେ ତମର ସବୁ କାମ ସରିଗଲା, ନାଇଁ ?"

—କ'ଣ କରିବି କହ ?

—ଠିକ୍ ଅଛି । ମୁଁ ଆଉ ଆସିବିନି ।

—ନା, ନା । ଲକ୍ଷ୍ମୀଟା । ରାଣୀଟା । ଏତେ ଶାସ୍ତି ଦିଅନି ।

ସେତିକି । ପ୍ରେମ ସମ୍ବୋଧନର ଦଉଡ଼ ସେଇପର୍ଯ୍ୟନ୍ତ !

ଆଉ ପ୍ରେମାଳାପର ନମୁନା ମଧ୍ୟ ସେହି ଲାଇବ୍ରେରୀ ବହି, ଆଉ 'କିଏ ଆସୁଛି' ଏହି ଟିକକ ମଧ୍ୟରେ ସୀମାବଦ୍ଧ ।

କେହି ଆସିଲେ ତ କୌଣସି ଦୃଶ୍ୟ ହିଁ ଦେଖିବେନି, ତେବେକେ ଡର !

ଡର— ଡର ! ଭଲ ପାଇବା ମାନେ ହିଁ ଡର !

ଥରକୁ ଥର ମନେହୁଏ ବୋଧହୁଏ ପଛରେ ଆସି କିଏ ଠିଆ ହେଲାଣି । ଥରକୁ ଥର ।

ମନେହୁଏ ଘରେ ହଠାତ୍ ଖୋଜିଲେ ନିର୍ମଳର ଘରକୁ ଯାଇଛି ବୋଲି ବକୁଳ ଧରାପଡ଼ିବ । ସେହି ଧରାପଡ଼ିଯିବା ସାଙ୍ଗେ ସାଙ୍ଗେ ତ ଧରାପଡ଼ିଯିବ ଏ ବାହାନାଟା ଖାଲି ବାହାନା ।

ଧର ବାପା ଯଦି କହିଲେ, "କାଇଁ ନିର୍ମଳକୁ ପଚାରିବାକୁ ଯିବାକୁ ତ କହିନି । ଖାଲି କହିଥିଲି— ନିର୍ମଳର ଘରେ ତ ବଡ଼ ବଡ଼ ବେମାରିରେ ମଧ୍ୟ ହୋମିଓପାଥିକ୍ ଔଷଧ ଖାଆନ୍ତି ।

ଆଉ ଭାଇନା କହିବ— ତାଙ୍କ ଘରକୁ କାହିଁକି ଯାଇଥିଲୁ ? ତାଙ୍କ ଘରକୁ ? କ'ଣ ଦରକାର ଥିଲା ସେଠି ? ବଢ଼ିଲା ଝିଅର ଏତେ ସ୍ୱାଧୀନତା କାହିଁକି ?

ତେବେକେ ନ ଆସି ତ ରହିହେଉ ନାହିଁ । ହେଲେ ଏ ଘରେ ମୁହାଁମୁହିଁ କେହି କହିଦିଅନ୍ତି ନାହିଁ ଯେ— ଆମ ଘରକୁ ଆସିଛୁ କାହିଁକି ? ଆମ ଘରକୁ ? ଏତେ ନିର୍ଲଜପଣିଆ କାହିଁକି ?

ଏ ଘରେ ଯେମିତି ସିଆଣିଆ ସହିତ ସିଆଣିଆର ବନ୍ଧୁତା ରହିଛି ।

ଦୈବାତ୍ ଯଦି ଦେଠେଇ ମଧ୍ୟ ଆସି ଉପସ୍ଥିତ ନ ହୁଅନ୍ତି, ପାହାଚରେ ତଳକୁ ଓହ୍ଲାଇବା ସମୟରେ ତ କାହାରି ନା କାହାରି ସାଙ୍ଗରେ ଦେଖା ହେଇଯିବ ! ହୁଏତ ପିଉସୀ ସାଙ୍ଗରେ ପିଉସୀ ଭ୍ରୂକୁଞ୍ଚିତ କରି କହିବେ— ବକୁଳ ଯେ ! କେତେବେଳୁ ଆସିଲୁଣି ?

ବକୁଳକୁ କହିବାକୁ ପଡ଼ିବ— "ଏଇ ଟିକକ ଆଗରୁ ।"

—କୁଉଠି ଥିଲୁ ? କାଇଁ ମୁଁ ତ ତତେ ଦେଖିନି ?

—ଇ......ଏ, ନିର୍ମଳଭାଇନା ଲାଇବ୍ରେରୀର ଗୋଟିଏ ବହି ଦେବେ ବୋଲି କହିଥିଲେ ।

—ଓଃ ବହି ! ହେଲେ ପୁତୁରାଟାକୁ ଟିକେ ପଠେଇଦେଇଥିଲେ ତ ହେଇଥାନ୍ତା ଝିଅ ! ବାପା ଦିହ ଏମିତି ଖରାପ, ଆଉ ତୁ ବଡ଼ ଝିଅଟେ ହୋଇ ବହି ବହି କରି ତାଙ୍କୁ ପକାଇଦେଇ ଆସି ପୁଣି ଧଇଁସଇଁ ହୋଇ ତିନିତାଲା ଛାତକୁ ଯିବାରୁ ନିର୍ମଳ ଘରେ ଥିଲା ?

"— ହଁ ।" ବକୁଳର ଗଳା ଭିତରେ ମରୁଭୂମି, ଆଖି ଆଗରେ ସୀମାହୀନ ସମୁଦ୍ର । ତେବେବି ସେହି ଗଳାକୁ ଭିଜାଇ ଦେଇ କହିବାକୁ ପଡୁଥିଲା— ହଁ, ହେଇଟି ବହି ପରା ଦେଲେ ।

—ନଭେଲ ନା ନାଟକ ?

—ଇ.....ଏ, ନା । ଗପ ବହି ।

—ସେ ଏକା କଥା !. ହେଲେ ଏ ବୟସରେ ଏତେ ବେଶୀ ନଭେଲ—ନାଟକ ନ ପଢ଼ିବା ହିଁ ଭଲ ମା', ଖାଲି କୁଚିନ୍ତା ଆସି ମୁଣ୍ଡରେ ବସା ବାନ୍ଧିବ । ବାପା ମନ ଦେଉ ନାହାନ୍ତି ବୋଲି ନ ହେଲେ ଠିକ୍ ବୟସରେ ବାହାଘର ହୋଇଥିଲେ ତ ଏତେଦିନରେ ଦୁଇ ପୁଅର ମା' ହୋଇସାରନ୍ତୁଣି ।

ଏମିତି ଉପଦେଶ ! ଏମିତି ଭାଷା !

ସେଥିପାଇଁ ବକୁଳ କହେ— ଏ ଛାତରୁ ସେ ଛାତକୁ ଯଦି ଅଦୃଶ୍ୟ ହୋଇ ଉଡ଼ିଯିବାଟା ହୋଇପାରିଥାନ୍ତା !

—ପ୍ରଭାତ ମୁଖାର୍ଜୀଙ୍କ ମନର ମଣିଷ ଗପ ଭଳି !

—ଯାହା କହିଲ । ସତରେ ଭାରି ଇଚ୍ଛା ହେଉଛି ସ୍ୱପ୍ନରେ କୌଣସି ଗୋଟିଏ ଚେର ପାଇଲି, ଯୋଉଟାକୁ ମୁଣ୍ଡରେ ଛୁଆଁଇ ଦେଲେ 'ମଣିଷ ଅଦୃଶ୍ୟ ହୋଇଯାଇପାରିବ ।' ତମ ମୁଣ୍ଡ ଆଉ ମୋ ମୁଣ୍ଡକୁ ଠୁକେଇ ଦେଇ ସମସ୍ତଙ୍କ ନାକ ଆଗରେ ବସି ବେଶ୍ ଗପସପ କରି ହୁଅନ୍ତା—

ହଠାତ୍ ଭୀରୁ ନିର୍ମଳ ଗୋଟିଏ ସାହସୀର କାମ କରିଦେଲା । ସମ୍ମୁଖବର୍ତ୍ତିନୀର ଗୋଟିଏ ହାତକୁ ଚିପି ଧରି ମୃଦୁ ହସି କହିଲା, ''ଅଦୃଶ୍ୟ ହେଲେ କ'ଣ ଖାଲି ଗପସପ କରି ଛାଡ଼ିଦେବି ?''

—ଆହା ! ଧେତ୍ !

ସେହି 'ଆହା' ସାଙ୍ଗେ ସାଙ୍ଗେ ଅବଶ୍ୟ ହାତକୁ ଛାଡ଼ିଦିଆଯାଇଛି ।

—ଛାତରୁ ଛାତକୁ ପକାଇବାକୁ ଗୋଟାଏ ନିଶୁଣି ଯଦି ଥାଆନ୍ତା ଭଲ ହୋଇଥାଆନ୍ତା, ଡିଟେକ୍‌ଟିଭ୍ ଗପରେ ଯେମିତି ଦଉଡ଼ିର ନିଶୁଣି ଫିଶୁଣି ଥାଏ— ।

ହଁ, ଏମିତି ସବୁ କଥା ।

କିନ୍ତୁ କାହିଁକି ଯେ ସେ ସବୁ ଦୁରୂହ ପଥର ଚିନ୍ତା କରାଯାଉଥିଲା, ତାହା ଦୁଇଜଣଙ୍କ ଭିତରୁ ଜଣେ ସୁଦ୍ଧା ଜାଣି ନ ଥିଲେ ।

ଖାଲି ଯେମିତି ଦେଖାହେବାଟା ହିଁ ଶେଷ କଥା ।

ବକୁଳ ଏହିଯୁଗର ଏ ଅନାମିକାଙ୍କ ଝିଆରୀ ପରି କହିଦେବାର କଳ୍ପନା ମଧ୍ୟ କରିପାରୁ ନ ଥିଲା— ଆଗ ମନ ସ୍ଥିର କର । ତମ ଘରର ଅମତରେ ବାହା ହୋଇପାରିବ ଏବଂ ବାହାହୋଇ ସ୍ତ୍ରୀକୁ ରାଣୀ ଭଳି ରଖିପାରିବ, ତା'ହେଲେ ଯାଇ ପ୍ରେମର ଗୁଞ୍ଜନ ଗୁଞ୍ଜରିବାକୁ ଆସ ।

ବକୁଳର ଯୁଗ ଅନ୍ୟପ୍ରକାର ଥିଲା । ବକୁଳ ଝିଅଟା ମଧ୍ୟ ଆହୁରି ବେଶୀ ଅନ୍ୟପ୍ରକାରର ଥିଲା ବୋଧହୁଏ ।

ସେଇଥିପାଇଁ ବକୁଳର ଅଭିମାନ ନ ଥିଲା, ଅଭିଯୋଗ ନ ଥିଲା, ଖାଲି ସ୍ନେହ ଥିଲା ।

ମାନେ ସେଇ ଗଉଡ଼ର ପାଣିଆ ଦୁଧ ପରି ସ୍ନେହ ।

ବକୁଳ କହିଲା— କାହିଁ, ବହିଟା ଦେଲ, ପଳାଏ ।

—ଆସିଲାକ୍ଷଣି ଖାଲି ପଳେଇବି ପଳେଇବି !

—ହେଲେ କ'ଣ କରିବି, ବାଃ !

—ଯଦି ଯିବାକୁ ନ ଦିଏ ? ଅଟକାଇ ରଖେ ?

—ଇସ୍ ! ଭାରି ସାହସ ! ଅଟକାଇ ରଖି କ'ଣ କରିବ ?

—କିଛି ନାଇଁ...... ଏମିତି ।''...... ସଙ୍ଗୀନ୍ ମୁହୂର୍ତ୍ତଗୁଡ଼ାକୁ ଏହିପ୍ରକାର ବ୍ୟର୍ଥ କରୁଥାଏ ନିର୍ମଳ । କାରଣ ତା'ଠାରୁ ବେଶୀ କ୍ଷମତା ତା'ର ନ ଥିଲା ।

ସେ ପୁଅଟା ଆଡ଼କୁ ଚାହିଁ ମଧ୍ୟ ଅନାମିକାଙ୍କର ମାୟା ହୁଏ । କହିବାକୁ ଇଚ୍ଛା ହୁଏ— ବିଚରା !

କିନ୍ତୁ ସେଦିନ ସେ ବିଚରାଟା ମଧ୍ୟ ରକ୍ଷା ପାଇ ନ ଥିଲା । ଶେଷରକ୍ଷା ହେଲା ନାହିଁ । ଯେତେବେଳେ ବହିଟାକୁ ହାତରେ ଧରି, ଘର ଭିତରୁ ବାହାରିଆସିବାକୁ ଯାଉଥିଲା ବକୁଳ ଆଗରେ ତା'ର ଦେଠେଇ ଜପାମାଳୀ ହାତରେ ଠିଆ ହେଇଥିଲେ !— ଏ ମା ! ବକୁଳ ତୁ ଏଠି— ତେଣେ ତୋ ଘରୁ— ଓହୋ, ବହି ନେବାକୁ ଆସିଥିଲୁ ବୋଧହୁଏ ?

—ହଁ ।

—ମୁଁ ତ ତା ଜାଣିନି । ତା'ହେଲେ ତୋ ପୁତୁରାଟାକୁ କହିଦେଇଥାନ୍ତି । ମୁଁ ଆସିଛି ଛାତଟା ପରିଷ୍କାର ଅଛି କି ନାହିଁ ଦେଖିବାକୁ । କାଲିକି ଦିଡ଼ଟା ବଡ଼ି ପକାଇବି ଯେ ।

ଦେଠେଇ କାଲି ବଡ଼ି ପକାଇବେ, ସେଇଥିପାଇଁ ଆଜି ଜପାମାଳୀ ହାତରେ ଧରି ଧାଇଁ ଆସିଛନ୍ତି, ଛାତ ପରିଷ୍କାର ଅଛି କି ନାହିଁ ଦେଖିବାକୁ !

ଆଉ ପୁତୁରା ? ସେ ଖବରଟା ସଂପୂର୍ଣ୍ଣ କଳ୍ପିତ ମଧ୍ୟ ହୋଇଥାଇପାରେ । ଜାଣିଛନ୍ତି ତ ବକୁଳ ଆଉ ଘରକୁ ଫେରି 'ଭେରିଫାଇ' କରିବାକୁ ଯିବ ନାହିଁ । ଅଥବା ସତ ମଧ୍ୟ ହୋଇଥାଇପାରେ । ବଡ଼ଭାଇନା ଯେମିତି ଜାଣିଛି ଯେ ବକୁଳ ଘରେ ନାହିଁ ଚର ପଠାଇ ଦେଇଛି ।

କଲିକତାର ଦକ୍ଷିଣ ଅଞ୍ଚଳରେ ରାଜେନ୍ଦ୍ରଲାଲ ଷ୍ଟ୍ରୀଟ୍‌ରେ ଏକାବେଳେ ରାସ୍ତା ଉପରେ ବୟସର ଛାପ ପଡ଼ିଥିବା ଏହି ଘରଟିର ଦୋତାଲାରେ ପୁରୁଣାକାଳିଆ ଗଢ଼ଣର ସିଧା ଲମ୍ବା ବାରଣ୍ଡାର କାନ୍ଥରେ ସିଧା ପାହାଚ ଶ୍ରେଣୀକୁ ମୁହଁ କରି ଚଉଡ଼ା ଫ୍ରେମ୍‌ର ବେଷ୍ଟନୀ ଭିତରେ ଯେଉଁ ମୁହଁଟି ଦିଶେ, ସେ ମୁହଁ ଏ ଘରର ମୂଳ ମାଲିକ ପ୍ରବୋଧଚନ୍ଦ୍ର ମୁଖୋପାଧ୍ୟାୟଙ୍କର ।

ଚାରିଆଡ଼େ ରହିଥିବା ଖୋଲା ଜମି ମଝିରେ ଶସ୍ତାରେ ଜମି କିଣି ସେ ହିଁ ଏହି ଘରଟି ତିଆରି କରି ଏକାନ୍ନବର୍ତ୍ତୀ ପରିବାରର ଅନ୍ନ-ବନ୍ଧନ ଛିନ୍ନ କରି ଚାଲିଆସି ପ୍ରତିଷ୍ଠିତ କରିଥିଲେ ନିଜର ସଂସାରଟିକୁ । ବର୍ତ୍ତମାନର ମାଲିକମାନେ, ଅର୍ଥାତ୍ ପ୍ରବୋଧଚନ୍ଦ୍ରଙ୍କ ପୁଅମାନେ ଏବଂ ସେମାନଙ୍କର ବଡ଼ ହୋଇଯାଇଥିବା ପୁଅମାନେ ଅବଶ୍ୟ ଏବେ ପ୍ରବୋଧଚନ୍ଦ୍ରଙ୍କ ଦୂରଦର୍ଶିତାର ଅଭାବକୁ ଧିକ୍କାର କରନ୍ତି କାରଣ ଆଖପାଖରେ ପଡ଼ିଥିବା ସେହି ଶସ୍ତା ଖୋଲାଜମିର କିଛି କିଛି କିଣି ରଖିଥିଲେ ମଧ୍ୟ ଆଜିକାଲିର ବଜାରରେ ସେହି ଟିକକ ଜମି ବିକିଦେଇ ମଣିଷ 'ଲାଲ୍' ହୋଇଯାଇପାରିଥାନ୍ତା । କିନ୍ତୁ ଅଦୂରଦର୍ଶୀ ପ୍ରବୋଧଚନ୍ଦ୍ର କେବଳ ନିଜ ( : ଅନୁସାରେ ଜମି କିଣି ଆଢେବାଢେ ପ୍ଲାନ୍‌ରେ ଖଣ୍ଡେ ଘର ତିଆରି କରିଦେଇ ନିଜର କର୍ତ୍ତବ୍ୟ ସାରିଦେଇଥିଲେ । ଯେଉଁ ଘରଟାରେ କେବଳ ତାଙ୍କର ପୁଅ ଓ ନାତିମାନେ କୌଣସି ପ୍ରକାରେ ମୁଣ୍ଡଗୁଞ୍ଜି ରହିପାରିବେ । ତା'ଠାରୁ ଅଧିକ କିଛି ନୁହେଁ । ଅଥଚ ସୁପରିକଳ୍ପିତ ନକ୍ସାରେ ଫ୍ଲାଟ୍‌ଘରର ଢଙ୍ଗରେ ଘରଟା ତିଆରି କରିଥିଲେ ଯେ ପ୍ରଥମ ମହଲାର କିଛି ଅଂଶ ଭଡ଼ା ଦେଇ କିଛି ଟଙ୍କା ଆଦାୟ ହୋଇପାରିଥାଆନ୍ତା, ସେ କଥାଟା ସେ ଭଦ୍ରଲୋକଙ୍କ ଖିଆଲରେ ପଶିନି ।

ଏମାନଙ୍କର ମଧ୍ୟ ଖିଆଲ ହେଉ ନାହିଁ ଯେ ସେତେବେଳେ ଫ୍ଲାଟ୍‌ଶବ୍ଦଟା ହିଁ ସେମାନଙ୍କ ନିକଟରେ ଅଜଣା ଥିଲା । ସେତେବେଳେ ସମାଜରେ ଫ୍ଲାଟ୍‌ର ଅନୁପ୍ରବେଶ ଘଟିବାର ଆଭାସ ମଧ୍ୟ ନ ଥିଲା । 'ବସା ଭଡ଼ା', 'ଘର ଭଡ଼ା' 'କୋଠା ଭଡ଼ା' ଏଇ କଥା ତ ଥିଲା ।

ଖିଆଲ ହୁଏନି ବୋଲି ଯେତେବେଳେ ସେତେବେଳେ ସମାଲୋଚନା କରନ୍ତି ।

ତେବେ ହଁ, ସ୍ୱୀକାର କରନ୍ତି, ଘରଗୁଡ଼ାକ ବେଶ୍ ବଡ଼ ବଡ଼ ଆଉ ଏଣୁ ତେଣୁ କରି ଗୁଡ଼ାଏ ଛୋଟ ଘର ଥିବା ହେତୁ ଖୋଲା ଲାଗେ ରହିବାକୁ । କିନ୍ତୁ ଏ ଯେଉଁ ଲମ୍ବା ଲମ୍ବା ବାରଣ୍ଡା ତଳମହଲାରେ, ଦୋତାଲାରେ ? କୋଉ କାମରେ ଲାଗେ ସେ ଦୁଇଟା ? ଯେତେବେଳେ ସପରିବାରରେ ପିଢ଼ା ପକାଇ 'ପଂକ୍ତିଭୋଜନ'ର ବ୍ୟବସ୍ଥା ଥିଲା, ସେତେବେଳେ ଅବା ତଳର ପିଣ୍ଡାଟା କାମରେ ଲାଗୁଥିଲା, ଏଇଲେ ତ ସେତକ ମଧ୍ୟ ନାହିଁ । ଏବେ ତ ଆଉ ପରିବାରର

ସମସ୍ତେ ଏକାନ୍ନଭୁକ୍ତ ନୁହଁନ୍ତି ? ଯେଉଁମାନେ ଅଛନ୍ତି ସେମାନେ ନିଜର ଅନ୍ନ ପୃଥକ୍ କରି ଦେଇଛନ୍ତି ଏବଂ ଖାଇବାପାଇଁ ଜାଗା ମଧ୍ୟ ଅଲଗା କରିଦେଇଛନ୍ତି ଭାଗ କରି ।

ପ୍ରବୋଧଚନ୍ଦ୍ରଙ୍କ ବଡ଼ପୁଅ ଅବଶ୍ୟ ଏବେ ଆଉ ଇହଲୋକର ଅନ୍ନଜଳରେ ଭାଗୀଦାର ହୋଇ ନାହାନ୍ତି, ତାଙ୍କର ବିଧବା ସ୍ତ୍ରୀ ତଳମହଲାରେ ନିଜର ଗୋଟିଏ ପବିତ୍ର ଇଲାକା ଭାଗ କରିଦେଇ ନିଜର ହବିଷ୍ୟାନ୍ନର ଶୁଚିତା ରକ୍ଷା ମଧ୍ୟରେ ବିରାଜିତା, ତାଙ୍କରି ଜ୍ୟେଷ୍ଠପୁତ୍ର ଅପୂର୍ବ ଦୋତାଲାର ଘର ବାରଣ୍ଡା ଘେରି ନିଜର 'ମ୍ଳେଚ୍ଛପଣିଆ'ର ସୀମା ଭିତରେ ବିରାଜମାନ ।

ଅପୂର୍ବର ଆଉ ଦୁଇଜଣ ଭାଇ ଚାକିରି ଯୋଗୁ ଘରଛଡ଼ା, ସେମାନେ ଦୈବାତ୍ କେଉଁ ଛୁଟିରେ କେବେ କିଏ ଆସନ୍ତି । କେବେ ମା'ଙ୍କ ରନ୍ଧାଘରେ, କେବେ ଭାଉଜଙ୍କ ରନ୍ଧାଘରେ, ଆଉ ଦିନେ ଦିନେ ନିମନ୍ତ୍ରଣ ଖାଇ କଟାଇ ଚାଲିଯାଆନ୍ତି । ଜଣେ ଥାଏ ରେଙ୍ଗୁନ୍‌ରେ, ଜଣେ ତ୍ରିପୁରାରେ, ଯିବାଆସିବାରେ ହିଁ ସମୟ ଯାଏ ।

ଜେଜେଇମାନଙ୍କ ଘରୁ ନିମନ୍ତ୍ରଣ ମିଳେ । ଶ୍ୱଶୁରମାନଙ୍କ ଘରୁ ନିମନ୍ତ୍ରଣ ମିଳେ, କେବେ କେମିତି ବଡ଼ପିଉସୀ ଘରୁ ମଧ୍ୟ । କଲିକତାରେ ବଡ଼ପିଉସୀ ଚମ୍ପା କେବଳ ରହେ ।

ପ୍ରବୋଧଚନ୍ଦ୍ରଙ୍କ ମଝିଆପୁଅ ଯାହାର ଡାକ ନାଁ 'କାହ୍ନୁ', ନିଜର ସଂସାର ଧରି ଦୋତାଲାର ଆଉ ଏକ ଅଂଶରେ ବାସ କରେ । ତା'ର ଘରଣୀ ବାତରୋଗୀ, ଚାଲବୁଲ କମ୍, ପିଲାମାନେ ଲାଜକୁଳା ଓ ବେଶୀ ମିଶାମିଶି କରନ୍ତି ନାହିଁ ।

ମଝିଆ କାହ୍ନୁ ମଧ୍ୟ ତା'ର ବଡ଼ଭାଇନା ଓ ଭାଉଜଙ୍କ ନୀତିରେ ବିଶ୍ୱାସୀ, ଯେତେ ଚଞ୍ଚଳ ପାରିଛି ଝିଅମାନଙ୍କୁ ବାହା କରିଦେଇଛି । ବିବାହିତା ଝିଅମାନେ କମ୍ ଯା'ଆସ କରନ୍ତି । କାହ୍ନୁ ନାମକ ବ୍ୟକ୍ତିଟି ଆୟ-ବ୍ୟୟ ସଂପର୍କରେ ଯଥେଷ୍ଟ ସତର୍କ । ହୃଦୟକୁ ପ୍ରଶ୍ରୟ ଦେବାକୁ ଗଲାମାତ୍ରେ ଯେ ପକେଟ୍ ପ୍ରତି ନିର୍ଦ୍ଦୟତା କରାଯିବ, ସେ କଥା ସେ ବୁଝେ ।

ବୁଝିବାକୁ ପଡ଼େ କାରଣ ବର୍ତ୍ତମାନ ଅବସର ନେଇଛି ସେ ।

ଆଉ ଅଛି, ପ୍ରବୋଧଚନ୍ଦ୍ରଙ୍କର ସାନମଝିଆପୁଅ, ଡାକ ନାଁ ମାନୁ, ଭଲ ନାଁ ହେଉଛି ପ୍ରତୁଳ । ବର୍ତ୍ତମାନ ସେ ହେଉଛି କନିଷ୍ଠ ।

ଏ ପରିବାରରେ ଭଲ ନାଁ ଦେବାର 'ପ୍ର'ର ପ୍ରତାପ ପ୍ରବଳ । ସୁବଳ ନାମକ ଯେଉଁ ସାନ ପିଲାଟି ଏକଦା ପ୍ରବୋଧଚନ୍ଦ୍ରଙ୍କ ପରିବାରରେ ସଂପୂର୍ଣ୍ଣ

ବହିରାଗତର ଭୂମିକାରେ ନିର୍ଲିପ୍ତ ମୁହଁରେ ଘୂରି ବୁଲୁଥିଲା, 'ଘର ସଂସାର' କରି ନ ଥିଲା, ସେ ଅନେକଦିନ ଆଗରୁ ତା'ର ଜାଗା ଛାଡ଼ିଦେଇ ଚାଲିଯାଇଛି ।

ବକୁଳ ଆଉ ସୁବକ୍ଳ ଉପର ତଳ, ଦୁଇଜଣଯାକ ପରସ୍ପରର ନାଁ ଧରି ଡାକୁଥିଲେ । ସାନମଝିଆ ମାନୁଙ୍କୁ ହିଁ ବରାବର 'ସାନଭାଇନା' ବୋଲି ସମ୍ବୋଧନ କରିଆସୁଛି ବକୁଳ । ସେହି ସାନଭାଇନାର ରନ୍ଧାଘରେ ବକୁଳର ଆସନ ପଡ଼ିଛି ।

ପ୍ରବୋଧଚନ୍ଦ୍ରଙ୍କର ଏହି ସୃଷ୍ଟିଛଡ଼ା ସାନଝିଅଟା ତ ଚିରଦିନ ପାଇଁ ଏ ସଂସାରରେ ଚେର ମାଡ଼ି ବସି ରହିଲା ।

ମୃତ୍ୟୁ ସମୟରେ ପ୍ରବୋଧଚନ୍ଦ୍ର ତାଙ୍କର ପୁରୁଣାଘରର ନବନିର୍ମିତ ତିନିତାଲା ଉପରର ଘର, ବାରଣ୍ଡା, ଛାତ ଇତ୍ୟାଦି ଯେ କାହିଁକି ତାଙ୍କର ଚିରଦିନର ବିରକ୍ତିଭାଜନ, ହାଡ଼ଜଳା ସାନଝିଅଟି ନାଁରେ ଉଇଲ୍ କରିଦେଇ ଯାଇଥିଲେ, ତାହା ଏକ ରହସ୍ୟ । ତେବେ ଦେଇ ଯାଇଥିଲେ ତାଙ୍କର ପୁଅମାନଙ୍କୁ ଚମକିତ, ବିଚଳିତ କରି ଓ ଗୋତ୍ରାନ୍ତରିତା କନ୍ୟାମାନଙ୍କୁ ଈର୍ଷିତ କରି ।

ତିନିତାଲାର ସେହି ଘରଟିକୁ ଲାଗି ଟିକିଏ 'ଘର' ପରି ମଧ୍ୟ ରହିଛି ରନ୍ଧାବଢ଼ା କାମରେ ଲାଗିବା ପାଇଁ, କିନ୍ତୁ ସେ କାମରେ ସେଇଟା କେବେ ଲାଗିନି । ସେଠାରେ ଅନାମିକା ଦେବୀଙ୍କର ଅଦରକାରୀ କାଗଜପତ୍ରର ବୋଝ ଗଦା ହୋଇ ରହିଥାଏ ।

ପିତୃଗୋତ୍ର ଭିତରେ 'ଅଚ୍ଛିନ୍ନ' ରହି ଅନାମିକା ଅବିଚଳ ଭାବରେ ସାହିତ୍ୟସାଧନା କରି ଚାଲିଛନ୍ତି ।

ଅନାମିକାଙ୍କ ଅମଳରେ ପ୍ରବୋଧଚନ୍ଦ୍ରଙ୍କ ପରି ରକ୍ଷଣଶୀଳ ବ୍ରାହ୍ମଣଙ୍କ ଘରେ ବାହା ନ ହୋଇ ପଡ଼ି ରହିଥିବା ଝିଅଙ୍କ ଦୃଷ୍ଟାନ୍ତ ପ୍ରାୟ ଅବିଶ୍ୱାସ୍ୟ କଥା, ତେବେକେ ଏମିତି ଅବିଶ୍ୱାସ୍ୟ ଘଟନାଟା ଘଟିଥିଲା । ଘଟିଥିଲା ନିହାତି ଘଟଣାଚକ୍ରରେ । ନା, କୌଣସି ଉଲ୍ଲେଖଯୋଗ୍ୟ କାରଣରୁ ନୁହେଁ, କେବଳ ଘଟଣାଚକ୍ରରେ ।

ନାଁ ଆଗରୁ ଚନ୍ଦ୍ରବିନ୍ଦୁ ହୋଇ ଯାଇଥିବା ସେହି ପ୍ରବୋଧଚନ୍ଦ୍ର ବେଶୀ ଧନୀ ନ ହେଲେ ମଧ୍ୟ ପ୍ରବଳ ଜିଦ୍ ରହିଥିଲା ତାଙ୍କର, ତିନି ତିନିଟା ଝିଅର ଠିକ୍ ବୟସରେ ଯଥାରୀତି ବାହାଦେଇ ସାନଝିଅଟି ବେଳକୁ ସେ ଯେ ହାରିଗଲେ, ସେଇଟା ଝିଅର ଜିଦ୍ ଯୋଗୁ ଅଥବା ତା'ର 'ଚିରକୁମାରୀ' ରହିବାର ଝୁଙ୍କ ଯୋଗୁଁ ନୁହେଁ । ନିହାତି ନିଜର ଅଳସୁଆମି ଯୋଗୁ । ଅଥବା ଖାଲି ଅଳସୁଆମି ନୁହେଁ, ଆହୁରି କିଛି ସୂକ୍ଷ୍ମ 'କାରଣ ଥିଲା ।

ତାଙ୍କର ଚାରିପୁଅ ଓ ଚାରିଝିଅ ଭିତରେ ସାତ ସାତଜଣ ତ ହାତରୁ ଖସି ଯାଇଥିଲେ । ପୁଅମାନଙ୍କ ଭିତରୁ ତିନିଜଣଙ୍କୁ ନେଇଯାଇଥିଲେ ବୋହୂମାନେ, ଅର୍ଥାତ୍

ପରଝିଅମାନେ । ସେହି ପିଲାମାନଙ୍କର ଗୋଟାଏ ଗୋଟାଏ ଅସଲ ଭଲ ନାଁ ଥିଲେ ମଧ୍ୟ ଡାକ ନାଁ ତ ସେଇ ଭାନୁ, କାନୁ ଆଉ ମାନୁ । ବାକି ଥିବା ପୁଅଟିକୁ ଆଉ କୌଣସି ପରଝିଅ ଆସି ଦଖଲ କରି ନେଇପାରିନି, କାରଣ ସୁବଳ ନାମକ ସେ ପୁଅଟା କାହାର ଦଖଲରେ ରହିବା ଆଗରୁ ନିଜେ ଭଗବାନ ତାକୁ ନେଇଯାଇଥିଲେ ।

ଆଉ ଝିଅ ଚାରିଜଣଙ୍କ ଭିତରୁ ଚମ୍ପା, ଚନ୍ଦନ ଆଉ ପାରୁଲ ନାଆଁର ବଡ଼ ତିନୋଟି ଝିଅଙ୍କୁ ଯଥାରୀତି ହାତେଇ ନେଇଥିଲେ ପରପୁଅମାନେ । ହୁଏତ ସେଇଥିପାଇଁ ଜ୍ୱାଇଁମାନଙ୍କୁ ଦୁଇଆଖିରେ ଦେଖିପାରୁ ନ ଥିଲେ ପ୍ରବୋଧଚନ୍ଦ୍ର । ଆହୁରି ବେଶୀ ସ୍ତ୍ରୀ-ବିୟୋଗ ପରେ ଝିଅମାନଙ୍କୁ ଅଣାଅଣି କରିବାର ନାଁ ଧରୁ ନ ଥିଲେ । କାରଣ ସାଙ୍ଗରେ ସେମାନଙ୍କର ଜ୍ୱାଇଁ ଓ ସେମାନଙ୍କ ଛୁଆ-ପିଲା ଆସି ଭିଡ଼ କରିବେ, ସେହି ଆଶଙ୍କାରେ ।

ଅତଏବ ଶେଷଭରସା ସର୍ବଶେଷଟି ।

ତାକୁ ହାତରୁ ଖସାଇଦେବା ଭୟରେ ତା' ବୟସ ସମ୍ପର୍କରେ ଆଖି ବୁଜି ରହୁ ରହୁ ଭଦ୍ରଲୋକ ଏମିତି ସମୟରେ ଆଖି ବୁଜିଦେଲେ ଯେ, ସେତେବେଳକୁ ଆଉ ତା'ର ବାହାଦେବାର ପ୍ରଶ୍ନ ଉଠିପାରିବନି । ତେଣୁ ଭାଇନାମାନେ ଆଉ ସେ ପ୍ରଶ୍ନ ନେଇ ମୁଣ୍ଡ ଘୂରାଇବାକୁ ଗଲେ ନାହିଁ ।

ଆଉ କ'ଣ ବା କରିବେ ? ପାରୁଲ୍‌ର ଯୋଡ଼ି 'ବକୁଳ' ନାଆଁର ସେହି ଶାନ୍ତ, ନମ୍ର, ନିରୀହ ଝିଅଟି ଯେ ସେତେବେଳେ ଅନ୍ୟ ନାଁରେ ଝଲସିଉଠି ଘର ଛାଡ଼ି ବାହାରକୁ ବାହାରି ପଡ଼ିଲାଣି !

ତା'ଛଡ଼ା ବାପାଙ୍କ ଉଇଲ୍ ।— ସେହି ଉଇଲ୍ ବଳରେ ଯଦି ବକୁଳ ଏ ଘରର ଏକାଂଶ ଦଖଲ କରି ବସି ରହିପାରେ, ତାକୁ ଆଉ 'ଘରଛଡ଼ା' କରିବାର ଚେଷ୍ଟା କରିବାରେ ଲାଭ କ'ଣ ? ବର ସହିତେ ଆସି ରହିଲେ କ'ଣ ଭଲକଥା ହେବ ?

ଅତଏବ ବିଶେଷ କୌଣସି କାରଣରୁ ନୁହେଁ, ବିଶେଷ କିଛି ଇତିହାସ ସୃଷ୍ଟି କରି ନୁହେଁ, ନିହାତି ମଧ୍ୟବିତ୍ତ ଏବଂ ନିହାତି ମଧ୍ୟଚିତ୍ତ ଏହି ପରିବାରର ଗୋଟିଏ ଝିଅ ସେକାଳର ସମାଜ ନିୟମର ବଜ୍ର ଗଣ୍ଠି ମଧ୍ୟରୁ ଖସିଯାଇ ବାହାରିପଡ଼ି ଏକାଳର ସମାଜରେ ଚରି ବୁଲୁଛି ।

ଏବେ ଆଉ କିଏ କ'ଣ କହିବ ? ଏକାଳରେ କେହି କାହାକୁ କିଛି କହନ୍ତି ନାହିଁ ।

କିନ୍ତୁ ଏକାଳର ସମାଜରେ ପଡ଼ିବା ଆଗରୁ ?

ହଁ, ସେତେବେଳେ ଅବଶ୍ୟ ଅନେକ ଅନେକ କଥା କହିଥିଲେ । ପ୍ରବୋଧଚନ୍ଦ୍ର ଅନେକଦିନ ଆଗରୁ ଯେଉଁ ପରିବାରର ଏକାନ୍ନର ବନ୍ଧନ ଛିନ୍ନ କରି ଚାଲିଆସିଥିଲେ, ସେମାନେ କହିଥିଲେ ମହିଳାକୁଳ ଗାଡ଼ି ଭଡ଼ା କରି କଲିକତାର ଉତ୍ତର ଅଞ୍ଚଳରୁ ଆସି ଦକ୍ଷିଣ ଅଞ୍ଚଳରେ ହାଜର ହୋଇ ବଂଶମର୍ଯ୍ୟାଦାର କଥା ଶୁଣାଇ ଦେଇଥିଲେ, ତେବେ ସେହି କହିବା ଭିତରେ ସେମାନେ ସେତେବେଶୀ ଜୋର୍ ଦେଇପାରି ନ ଥିଲେ । କାରଣ ସେତେବେଳକୁ ତ ଆସାମୀ ପଳାତକ !

ପ୍ରବୋଧଚନ୍ଦ୍ରଙ୍କ ମୃତ୍ୟୁ ପରେ ସେମାନଙ୍କର ଦରଦ ବଢ଼ିଥିଲା । ଶ୍ରାଦ୍ଧ ସମୟରେ ଜ୍ଞାତିଭୋଜନ ପାଇଁ ଆସି ତ ବକୁଳକୁ ଦେଖି ଆଁ କରିଦେଇ ବୟସ ହିସାବ କରିବାକୁ ଆରମ୍ଭ କରିଥିଲେ ଏହି ଅବିଶ୍ୱାସ୍ୟ ଘଟଣାର ନାୟିକାର ।

ତାଛଡ଼ା ସେତେବେଳକୁ— ବକୁଳ ପାଇଁ ନାଁଟା ମଧ୍ୟ ବେଶ୍ ସୁଖ୍ୟାତି ହୋଇଯାଇଛି । ମୋଟ କଥା— କେମିତି କେମିତି ହୋଇ ବକୁଳ ରାଜେନ୍ଦ୍ରଲାଲ ଷ୍ଟ୍ରୀଟ୍‌ର ଏହି ଘରଟାରେ ଚେର ମାଡ଼ି ବସି ରହି ଆଖି ଖୋଲି ଦେଖିଚାଲିଛି କିପରି ଘରର ଚାରିପାଖର ଉଦାରଶୂନ୍ୟତା ସଂକୀର୍ଣ୍ଣ ହୋଇଆସୁଛି ଆଉ ସମାଜର ଆବଦ୍ଧ ସଂକୀର୍ଣ୍ଣତା ଉଦାର ହୋଇଯାଇଛି ।

ବକୁଳର ନିଜର ଜୀବନ ସହିତ ବୋଧହୁଏ ଏ ପଡ଼ାଟାର ଗୋଟାଏ ସାଦୃଶ୍ୟ ଅଛି । ତା' ନିଜ ଭିତରେ ଆଉ କେଉଁଠି ଟିକିଏ ମୁକ୍ତିର ନିଃଶ୍ୱାସ ପକାଇଲା ଭଳି ଖୋଲା ଜମି ପାଏ ନାହିଁ ବକୁଳ । କୌଣସି ଦିନ ଯେ କେଉଁଠାରେ ଅନେକ ଶୂନ୍ୟତା ଥିଲା, ତାହା ସ୍ମରଣ କରିବାକୁ ମଧ୍ୟ ତା'ର ସମୟ ନାହିଁ, ସମସ୍ତ ସ୍ଥାନ ଘନ କରି ବୁଣା ହୋଇଯାଇଛି ଠିକ୍ ସେହି ରାସ୍ତାକଡ଼ର ଧାଡ଼ିବନ୍ଧା ଘରଗୁଡ଼ିକ ପରି ।

ରାସ୍ତା ଧାରରୁ ଦେଖିଲେ କେବଳ ଗୋଟିଏ ଧାଡ଼ି ବୋଲି ମନେହୁଏ ଆଉ ତିନିମହଲାର ଉପର ଛାତକୁ ଉଠିଲେ— ସେ ଧାଡ଼ିର ପଛକୁ, ପଛକୁ ଆହୁରି ପଛକୁ ଖାଲି ଘର, ଧାଡ଼ି ଧାଡ଼ି ଘର ।

କିନ୍ତୁ ତିନିତାଲାର ଉପର ଛାତକୁ ଚଢ଼ି ତନ୍ନ ତନ୍ନ କରି ଦେଖିବା ପରି ବିଳାସିତା ପାଇଁ ବକୁଳର ସମୟ କାହିଁ ? ଘର ଆଗର ଛାତଟିକକରେ ଟିକିଏ ଠିଆହୋଇ ଦେଖିବାକୁ ମଧ୍ୟ ତ ସମୟ ମିଳେ ନାହିଁ ।

ଆଶ୍ଚର୍ଯ୍ୟ !

ଯେତେବେଳେ ସମୟ ଥିଲା— ସେତେବେଳେ ଏହି ତିନିତାଲାର ଛାତଟା ପାଇଥିଲେ ଗୋଟିଏ ରାଜ୍ୟ ପାଇବାର ସୁଖାନୁଭୂତି ହୋଇପାରିଥାନ୍ତା, ସେତେବେଳେ ସେ ଛାତଟା ଚଢ଼ିବାର ସରୁ ଲୁହା ପାହାଚଶ୍ରେଣୀ ଆଗରେ ଠିଆହୋଇ ମନେ

ମନେ ବକୁଳ କଳ୍ପନା କରୁଥାଏ— ବକୁଳର କୈଶୋର ସମୟରେ ଯଦି ଏଇଟା ଥାଆନ୍ତା !— ଥିଲେ ଯେ କ'ଣ ହୋଇଥାନ୍ତା ତା ବକୁଳ ଜାଣେନି, 'ଯଦି ଥାଆନ୍ତା' ଭାବିଲାକ୍ଷଣି ଅନ୍ୟ ଗୋଟିଏ ଘର ଛାତରେ ହସ-ହସ ମୁହଁଟିଏ ଭାସିଉଠୁଥିଲା ଆଖି ଆଗରେ ।

ଯେଉଁ ମୁହଁର ଅଧିକାରୀକୁ ସାନମଝିଆନାନୀ ପାରୁଲ କହୁଥିଲା, 'ବୋକା, ମୂର୍ଖ, ଗଧ ।'

ଅବଶ୍ୟ ସେସବୁ ତ ସେହି ମାନ୍ଧାତା ଅମଳର କଥା । ଯେତେବେଳେ ଥରେ ଅଧେ ପାରୁଲ ଆସୁଥିଲା ବାପଘରକୁ । ଅନେକଦିନ ତଳେ ବିବାହିତା ତିନି ଭଉଣୀଙ୍କ ଭିତରୁ ପାରୁଲ୍‌ର ମା' ମରିଯିବା ପରେ ମଧ୍ୟ ମଝି ମଝିରେ ଆସୁଥିଲା ।

ଆଉ ଚମ୍ପା ଚନ୍ଦନ ? ସେମାନେ ମା'ର ମୃତ୍ୟୁ ସମୟରେ ହିଁ କାନ୍ଦି କାନ୍ଦି କହିଥିଲେ— ମା' ତମେ ମଧ୍ୟ ଚାଲିଗଲ, ଆମର ମଧ୍ୟ ବାପଘରକୁ ଆସିବା ବନ୍ଦ ହେଲା ।

ସେଠାରେ ଉପସ୍ଥିତ ଥିବା ଖୁଡ଼ୀ, ଦେଢେଇ, ପିଉସୀମାନେ କହିଥିଲେ, "ଆହା ! କାହିଁକି ମ, ବାପ ଶହେ ବର୍ଷ ବଞ୍ଚିଥାଆନ୍ତୁ, ଶହେ ବର୍ଷ ପରମାୟୁ ନେଇ—" କିନ୍ତୁ ସେମାନେ ସେହି କ୍ରନ୍ଦନ-ବିଜଡ଼ିତ ଗଳାରେ ସତେଜ ଭାବରେ ସଂସାରର ନିୟମ ବୁଝାଇ ଦେଇଥିଲେ ଗୁରୁଜନମାନଙ୍କୁ— "ଶହେ କି ହଜାର ବର୍ଷ ଥାଆନ୍ତୁ, ମା' ମଲା ପରେ ବାପା ପରା, ଏ କଥା କିଏ ଜାଣିନି ?"

ହୁଏତ ମା' ବଞ୍ଚିଥିଲାବେଳୁ ବାପାଙ୍କ ବ୍ୟବହାରରେ ସୂଚନା ପାଇଥିଲେ ସେମାନେ । ସୂଚନା ପାଇଥିଲେ ମା' ପ୍ରାୟ ଜୋର୍ କରି ସେମାନଙ୍କୁ ନେଇଆସନ୍ତି । ଯଦିଚ ଏ କଥା ମଧ୍ୟ ଧରା ପଡ଼ିବାକୁ ବାକି ନ ଥିଲା— ଏହି ଯୁଦ୍ଧ ଭିତରେ ସ୍ନେହ-ବିଗଳିତ ଚିତ୍ତଟା ସେତେ ନୁହେଁ, କର୍ତ୍ତବ୍ୟବୋଧଟା ହିଁ ବେଶୀ କାମ କରୁଛି ।

ସୁବର୍ଣ୍ଣଲତାର ଏହି ପ୍ରବଳ କର୍ତ୍ତବ୍ୟବୋଧଟା ହିଁ ତ ପ୍ରବୋଧଚନ୍ଦ୍ରଙ୍କୁ ସବୁକାଳେ ଜବତ କରି ରଖିଥିଲା । ପ୍ରବୋଧ ଚନ୍ଦ୍ର ବୁଝିପାରୁ ନ ଥିଲେ ନିଜର ଜୀବନଟାକୁ ଧରି ନିଜେ ଯାହା ଖୁସୀ, ମଣିଷ କାହିଁକି ତାହା କରିପାରେ ନାହିଁ ।

ନିହାତି ଅସ୍ୱଚ୍ଛଳ ଅବସ୍ଥା ନ ହେଲେ ମଣିଷ ତ ଅନାୟାସରେ ଖିଆପିଆ, ଆରାମ, ବିଶ୍ରାମ କରି ସୁଖଭୋଗ କରି କଟାଇ ଦେଇପାରେ, ତେବେ କେଉଁଥିପାଇଁ ମଣିଷ କର୍ତ୍ତବ୍ୟ ନାମକ ବିରକ୍ତିକର ଗୋଟିଏ ବସ୍ତୁଦ୍ୱାରା ନିଜେ ଭାରଗ୍ରସ୍ତ ହେବାକୁ ଯାଏ । ସେହି କଥାଟିର ପଛେ ପଛେ ତ ଆସିବ ଯେତେକ ରାଜ୍ୟର ଚିନ୍ତା ଆଉ ରାଜ୍ୟଯାକର ଅସୁବିଧା ।

ପ୍ରବୋଧଚନ୍ଦ୍ରଙ୍କ ଏହି ମତବାଦ ସହିତ ଚିରକାଳ ସୁବର୍ଣ୍ଣଲତା ଲଢୁଥିଲା । କିନ୍ତୁ ଶେଷ କେତେଦିନ ଯେପରି ସୁବର୍ଣ୍ଣଲତା ହାତରୁ ଅସ୍ତ୍ର ପକାଇଦେଇ ଯୁଦ୍ଧବିରତିର ଅନ୍ଧକାର ଶିବିରରେ ଆଶ୍ରୟ ନେଇଥିଲା ।

ମା'ଙ୍କ କଥା ମନେପଡ଼ିଲା ମାତ୍ରେ ବକୁଳ ମାଆଙ୍କର ସେହି ନିର୍ଲିପ୍ତ, ନିରାସକ୍ତ, ହାତରୁ କାତଟି ଛାଡ଼ିଦେଇଥିବା ମୂର୍ତ୍ତିଟି ମନେପଡ଼େ ।

ମୃତ୍ୟୁର ଅନେକ ଆଗରୁ ସୁବର୍ଣ୍ଣଲତା ଯେପରି ଏ ସଂସାରରୁ ବିଦାୟ ନେଇ ନିଜକୁ ମୃତର ପର୍ଯ୍ୟାୟରେ ରଖି ଦେଇଥିଲା । ସେହି ମୃତ୍ୟୁର ଶୀତଳତା ମଧ୍ୟରେ କଟିଛି ବକୁଳର କୈଶୋରକାଳ ।

ତେବେକେ ଆଶ୍ଚର୍ଯ୍ୟ, ସେହି ଶୀତଳତା ଭିତରେ ହିଁ ଫୁଲ ଫୁଟିଛି, ଆଲୋକ ଜଳିଛି ।

ତା'ପରେ ତ ସୁବର୍ଣ୍ଣଲତା ସତରେ ବିଦାୟ ନେଲେ ।

ବୋଧହୁଏ ସେଥର କେତେଦିନ ପରେ ପାରୁଲ ଆସିଥିଲା ବାପଘରକୁ ।

ଠିକ୍ ମନେ ପଡୁ ନାହିଁ କେବେ ।

## ।। ୯ ।।

ଅନେକ ଦିନ ପରେ ପାରୁଲ ସେଥର ବାପଘରକୁ ଆସିଥିଲା । ଏ ପକ୍ଷର ଆଗ୍ରହର ଅଭାବ ହିଁ ଖାଲି ନୁହେଁ, ନିଜେ ଆସିବାଟା ମଧ୍ୟ ବହୁତ କମ୍, କାରଣ ସେ ଶାଶୁଘରେ ରହେନି, ରହେ ବରଘରେ । ବରର ବଦଳି ଚାକିରି ଏବଂ ସ୍ତ୍ରୀ ବଦଳରେ ରାନ୍ଧୁଣିଆ ଚାକରାଣୀ ହାତରେ ଖାଇବାକୁ ସେ ନାରାଜ, ସେଇଥିପାଇଁ ବାପା ମା'ଙ୍କ ସଙ୍ଗେ ମତାନ୍ତର କରି ସ୍ତ୍ରୀକୁ ନିଜର ବସାକୁ ନେଇଯାଇଛି । ପୁଅ ତା ସ୍ତ୍ରୀକୁ ନେଇଯାଇ ନିଜ ନିକଟରେ ରଖିବାକୁ ଚାହିଁଲେ କେଉଁ ବାପ ମା' ବା ପ୍ରସନ୍ନ ଚିତ୍ତରେ ସେତେବେଳେ ସେଇ ଯିବାଟାକୁ ସମର୍ଥନ କରୁଥିଲେ ? ବୋହୂ ଯଦି ନାଚି ନାଚି ବର ସହିତ ବସାକୁ ଚାଲିଯାଏ ଏବଂ ସେଠାରେ ପୂର୍ଣ୍ଣ କର୍ତ୍ତ୍ରୀ ହେବାର ସ୍ୱାଦ ପାଏ, ତା' ହେଲେ ସେ ବୋହୂ ଆଉ କେବେ କ'ଣ ଶାଶୁ, ପିଉସୀଶାଶୁଙ୍କ ଛତ୍ର ତଳେ ବୋହୂଗିରି କରିବାକୁ ରାଜି ହେବ ? କେବେ ହେଲେ ନୁହେଁ ।

ତା'ହେଲେ ? ତା' ହେଲେ ଆଉ କ'ଣ ? ବସାଘରକୁ ଯିବା ମାନେ ତ ବୋହୂର ପରକାଳକୁ ବାଟ ପରିଷ୍କାର ହୋଇଗଲା । ତେବେ କାହିଁକି ଆଉ

ପୁଅକୁ ମଣିଷ କରି ବଡ଼ କରି ତାକୁ ବାହା ଦେବା ଯଦି ବୋହୂ ହାତର ସେବା ଯତ୍ନ ଟିକକ ନ ପାଇବା ? କିନ୍ତୁ ପାରୁଲ୍‌ର ବର ସ୍ତ୍ରୀର ସେହି କର୍ତ୍ତବ୍ୟର ଦିଗଟା ଦେଖି ନାହିଁ, ନିଜ ଦିଗ ହିଁ ଦେଖିଛି ।

ଆଉ ପାରୁଲ୍ ? ପାରୁଲ୍‌ର ଗୋଟାଏ କର୍ତ୍ତବ୍ୟବୋଧ ନାହିଁ । ଅନ୍ତତଃ ଚକ୍ଷୁ ଲଜ୍ଜା ।

ବକୁଳର ସେହି ପ୍ରଶ୍ନର ଉତ୍ତରରେ ପାରୁଲ୍ ହସିଦେଇ କହିଥିଲା, ହଁ, ସେଇଟା ଅବଶ୍ୟ ଭଲ ଦିଶିଥାନ୍ତା, ମୁଁ ଯଦି ଶାଶୁଙ୍କ ପାଦ ଚିପି ଧରି କହିପାରିଥା'ନ୍ତି, 'ଏଇ ବେହିଆ, ନିର୍ଲଜ୍ଜ, ସ୍ୱାର୍ଥପର ଲୋକଟି ଯାହା ପଛେ କହନ୍ତୁ ମୁଁ ଆପଣଙ୍କ ଚରଣ ଛାଡ଼ିବିନି', ତା' ହେଲେ ନିଶ୍ଚୟ ସେ ଧନ୍ୟ, ଧନ୍ୟ କହିଥାନ୍ତେ । କିନ୍ତୁ ସେହି ଧନ୍ୟ ଧନ୍ୟ ଭିତରେ କ'ଣ ଅଛି କହିଲୁ ? ଛଦ୍ମବେଶ ଧାରଣ କରି ଧନ୍ୟ ଧନ୍ୟ ପାଇବାଟା ମତେ ବଡ଼ ଘୃଣା ଲାଗେ । ତା' ଛଡ଼ା– ପାରୁଲ୍ ଆଉ ଟିକେ ହସିଥିଲା– ଲୋକଟାକୁ ଦଗ୍ଧ କରି ମାରିବାକୁ ଟିକିଏ ଦୟା ଲାଗିଲା । ମତେ ଆଖି ଆଗରୁ ଦୂର କରିବାକୁ ହେଲେ ସେ ଅହରହ ଅଗ୍ନି ଦାହରେ ଜଳୁଥିଲେ ।

ବକୁଳ ମଧ୍ୟ ହସିପକାଇଲା । କୁମାରୀ ଝିଅ ବୋଲି କିଛି ଲୁଚାଲୁଚି କରି କହେନି ସେ, କହିଲା– ଖାଲି ତାଙ୍କୁ ନିନ୍ଦା କରୁଛୁ । ନିଜ ଆଡୁ ଯେମିତି କିଛି ନାହିଁ । ଅମଳବାବୁ ବାକ୍ସ-ବିଛଣା ବାନ୍ଧି ଚାଲିଗଲେ ତୁ ନିଜେ ବୋଧହୁଏ ବିଶ୍ୱଭବନକୁ ଅନ୍ଧାର ହୋଇଗଲା ବୋଲି ଦେଖୁନଥିଲୁ ।

–ହଁ ହୁଏତ ତା' ଦେଖୁଥିଲି । ଯାହାହେଲେ ବି ଅସୁବିଧାରେ ପଡ଼ିଲେ ଗୋଟାଏ ପୃଷ୍ଠବଳ ଥିଲେ ତ !

–ଖାଲି ପୃଷ୍ଠବଳ ? ଆଉକିଛି ନୁହେଁ ?

–ଆଉକିଛି ? ତା' ମଧ୍ୟ ଅଛି ହୁଏତ କିଛି । ଚକ୍ଷୁଲଜ୍ଜାର ମାୟାଟା କଟାଇଦେଇ ପାରିଲେ, ଅନ୍ତତଃ ଭଣ୍ଡାର ଘର, ରନ୍ଧାଘର ଉପରେ ତ କିଛି କର୍ତ୍ତୃତ୍ୱ ରହେ । ସେ ସ୍ୱାଧୀନତାଟିକକ କ'ଣ କମ୍ ?

–ଯାଃ । ତୁ ବଡ଼ ନିନ୍ଦା କରିବା ବାଲା । ଅମଳବାବୁ ତ ତତେ ସର୍ବସ୍ୱ ଦେଇ ସର୍ବସ୍ୱାନ୍ତ ହୋଇ ରହିଛନ୍ତି ।

–"ସେଇୟା ତ ଜ୍ୱାଳା ।....." କେମିତି ଏକପ୍ରକାରର ବିଷଣ୍ଣ ହସ ହସିଥିଲା ପାରୁଲ୍ । କହିଲା, ସର୍ବସ୍ୱ ଲାଭର ଭାରଟା ତ କମ୍ ନୁହେଁ । ସେଇଟାକୁ ଫୋପାଡ଼ି ଦେଇହେବନି, ଗିଳି ପାରିବନି ମଧ୍ୟ ।

—ଫୋପାଡ଼ି ଦେଇହେବନି ସେଇଟା ତ ଜାଣୁଛି, କିନ୍ତୁ ଗିଳିବାକୁ ବାଧା ଅଛି କ'ଣ ?

—ଆରେ ବାପା ସେ ପ୍ରଶ୍ନ ତ ମୁଁ ନିଜେ ନିଜକୁ ସବୁବେଳେ ପଚାରୁଛି, କିନ୍ତୁ ଉତ୍ତରଟା ପାଉଛି କେଉଁଠୁ ? ଭାରଟା ହିଁ କ୍ରମଶଃ ଗୁରୁଭାର ହୋଇଯାଉଛି ।...... କିନ୍ତୁ ସେ କଥା ଥାଉ, ମୋ ଅମଳବାବୁର ଚିନ୍ତା ରଖ, ତୋର ନିର୍ମଳବାବୁର ଖବର କ'ଣ କହ ?

—ଆଃ, ଅସଭ୍ୟତା କର୍‌ନା ତ ।

—ଅସଭ୍ୟତା କ'ଣ କିଲୋ ? ଏତେଦିନରେ କେତେଦୂର ଆଗେଇଲା ଶୁଣେ ।

—ତୁ ଚୁନି ରହିବୁ ନା ନାହିଁ ?

ପାରୁଲ୍ ହଠାତ୍ ଗମ୍ଭୀର ହୋଇଯାଇଥିଲା । କହିଥିଲା— ହତଭାଗ୍ୟଟା ବୋଧହୁଏ ଏବେ ସୁଦ୍ଧା ମା'-ଦେଢେଈଙ୍କ କାନି ତଳେ କୁନିପୁଅ ହୋଇ ବସିଛି ? କୌଣସି ଚେଷ୍ଟା କରିନି ?

ବକୁଳ ମଧ ଗମ୍ଭୀର ହୋଇଯାଇଥିଲା ସେତେବେଳେ— ମଝିଆନାନୀ, ଚେଷ୍ଟା କରିବାର କୌଣସି ପ୍ରଶ୍ନ ହିଁ ନାହିଁ ।

—ଓଃ ପ୍ରଶ୍ନ ହିଁ ନାହିଁ ? ସେହି ଜାତି-ଗୋତ୍ର, କୁଳ-ଶୀଳ, ବ୍ରାହ୍ମଣ-କରଣ, ହଳୁଆ-ସାଣ୍ଟୁଆ ? ତା'ହେଲେ ତୁ ମରିବାକୁ ଏବେ କୋଉ ପ୍ରତ୍ୟାଶାରେ ବସିରହିଛୁ ?

—ପ୍ରତ୍ୟାଶା ? ପ୍ରତ୍ୟାଶା ପୁଣି କେଉଁଥିର ନାନୀ ? ବସି ରହିବାଟା ମଧ ଅର୍ଥହୀନ । ଅଛି ବୋଲି ଅଛି ।

—କିନ୍ତୁ ମୁଁ ଭାବୁଛି, ଅଭିଭାବକକୁଳ ତେବେ ଏଇଲେ ତତେ ଘରଛଡ଼ା କରିବା ପାଇଁ ଲାଗିପଡୁ ନାହାନ୍ତି କାହିଁକି ?

—ମୁଁ କେମିତି ଜାଣିବି ସେ କଥା ?

ବକୁଳ କହିଥିଲା— "ମୁଁ କେମିତି ସେକଥା ଜାଣିବି ?" ବକୁଳର ବାପା ତାଙ୍କର ଚିରଦୁର୍ବଳ ଅସହାୟ ଚିତ୍ତର ସମସ୍ତ ଆକୁଳତା ନେଇ ସେହି ଝିଅଟି ଉପରେ ହିଁ ନିର୍ଭର କରୁନାହାନ୍ତି କି ? ବଡ଼ ହୋଇଯାଇଥିବା ପୁଅମାନେ ତ ବାପାଙ୍କ ନିକଟରେ ଜ୍ଞାତି ପରି, ଅନ୍ତତଃ ବକୁଳର ବାପାଙ୍କର ଚିନ୍ତା ତା ଊର୍ଦ୍ଧ୍ୱକୁ ଆଉ ପହଞ୍ଚିପାରେ ନାହିଁ । ବିବାହିତ ପୁଅମାନଙ୍କୁ ସେ ଏକାବେଳେ ପ୍ରତିପକ୍ଷ ବୋଲି ଭାବନ୍ତି । ବିବାହିତା ଝିଅମାନଙ୍କ କଥା ଛାଡ଼ । ଆପଣାର ବୋଲି କହିବାକୁ କେବଳ ଏହି ଝିଅଟି । କୁମାରୀ ଝିଅଟି ।

ଯଦିଚ ଝିଅର ଚାଲିଚଳଣ ତାଙ୍କର ଦୁଇଆଖିର ବିଷ, ତେବେକେ ଠିକ୍ ସମୟରେ ଆସି ଔଷଧର ଗିଲାସଟା ସେ ହିଁ ତ ମୁହଁ ଆଗରେ ଆଣି ଧରେ । ସେ ହିଁ ତ ଦେଖେ ବାପାଙ୍କ ବିଛଣାଟା ସଫା ଅଛି କି ନାହିଁ । ବାପାଙ୍କ ଫତୁଆରେ ବୋତାମ ଅଛି କି ନାହିଁ, ବାପା ଭଲମନ୍ଦ ଟିକିଏ ଖାଉଛନ୍ତି କି ନାହିଁ । ସବୁ ଦେଖେ ସେ ।

ସେହି ଭରସାସ୍ଥଳ ଟିକକ ଯଦି ପରଘରକୁ ଚାଲିଯାଏ, ବିପତ୍ନୀକ ଅସହାୟ ମଣିଷଟାର ଗତି କ'ଣ ହେବ ? ହଁ, ଜାତି-ମାନ-ଲୋକଲଜ୍ଜା ହୋଇପାରେ— ସବୁ ବହୁତ ବଡ଼ ଜିନିଷ, କିନ୍ତୁ ସ୍ୱାର୍ଥଠାରୁ ବଡ଼ ଆଉ କ'ଣ ଅଛି ? ସବୁଠାରୁ ବଡ଼ ହେଉଛି ସ୍ୱାର୍ଥ— ପ୍ରାଣରକ୍ଷା !

ବକୁଳ ବାପାଙ୍କର ଏହି ଦୁର୍ବଳତାକୁ ବୁଝେ । କିନ୍ତୁ ଏକଥା କ'ଣ କହିବା କଥା ? ନା ଏକଥା ମଝିଆନାନୀକୁ ମଧ୍ୟ କହିହେବନି । ସେଥିପାଇଁ କହେ— ମୁଁ କେମିତି ଜାଣିବି ?

କିନ୍ତୁ ବାପାଙ୍କର ଏହି ଦୁର୍ବଳତା ଟିକକ ପାଖରେ କ'ଣ ବକୁଳ କୃତଜ୍ଞ ନୁହେଁ ?

ପାରୁଲ୍ କହିଲା— ତା'ହେଲେ ଆପାତତଃ ତୋର ଖାତାଟାଯାକ ବ୍ୟର୍ଥପ୍ରେମର କବିତା ଲେଖାହିଁ ଖୁବ୍ ଜୋର୍‌ରେ ଚାଲିଛି ?

ବକୁଳ ହସିଉଠି କହିଲା— ମୁଁ ପୁଣି ପ୍ରେମ-କବିତା ଲେଖିବାକୁ ଗଲି କେତେବେଳେ ? ସେଇଟା ତ ତୋର କଥା । ଯେଉଁଥିପାଇଁ ଅମଳବାବୁ--

—ମୋ ରାଣ ବକୁଳ, ସବୁକଥାରେ ଅମଳବାବୁଙ୍କୁ ମନେ ପକାଇଦେବାକୁ ଆସନା । ଦି' ଚାରିଦିନ ଭୁଲି ରହିବାକୁ ଦେ ।

—ଛିଃ ଛିଃ ନାନୀ, ୟା କ'ଣ ହିନ୍ଦୁନାରୀର ମନୋଭାବ ?

—ସେଇୟା ତ ହଇରାଣ । ପାରୁଲ୍ ହସିଲା— କେବେହେଲେ ନିଜକୁ ହିନ୍ଦୁନାରୀର ଖୋଳରେ ପୂରାଇ ଦେଇ ରହିପାରୁନି ଅଥଚ ଖୋଳଟା ବୋହି ମରୁଛି ମଧ୍ୟ । ହୁଏତ ମରଣକାଳ ପର୍ଯ୍ୟନ୍ତ ବୋହି ମରିବି ।

ପାରୁଲ୍‌ର ମୁହଁଟା ଅଦ୍ଭୁତ ଏକ ରହସ୍ୟର ଆଲୋକ ଆଉ ଛାୟାରେ ଯେପରି ଦୁର୍ବୋଧ ଲାଗୁଛି, ମନେହେଉଛି ଇଚ୍ଛା କଲାମାତ୍ରେ ପାରୁଲ୍ ସେହି ଖୋଳପାଟାକୁ ଛିଣ୍ଡାଇ ବାହାରି ଆସିପାରେ; ବାହାରୁନି, ଖାଲି ଯେପରି ନିଜ ଉପରେ ଏକ ନିର୍ମମ କୌତୁକର ଖେଳ ଖେଳି ମଜା ଦେଖୁଛି ।

......ସେଇ ମୁହଁଟା ଦେଖିପାରୁଛନ୍ତି ଅନାମିକା, ସେଦିନ ନିଷ୍ପଲକରେ ଚାହିଁ ରହିଥିବା ବକୁଳର ମୁହଁଟା ମଧ୍ୟ । ବକୁଳ ଗୋରା ନୁହେଁ, ପାରୁଳର ବର୍ଣ୍ଣ ଚମ୍ପାଫୁଲ ପରି । ପାରୁଳର ବର ସେହି ବର୍ଣ୍ଣର ଉପଯୁକ୍ତ ଶାଢ଼ି ମଧ୍ୟ କିଣିଦିଅନ୍ତି । ସେଦିନ ପାରୁଲ୍ ଖଣ୍ଡେ ପତଳା 'ଚନ୍ଦ୍ର ଆଲୁଅ' ଶାଢ଼ି ପିନ୍ଧିଥିଲା, ତା'ର ଧଡ଼ିଟା ଥିଲା 'କଳା ଚୁଡ଼ି' । ସେଇ ଧଡ଼ିଟା ଟିକିଏ ଖୋଷାର ଧାର ଉପରେ ଗୁଡ଼ାଇ ହୋଇ କାନ୍ଧ ପାଖରେ ଛାତି ଉପରେ ଲଟେଇ ପଡ଼ିଛି । ବଡ଼ ସୁନ୍ଦର ଦିଶୁଥିଲା ପାରୁଲ୍ ।

'ଚନ୍ଦ୍ର ଆଲୁଅ' ଶାଢ଼ିରେ ନାଲିଧଡ଼ି ଆହୁରି ସୁନ୍ଦର ଦିଶେ । କିନ୍ତୁ ନାଲିଧଡ଼ିଆ ଶାଢ଼ି ପାରୁଲ୍‌ର ପସନ୍ଦ ନୁହେଁ । କୌଣସି ଅନୁଷ୍ଠାନ ଉପଲକ୍ଷ୍ୟରେ 'ସଧବା ସ୍ତ୍ରୀ' ବୋଲି କେହି ନାଲିଧଡ଼ିଆ ଶାଢ଼ି ଦେଲେ ପାରୁଲ୍ ସେଇୟାକୁ ଅନ୍ୟ କାହାକୁ ବାଣ୍ଟିଦିଏ । କାରଣଟା ଅବଶ୍ୟ ବକୁଳ ଛଡ଼ା ସମସ୍ତଙ୍କର ଅଜ୍ଞାତ । କିନ୍ତୁ ବକୁଳ ଛଡ଼ା ଆଉ କାହାକୁ କହିପାରନ୍ତା ପାରୁଲ୍– ନାଲିଧଡ଼ିଆ ଶାଢ଼ିରେ ବହୁତ ''ପତିବ୍ରତା-ପତିବ୍ରତା ଭାବ ରହିଛି । ପିନ୍ଧିଲେ ମନେହୁଏ ମିଥ୍ୟା-ବିଜ୍ଞାପନ ଦେହରେ ମାରି ବୁଲୁଛି !''

ପିଲାଦିନେ ପାରୁଲ୍‌ର ଏମିତି ସବୁ ଅନେକ ଉଦ୍ଭଟ ଧାରଣା ଥିଲା । ଆଉ ଥିଲା ଗୋଟାଏ ବେପରୁଆ ସାହସ । ସେଥିପାଇଁ ପାରୁଲ୍ ବାପାଙ୍କ ମୁହାଁମୁହିଁ ଠିଆହୋଇ ପଚାରିଥିଲା– ବକୁଳର ତ ବାହା ହେବାର ବୟସ ହୋଇଯାଇଛି, ଆମ ହିସାବରେ ପାର ହୋଇଯାଇଛି । ବାହା କରି ଦେଉ ନାହଁ କାହିଁକି ?

ପାରୁଲ ଓ ବକୁଳର ବାପା ଥତମତ ହୋଇ କହିଥିଲେ– ଦେବିନି ବୋଲି କହିଛି କି ? ପାତ୍ର ନ ମିଳିଲେ, ମୋର ତ ଏମିତି ଅଶକ୍ତ ଅବସ୍ଥା, ବଡ଼ ବଡ଼ ଭାଇମାନେ ନିଜ ନିଜର ସଂସାର ଧରି ବ୍ୟସ୍ତ ।

ଅତି ଅକ୍ଷମ ନ ଥିଲେ ସେ, ତେବେକେ ସ୍ତ୍ରୀବିୟୋଗ ପରଠାରୁ ନିଜକୁ ସେ ସ୍ୱେଚ୍ଛାରେ 'ଅକ୍ଷମ' କରି ପକାଇଛନ୍ତି । କିଏ ଜାଣିଛି କେଉଁ ମନସ୍ତତ୍ତ୍ୱ ଅନୁସାରେ ହୁଏତ ଅପରର କରୁଣା ସଂଗ୍ରହ କରିବାକୁ । ହୁଏତ ବା ସଂସାରରେ ନିଜର ମୂଲ୍ୟ ବଞ୍ଚାଇ ରଖିବାକୁ । କେହି କିଛି କହିନାହାନ୍ତି, ତେବେକେ ବୋଧହୁଏ ସେହି ଦିନଠାରୁ ନିଜକୁ ମନେହୋଇଛି 'ସଂସାରରେ ଅଦରକାରୀ' । ସେଇଥିପାଇଁ ଯେତେବେଳେ ସେତେବେଳେ 'ମର ମର' ହୁଅନ୍ତି । ସେ ଯାହାହେଉ, ନିଜକୁ ଅକ୍ଷମ କହୁ କହୁ ଶେଷକୁ ସେଇୟା ହିଁ ହୋଇଛନ୍ତି ସେ । କଥା କହିଲାକ୍ଷଣି କାଶ ଆରମ୍ଭ ହୋଇଯାଉଛି । ପାରୁଲ୍ କହୁଥାଏ– ସେଇଟା ନର୍ଭସ୍‌ନେସ୍, ମିଛ କାଶ କାଶି ଶେଷକୁ–

ପାରୁଲ୍ ତ ଏମିତି ଅନେକ ଉଭଟ କଥା କହେ । ସେଦିନ ବାପାଙ୍କ ମୁହଁ ଉପରେ ହିଁ କହିଲା— ଆପଣମାନେ ଆଖି ଥାଉଣୁ ଅନ୍ଧ । ପାତ୍ର ତ ଆପଣଙ୍କ ଆଖି ଆଗରେ ଅଛି ।

—"ଆଖି ଆଗରେ ପାତ୍ର ଅଛି !" ପାରୁଲ୍‌ର ବାପା ଆକାଶରୁ ଖସିପଡ଼ି କହିଥିଲେ"— କାହା କଥା ତୁ କହୁଛୁ ?"

—କାହାର କଥା ଆଉ କହିବି ବାପା ? କାହିଁକି— ନିର୍ମଳର କଥା ଆପଣମାନଙ୍କର ମନେ ନାହିଁ ?

—ନିର୍ମଳ ? ମାନେ ଅନୁପମବାବୁଙ୍କ ପୁଅ ସୁନିର୍ମଳ ?

ଅକ୍ଷମ ମଣିଷଟା ହଠାତ୍ ଟାଣ ଆଉ ସିଧା ହୋଇ ଉଠିବସି କହିଥିଲେ — ଓ ! ସେଇ ଚଣ୍ଡାଳୁଣୀଟା ବୋଧହୁଏ ତତେ ଓକିଲ କରି ଠିଆ କରେଇଛି ? ନିର୍ମଳର ଘରକୁ ଯିବାଟା ତାର ବନ୍ଦ କରୁଛି ।

—ଏବେ ସେ ଯାଉନି ଆଉ । ତା'ଛଡ଼ା ଆପଣ ତ ଜାଣନ୍ତି ପର ଲୋକ ଶିଖେଇବା କଥା ମୁଁ କେବେ କହେନି । ମୁଁ ନିଜେ କହୁଛି—

—"ନିଜେ କହୁଛୁ !" ବାପା ବିବାହିତା ଝିଅ ଆଉ କୃତୀ ଜୁଆଁଇଙ୍କର ମର୍ଯ୍ୟାଦା ଭୁଲିଯାଇ କହି ପକାଇଲେ— ତୁ ତ ନିଶ୍ଚେ କହିବୁ । ବସାଘରକୁ ଯାଇ ରହିଛୁ, ଅପ୍‌ଟୁଡେଟ୍ ହୋଇଛୁ । ସେମାନଙ୍କ ସଙ୍ଗେ ଆମମାନଙ୍କର ସମ୍ବନ୍ଧ ହୋଇପାରେ ?

ଏଭଳି ଛିଗୁଲେଇବା ପରି କଥା ଯଦି ସେ ପାରୁଲ୍ ବିଷୟରେ କହିଥାନ୍ତେ, ତା'ହେଲେ ଅବଶ୍ୟ ସେ ଏ କଥାର ଉତ୍ତର ଦେଇ ନ ଥାନ୍ତା । ହେଲେ ପାରୁଲ୍ ଆସିଥିଲା ବକୁଳ ବିଷୟରେ ଯାହାକିଛି ଗୋଟାଏ ନିଷ୍ପତ୍ତି କରିବାକୁ । ସେଥିପାଇଁ ପାରୁଲ୍ କହିଥିଲା— ହୋଇପାରିବନି କଥାଟାର କୌଣସି ଅର୍ଥ ନାହିଁ । କରାଇବାକୁ ପଡ଼ିବ ।

—କରାଇବାକୁ ପଡ଼ିବ ?

—ତା'ଛଡ଼ା ଆଉ କ'ଣ ? ନିୟମକାନୁନଗୁଡ଼ାକ ଭଗବାନ୍‌ଙ୍କ ସୃଷ୍ଟି ନୁହେଁ ଯେ ତାକୁ ଆଉ ହଲଚଲ କରାଯାଇପାରିବ ନାହିଁ । ମଣିଷର ଗଢ଼ା ନିୟମକୁ ମଣିଷ ପୁଣି ଭାଙ୍ଗେ ।

—"ବାଃ ବାଃ !" ବାପା ଆହୁରି ବେଶୀ ଖଙ୍କାରି ଉଠିଥିଲେ— 'ମା' ଏକାବେଳେ ବାକ୍ୟରେ ପାରଙ୍ଗମ କରିଦେଇଛି । ତା' ବୋଲି ମୁଁ ଭାଙ୍ଗିବାକୁ ଚାହିଁଲାମାତ୍ରେ ଭାଙ୍ଗିବ ? ସେମାନେ କ'ଣ ରାଜି ହେବେ ?

— ଯଦି ହୁଅନ୍ତି ?

— ରାଜି ହେବେ ? କହିଛନ୍ତି ତତେ ?

— ମୁଁ କହୁଛି ଯଦି ହୁଅନ୍ତି, ଆପଣ ମନା କରିବେନି ତ ?

ବାପା ପୁଣି ଅକ୍ଷମ ହୋଇଯାଇ ଶୋଇପଡ଼ି କହିଥିଲେ, ମୋର ପୁଣି ମନା ! ରୋଗିଣା ମଡ଼ାଟା, ଗୋଟାଏ ପାଖରେ ପଡ଼ିଛି, ମରିଗଲେ ଦିନେ ପୁଅମାନେ ଘୋଷାରି ପକାଇଦେବେ । ଝିଅ ଯଦି 'ଲଭ୍' କରି କାହାସଙ୍ଗେ ବାହାରି ସୁଦ୍ଧା ଯିବ, ମୁଁ କିଛି କରିପାରିବି ?

ପାରୁଲ୍ ନିର୍ନିମେଷ ନେତ୍ରରେ ସେହି ଛାତିରେ ହାତଦେଇ ଧଇଁସଇଁ ହେଉଥିବା ଲୋକଟା ଆଡ଼କୁ ଚାହିଁ ରହିଲା । ତା'ପରେ ଚାଲି ଆସିଥିଲା । ଚାଲି ଆସି ଭାବିଥିଲା — ଡଙ୍ଗାର କାତଟାକୁ ତା'ହେଲେ ମୁଁ ହିଁ ଧରିବି ?

କିନ୍ତୁ କାତ ଧରିଲେ ବି କ'ଣ ଡଙ୍ଗା ଚାଲେ ? ଯଦି ବାଲି ପଠାରେ ଲାଗିଥିବା ଡଙ୍ଗା ହୁଏ ? ତେବେବି ଶେଷ ଚେଷ୍ଟା କରି ଯିବି ।

ନାଃ, ତେବେକେ ବକୁଳର ଜୀବନ-ତରଣୀଟିକୁ ଭସାଇ ନେଇଯାଇ ପାରି ନ ଥିଲା ପାରୁଲ୍, ଖାଲି ସେଥର ଚାଲିଗଲାବେଳକୁ କହିଥିଲା, ''ତୋ ପାଖରେ ମୁଁ ଅପରାଧୀ ବକୁଳ, ଖାଲି ଖାଲିଟାରେ ତତେ ଛୋଟ କରିଦେଲି । ଆଶ୍ଚର୍ଯ୍ୟ, ଜମା ଭାବିପାରି ନ ଥିଲି ଯେ ତୁ ଗୋଟାଏ ମାଟିର କଣ୍ଢେଇକୁ—'' ରୋଷ ଓ କ୍ଷୋଭରେ ତୁନି ହୋଇଯାଇଥିଲା ପାରୁଲ୍ । ସେହି ମୁହଁ ଆଡ଼କୁ ଚାହିଁ ମୃଦୁ ହସି ବକୁଳ କହିଥିଲା —

× × × × ×

କିନ୍ତୁ ବକୁଳର ସେହି କଥାର ଶେଷ ଟିକକ ଶୁଣାଗଲା ନାହିଁ । ସେହି ମୃଦୁ ହସ ଉପରେ ରୂଢ଼ ରୂକ୍ଷ କର୍କଶ ଆଘାତ ଆସି ବିଞ୍ଚିହୋଇ ପଡ଼ିଲା ।

ଘଣ୍ଟାର ଆଲାର୍ମ !

ନିୟମରେ ଚଳୁଥିବା ଘରେ ରାତି ଥାଉଣୁ କର୍ମଚକ୍ରକୁ ଚାଲୁ କରିବା ପାଇଁ ଘଣ୍ଟାରେ ଆଲାର୍ମ ଦିଆଯାଇଥାଏ । ଖୁବ୍ ହୁସିଆର ଆଉ ଲକ୍ଷ୍ମୀବନ୍ତ ବୋହୂଟିଏ ହେଉଛି ନମିତା । ସେହି ଆଲାର୍ମ ଶବ୍ଦରେ ଉଠିପଡ଼ି ସେ ସେହି ଚକ୍ରଟିକୁ ଘୂରାଇବାକୁ ଆରମ୍ଭ କରିଦିଏ । ଶୀତ ପ୍ରଦେଶ, ଚାକରବାକରମାନେ ଭୋର୍‌ରୁ ଉଠିବାକୁ ଚାହାନ୍ତି ନାହିଁ, ଅଥଚ ଭୋର୍‌ରୁ ଘରର ସମସ୍ତଙ୍କର ଦରକାର 'ବେଡ୍-ଟି', ଗରମ ପାଣି ।

ଏ କାମ ନମିତା ଉପରେ କେହି ଲଦି ଦେଇ ନାହାନ୍ତି, ନମିତା ସ୍ୱଇଚ୍ଛାରେ ହିଁ ନିଜ କାନ୍ଧକୁ ଉଠାଇନେଇଛି । ଆତ୍ମପୀଡ଼ନ ମଧ୍ୟ ଏକ ଧରଣର ଚିତ୍ତବିଳାସ । କାହାର କାହାର ଏ ବିଳାସ ଥାଏ । କେହି ନ ଚାହିଁଲେ ମଧ୍ୟ ସେମାନେ ତ୍ୟାଗ ସ୍ୱୀକାର କରନ୍ତି, ସ୍ୱାର୍ଥତ୍ୟାଗ କରନ୍ତି, ଦରକାର ନ ଥିଲେ ବି ପରିଶ୍ରମ କରନ୍ତି, ଦରକାର ନ ଥିଲେ ବି ସେବା କରନ୍ତି ।

ନ ହେଲେ ଅନାମିକା ଦେବୀଙ୍କ ବନ୍ଦ ଦୁଆର ବାଡ଼େଇ 'ବେଡ୍-ଟି' ବଢ଼ାଇ ଧରିବା ଦରକାର ନ ଥିଲା ତା'ର । ଅନାମିକାଙ୍କ ଦାୟିତ୍ୱ ତା'ର ନୁହେଁ ।

ଆଲାର୍ମର ଶବ୍ଦରେ ଚମକିପଡ଼ି ଟେବୁଲ୍ ଉପରେ ରଖିଥିବା ହାତଘଣ୍ଟାଟା ଦେଖୁଥିଲେ ଅନାମିକା ଦେବୀ, ଆଶ୍ଚର୍ଯ୍ୟ ହୋଇ ଭାବୁଥିଲେ । ''ମୁଁ କ'ଣ ତା'ହେଲେ ଶୋଇନି ?''

ଚାହା କପ୍ ଦେଖି ଭାବିଲେ ଏ ଝିଅଟି ମଧ୍ୟ କ'ଣ ଶୋଇନି ? ସେକଥା କହିଲେ । ନମିତା ଟିକିଏ ଉଦାସ ହସ ହସିଲା, ଶୋଇଥିଲି, ଉଠିଲିଣି, ସବୁଦିନେ ଏତିକିବେଳେ ମୁଁ ଉଠେ । ଘଣ୍ଟାରେ ଆଲାର୍ମ ଦେଇଥାଏ ।

—କାହିଁକି କହିଲ ? ଏ ଅନ୍ଧାରରୁ ତମର ଏତେ କ'ଣ କାମ ଅଛି ? ଅନାମିକା ସହଜ, ସାଧାରଣ ପ୍ରଶ୍ନଟିଏ କଲେ । ନମିତା କିନ୍ତୁ ଅସହଜ ଉତ୍ତରଟିଏ ଦେଲା । ଗଳାର ସ୍ୱର ନିମ୍ନ କରିଦେଲା— ଆଉ ସେ କଥା, କିଏ କୋଉଠୁ ଶୁଣିଦେବେ ।

ଗମ୍ଭୀର ହୋଇଗଲେ ଅନାମିକା, କହିଲେ— ଯାହାହେଉ ତମର ଏ ଆଲାର୍ମ ପାଇଁ ମୋର ମଧ୍ୟ ସୁବିଧା ହୋଇଗଲା । ଛଅଟା ଗାଡ଼ିରେ ତ ମୋର ଯିବା କଥା ।

କେତେ ମାଇଲ କାର୍‌ରେ ଗଲେ ଯାଇ ରେଳଷ୍ଟେସନ୍ ପଡ଼ିବ, ଆଉ ସକାଳ ସାତଟାରେ ଗାଡ଼ି ଧରିବାକୁ ହେବ ।

ନମିତା ସାଙ୍ଗେ ସାଙ୍ଗେ କହିଲା— ସେ କି କଥା, ଆପଣ କ'ଣ ଆଜି ଚାଲିଯିବେ ନା କ'ଣ ? ଆହୁରି ତ ଦୁଇଦିନ ଫଙ୍କସନ୍ ଅଛି ?

ତା'ର ଅବୋଧ ପ୍ରଶ୍ନ ଶୁଣି ହସିଲେ ଅନାମିକା, କହିଲେ— ହଁ ସେଇୟା କଥା ଥିଲା । କିନ୍ତୁ ୟା'ପରେ ମଧ୍ୟ ଫଙ୍କସନ୍ ହେବ ବୋଲି ତମେ ଧାରଣା କରୁଛ ?

ନମିତା ମୃଦୁ ଓ ଦୃଢ଼ କଣ୍ଠରେ କହିଲା— ନିଶ୍ଚୟ ହେବ । କାଲି ରାତି ଆପଣ ଶୋଇଲା ପରେ ଉତ୍ସବର କିଏ କେତେଜଣ ଆସିଥିଲେ ଆମ ଘରକୁ,

କହିଯାଇଛନ୍ତି ଆପଣ ଉଠିଲେ ଯେମିତି ଜଣାଇ ଦିଆଯାଏ ଯେ ଅଧିବେଶନ ହେବ । ଏକାବେଳେ ଭଲ ପୁଲିସ୍ ପହରାର ବ୍ୟବସ୍ଥା କରାଯାଇଛି ।

ପୁଲିସ୍ ପହରା ? ଦୃଢ଼ ପୁଲିସ୍ ପହରା ବସାଇ ସାହିତ୍ୟର ସମ୍ମିଳନୀ ହେବ ? ଅନାମିକା କ'ଣ ହସିଉଠିବେ ନା କାନ୍ଦିପକାଇବେ ? ଅବଶ୍ୟ ଦୁଇଟାରୁ ଗୋଟାଏ ହେଲେ କିଛି କଲେନି ସେ, ଖାଲି କହିଲେ,– "ନା ମୁଁ ଆଜି ଚାଲିଯିବି । ସକାଳର ଗାଡ଼ିରେ ନ ଯାଇପାରିଲେ ଦିପହରର ଗାଡ଼ିରେ ଯିବି, ସେମାନଙ୍କୁ ତ ପୁଣି ସେ କଥା କହିବାକୁ ପଡ଼ିବ ।

ହଁ, ଅନାମିକା ଦେବୀ ଚାଲିଆସିଥିଲେ ସେଦିନ ଅନେକ ଅନୁରୋଧ ଉପରୋଧକୁ ଆଡ଼େଇଦେଇ । ପୁଲିସ ପହରା ବସାଇ ସାହିତ୍ୟ ସମ୍ମିଳନୀ କରିବାରେ ତାଙ୍କର ରୁଚି ହୋଇ ନାହିଁ ।

ଅନୁଷ୍ଠାନ ସମିତିର ସଭାପତି କାତର ମିନତି ଜଣାଇଥିଲେ, ଅନିଲବାବୁ ଯେ ଡାକ୍ତରଖାନାରୁ ସୁଦ୍ଧା ଅନୁରୋଧ ଜଣାଇଛନ୍ତି, ସେ କଥା ମଧ୍ୟ ଜଣାଇଲେ କିନ୍ତୁ ଅନାମିକା କୌଣସି କଥାରେ ହେଲେ ନିଜର ପଳାତକ ମନଟାକୁ ଆଉ ଫେରାଇ ଆଣିପାରିଲେନି । ଶେଷକୁ କହିଥିଲେ– ଦେହଟା ମଧ୍ୟ କିଛି ଭଲ ଲାଗୁନି, କାଲିର ଘଟଣାଟା ଯେମିତି କିପ୍ରକାର ଗୋଟାଏ –

'ଦେହ' କଥା କହିଲା ପରେ ଯାଇ ଅନୁରୋଧ ପ୍ରତ୍ୟାହାର କଲେ ସେମାନେ ! ଦେହ ହେଉଚି ସର୍ବଦେବତାଙ୍କ ଦେବତା । ତା'ର ନୈବେଦ୍ୟ ନିଶ୍ଚେ ଦିଆଯିବ । ମନ ? ସ୍ୱଭାବ ? ଇଚ୍ଛା ? ଅନିଚ୍ଛା ? ସୁବିଧା ? ଅସୁବିଧା ? ସେଗୁଡ଼ିକୁ ଖଣ୍ଡ ଖଣ୍ଡ କରି ପକାଇବା ପରି ସୁଦର୍ଶନ ଚକ୍ର ଅଛି ଅନୁଷ୍ଠାନକାରୀମାନଙ୍କ ହାତରେ । କେବଳ 'ଶରୀର' ନିକଟରେ ସେମାନେ ଅସ୍ତ୍ରହୀନ । ତେଣୁ ଅପରପକ୍ଷର ବ୍ରହ୍ମାସ୍ତ୍ର ହିଁ ହେଉଛି ଶରୀର । ଖାଲି ନାମ କହିଲାକ୍ଷଣି ଛାଡ଼ପତ୍ର ପାଇଗଲେ ।

କିନ୍ତୁ ସେମାନଙ୍କର ଅର୍ଥାତ୍ ସମ୍ମିଳନୀ ଆହ୍ୱାନକାରୀମାନଙ୍କର ଏଥର ଶନି ରାହୁ ଯୋଗ ! ସେ କଥାଟା ଜଣାପଡ଼ିଲା କଲିକତାକୁ ଆସି ଖବରକାଗଜ ପାଇଲା ପରେ । କାଗଜଟା ପଢୁ ପଢୁ ପାହାଚ ଚଢ଼ି ଚାଲିଆସିଲା ଶମ୍ପା, ଶାଢ଼ିର କୁଞ୍ଚ ଘୋଷାରି ହେଉଥାଏ ।

–ଏ ପିଉସୀନାନୀ, ତମର ଉତ୍ତରବଙ୍ଗର ସାହିତ୍ୟ ସମ୍ମିଳନୀର ଏଇ ପରିଣତି ? "ପୁଲିସ୍ ଶାସନ ବ୍ୟର୍ଥ ! ସ୍ଥାନୀୟ ଯୁବକମାନଙ୍କ ସହିତ ପୁଲିସ୍‌ର ସଂଘର୍ଷ ହେତୁ ଦୁଇଜଣ ନିହତ ଓ ବାଇଶିଜଣ ଆହତ । ଅଭ୍ୟର୍ଥନା ସମିତିର ସଭାପତି ଗୁରୁତର ଆହତ ହୋଇ ଡାକ୍ତରଖାନାରେ ଅଛନ୍ତି !"...... ହି,ହି,ହି କି କଥା ! କାହିଁ କାଲି ତ ତମେ କିଛି କହି ନାହଁ ?

ଜଣେ ସଂପାଦକଙ୍କ ଅନୁରୋଧରେ ଉଦ୍‌ଯୁକ୍ତ ହୋଇ ମନର ସମସ୍ତ ଶକ୍ତି ପ୍ରୟୋଗ କରି କଲମ ଧରି ସେଇକ୍ଷଣି ବସିଥିଲେ ଅନାମିକା, ସେଇ ହି-ହି ଶୁଣି ପ୍ରମାଦ ଗଣିଲେ । ସେ ଏଇଲେ ସହଜରେ ଯିବନି, ଜୋର୍ ତଲବ କରି ଜେରାରେ ଜାଣିନେବ ସବୁକଥା । ପ୍ରକୃତରେ ସେଠାରେ କି ଘଟଣା ଘଟିଛି ? 'ଘଟଣା' ଜାଣିବାରେ ଶର୍ମାର ବହୁତ କୌତୂହଳ ରହିଛି । ଯେଉଁଠାରେ ଯେଉଁ ବିଷୟରେ ହେଉ ପଛକେ କୌଣସି ଗୋଟାଏ 'ଘଟଣା' ଘଟିଲେ ଶର୍ମା ଉଲ୍ଲସିତ ହୁଏ । ଆଉ ସେ ଉଲ୍ଲାସର ଭାଗ ଦେବାକୁ ଆସେ 'ମାଇଁ ଡିଅର' ପିଉସୀକୁ ।

ଅନାମିକା ଗମ୍ଭୀର ହେବାକୁ ଚାହିଁଲେ ମଧ୍ୟ ସେ ଗାମ୍ଭୀର୍ଯ୍ୟକୁ ଫୁଙ୍କି ଉଡ଼ାଇ ଦିଏ ଶର୍ମା ।

— ଶୁଣୁଛ ନାନୀ, ଶିବନାଥ କଲେଜର ପ୍ରିନ୍ସପାଲଙ୍କୁ ଛାତ୍ରଗଣଙ୍କ ଦ୍ୱାରା ଘେରାଉ କରାଯାଇଛି । ବିଚରା ପ୍ରିନ୍ସପାଲ କରଯୋଡ଼ି କ୍ଷମା ଭିକ୍ଷା କଲାରୁ ଯାଇ— ହି, ହି ହସି ବାକି କଥାଟା ବୁଝାଇଦିଏ ।

—ପିଉସୀନାନୀ କ'ଣ ହେଇଛି ଜାଣିଛ ! ହେଇଟି ସେଦିନ ଏତେ ଜାକ୍‌ଜମକ କରି ଲଳିତା ବାହାହେଲା, ଏଇକ୍ଷଣି ସେପେରେଶନ୍, ଦି'ଜଣଯାକ ଅନମନୀୟ ! ତମେ ନାନୀ ! ଯେତେ ସବୁ ମିଛ ମଣିଷଙ୍କୁ ଧରି ରାତିଦିନ କେତେକ'ଣ ମିଛ ଘଟଣା ଘଟାଉଛି ଜାଣିଛ ? ଅନିନ୍ଦ୍ୟବାବୁଙ୍କ ଗାଡ଼ି ଚକରୁ କାଦୁଅ ଛିଟିକିଆସି ସତୀଶବାବୁଙ୍କ ପ୍ୟାଣ୍ଟରେ ପଡ଼ିଥିଲା ବୋଲି ଦିହିଁଙ୍କ ଭିତରେ ଗୋଟାଏ ମାରପିଟ ହୋଇଯାଇଛି । ଏଇଲେ ଦିହେଁ ଯାଇଛନ୍ତି କେସ୍ କରିବାକୁ ।

ଏ ସବୁ ହେଉଛି ଶର୍ମାର ଉଲ୍ଲାସର ଉଚ୍ଛ୍ୱାସ ।

ଅନାମିକା ଦେବୀ ହତାଶ ଗଳାରେ କହନ୍ତି— ଏତେ ଖବର ତୋ ପାଖକୁ କେମିତି ଆସୁଛି କହିଲୁ ?

ଦୁଇହାତ ଓଲଟାଇ ଶର୍ମା କହିଲା— ଆଖି-କାନ ଖୋଲା ଥିଲେ ଆସିବ ନିଶ୍ଚେ ।

—ଏ ସବୁ ବାଜେ ଘଟଣା ପାଇଁ ଆଖିକାନକୁ ଟିକିଏ କମ୍ ଖୋଲା ରଖି ଶର୍ମା, ଜଗତରେ ଆହୁରି ଅନେକ ଭଲ ଜିନିଷ ଅଛି ।

—"ଭଲ !!......" ଆକାଶରୁ ଖସିଗଲା ପରି ଶୁଣିଲା ଶର୍ମା । କହିଲା, ଭଲ ଶବ୍ଦଟାର ଅର୍ଥ କ'ଣ ପିଉସୀ ? କୋଉ ସ୍ୱର୍ଗୀୟ ଅଭିଧାନରେ ସେଇଟା ଅଛି ? ଯୋଉ କଥାକୁ ତମେ ବାଜେ କହୁଛ, ସେଗୁଡ଼ାକ ହିଁ ଅସଲ କାମରେ ଲାଗିବ । ସେହି ଘଟଣାଗୁଡ଼ିକ ହେଉଛି ସମାଜର ଦର୍ପଣ । 'ସମାଜ ସଂସ୍କୃତି'

ଏଗୁଡ଼ିକର ଗତି ପ୍ରକୃତି ତମେ କେଉଁଠୁ ଦେଖିବ, ଯଦି ଘଟଣାଗୁଡ଼ିକୁ ପ୍ରାଧାନ୍ୟ ଦେବନି ? ତାଳପତ୍ର ତ 'ସୋ' ମାତ୍ର, କାଣ୍ଡ ହିଁ ଅସଲ କଥା । ସେଇ କାଣ୍ଡ !

ସ୍ୱଭାବଗତ ଭଙ୍ଗିମାରେ ପଟପାଟ୍ କରି ଅନେକ କଥା କହେ ଶର୍ମା । ସବୁବେଳେ କହେ ।

ଆଜି ମଧ୍ୟ କହିପକାଇଲା,— କାଲି ତମେ କହିଲ ଯେ ତମର ଭାଷଣ ସରିଯାଇଛି ତମେ ଆଉ ଅକାରଣରେ ଦୁଇଦିନ ରହିଲନି ? ଏପଟେ ଏ ଘଟଣା ? ତମେ ଥାଇ ମଧ୍ୟ—

ଅନାମିକା ନିରୁପାୟ ଭଙ୍ଗୀରେ ହାତରୁ କଲମଟା ରଖିଦେଇ କହିଲେ— ଆଉ କ'ଣ କରିଥାନ୍ତି, କହ ? ତୋ' ପାଖରେ ଘଟଣା ବର୍ଣ୍ଣନା କରିବାକୁ ଯାଇଥିଲେ ମୋର ଆଉ କିଛି କାମ ହୋଇଥାନ୍ତା ? ଢେରା କରି ଗୋଟିଏ କାଣ୍ଡକୁ ସାତକାଣ୍ଡ କରି ଦେଇଥାନ୍ତୁ । ହେଲେ ସେ କଥା ଥାଉ । ଖବରକାଗଜରେ କ'ଣ ଲେଖିଛି ? ସତରେ ଦୁଇଜଣ ମରିଛନ୍ତି ?

—"ସେଇୟା ତ ଲେଖିଛି ।" ପୁଣି ହସିଦେଇ ଶର୍ମା କହିଲା— ଅବଶ୍ୟ ଖବରକାଗଜର ଖବର । ଦୁଇ ଜାଗାରେ ଦୁଇଟା ବାଇଶି ହୋଇଥାଇପାରେ । ହୁଏତ ପୁଲିସଙ୍କ ନିର୍ଦ୍ଦେଶରେ ଗୋଟାଏ ଦୁଇ ଲେଖା ହୋଇଯାଇଛି । ହୁଏତ ବାଇଶି ଜଣ ନିହତ, ବାଇଶି ଜଣ ଆହତ !

ତା'ର ଉଛୁଳି ପଡୁଥିବା ମୁହଁକୁ ଚାହିଁ ଅନାମିକା ଟିକିଏ କଠିନ କଣ୍ଠରେ କହିଲେ— ସେଇ ସନ୍ଦେହ ମନ ଭିତରେ ଧରି ତୁ ହସି ହସି ଗଡ଼ିଯାଉଛୁ ? 'ନିହତ' ଶବ୍ଦଟାର ଅର୍ଥ ଜାଣିନୁ ବୋଧହୁଏ ?

"ଏଇ ଗଲା ତ— " ଶର୍ମା ତା'ର ତିନିକୋଣିଆ ଚଷମାର କୋଣକୁ ଅଧିକ ତୀକ୍ଷ୍ଣ କରି ଦେଇ ଆଖି ଉଠାଇ କହିଲା— ପିଉସୀ ରାଗିଯାଇ ନିଆଁବାଣ ହୋଇଗଲେ ! ଅର୍ଥ କାହିଁକି ଜାଣିବି ନାହିଁ ଯେ ? ଏ ଯୁଗରେ ତ ଏ ଶବ୍ଦଟାର ଅର୍ଥ ଅତି ସହଜ ହୋଇଯାଇଛି । ରାସ୍ତାରୁ ଖଣ୍ଡେ ଇଟା ଗୋଟାଇ ଫୋପାଡ଼ି ଦେଲେ ତ ଅର୍ଥଟା ଜଣା ପଡ଼ିଯିବ ।...... ସେଦିନ ତମେ ବାହାରିଗଲାକ୍ଷଣି ଗୋଟାଏ ଘଟଣା ଘଟିଗଲା । ସାହିର ପିଲାମାନେ ରାସ୍ତାରେ ଇଟା ଗଦା କରି ଯେମିତି କ୍ରିକେଟ୍ ଖେଳନ୍ତି ସେମିତି ଖେଳୁଛନ୍ତି, ହଠାତ୍ କୋଉଠୁ ଜଣେ ଗୁଣ୍ଡା ଆସି ମାରେ କି ନ ମାରେ ! କହୁଥାଏ— ରାସ୍ତାଟା ପବ୍ଲିକ୍‌ର, ଚାଲିକରି ଯିବା ପାଇଁ ହେଇଛି, ଇଟା ଗଦା କରିବା ପାଇଁ ନୁହେଁ, ଇଟାଗୁଡ଼ାକ କାଢ଼ି

ନେଇଯାଅ ଇତ୍ୟାଦି ଇତ୍ୟାଦି । ବାସ୍, ସଙ୍ଗେ ସଙ୍ଗେ ହାତେ ହାତେ ପ୍ରତିଫଳ ମିଳିଲା । ନିହାତି ଭାଗ୍ୟର ଜୋର୍ ଥିଲା, ସେଇଥିପାଇଁ କେହି ମରି ନାହାନ୍ତି । ଖାଲି ଯାହା ମୁଣ୍ଡ ଫାଟିଛି । ମରିଯାଇଥାନ୍ତା ତ ?

ଅନାମିକା ହତାଶ ଗଳାରେ କହିଲେ— ଶମ୍ପା, ମତେ ଏବେ ଭାରି ଚଞ୍ଚଳ ଗୋଟାଏ ଲେଖା ସାରିବାକୁ ପଡ଼ିବ ।

—ବାବାଃ, ବାବାଃ ! ସବୁବେଳେ ତମର ଚଞ୍ଚଳ ଲେଖା ସାରିବାକୁ ହେବ । ଭାବିଲି ଏ ଦି'ଦିନର ଘଟଣାଗୁଡ଼ିକ ତମକୁ କହିଦିଏ । ଯାଆନ୍ତୁ, ମରନ୍ତୁ, ତମର ଉତ୍ତରବଙ୍ଗ ହେଇଟି ରହିଲା । "ପଞ୍ଚମ ପୃଷ୍ଠାର ସପ୍ତମ କଲମରେ ଦେଖନ୍ତୁ ମୁଁ ବିଦାୟ ନେଉଛି । ଘରେ ଦୁଇପଦ କଥା କହିବାର ଲୋକ ମଧ ନାହାନ୍ତି । ସେଇଥିପାଇଁ ତ ମୁଁ ବାହାରକୁ ଚାଲିଯାଉଛି —"

ତାକୁ ଯିବାକୁ ଛାଡ଼ିଦେଇପାରିଥାନ୍ତେ ଅନାମିକା । ସେ ତ ସମସ୍ତ ଶକ୍ତି ପ୍ରୟୋଗ କରି ଲେଖିବାକୁ ବସିଥିଲେ, ତେବେବେ କାହିଁକି ଶମ୍ପାର ଅଭିମାନ ଦେଖି ବିଚଳିତ ହେଲେ ।

କିଏ ଜାଣିଛି କ'ଣ ଏହି ହୃଦୟ ରହସ୍ୟ !

ଶମ୍ପାର ସବୁକଥା ଅନାମିକାଙ୍କୁ ଦୃଷ୍ଟିକଟୁ ମନେହୁଏ, ତେବେବେ ତା ପାଇଁ ଅନାମିକାଙ୍କ ହୃଦୟରେ ଅନେକ ସ୍ଥାନ ରହିଛି ! ସତରେ ଆଜିକାଲି କୌଣସି ଚାପରେ ଲେଖିବାକୁ ସତକୁ ସତ କଷ୍ଟ ହୁଏ । ସେହି ଲେଖା ଲେଖିବାକୁ ଜୋର୍ କରି ବସିବାକୁ ପଡ଼େ, ତେବେବେ ନିଜକୁ ଶିଥିଳ କରିଦେଲେ ସେ । କହିଲେ, ଯେମିତି ଅସଭ୍ୟ ଖୋଷା ବନ୍ଧା, ସେମିତି ଅସଭ୍ୟ କଥାବାର୍ତ୍ତା !

ଟଙ୍ଗଟଙ୍ଗ ହୋଇ ଚାଲିଯାଉଥିଲା ଶମ୍ପା, ଏ କଥା ଶୁଣି ମୁହଁ ଫେରାଇଲା । ସତେଜରେ କହିଉଠିଲା— କାଇଁକି ଖୋଷା ଭିତରେ କ'ଣ ଅସଭ୍ୟତା ଅଛି ଶୁଣେ ?

—"ସବୁତକ ଅଛି ।" ଅନାମିକା ତା'ର ଗୋଟାଏ ହାତକୁ ଚିପିଧରି ଚଉକି ପାଖକୁ ଟାଣିଆଣି କହିଲେ— ଖୋଷା ଭିତରେ କ'ଣ ଅଛି ? ଆମ୍ବ ଟୋକେଇ ? ଗୋବର ଝୁଡ଼ି ?

—ତା' ଭିତରେ ରଖିବା ପାଇଁ ବଜାରରେ ଅନେକ ମାଲମସଲା ବିକୁଛନ୍ତି ପିଉସୀ, କିନ୍ତୁ କଥାଟା ହେଉଛି ଖୋଷାର ଗଢ଼ଣଟା ତମକୁ ଭଲ ଲାଗୁନି ।

—ଲାଗୁଛି କହିଲେ ହୁଏତ ତୁ ଖୁସି ହୁଅନ୍ତୁ, ହେଲେ ତତେ ଖୁସୀ କରିପାରୁନି । ଭାବିପାରୁନି ଯେ ତୁ ହେଇଟି କେତେଦିନ ଆଗରୁ 'ବେଳ ଉପର ବୋଝକୁ

ହାଲୁକା କରିଦିଏ' କହି ବାଳ କାଟିବାକୁ ପ୍ରତିଜ୍ଞା କରିଥିଲୁ, ତୋର ମା' ନିହାତି ରାଣ-ନିୟମ ପକାଇବାରୁ କାଟିଲୁନି, ସେହି ଝିଅ ତୁ ହଠାତ୍ ମୁଣ୍ଡ ଉପରେ ଏଡ଼େ ବଡ଼ ଗୋଟାଏ ବୋଝ ଲଦିଲୁ କେମିତି ?

—ଲଦିଲି କେମିତି ? ହି, ହି, ହି, କାହିଁକି ପିଉସୀ, ତମେ ନିଜେ ମତେ ଯେତେବେଳେ ପିଲାଦିନେ ଗପ କହିଥିଲ— ବଡ଼ରାଣୀ ପାନବଟା ବୋହିବାକୁ ହେଲାରୁ ମୂର୍ଚ୍ଛା ହୋଇଯାଇଥିଲା, ସେହି ବଡ଼ରାଣୀ ଫେସନ୍ କରି ବେକରେ ସୁନାର ଶିଳ ଝୁଲେଇଥିଲା !

—ସେ ଗପ ମନେଅଛି ?...... ଟିକିଏ ହସି ଅନାମିକା କହିଲେ— ଗପଗୁଡ଼ିକ କାହିଁକି ଗଢ଼ା ଯାଉଥିଲା ଆଉ କୁହାଯାଉଥିଲା କହିଲୁ ?

—ଓହୋ ! ମୁଁ କ'ଣ ସେତକ ଜାଣିନି ? ଲୋକ ଶିକ୍ଷା ପାଇଁ, ଆଉ କ'ଣ ! ବିଶେଷରେ ମହିଳାକୁଳଙ୍କୁ ଶିକ୍ଷା ଦେବାକୁ ତ ଯେତେସବୁ ଗପ ସୃଷ୍ଟି ହୋଇଛି ।

—ସବୁ ଯଦି ଜାଣିଛୁ, ଏଇଟା ମଧ୍ୟ ତା'ହେଲେ ଜାଣିବା ଉଚିତ 'ଶିକ୍ଷା' ଜିନିଷଟା ନେବା ପାଇଁ । 'ଫେସନ୍'ର ଶିକାର ହେଇ ସ୍ତ୍ରୀଜାତିଟା କେତେ ହାସ୍ୟାସ୍ପଦ ହୁଅନ୍ତି ଜାଣିଛୁ ?

ଶମ୍ପା ଅଭିମାନ ଭୁଲି ଆଉ ଗୋଟିଏ ଚଉକି ଟାଣିଆଣି ପିଉସୀ ପାଖରେ ବସିପଡ଼ି କହିଲା— ଏ ଖୋଷା ବିଷୟରେ ତମେ ସେ କଥା କହି ପାରିବନି ମହାଶୟା, ଏ ହେଉଛି ଖାଣ୍ଟି ଅଜନ୍ତା ଷ୍ଟାଇଲ୍ !

—ହେଇପାରେ । ହେଲେ ଅଜନ୍ତାର ସେହି ଷ୍ଟାଇଲିଷ୍ଟ ସ୍ତ୍ରୀଲୋକମାନେ କ'ଣ ସେହି ଖୋଷା ସାଙ୍ଗରେ ହାଇହିଲ୍ ଜୋତା ପିନ୍ଧୁଥିଲେ ? ହାତରେ ଘଣ୍ଟା ବାନ୍ଧୁଥିଲେ ? ଧାଁ ଧପଡ଼ କରି ବସ୍ ଟ୍ରାମ୍ ଧରି ଅଫିସ୍‌କୁ ଆଉ କଲେଜକୁ ଯାଉଥିଲେ ? ନିଜ ହାତରେ ଡ୍ରାଇଭିଂ କରି ମାଇଲ୍ ମାଇଲ୍ ରାସ୍ତା ଗାଡ଼ି ଚଳାଇ ଯାଉଥିଲେ ?

—"କେଜାଣି ?"...... ଶମ୍ପା ଚଉକିଟାରେ ପିଠି ଆଉଜାଇ ଦୋହଲିଲା ।

—କେଜାଣି ନୁହେଁ । ଯାଉ ନ ଥିଲେ । ବେଶ ସହିତ କାର୍ଯ୍ୟର ସାମଞ୍ଜସ୍ୟ ରହିବା ଦରକାର, ବୁଝିଲୁ ?

—ବୁଝିପାରିଲିନି ।......' ହସି ହସି କହିଲା ଶମ୍ପା— ବେଶ ଧରି ମଧ୍ୟ ଯଦି କାମ କରାଯାଏ ?

—ମାନିବନି ।

— ସେଇଟା ତମମାନଙ୍କର ସୀମାବଦ୍ଧ ଦୃଷ୍ଟିରେ । ମହିଳା ଗୋ, ଦୃଷ୍ଟି ମୁକ୍ତି କର, ଦେଖିବ ସାମଞ୍ଜସ୍ୟ କଥାଟା ହିଁ ଅର୍ଥହୀନ । ଆଶ୍ଚର୍ଯ୍ୟ, ଲେଖିକା ହୋଇ ମଧ୍ୟ ତମେ କାହିଁକି ଯେ ଏତେ ପୁରୁଣାକାଳିଆ ? ଅଥଚ ଲୋକେ ତମ ନାଁ ଆଗରେ 'ପ୍ରଗତିଶୀଳ' ଲେଖିକା ବୋଲି ବିଶେଷଣ ଛାପନ୍ତି !

— ତାହେଲେ ସେଥିରେ ତୋର ଆପତ୍ତି ଅଛି ?

— ନିହାତି ଅଛି ।

— ତାହେଲେ ଯା, ଯେଉଁମାନେ ବିଶେଷଣ ବସାନ୍ତି, ତାଙ୍କୁ ଯାଇ କହିଦେ । ଯା, ଯେମିତି ସେ ପ୍ରଗତିଟା ଆଗରେ ଗୋଟାଏ 'ଅ' ବସାଇ ଦିଅନ୍ତି । ହେଲେ ଏ ଦୁର୍ଦ୍ଦିନର କି ଖବର କହୁଥିଲୁ ? '— ଥାଉ, ସେ ସବୁ କିଛି ନାଇଁ ।' କହି ଶମ୍ପା ଟେବୁଲକୁ ଆଙ୍ଗୁଠିରେ ବାଡ଼େଇ ସୁର ଧରିଲା ।

ଅନାମିକା ତା'ର ସେ ଭଙ୍ଗୀକୁ ଜାଣନ୍ତି । ମନେ ମନେ ହସି କହିଲେ । କିଛି ନୁହେଁ ? ତା'ହେଲେ ଥାଉ । ମୁଁ ଭାବୁଥିଲି ବୋଧହୁଏ—

— "ମୁଁ ତ ନା ବୋଲି କହିନି । ହେଲା ଏବେ କହୁଛି ଶୁଣ । ପଅରିଦିନ ଟୋକା ଗୋଟାଏ କୀର୍ତ୍ତି କରି ଦେଇଥିଲା ।" ଟିକିଏ ଦମ୍ ନେଲା ଶମ୍ପା ତା'ପରେ ପରିଷ୍କାର କରି କହିଲା— ବାହା ବାହା କହି ମତେ ତ ପାଗଳ କରିଦେଉଥିଲା । ପୁଣି ପଅରଦିନ ଆସି ବାପାଙ୍କ ପାଖରେ ହାଜର ହୋଇଗଲା । କହିଲା କ'ଣ ନା— ଆପଣଙ୍କ ଝିଅକୁ ମୁଁ ବାହା ହେବାକୁ ଚାହେଁ । 'ତା'ହେଲେ ତ କଥାଟା ବୁଝୁଥିବ !

ଶମ୍ପା ସହଜ ହସ ହସି କଥାଗୁଡ଼ିକ କହିଥିଲା— କିନ୍ତୁ ଅନାମିକା ଦେବୀଙ୍କର ହଠାତ୍ ମନେହେଲା ଶମ୍ପା ଯେମିତି ବ୍ୟଙ୍ଗ ହସ ହସୁଛି । ଯେମିତି କହିବାକୁ ଚାହୁଁଛି— ଦେଖ, ଦେଖ ଆମମାନଙ୍କ ଯୁଗକୁ ଦେଖ । ତମ ଯୁଗର ପ୍ରେମିକମାନଙ୍କର ଏମିତି ସାହସ ଥିଲା ? ହୁଁ ! ସେ ସାହସର ପ୍ରମାଣ ତ 'ଦେବଦାସ', 'ଶେଖର', 'ରମେଶ' । ମାଟି ଘୋଡ଼ା, ଖାଣ୍ଟି ମାଟି ଘୋଡ଼ା ! ଧାଇଁବାର ଭଙ୍ଗୀରେ ଅଚଳ ହୋଇ ଠିଆ ହୋଇଥାନ୍ତି ।

ମୁଣ୍ଡଠାରୁ ପାଦ ପର୍ଯ୍ୟନ୍ତ ଯେପରି ଗୋଟାଏ ବିଦ୍ୟୁତ୍ ପ୍ରବାହ ବହିଗଲା ଅନାମିକାଙ୍କର । ଅନ୍ୟ ଅନେକଦିନ ପରି ଆଜି ମଧ୍ୟ ଭାବିଲେ ଅନାମିକା, ମୁଁ କ'ଣ ଏ ଯୁଗକୁ ହିଂସା କରୁଛି ? ମୋର ସେଇ ଅପସନ୍ଦଟା କ'ଣ ସେଇ ହିଂସାର ହିଁ ରୂପାନ୍ତର ?

'କ'ଣ ହେଲା ପିଉସୀନାନୀ, ଏମିତି ତୁନି ହୋଇଗଲ ଯେ ?'

ଅନାମିକା ଆଉଥରେ କଲମଟାକୁ ହାତରେ ଉଠାଇନେଲେ ଏବଂ ଯେଉଁ କଥାଟା ମୁହୂର୍ତ୍ତେ ଆଗରୁ ମଧ୍ୟ ଭାବି ନାହାନ୍ତି ହଠାତ୍ ସେ କଥାଟା କହିଦେଲେ— "ଟୋକାଟା ତ ଦେଖୁଛି ଭାରି ଲୋଭୀ ।" କାହିଁକି କହିଲେ ? ଠିକ୍ ସେ ମୁହୂର୍ତ୍ତରେ ସମ୍ପୂର୍ଣ୍ଣ ବିପରୀତ ଭାବନାଟାକୁ ଭାବୁ ନ ଥିଲେ ଅନାମିକା ଦେବୀ । ଭାବୁ ନ ଥିଲେ— ବକୁଳ, ତୋର ନିର୍ମଳର ଯଦି ଏ ସାହସ ଥାଆନ୍ତା ?

କିନ୍ତୁ ଶମ୍ପା ସେଇ ମନ ଭିତରର କଥାଟା ଜାଣିନି । ସେଇଥିପାଇଁ କହିଲା; ମୁଁ ମଧ୍ୟ ଠିକ୍ ସେ କଥା କହିଥିଲି ହତଭାଗାକୁ । ହେଲେ ସେ ଯେମିତି ଲାଗିଯୋଡ଼ ଲାଗୁଛି ବାହା ନ ହୋଇ ଛାଡ଼ିବନି ।

—ତୋ ବାପା କ'ଣ କହିଲେ ?

—ବାପା ? ବାପା ଆଉ ନୂଆ କ'ଣ କହିବେ ? ବାପା ମାତ୍ରକେ ଯାହା କହିଥାନ୍ତି, ସେଇୟା କହିଲେ— କହିଲେ, ପାତ୍ର ହିସାବରେ ତମେ କ'ଣ, ତମର ଡିଅବାଡ଼ି କ'ଣ ଅଛି କି ନାହିଁ, ସେ ସବୁ ନ ଜଣାଇ ହଠାତ୍ ମୋର ଝିଅକୁ ବାହାହେବାର ଇଚ୍ଛା ଜଣାଇଲେ ମୁଁ କ'ଣ ଆହ୍ଲାଦରେ ଅଧୀର ହୋଇ କନ୍ୟା-ସମ୍ପ୍ରଦାନ କରିଦେବି ? ଏଇୟା ତମର ଧାରଣା ? ସେଥିରେ ସେ—

—ସେଥିରେ ସେ କ'ଣ । ଭାବୀ ଶଶୁରକୁ ପିଟିଦେଇଗଲା ?

ହସିଉଠିଲା ଶମ୍ପା— ସେତେଦୂର ଅବଶ୍ୟ ଯାଇନି, ତେବେ ଧମକାଇ ଦେଇ ଯାଇଛି । କହିଛି— ଦେଖିବି କେମିତି ନ ଦେବେ !

—ଚମତ୍କାର ! କେଉଁଠାରୁ ଯେ ଏ ସବୁ ମାଲ ଯୋଗାଡ଼ କରୁଛୁ, ସେ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି !

ପାଦ ହଲାଇ ହଲାଇ ଶମ୍ପା କହିଲା— କଥାଟା କ'ଣ ଜାଣିଛ ପିଉସୀ, ନିହାତି ଦଫାରଫା କରିବା ଅବସ୍ଥା । ପୁଣି କିଛିଦିନ ହେଲା ମୁଁ ତାକୁ ଦେଖାଇ ଦେଖାଇ ଆଉ ଗୋଟିଏ ପିଲା ସଙ୍ଗେ ମିଶୁଛି ! ଅବଶ୍ୟ ସେଇଟା ଏକାବେଳେ ଫଲ୍‌ସ୍ ! ଖାସ୍ ତା'ର ଜେଲସି ବଢ଼ାଇବା ପାଇଁ—

ତାକୁ କଥା ସାରିବାକୁ ଦେଲେନି ଅନାମିକା, ହଠାତ୍ ଗମ୍ଭୀର ହୋଇ କହିଲେ— ଆଚ୍ଛା, ତୋର ଫାଜିଲାମି କଥା ପରେ ଶୁଣିବି, ଏଇଲେ ମୋ ଲେଖାଟା ସାରିବାକୁ ଦେ ।

ଧଡ଼ାସ୍‌କିନା ଉଠି ଠିଆହେଲା ଶମ୍ପା, କ୍ଷୁବ୍ଧ ଅଭିମାନ ଭରା ଗଳାରେ କହିଲା,— ମୁଁ ଚାଲିଯାଉଥିଲି ତ, ତମେ ତ ଡାକି ବସାଇଲ ।

ତରତର ହୋଇ ପାହାଚରେ ଓହ୍ଲାଇଗଲା ସେ ।

ଅନାମିକା ଚାହିଁ ରହିଲେ ସେ ଆଡ଼କୁ । ବନ୍ଦ କଲମଟାକୁ ସେମିତି ହାତରେ ଧରି, ସମସ୍ତ ଶକ୍ତି ପ୍ରୟୋଗର ଇଛାଟାକୁ ଯେମିତି ଖୋଜି ପାଇଲେନି । ଅତି ଧୀରେ, ଅତି ଗଭୀରତା ସହିତ ଭାବିବାକୁ ଚେଷ୍ଟା କଲେ, ଏ ଯୁଗର କେଉଁ କୋଣରେ ମୁଁ ମୋର କ୍ୟାମେରାଟାକୁ ରଖିବି ? କେଉଁ ଆଙ୍ଗଲ୍‌ରୁ ଫଟୋ ନେବି ?...... ଏ ଘରର କେଉଁଠି କେଉଁଠି ଏବେମଧ୍ୟ ଦେଢ଼ଶୁରଙ୍କୁ ଦେଖିଲେ ଓଢ଼ଣା ଟାଣି ଦେଉଛନ୍ତି ଭାଇବୋହୂ, ଭଣ୍ଡାର ଘରର କୋଣରେ ଲକ୍ଷ୍ମୀଙ୍କ କଳସ ବସାଇ ରଖାହୁଏ, ହୁଏତ ବିଶେଷ ବିଶେଷ ଦିନରେ ଲକ୍ଷ୍ମୀଙ୍କ ପୁରାଣଟାକୁ ପଢ଼ନ୍ତି । ଅଥଚ ଏଇଘରେ ହିଁ ଶମ୍ପା –

ଏ ସବୁର ସତ୍ୟ କେଉଁଟା ?

## ॥ ୧୦ ॥

ନା ଏ ଯୁଗରେ ଯୁଗର କୌଣସି ପ୍ରକାର ସ୍ୱଷ୍ଟ ଅବୟବ ଖୋଜି ମିଳୁ ନାହିଁ । କେଉଁଠି ସେ ସଂହାରର ମୂର୍ତ୍ତି ନେଇ ପ୍ରତି ମୁହୂର୍ତ୍ତରେ ରେଣୁ ରେଣୁ କରି ଉଡ଼ାଇ ଦେଉଛି ବହୁଯୁଗସଞ୍ଚିତ ସଂସ୍କାରଗୁଡ଼ିକୁ, ଉଡ଼ାଇ ଦେଉଛି ଚିରନ୍ତନ ମୂଲ୍ୟବୋଧଗୁଡ଼ିକୁ, ଅଭ୍ୟସ୍ତ ଧ୍ୟାନଧାରଣାର ଅବଲମ୍ବନଗୁଡ଼ିକୁ, ପୁଣି କେଉଁଠି ସେ ଆଦ୍ୟକାଳର ବୈଦ୍ୟବୁଢ଼ୀ ପରି ଆଜି ମଧ୍ୟ ତା'ର ବହୁ ସଂସ୍କାରରେ ବୋଝେଇ ହୋଇଥିବା ଝୁଲିଟାକୁ କାନ୍ଧରେ ଧରି ଚେରମାଡ଼ି ବସି 'ପାପପୁଣ୍ୟ', 'ଭଲମନ୍ଦ', 'ଇହଲୋକ – ପରଲୋକ'ର ଚିରାଚରିତ ଖଇଣା ଯୋଗାଇ ଚାଲିଛି ।

ସେଥିପାଇଁ ଏ ଯୁଗର ମାନସଲୋକରେ 'ସତ୍ୟ'ର ଚେହେରାଟା ମଧ୍ୟ ଅସ୍ଥିର ଓ ଅସ୍ୱଷ୍ଟ । ଦୋହଲୁଥିବା ଦର୍ପଣରେ ପ୍ରତିଫଳିତ ପ୍ରତିବିମ୍ବ ପରି ସେ ଚେହେରା କେବେ କମ୍ପିତ, କେବେ ବିକୃତ, କେବେ ଦ୍ୱିଧାଗ୍ରସ୍ତ, କେବେ ଯେପରି ଅସହାୟ । ଯେପରି ଝଡ଼ରେ ବସା ଭାଙ୍ଗିଥିବା ପକ୍ଷୀ ନିଜ ଡେଣାକୁ ପିଟି ପିଟି ଘୂରି ଘୂରି ମରୁଛି, ଏବେସୁଦ୍ଧା ସ୍ଥିର କରିପାରୁନି ଝଡ଼ ବନ୍ଦ ହେଲେ ପୁରୁଣା ବସାଟାକୁ ତାଳି ପକାଇ ପୁଣି ସଜାଡ଼ିଦେବ, ନା ନୂଆ ଗଛ ଉପରକୁ ଯାଇ ନୂଆ ବସା ବାନ୍ଧିବ !

କିନ୍ତୁ ଝଡ଼ କ'ଣ ବନ୍ଦ ହେବ ?

ଧ୍ୱଂସ କରିବା ଝଡ଼ କ'ଣ ମୋଡ଼ି ଭାଙ୍ଗି ନାରଖାର ନ କଲା ପର୍ଯ୍ୟନ୍ତ ଅଟକେ ? ସେ କ'ଣ ସେହି ପୁରୁଣାକାଳିଆ ବୁଢ଼ୀଟାକୁ ଚେରମୂଳ ସହିତେ ଉପାଡ଼ି ନ ଦେଇ ଛାଡ଼ିଦିଏ ?

ଅଥବା ହୁଏତ ବନ୍ଦହୁଏ । ହୁଏତ ଛାଡ଼ିଯାଏ । କେଉଁଠି ଯେପରି ଗୋଟାଏ ସମାଧାନ ହୋଇଯାଏ । ସେତେବେଳେ ବୁଢ଼ୀଟା ନ ଦିଶିଲେ ବି ଚେରଟା ରହିଯାଏ ମାଟିତଳେ । ଚେରଟି ନିଃଶବ୍ଦରେ ଆପଣା କାମ କରିଯାଏ । ସେଥିପାଇଁ ଏହି ବିଶ୍ୱକୁ ତୁଚ୍ଛ ମଣିବା ଯୁଗରେ ମଧ ‘ମହାତ୍ମା’ ଆଉ ‘ମହାରାଜା’ଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଛି, ବଢ଼ି ଚାଲିଛି ଭାଗ୍ୟଗଣନା ‘କାର୍ଯ୍ୟାଳୟ’, ଆଉ ଗ୍ରହଶାନ୍ତିର ‘ରତ୍ନ-କବଚ’ !

ସେଥିପାଇଁ ଯେତେବେଳେ ‘ସାମ୍ୟ’ ‘ମୈତ୍ରୀ’ ଆଉ ସ୍ୱାଧୀନତାର ଜୟ ଝଙ୍କାରରେ ଆକାଶପାତାଳ ପ୍ରକମ୍ପିତ ହେଉଛି, ସେତେବେଳେ ମଧ ଖାଲି ଚମଡ଼ାର ରଙ୍ଗର ବିଭିନ୍ନତା ଆଳରେ ମଣିଷ ମଣିଷର ଚମଡ଼ା ଛଡ଼ାଇ ନେଇଯାଉଛି ଏବଂ ଯେତେବେଳେ ଦଳେ ମଣିଷ ଚନ୍ଦ୍ରରେ ପହଞ୍ଚିବାର ସାଧନାରେ ଆକାଶକୁ ପରିକ୍ରମା କରୁଛନ୍ତି ସେତେବେଳେ ଆଉ ଗୋଟିଏ ଦଳ ‘ସଭ୍ୟତାର ସମସ୍ତ ପଥର ପରିକ୍ରମା ସାରି ଦେଇଛୁ’ କହି ପୁଣି ଗୁହାଆଡ଼କୁ ମୁହଁ ଫେରାଇ ଚାଲିବାକୁ ଆରମ୍ଭ କରିଛନ୍ତି ।

ଏକାବେଳେ ଏତେଗୁଡ଼ିଏ କଥା କହି ବକ୍ତା ଟିକିଏ ଅଟକିଲେ । ଚାହିଁ ଦେଖିଲେ ଆଗକୁ । ବହୁ ଆସନ-ବିଶିଷ୍ଟ ବିରାଟ ସୁରମ୍ୟ ହଲ୍ । ସଭାର ଉଦ୍ୟୋକ୍ତା ମୋଟା ଟଙ୍କାର ଦକ୍ଷିଣା ଏବଂ ଅକ୍ଳାନ୍ତ ‘ଧାରଣା’ର ବିନିମୟରେ ଗୋଟିଏ ସନ୍ଧ୍ୟା ପାଇଁ ସଂଗ୍ରହ କରିଛନ୍ତି ଏ ହଲ୍ ‘ସାଂସ୍କୃତିକ ଅନୁଷ୍ଠାନ’ ଓ ‘ସାହିତ୍ୟ ସମ୍ମିଳନୀ’ ପାଇଁ । କେତେଦିନ ହେଲା ସେହି ନାମରେ ହିଁ ଜୋର୍‌ରେ ପ୍ରଚାରକାର୍ଯ୍ୟ ଚାଲିଛି । ‘ଅଭିନବ ସାଂସ୍କୃତିକ ଅନୁଷ୍ଠାନ’ ଓ ସାହିତ୍ୟ ସମ୍ମିଳନୀ’ ଆସନ୍ତୁ ଅଗ୍ରିମ ଟିକଟ ସଂଗ୍ରହ କରନ୍ତୁ । ପଚିଶ ଟଙ୍କା, ଦଶଟଙ୍କା ଓ ପାଞ୍ଚ ଟଙ୍କା । ଦୁଇଟଙ୍କାର ଟିକଟ କେବଳ ଅନୁଷ୍ଠାନ ହେବା ଦିନ ହଲ୍‌ରେ ବିକ୍ରି ହେବ । ଆହୁରି ଗୋଟିଏ ଘୋଷଣା, ଏହି ଅନୁଷ୍ଠାନର ବିକ୍ରୟଲବ୍ଧ ଅର୍ଥର ଏକତୃତୀୟାଂଶ ‘ଦୁଃସ୍ଥ ତ୍ରାଣ ସମିତି’ ହସ୍ତରେ ଅର୍ପଣ କରାଯିବ ।

ମଣିଷ ଯେ ଯଥେଷ୍ଟ ପରିମାଣରେ ହୃଦୟବାନ, ତାହା ଏଇ ପ୍ରବେଶପତ୍ର ସଂଗ୍ରହର ଉଦଗ୍ର ଆଗ୍ରହ ଭିତରେ ହିଁ ପ୍ରମାଣିତ ହୋଇଛି । ତିନିଦିନ ଆଗରୁ ଦାମିକା ଟିକେଟ୍‌ଗୁଡ଼ିକ ସରିଗଲାଣି, ‘ହଲ୍’ରେ ବିକ୍ରିର ପରିକଳ୍ପନାର ନିର୍ବୁଦ୍ଧିତାରେ ବିପର୍ଯ୍ୟସ୍ତ ଉଦ୍ୟୋକ୍ତାମାନେ ପୁଲିସ୍‌ଙ୍କ ଶରଣାଗତ ହେବାକୁ ବାଧ୍ୟ ହେଲେ ।

ଦୁଃସ୍ଥମାନଙ୍କ ପାଇଁ ପ୍ରାଣ ନ କାନ୍ଦିଲେ କ’ଣ ଏତେ ବିକ୍ରି ହୋଇଥାନ୍ତା ? ନିନ୍ଦୁକମାନେ ହୁଏତ ଅନ୍ୟ କଥା କହିବା ହିଁ ତ ସେମାନଙ୍କର ପେସା । ଯାହା ହିଁ ହୋଇଥାଉ— ଦୁଃସ୍ଥମାନଙ୍କ ପାଇଁ ହୋଇଥାଉ ଅଥବା ଦୁର୍ଲଭମାନଙ୍କ ପାଇଁ

ହେଉ, ସବୁ ଟିକେଟ୍ ବିକ୍ରି ହୋଇଯାଇଛି ଆଉ ସେ ସମ୍ବାଦ ଢୋଲ ପିଟି ପ୍ରଚାର କରାଯାଇଛି ମଧ୍ୟ ।

ଅତଏବ ଆଶା କରିବା ଅସଙ୍ଗତ ହେବ ନାହିଁ ଆଗରେ ରହିଥିବା ଧାଡ଼ି ଧାଡ଼ି ଆସନରେ ସମସ୍ତ ଧାଡ଼ି ଭର୍ତ୍ତି ହୋଇଯିବ । କିନ୍ତୁ କାହିଁ ସେ ଲୋକଗହଳି ? କାହିଁ ସେହି ପୂର୍ଣ୍ଣତାର ସମାରୋହ ?

ଆଜିର ସଭାର ପ୍ରଧାନ ବକ୍ତା ସୁବିଖ୍ୟାତ ଅଧ୍ୟାପକ ସାହିତ୍ୟିକ ଚକ୍ରପାଣି ଚାଟାର୍ଜୀ ସେଥିପାଇଁ ବକ୍ତୃତା ମଝିରେ ଟିକିଏ ଦମ୍ ନେଇ 'ହଲ୍'ର ଶେଷପ୍ରାନ୍ତଯାଏ ଚାହିଁ ଦେଖିଲେ । ନା, ଲୋକ ନାହାନ୍ତି, ଖାଲି ଚକ୍‌ଚକ୍ ଝକ୍‌ଝକ୍ ଗଦି ଲାଗିଥିବା ମୂଲ୍ୟବାନ ଆସନଗୁଡ଼ିକ ଶୂନ୍ୟ ହୃଦୟ ଧରି ପ୍ରତୀକ୍ଷାର ପ୍ରହର ଗଣୁଛନ୍ତି !

କେବଳମାତ୍ର ସାମନାର କେତୋଟି ଆସନ, ଯେଉଁଥିରେ କୁଆଡ଼େ ଅତିଥି ମାର୍କା ମରା ଯାଇଛି ସେମାନେ କେତେଜଣ ବିଶିଷ୍ଟ ଅତିଥିଙ୍କୁ ହୃଦୟରେ ଧାରଣ କରି ବସିଛନ୍ତି ! ଏମାନଙ୍କୁ ହୁଏତ ଗାଡ଼ି ପଠାଇ ଅଣାଯାଇଛି, ସେଥିପାଇଁ ଏମାନେ ସଭାର ଶୋଭା ହୋଇ ବସିବାକୁ ବାଧ୍ୟ ହୋଇଛନ୍ତି ! ଏମାନଙ୍କ ଭିତରେ ଅଛନ୍ତି ବେଶ୍ କେତେଜଣ ଗଣ୍ୟମାନ୍ୟ ସାମ୍ବାଦିକ, ବାକି ସମସ୍ତେ ବିଶିଷ୍ଟ ନାଗରିକ । 'ଏମାନେ ଏମାନେ ସଭାରେ ଉପସ୍ଥିତ ଥିଲେ' କହି କାଗଜରେ ଯେଉଁମାନଙ୍କ ନାମ ଉଲ୍ଲେଖ କରାଯାଏ, ଏମାନେ ହେଉଛନ୍ତି ସେହି ବ୍ୟକ୍ତି । ଚକ୍ରପାଣି ଏମାନଙ୍କ ଭିତରୁ ଅନେକଙ୍କୁ ଭଲରୂପେ ଚିହ୍ନନ୍ତି । ଅନେକଙ୍କ ମୁହଁକୁ ଚିହ୍ନନ୍ତି । କିନ୍ତୁ ଏମାନଙ୍କ ଭିତରୁ କାହାରିକୁ ତ 'ନବଯୁଗର ବାହକ' ବୋଲି ମନେ ହେଉନି । ତେବେ 'ଯୁଗବାଣୀ' କେଉଁମାନଙ୍କୁ ଶୁଣାଇବେ ଚକ୍ରପାଣି ?

ଅଥଚ ତାଙ୍କ ଭାଷଣରେ ବିଷୟବସ୍ତୁ ନିର୍ଦ୍ଧାରଣ କରି ଦିଆଯାଇଛି 'ଯୁଗ ସାହିତ୍ୟରେ ସତ୍ୟ' । ଅବଶ୍ୟ ସତ କହିବାକୁ ଗଲେ ସେହି ଶୀର୍ଷକଟିର ପ୍ରକୃତ ଅର୍ଥ ତାଙ୍କ ନିକଟରେ ସେମିତି ସହଜ ହୋଇନି । ଉଦ୍ୟୋକ୍ତାମାନେ ପ୍ରକୃତରେ ସେହି ଶବ୍ଦଟା ଦେଇ ପ୍ରକୃତରେ କି ଅର୍ଥ ବୁଝାଇବାକୁ ଚାହିଁଛନ୍ତି, ଅଥବା ତିନି ଚାରିଜଣ ମହା ମହା ସାହିତ୍ୟରଥୀମାନଙ୍କୁ ଡାକିଆଣି ସେମାନଙ୍କ ନିକଟରୁ କ'ଣ ଶୁଣିବାକୁ ଚାହିଁଛନ୍ତି ?

ତେବେକେ ଅଧ୍ୟାପକମାନଙ୍କୁ ଭାଷଣ ଦେବାକୁ ବାଧା ଲାଗେନି, ଯେ କୌଣସି ବିଷୟବସ୍ତୁ ନେଇ ଘଣ୍ଟା ପରେ ଘଣ୍ଟା ସାରଗର୍ଭକ ଭାଷଣ ଦେଇପାରନ୍ତି ସେମାନେ । ଚକ୍ରପାଣି ପୁଣି ଖାଲି ଅଧ୍ୟାପକ ନୁହନ୍ତି— ଅଧ୍ୟାପକ ସାହିତ୍ୟିକ ! ପ୍ରୌଢ଼ତ୍ୱ ନିକଟରେ ବୟସ ପ୍ରାୟ ପହଞ୍ଚିଗଲାଣି, ଛାତ୍ରମହଲରେ ବିଶେଷ ପ୍ରୀତିଭାଜନ

(ଯାହା କୁଆଡ଼େ ଏ ଯୁଗରେ ଦୁର୍ଲଭ) ଏବଂ ପାଠକ ମହଲରେ ଏବେ ମଧ୍ୟ ଅମ୍ଳାନଜ୍ୟୋତି ନାୟକ ! 'ଅତି ଆଧୁନିକ'ମାନଙ୍କର ପ୍ରବଳ କଳକଲ୍ଲୋଳରେ ମଧ୍ୟ ଚକ୍ରପାଣିଙ୍କ ଜୟଜୟକାର ଅବ୍ୟାହତ ଅଛି । ଅନ୍ତତଃ ତାଙ୍କର ରଚିତ ଗ୍ରନ୍ଥର ବିକ୍ରୟ ସଂଖ୍ୟା ଦେଖି ମନେହୁଏ ଏକଥା ।

କିନ୍ତୁ ବକ୍ତୃତା ମଞ୍ଚରେ ଠିଆହେଲେ କାହିଁକି ଯେ ସେ ଅଗଣିତ ଭକ୍ତ ସଂଖ୍ୟାକୁ ଦେଖିବାକୁ ମିଳେ ନାହିଁ । କାହିଁକି ଆଙ୍ଗୁଠିରେ ଗଣିଲା ଭଳି କେତୋଟି ଚିହ୍ନା ମୁହଁର ପଛରେ ଖାଲି ଶୂନ୍ୟତାର ଅନ୍ଧକାର ଦେଖିବାକୁ ମିଳେ ? ଅଥଚ ସେହି ଚଉକିଗୁଡ଼ିକର ନାଯ୍ୟ ମାଲିକ ଅଛନ୍ତି ! ସେମାନେ ଆସିଛନ୍ତି ମଧ୍ୟ । ଖାଲି 'ଆଜେବାଜେ କେତେଗୁଡ଼ିଏ ବକ୍ତୃତା ଶୁଣିବା ଭୟରେ ହଲ୍‌ର ବାହାରେ ଏଣେ ତେଣେ ବୁଲୁଛନ୍ତି, ଝାଲ୍‌ମୁଢ଼ି ବା ଆଇସ୍‌କ୍ରୀମ୍ ଖାଉଛନ୍ତି, ଆଡ୍ଡା ମାରୁଛନ୍ତି !

ତା'ଛଡ଼ା ଆହୁରି ଆକର୍ଷଣ ଅଛି । ଗାୟକ-ଗାୟିକାଙ୍କ ସଙ୍ଗେ କେତେକ ନାୟକ-ନାୟିକାଙ୍କ ନାମ ମଧ୍ୟ ଘୋଷଣା କରାଯାଇଛି, ଯେଉଁମାନେ କି ଦୁଃସ୍ଥମାନଙ୍କର କଲ୍ୟାଣ ପାଇଁ ବିନା ଦକ୍ଷିଣାରେ କିଛି ଶ୍ରମଦାନ କରିବାକୁ ସ୍ୱୀକୃତ ହୋଇଛନ୍ତି । ସେମାନେ ତ ଖାଲି ଅଭିନୟ କରନ୍ତି ନାହିଁ, କଣ୍ଠସଂଗୀତରେ ମଧ୍ୟ ସକ୍ଷମ, ସେକଥାଟା ସେମାନଙ୍କ ସାମନାରେ ବସି ଦେଖିହେବ ।

ବର୍ତ୍ତମାନ କଥା ହେଉଛି— ସେହି ନାୟକ-ନାୟିକାମାନେ ଅବଶ୍ୟ ଆକାଶ ପଥରେ ଉଡ଼ିଆସି ମଞ୍ଚାବତରଣ କରିବେନି । ଗାଡ଼ିରୁ ଓହ୍ଲାଇ ପ୍ରକାଶ୍ୟ ରାଜପଥରେ ଆସିବାକୁ ପଡ଼ିବ ସେମାନଙ୍କୁ । ସେହି ଅନବଦ୍ୟ ଦୃଶ୍ୟର ଦର୍ଶକ ହେବାର ସୌଭାଗ୍ୟରୁ ନିଜକୁ ବଞ୍ଚିତ କରିବାକୁ ଚାହିଁବେ, ଏଭଳି ମୂର୍ଖ କିଏ ଅଛି ? ସେମାନେ ଆସି ପ୍ରବେଶ କଲାମାତ୍ରେ ଉଲ୍ଲାସଧ୍ୱନି କରି ତା'ପରେ ଭିତରକୁ ଯିବେ ସେମାନେ, ଟିକେଟ୍‌ରେ ତ ସିଟ୍‌ନମ୍ବର ଅଛି, ଭାବନା କ'ଣ ?

ପ୍ରଥମ ବକ୍ତା ଚକ୍ରପାଣି ବିଶେଷ ବୁଦ୍ଧିମାନ ହେଲେ ମଧ୍ୟ ଅବସ୍ଥାଟାକୁ ଠିକ୍ ହୃଦୟଙ୍ଗମ କରି ପାରି ନାହାନ୍ତି । ବିରାଟ ପ୍ରେକ୍ଷାଗୃହର ବିରାଟ ଶୂନ୍ୟତା ଆଡ଼କୁ ଚାହିଁ ପ୍ରତିଷ୍ଠାନର ସଂପାଦକଙ୍କୁ କ୍ଷୁବ୍ଧ ପ୍ରଶ୍ନ କରିଥିଲେ— ଆରମ୍ଭ ତ କରିବି, କିନ୍ତୁ ଶୁଣିବ କିଏ ? ଖାଲି ଚଉକିଗୁଡ଼ାକ ?

ସଂପାଦକ ସବିନୟରେ କହିଥିଲେ— 'ସାର୍, ସମସ୍ତେ ଆସିଯିବେ' ।

କିନ୍ତୁ ସେହି ଆଶ୍ୱାସବାଣୀ ଭିତରେ ଆଶ୍ୱାସନା ଖୋଜି ପାଇ ନାହାନ୍ତି ଚକ୍ରପାଣି । ତେଣୁ ଆଉଥରେ କହିଥିଲେ, "ଆହୁରି କିଛି ସମୟ ଅପେକ୍ଷା କଲେ ହୁଅନ୍ତା ନାହିଁ ?

ସେ କଥା ଶୁଣି ସଂପାଦକ ଏବଂ ସ୍ଥାୟୀ-ସଭାପତି ହଁ ହଁ କରି କହିଥିଲେ— ଆଉ ଡେରି କଲେ ଚଳିବନି ସାର୍ । ଆପଣ ଚାରିଜଣଙ୍କର ଭାଷଣ ସରୁ ସରୁ ସଭାର ବାରଟା ବାଜିଯିବ । ମାନେ ସମସ୍ତେ ତ ସାର୍— କଥା ଆରମ୍ଭ କଲେ ଅଟକାଇବ କିଏ ? ଆପଣଙ୍କ ବକ୍ତୃତା ହିଁ ଟିକିଏ ଶୁଣିବା ଭଳି । ବାକି ସମସ୍ତେ—

ଏ ମନ୍ତବ୍ୟ ଅବଶ୍ୟ ଲାଗି ମୃଦୁ ଭାବରେ ସେମାନେ କହିଥିଲେ । ଉଦ୍ୟୋକ୍ତାମାନେ ତ ଆଉ ଅଭଦ୍ର ନୁହନ୍ତି ଯେ ପାଟିକରି କୌଣସି ମତାମତ ଜଣାଇଥାଆନ୍ତେ !

ଚକ୍ରପାଣିଙ୍କ ନିକଟରେ ବସିଥିଲେ ସାହିତ୍ୟିକ ମାନସ ହାଲ୍‌ଦାର । ସେ ପୁଣି ଗୋଟିଏ ବିଶିଷ୍ଟ ସାପ୍ତାହିକର ସଂପାଦକ । ବକ୍ତୃତା ଦେବାର ଅଭ୍ୟାସ ନାହିଁ ବୋଲି କେତୋଟି ଫୁଲ୍‌ସ୍କେପ୍ କାଗଜର ଦୁଇ ପଟେ ଛୋଟ ଛୋଟ ଅକ୍ଷରରେ ତାଙ୍କର ବକ୍ତବ୍ୟ ଲେଖି ଆଣିଛନ୍ତି । ସେ ବିଚଳିତ ହୋଇ କହିଲେ— ଆପଣମାନଙ୍କର କାର୍ଡ଼ରେ ତ ଲେଖାହୋଇଛି ଛଅଟା । ଏଇଲେ ସାତଟା ପନ୍ଦର ହେଲାଣି ! ଏ ପର୍ଯ୍ୟନ୍ତ—

— କଥା କ'ଣ ଜାଣିଛନ୍ତି ସାର୍...... ସଂପାଦକ ହାତ ମକଚି କହିଲେ ଆର୍ଟିଷ୍ଟମାନେ ସମସ୍ତେ ବହୁତ ଡେରି କରି ଆସନ୍ତି ତ । ଆଉ ସେମାନଙ୍କ ପାଇଁ ତ ଏତେ ଟିକେଟ୍ ବିକ୍ରି ହୋଇଛି । ନ ହେଲେ ପଇସା ଖର୍ଚ୍ଚ କରି ସାହିତ୍ୟ ଶୁଣିବାକୁ କିଏ ଆସିବେ କହିଲେ ?

ନା, ନା, ପିଲାଟା ସାହିତ୍ୟ ବା ସାହିତ୍ୟିକଙ୍କୁ ଅବମାନନା କରିବି ବୋଲି ଭାବି କଥାଟା କହି ନ ଥିଲା । ନିହାତି ସରଳ ହୋଇଥିବାରୁ ସହଜ ଓ ସତ କଥାଟା କହିଦେଇଛି ।

ମାନସ ହାଲ୍‌ଦାର ଚପା କ୍ରୁଦ୍ଧ କଣ୍ଠରେ କହିଲେ— ତା'ହେଲେ ଏ ସାହିତ୍ୟ ସମ୍ମିଳନୀର ଫାର୍ସ କାହିଁକି ?

ଏ ପ୍ରଶ୍ନର ଉତ୍ତରରେ ପିଲାଟି ସାରଲ୍ୟର ପରାକାଷ୍ଠା ଦେଖାଇଲା । ଅମାୟିକ ଗଳାରେ କହିଲା— ହଁ, ଯାହା କହିଲେ । ଫଙ୍କସନ୍‌ର ଖର୍ଚ୍ଚ ତୁଲାଇବାକୁ ଗୋଟାଏ 'ସୋଭେନିଅର୍' ତ ବାହାର କରିବାକୁ ହେବ, ଆଉ ସେଥିରେ ବିଖ୍ୟାତ ଲେଖକମାନଙ୍କର ଲେଖା ନ ଥିଲେ ବିଜ୍ଞାପନ ମିଳିବନି । ତେଣୁ— ଆପଣମାନେ ବୁଝୁଛନ୍ତି ତ ? ଆପଣମାନଙ୍କର ଲେଖା ନେବୁ ଆଉ ଆପଣମାନଙ୍କୁ ଡାକିବୁନି ଏକାବେଳେ, ଏଇଟା କେମିତି କଥା ହେବ ? ସେଇଥିପାଇଁ ଯୋଉମାନଙ୍କର ଲେଖା ଅଣାଯାଇଛି, ବାଛି ବାଛି ସେମାନଙ୍କୁ ହିଁ ଡକାଯାଇଛି, ଆପଣ ଲକ୍ଷ୍ୟ କଲେ ଦେଖିବେ ।

ନଚେତ୍ ସାହିତ୍ୟ ବିଷୟରେ ବକର ବକର ହେଲେ କାହାକୁ ଶୁଣିବାକୁ ଭଲ ଲାଗିବ ? ଆମ ଦେଶରେ ବହୁତ କଥା ସୃଷ୍ଟି ହୋଇଛି, କାମ ହେଲାଭଳି କିଛି ନାହିଁ, ଖାଲି କଥାର ଫୁଲଝରି !

ପିଲାଟି ଯେ ନିଜେ ମଧ୍ୟ ଅନେକ ଭଲ ଭଲ କଥା ଶିଖିଛି, ତାହାର ପରିଚୟ ଦେବାକୁ ନିଜେ ଫୁଲଝରି ଝରାଇଲା – ଦେଶ କେଉଁଠି ଅଛି କହିଲେ ! ରୁଚି ନାହିଁ, ସଭ୍ୟତା ନାହିଁ, ସୌନ୍ଦର୍ଯ୍ୟବୋଧ ନାହିଁ, ଗଭୀରତା ନାହିଁ, ଚିନ୍ତାଶୀଳତା ନାହିଁ, କେବଳମାତ୍ର କଥାର ସ୍ରୋତ ଭାସୁଛି । ସେଥିପାଇଁ ସାର୍ ଆମର ଶଶାଙ୍କ ଭାନା କହିଦେବାକୁ କହିଛନ୍ତି, ଆପଣମାନଙ୍କର ଭାଷଣଗୁଡ଼ିକୁ ଟିକିଏ ସଂକ୍ଷିପ୍ତ କରିବେ । ଭାରି ମଜାର କଥା ସେ କହନ୍ତି –

ପିଲାଟା ଧାଡ଼ିକଯାକ ଦାନ୍ତ ଦେଖାଇ ନିଃଶବ୍ଦରେ ହସିଲା, କହିଲା – କହିଲେ ଭାଷଣ ସଂକ୍ଷିପ୍ତ ନ ହେଲେ ଶ୍ରୋତାମାନେ ଏକାବେଳେ ତାତି ଯାଆନ୍ତି । ଆଉ ଗୋଟିଏ କଥା, ଆର୍ଟିଷ୍ଟମାନଙ୍କର ଗୁମର ଜାଣିଛନ୍ତି ତ – ଟିକିଏ ବସି ରହିବାକୁ ପଡ଼ିଲେ "ଅନ୍ୟଠାରେ କାମ ଅଛି ବୋଲି ଉଠି ଚାଲିଯିବେ । ଜଣେ ବିଖ୍ୟାତ ଗାୟିକା ତ ପୁଣି ଗୀତ ଗାଇଲାବେଳେ ସଭାରେ କେହି ପଦେ କଥା କହିଲେ ଉଠି ଚାଲି ଯାଆନ୍ତି । ଶିଳ୍ପୀ ତ ଭୀଷଣ ମୁଡ଼ି......

ପୁଣି ବିଗଳିତ ହସ ସହିତ ପୁଅଟି କହିଲା, ଶେଷପର୍ଯ୍ୟନ୍ତ ରହିବେ ତ ସାର୍ ? ଭଲ ଆର୍ଟିଷ୍ଟମାନଙ୍କୁ ଶେଷ ଆଡ଼କୁ ରଖିଛୁ ।

– କିନ୍ତୁ ତମର ସଭାନେତ୍ରୀ ?

– ଆସି ଯାଇଛନ୍ତି ସାର୍ ! ସ୍ତ୍ରୀଲୋକ ହେଲେ କ'ଣ ହେବ, ଭାରି ପଙ୍କ୍‌ଚୁଆଲ୍ ! ତାଙ୍କୁ ଦଳେ କଲେଜ ଝିଅ ଘେରି ବସିଛନ୍ତି, ସାଙ୍ଗରେ ଅଟୋଗ୍ରାଫ୍ ଖାତା ଆଣିଛନ୍ତି ହେଇଟି ଉଇଂସ୍‌ର ଏ ପଟକୁ । ଆସି ବସିଯିବେ, ଆପଣ ଆରମ୍ଭ କରିଦେଉ ନାହାନ୍ତି ?

ଚକ୍ରପାଣି ବିରକ୍ତ ଭାବରେ କହିଥିଲେ । "ତା' କେମିତି ହେବ ? ସଭାର ଗୋଟାଏ କାନୁନ୍ ଅଛି ତ ?"

– ଆପଣ ତ କହୁଛନ୍ତି ସାର୍, ଏପଟେ ଆମମାନଙ୍କର ଯେ ପ୍ରତି ମିନିଟ୍‌ରେ ମିଟରରେ ଉଠୁଛି ।

– "ମିଟରରେ ଉଠୁଛି !" ଅଧ୍ୟାପକ-ସାହିତ୍ୟିକ ଭୟରେ ଏପଟ ସେପଟ ଚାହିଁଲେ କହିଲେ – ମିଟର୍‌ରେ ଉଠୁଛି ? କି ମିଟର୍ ?

—"ଆଜ୍ଞା, ଏ ହଲ୍‌ର ।" ପିଲାଟି ତା'ର ବଙ୍କବଙ୍କ କଥା ଭିତରେ ହିଁ ଟିକିଏ ଉଚ୍ଚାଙ୍ଗ ହସ ହସିଦେଲା, କହିଲା— ଅନେକ ଧରାଧରି କରି କନ୍‌ଶେସନ୍‌ରେ ହିଁ ପାଞ୍ଚଶହ ଟଙ୍କା ! ଧରନ୍ତୁ ଦି'ପହର ପାଞ୍ଚଟାରୁ ରାତି ଦଶଟା । ଦଶଟା ବାଜିଗଲାକ୍ଷଣି ଘଣ୍ଟା ପିଛା ଏକ୍‌ଷ୍ଟ୍ରା ଶହେ ଟଙ୍କା । ତା'ହେଲେ କହନ୍ତୁ ତ ମିଟରରେ ଉଠିଯିବା କଥାଟି ଯାହା କହିଲି ଭୁଲ୍ କହିଲି ? ଆପଣମାନଙ୍କର ଏହି ସାହିତ୍ୟ— କିଚିରି ମିଚିରି ବନ୍ଦ ନ ହେଉଣୁ ଯଦି ଆର୍ଟିଷ୍ଟମାନେ କିଏ କିଏ ଆସିଯାଆନ୍ତି ତା'ହେଲେ ଅବସ୍ଥା କ'ଣ ହେବ ?

ଟୋକାଟା ଏକସମୟରେ ଚକ୍ରପାଣିର ଛାତ୍ର ଥିଲା, ସେଥିପାଇଁ ଏତେ ଅନ୍ତରଙ୍ଗତାର ସୁରରେ କଥା କହୁଥିଲା । କିନ୍ତୁ ସେହି ଶିଶୁ ପରି ସରଳ, ଅଥଚ ନିଶଦାଢ଼ି ଉଠିଥିବା ଦୀର୍ଘକାୟ ପ୍ରାକ୍ତନ ଛାତ୍ରଟିକୁ ଦେଖି ଚକ୍ରପାଣିଙ୍କ ସ୍ନେହଧାରା ଉଛୁଳି ଉଠିଲା ବୋଲି ମନେହେଲାନି । ନୀରସ ଗଳାରେ ପଚାରିଥିଲେ, କାହିଁକି କି ଅବସ୍ଥା ହେବ ?

—କ'ଣ ହେବ, ସେ କଥା କ'ଣ ଆଉ ମୁଁ ଆପଣଙ୍କୁ ବୁଝେଇବି ସାର୍ ? ସମୟ ନଷ୍ଟ ହେବାର ଦେଖିଲେ ଅର୍ଡ଼ିୟେନ୍ସ ବିଗିଡ଼ିଯିବେ । କି ପ୍ରକାର ଦିନକାଳ ପଡ଼ିଛି ଦେଖୁଛନ୍ତି ତ ?...... ହେଇଟି ସଭାନେତ୍ରୀ ଆସିଗଲେଣି । ତେବେ ଆଉ କ'ଣ ?

ତେବେ ଆଉ କ'ଣ ?

ମାଇକ୍‌ର ପ୍ରଥମ ବଳି ଚକ୍ରପାଣି 'ଯୁଗସାହିତ୍ୟରେ ସତ୍ୟ' ବିଷୟରେ ଆଲୋଚନା ଆରମ୍ଭ କଲେ । କହୁଥିଲେ, କିନ୍ତୁ ବାରମ୍ବାର ସାମନାର ସେହି ଶୂନ୍ୟ ଆସନର ଧାଡ଼ି ଆଡ଼କୁ ଚାହୁଁଥିଲେ । ଆଉ ଭାବୁଥିଲେ— ଏ ଯୁଗର ସ୍ୱଷ୍ଟ ଚେହେରା କ'ଣ ତେବେ ଏହି ଶୂନ୍ୟବକ୍ଷ ପ୍ରେକ୍ଷାଗୃହ ପରି ?

କିନ୍ତୁ ଭାବୁଥିଲେ ବୋଲି ଯେ ଅଟକି ଯାଉଥିଲେ— ତା' ନୁହେଁ । ଥରଟିଏ ଖାଲି ଅଟକିଥିଲେ । ତା'ପରେ ଏକାନିଃଶ୍ୱାସରେ କହିଗଲେ— ଶିଳ୍ପୀ ସାହିତ୍ୟିକ କବି ବୁଦ୍ଧିଜୀବୀ ଚିନ୍ତାବିଦ୍, ଏମାନଙ୍କର ସେଥିପାଇଁ ବର୍ତ୍ତମାନ ବିଶେଷ ସଙ୍କଟର ଦିନ । ଆଜି ସେମାନେ ମଧ୍ୟ ଦ୍ୱିଧାଗ୍ରସ୍ତ । ସେମାନେ କ'ଣ ଚିରାଚରିତ ସଂସ୍କାର ଭିତରେ ନିମଜ୍ଜିତ ଥାଇ ଗତାନୁଗତିକ ଭାବରେ ସୃଷ୍ଟି କରିଯିବେ, ନା ନୂଆ ନୂଆ ପରୀକ୍ଷା ଭିତର ଦେଇ ନୂଆ ତଥ୍ୟ ଉଦ୍‌ଘାଟିତ କରିବେ । ସମସ୍ତଙ୍କ ମନରେ ଆଜି ସେହି ପ୍ରଶ୍ନ ।

ଜଣେ ଜଣେ ହୋଇ ଦୁଇଟି ତରୁଣ ଆସି ପଛପଟର ଧାଡ଼ିରେ ବସିଥିଲେ, ମୃଦୁ କଣ୍ଠରେ ହସି ଜଣେ ଜଣକୁ କହିଲା— ଲେ ହାଲୁଆ ! ସେଇ 'ସତ'ଟା

କି ବିଚିତ୍ର ଜିନିଷ କହିଲୁ ? ଅଳାମାନେ କାହିଁକି ଏମିତି 'ସତ୍ୟ ସତ୍ୟ' ବୋଲି ମୁଣ୍ଡ ପିଟି ମରନ୍ତି ?

— ବିଚରାଗୁଡ଼ାକଙ୍କର ନିଜର ସବୁ କିଛି ମିଛ ହୋଇ ଆସୁଛି ବୋଲି ମନେ ହେଉଚି !

— ଦୂର୍ ଦୂର୍ ! ବାପା, ଏତେବେଳ ପରେ ଆସି ପ୍ରବେଶ କଲୁ, ତେବେକେ ବସି ବସି ବକ୍ତୃତା ଶୁଣିବାକୁ ପଡ଼ିବ ? କାର୍ଯ୍ୟକର୍ତ୍ତାମାନେ ମଧୁ ପରିବେଷଣ କରିବା ଆଗରୁ ନିମର ପାଚନ କରି କିଛି କିଛି ଏମିତି ଗିଳାଇ ଦିଅନ୍ତି କାହିଁକି ଯେ ?

— ସେଇଟା ତ ଫେସନ ହେଇଛି !

ସେତେବେଳେ ମଧ ଚକ୍ରପାଣି କହିଚାଲିଥିଲେ— ଏ ଯୁଗକୁ ତାହେଲେ କେଉଁ ନାଁରେ ଅଭିହିତ କରିବି ? ଅନୁସନ୍ଧାନୀ ଯୁଗ ? ଯେଉଁ ଯୁଗ ତନ୍ନ ତନ୍ନ କରି ଖୋଜୁଛି, ପରଖି ଦେଖୁଛି କେଉଁଠି ସେହି ଅଭ୍ରାନ୍ତ ସତ୍ୟ, ଯାହା ମଣିଷକୁ ସମସ୍ତ ମିଥ୍ୟା ବନ୍ଧନରୁ ମୁକ୍ତ କରିଦିଏ—

— "ପୁଣି ସେହି ସତ୍ୟ !" ପତଳା କଳା ପିଲାଟି ଧଳା ଧଳା ଦାନ୍ତ ବାହାର କରି ହସିଦେଇ ଅନୁଚ୍ଚ କଣ୍ଠରେ କହିଲା— "ଅଚ୍ଛା ହେ ! ସତ୍ୟ ମରି ଯାଇଛି ! ତାକୁ ଖୋଜି ବୁଲିବା ବୃଥା ପରିଶ୍ରମ ହେବ ।"

ଚକ୍ରପାଣି ଭଲ କହିଛନ୍ତି, ତଥାପି ଅନ୍ୟ ବକ୍ତାମାନେ ଥରକୁ ଥର ହାତ ଓଲଟାଇ ଘଣ୍ଟା ଦେଖୁଥିଲେ । ମାନସ ହାଲଦାର ବିରକ୍ତ ମୁହଁରେ ପକେଟ୍‌ରେ ହାତ ଦେଇ ଚିପି ଚିପି ନିଜର ଲିଖିତ ଭାଷଣଟିକୁ ଅନୁଭବ କରୁଥିଲେ । ଭାବୁଥିଲେ— ନାଃ ଲୋକଟା ଦେଖୁଛି ଏକାକୀ ଆଉ ସମସ୍ତଙ୍କର ବାରଟା ବଜାଇ ଦେଲା ! ପ୍ରତ୍ୟେକଙ୍କ ପାଇଁ ଗୋଟାଏ ନିର୍ଦ୍ଦିଷ୍ଟ ସମୟ ଠିକ୍ କରିଦେବା ଉଚିତ ଥିଲା ଉଦ୍ୟୋକ୍ତାମାନଙ୍କର । ସେ ଦେଶରେ ଏମିତି ହୁଏନି । ସେଠି ଏକାବେଳେ ଆଗରେ ଘଣ୍ଟା ରଖି କାମ କରନ୍ତି । ଆମମାନଙ୍କ ଦେଶରେ ? ହୁଁ !

ହଁ ଉଦ୍ୟୋକ୍ତାମାନଙ୍କର ସେ ଶୁଭବୁଦ୍ଧି ଥିଲା, ସେମାନଙ୍କ ଭିତରୁ ଜଣେ ପଛପଟୁ ଚାଲି ଆସି ବିନୟରେ କହିଲେ, ସାର୍, ଟିକିଏ ସଂକ୍ଷେପ କରିବେ !

ସଂକ୍ଷେପ ?

ଚକ୍ରପାଣି କ୍ଷୁବ୍ଧ ବିସ୍ମୟରେ ସାମନା ଆଡ଼କୁ ଚାହିଁଲେ, ସେଇଲେ ଦି' ଚାରିଜଣ ଆସି ବସିବାକୁ ଆରମ୍ଭ କରୁଛନ୍ତି ଏବଂ ସେଇକ୍ଷଣି ବକ୍ତବ୍ୟର ମୂଳଦୁଆ ମାତ୍ର ପଡ଼ିଛି ଏଇଲେ ସଂକ୍ଷେପ କରିବାକୁ ଅନୁରୋଧ ?

ତେବେ ସେ କୁଆଡ଼େ ଆଦୌ କ୍ଷଣକୋପୀ ନୁହନ୍ତି, ବରଂ କୌତୁକପ୍ରିୟ । ସେଥିପାଇଁ କୌତୁକପୂର୍ଣ୍ଣ ଗଳାରେ ଗୋଟିଏ ତୀକ୍ଷ୍ଣ ମନ୍ତବ୍ୟ ଦେଇ ବକ୍ତବ୍ୟର

ଉପସଂହାର କରିଦେଲେ । କିନ୍ତୁ ତାଙ୍କର ସେହି ବୁଦ୍ଧିଦୀପ୍ତ ତୀକ୍ଷ୍ଣ ମନ୍ତବ୍ୟଟି ଅକାରଣ ହୋଇଗଲା ।

ବାହାରୁ ଆସି ଘର ଭିତରେ ଗୋଟାଏ ପ୍ରବଳ ହର୍ଷୋଚ୍ଛ୍ୱାସର ଢେଉ ଖେଳିଗଲା– ଆସିଲେଣି, ଆସିଲେଣି !

କିଏ ଆସିଲେଣି ? ଯାହା ପାଇଁ ଏ ପ୍ରବଳ ହର୍ଷୋଚ୍ଛ୍ୱାସ ଚାଲିଛି ?– ଆଃ ଏଥିରେ ପଚାରିବାର କ'ଣ ଅଛି ? ତାଙ୍କୁ କିଏ ଚିହ୍ନିନି ଯେ ? ସେ ଆସିଗଲେଣି । ପଛେ ପଛେ ତାଙ୍କର ତବଲା ବଜାଇବାର ଲୋକ ବି ।

ତା' ପରେ ଆଉ ଜଣେ ନାୟକ । ତାଙ୍କ ସଙ୍ଗେ ଜଣେ ନାୟିକା ।

କହିବା ବାହୁଲ୍ୟ, ଯାପରେ ଆଉ ସାହିତ୍ୟ– ବକ୍ତୃତା ଚଳିବନି ତ ! ମାନସ ହାଲଦାର ସୀତେଶ ବାଗ୍‌ଚୀ ଏବଂ ସଭାନେତ୍ରୀ ଅନାମିକା ଦେବୀ ନିତାନ୍ତ ଅବାଞ୍ଛିତ ଅତିଥି ପରି ସେମାନଙ୍କର ଭାଷଣ ସଂକ୍ଷେପରେ ଶେଷ କରିଦେଲେ । ମଞ୍ଚାଧିପତି ସେହି ଭାଇସ୍‌ପ୍ରେସିଡେଣ୍ଟ ଚିତ୍କାର କରି ଘୋଷଣା କଲେ, "ସାହିତ୍ୟ ସଭା ସରିଲା । ଏଥର ଆମମାନଙ୍କର ସାଂସ୍କୃତିକ ଅନୁଷ୍ଠାନ" ଆରମ୍ଭ ହେବ । ଆପଣମାନେ ଅନୁଗ୍ରହ କରି ସ୍ଥିର ହୋଇ ବସନ୍ତୁ ।"

କିନ୍ତୁ ଦୋଦୁଲ୍ୟମାନ ପର୍ଦ୍ଦା ଆଗରେ କିଏ ସ୍ଥିର ହୋଇ ବସି ରହିପାରିବ ? ଦୋଦୁଲ୍ୟମାନ ଭିତର ମୃଦୁ ଗୁଞ୍ଜନ ସ୍ପଷ୍ଟ ହୋଇଗଲା– ଗଦି ଗୋଟାଏ ପାଇଗଲେ ଆଉ କୌଣସି ମିଆଁ ଛାଡ଼ିବାକୁ ଚାହାନ୍ତିନି । ଶେଷ ପର୍ଯ୍ୟନ୍ତ ଗଦି ମାଡ଼ି ବସିଥିବି, ଏମିତି ପ୍ରତିଜ୍ଞା କରନ୍ତି ! ଏ ଭାଷଣ ଶୁଣିବାକୁ ଆସିଲାକ୍ଷଣି ମୋର ସେଇ ଗଦି ମାଡ଼ି ବସିଥିବା ଲୋକଙ୍କ କଥା ମନେ ପଡ଼ିଯାଏ ।

–ଆହା ବୁଝୁନୁ , କିଏ କେଡ଼େ ପଣ୍ଡିତ, କାହାର କେତେ ଚିନ୍ତାଶକ୍ତି, ସେକଥା ବୁଝେଇବାକୁ ଚେଷ୍ଟା କରିବେନି ?

–ସମସ୍ତଙ୍କୁ ସେମାନଙ୍କର ଛାତ୍ର ବୋଲି ଭାବନ୍ତି, ସେଇଥିପାଇଁ ବୁଝାଇ ସୁଝାଇ ମଧ୍ୟ ମନର ସାଧ ପୂରେନି । କୋଉ ନୂଆ କଥାଟା ବାପା ତମେମାନେ କହିବ ? ସେଇସବୁ ଖାଲି ଲମ୍ବା କୋଟେସନ୍ ତ । ଅମୁକ ଯା କହିଛି, ସମୁକ ସେୟା କହିଛି ! ଆରେ ବାପା, ସେ ସବୁ କୁହା ତ ଛପା ଅକ୍ଷରରେ ଲେଖା ହୋଇ ଅଛି, ସମସ୍ତେ ପଢ଼ିଛନ୍ତି । ତୁ କ'ଣ କହୁଛୁ, ସେଇୟା କହ ?

ପର୍ଦ୍ଦାର ସେପଟରେ ସେତେବେଳେ ଜୋତା ଖୋଜୁ ଖୋଜୁ ଅଧାପକ-ସାହିତ୍ୟିକ କ୍ଷୁବ୍ଧ ହସ ହସି କହିଥିଲେ– ଏପର୍ଯ୍ୟନ୍ତ ଅସଂସ୍କୃତି-ସଭା ଚାଲିଥିଲା, ସେଇଟା ସରିଲା, ବର୍ତ୍ତମାନ ସାଂସ୍କୃତିକ ଅନୁଷ୍ଠାନ ଆରମ୍ଭ ହେବ । ଦେଶରେ ବେଷ୍ଟ୍

ଗୋଟାଏ ସହଜ ବ୍ୟାଖ୍ୟା ବାହାରିଛି । ସଂସ୍କୃତି ଅର୍ଥ ନାଚ । କ'ଣ କହୁଛନ୍ତି ଅନାମିକା ଦେବୀ ?

ଅନାମିକା ଦେବୀଙ୍କ ଚଟି ସେଇ ଜାଗାରେ ଅଛି, ତେଣୁ ସେ ଆମ୍ଳାନ ଗଳାରେ କହିଲେ— ସେଇୟା ତ ଦେଖୁଛି ! ଆଉ ଆଶ୍ଚର୍ଯ୍ୟ ହେଉଛି, କିଏ ଏ ନୂତନ ବ୍ୟାଖ୍ୟାର ବ୍ୟାଖ୍ୟାକାର !

— ଆଉ କେଉଁମାନେ ? ଏଇ ଫାଙ୍କ୍‌ସନ୍‌ବାଜମାନେ !

ମାଖନ ହାଲଦାରଙ୍କ ଜୋତାଟି ମଞ୍ଚରେ ଚଢ଼ିବା ବାଉଁଶ ସିଡ଼ି ତଳେ ପଶିଯାଇଥିଲା, ସେଇଟାକୁ ଟାଣି ବାହାର କରୁ କରୁ ସେ କହିଲେ— ଏ ଫଙ୍କ୍‌ସନ୍‌ବାଜ୍‌ମାନେ ହିଁ ଦେଶର ମୁଣ୍ଡ ଖାଇଲେ । ଏ ପିଲାମାନଙ୍କ ପାଖରୁ ଆମେ କ'ଣ ପାଇଲୁ ? ଆମର ପରବର୍ତ୍ତୀମାନଙ୍କ ପାଖରୁ ? ହୁଏତ ପଲିଟିକ୍ସ ନଚେତ୍ ଫଙ୍କସନ୍ । କୌଣସି ଉଚ୍ଚ ଚିନ୍ତା ନାହିଁ, ଉଚ୍ଚ ଆଦର୍ଶ ନାହିଁ, ଗୋଟାଏ ସୁସ୍ଥ କର୍ମପ୍ରଚେଷ୍ଟା ନାହିଁ, ଖାଲି ରାସ୍ତାରେ ରାସ୍ତାରେ ଚଗଲାମି । ନାଃ, ଯା ଛଡ଼ା ଆମେ ପିଲାଙ୍କ ପାଖରୁ ଆଉକିଛି ପାଉନାହୁଁ ।

ଏସବୁ ପ୍ରବଳମାନଙ୍କ ସହିତ ତର୍କ କରିବାକୁ ଡରନ୍ତି ଅନାମିକା । ଜାଣିଛନ୍ତି ଏମାନଙ୍କ ପ୍ରଧାନ ଅସ୍ତ୍ର ହେବ ପ୍ରାବଲ୍ୟ । ସେଇଠି ହାରନ୍ତି ଅନାମିକା । ସେ ଖାଲି ମୃଦୁ ହସିଲେ ତାଙ୍କ କଥା ଶୁଣି । ମନ ଭିତରେ ଉତ୍ତରଟା ଘୂରି ବୁଲୁଥାଏ । 'ଆମେ ସେମାନଙ୍କ ପାଖରୁ କିଛି ପାଉନାହୁଁ । ଠିକ୍ କଥା । କିନ୍ତୁ ସେମାନେ ମଧ୍ୟ ଆମ ପାଖରୁ କ'ଣ ପାଇଛନ୍ତି ?' — ଆଦର୍ଶ, ଆଶ୍ରୟ, ସଭ୍ୟତା ? ସତ୍ୟ ?

ସେମାନେ ଓହ୍ଲାଇ ଆସି ସାମନାରେ ନିର୍ଦ୍ଦିଷ୍ଟ ଥିବା ଆସନରେ ବସିଲେ । ଅନ୍ତତଃ ଗୋଟାଏ କି ଦିଇଟା ଗୀତ ନ ଶୁଣିଲେ ଭଲ ଦିଶିବନି । ଯଦିଚ ଭଲଗୀତର ଆଶା ଦୁରାଶା ମାତ୍ର ।

ପ୍ରଥମରେ ଖାଲି ବାଧହୋଇ ଡାକିଥିବା ଗାୟକମାନଙ୍କ ଗୀତ । ହୁଏତ ଏମାନେ ବେଶୀ ଚାନ୍ଦା ଦେଇଛନ୍ତି । ଅଥବା ଏମାନେ ଉଦ୍ୟୋକ୍ତାମାନଙ୍କର କେହି ହେବେ । ସାରମେୟ ଆଗରେ ମାଂସଖଣ୍ଡ ଝୁଲାଇ ରଖି ତାକୁ ଦଉଡ଼ାଇ ନେବା ପରି, ଭଲ ଆର୍ଟିଷ୍ଟମାନଙ୍କୁ ଝୁଲାଇ ରଖି ଏହି ଗୀତଗୁଡ଼ିକୁ ଗୋଟିଏ ପରେ ଗୋଟିଏ ପରିବେଷଣ କରିବେ ।

ଦଶଟା ବାଜିଯିବ ? ବାଜୁ । ବାରଟା ବାଜିଲେ ମଧ୍ୟ କ'ଣ ଯାଏ ଆସେ ? ଘଣ୍ଟାକୁ ଶହେଟଙ୍କାଠୁ ବେଶୀ ତ ନୁହେଁ । ହୋଇଯିବ । ପ୍ରଧାନ ଅତିଥି ସଭାନେତ୍ରୀଙ୍କୁ

ଲକ୍ଷ୍ୟ କରି ମୃଦୁ ଗଳାରେ କ୍ଷୁବ୍ଧ ମନ୍ତବ୍ୟ କଲେ— ଏଥିରେ ମିଟର୍‌ରେ ଆଉ ଉଠୁନି ଦେଖୁଛନ୍ତି ତ ?

ସତରେ ତ ଦେଖୁଛନ୍ତି ଅନେକ କିଛି । ତାଙ୍କର ଭୂମିକା ହିଁ ତ ଦର୍ଶକର ଭୂମିକା ।

ଅନୁଷ୍ଠାନର ଉଦ୍ୟୋକ୍ତାମାନେ ସେମାନଙ୍କର ସାହିତ୍ୟସଭାର ସଭାନେତ୍ରୀ ଓ ଉଦ୍‌ବୋଧକଙ୍କୁ ସସମ୍ମାନରେ ଟାକ୍ସିରେ ବସାଇଦେଲେ । ସେମାନଙ୍କ ଫୁଲମାଳ ଓ ଫୁଲତୋଡ଼ାକୁ ମଧ୍ୟ ରଖିଲେ ଟାକ୍ସିରେ । ତା'ପରେ ପ୍ରାୟ ଦୁଇହାତ ଯୋଡ଼ି କହିଲେ— ଆପଣମାନଙ୍କୁ ବହୁତ କଷ୍ଟ ହେଲା !

କଥାଟା କହିବାକୁ ହୁଏ ବୋଲି କହିଲେ ଅବଶ୍ୟ, ନ ହେଲେ ମନେ ମନେ ଜାଣନ୍ତି ଯେ କଷ୍ଟଟା ପୁଣି କ'ଣ ? ଗାଡ଼ି କରି ନେଇ ଆସିଛୁ, ଗାଡ଼ି କରି ପଠାଇ ଦେଉଛୁ, ଅଧିକରେ ମଞ୍ଚ ଦେଇଛୁ, ମାଇକ୍ ଦେଇଛୁ । ଗଦାଏ ଶ୍ରୋତାଙ୍କ ସାମନାରେ ବସି ଏଣୁ ତେଣୁ କହିବାକୁ ସୁଯୋଗ ଦେଇଛୁ । ଏ ଦୁଇ ତିନି ଘଣ୍ଟା ସମୟ ତମେମାନେ ଆରାମରେ ହିଁ କଟାଇଦେଲ । ଆମେ କଷ୍ଟ ପଡ଼ିଛୁ । କନ୍ୟାଦାୟଠାରୁ ଅଧିକ ଦାୟ ମୁଣ୍ଡରେ ଧରି ବାରମ୍ବାର ଧାଇଁଛୁ ତମ ଘରକୁ, ମୁଣ୍ଡରେ ବସାଇ ନେଇଆସିଛୁ ।

ତେବେକେ ସୌଜନ୍ୟର ଗୋଟିଏ ପ୍ରଥା ଅଛି, ସେଥିପାଇଁ ସେମାନେ ହାତ ମକଚି କହିଲେ— ଆପଣମାନଙ୍କୁ ବହୁତ କଷ୍ଟ ଦେଲୁ ।

ହେଲେ ଏମାନେ ମଧ୍ୟ ତ ରୀତିପଦ୍ଧତିରେ ଅଜ୍ଞ ନୁହନ୍ତି । ସେଥିପାଇଁ କହିଲେ,

— ସେ କି କଥା ? କଷ୍ଟ ପାଇଲୁ କାହିଁକି କହୁଛନ୍ତି ? ଭାରି ଆନନ୍ଦ ପାଇଲୁ ।

— ଆମର ଅନେକ ଭୁଲ୍‌ତ୍ରୁଟି ରହିଗଲା, କ୍ଷମା କରିବେ ।

— ଆଃ, ଛିଃ, ଛିଃ ଏ କି କଥା ! ଏସବୁ କହି ଲଜ୍ଜା ଦେବେନି ।

— ଆଚ୍ଛା ନମସ୍କାର । ଆପଣଙ୍କ ପାଖକୁ ଯିବୁ ।

କଥାଟା ମାନସ ହାଲଦାରଙ୍କୁ ଲକ୍ଷ୍ୟ କରି କହିଲେ, କାରଣ ସେ ହେଉଛନ୍ତି ଗୋଟିଏ ଖବରକାଗଜର ସମ୍ପାଦକ ।

— ଆଚ୍ଛା, ନମସ୍କାର ।

ଗାଡ଼ିଟା କାହାର ଘରର ଗାଡ଼ି ହୋଇଥିଲେ ହୁଏତ ଏହି ସୌଜନ୍ୟ-ବିନିମୟର ପାଲା ଆହୁରି କିଛି ସମୟ ଚାଲିଥାନ୍ତା । ଟାକ୍ସି ଡ୍ରାଇଭର୍‌ର ଅସହିଷ୍ଣୁତା ଯୋଗୁ ଶୀଘ୍ର ସରିଗଲା । ଗାଡ଼ି ଛାଡ଼ିଦେଲା ।

ପିଠି ଆଉଜାଇ ସଜାଡ଼ି ହୋଇ ବସିଲେ ସଭାନେତ୍ରୀ ଅନାମିକା ଦେବୀ, ଆଉ ଉଦ୍‌ବୋଧକ ମାନସ ହାଲଦାର ।

ପ୍ରଧାନ ଅତିଥି ଚକ୍ରପାଣି ଚଟ୍ଟୋପାଧ୍ୟାୟ ? ନା, ସେ ଏସବୁ ସୌଜନ୍ୟ ବିନିମୟକୁ ଖାତିର୍‌ କରିନାହାନ୍ତି । ନିଜ ମଟରରେ ଘରକୁ ଚାଲିଗଲେଣି ମାତ୍ର ଗୋଟିଏ ଗୀତ ଶୁଣି । ଏମାନେ ଦୁଇଜଣ ଗାଡ଼ିହୀନ ଏବଂ ଏକ ଅଞ୍ଚଳର ଅଧିବାସୀ, ତେଣୁ ଗତି ହେଉଛି ଏକ ।

ମାନସ ହାଲଦାରଙ୍କ ଯତ୍ନରେ ଲେଖା ଫୁଲ୍‌ସ୍କେପ୍‌ କାଗଜର ବିଡ଼ା ଅପଠିତ ଅବସ୍ଥାରେ ପକେଟ୍‌ରେ ପଡ଼ିଛି, 'ସମୟ ସଂକ୍ଷେପ'ର ଆବେଦନରେ ଅଳ୍ପ କିଛି ଯାହା ପଢ଼ି ସାରିଦେବାକୁ ପଡ଼ିଛି । ମନ ଭିତରେ ଅପଠନର ସେହି ରାଗଟା ଅଛି । ଯଦିଚ ନିଜେ ସେ ଗୋଟିଏ ସାପ୍ତାହିକର ସଂପାଦକ, ତେଣୁ ଶ୍ରମଟା ନଷ୍ଟ ହୋଇଯିବାର ଭୟ ନାହିଁ, ସ୍ୱନାମରେ, ବେନାମରେ, ବା ଛଦ୍ମନାମରେ କାଗଜରେ ଦେଇ ଦେଇ ପାରିବେ ସେତକ, ତେବେକେ ମାଇକ୍‌ରେ ମୁହଁ ଦେଇ 'ଦଶଜଣ' ସୁଧୀବୃନ୍ଦଙ୍କ ସାମନାରେ ଭାଷଣ ଦେବାର ଗୋଟାଏ ଅଲଗା ସୁଖ ଅଛି । ସେ ସୁଖଟାରୁ ତ ବଞ୍ଚିତ ହେଲେ ।

ଗାଡ଼ିଟା ଟିକିଏ ଆଗକୁ ଚାଲିଯିବାମାତ୍ରେ ହାଲଦାର କ୍ଷୋଭତପ୍ତ କଣ୍ଠରେ କହିଲେ— ଏମାନେ ଯେ କାହିଁକି ପାଦ ଧରି ଧରି ଡାକି ଆଣନ୍ତି ! ଅସଲ ଭରସା ହେଉଛନ୍ତି ସେ ଆର୍ଟିଷ୍ଟମାନେ ।

ଅନାମିକା ଦେବୀ ମୃଦୁ ହସି କହିଲେ— ସେମାନଙ୍କର ଦୋଷ କ'ଣ ? ଜନଗଣ ଯାହା ଚାହାନ୍ତି......

—ତା'ହେଲେ ତ ଖାଲି ସେମାନଙ୍କୁ ଡାକନ୍ତେ । ସାହିତ୍ୟ କାହିଁକି ?

—ସେ ଗୋଟାଏ ଅଭ୍ୟାସ ଆଉ କ'ଣ ?

—ପ୍ରୋଗ୍ରାମ ମଧ୍ୟ ସେହିପରି ଲମ୍ବା । ଏକ ଆସନରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଇନ୍ଦ୍ର, ଚନ୍ଦ୍ର, ବରୁଣ, ବାୟୁ ସମସ୍ତଙ୍କୁ ବସାଇବା ଦରକାର । ଗୋଟିଏ ଖୁଣ୍ଟରେ ସମସ୍ତଙ୍କୁ ଲଣ୍ଡା କରିବା ଦରକାର, ଗୋଟିଏ ଖଣ୍ଡାରେ ସମସ୍ତଙ୍କ ବେକ କାଟିବେ । ମୂଳରୁ ଯୋଉ ଗାୟକମାନଙ୍କୁ ବସାଇଦେଲେ ସେମାନେ କ'ଣ କହିଲେ ?

ମାନସଙ୍କ ଉତ୍ତେଜନା ଦେଖି ଅନାମିକା କୌତୁକ ଅନୁଭବ କଲେ, ମୃଦୁ ହସି କହିଲେ— ଆହା, ଏମିତି ତ ନୂତନମାନେ ତିଆରି ହେବେ ।

'— ତିଆରି ?' ମାନସ ହାଲଦାର ମନର ରାଗକୁ ମୁକ୍ତି ଦେଇ କହିଲେ— ଛାମୁଦାନ୍ତ ବାହାରିଥିବା ସେ ଟୋକାଟା, ସାରାଜୀବନ ଲାଗିଲେ ବି ସେ ମଣିଷ ହୋଇପାରିବ ବୋଲି ଆପଣଙ୍କର ବିଶ୍ୱାସ ହେଉଛି ?

ଏସବୁ କଥାର ଉତ୍ତର ଦେବା ବଡ଼ କଷ୍ଟ । ନିହାତି ସୌଜନ୍ୟ ପାଇଁ ଟିକିଏ ହଁ କଲେ ହୁଏତ ପରେ ତାଙ୍କ କାନକୁ ଫେରିଆସିବ ସେ ହିଁ କୁଆଡ଼େ 'ନୂତନ'ମାନଙ୍କୁ ବହୁତ ଅବଜ୍ଞା କରନ୍ତି ଏବଂ ଏହି ଅନୁଷ୍ଠାନ ସମ୍ପର୍କରେ ନିହାତି କଡ଼ା ସମାଲୋଚନା କରିଛନ୍ତି ! ଏ ଅଭିଜ୍ଞତା ଅନାମିକାଙ୍କର ଅଛି । ଯେଉଁ ପ୍ରସଙ୍ଗରେ ସେ ହୁଏତ ଟିକିଏମାତ୍ର ସମ୍ମତି ଦେଇଥିବେ, ଟିକିଏ କ'ଣ ଉଚ୍ଚାରଣ କରିଥିବେ; ସେହି ପ୍ରସଙ୍ଗର ପୂରା ବକ୍ତବ୍ୟର ଦାୟିତ୍ୱ ତାଙ୍କରି ଉପରେ ଆସି ପଡ଼ିଛି । ଜଣେ ଅମୁକ ଆସି ଅନ୍ୟ ଏକ ଅମୁକର କଥା ତାଙ୍କରି ପାଖରେ କହିଛନ୍ତି । ଦେଖି ଦେଖି କ୍ରମଶଃ ସାବଧାନ ହୋଇଯାଇଛନ୍ତି ଅନାମିକା ଦେବୀ ।

ସେଥିପାଇଁ ମୃଦୁ ହସି କହିଲେ— ଅବିଶ୍ୱାସର କିଛି ନାହିଁ, ଅଭ୍ୟାସରେ କ'ଣ ନ ହୁଏ ? ଚେଷ୍ଟା କଲେ କ'ଣ ନ ହୁଏ ।

ମାନସ ହାଲଦାର କ୍ଷୁବ୍ଧ କଣ୍ଠରେ କହିଲେ— ଏଇଟା ଆପଣଙ୍କର ଆଡ଼େଇଦେବା କଥା । ଆମେ ଅନେକ ଜ୍ୱାଳାରେ ଜଳୁ, ତେଣୁ ଆପଣମାନଙ୍କ ଭଳି ଏତେ ଭଦ୍ରତା କରି କଥା କହି ପାରୁନା । ଆପଣ ଜାଣନ୍ତି ବୋଧହୁଏ ଗୋଟାଏ କାଗଜ ବାହାର କରୁଛି । ସାପ୍ତାହିକ । ନୂଆ ଲେଖକ ଲେଖିକାଙ୍କ ଉତ୍ସାହର ପ୍ରାବଲ୍ୟରେ ଜୀବନ-ମହାନିଶା ! କ'ଣ କହିବି ଆପଣଙ୍କୁ, ସାହିତ୍ୟ ଜିନିଷଟା ଯେ ପିଲାଖେଳ ନୁହେଁ, ସେଥିପାଇଁ ଯେ ଅଭ୍ୟାସ ଦରକାର, ଚେଷ୍ଟା ଓ ନିଷ୍ଠା ଦରକାର, ସେକଥା ସେମାନେ ମାନିବାକୁ ଆଦୌ ଚାହାନ୍ତି ନାହିଁ, ଗୋଟାଏ ଲେଖିଲେ, ତତ୍‌କ୍ଷଣାତ୍ ଛାପିବା ପାଇଁ ଦେଇଆସନ୍ତି ।...... ଆମମାନଙ୍କର କ'ଣ ? ସବୁଯାକ ଉଏଷ୍ଟ୍ ପେପର୍ ବାସ୍କେଟ୍ ଭିତରକୁ ଚାଲାଣ କରିଦେଉ—

"— କିନ୍ତୁ", ଅନାମିକା ଦେବୀ କହିଲେ, "ତା'ରି ଭିତରେ ତ ସମ୍ଭାବନାର ବୀଜ ମଧ୍ୟ ଥାଇପାରେ ? ଥରଟେ ନ ଦେଖି— "

— କ'ଣ କରାଯିବ କହନ୍ତୁ ? ଅଫିସ୍‌ରେ ବସ୍ତା ବସ୍ତା କାଗଜ ଜମିଗଲାଣି । ଦେଶଟାଯାକର ଲୋକ ଯଦି ସାହିତ୍ୟିକ ହୋଇଯିବାକୁ ଚାହାନ୍ତି— "

— ତେବେକେ ଲେଖକ ଗଢ଼ିବା, ନୂଆ କଲମକୁ ସ୍ୱାଗତ ଜଣାଇବା, ତ ସମ୍ପାଦକଙ୍କ କର୍ତ୍ତବ୍ୟ !

— ଏସବୁ ସେକାଳର କଥା ଅନାମିକା ଦେବୀ, ଯେଉଁକାଳରେ ନୂଆମାନଙ୍କ ଭିତରେ ନମ୍ରତା ଥିଲା, ଭବ୍ୟତା ଥିଲା, ପ୍ରତୀକ୍ଷାର ଧୈର୍ଯ୍ୟ ଥିଲା । ଆଉ ଏକାଳରେ ଟିକିଏ କଥାରେ ଅଧୈର୍ଯ୍ୟ, ନିଜପ୍ରତି ଅଗାଧ ଉଚ୍ଚଧାରଣା ଏବଂ ଖାଲି ଲେଖା ଛପାଇବାର ଆନନ୍ଦରେ ହିଁ ବିଗଳିତ ନୁହନ୍ତି, ସାଙ୍ଗେ ସାଙ୍ଗେ ଦକ୍ଷିଣାର ପ୍ରତ୍ୟାଶା । ନାଃ, ଏ ଦେଶରେ ବାରଟା ବାଜିଗଲାଣି ।

କହି ପକେଟ୍‌ରୁ ରୁମାଲ ବାହାର କରି କପାଳର ଝାଳ ପୋଛିଲେ ହାଲଦାର ।

ଭଦ୍ରଲୋକ ଯେ ଅଳ୍ପ କଥାରେ ହିଁ ଉତ୍ତେଜିତ ହୁଅନ୍ତି, ଜଣାପଡ଼ିଲା । ଅନେକେ ହୁଅନ୍ତି । ଦେଖି କୌତୁକ ଲାଗେ । ଅନାମିକା ଦେବୀ କେବେହେଲେ ବେଶୀ ଉଦ୍‌ବେଳିତ ହୁଅନ୍ତି ନାହିଁ, ବହୁତ ବେଶୀ ଉତ୍ତେଜିତ ମଧ୍ୟ ହୁଅନ୍ତି ନାହିଁ ।

କିଛି ସମୟ ଆଗରୁ ଯେ କହିଥିଲେ— ଆମମାନଙ୍କ ଭୂମିକାଟା ହିଁ ତ ଦର୍ଶକଙ୍କର ତାହା ହୁଏତ ଖାଲି କଥାର କଥା ନୁହେଁ । ପ୍ରାୟ ଦର୍ଶକର ନିର୍ଲିପ୍ତ ମନ ନେଇ ତ ଜୀବନଟାକୁ ସେ ଦେଖି ଆସୁଛନ୍ତି । ହୁଏତ ତାଙ୍କର ଏ ପ୍ରକୃତି ଗଢ଼ି ଉଠିବା ପଛରେ ତାଙ୍କର ମାଆଙ୍କ ପ୍ରକୃତି କିଛି କାମ କରିଛି । ଅର୍ଥାତ୍ ମାଆଙ୍କ ପ୍ରକୃତିର ଦୃଷ୍ଟାନ୍ତ ।

ବହୁତ ବେଶୀ ଆବେଗପ୍ରବଣ ଥିଲେ ଅନାମିକାଙ୍କ ମା' ସୁବର୍ଣ୍ଣଲତା, ଥିଲେ ବହୁତ ବେଶୀ ସ୍ପର୍ଶକାତର । ସାମାନ୍ୟ କାରଣରେ ସେ ଉଦ୍‌ବେଳିତ ହେଉଥିଲେ, ସାମାନ୍ୟ କଥାରେ ଉତ୍ତେଜିତ ହୋଇଯାଉଥିଲେ ।

ତା'ର ଅର୍ଥ ସେହି 'ସାମାନ୍ୟ' ଗୁଡ଼ିକ ତାଙ୍କ ନିକଟରେ ସାମାନ୍ୟ ନ ଥିଲା । ସଂସାରର ଅନ୍ୟ ସମସ୍ତେ ଯାହା ଅନାୟାସରେ ସହି ନେଇ ପାରୁଥିଲେ, ସେ ତା' ଭିତରେ କୁଶ୍ରୀତା ଦେଖି ବିଚଳିତ ହେଉଥିଲେ, ପୀଡ଼ିତ ହେଉଥିଲେ ରୁଚିହୀନତା ଦେଖି । ମଣିଷର ନୀଚତା, କ୍ଷୁଦ୍ରତା, ହୀନତା, ଦୈନ୍ୟ ତାଙ୍କୁ ଯେପରି ହାତୁଡ଼ିର ଆଘାତ ଦେଉଥିଲା । ସେହି ଆଘାତରେ ଚୂର୍ଣ୍ଣ ହୋଇଯାଉଥିଲେ ସେ ।

ଯେତେବେଳେ ଅନାମିକାଙ୍କ ବୟସ ନିହାତି ତରୁଣ, ମା' ମରିଯାଇଥିଲେ, ତେବେକେ ସେତେବେଳେ ମଧ୍ୟ ମାଆଙ୍କ ଏ ମୂଢ଼ତା ଦେଖି ଦୁଃଖିତ ହେଉଥିଲେ ସେ । ମାଆଙ୍କର ସେହି ସଦା ଉତ୍ତେଜିତ ବିଦୀର୍ଣ୍ଣ ହୋଇ ଯାଉଥିବା ଚିତ୍ତ ଆଡ଼କୁ ଚାହିଁ କରୁଣା ଜାତ ହେଉଥିଲା, ସାଧାରଣ ଘଟଣାଗୁଡ଼ିକୁ ଏତେ ବେଶୀ ମୂଲ୍ୟ କାହିଁକି ଦେଉଥିଲେ ଯେ ମା', ସେ କଥା ବୁଝିପାରୁ ନ ଥିଲେ ।

ପରେ ବୁଝିଛନ୍ତି, ମଣିଷ ସମ୍ପର୍କରେ ମାଆଙ୍କର ବହୁତ ବେଶୀ ମୂଲ୍ୟବୋଧ ଥିଲା ବୋଲି ଏତେ ଦୁଃଖ ସେ ପାଇଛନ୍ତି । ଅନାମିକାଙ୍କ ମାଆଙ୍କର ପୃଥିବୀ ନିକଟରେ ବହୁତ ବେଶୀ ପ୍ରତ୍ୟାଶା ଥିଲା । ମଣିଷ ନାମକ ପ୍ରାଣୀମାନଙ୍କୁ ସେ 'ମଣିଷ' ଶବ୍ଦଟାର ସଂଜ୍ଞା ସହିତ ମିଳାଇବାକୁ ଚେଷ୍ଟା କରୁଥିଲେ ।

ଏହି ଭୁଲ୍ ଅଙ୍କଟା କଷିବାକୁ ଯାଇ ଜୀବନରେ ପରୀକ୍ଷାରେ ମହିଳାଜଣକ ଖାଲି ବ୍ୟର୍ଥ ହୋଇଥିଲେ, ଆଉ ପୃଥିବୀର ଆଘାତରେ ଚୂର୍ଣ୍ଣ ହୋଇଯିବା ସେହି ପ୍ରତ୍ୟାଶାର ପାତ୍ରଟି ଆଡ଼କୁ ଚାହିଁ ଦେଖି ଦେଖି ନିଜେ ମଧ୍ୟ ଚୂର୍ଣ୍ଣ ହୋଇଯାଇଥିଲେ । ମାଆଙ୍କୁ ବୁଝିପାରିଥିଲେ ଅନାମିକା ।

ଆଉ ସେହି ଚୂର୍ଣ୍ଣ ହୋଇଯିବା ଦୃଶ୍ୟରୁହିଁ ଏହି ପରମ ଶିକ୍ଷାଟି ଅର୍ଜନ କରିଛନ୍ତି ଅନାମିକା, 'ମଣିଷ' ସମ୍ପର୍କରେ ସେ ଭୁଲ୍ ଅଙ୍କ କଷିବାକୁ ଯାଆନ୍ତି ନାହିଁ ।

'—କ'ଣ ହେଲା ଅନାମିକା ଦେବୀ ? ଆପଣ ହଠାତ୍ ଚୁପ୍ ହୋଇଗଲେ ଯେ ?......' ପଚାରିଲେ ମାନସ ହାଲଦାର—'ନୂଆ ଲେଖକମାନଙ୍କ ସମ୍ପର୍କରେ ଆପଣଙ୍କର ଯେମିତି ବେଶ୍ ମମତା ରହିଛି ମନେ ହେଉଛି । ହଁ ଥାଇପାରେ, ସେମାନଙ୍କର ମୁହାଁମୁହିଁ ହେବାକୁ ପଡ଼ିନି ତ କେବେ ?

ଅନାମିକା କହିଲେ— ହୁଏତ ସେଇୟା । ମୁହାଁମୁହିଁ ହୋଇଥିଲେ ହୁଏତ ଆପଣମାନଙ୍କ ପାଇଁ ମମତା ହେଇଥାନ୍ତା ।

—ହଁ ସେଇୟା ହୁଅନ୍ତା, ଦୃଢ଼କଣ୍ଠରେ କହିଲେ ହାଲଦାର । ତା' ପରେ କହିଲେ, ତା'ଛଡ଼ା ଆଜିକାଲିର କବିତାର ମୁଣ୍ଡଗଣ୍ଡି କିଛି ହେଲେ ତ ବୁଝିପାରୁନି । ଆଉ ସେଗୁଡ଼ିକର ବିଚାର କରିବି କ'ଣ ? ନିର୍ବିଚାରରେ ହିଁ ବାତିଲ୍ କରିଦେଉଛି ।

—ଆପଣଙ୍କ କାଗଜରେ କବିତା ପ୍ରକାଶ କରୁ ନାହାନ୍ତି ?

—କରିବିନି କାହିଁକି ? ନିୟମ ଅନୁସାରେ ଦୁଇଟା ପୃଷ୍ଠା କବିତା ପାଇଁ ଛଡ଼ା ଯାଇଥାଏ, ଯେଉଁମାନଙ୍କର ନାମ ଅଛି, ସେମାନେ ସାପ ବେଙ୍ଗ ଯାହା ଦିଅନ୍ତି ଆଖି ବୁଜି ଛପାଇ ଦିଏ ।

ପୂର୍ବପରି ଅନାମିକା କହିଲେ— ଶୁଣି ଭରସା ଲାଗିଲା । ଭବିଷ୍ୟତ୍‌ରେ ଯଦି ସାପ ବେଙ୍ଗ ଲେଖିବାକୁ ଆରମ୍ଭ କରିବି, ତା ପାଇଁ ଗୋଟାଏ ଜାଗା ତାହେଲେ ରହିଲା ।

ସଜାଡ଼ି ହୋଇ ବସିଲେ ହାଲଦାର, କହିଲେ— ଆପଣଙ୍କ ନେଇ ଏ କଥା କୁହାଯାଇ ପାରିବନି, ଆପଣଙ୍କ ଲେଖା କେବେ ହତାଶ କରେନି ।

—"କେଜାଣି ଆପଣମାନଙ୍କୁ ହତାଶ କରେ କି ନାହିଁ—" ଅନାମିକା କହିଲେ— " ତେବେ ମତେ ହତାଶ କରେ !"

—ଆପଣଙ୍କୁ ? ଅର୍ଥାତ୍ ?

—ଯାହା ଲେଖିଲେ ବି ସନ୍ତୁଷ୍ଟ ହୋଇପାରେନି । ମନେହୁଏ, ଯାହା କହିବାକୁ ଚାହିଁଥିଲି, ସେମିତି କହି ପାରିଲିନି ।

—"ସେଇଟା ହିଁ ତ ଅସଲ ଶିଳ୍ପୀର ଧର୍ମ—" ହାଲଦାର ବୋଧହୁଏ ତାଙ୍କୁ ଉତ୍ସାହ ଦେବାକୁ ଉଚ୍ଛ୍ୱସିତ ଭାବରେ କହିଲେ— ପ୍ରକୃତ ଶିଳ୍ପୀମାନେ କେବେହେଲେ ଆତ୍ମସନ୍ତୁଷ୍ଟିର ମୋହରେ ନିଜର କବର ଖୋଳନ୍ତି ନାହିଁ । ଆପଣ ଯଥାର୍ଥ ଶିଳ୍ପୀ ବୋଲି—

ଆହୁରି କେତେ କେତେ ଭଲକଥା କହିଲେ ମାନସ ହାଲଦାର ଅନାମିକାଙ୍କୁ ଆକାଶକୁ ଉଠାଇଦେବାଭଳି ସେଗୁଡ଼ିକ । ଅନାମିକା ଅସ୍ୱସ୍ତି ଅନୁଭବ କଲେ, ଅଥଚ 'ନା ନା କ'ଣ ଯେ କହୁଛନ୍ତି' ଭଳି କଥା ମଧ୍ୟ ମୁହଁକୁ ଜୁଟିଲାନି, ତେଣୁ ହାଲଦାରଙ୍କ ପହଞ୍ଚିବା ଜାଗା ଆସିଗଲାକ୍ଷଣି ମୁକ୍ତିର ନିଃଶ୍ୱାସ ପକାଇଲେ । ବାକି ରାସ୍ତା ଟିକକ ଏକାକୀ ଯିବେ । ନିଜକୁ ଧରି ଟିକିଏ ଏକା ରହିବା ସୁଯୋଗ ମଧ୍ୟ କି ଆରାମ୍‌ର !

ନମସ୍କାର ବିନିମୟ ପରେ ମାନସ ହାଲଦାର ଓହ୍ଲାଇଗଲେ । ସିଟ୍‌ରେ ପିଠିକୁ ଠେସ ଦେଇ ଭଲ କରି ବସିଲେ ଅନାମିକା, ଆଉ ଧୀରେ ଧୀରେ ନିଜ ଭିତରେ ହଜିଗଲେ ଯେମିତି ।

କିନ୍ତୁ ଖାଲି କ'ଣ ମାଆଙ୍କ ପ୍ରକୃତିର ଦୃଷ୍ଟାନ୍ତରୁ ଅନାମିକାଙ୍କ ପ୍ରକୃତି ଗଠିତ ହୋଇଛି ? ବକୁଳ ପାଖରୁ ମଧ୍ୟ କ'ଣ କିଛି ନୁହେଁ ? ବକୁଳ ଭିତରେ ମଧ୍ୟ କ'ଣ ଆବେଗ ନ ଥିଲା ? ମୋହ ନ ଥିଲା, ବିଶ୍ୱାସ ପ୍ରତ୍ୟାଶା ? ମାଆଙ୍କ ପରି ତୀବ୍ରଭାବରେ ନ ହେଉ, ସୁଷମାର ମୂର୍ତ୍ତିରେ ? ବକୁଳ ସେ ମୋହ, ସେ ବିଶ୍ୱାସ, ସେ ପ୍ରତ୍ୟାଶା ତିଷ୍ଠି ପାରି ନାହିଁ ।

ଅତଏବ ବକୁଳ ଅନାମିକା ହୋଇଯାଇ ଆବେଗ ଜିନିଷଟାକୁ ହାସ୍ୟକର ବୋଲି ଭାବିବାକୁ ଶିଖିଛି । ତେବେକେ ସେହି ସୁଷମା ଟିକକ ? ସେ ଟିକକ କ'ଣ ଏକାବେଳେ ହଜିଯାଇଛି ?

ବକୁଳର ସେଦିନର ସେ ମୂର୍ତ୍ତିଟା ଦେଖିଲେ ତ ସେମିତି ଲାଗେନି । ବକୁଳ ଯେମିତି ସବୁ ଝାଡ଼ିପକାଇ ସେଇ ସୁଷମାଟିକକକୁ ମନ ଭିତରେ ଆଗୁଳି ରଖିଥିଲା । ସେହିଦିନ, ହଁ ସେହିଦିନ ଯେତେବେଳେ ପାରୁଲ ତାଙ୍କରି ଘରକୁ ଯାଇ କହିଲା, 'ମାଆ ନାହାନ୍ତି, ବାପାଙ୍କର ମଧ୍ୟ ଖିଆଲ ନାହିଁ, ସେଇଥିପାଇଁ ମୁଁ ନିଜେ କହିବାକୁ ଆସିଲି ଦେଠେଇ, ବାହାଘରଟା ଆଉ ଡେରିରେ କରିବାର ଦରକାର କ'ଣ ?

ନିର୍ମଳର ଦେଠେଇ ଆକାଶରୁ ଖସିପଡ଼ି କହିଲେ— କାହାର ବାହା କଥା କହୁଛୁଲୋ ପାରୁଲ୍ ?

ପାରୁଲ ଜାଣିଥିଲା ଠିକ୍ ଏମିତି ଗୋଟାଏ ପରିସ୍ଥିତିର ମୁହାଁମୁହିଁ ହେବାକୁ ପଡ଼ିବ ତାକୁ, ସେଥିପାଇଁ ସେ ସ୍ଥିର ଗଳାରେ କହିଥିଲା— ମୁଁ ଆଉ କାହାର ବାହାଘର କଥା କହିବାକୁ ଆସିବି ଦେଠେଇ, ବକୁଳ କଥା କହୁଛି ।

ଦେଠେଇଙ୍କ ପାଖରେ ନିର୍ମଳର ମା' ବସିଥିଲେ, ତାଙ୍କର ଆଖିରେ ମୁହଁରେ ଗୋଟାଏ ବ୍ୟାକୁଳ ଅସହାୟତା ଫୁଟି ଉଠିଥିଲା, ସେ ସେହି ଅସହାୟତା ଭରା ମୁହଁଟାରେ ପ୍ରତ୍ୟାଶାର ଦୃଷ୍ଟିରେ ବଡ଼ ଯା' ଆଡ଼କୁ ଚାହିଁଥିଲେ । ହେଲେ ବଡ଼ ଯା' ତାଙ୍କ ଆଡ଼କୁ ଚାହିଁ ଦେଖି ନାହାନ୍ତି । ସେ ପାରୁଳ ଆଡ଼େ ଚାହିଁ ଉଦାସ ଗଳାରେ କହିଥିଲେ— ହେଲେ ଆମେ ସାହିପଡ଼ିଶା ଆଉ କ'ଣ କରିବୁ କହିଲୁ ମା' ? ତୋ' ବାପା ତ ଆମକୁ ପଦେ କଥା ସୁଦ୍ଧା କହନ୍ତି ନାହିଁ ।

—ଦେଠେଇ, ବାପା ତ ସବୁକାଳେ ସେମିତି, ଆପଣ ତ ଏତେଦିନ ହେଲା ଦେଖୁଛନ୍ତି । କିନ୍ତୁ ତା ବୋଲି ତ ଆଉ ତୁନି ହୋଇ ବସି ରହିଲେ ଚଳିବନି ? ମା' ନାହାନ୍ତି, ଭାଉଜମାନଙ୍କ କଥା ନ କହିଲେ ଭଲ, ବକୁଳଟାକୁ ଆପଣମାନଙ୍କ ପାଖରେ ପହଞ୍ଚାଇ ଦେଇପାରିଲେ ମୁଁ ଶାନ୍ତିରେ ଶାଶୁଘରକୁ ଚାଲି ଯାଇ ପାରିବି ।

ହଁ, ପାରୁଲ୍ ଠିକ୍ ଏମିତି କହିଥିଲା ।

ବୋଧହୁଏ ନିଜର ବୁଦ୍ଧି ଆଉ ବୁଦ୍ଧି-କୌଶଳ ଉପରେ ବେଶ୍ ଆସ୍ଥା ଥିଲା ତା'ର, ସେଇଥିପାଇଁ ଭାବିଥିଲା ଏକାବେଳେ ଏମିତି କହିବି, ଆବେଦନ-ନିବେଦନର ବିଳମ୍ବିତ ପଥରେ ଯିବି ନାହିଁ । ହେଲେ କେତେ ଭୁଲ୍ ଥିଲା ତା'ର ସେ ବିଶ୍ୱାସ ।

ଦେଠେଇ ଏଥର ବୋଧହୁଏ ଆକାଶଠାରୁ ଉର୍ଦ୍ଧ୍ୱତର କୌଣସି ଲୋକରୁ ଖସିପଡ଼ିଲେ । ଛେଚିହୋଇ ପଡ଼ିଯିବାର ଗଳାରେ କହିଲେ— ପାରୁ, ତୋ' କଥା ତ ମୁଁ କିଛି ବୁଝିପାରୁନି ! ଆମ ପାଖରେ ବକୁଳକୁ ରଖିଦେଇ ଯିବୁ ? ତୋ'ର ମାନୀ ବାପା ସେ ପ୍ରସ୍ତାବରେ ରାଜି ହେବେ ? ନ ହେଲେ ଆମର ଆଉ ଆପତ୍ତି କ'ଣ ? ମା'-ମଲା ବଢ଼ିଲା ଝିଅଟା ଯେମିତି ମାଉସୀ ପିଉସୀଙ୍କ ପାଖରେ ଥାଏ ସେ ସେମିତି ଆମ ପାଖରେ ରହିବ ।

ତଥାପି ଉତ୍ତେଜିତ ହୋଇନି ପାରୁଳ, ବରଂ ଆହୁରି ଅଧିକ ଥଣ୍ଡା ଗଳାରେ କହିଥିଲା— ଏ ଧରଣର କଥା କାହିଁକି କହୁଛନ୍ତି ଦେଠେଇ ? ଆପଣ କ'ଣ ସତରେ ବୁଝିପାରି ନାହାନ୍ତି ? ବକୁଳର ବାହାଘର କଥା ଆପଣଙ୍କୁ କହିବାକୁ ଆସିଛି କାହିଁକି ?

ଦେଠେଇ ବିରସ ଗଳାରେ କହିଥିଲେ— ଏଥିରେ ପୁଣି ସତ ମିଛ କ'ଣ ଅଛି ମୁଁ ତ ବୁଝିପାରୁନି ପାରୁଲ୍ ! ରହସ୍ୟ ବୁଝିବା ବୟସ ବି ଆଉ ନାହିଁ ମୋର । ତମମାନଙ୍କର ମା' ମତେ ବଡ଼ଭଉଣୀ ପରି ମାନ୍ୟ କରୁଥିଲା, ଭକ୍ତି କରୁଥିଲା, ମୁଁ ବୁଝିଛି ତୁ ଆମମାନଙ୍କ ପାଖରୁ ଗୋଟାଏ କିଛି ପରାମର୍ଶ ନେବାକୁ ଆସିଛୁ । ତା'ଛଡ଼ା ଆଉ କ'ଣ ମୁଁ ତ ଜାଣେନି !

ଏ ସମୟରେ ନିର୍ମଳର ମା' ରୁଦ୍ଧ ବ୍ୟାକୁଳତାରେ ଅସ୍ଫୁଟ ଭାବରେ କହି ପକାଇଥିଲେ— ନାନୀ !

ସେହି ଅସ୍ଫୁଟ ଧ୍ୱନି ପ୍ରତି ନାନୀ କାନ ଦେଇ ନାହାନ୍ତି ।

ହୁଏତ ସମାଜର ଚକ ଆଜି ଏଭଳି ଓଲଟା ଗତିରେ ଘୂରିବାର କାରଣଟି ହେଉଛି ସେହି କାନ ନ ଦେବା । ଯେଉଁମାନେ କ୍ଷମତାର ଆସନରେ ବସିଛନ୍ତି, ଗଦିର ଅଧିକାର ପାଇଛନ୍ତି, ସେମାନେ ସେହି ଅସ୍ଫୁଟ ଧ୍ୱନି ଆଡ଼େ କାନ ଦେବାର ପ୍ରୟୋଜନକୁ ବିବେଚନା କରି ନାହାନ୍ତି । ସେମାନେ ଆପଣାର ଅଧିକାରର ସୀମା ସଂପର୍କରେ ସଚେତନ ରହିନାହାନ୍ତି, ଅସ୍ଫୁଟକୁ ଦବାଇ ରଖି ଶାସନକାର୍ଯ୍ୟ ଚଳାଇଯିବାର ନୀତିକୁ ଜାହିର୍ ରଖିଛନ୍ତି, ସେଥିପାଇଁ ଆଜି ଆଉ ସେହି ଅସ୍ଫୁଟର ଭୂମିକା କେଉଁଠି ହେଲେ ନାହିଁ । ଆଜି ସବୁଆଡ଼େ ପ୍ରଚଣ୍ଡ କଲରୋଳ, ସେହି କଲରୋଳରେ, ସେହି ତରଙ୍ଗରେ ଭାସିଯାଇଛି ଉପରବାଲାର ଗଦି, ଭାସିଯାଇଛି ସେମାନଙ୍କ ଶାସନ ଦଣ୍ଡ । ନିର୍ବାକ ଅସହାୟ ଦୃଷ୍ଟି ମେଲାକରି ସେହି ତରଙ୍ଗ ଆଡ଼କୁ ଚାହିଁ ରହିଛନ୍ତି ଏଇଲେ ଉପରବାଲାମାନେ । ହୃତରାଜ୍ୟ ପୁନରୁଦ୍ଧାରର ଆଶା ଆଉ ନାହିଁ । ଖାଲି ଯେ ମାତ୍ର 'ଗୁରୁଜନ' ଏହି ପଦମର୍ଯ୍ୟାଦାରେ ଯାହା ଖୁସୀ କରିବା ଆଉ ଚଳିବନି ତା' ନୁହେଁ, ଯେଉଁମାନେ ଗଦିରେ ଆସି ବସିଲେ, ସେହି 'ଲଘୁଜନ'ମାନଙ୍କ ନିକଟରେ ମୌନ ହୋଇ ରହିବାକୁ ପଡ଼ିବ । ହୁଏତ ଇତିହାସର ଶିକ୍ଷା ଏହି ନିୟମରେ ହିଁ ଚଳେ । କିନ୍ତୁ ନିର୍ମଳ ମା'ଙ୍କ ଦଳ ନିହତ ହେଲେ ମଧ୍ୟବର୍ତ୍ତୀ ଯୁଦ୍ଧରେ ।

ଅତଏବ ସେତେବେଳେ ତାଙ୍କର କ୍ଷମତାରେ ସେହି 'ନାନୀ' ଡାକ ଟିକକ ଛଡ଼ା ଆଉ କିଛି କରିହେଉ ନ ଥିଲା । ଆଉ ଏବେ— ନାଃ, ଏବର କଥା ଥାଉ ।

ନାନୀ ସେତେବେଳେ ମଧ୍ୟ ଚାହିଁଲେନି । ନାନୀ କହିଲେ— ସାନବୋହୂ ଦୁଧ ବସାଇ ଆସି ନାହିଁ ତ ?

ସାନବୋହୂ ମୁଣ୍ଡ ହଲାଇଲେ । ସାନବୋହୂ ପାରୁଲ୍ ଆଡ଼କୁ ଚାହିଁପାରୁ ନ ଥିଲେ ବୋଲି କାନ୍ଥ ଆଡ଼କୁ ଚାହିଁ ରହିଲେ ।

ପାରୁଲ୍ କହିଲା— ମୋରି ଭୁଲ୍ ହେଇଥିଲା ଦେଠେଇ, ଏଁଭଳି କହିଲେ ଆପଣ ଜାଣିପାରିବେନି ସେ କଥା ଭାବିପାରିନି । ସ୍ୱଷ୍ଟ କରି କହୁଛି— ନିର୍ମଳଭାଇନା ସହିତ ବକୁଳର ବାହାଘର କଥା କହିବାପାଇଁ ମୁଁ ଆସିଛି । ବକୁଳ କ୍ରମଶଃ ବଡ଼ ହୋଇଯାଉଛି । ନିର୍ମଳଭାଇନା ତ ଚାକିରି କଲେଣି—

ପାରୁଲ୍‌କୁ ସବୁକଥା କହି ଦେବାକୁ ସମୟ ଦେଇଥିଲେ ଦେଠେଇ । ତା'ପରେ, ସବୁ ଶୁଣିଲା ପରେ ମୁହଁରେ ଏକ କୁଟିଳ ହସ ଫୁଟାଇ କହିଥିଲେ— ମୋର

ବିଶ୍ୱାସ ଥିଲା, ତୋର ଟିକେ ବୁଦ୍ଧି ଶୁଦ୍ଧି ଅଛି, ଦେଖୁଛି ସେ ବିଶ୍ୱାସ ଭୁଲ । ସାହେବ ବରର ଘର କରି ମେମ୍‌ସାହେବ ପାଲଟିଯାଇଛୁ । ନିର୍ମଳ ସହିତ ବକୁଳର ବିଭାଘର ? ପାଗଳ ଛଡ଼ା ଏ ପ୍ରସ୍ତାବ ଆଉ କେହି କରିବେନି ପାରୁ !

—"କିନ୍ତୁ କାହିଁକି କହିଲେ ?" ଶେଷ ଚେଷ୍ଟା କରୁଥିଲା ପାରୁଲ୍ । ହସି କହିଥିଲା— ଆପଣମାନଙ୍କର ସେହି ଦାନୁଆ-ହଳୁଆ ଗୋତ୍ର ହେତୁ ? ସେସବୁ ଆଉ ଆଜିକାଲି ଲୋକେ ମାନନ୍ତି ନାହିଁ ।

ସଂକ୍ଷେପରେ ଦେଠେଇ କହିଥିଲେ— ଆମେ ଆଜିକାଲିର ନୋହୁ ।

ଏ ସମୟରେ ନିର୍ମଳର ମା' ଗୋଟାଏ କଥା କହିଥିଲେ । ଅସ୍ଫୁଟ ଭାବରେ ହଁ କହିଥିଲେ ଅବଶ୍ୟ— ପାରୁର ବାପାଙ୍କ ଘର ତ ଆମଠାରୁ ଉଚ୍ଚ ନାନୀ !

ଦେଠେଇ ସାନଯାଆ ଆଡ଼କୁ ଏକ କଠୋର ଭର୍ତ୍ସନାଭରା ଦୃଷ୍ଟି ନିକ୍ଷେପ କରି କହିଥିଲେ— ତମେ ତୁନିହୁଅ ସାନବୋହୂ । ଉଚ୍ଚନୀଚର କଥା ନୁହେଁ, କଥାଟା ରୀତିନୀତିର । ଯାଉ, ନ ହେବା କଥା ନେଇ ବୃଥା ଗାଳିଗୁଲଜ କରିବାକୁ ମୋର ସମୟ ନାହିଁ ପାରୁ । ତା'ଛଡ଼ା ତମର ସେ ଦରବୁଢ଼ୀ ଭଉଣୀଟି ସ୍ୱଘରର ହେଲେ ମଧ୍ୟ ମୁଁ ମୋ ଘରର ବୋହୂ କରି ନ ଥାନ୍ତି କହି ଦେଉଛି । ଜଣେ ପରପୁରୁଷ ଅଣ୍ଡିରିପୁଅ ସହିତ ଯେତେବେଳେ ସେତେବେଳେ ଫୁସ୍‌ଫୁସ୍, ଗୁଜ୍‌ଗୁଜ୍, ତାକୁ ନିଜଆଡ଼କୁ ଟାଣିବାକୁ ଚେଷ୍ଟା କରୁଥିବେ, ଏସବୁ ଝିଅଙ୍କୁ ଆମେ ଭଲ ବୋଲି କହୁନା ।

ପାରୁଲ୍‌ର ମୁହଁଟା ନାଲି ଟହ ଟହ ହୋଇଯାଇଥିଲା, ନିଜେ ନିଜେ ହିଁ ତାହା ଅନୁଭବ କରୁଥିଲା ପାରୁଲ୍, ଆଉ ପଦ୍‌ଟିଏ ହେଲେ ମଧ୍ୟ କଥା କହିବାର କ୍ଷମତା ଯେ ତାର ସେତେବେଳେ ନ ଥିଲା ସେ କଥା ବୁଝିଥିଲା ସେ । ନିଃଶବ୍ଦରେ ଉଠିପଡ଼ି ଚାଲି ଆସିଥିଲା ପାରୁଲ୍ ।

ତେବେକେ ବିଚରା ପାରୁଲ୍ ଏକାନ୍ତ ସ୍ନେହ ପାତ୍ରୀଟି ପାଇଁ ଆହୁରି କଷ୍ଟ ପଡ଼ିଥିଲା । ଗଳି ମୋଡ଼ରେ ଧରିଥିଲା ନିର୍ମଳକୁ । କହିଥିଲା— ତମ ସହିତ କଥାବାର୍ତ୍ତା ହେବାର ଅଛି ନିର୍ମଳ ଭାଇନା !

ନିର୍ମଳ ଥାଥାମାମା ହୋଇ କହିଲା, କି କଥା ?

—ରାସ୍ତାରେ ଠିଆହୋଇ ସେ କଥା ହୋଇପାରିବନି, ଥରଟେ ଆସ ।

—ଆଚ୍ଛା, ଆଗେ ଦେଖିଲ ଆମଘର ଝରକା ପାଖରେ କେହି ଦେଖୁଛନ୍ତି କି ନାହିଁ ?

ନିଷ୍କଳଙ୍କ ଭାବରେ ତା' ଆଡ଼କୁ ଚାହିଁ ପାରୁଲ୍ ପଚାରିଥିଲା— ଥାଆନ୍ତି ଯଦି କ'ଣ ହେବ ?

ସେହି ଦୃଷ୍ଟିରେ ବୋଧହୁଏ ଅପ୍ରସ୍ତୁତ ହୋଇଥିଲା ନିର୍ମଳ । କହିଥିଲା, ନା, କ'ଣ ଆଉ ହେବ ? ତେବେ ଦେଠେଈଙ୍କୁ ତ ଜାଣିଛ ? ଦେଖିଦେଲେ ଏଇଲେ ପଚାରିବାକୁ ଆରମ୍ଭ କରିଦେବେ, କଥା କ'ଣ ? ସେଠି ତୋ'ର କି କାମ ଥିଲା ? ପାରୁଲ୍‌ର ମୁହଁରେ ଟିକିଏ ହସ ଫୁଟି ଉଠିଥିଲା । ପାରୁଲ୍ ଆସ୍ତେ କହିଥିଲା, ଥାଉ, ଆଉ ତମସଙ୍ଗେ କିଛି କଥା ହେବାର ନାହିଁ । ମୋ କଥା ହୋଇଯାଇଛି ।

କୁଞ୍ଚ କାନିରେ ମୁହଁ ପୋଛି ପୋଛି ଅବାକ୍ ଗଳାରେ ନିର୍ମଳ କହିଥିଲା— କଥା ହେଇଯାଇଛି ? କି କଥା ?

ଟିକିଏ ବିଚିତ୍ର ହସ ହସି ପାରୁଲ୍ କହିଥିଲା— ଦେଖୁଛି ତମେ ମଧ୍ୟ ତମର ଦେଠେଈଙ୍କ ପରି । ଖୋଲି ନ କହିଲେ ଟିକିଏ ହେଲେ ବୁଝିପାରୁ ନାହଁ ? ଯାଉ ସେଇୟା କହୁଛି— ଘରର ଅମତରେ ବାହା ହେବାର ସାହସ ତମର ଅଛି ? ଅଥବା ଘରର ଅମତକୁ ସ୍ୱମତ କରିପାରିଲା ଭଳି ଶକ୍ତି ଅଛି ?

ମୁଣ୍ଡ ପୋତି ଦେଇଥିଲା ନିର୍ମଳ । ଅକାରଣରେ ପୁଣି କପାଳର ଝାଳ ପୋଛିଥିଲା । ତା'ପରେ ଅସ୍ଫୁଟ କଣ୍ଠରେ କହିଲା— ସେ କେମିତି ହେବ ?

—ହବନି ? ନୁହେଁ ?

ନିର୍ମଳ ଆବେଗରୁଦ୍ଧ ଗଳାରେ କହିଥିଲା— ଖାଲି ମା'-ବାପା ହୋଇଥିଲେ ଅଟକି ନ ଥାନ୍ତା ପାରୁଲ୍, ହେଲେ ଦେଠେଈ ? ଓଃ ତାଙ୍କୁ ରାଜି କରେଇବା ଅସମ୍ଭବ କଥା ।

—"ଅସମ୍ଭବ ଯଦି ତା'ହେଲେ ଆଉ କହିବାର କ'ଣ ଅଛି ?" ହସିଉଠି ପାରୁଲ୍ କହିଥିଲା— ଯାଅ ତମକୁ ଆଉ ଅଟକାଇ ରଖିବିନି । ହୁଏତ ଦେଠେଈ ତମପାଇଁ ଦୁଧ ଗରମ କରି ଜଗି ବସିଥିବେ ।

ନିର୍ମଳର ମୁହଁଟା ମଧ୍ୟ ଲାଲ୍ ହୋଇଯାଇଥିଲା । ଆଉ ତା'ର ବର୍ଣ୍ଣଟା ବହୁତ ବେଶୀ ସଫା ବୋଲି ଅତିମାତ୍ରାରେ ପ୍ରକଟ ହୋଇଉଠିଲା । ନିର୍ମଳ କହିଲା, ତମେ ମତେ ଥଟ୍ଟା କରୁଛ ପାରୁଲ୍, କିନ୍ତୁ ସେମାନଙ୍କର ଅବାଧ୍ୟ ହେବି, ଏକଥା ମୁଁ କଳ୍ପନା ସୁଦ୍ଧା କରି ପାରିବନି ।

—ସେମାନଙ୍କର କହୁଛ କାହିଁକି ? ତମର ମା, ବାପାଙ୍କର ତ ଅମତ ନାହିଁ ।

—ସେଥିରେ କିଛି ଫଳ ମିଳିବନି ପାରୁଲ୍ । ଦେଠେଈଙ୍କ କଥା ଉପରେ କଥା କହିବାର କ୍ଷମତା କାହାରି ନାହିଁ ।

ଆରେ ବାପା ! ତା'ହେଲେ ତ ମୋର ମଧ୍ୟ ତ କିଛି ଆଉ କଥା ନାହିଁ—'' ପାରୁଲ୍ ହଠାତ୍ ଭାରି କୌତୂହଳର ଗଳାରେ ହସି ଦେଇଥିଲା । କହିଥିଲା— ହେଲେ ତମେ ଭାଇ ଗୋଟାଏ ବଡ଼ ଭୁଲ୍ କରି ଦେଇଥିଲ । ଦେଠେଇଙ୍କ ପାଖରୁ ଅନୁମତି ନ ଦେଇ ସାହିର ଝିଅ ସହିତ ପ୍ରେମଫେମ କରିବାଟା ଠିକ୍ କରି ନାହିଁ । ତା'ହେଲେ ସେ ଝିଅଟା ତ ମରି ନ ଥାନ୍ତା ।

—ମୁଁ ମଧ୍ୟ ବଞ୍ଚିକରି ରହିବି ପାରୁଲ୍—'' ହଠାତ୍ ନିର୍ମଳର ଆଖିରୁ ଦୁଇବିନ୍ଦୁ ଅଶ୍ରୁ ଝରି ପଡ଼ିଥିଲା । ଜୁଞ୍ଜକାନିରେ ସେହି ଲୁହକୁ ପୋଛୁ ପୋଛୁ ଚାଲିଯାଇଥିଲା ନିର୍ମଳ, କହିଥିଲା— ମୋ' ମନର ଅବସ୍ଥା ବୁଝିଲାଭଳି କ୍ଷମତା ତମମାନଙ୍କର କାହାର ନାହିଁ ପାରୁଲ୍ ।

ସେକଥା ଦେଖି କ'ଣ ପାରୁଲ୍‌କୁ ମମତା ଲାଗିଲା ? ନା । ପାରୁଲ୍ ବଡ଼ ନିର୍ମମ । ପାରୁଲ୍‌ର ଘୃଣା ଜାତ ହୋଇଥିଲା । ପାରୁଲ୍ କହିଥିଲା— ମାଟି କଣ୍ଢେଇ !

କିନ୍ତୁ ବକୁଳର ମନରେ ସେହି ମାଟି-କଣ୍ଢେଇଟା ପ୍ରତି ବହୁତ ମମତା ଥିଲା । ସୁଷମାରେ ଘୋଡ଼ାଇ ହୋଇ ସେହି ମମତା ଟିକକ ଏବେମଧ୍ୟ ବକୁଳ ମନରେ କେଉଁଠି ରହିଯାଇଛି !

## ॥ ୧୧ ॥

ପାରୁଲ୍ ବର ପାଖକୁ ଚାଲିଯିବା ସମୟରେ କହିଯାଇଥିଲା, ଖାଲି ଗୋଟାଏ ଖାଣ୍ଟି ମାଟି କଣ୍ଢେଇଙ୍କୁ ହୃଦୟ ଦାନ କରି ବସିଛୁ ତୁ ସେ କଥା ମୁଁ ବୁଝିପାରି ନ ଥିଲି । ନ ବୁଝି ତୋ'ର ଭଲ କରିବାକୁ ଯାଇ ଖାଲି ତତେ 'ଛୋଟ' କରିଦେଲି ।

ବକୁଳ କହିଥିଲା— ଛୋଟ ହୋଇନି ଭାବିଲେ କିଏ କ'ଣ ଛୋଟ କରିଦେଇପାରିବ ମଝିଆନାନୀ ?

ପାରୁଲ୍ କହିଲା— ସେଇଟା ତତ୍ତ୍ୱ କଥା । ତା' କହି ଖାଲି ମନକୁ ଆଖିରେ ଠରା ଯାଇପାରେ । ହେଲେ ଦୁଃଖ ହେଉଛି ଯେ ଏମିତି ନିଆଁ ପାଉଁଶ ପ୍ରେମ କଲୁ ଯେ, ଗୋଟାଏ ମାଟିର ଗଣେଶକୁ ତା'ର ଦେଠେଇର କାନିତଳୁ ଟାଣି ବାହାର କରି ପାରିଲୁନି ?

ବକୁଳ କହିଲା— ତୁନିହୁଅ ମଝିଆନାନୀ ! ବାପାଙ୍କ ଭଳି କହୁଛି, ''ଜୀବନଟା ନାଟକ ନଭେଲ ନୁହେଁ ।''

କିନ୍ତୁ କଥାଟାକୁ ବକୁଳ କ'ଣ ସତରେ ପ୍ରାଣରୁ କହିଥିଲା ? ବକୁଳର ସେହି ଅପାତ୍ରରେ ଦାନ କରିବା ହୃଦୟଟା କ'ଣ ନାଟକ-ନଭେଲର ନାୟିକାମାନଙ୍କ ପରି ବେଦନାରେ ନୀଳ ହୋଇଯାଇ ନ ଥିଲା ? ଯନ୍ତ୍ରଣାରେ ଜର୍ଜରିତ ହୋଇ ଯାଇ ନ ଥିଲା ?

ଗଭୀର ରାତିରେ ଗୋଟା ଘରଟା ଯେତେବେଳେ ନିଦରେ ଅଚେତନ ହୋଇ ଯାଉଥିଲା ସେତେବେଳେ ବକୁଳ ଝରକା ପାଖରେ ଠିଆହୋଇ କ'ଣ ଦେଖିବାକୁ ଚେଷ୍ଟା କରୁ ନ ଥିଲା କି ସେ ଘରର ତିନିତାଲାରେ ଥିବା ଘରଟାରେ ଏବେ ମଧ୍ୟ ଆଲୁଅ ଜଳୁଛି, ନା ଅନ୍ଧାର ହୋଇଛି ?

ନା, ସେହି ଆଲୋକ-ଅନ୍ଧକାର ଭିତରେ କୌଣସି ଲାଭ-କ୍ଷତି ନ ଥିଲା ବକୁଳର, ତେବେକେ ସେହି ଆଲୋକଟା ଭଲ ଲାଗୁଥାଏ ବକୁଳକୁ । ବକୁଳକୁ ଭାବିବାକୁ ଭଲ ଲାଗୁଥାଏ ସେହି ତିନିତାଲାର ମଣିଷଟା ମଧ୍ୟ ଶୋଇ ପାରୁନି, ସେ ଚେତା ରହି ବକୁଳର କଥା ଭାବୁଛି । ଏ ଭାବନାଟା ନଭେଲ୍‌ର ନାୟିକାମାନଙ୍କ ପରି ନୁହେଁ କି ?

ଏ ସବୁ ଛଡ଼ା ମଧ୍ୟ ନାନା ଅବାନ୍ତର କଳ୍ପନା କରୁଥାଏ ବକୁଳ...... ଯେମିତି ହଠାତ୍ ଦିନେ ବିନା ବେମାରିରେ ବକୁଳ ମରିଗଲା, ଘର ଭିତରେ କାନ୍ଦବୋବାଳି ଗହଳ ଚହଳ ଚାଲିଛି । "ତାଙ୍କ ଘର" ଏହି ଆକସ୍ମିକତାରେ ବିମୂଢ଼ ହୋଇ ନିଷେଧବାଣୀ ଭୁଲି ଦଉଡ଼ି ଚାଲିଆସିଲେ ଏ ଘରକୁ, ଆସି ଶୁଣିଲେ ଡାକ୍ତର କହୁଛନ୍ତି, ମାନସିକ ଆଘାତରେ ହାର୍ଟ ଦୁର୍ବଳ ହୋଇଯାଇ ହାର୍ଟଫେଲ୍ ହୋଇଛି— ସେ କଥା ଶୁଣି ମାଟିର କଣ୍ଢେଇ ଭିତରେ ଉଠନ୍ତା ଦୁରନ୍ତ ପ୍ରାଣ ଚେତନା । ଶୂନ୍ୟରେ ମୁଣ୍ଡ ପିଟି ପିଟି ଭାବୁଥାନ୍ତା ସେ, କି ମୂର୍ଖ ମୁଁ, କି ମୂଢ଼ !

ହଁ ବିନିଦ୍ର ରାତ୍ରିର ଦୁର୍ବଳତା ଯୋଗୁଁ ଏହିପରି ଗୋଟିଏ ଗୋଟିଏ ନିହାତି କଞ୍ଚା ଲେଖକଙ୍କର ଲେଖା ଗଳ୍ପ ପରି ଗଳ୍ପ ରଚନା କରୁଥାଏ ବକୁଳ, କିନ୍ତୁ ବେଶୀଦିନ ଗଲା ନାହିଁ, ଭାରି ତରବର ଭିତରେ ହିଁ ଦିନେ ସେପଟ ଘରେ ଅନେକ ଆଲୁଅ ଜଳିଲା । ସେହି ତିନିତାଲାର ଘରଟାରେ ସାରାରାତି ଧରି ଅନେକ ଆଲୋକ ଝଲସିଲା, ସେହି ଆଲୋକରେ ଆତ୍ମସ୍ଥ ହୋଇଗଲା ବକୁଳ ! ଆଉ ସେହି କଞ୍ଚା ଗଳ୍ପଗୁଡ଼ାକୁ ଦେଖି ତାକୁ ନିଜକୁ ଭାରି ହସ ଲାଗିଲା, ଭାବିଲା— ଭାଗ୍ୟକୁ ମନେ ମନେ ଲେଖିଥିବା ଗଳ୍ପର ଖବର କେହି ଜାଣିପାରନ୍ତି ନାହିଁ ।

କିନ୍ତୁ ବକୁଳ କ'ଣ ସେହି ଆଲୋକକୁ ଖାଲି ନିଜ ଘରେ ବସି ବସି ଦେଖିଲା ? ବକୁଳ କ'ଣ ସେହି ଆଲୋକର ନଦୀରେ ମାଠିଆ ବୁଡ଼ାଇବାକୁ ଗଲା ନାହିଁ ? ହଁ, ତା ମଧ୍ୟ ଗଲା । ବକୁଳ ତ ନାଟକ-ନଭେଲ୍‌ର ନାୟିକା ନୁହେଁ !

ଲାଲରଙ୍ଗର ଚିଠି ଧରି ନିଜେ ଆସିଥିଲେ ନିର୍ମଳର ବାପା । ସନିର୍ବନ୍ଧ ଅନୁରୋଧ କରି ଜଣାଇଲେ ବକୁଳର ବାପାଙ୍କୁ— ଭାଇନା, ଏଇଟା ମୋର ପ୍ରଥମ କାର୍ଯ୍ୟଘର । ସମସ୍ତଙ୍କୁ ଯିବାକୁ ପଡ଼ିବ, ଠିଆହୋଇ ବୁଝାବୁଝି କରି କାର୍ଯ୍ୟଟି ସମ୍ପନ୍ନ କରିବାକୁ ପଡ଼ିବ । ନା, ନା 'ଦେହ ଖରାପ' କହି ଆଡ଼େଇ ଦେଲେ ଚଳିବନି । କୌଣସି ଆପତ୍ତି ଶୁଣିବିନି । ବୋହୂମାନଙ୍କୁ ଡାକି ମୋର ହୋଇ କହନ୍ତୁ— ସେ ଘରର କକେଇ କହିଯାଇଛନ୍ତି ମଙ୍ଗଳଣ ଆଉ ଚଉଠିବାସୀ ଏ ଦୁଇଟାଯାକ ଦିନରେ ଘରେ ଚୁଲି ଜଳିବନି । ପୁଅଝିଅ ସମସ୍ତେ ସେ ଘରେ ହିଁ ଚାହା— ଜଳଖିଆ, ଖିଆ ପିଆ—

ବକୁଳର ବାପା କହିଥିଲେ— ଯିବେ ଯିବେ । ପୁଅ ଆଉ ବୋହୂମାନେ ଯିବେ ।

—"ଖାଲି ପୁଅ ଆଉ ବୋହୂମାନେ ନୁହଁନ୍ତି ଭାଇନା, ନାତିନାତୁଣୀ ସମସ୍ତଙ୍କୁ ଧରି ଆପଣଙ୍କୁ ମଧ୍ୟ ଯିବାକୁ ପଡ଼ିବ । ଆଉ ନିର୍ମଳର ମା' ବିଶେଷ କରି କହି ଦେଇଛନ୍ତି ବକୁଳ ଯେମିତି ନିଶ୍ଚେ ଯିବ । ତା'ଠାରୁ ଅନେକ କାମ ଆଦାୟ କରିବା ଆଶା ଅଛି ତାଙ୍କର ।" କିଛି ନ ଜାଣିଲା ପରି କହିଲେ ନିର୍ମଳର ବାପା ।

ନିର୍ମଳର ମା'ଙ୍କର ହୁଏତ ସନ୍ଦେହ ହୋଇଥିଲା, ବକୁଳ ଖାଇବାକୁ ଆସି ନ ପାରେ, ସେଥିପାଇଁ ଏପରି 'ବିଶେଷ' କରି କହିଥିଲେ ବକୁଳକୁ !

ଏତିକିବେଳେ ବକୁଳର ବାପା ପ୍ରବୋଧବାବୁ ନିଜର ବାତର ବେଦନା ଭୁଲି ସିଧା ହୋଇ ବସି କହିଥିଲେ— ବୋହୂଙ୍କୁ କହିବ, ବକୁଳ କଥା ମୁଁ କିଛି କହିପାରୁନି, ବୟସ୍କା କୁମାରୀ ଝିଅ, ବୁଝିପାରୁଥିବ, ପାଞ୍ଚଜଣଙ୍କ ସାମନାରେ ଗୋଟାଏ ଲାଜ—

ହଁ ବକୁଳ ଅମଳରେ ବାସ୍ତବିକରେ ସେଥିରେ ଲଜ୍ଜା ଥିଲା । ବୟସ୍କା କୁମାରୀ ଝିଅକୁ ଚୋରଠାରୁ ଅଧିକ ବେଶୀ ଡରି ଲୁଚି ରହିବାକୁ ପଡୁଥିଲା । ପ୍ରବୋଧବାବୁ ଅଧିକ କିଛି କହି ନାହାନ୍ତି । କିନ୍ତୁ ନିର୍ମଳର ବାପା କଥାଟାକୁ ଉଡ଼ାଇ ଦେଲେ । ହୁଏତ ଝିଅଟାକୁ ସେମାନଙ୍କ ବିଶେଷ ସ୍ନେହଦୃଷ୍ଟିରେ ଦେଖୁଥିଲେ ବୋଲି ମମତାବଶତଃ ତା ସହିତ ଥିବା ସମ୍ପର୍କଟାକୁ ସହଜ କରିଦେବାକୁ ଚାହିଁଲେ । କହିଲେ, ଏ ତ ଗୋଟିଏ ଘର ଭାଇନା, ଘରେ ବାହାଘର ହୋଇଥିଲେ କ'ଣ କରିଥାନ୍ତା କହିଲେ ?

ଅନିଚ୍ଛାର ଗଳାରେ ବକୁଳର ବାପା କହିଲେ, 'ଆଚ୍ଛା କହିଦେବି ।'

ନିର୍ମଳର ବାପା କହିଲେ— ତାଛଡ଼ା ତା' ଖୁଡ଼ୀର ଆଉଗୋଟିଏ ଦାବି ଅଛି, ସେଇଟା ମଧ୍ୟ କହିଦେଇ ଯିବି । କାର୍ଯ୍ୟଘର ହେତୁ ଖୁଡ଼ୀ ବାହାରିପାରୁନି, ପରେ ଆସିବ, ତେବେ ସମୟ ଥାଉଣୁ ମତେ କହିଛି କହିଯିବାକୁ । ଟିକିଏ ବକୁଳକୁ ଡାକୁନାହାନ୍ତି, ଅନେକଦିନ ହେଲା ତାକୁ ଦେଖି ନାହିଁ, ନ ହେଲେ ଆହୁରି ଆଗରୁ କହିଥାନ୍ତି । ତା ଛଡ଼ା ବାହାଘରଟା ତ ହଠାତ୍ ଠିକ୍ ହୋଇଗଲା ।

ଏତେ ଆତ୍ମୀୟତା ଦେଖି ମଧ୍ୟ ବେଶୀ ବିଗଳିତ ହେଲେନି ବକୁଳର ବାପା ? ପ୍ରାୟ ଅନମନୀୟ ଗଳାରେ କହିଲେ— ଘରେ କ'ଣ ଭୋଜିଭାତ ହେଉଛି କି, କଥା କ'ଣ ?

ସେତେବେଳେ ନିର୍ମଳର ବାପା ଖୋଲିକରି କଥାଟା କହିଲେ ।— ନିର୍ମଳର ମା' ବକୁଳ ପାଖରେ ଆବେଦନ ଜଣାଇଛନ୍ତି, ବକୁଳ ଯେମିତି ତାଙ୍କର ପୁଅର ବାହାଘରେ ତାଙ୍କ ନାଁରେ ଗୋଟିଏ 'ପ୍ରୀତି ଉପହାର' ଲେଖିଦେବ ।

ବକୁଳର ବାପାଙ୍କର କପାଳ କୁଞ୍ଚିତ ହୋଇଯାଇ ଆଉ ସିଧା ହେବାକୁ ଚାହିଁଲା ନାହିଁ, କହିଲେ— କ'ଣ ଲେଖିଦେବ ?

'ପ୍ରୀତି ଉପହାର', ମାନେ ପଦ୍ୟଟିଏ ମ' । ବାହାଘରେ କବିତା ଫବିତା ଛପା ନାହାନ୍ତି ? ସେଇୟା ଆଉ କ'ଣ ।

ବକୁଳର ବାପା ଭ୍ରୂକୁଞ୍ଚିତ କରି ବିସ୍ମୟ-ବିରସ କଣ୍ଠରେ କହିଲେ— ବକୁଳ ପୁଣି କବିତା ଲେଖିବା ଶିଖିଲା କେବେଠାରୁ ?

ନିର୍ମଳର ବାପା ହାସ୍ୟ ବିଗଳିତ କଣ୍ଠରେ କହିଲେ— କେବଠାରୁ ? ପିଲାଦିନୁ ତ ଲେଖୁଛି । କାହିଁକି ତା'ର କବିତା ତ ମାଗାଜିନ୍‌ରେ ବାହାରିଛି ଆପଣ ଦେଖି ନାହାନ୍ତି ? ଲାଜ କରି ଦେଖାଇବି ବୋଧହୁଏ । ସେ ଘରର ଖୁଡ଼ୀ ତା'ର ଦେଖିଛନ୍ତି । ସେ ତ କହେ ଭାରି ଭଲ । ସେଇଥିପାଇଁ ତ ଗୋଟିଏ ପ୍ରୀତି-ଉପହାରର ଅର୍ଡ଼ର ନେଇ ଆସିଲି । ଟିକିଏ ଡାକନ୍ତୁ । ନିଜେ ମୁଁ କହିଦେଇ ଯିବି ।

ଔଷଧ ଗିଳିବା ପରି ମୁହଁଟା କରି ପ୍ରବୋଧ ଡକାଇ ପଠାଇଲେ ଝିଅକୁ । ଆସିଲାରୁ ପଚାରିଲେ— ତୁ କୁଆଡ଼େ କବିତା ଲେଖୁଛୁ ?

ଶଙ୍କିତ ଦୃଷ୍ଟିରେ ଚାହିଁଲା ବକୁଳ । ସେ ଘରର କକେଇ କାହିଁକି ଆସିଛନ୍ତି ଏଠିକୁ, ଆଉ ତାଙ୍କ ଆଗରେ ଏ କଥା ପଡ଼ିଛି କାହିଁକି ?

କିନ୍ତୁ ଏ 'କାହିଁକି'ର ଉତ୍ତର ପାଇବାକୁ ଡେରି ହେଲାନି । ତରବର ହୋଇ ନିର୍ମଳର ବାପା ତାଙ୍କ କଥା କହିଦେଲେ ।

ବକୁଳ ନଭେଲର ନାୟିକା ନୁହେଁ, ତେବେକେ ବକୁଳର ପାଦତଳର ମାଟି ଘୁଞ୍ଚି ଗଲାନି କି ? ବକୁଳ କ'ଣ ଭାବିଲାନି, ଖୁଡ଼ୀ କ'ଣ ସତରେ ଅବୋଧ ନା ନିହାତି ନିଷ୍ଠୁର ? ବକୁଳର ସମସ୍ତ ସତ୍ତା କ'ଣ ଥରଟେ ବିଦ୍ରୋହୀ ହେବାକୁ ଚାହିଁନି ଏହି ନିର୍ମମ ଚକ୍ରାନ୍ତ ବିରୋଧରେ ?

କାହିଁକି ? କାହିଁକି ? କାହିଁକି ତାକୁ ଯିବାକୁ ପଡ଼ିବ ନିର୍ମଳର ବାହାଘର ଦେଖିବାକୁ ? ସେ କାହିଁକି ଲେଖିବ ନିର୍ମଳର ବାହାଘର କବିତା ? ଉପନ୍ୟାସର ନାୟିକା ନ ହେଲେ ବି ଏକଥା କ'ଣ ଭାବିନି ବକୁଳ ? ମଣିଷର ଏହି ନିଷ୍ଠୁରତା ଦେଖି ବକୁଳ କ'ଣ ଚାହିଁନି ଫାଟିପଡ଼ିବାକୁ ?

ହୁଏତ ସବୁ ହୋଇଥିଲା, ତେବେକେ ବକୁଳ ଅସ୍ଫୁଟ କଣ୍ଠରେ କହିଲା, 'ଆଚ୍ଛା !'

—ଆପଣଙ୍କ ବକୁଳ ଭଳି ଝିଅ ଆଉ ଏ ଯୁଗରେ ନାହାନ୍ତି ଭାଇନା, ନିର୍ମଳର ବାପା କହିଲେ— ତା' ଖୁଡ଼ୀ ତ ତା'ର ପ୍ରଶଂସା ଗାଉ ଗାଉ—

ବକୁଳର ଇଚ୍ଛାହେଲା, ପାଟି କରି କହିଦେବ— ଆପଣ ଚୁପ୍ ରହିବେ ?

କିନ୍ତୁ ବକୁଳର ଦେହଟା ଥର ଥର ହୋଇ ଥରିବା ଛଡ଼ା ଆଉ କିଛି ହେଲାନି ।

ଆନନ୍ଦିତ ମନରେ ଚାଲିଗଲେ ନିର୍ମଳର ବାପା । ଆହୁରି ଥରେ ସମସ୍ତେ ମିଶି ନିମନ୍ତ୍ରଣ ଖାଇବାର ଅନୁରୋଧ ଜଣାଇଲେ । ହୁଏତ ସେ ମଣିଷଟା ସତରେ ଅଜ୍ଞ ଅବୋଧ । କାରଣ ନିର୍ମଳର ମା' ପାରୁଲ୍‌ର ପ୍ରସ୍ତାବ କଥା ଟିକକ ଛଡ଼ା ଆଉ କିଛି ହେଲେ କହି ନ ଥିଲେ ତାଙ୍କୁ । କ'ଣ ବା କହିଥାନ୍ତେ ? ବକୁଳ ଓ ନିର୍ମଳର ଭଲପାଇବା କଥା ? ତା' କ'ଣ କୁହାଯାଏ ?

ସେ ଚାଲିଗଲା ପରେ ପ୍ରବୋଧଚନ୍ଦ୍ର ଫାଟି ପଡ଼ିଥିଲେ । କହିଥିଲେ— ସାଙ୍ଗେ ସାଙ୍ଗେ ହିଁ କରିଦେଲୁ । ହାରାମଜାଦୀ ତତେ ଲାଜ ଲାଗିଲାନି ?

ବକୁଳ କହିଥିଲା— ମାଗିବାକୁ ଯଦି ସେମାନଙ୍କୁ ଲାଜ ଲାଗିଲାନି, ଦେବାକୁ କାହିଁକି ମତେ ଲାଜ ଲାଗିବ ବାପା ?

—ହେଇଟି ସେଦିନ ପରା ଏଡ଼େ ବଡ଼ ଅପମାନଟେ ସେମାନେ କହିଥିଲେ—

—ଅପମାନ ଭାବିଲେ ଅପମାନ । ସେ ଯୁଗର ଝିଅ ହୋଇ ମଧ୍ୟ ବକୁଳ ବାପାଙ୍କ ସଙ୍ଗେ ଖୋଲାଖୋଲି କଥା ହୋଇଥିଲା— ବାହା ବୟସର ଝିଅ-ପୁଅ ଥିଲେ ଲୋକେ 'ସମ୍ବନ୍ଧ' କରିବାକୁ ଚେଷ୍ଟା କରନ୍ତି, କଲେ କ'ଣ ସବୁ ଜାଗାରେ ହୁଏ ? ତା' ବୋଲି ତା' ନ ହେଲେ ସେମାନେ କ'ଣ ଶତ୍ରୁ ହୋଇଯିବେ ?

ପ୍ରବୋଧଚନ୍ଦ୍ର ଏଭଳି ଉନ୍ମୁକ୍ତ କଥାରେ ଥାଥାମାମା ହୋଇ କହିଲେ,

—ତୁ ଯଦି ପାରିବୁ ତ ହେବ । ପାରୁଲ୍‌ବାଲା ତ ଅନେକ ରକମ କଥା କହିଗଲେ ନା ତେଣୁ—

— "ମଝିଆନାନୀର କଥା ଛାଡ଼ନ୍ତୁ—" କହି ସବୁ କଥାରେ ପୂର୍ଣ୍ଣଚ୍ଛେଦ ଟାଣିଦେଇଥିଲା ବକୁଳ । ହଁ, ତା'ପରେ 'ସ୍ନେହର ସୁନିର୍ମଳର ଶୁଭ ବିବାହରେ ସ୍ନେହର ଉପହାର' ଲେଖିଦେଇଥିଲା ନିର୍ମଳର ମା'ଙ୍କ ନାଁରେ । ସେ କବିତା ପଢ଼ି ସମସ୍ତେ ଧନ୍ୟ ଧନ୍ୟ କରିଥିଲେ । ନିର୍ମଳର ମା' କହିଥିଲେ— ମୁଁ ତ ତତେ କିଛି କହିନି ଝିଅ, ତେବେକେ ମୋ ମନର କଥାଗୁଡ଼ାକ ସବୁ କେମିତି ବୁଝିଦେଲୁ ମା' ? କେମିତି ଏଭଳି ମନ ଚାହିଁଲା ପରି ଲେଖିଲୁ ?

ଖାଲି ହସିଥିଲା ବକୁଳ ।

ନିର୍ମଳର ମା'ଙ୍କର ଆଖିରୁ ହଠାତ୍ ଲୁହ ଝରି ପଡ଼ିଥିଲା, ସେ ଅନ୍ୟଆଡ଼କୁ ଆଖି ଫେରାଇ କହିଥିଲେ— ଭଗବାନଙ୍କ ପାଖରେ ତୋ'ପାଇଁ ପ୍ରାର୍ଥନା କରୁଛି ମା', ତତେ ଯେମିତି ରାଜାଙ୍କ ପରି ବର ମିଳୁ ।

ଶୁଣି ଆଉ ଟିକିଏ ହସିଥିଲା ବକୁଳ । ସେ ହସଟାକୁ ମନେପକାଇ ଏତେଦିନ ପରେ ଅନାମିକା ଦେବୀ ମଧ ଟିକିଏ ହସିଲେ । ନିର୍ମଳର ମା'ଙ୍କର ସେଇ ଆଶୀର୍ବାଦଟା ଖାଲି ନିଷ୍ଫଳ ହୋଇ ପଡ଼ିରହିଛି ।

ନିର୍ମଳର ମା' ଛଳଛଳ ଆଖିରେ ପୁଣି କହିଥିଲେ— ତୋ ପାଇଁ ଭଗବାନ ଅନେକ ଭଲ ରଖିଛନ୍ତି, ଅନେକ ଭଲ ।

ହଁ, ଏ ଭବିଷ୍ୟତ୍‌ବାଣୀଟା ହୁଏତ ତାଙ୍କର ଭୁଲ୍ ହୋଇ ନାହିଁ । ବକୁଳ ହୁଏତ ଅନେକ ଭଲ କଥା ପାଇଛି, ଅନେକ ଭଲ— ଭାବିଲେ ଅନାମିକା ।

× × × × ×

ବୋହୂ ଦେଖିବାକୁ ତିନିମହଲା ଉପରକୁ ଚଢ଼ି ଯାଇଥିଲା ବକୁଳ । ବକୁଳ ଆଉ ସେଦିନ ଦେଠେଇଙ୍କ ତୀକ୍ଷ୍ଣ ଦୃଷ୍ଟିକୁ ଖାତିର କରି ନ ଥିଲା । ବୋହୂ ଦେଖିଥିଲା, ନିମନ୍ତ୍ରଣ ଖାଇଥିଲା, ସ୍ତ୍ରୀ ଲୋକମାନଙ୍କୁ ବଢ଼ାବଢ଼ି କରିଥିଲା । ପୁଣି ତା'ପରଦିନ ନିର୍ମଳର ମା'ଙ୍କ ପାଖରେ ବସି ବୋହୂର 'ମୁହଁ ଦେଖା' ଗହଣା, ଟଙ୍କା, ଜିନିଷପତ୍ରର ହିସାବ ଲେଖିଦେଇଥିଲା ।

ସେତିକିବେଳେ ନିର୍ମଳର ସ୍ତ୍ରୀ ସହିତ ଅଦ୍ଭୁତ ଏକ ମିତ୍ରତା ହୋଇଗଲା । କଥାଟା ନିଶ୍ଚେ ଅଦ୍ଭୁତ । ଏଭଳି ଘଟେ ନାହିଁ । ତେବେକେ ମଝିମଝିରେ ଏ ଜଗତରେ କିଛି କିଛି ଅଦ୍ଭୁତ ଘଟଣା ମଧ ଘଟେ ।

ହିସାବ ମିଳାଇବା କାମ ଚାଲିଥିଲା, ବୋହୂ ଟିକିଏ ଦୂରରେ ଲମ୍ବା ଓଢ଼ଣା ତଳେ ରହି ଝାଳେଇଯାଉଥିଲା, ଶାଶୁଙ୍କ ଉପସ୍ଥିତିରେ କିଛି କଥା କହି ନାହିଁ । କ'ଣ ଗୋଟିଏ କାମରେ ସେ ଉଠିଗଲାରୁ, ଓଢ଼ଣାଟା କାଢ଼ି ମୃଦୁ ଅଥଚ ପରିଷ୍କାର ଗଳାରେ କହିଲା— ନିମନ୍ତ୍ରଣ ଖାଇବାକୁ ଆସି ଏତେ ଖଟୁଛ କାହିଁକି ?

ଏ ପ୍ରଶ୍ନ ପାଇଁ ଜମା ପ୍ରସ୍ତୁତ ନ ଥିଲା ବକୁଳ, ସେଥିପାଇଁ ଟିକିଏ ଚମକି ପଡ଼ିଲା । ଭାବିଲା— ବୋହୂ ମତେ ଚିହ୍ନିଲା କିପରି ? ତା'ପରେ ପୁଣି ଭାବିଲା ଏ ପ୍ରଶ୍ନର ଅର୍ଥ କ'ଣ ? ଦେଠେଇଙ୍କ ପାଖରୁ ତାଲିମ୍ ନେଇ ବକୁଳ ସଙ୍ଗେ ଯୁଦ୍ଧ କରିବାକୁ ଆସିଗଲା କି ?

ହଁ, ଏହିପରି ଗୋଟାଏ ସନ୍ଦେହ ମୁହୂର୍ତ୍ତକରେ କଠିନ କରି ଦେଇଥିଲା ବକୁଳକୁ । ସେଥିପାଇଁ ସେ ମଧ୍ୟ ଯୁଦ୍ଧ କରିବାକୁ ଚାହିଁଲା । ସ୍ଥିର ଆଉ କଠିନ ଗଳାରେ କହିଲା— ମୋ ସହିତ ଖାଲି ଯେ ନିମନ୍ତ୍ରଣ ଖାଇବା ସମ୍ପର୍କ ସେକଥା ଆପଣଙ୍କୁ କିଏ କହିଲା ?

ବୋହୂ ଆଖି ଉଠାଇ ଚାହିଁଥିଲା । ଦୀର୍ଘ ପଲ୍ଲବରେ ଆଚ୍ଛାଦିତ କଳା ଆଖି ଦୁଇଟି । ନିର୍ମଳର ସ୍ତ୍ରୀ ଯେ ଭାରି ସୁନ୍ଦରଟିଏ ସେ କଥା ଆଗରୁ ଶୁଣିଥିଲା ବକୁଳ । ଆସିବାପରେ ଦେଖିଲା । ଧନ୍ୟ ଧନ୍ୟ ଶୁଣିଥିଲା । ତେବେକେ ମୁହୂର୍ତ୍ତକ ଆଗରୁ ଭାବିପାରି ନ ଥିଲା, ଏ ସୌନ୍ଦର୍ଯ୍ୟ କି ମୋହନୀୟ ! ସେହି ଗଭୀର ଆଖି ଦୁଇଟିର ବ୍ୟଞ୍ଜନାମୟ ଚାହାଣି ଭିତରେ ଯେପରି ଲୁଚି ରହିଥିଲା ଅନେକ କିଛି । ରହିଥିଲା ହୃଦୟର ଅନେକ ସ୍ଥାନ । ସେ ଦିଗଟିରେ କଥା ଏ ପର୍ଯ୍ୟନ୍ତ ଆଦୌ ଭାବି ନ ଥିଲା ବକୁଳ ।

'ନିର୍ମଳର ସ୍ତ୍ରୀ' ଶବ୍ଦଟାକୁ ବକୁଳ ଯେପରି ଅବଜ୍ଞା କରିବାର ପ୍ରତିଜ୍ଞା ଧରି ବସିଥିଲା— ଚେତନରେ ନ ହେଉ ଅବଚେତନରେ ।

କିନ୍ତୁ ବୋହୂଟି ବକୁଳ ଆଡ଼କୁ ଭଲପାଇବାର ଭର୍ତ୍ସନା ଭରା ଆଖି ଦୁଇଟିକୁ ଉଠାଇଲାକ୍ଷଣି ବକୁଳର ପ୍ରତିଜ୍ଞାର ଜୋର୍‌ଟା ଯେପରି କମିଗଲା ।

ନୂଆବୋହୂ ମାଧୁରୀ ନିଜ ଆଖିର ଦୃଷ୍ଟି ସ୍ଥିର ରଖି କହିଲା— ମୁଁ ତ ତମକୁ 'ତମେ' ବୋଲି କହିଲି, ତମେ କାହିଁକି 'ଆପଣ' କହୁଛ ?

ଖୁଡ଼ୀ ଘରେ ନାହାନ୍ତି । ଘରେ ଖାଲି ମୁହାଁମୁହିଁ ସେ ଦୁଇଜଣ— ବକୁଳ ଲଜ୍ଜା ତ୍ୟାଗ କଲା । କହିଲା— 'କହିବିନି ? ବାବା ! ମୁଁ ହେଉଛି ସାହିର ଜଣେ ତୁଚ୍ଛ ଝିଅ, ଆଉ ଆପଣ ହେଉଛନ୍ତି ଜଣେ ମାନ୍ୟଗଣ୍ୟ ମହିଳା । ଏ ଘରର ବଡ଼ବୋହୂ !

ବକୁଳର କଣ୍ଠସ୍ୱରରେ କ'ଣ କ୍ଷୋଭ ରହିଥିଲା ! ଅଥବା ତିକ୍ତତା ? ହୁଏତ ଥିଲା । କିନ୍ତୁ ମାଧୁରୀ ସେକଥାର ପାଲଟା ଜବାବ ଦେଲାନି । ଏ କଥାର ଉତ୍ତରରେ ସେ ହାତ ବଢ଼ାଇ ବକୁଳର ଗୋଟିଏ ହାତକୁ ଚିପିଧରି ସ୍ନେହପୂର୍ଣ୍ଣ ଗଳାରେ କହିଲା– ଯେତେ ଚେଷ୍ଟା କର ପଛକେ ତମେ ମତେ ଦୂରକୁ ଘୁଞ୍ଚାଇ ରଖିପାରିବନି ! ମୁଁ ଜାଣିଛି ତମେ ଅତି ପାଖମଣିଷ, ନିକଟତମ !

ପ୍ରକୃତରେ ଟିକିଏ ଆଶ୍ଚର୍ଯ୍ୟ ହୋଇଯାଇଥିଲା ବକୁଳ । ଏଇଟା ତ ଠିକ୍ ଦେଡେନ୍ସଙ୍କ ତାଲିମ୍ ବୋଲି ମନେହେଉନି ? ତାହେଲେ ଏଇଟା କ'ଣ ?

ବକୁଳର କଣ୍ଠସ୍ୱରରୁ ଯେପରି ତା'ର ଅଜ୍ଞାତସାରରେ କ୍ଷୋଭ ଆଉ ତିକ୍ତତା ଝରି ଯାଇଥିଲା । ଯେପରି ଟିକିଏ କୌତୂହଳର ଗଳାରେ କହିଥିଲା ବକୁଳ– ହେଲା ଏବେ ତମେ କହିଲି, କିନ୍ତୁ ମୁଁ ଅତି ନିକଟତମ, ଏଭଳି ଅଦ୍ଭୁତ ଖବରଟା ତମକୁ କିଏ ଦେଲା ?

ମାଧୁରୀ ମଧୁର ହସ ହସି କହିଲା– ଯେ ଦେବାକଥା, ସେ ଦେଇଛନ୍ତି । କାଲି ମତେ ସବୁକଥା କହିଛନ୍ତି ।

ମୁହୂର୍ତ୍ତକରେ ଆଉଥରେ କଠିନ ହୋଇଯାଇଥିଲା ବକୁଳ । ରାଗରେ ଆପାଦମସ୍ତକ ଜଳି ଯାଇଥିଲା ତା'ର । ଓଃ ! ଫୁଲଶଯ୍ୟାର ରାତିରେ ହିଁ ସ୍ତ୍ରୀ ନିକଟରେ ହୃଦୟ ଅଜଡ଼ା ହୋଇଯାଇଛି । କିଏ ଜାଣିଛି ନିଜର ନାଁକୁ ବଞ୍ଚାଇ ଆଉ ବକୁଳକୁ ଅପମାନର ସମୁଦ୍ରରେ ବୁଡ଼ାଇ କେତେ କୌଶଳରେ ତାହା କରାଯାଇଛି ! ନିର୍ମଳ ଏମିତି !

ନିର୍ମଳ ଏତେ ନୀଚ, ଅସାର, କ୍ଷୁଦ୍ର ! ହୁଏତ ତା' ନୁହେଁ, ଏକାବେଳେ ନିର୍ବୋଧ, ମୂର୍ଖ ! ଭାବିଛି, ଯାଠାରୁ କି ତା'ଠାରୁ ଯଦି ସ୍ତ୍ରୀ କିଛି ଶୁଣିଦେବ, ଆଗଠାରୁ ନିର୍ମଳ ହୋଇଯାଇଥିବି । ସେଇଟା ଯେ ହେବନି, ସେ ଟିକକ ଜ୍ଞାନ ମଧ ନାହିଁ । ଅତଏବ ବକୁଳ କଠିନ ହୋଇଥିଲା । ରୁକ୍ଷଗଳାରେ କହିଥିଲା– ସବୁ କଥା କହିଛନ୍ତି ? ଗୋଟିଏ ରାତିରେ ଏତେ ଭାବ ? ହେଲେ କ'ଣ କହିଛନ୍ତି ? ମୁଁ ତମ ବରର ପ୍ରେମରେ ବୁଡ଼ି ଅଣନିଶ୍ୱାସୀ ହୋଇ ମଲା ପରି ପଡ଼ିରହିଛି ? ତାଙ୍କ ପାଇଁ ମୋ ଜୀବନ ବ୍ୟର୍ଥ, ପୃଥିବୀ ଅର୍ଥହୀନ ? ଏ ସବୁ ? ସେଇଥିପାଇଁ କରୁଣା କରୁଛ ?

କହିଥିଲା ସେ ।

ଆଶ୍ଚର୍ଯ୍ୟ ! ବକୁଳର ମୁହଁରୁ ମଧ ଏଭଳି କୁଶ୍ରୀ କଥାଗୁଡ଼ାକ ବାହାରିଥିଲା । ସେଦିନ ବକୁଳର ମୁଣ୍ଡ ଭିତରେ ନିଆଁ ଜଳିଉଠିଥିଲା ।

କିନ୍ତୁ ମାଧୁରୀ ଏହି ରୁକ୍ଷତାର, ଏହି କଟୂକ୍ତିର ଉଚିତ ଜବାବ ଦେଲା ନାହିଁ । ସେ ଖାଲି ତା'ର ବଡ଼ ବଡ଼ ଆଖିରେ ଗଭୀରତା ଭରିଦେଇ କହିଲା, ନା, ସେ ତା' କହିବେ କାହିଁକି ? ସେ ନିଜେହିଁ ତ ଭଲପାଇ ମଲାପରି ରହିଛନ୍ତି, ସେହି କଥା ହିଁ କହିଛନ୍ତି ।

—ବାଃ, ଚମତ୍କାର । "ବକୁଳ ହସିଉଠିଥିଲା କଡ଼ା ଗଳାରେ । କହିଥିଲା— ସତ୍ୟବଦ୍ଧ ଯୁଧିଷ୍ଠିର ! ସେ ଯାଉ, ତମେ ସେଇ ମଲା ମଣିଷଟାକୁ ବଞ୍ଚାଇବାର ପ୍ରତିଜ୍ଞା ଅବଶ୍ୟ କରିଛ । ଅତଏବ୍ ନିଶ୍ଚିନ୍ତ ! କଥାଗୁଡ଼ାକ କିଏ କହିଥିଲା । ବକୁଳ ନା ବକୁଳର ମୁଣ୍ଡ ଉପରେ ଭର କରିଥିବା କେଉଁ ଭୂତ ? ହୁଏତ ସେଇୟା । ନ ହେଲେ ଜୀବନରେ ଆଉ କେବେ ବକୁଳ ଏଭଳି ଅସଭ୍ୟ କଥା କହିଛି ? ତା' ଆଗରୁ କି ତା ପରେ ?

ତେବେକେ ମାଧୁରୀ ଶାନ୍ତ ଗଳାରେ କହିଲା— ମୁଁ ତ ପାଗଳ ନୁହେଁ ଯେ ସେମିତି ପ୍ରତିଜ୍ଞା କରିବି ? ତମକୁ ସେ କେବେ ଭୁଲି ପାରିବେନି ।

ମାଧୁରୀର ମୁହଁରେ ଏମିତି ଏକ ନିଶ୍ଚିନ୍ତ ପ୍ରତ୍ୟୟର ଆଭା ଥିଲା ଯେ ତାକୁ ବ୍ୟଙ୍ଗ କୁହାଯାଇପାରିବ ନାହିଁ ।

ବକୁଳ ଅବାକ ହୋଇଥିଲା । ଝିଅଟା କ'ଣ ? ଅବୋଧ ନା ଶିଶୁ ? ଛଳନାକାରୀ ଭାବପ୍ରବଣ ବରର ସେହି ଗଦ୍‌ଗଦ୍ ସ୍ୱୀକାରୋକ୍ତି ହଜମ କରି ଏପରି ଅମଳିନ ମୁହଁରେ ଆଲୋଚନା କରୁଛି ସେହି ପ୍ରସଙ୍ଗ । ତେବେ କି ସାଂଘାତିକ ଧଡ଼ିବାଜ ? କଥା ପକାଇ କଥା ଆଦାୟ କରିବାକୁ ଚାହେଁ ? ଏହି ସରଳତା ସେହି କଥାର 'ରୋହି' ଟାଣି ବାହାର କରିବାର ଚାର ?

ଠିକ୍ ଏହି ଭାଷାଭଙ୍ଗୀରେ ନ ହେଲେ ମଧ୍ୟ ଏ ଧରଣର କିଛି ଗୋଟାଏ ପ୍ରଥମରେ ଭାବିଥିଲା ସେଦିନ ବକୁଳ । କିନ୍ତୁ ତାପରେ ବକୁଳ ସେହି ଦେବୀ ପରି ମୁହଁ ଆଡ଼କୁ ଭଲକରି ଚାହିଁ ଦେଇଥିଲା, ଚାହିଁ ଦେଖିଲା ସେହି ଦୀର୍ଘ ପଲ୍ଲବାଚ୍ଛାଦିତ କଳା କଳା ବଡ଼ ଆଖି ଦୁଇଟିକୁ, ଆଉ ଦେଖି ଯେପରି ମରିଯାଇଥିଲା ଲାଜରେ ବକୁଳ ବୁଝିଥିଲା— ଏ ଜଣେ ଅନ୍ୟ ଜାତିର ଝିଅ, ସଂସାରର ସାଧାରଣ ମାପକାଠିରେ ଏ ଝିଅକୁ ମପା ଯାଇପାରିବନି ।

ବକୁଳର ଭିତରେ ଏକ ମୂକ ଦହନ ବକୁଳକୁ ଭୟଙ୍କର ଯନ୍ତ୍ରଣା ଦେଉଥିଲା । ବାହାରେ ଭଦ୍ରତା ଆଉ ଅହଙ୍କାରକୁ ବଞ୍ଚାଇ ରଖି ରଖି କଷ୍ଟରେ ମରିଯାଉଥିଲା ବକୁଳ କିନ୍ତୁ ମାଧୁରୀର ସେହି ଜ୍ୱାଳାହୀନ, ଈର୍ଷାହୀନ ପବିତ୍ର ସରଳତାର ଐଶ୍ୱର୍ଯ୍ୟ ଆଡ଼କୁ ଚାହିଁ ବକୁଳ ନିଜର ଚିତ୍ତଦୈନ୍ୟରେ ମରମରେ ମରିଗଲା ।

ବକୁଳର ସେହି ପ୍ରଦାହଟା ମଧ୍ୟ ଯେପରି ଅଳ୍ପ ସ୍ନିଗ୍ଧ ହୋଇଗଲା । ବକୁଳ ସହଜ କୌତୁକର ଗଳାରେ କହିଲା, ତମେ ତ ଭଲ ବୋକା ଝିଅଟିଏ ! ତମର ବର ଏମିତି ଗୋଟିଏ ପରମାସୁନ୍ଦରୀ ସ୍ତ୍ରୀକୁ ଘରକୁ ଆଣି ସାହିର ଜଣେ କାଳୀ ଝିଅକୁ ହୃଦୟରେ ଚିରସ୍ମରଣୀୟ କରି ରଖିଦେବେ, ଆଉ ତମେ ସେ କଥା ସହିବ ?

'—କଳା ?' ମାଧୁରୀ ହସିଲା ଟିକିଏ— 'ତମର ଭାରି ବିନୟ !' ତା'ପରେ ହସହସ ମୁହଁରେ ହିଁ କହିଲା— ''ବାହାରର ରୂପଟାହିଁ ସବୁ ନୁହେଁ !''

ଏଥର ନିଜେ ବକୁଳ ହାତ ବଢ଼ାଇ ତା ହାତକୁ ଧରିଲା । ଯାହାକୁ କହନ୍ତି କରପଲ୍ଲବ । ଯେମିତି କଅଁଳ, ସେମିତି ଚିକ୍କଣ ! ନିର୍ମଳ ଜିତିଛି, ସନ୍ଦେହ ନାହିଁ । ଏ ଝିଅକୁ ଦେଖି ବକୁଳ ନିଜେ ତ ମୁଗ୍ଧ ହୋଇଯାଉଛି ! ଧରିଥିବା ହାତଟିକୁ ଗଭୀର ଭାବରେ ଚାପ ଦେଇ ବକୁଳ କହିଲା, ତମର ବାହାରର ରୂପ ମଧ୍ୟ ଅତୁଳନୀୟ, ତମର ଭିତରର ରୂପ ମଧ୍ୟ ଅତୁଳନୀୟ !

ମାଧୁରୀ ଟିକିଏ ତୁନି ରହି ଆସ୍ତେ କହିଲା, ପ୍ରଥମ ପ୍ରେମ ନିକଟରେ କେଉଁଥିର କିଛି ମୂଲ୍ୟ ନାହିଁ ।

ବକୁଳର ଛାତି ଭିତରଟା ଥରିଉଠିଲା, ବକୁଳର ମୁଣ୍ଡଟା ଯେମିତି ଝିମ୍‌ଝିମ୍ ହୋଇଗଲା । ନିଜ ସମ୍ବନ୍ଧରେ ପ୍ରେମ ଶବ୍ଦଟା ଅନ୍ୟଲୋକ ମୁହଁରେ ଏଭଳି ସ୍ପଷ୍ଟ ଭାବରେ ଉଚ୍ଚାରିତ ହେବାର ଏଥିପୂର୍ବରୁ କ'ଣ କୌଣସିଦିନ ଶୁଣି ନାହିଁ ବକୁଳ ? ପାରୁଲ ତ କେତେଥର କହିଛି । କିନ୍ତୁ ଏ ଯେପରି ଅନ୍ୟ କିଛି, ଆଉ କିଛି !

ନିର୍ମଳର ବାହାଘର କଥା ଆରମ୍ଭଠାରୁ ନିଜକୁ କେବଳ ଅପମାନିତ ମନେକରୁଥିଲା ବକୁଳ, ଏଠାରେ ହଠାତ୍ ନିଜକୁ ଯେପରି ଅପରାଧୀ ବୋଲି ଲାଗିଲା ତାକୁ । ଯେପରି ବକୁଳ ନିର୍ଲଜ୍ଜ ପରି କାହାର ନ୍ୟାର୍ଯ୍ୟ ପ୍ରାପ୍ୟରେ ଭାଗ ବସାଇ ରଖିଛି ! ଏଇଲେ ବକୁଳ ନିଜକୁ ସେହି ଦାବିଦାରଠାରୁ ଅନେକ ତୁଚ୍ଛ ବୋଲି ଭାବୁଛି । ଏହି ଝିଅଟି ପାଖରେ ସେ ଖାଲି ରୂପରେ ହିଁ ତୁଚ୍ଛ ନୁହେଁ, ମହିମାରେ ମଧ୍ୟ ଅନେକ ଊଣା । ନିଜକୁ ସେହି 'ତୁଚ୍ଛ'ର ଦରରେ ହିଁ ଦେଖିବାକୁ ଚେଷ୍ଟାକଲା ବକୁଳ । ମାଧୁରୀର କଥାଶୁଣି ହସିଉଠି କହିଲା, 'ଆରେ ବାଃ ! ଭାରି ଲମ୍ବା ଚଉଡ଼ା କଥା କହି ନିର୍ମଳଭାଇନା ତ ଦେଖୁଛି ତମ ପାଖରେ ନିଜର ଦର ବଢ଼ାଇ ଦେଇଛନ୍ତି । ସେସବୁ ହେଉଛି ଖାଣ୍ଟି କଳ୍ପିତ କଳ୍ପନାର କଥା, ବୁଝିଲ ?

—''ଏ କଥାଟା ତମେ ଲାଜ କରି କହୁଛ—'' ମୃଦୁ ହସି ମାଧୁରୀ କହିଲା— ଝିଅମାନେ ତ ସହଜରେ ହାର ମାନନ୍ତି ନାହିଁ । ପୁରୁଷଲୋକ ମନର କଥାରେ ଏତେ ଟାଣ ହୋଇପାରନ୍ତି ନାହିଁ । ତା' ଛଡ଼ା ସେ ତ ଏକାବେଳେ—

ମାଧୁରୀ ନିଜେ ହିଁ ବୋଧହୁଏ ଲାଜରେ ତୁନି ହୋଇ ଯାଇଥିଲା ।

ସେହି ପରମସୁନ୍ଦର ମୁହଁଟା ଆଡ଼କୁ ଯେପରି ମୋହଗ୍ରସ୍ତ ପରି ଚାହିଁରହିଲା ବକୁଳ— ଏହି ଐଶ୍ୱର୍ଯ୍ୟର ମାଲିକ ହୋଇଛି ନିର୍ମଳ ନାମଧାରୀ ପୁଅଟା ?

ବକୁଳ କ'ଣ ନିର୍ମଳକୁ ହିଂସା କରିବ ?

× × × × ×

ଏ ଯୁଗ ନିକଟରେ କି ହାସ୍ୟକର ଥିଲା ସେକାଳର ସେହି ପାଣିଚିଆ ପ୍ରେମ, ଭଲପାଇବା !

ଅନାମିକା 'ସେହି ବହୁଯୁଗର ସେପାରିରୁ ଭାସିଆସିବା ଆଷାଢ଼ ଆଡ଼କୁ ଚାହିଁ ପ୍ରାୟ ହସିଉଠିଲେ ।

ଏକାଳର ଝିଅମାନେ ଯଦି ବକୁଳର କାହାଣୀ ଶୁଣିବେ, ସ୍ରେଫ୍ କହିବେ— ଶ୍ରୀମତୀ ବକୁଳମାଳା, ତମକୁ ପ୍ରେମ୍‌ରେ ବାନ୍ଧି କାଛରେ ଚଙ୍ଗାଇ ରଖିବା ଉଚିତ । ତମେ କୁଆଡ଼େ ତମର ପ୍ରେମପାତ୍ରର ପ୍ରିୟାର ରୂପରେ, ଗୁଣରେ ମୁଗ୍ଧ ହୋଇ ତା'ର ସ୍ନେହରେ ନିବଦ୍ଧ ହେଲ ?

ତା'ର ସେହି ରୂପସୀ ପ୍ରିୟା ଯେତେବେଳେ କହିଲା— ତମକୁ କାହିଁକି ମୁଁ ଈର୍ଷା କରିବି ଭଉଣୀ । ସେ ତମକୁ ଏତେ ଭଲପାଆନ୍ତି ବୋଲି ତ ମୋର ମଧ ତମକୁ ଭଲପାଇବାକୁ ଇଛା ହେଉଛି, ଆଜିଠାରୁ ତମ ସଙ୍ଗେ ମୁଁ 'ବନ୍ଧୁ' ବସାଇଲି ।

ତମେ ସେତେବେଳେ ଏକବାରେ ବିଗଳିତ ହୋଇ ବନ୍ଧୁତ୍ୱର ଶପଥ ନେଲ ! ନିର୍ମଳ ନାଆଁର ସେହି ଭାବପ୍ରବଣ ପିଲାଟା ନ ହେଲା ଏବେ ପ୍ରଥମ ଝୁଙ୍କରେ ନୂଆବୋହୂ ନିକଟରେ 'ଅନେଷ୍ଟ୍' ହେଲା, ପ୍ରଥମ ପ୍ରେମର ବଡ଼ାଇ କରି କାବ୍ୟ ଲେଖିଲା, ହେଲେ ତମେ ସେହି ଫାନ୍ଦରେ ଧରା ଦେଲ କେମିତି ?

ଭଲ ତ କହିଥିଲ 'ବେଶୀ ଗଳ୍ପ-ଉପନ୍ୟାସ ପଢ଼ି ଏ ଢଙ୍ଗ ହୋଇଛି ନିର୍ମଳ ଭାଇନାଙ୍କର 'ଦେବଦାସ' ହେବାକୁ ଇଚ୍ଛା ହେଉଛି, 'ଶେଖର' ହେବାକୁ ଇଚ୍ଛା ହେଉଛି, ସେଇଥିପାଇଁ ତିଳକୁ ତାଳ କରି ତମ ପାଖରେ 'ହୀରୋ' ହୋଇଛନ୍ତି !

ଭଲ ତ କହିଥିଲ, 'ଏସବୁ ଆଜେବାଜେ କେତେଗୁଡ଼ାଏ କଥା ତମ ମୁଣ୍ଡରେ ପୂରାଇଦେଇ ନିର୍ମଳଭାଇନାଙ୍କର କି ଇଷ୍ଟ ସିଦ୍ଧ ହେଲା ଜାଣିନି ବାପା ! ବାଜେ କଥାରେ କାନ ଦିଅନି ।'

କହିଥିଲା, 'ସଂସାର ଜାଗାଟା ଖାଲି ବାସ୍ତବ ବୁଝିଲ ଭାଉଜ, ଏ ସବୁ କାବ୍ୟ-ଫାବ୍ୟ ଚଳିବନି ସେଠି,. ବିଶେଷତଃ ଯେଉଁଟା ପ୍ରବଳ ପ୍ରତାପୀ ଶ୍ରୀମତୀ ଦେଠେଇଙ୍କର ସଂସାର—'

ତା'ପରେ— ହଠାତ୍ ତେବେ ଏ ଝିଅଟାର କଅଁଳ ହାତଟିକୁ ହାତରେ ଧରି ସ୍ତବ୍ଧ ହୋଇ ବସିରହିଲା ଅନେକସମୟ ପର୍ଯ୍ୟନ୍ତ, କାହିଁକି ? କାହିଁକି ତା'ପରେ ଧୀରେ ନିଃଶ୍ୱାସ ପକାଇ କହିଲା, 'ଆଚ୍ଛା, ବନ୍ଧୁତ୍ୱ ବସାଇଲି ।' ତା'ମାନେ ତମର ସବୁ ଗର୍ବ ଧୂଳିସାତ୍ ହେଲା, ତମେ ଧରା ଦେଲ ।

ଏହି ସରଳ ପବିତ୍ରତା, ଗୋଟିଏ ପ୍ରେମପୂର୍ଣ୍ଣ ହୃଦୟ, ଗୋଟିଏ ହିଂସାଶୂନ୍ୟ, ଅହଙ୍କାରଶୂନ୍ୟ ନିର୍ମଳ ମନ ଅନେକ କିଛି ବଦଳାଇ ଦେଇପାରିବ ନିଶ୍ଚୟ । ସକଳ ଗର୍ବ ଚୂର୍ଣ୍ଣ କରିଦେଇ ଏକାବେଳେ ଜୟ କରି ଦେଇପାରିବ ସେ । ବକୁଳ ହାରିଲା । ମାଧୁରୀ ନାଁର ଝିଅଟାର ସେହି ଅଦ୍ଭୁତ ଜୀବନଦର୍ଶନ ଆକୃଷ୍ଟ କଲା ବକୁଳକୁ, ଆବିଷ୍ଟ କଲା ।

'ତମର ଓ ମୋର ଦୁଇଜଣଙ୍କର ସ୍ନେହର ପାତ୍ର ଯଦି ଜଣେ ଲୋକ, ସେତେବେଳେ ଆମ ପରି ଆପଣାଲୋକ ଆଉ କିଏ ଅଛି କହିଲ ସାଙ୍ଗ ? ତମେ ମଧ ତାଙ୍କର ମଙ୍ଗଳ ଚାହିଁବ, ମୁଁ ମଧ ତାଙ୍କର ମଙ୍ଗଳ ଚାହିଁବି, ତେବେ କେଉଁବାଟେ ବିରୋଧ ଆସିବ ? ମାଧୁରୀର ଜୀବନ ଦର୍ଶନ ହେଉଛି ଏଇଟା ।

× × × × ×

ଷୋହଳଅଣା ଅଧିକାରର ଦାବି ନେଇ ରାଜରାଜେଶ୍ୱରୀ ହୋଇ ଆସି ପ୍ରବେଶ କରିଥିଲା ସେ, ତେବେକେ କହିଥିଲା— ସେଇଥିପାଇଁ ତମ ନିକଟରେ ମୋର ଅପରାଧର ସୀମା ନାହିଁ । ସବୁବେଳେ ମନେହେବ— ବିନା ଦାବିରେ ଜୋର୍ କରି ଦଖଲ କରି ବସିଛି ମୁଁ ।

ବକୁଳ ହସିଥିଲା, କହିଥିଲା— ତମ ଭଳି ଏମିତି ଧର୍ମନିଷ୍ଠ ମହାମାନବୀ ସଂସାରରେ ଦି' ଚାରିଜଣ ଥିଲେ— ସଂସାର ସ୍ୱର୍ଗ ହୋଇଯାଆନ୍ତା ମାଧୁରୀ ! ନାହାନ୍ତି, ତେଣୁ ମର୍ତ୍ତ୍ୟଭୂମି ହୋଇ ପଡ଼ିରହିଛି ।

ଅବଶ୍ୟ ଠିକ୍ ସେଦିନ ଏତେକଥା କହିନି ବକୁଳ । ସେଦିନ ଖାଲି ସ୍ତବ୍ଧତାର ପାଲା ଚାଲିଥିଲା । କ୍ରମଶଃ ଦିନ ପରେ ଦିନ ଯିବା ଭିତରେ କଥା ଜମିଉଠିଛି ।

ତୁଚ୍ଛତାର ଗ୍ଲାନି, ବଞ୍ଚିବାର ଦାହ, ସବୁ ଦୂର ହୋଇଯାଇ ମନ ଅନ୍ୟ ଏକ ଅନୁଭୂତିରେ ଭରିଉଠିଛି ଏକାବେଳେ । ଆଉ ସେହି ଭରା ମନରେ 'ନିର୍ମଳ' ନାମଧାରୀ ମେରୁଦଣ୍ଡହୀନ ପୁଅଟା ଉପରେ ରାଗି ପାରିନି କି ବିରକ୍ତ ହୋଇନି ବକୁଳ । ନିଜ ଭିତରେ ଥିବା ଉଦାସୀନତାର ସେହି ମୂକ ପ୍ରାଚୀରଟିକୁ ଠିଆ କରି ରଖିପାରିନି ସେ ଯେଉଁଟାକୁ ନିର୍ମଳର ସାମନାରୁ ନିଜକୁ ଆଢୁଆଳ କରିବାକୁ ଚେଷ୍ଟା କରି ଗଢ଼ିଥିଲା । ବକୁଳ ପାରି ନାହିଁ, ବରଂ ନିର୍ମଳ ପାଇଁ ମମତା ହିଁ ଜମା ହୋଇଛି ।

ତେବେ ସେଦିନ ନୁହେଁ ।

ଯେଉଁଦିନ ମାଧୁରୀର ହାତରେ ହାତ ରଖି ବନ୍ଧୁତ୍ୱର ସଙ୍କଳ୍ପ ନେଉଥିଲା ସେଦିନ କାନ୍ଥଟାକୁ ବରଂ ବେଶୀ ମଜବୁତ କରିବାକୁ ଚେଷ୍ଟା କରିଥିଲା । ଖୁଡ଼ୀ ଯେମିତି କେଉଁଠି କି କାମରେ ହଜି ଯାଇଥିଲେ, ଟିକିଏ ପରେ ନିର୍ମଳ ଆସି ଠିଆ ହୋଇଥିଲା ଦ୍ୱାର ପାଖରେ । ନିଜଆଡୁ ଆସିବାକୁ ସାହସ ହୁଅନ୍ତା ନାହିଁ ନିର୍ମଳର କାରଣ ଏ ଘରେ ତା'ର ଦୁଇ ଦୁଇଟା 'ଅପରାଧ'ର ବୋଝ ରହିଛି । ଅଥବା ଦୁଇ ଦୁଇଟା ଆତଙ୍କର ବସ୍ତୁ । ସେଥିପାଇଁ ଘରଭିତରେ ପଶିବାକୁ ଇତସ୍ତତଃ ହେଉଥିଲା ସେ ।

ଯଦି ବକୁଳ ଦେଖିବ– ନିର୍ମଳ ନୂଆବୋହୂର ଆଖପାଖରେ ଘୂରି ବୁଲୁଛି ନିଷ୍ଠେ ଘୃଣାରେ, ଧିକ୍କାର କରି ହସି ପକାଇବ । ଆଉ ଦେଠେଇ ଯଦି ଦେଖନ୍ତି– ହତଭାଗ୍ୟ ଗଧଟା ବାହା ପରେ ମଧ୍ୟ ସେଇ ବଦ୍‌ମାସ୍ ଝିଅଟା ପାଖରେ ପାଖରେ ବୁଲୁଛି, ରସାତଳ କରି ଛାଡ଼ିବେ !– ସ୍ତ୍ରୀ ନିକଟରେ ? ନା, ସ୍ତ୍ରୀ ପାଇଁ ଭୟ ନାହିଁ ନିର୍ମଳର । ସ୍ତ୍ରୀ ନିକଟରେ ତ ନିଜକୁ ଉଦ୍‌ଘାଟନ କରି ଦେଇଛି ସେ, ତାକୁ କହିଛି ନିଜର ଆବାଲ୍ୟର ବ୍ୟାକୁଳତାର ଇତିହାସ । ସ୍ତ୍ରୀକୁ କହିଛି– ତାକୁ ଭୁଲିବାକୁ ମତେ ସମୟ ଲାଗିବ, ତମେ ମତେ କ୍ଷମା କର ।

ସ୍ତ୍ରୀ ସେତେବେଳେ ଗୋଟାଏ ଅଦ୍ଭୁତ ଆଶ୍ଚର୍ଯ୍ୟ କଥା କହିଥିଲା । କହିଥିଲା– ତମେ ଯଦି ତାକୁ ଭୁଲିଯିବ, ତା'ହେଲେ ବରଂ ତମକୁ କେବେ କ୍ଷମା କରି ପାରିବିନି ମୁଁ । ଭାବିବି– ତମେ ଜଣେ ଅସାର ମଣିଷ । "ତମେ ମୋର ଦୁଃଖ ବୁଝିପାରୁଛ ମାଧୁରୀ ?"...... ନିର୍ମଳର ଆଖିରୁ ଲୁହ ଝରିପଡ଼ିଥିଲା । ମାଧୁରୀ କହିଥିଲା– ମଣିଷର ପ୍ରାଣ ଥିଲେ ମଣିଷର ଦୁଃଖ ଜଣାପଡ଼େ । ମୁଁ କ'ଣ ସେହି ପ୍ରକାରର ମନପ୍ରାଣହୀନ ପାଷାଣୀ ବୋଲି ମନେ ହେଉଛି ତୁମର ? ତା'ପରେ ଅବଶ୍ୟ ନିର୍ମଳ କ'ଣ କହିଥିଲା– ସେକଥା ଅବଶ୍ୟ ବକୁଳ ଜାଣେନି । କିନ୍ତୁ ଏତେ କଥା ବକୁଳ ଜାଣିଲା ବା କିପରି ? ସେ କ'ଣ କାନ ଡେରି ଶୁଣିବାକୁ ନିର୍ମଳର ଘରକୁ ଯାଇଥିଲା ? ନା, ସେମିତି ଅସମ୍ଭବ ଘଟଣା ଘଟି ନାହିଁ ।

ନିର୍ମଳହିଁ ମଳିନ ବିଷଣ୍ଣ ମୁହଁରେ କହିଥିଲା । ନିର୍ମଳର ମୁହଁରେ ସେତେବେଳେ ଚନ୍ଦ୍ରାଲୋକ ପରି ଏକ ସ୍ନିଗ୍ଧ ଆଲୋକର ଆଭାସ ଫୁଟି ଉଠିଥିଲା । ନିର୍ମଳ ତା'ର ସେହି ଦେବୀ ପରି ଝିଅ ମାଧୁରୀର ହୃଦୟର ପରିଚୟ ପାଇ ମୁଗ୍ଧ ହେବାକୁ ଆରମ୍ଭ କରିଥିଲା, ସେତେବେଳେ ଧୀରେ ଧୀରେ ତା'ର ସ୍ନେହର ବନ୍ଧନରେ ପଡ଼ିବାକୁ ଆରମ୍ଭ କଲା । ଆଉ ସେଥିପାଇଁ ସେ ବ୍ୟାକୁଳ ହୋଇ ବକୁଳକୁ ବୁଝାଇବାକୁ ଚେଷ୍ଟା କରିଥିଲା ସେ କେତେ ନିରୁପାୟ ।

—ଯା ବଦଳରେ ଯଦି ଭାରି ଦୁଷ୍ଟ କଳିହୁଡ଼ୀ ଝିଅଟେ ମୋର ସ୍ତ୍ରୀ ହୋଇଥାନ୍ତା ?...... ନିଃଶ୍ୱାସ ପକାଇ କହିଥିଲା ନିର୍ମଳ ।

ବକୁଳ ହସିଦେଇଥିଲା । ଯେପରି ନିର୍ମଳଠାରୁ ବହୁତ ବଡ଼ ହୋଇଯାଇଥିଲା ବକୁଳ ସେତେବେଳେ ! ନିର୍ମଳର ବାହାଘର ନେଇ ଯେତେସବୁ ଘଟନା ଘଟିଥିଲା ସେହି ଘଟନାଗୁଡ଼ିକ ଯେପରି ବକୁଳକୁ ଠେଲି ହଠାତ୍ ଗୋଟିଏ ଦିନରେ ଗୋଟିଏ ଦଶକ ପାର କରାଇ ଦେଇଥିଲା । ବକୁଳର ଭାଉଜମାନେ କହିଥିଲେ— ବହୁତ ନିର୍ଲଜ୍ଜ ଝିଅ ଦେଖିଛୁ ବାପା, ହେଲେ ସାନ ନଣନ୍ଦଙ୍କ ପରି ଏମିତି ଦେଖି ନ ଥିଲୁ ! ନ ହେଲେ ସେ ବାହାଘରେ ନିମନ୍ତ୍ରଣ ଖାଇଲେ, ପଦ୍ୟ ଲେଖିଦେଲେ !

ବକୁଳର ବାପା କହିଥିଲେ— ଯିବାକୁ ପଡ଼ିବ ! ଏତେ ଲାଜ କାହିଁକି ? ଦେହ ଖରାପ ବୋଲି ଘରେ ରହିଯାଇଥିଲେ ଚଳି ନ ଥାନ୍ତା ? କେହି ତ ଆଉ କିଛି କହିପାରି ନ ଥାନ୍ତେ ।

ବକୁଳର ପ୍ରେମର କଥା ଅନୁମାନରେ ପ୍ରାୟ ସମସ୍ତେ ଜାଣିଥିଲେ । ବଡ଼ଭାଇମାନେ କହିଲେ— ସେ ଘରର କକେଇ ତ ନିଜେ ଆସିଲେ, ନ ହେଲେ ଆମେ ଗୋଟିଏ ପ୍ରାଣୀ ହେଲେ ଯାଇ ନ ଥାନ୍ତୁ । ହେଲେ ଭାବି ନ ଥିଲୁ ବକୁଳ ମଧ୍ୟ ଯିବ !

କଥାଟା ସମସ୍ତେ ଜାଣିଥିଲେ ମଧ୍ୟ କେହି କେବେ କହି ନ ଥିଲେ । ପାରୁଲର ବ୍ୟର୍ଥ ଚେଷ୍ଟା ସବୁ ଉଦ୍‌ଘାଟିତ କରିଦେଲା । ପାରୁଲର ବ୍ୟର୍ଥତା ପରେ ସେ ଚାଲିଗଲାରୁ ଦେଠେଇ ଦିନେ ଏ ଘରକୁ ଆସି ମିଷ୍ଟ ମଧୁର ବଚନରେ ଅନେକ କଥା ଯାଚ୍ଛାତାକିନା କହିଦେଇଗଲେ ଏବଂ ବୋହୂମାନଙ୍କ ଉପରେ ପରିବାରର ସୁନାମ ରକ୍ଷାର ଭାର ଦେଇଗଲେ । କହିଲେ— ଶାଶୁ ନାହାନ୍ତି, ତମେମାନେହିଁ ଦାୟୀ । ଯେତେଦିନପର୍ଯ୍ୟନ୍ତ ବାହା ନ ଦେଇଛ, ନଣନ୍ଦକୁ ଆଖିରେ ଆଖିରେ ରଖିବାର ଦାୟିତ୍ୱ ତମର, ଆଉ ସ୍ୱାମୀ-ଶ୍ୱଶୁରଙ୍କୁ କହି ଚଞ୍ଚଳ ବାହାଘରଟା କରେଇଦିଅ । ବୟସ ତ ଗଛ ବଢ଼ିଲା ଭଳି ବଢ଼ିଯିବ ।

ସେ କଥା ବକୁଳର କାନକୁ ଯାଇନି ତା' ନୁହେଁ । ସେଭଳି କଥା ପରେ ଯେ ପୁଣି କେଉଁ ଝିଅ ଆଉଥରେ ସେ ଘରକୁ ଯାଇପାରିବ, ଏ କଥା ଭାଉଜମାନେ ଭାବିପାରୁ ନାହାନ୍ତି । ଅଥଚ ବକୁଳ ଯାଇଛି । ସେହି ବକୁଳ ଦେଠେଇଙ୍କୁ ସେମାନଙ୍କ ଘରର ପ୍ରକୃତ ମାଲିକ ବୋଲି ଭାବେନି ।

ବାହା ହୋଇ ଫେରି ନିର୍ମଳର ମୁହଁଟା କିପରି ଦିଶୁଛି ଦେଖିବାକୁ ବହୁତ ଇଚ୍ଛା ହୋଇଥିଲା । କିନ୍ତୁ ବକୁଳ ଉଦାସୀନ ହୋଇଥିଲା, ନିଷ୍ଠୁର ହୋଇଥିଲା ।

ନିର୍ମଳ ଯେତେବେଳେ ସେହି ଭୋଜିଘରର ଗୋଳମାଳରେ ଥରେ ବକୁଳର ନିତାନ୍ତ ନିକଟକୁ ଆସି ରୁଦ୍ଧ ଗଭୀର ଗଳାରେ ଡାକିଥିଲା– 'ବକୁଳ !'

ବକୁଳ ସେତେବେଳେ ବ୍ୟସ୍ତ ହୋଇ କହିଥିଲା– ଏ ମା' ତମେ ଏଇଠି ? ଦେଖିବ ଯାଅ ତମର ଶ୍ୱଶୁରଘର ଲୋକମାନେ ଆସିଯାଇଛନ୍ତି ବୋଧହୁଏ ! ଯାଅ ଯାଅ ।

ନିର୍ମଳ ଆହୁରି ନିକଟକୁ ଆସି କହିଥିଲା– "ବକୁଳ, ତମେ ମତେ କ'ଣ ଭାବୁଛ ଜାଣେନି–" କଥା ସାରିବାକୁ ଦେଲାନି ବକୁଳ । କହିଥିଲା– ହଠାତ୍ ମୁଁ ତମକୁ କ'ଣ ଭାବୁଛି, ସେ ବିଷୟ ନେଇ ମୁଣ୍ଡ ଘୂରାଉଛ କାହିଁକି ? ଆଉ ତମ ବିଷୟରେ ମୁଁ ବା ଭାବିବାକୁ ଯିବି କାହିଁକି ?

– ବକୁଳ –

– ସବୁକିଛିର ଗୋଟାଏ ସୀମା ଅଛି ନିର୍ମଳ ଭାଇନା– କହି ଚାଲିଯାଇଥିଲା ବକୁଳ ।

ଆଉ ତା'ପରଠାରୁ ଯେତେଥର ନିର୍ମଳ ନିକଟକୁ ଆସିବାର ଚେଷ୍ଟା କରିଥିଲା, ବକୁଳ ଦୂରକୁ ଚାଲି ଆସିଥିଲା । କିନ୍ତୁ ସେଦିନ ଘରେ ନୂଆବୋହୂ ଥିଲା । ଘରର ଦୁଆର ପାଖରେ ଠିଆହୋଇ ନିର୍ମଳ ଯେପରି କାହାକୁ ଉଦ୍ଦେଶ୍ୟ କରି କହିଲା– ମା' କହିଲେ ମା' ଏଇଲେ ଆଉ ଆସିପାରିବେନି, ସବୁ ଜିନିଷ ଆଲମାରି ଭିତରେ ରଖିଦିଅ । ହାତର ଜିନିଷଗୁଡ଼ାକୁ ତଳେ ରଖିଦେଇ ବକୁଳ କହିଥିଲା– ହୁକୁମ୍ ଶୁଣିଲତ ଭାଉଜ ? ତା'ହେଲେ ତମେ ରଖିଦିଅ, ବରଂ ବରର ଟିକିଏ ସାହାଯ୍ୟ ନିଅ । କହି ନିର୍ମଳର ପାଖବାଟ ଦେଇ ଚାଲିଆସିଥିଲା ବକୁଳ !

ବକୁଳର ସେହି ନିଷ୍ଠୁରତା କଥା ଭାବି ଅନାମିକା ଦେବୀଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି । ସେଦିନ ବକୁଳ ଏତେ ନିର୍ମମ ହୋଇଥିଲା କିପରି ? କେଉଁ ପଦଗୌରବ ବା ଥିଲା । ନିର୍ମଳର ସ୍ତ୍ରୀ ତ ବକୁଳଠାରୁ ଦଶଗୁଣ ସୁନ୍ଦର । ତା'ପରେ ପୁଣି ଥିଲାବାଲା ଘରର ଝିଅ । ଆଉ ବକୁଳ ?

କିଛି ନୁହେଁ । ସେ ତ ଖାଲି ନିର୍ମଳର ଦିଆ ମର୍ଯ୍ୟାଦାରେ ଏତେବେଶୀ ମୂଲ୍ୟବାନ । ଅଥଚ ବକୁଳ–

କିନ୍ତୁ ତା'ପରେ ବକୁଳ ବଦଳିଗଲା !

ନିର୍ମଳର ବାହାଘର ପରେ ପରେ ଦେଠେଇ ବୋଧହୁଏ ନିଶ୍ଚିନ୍ତ ହୋଇ କିଛି ବାନ୍ଧବୀ ଯୋଗାଡ଼ କରି କେଦାର ବଦରୀ ଗଲେ । ସେହି ପରମ-ସୁଯୋଗରେ

ନିର୍ମଳର ମା' ଆଉ ସ୍ତ୍ରୀ ଏ ଘର ଓ ସେ ଘରକୁ ଗୋଟିଏ କରିପକାଇଲେ । ମାଧୁରୀର ତ ଏ ଘରଟା ହିଁ ହେଲା ଗୋଟିଏ ବୁଲିବାକୁ ଆସିବାର ଜାଗା ! ନିର୍ମଳର ମା' ମଧ୍ୟ ଯେମିତି ଗୋଟିଏ ଭାରି ଚକିର ତଳୁ ବାହାରିଆସି ଦୁଇଦିନପାଇଁ ରକ୍ଷା ପାଇଯାଇଥିଲେ ।

ଏହି ମୁକ୍ତି ଭିତରେ ମାଧୁରୀ ଯେପରି ବକୁଳକୁ ଏକ ନିବିଡ଼ ବନ୍ଧନରେ ବାନ୍ଧି ପକାଇଲା । ଆଉ ସେଥିଯୋଗୁ ନିର୍ମଳ ସଙ୍ଗେ ସମ୍ପର୍କଟା ହଠାତ୍ ଆଶ୍ଚର୍ଯ୍ୟ ଭାବରେ ସହଜ ହୋଇଗଲା ।

ବକୁଳ ଯେପରି ମାଧୁରୀର ବେଶୀ ଆପଣାର ଲୋକ ହୋଇଗଲା । ସେ ଯେପରି ବ୍ୟବହାରରେ ନିର୍ମଳର ଶାଳିକାର ଭୂମିକା ନେଲା । ପ୍ରଖର କୌତୂହଳମୟୀ ମୁଖରା !

ହଁ ସେତିକିବେଳୁ ଏକାବେଳେ ବଦଳି ଯାଇଥିଲା ବକୁଳ । ଅଳ୍ପଦିନ ଆଗେ କେଡ଼େ ଭୀରୁ ଆଉ ଲାଜକୁଳୀ ଥିଲା ସେ । ସେହି ଭୀରୁ କୁଣ୍ଠିତ ଲାଜକୁଳୀ କିଶୋରୀର ଖୋଳରୁ ଯେପରି ଆଉ ଜଣେ ବାହାରିଆସିଛି । ପ୍ରଖରା ପୂର୍ଣ୍ଣଯୌବନା, ଅସମ ସାହସିକା ନାରୀ ।

ତା'ର କଥାବାର୍ତ୍ତାକୁ ଡରୁଥିଲା ନିର୍ମଳ, ଆଶ୍ଚର୍ଯ୍ୟ ହେଉଥିଲା, ଆଉ ବୋଧହୁଏ ଆହୁରି ଅଧିକ ଆକୃଷ୍ଟ ହେଉଥିଲା । ବକୁଳ ସେତେବେଳେ ତାକୁ ବ୍ୟଙ୍ଗ-କୌତୁକର ଛୁରୀରେ ବିଦ୍ଧ କରିଦେଉଥିଲା ! ସେହି କୌତୁକରେ ହସୁଥିଲା ମାଧୁରୀ, କୌତୁକବୋଧ କରୁଥିଲା ।

କେଦାର-ବଦରୀ ବୁଲି ଆସିଲା ପରେ ଦେଠେଇ ଦେଖିଲେ ସଂସାରର ଯେଉ ଜାଗାଟିରୁ ସେ ଚାଲିଯାଇଥିଲେ, ସେ ଜାଗାଟି ଆଉ ନାହିଁ ଯେମିତି । ଯେପରି କିଏ ତାଙ୍କର ଶୂନ୍ୟ ସିଂହାସନଟାକୁ ଗୋଟାଏ କଣକୁ ଠେଲି ଦେଇ ନିଜର ଆସନ ବିଛାଇ ଦେଇଛି ! ହୁଏତ ସଂସାରରେ ଏମିତି ହିଁ ହୁଏ ।

କୌଣସି ଶୂନ୍ୟ ସ୍ଥାନ ଶୂନ୍ୟ ରହେ ନାହିଁ । ଅନ୍ୟ କିଛି ଆସି ସେ ସ୍ଥାନକୁ ଦଖଲ କରିଦିଏ । ନିର୍ମଳର ସ୍ତ୍ରୀ ଯେପରି ଦେଠେଇଶାଶୁଙ୍କଠାରୁ ବେଶୀ ପ୍ରାଧାନ୍ୟ ଦିଏ ନିଜ ଶାଶୁଙ୍କୁ । ପୁରୁଣା ଚାକରାଣୀ-ଚାକରଗୁଡ଼ାକ ମଧ୍ୟ ଯେପରି ଆଉ ବଡ଼ ମା'ଙ୍କ ଡରରେ ଭୟରେ ତଟସ୍ଥ ହୁଅନ୍ତି ନାହିଁ । ଖାଲି ନିର୍ମଳ ହିଁ ଥିଲା ଆଗର ମୂର୍ତ୍ତିରେ ।

ବଡ଼ମା' ଏ ଦୃଶ୍ୟ ଦର୍ଶନରେ ଅଣ୍ଟା ଭିଡ଼ି ଆଉଥରେ ନୂଆ କରି ଚେଷ୍ଟା କରୁଥିଲେ ଦୁଇଟା ଘରର 'ଶ୍ରୀକ୍ଷେତ୍ର' ଭାବଟାକୁ ଦୂର କରି ଦେବାକୁ, ଏତିକିବେଳେ 'ମୋତିହାରୀ'କୁ ବଦଳି ହୋଇଗଲା ନିର୍ମଳ । ମାଧୁରୀ ସ୍ୱାମୀ ସହିତ ଚାଲିଗଲା ।

ହୁଏତ ସେଇଟାହିଁ ବକୁଳ ପ୍ରତି ତା'ର ବିଧାତାଙ୍କ ଆଶୀର୍ବାଦ । ଦେଠେଇ ପୁଣି ନୂଆକରି କି କଳଙ୍କ ଲଗାଇଥାନ୍ତେ ବକୁଳ ନାଁରେ କିଏ ଜାଣିଛି । କାରଣ ଦିନେ ଘରକୁ ଆସି କଳି କରିଦେଇଗଲେ ସେ । କହିଲେ– ଏ ଯୁଗରେ ଆଉ ଜାତି ଯାଏ ନାହିଁ ବୋଲି କ'ଣ ଝିଅର ବାହାଦେବନି ପ୍ରବୋଧ ? ଝିଅକୁ ବସେଇରଖିବ ?

ପ୍ରବୋଧଚନ୍ଦ୍ର ମୁଣ୍ଡ ତଳକୁ କରିଥିଲେ । କିଛି କହିପାରି ନ ଥିଲେ ସେ । ତା'ପରେ ସେ ଚାଲିଯିବା ପରେ ବକୁଳ ଉପରେ ସବୁତକ ରାଗ ଝଡ଼େଇଥିଲେ ।

ଯାଉ ସେ ସବୁ କଥା । ଏବେ ଆଉ ସେ ବିଷୟ ନେଇ ଭାବିବାର କିଛି ନାହିଁ । ତା'ପରେ ନିର୍ମଳ ଅନେକଦୂରକୁ ଚାଲିଗଲା । ମୋତିହାରୀ ପରି ନୁହେଁ, ଅନେକ ଅନେକ ଦୂରକୁ । କିନ୍ତୁ ସେ କଥା କେବେ ହୋଇଥିଲା ? ସେତେବେଳେ ବକୁଳ କେଉଁଠି ଥିଲା ? ସେତେବେଳେ କ'ଣ ତା'ର ସେହି ବକୁଳ ନାମର ଖୋଳପାଟା ଭିତରେ ହିଁ ଆବୃତ ଥିଲା ସେ ?

ନା, ସେତେବେଳେ ଆଉ ବକୁଳ ନାଁର ପରିଚୟ ଟିକକ ଭିତରେ ହିଁ ନିମଗ୍ନ ନ ଥିଲା ସେ । ବିଞ୍ଛିହୋଇ ପଡ଼ିଥିଲା ଆଉ ଏକ ନୂଆ ନାଁର ସ୍ୱାକ୍ଷର ସହିତ । ସେହି ନୂତନ ନାଁଟାର ଭେଳାରେ ବସି ବାହାରି ଆସିଥିଲା ନାଳରୁ ନଦୀକୁ, ଖାଲରୁ ସମୁଦ୍ରକୁ !

କ୍ରମଶଃ ସେହି ନୂତନ ନାମଟା ହିଁ ପୁରୁଣା ହୋଇଯାଇଛି, ପରିଚୟ ଉପରେ ଟାଣୁଆ ଚୋପା ଭଳି ଅଟକି ଯାଇଛି । କିନ୍ତୁ ସେତେବେଳେ ମଧ୍ୟ ଏତେ ଜୋର୍‌ରେ ଲାଗି ନ ଥିଲା । ସେତେବେଳେ ସେହି ନୂତନ ନାଁଟାର ଭେଳାଟି ଯେପରି ନିଃଶବ୍ଦରେ ଘାଟରେ ଆସି ଲାଗିଥିଲା । ସେ ଯେ ବକୁଳ ନାଆଁର ତୁଚ୍ଛ ପ୍ରାଣୀଟାକୁ 'ନାମ' 'ଖ୍ୟାତି' 'ପରିଚିତି'ର ଅନେକ ଘାଟରେ ନେଇ ପହଞ୍ଚାଇଦେବ, ଏଭଳି କିଛି ପ୍ରତିଶ୍ରୁତି ବହନ କରି ଆଣି ନ ଥିଲା । ବରଂ ଅନେକ ବେଶୀ ଅପ୍ରୀତିକର ଅଥଚ କୌତୁକାବହ ଘଟଣା ଘଟାଇଥିଲା ।

ତା' ଭିତରେ ସର୍ବପ୍ରଥମ ଘଟଣା ହେଉଛି ସେଇ ନାଁରେ ଗୋଟାଏ ଲଫାଫା ଆସିବା । ଚିଠିଟି ପଡ଼ିଥିଲା ପ୍ରବୋଧଚନ୍ଦ୍ର ହାତରେ । କାରଣ ସେ ସର୍ବଦା ବାହାର ଘରେ ବସିଥାନ୍ତି, କେବଳ ରାତିରେ ଦୋତାଲାରେ ଚଢ଼ନ୍ତି । ପାହାଚ ଚଢ଼ିବାକୁ କଷ୍ଟ ହୁଏ । ରାସ୍ତାକୁ ମଧ୍ୟ ଆଉ ବାହାରୁ ନ ଥିଲେ !

ରୋଗୀ ସାଜି ନିଜ ରାସ୍ତାରେ ନିଜେ କଣ୍ଟା ପକାଇ ରଖିଛନ୍ତି ପ୍ରବୋଧଚନ୍ଦ୍ର । ପିଲାମାନେ ଯଦି କେତେବେଳେ କହିଛନ୍ତି– ବାବା, ଆପଣ ସବୁବେଳେ ଏକମହଲାର

ଏ ବନ୍ଦ ତଳ ଘରଟାରେ ବସି ରହୁଛନ୍ତି, ବାହାରେ ଟିକିଏ ବୁଲିଆସିଲେ ହୁଅନ୍ତା ନାହିଁ ?

କ୍ଷୁବ୍ଧ ଭର୍ତ୍ସନାରେ ସେମାନଙ୍କୁ ଧିକ୍କାର ଦେଇଛନ୍ତି ସେ— ବୁଲି ଆସିଲେ ? ବୁଲି ଆସିବାର ଯଦି କ୍ଷମତା ଥାଆନ୍ତା ମୁଁ ସବୁବେଳେ କୂଅ ବେଙ୍ଗ ପରି ଏଠି ପଡ଼ିଥାଆନ୍ତି ? ତୁମେମାନେ କହିବ ତା'ହେଲେ ଯାଇ ବାହାରିବି, ଏଇଥିପାଇଁ ? ମୋର ପ୍ରାଣ କ'ଣ ରୁନ୍ଧି ହୋଇଯାଉନି ? କ'ଣ କରିବି, ଭଗବାନ ତ ସବୁ କ୍ଷମତା କାଢ଼ି ନେଇଛନ୍ତି । ତମେମାନେ ବିଶ୍ୱାସ ନ କର, ଭଗବାନ ଜାଣୁଛନ୍ତି ମୋ' ଦେହ ଭିତରେ କ'ଣ ହେଉଛି ! ଗୋଡ଼-ହାତ ଉଠାଇଲାକ୍ଷଣି ଧରୁଛି, ଆଖିରେ ଅନ୍ଧାର ଦେଖୁଛି !......

ଅତଏବ ପ୍ରବୋଧଚନ୍ଦ୍ର ସେଇ କୂଅର ବେଙ୍ଗ ପରି ହିଁ ମଳିନ ସତରଞ୍ଜି ବିଛା ଖଣ୍ଡେ ଆରାମଚଉକିରେ ଦେହଭାରକୁ ଅର୍ପଣ କରି ବସି ବସି ହିସାବ ରଖନ୍ତି— କିଏ କେତେବେଳେ ବାହାରୁଛି, କିଏ କେତେବେଳେ ଫେରୁଛି, ଗଉଡ଼ କେତେ ଦୁଧ ଦେଉଛି, ଧୋବା କେତେ କୋଡ଼ି ଲୁଗାର ବୁଜୁଳା ଦିଆନିଆ କରେ, ଡାକବାଲା କାହା କାହା ନାଁରେ କେତେବେଳେ ଚିଠି ଆଣେ ।

ସବୁଠାରୁ ବେଶୀ ଆକର୍ଷଣୀୟ ହେଉଚି ଚିଠିଗୁଡ଼ିକ ।

ଡାକବାଲା ହାତରୁ ଆଗ୍ରହରେ ପ୍ରାୟ ଟାଣିନେଇ ପ୍ରବୋଧଚନ୍ଦ୍ର ସେଗୁଡ଼ିକୁ କିଛିସମୟ ପାଇଁ ନିଜ ପାଖରେ ହିଁ ରଖନ୍ତି ! ଚଟ୍ କରି ଯାହାର ଜିନିଷ ତାକୁ ଡାକି ଦେଇ ଦିଅନ୍ତି ନାହିଁ, ଏପରିକି ସେହି ଲୋକ କୌଣସି କାରଣରୁ ଏ ଘରକୁ ଆସିଥିଲେ ମଧ୍ୟ, ଚଟ୍‌କିନା ତକିଆତଳେ ଗୁଞ୍ଜିଦିଅନ୍ତି ଚିଠିଗୁଡ଼ିକ ନିଜ ପାଖରେ ଆଉକିଛି ସମୟ ରଖିବା ପାଇଁ ।

କାହିଁକି ?

ଉତ୍ତରଟା ପ୍ରବୋଧଚନ୍ଦ୍ର ନିଜେ ମଧ୍ୟ କହିପାରିବେକି ନାହିଁ ସନ୍ଦେହ । ତେବେ ସେ ଜାଣିଛନ୍ତି ଯେଉଁ ଚିଠି ଯାହାର ନାଁରେ ପଛକେ ଆସୁ ପୋଷ୍ଟକାର୍ଡ଼ଗୁଡ଼ିକ ପଢ଼ିପକାଇବା କର୍ତ୍ତବ୍ୟ ତାଙ୍କର ଏବଂ ଲଫାଫାର ଚିଠିର ନାମ ଓ ଠିକଣାର ଅଂଶଟିକକ ବାରମ୍ବାର ପଢ଼ି ପଢ଼ି ଅନୁମାନ କରିନେବେ କାହା ପାଖରୁ ଆସିଛି ଏ କଥାଟା ନିହାତି ଦରକାର ତାଙ୍କର । ବେଶୀ ଭାଗ ଚିଠି ଅବଶ୍ୟ ବୋହୂମାନଙ୍କ ବାପଘରୁ ଆସେ, ହାତରେ ଲେଖାଟା ଅନୁମାନ କରିବାକୁ ଭ୍ରୂକୁଞ୍ଚିତ କରି ବାରମ୍ବାର ଦେଖୁଥାନ୍ତି ପ୍ରବୋଧଚନ୍ଦ୍ର ଏବଂ ସ୍ମରଣ କରିଥାଆନ୍ତି ଏ ହସ୍ତାକ୍ଷରର ଚିଠି କେବେ ଆସିଥିଲା ।

ଚଞ୍ଚଳ ଆସିଥିଲେ ମୁହଁ ମୋଡ଼ନ୍ତି, ମନେ ମନେ କହନ୍ତି— ଓଃ ଝିଅ ପାଇଁ ମନ କେମିତି ଏକାବେଳେ ଉଛୁଳି ଉଠୁଛି । ସବୁଦିନେ ଚିଠି !— ଆଉ ମୋର ନିଜ ଲୋକମାନେ ? ଝିଅମାନେ ? ଯୋଇଁମାନେ ? ପୁଅଟି ? ଦିଲ୍ଲୀ ଦରବାରରେ (ଏ ବ୍ୟାଖ୍ୟାଟି ପ୍ରବୋଧଚନ୍ଦ୍ର କରନ୍ତି) ଯେ ଅଧିଷ୍ଠିତ ? କାହିଁ ବୁଢ଼ା ବାପ ବୋଲି ମାସରେ ଖଣ୍ଡେ ପୋଷ୍ଟକାର୍ଡ଼ ସୁଦ୍ଧା ଲେଖନ୍ତିନା ସେମାନେ ? ଦୁଇପଇସାର ଧନ୍ଦା !

ଏ ଚିଠିଗୁଡ଼ିକୁ ଯେପରି ଛିଣ୍ଡାଇ ପକାଇଦେବାକୁ ପ୍ରବୋଧଙ୍କର ଇଚ୍ଛା ହୁଏ । ଖାଲି ପୋଷ୍ଟକାର୍ଡ଼ଗୁଡ଼ାକରେ ଟିକିଏ ମାଦକତା ଅଛି, ପଢ଼ିପକାଇ ତାଙ୍କର ଅଜଣା ଅନେକ ଖବର ଜାଣିହୋଇଯାଏ । ପ୍ରବାହିତ ସଂସାରର କୌଣସି ଘଟଣା ତରଙ୍ଗକୁ ହିଁ ତ କେହି ପ୍ରବୋଧଚନ୍ଦ୍ରଙ୍କ ପାଖକୁ ଆସି ପହଞ୍ଚାଇ ଦେଇଯାଆନ୍ତି ନାହିଁ । ପ୍ରବୋଧଚନ୍ଦ୍ର ନିଜେ ହିଁ ଉପରେ ପଡ଼ି ପଚାରି ପଚାରି ସେଇ ଟିକକ ସଂଗ୍ରହ କରନ୍ତି ।

ନା, ପରର ଚିଠିକୁ ପଢ଼ିବା କିଛିମାତ୍ର ଗର୍ହିତ କାର୍ଯ୍ୟ ବୋଲି ଭାବନ୍ତି ନାହିଁ ପ୍ରବୋଧଚନ୍ଦ୍ର । ଘରର କର୍ତ୍ତା ହିସାବରେ ସେ ଟିକକ ତାଙ୍କର କାର୍ଯ୍ୟ ଅଧିକାର ବୋଲି ହିଁ ଭାବନ୍ତି ସେ । ତେବେକେ ଲଫାଫାର ଚିଠି ଖୋଲିବାକୁ ତାଙ୍କର ସାହସ ହୁଏ ନାହିଁ । ଅନେକଥର ଓଲଟପାଲଟ କରି ଅନେକ ସମୟ ନିଜପାଖରେ ରଖିଦେଇ ଶେଷକୁ ଯେପରି ଘର ଭିତରକୁ କେହି ଆସିଲାମାତ୍ରେ ଫୋପାଡ଼ିଲା ପରି ଦେଇଦିଅନ୍ତି ।

ଏ ଚିଠିଟିକୁ ହାତରେ ଧରି ପ୍ରବୋଧଚନ୍ଦ୍ରଙ୍କର ଚକ୍ଷୁ ବିସ୍ଫାରିତ ହୋଇଗଲା । ଏ ପୁଣି କାହା ନାଁର ଚିଠି ?

ଲଫାଫାଟା, ଏଇ ଘରର ଠିକଣା, ଅଥଚ ମାଲିକଙ୍କ ନାଁଟା ସମ୍ପୂର୍ଣ୍ଣ ଅଜଣା, ତା'ଛଡ଼ା ଚିଠିଟା ପ୍ରବୋଧଚନ୍ଦ୍ରଙ୍କ କେୟାର୍‌ରେ ଆସିନି । ଚିଠି ଯାହା ପାଇଁ ଆସୁ ପଛକେ ଠିକଣା ଜାଗାରେ ପରିଷ୍କାର ଅକ୍ଷରରେ— କେୟାର୍ ଅଫ୍ ପ୍ରବୋଧଚନ୍ଦ୍ର ମୁଖୋପାଧ୍ୟାୟ ତ ନିଶ୍ଚୟ ଲେଖା ଥାଏ । ଯାହା ରୀତି ! ଯାହା ସତ୍ୟନୀତି !

ଅଥଚ ଏ ଚିଠିରେ ସେହି ସୁରୀତି ଲଂଘନ କରାଯାଇଛି । କର୍ତ୍ତା ପ୍ରବୋଧଚନ୍ଦ୍ରଙ୍କ କର୍ତ୍ତୃତ୍ୱକୁ ଅସ୍ୱୀକାର କରାହୋଇଛି । କ'ଣ ଅନ୍ୟ କାହା ଘରର ଚିଠି ? ଭୁଲ୍‌ରେ ଆସିଯାଇଛି । ତା' ମଧ୍ୟ କେମିତି କହିବ ? ହେଇଟି ତ ସ୍ପଷ୍ଟ ପରିଷ୍କାର ଅକ୍ଷରରେ ଲେଖାହୋଇଛି— ତେର ଦୁଇ ରାଜେନ୍ଦ୍ରଲାଲ ଷ୍ଟ୍ରୀଟ୍ !

ତେର ଏକ ହେଉଛି ନିର୍ମଳ ଘର, ତେର ଦୁଇ ପ୍ରବୋଧଚନ୍ଦ୍ରଙ୍କର । ତା'ହେଲେ ଏ ଚିଠିର ଅଧିକାରିଣୀ କିଏ ? କ'ଣ ବୋହୂମାନଙ୍କର ଗେହ୍ଲା ନାଁ ଏଇଟା ? ନା ବଡ଼ବୋହୂର ସେ ଯୋଉ ଝିଆରୀଟା କେତେଦିନ ହେଲା ଆସି ରହିଛି, ତା'ର ?

କିନ୍ତୁ ଦଶ୍ତି-ପିନ୍ଧା ଦଶ-ବାର ବର୍ଷର ଝିଅ ନାଁରେ ଏମିତି ଲଫାଫା ଭିତରେ ଚିଠି ଆସିବ ?

ଦୁର୍ଦ୍ଦମନୀୟ କୌତୂହଳରେ ଲଫାଫାଟାର ମୁହଁରେ ଟୋପାଏ ପାଣି ପକାଇ ଟେବୁଲରେ ରଖିଲେ ପ୍ରବୋଧଚନ୍ଦ୍ର, ଲଫାଫାର ଅଠାଟା ଭିଜିଯାଇ ଖୋଲିଯିବ ! କିନ୍ତୁ ଅଦୃଷ୍ଟର ପରିହାସ ହେତୁ ଠିକ୍ ସେଇ ମୁହୂର୍ତ୍ତରେ ବାପାଙ୍କ ପାଇଁ ଦୁଧ ଗିଲାସ ଧରି ଘରଭିତରେ ପ୍ରବେଶ କଲା ବକୁଳ !

ଅପ୍ରସ୍ତୁତ ହୋଇ ଚିଠିଟାକୁ ଲୁଚାଇବାକୁ ଭୁଲିଗଲେ ପ୍ରବୋଧଚନ୍ଦ୍ର । ଆଉ ତାଙ୍କ କପାଳ ଏମିତି– ସାଙ୍ଗେ ସାଙ୍ଗେ ବକୁଳର ନଜର ପଡ଼ିଗଲା ଚିଠିଟା ଉପରେ ! ମନେ ମନେ ଝିଅକୁ ଡରୁଥିଲେ ସେ । ଭୟ କରିବାର କୌଣସି ସ୍ପଷ୍ଟ କାରଣ ନ ଥିଲେ ମଧ୍ୟ ଭୟ କରନ୍ତି । ଆଉ ସେହି ଭୟ ଯୋଗୁ– ବକୁଳ ଯେତେବେଳେ ତୀକ୍ଷ୍ଣ ଦୃଷ୍ଟିରେ ଚିଠିଟା ଆଡ଼କୁ ଚାହିଁ ପଚାରିଲା– ଚିଠିଟାରେ ପାଣି ପଡ଼ିଲା କେମିତି ?

ପ୍ରବୋଧଚନ୍ଦ୍ର କହିପକାଇଲେ– ପାଣି ନୁହେଁ, ଏ– ଝାଳ । ଟପ୍‌କିନା ଚିଠିଟା ଉପରେ ପଡ଼ିଗଲା, ସେଇଥିପାଇଁ ପବନରେ–

ଝାଳ ! ହତବାକ୍ ଦୃଷ୍ଟିରେ ବକୁଳ ବାପା ଆଡ଼କୁ ଚାହିଁଥିଲା । ତା'ପରେ ଶୀତର ଅଗ୍ରଦୂତ ହେମନ୍ତକାଳର ଝାପ୍‌ସା ଆକାଶ ଆଡ଼କୁ ଚାହିଁଥିଲା ଆଉ ତା'ପରେ ତା' ମୁହଁରେ ଫୁଟିଉଠିଥିଲା ଟିକିଏ ଅତି ସୂକ୍ଷ୍ମ ହସ । ସେ ହସଟା ବଦଳରେ ଗୋଟାଏ ବେତମାଡ଼ ଖାଇଥିଲେ ମଧ୍ୟ ଯେମିତି ଭଲଲାଗିଥାନ୍ତା ପ୍ରବୋଧଚନ୍ଦ୍ରଙ୍କୁ ।

ସେଇୟା, ସେଇଥିପାଇଁ ଭୟ ପଶିଛି । ଆଗେ ଏ ହସଟା ନ ଥିଲା ଚଣ୍ଡାଳୁଣୀର । କିଛିଦିନ ହେଲା ହେଇଛି । ଦେଖିଲେ ଦେହ କଣ୍ଟା ହୋଇଯାଉଛି । ମନେହେଉଚି ଯେମିତି ସାମନାରେ ଥିବା ଲୋକଟାର ଏକାବେଳେ ମନର ଭିତରଟା ସୁଦ୍ଧା ଦେଖିପାରୁଛି ସେ ।

ବକୁଳ ଆଉକିଛି କଥା କହି ନ ଥିଲା, ଖାଲି କହିଥିଲା, ଝାଳ !– ତା'ପରେ ହାତ ବଢ଼ାଇ ଚିଠିଟାକୁ ଉଠାଇନେବାକୁ ଯାଇଥିଲା । ପ୍ରବୋଧ ଯେପରି ଗୋଟାଏ ସୁଯୋଗ ପାଇଥିଲେ, ହାଁ ହାଁ କଲେ, କହିଲେ– ପରଲୋକଙ୍କ ଚିଠି, ଡାକବାଲାଟା ଭୁଲ୍‌ରେ ଦେଇଯାଇଛି ।

କିନ୍ତୁ ସେତେବେଳକୁ ଚିଠିଟିକୁ ନେଇ ଯାଇଥିଲା ବକୁଳ, ଓଲଟାଇ ଦେଖିଥିଲା ମଧ୍ୟ । ଲଫାଫା ଉପରେ ଥିବା ନାଁଟା ଉପରେ ଆଖି ଦୁଇଟା ସ୍ଥିର ହୋଇଯାଇଥିଲା ତା'ର । ତା'ପରେ କହିଥିଲା– ଭୁଲ୍‌ରେ ନୁହେଁ, ଏ ଘରର ଚିଠି ଏଇଟା ।

—ଏ ଘରର ? ‘‘ପ୍ରବୋଧ ସେହି ସୂକ୍ଷ୍ମ ହସର ତିକ୍ତତା ଝରାଇଲେ’’, ‘‘ଆଜିକାଲି ତା’ହେଲେ ଘରେ ମୋର ଅଜଣାରେ ବାହାର ଲୋକ ମଧ୍ୟ ରହୁଛନ୍ତି !

—ଅଧିକା କେହି ନାହାନ୍ତି ବାପା !

—ନାହାନ୍ତି ! ନାହାନ୍ତି ତ ଏହି ‘ଶ୍ରୀମତୀ ଅନାମିକା ଦେବୀଟି କିଏ ଶୁଣେ ? ବକୁଳ ମୃଦୁ ହସି କହିଥିଲା— ପ୍ରକୃତରେ କେହି ନୁହେଁ ।’

ପ୍ରକୃତରେ କେହି ନାହିଁ ! ଅଥଚ ତାଙ୍କର ନାଁରେ ଚିଠି ଆସୁଛି ! ଚମତ୍କାର ! ତମେମାନେ ଏଥର କ’ଣ ଘରେ ରହସ୍ୟଲହରୀ ସିରିଜ୍ ଖୋଲୁଛ ? ଚିଠି ରଖ ! ମୁଁ ଜାଣିବାକୁ ଚାହେଁ କିଏ ଏ ଅନାମିକା ଦେବୀ !

ବକୁଳ ଚିଠି ରଖିଲା ନାହିଁ । ଆହୁରି ଥରେ ମୃଦୁ ହସି କହିଥିଲା— କହିଲି ତ ପ୍ରକୃତରେ କେହି ନାହାନ୍ତି, ସେଇଟା ଗୋଟାଏ ଛଦ୍ମ ନାମ !

—ଛଦ୍ମ ନାମ ! ଛଦ୍ମ ନାମ ମାନେ ? ପ୍ରବୋଧଚନ୍ଦ୍ର ଯଥାରୀତି ଶ୍ୱାସ କଥା ଭୁଲିଯାଇ ସିଧା ହୋଇଯାଇ କହିଥିଲେ— ଛଦ୍ମ ନାଁରେ ଚିଠି ଆସେ କେମିତି ? ତା’ହେଲେ ପ୍ରେମପତ୍ର ପଠାଇବାର ଷଡ଼ଯନ୍ତ୍ର !

ସେଇଆ ଭାବିଥିଲେ ସେ । କାରଣ ସ୍ପଷ୍ଟ ବୁଝି ପାରିଥିଲେ ସେହି ଛଦ୍ମ ନାଁଟା ସାଙ୍ଗରେ ବକୁଳ ନାଆଁର ଝିଅଟିର କୌଣସି ଯୋଗସୂତ୍ର ଅଛି । ସଙ୍ଗେ ସଙ୍ଗେ ତା’ ସହିତ ମୋତିହାରୀର ଯୋଗସୂତ୍ର ଆବିଷ୍କାର କରିଥିଲେ ସେ— ଅଲକ୍ଷଣୀ ଝିଅ ତା’ହେଲେ ଏମିତି ଯନ୍ତା ପକାଇଛି । ଛଦ୍ମନାମରେ ଚିଠି ଆସିବ, କେହି ଧରିପାରିବେ ନାହିଁ !...... ଖାସ୍ ଏଇଥିପାଇଁ ଏ ଚିଠିପାଇଁ ସେ ଆସିଥିଲା, ଦୁଧ ଆଣିବାଟା ଗୋଟାଏ ଆଳ । ରାଗରେ ବ୍ରହ୍ମାଣ୍ଡ ଜଳିଯାଉଥିଲା ପ୍ରବୋଧଚନ୍ଦ୍ରଙ୍କର— ଓଃ ମିଁ ମିଁ କରୁଥିବା ଚରିତ୍ରହୀନ ପାଜୀ ସଇତାନଟା, ଏଇଲେ ମୋ ଝିଅର ମୁଣ୍ଡ ଖାଉଛି ! ବାହା ହେଇଛୁ, ବିଦେଶକୁ ଯାଇଛୁ, ତେବେକେ ଦୁଷ୍ଟବୃତ୍ତି ଯାଉନି ? ଲଫାଫାରେ ଚିଠି ଲେଖୁଛୁ ! ଏତେ ସାହସ ଯେ ‘କେୟାର୍ ଅଫ୍’ଟା ପର୍ଯ୍ୟନ୍ତ ଦେବାର ସୌଜନ୍ୟ ଟିକକ ନାହିଁ !

ଗୃହକର୍ତ୍ତା ଓ ଅଭିଭାବକ, ଏ ଦୁଇଟିଯାକ ସତ୍ତା ଚଡ଼କିଉଠିବାରୁ ପ୍ରବୋଧଚନ୍ଦ୍ର ବକୁଳକୁ ଧମକାଇ କହିଥିଲେ— ଚିଠି ଖୋଲ୍, ମୁଁ ଦେଖିବାକୁ ଚାହେଁ ।

—‘ସେ କଥା ମୁଁ ଜାଣିଛି ।’ କହିଲା ବକୁଳ ଓ ଚିଠିଟାକୁ ବାପାଙ୍କ ଟେବୁଲ ଉପରକୁ ଫୋପାଡ଼ିଦେଇ କହିଲା— ପାଣି ପକାଇ ଲୁଚାଇ ଖୋଲିବାକୁ ଚେଷ୍ଟା ନ କରି, ଏହି ଅନାମିକା ଦେବୀର ଚିଠି ଆସିଲେ ଆପଣ ଲଫାଫା ଖୋଲି ଦେଖିବେ ବାପା— ତା’ପରେ ବକୁଳ ଚାଲିଯାଇଥିଲା ସେ ଘରୁ । ବାପାଙ୍କ ଅବସ୍ଥା ଆଡ଼କୁ ଆଉ ଚାହିଁନି ।

ଅଥଚ ହେଇଟି କେତେଦିନ ତଳେ ବାପାଙ୍କ ମୁହଁ ଆଡ଼କୁ ଆଖି ଟେକି ଚାହିଁ ପାରୁ ନ ଥାଏ । ହଠାତ୍ ଏ ସାହସଟା ତାକୁ କିଏ ଦେଲା ? ସେହି ଅନାମିକା ଦେବୀ । ଯାହା ନାଁରେ କୌଣସି ଗୋଟିଏ କାଗଜର ସଂପାଦକ ଚିଠି ପଠାଇଛନ୍ତି– ଆପଣଙ୍କ ଗଳ୍ପଟି ଆମର ମନୋନୀତ ହୋଇଛି । ଆଗାମୀ ସଂଖ୍ୟା ପାଇଁ ଆଉ ଗୋଟିଏ ଗଳ୍ପ ପଠାଇଲେ ବାଧିତ ହେବୁ ।

ନିର୍ମଳର ବାହାଘରକୁ ଉପଲକ୍ଷ କରି ଯେଉଁ ବକୁଳ ଉଦ୍‌ଘାଟିତ ହୋଇଯାଇଥିଲା, ସେହି ବକୁଳ ସ୍ଥିର କରିଥିଲା– ପାଦତଳର ମାଟିଟା କେଉଁଠି ଖୋଜି ଦେଖିବାକୁ ପଡ଼ିବ । ହୁଏତ ତାହା ଖୋଜି ପାଇଯାଇଥିଲା ମଧ୍ୟ । ସେଥିପାଇଁ ବକୁଳ ତା'ର ଖାତାର ଗୋଟାଏ କୋଣରେ କେବେ ଯେମିତି ଲେଖି ରଖିଥିଲା– ଡରି ଡରି ଏମିତି ଅଦ୍ଭୁତ ଅଭ୍ୟାସ ହୋଇଯାଏ ଯେ ଡରିବାର କୌଣସି କାରଣ ହିଁ ନାହିଁ, ଏ କଥା ଆଉ ମନେପଡ଼େ ନାହିଁ । ଅଭ୍ୟାସଟାକୁ ଛାଡ଼ିବା ଦରକାର ।

ଆଉ ମନ ଭିତରେ କେଉଁଠି ଯେପରି ଲେଖିଥିଲା– ନିର୍ମଳକୁ ମଝିଆନାନୀ ଧିକ୍କାର ଦେଉଛି, କିନ୍ତୁ ମୁଁ ତାକୁ ଧନ୍ୟବାଦ ଦେଉଛି । ତା' ନିକଟରେ ମୋର କୃତଜ୍ଞତାର ସୀମା ନାହିଁ । ସେ ମୋ ନୌକାଟିକୁ କାତ ମାରି ନଦୀ ପାର କରାଇ ଦେଇପାରି ନାହିଁ ବୋଲି ତ ସେଇଟା ସ୍ରୋତର ଆକର୍ଷଣରେ ସାଗରକୁ ଚାଲିଆସି ପାରିଛି । ସେହି 'ସାଗର' ଶବ୍ଦଟି ଉପମା ମାତ୍ର ହୋଇଥିଲେ ବି ପ୍ରବୋଧଚନ୍ଦ୍ରଙ୍କ ପରିବାରରେ 'ଅନାମିକା ଦେବୀ' ଏକ ବିସ୍ମୟକର ଘଟଣା ନିଶ୍ଚୟ ।

ଅନାମିକା ଦେବୀ ନାଆଁରେ ଆସିଥିବା ଚିଠିଟା ପ୍ରେମପତ୍ର ନ ହେଲେ ମଧ୍ୟ, ତାହା ନେଇ ଘର ଭିତରେ କିଛି 'ଚହଳ' ପଡ଼ିଥିଲା । ବକୁଳର ବଡ଼ଭାଇନା ସେହି ଅଦେଖା ସମ୍ପାଦକ ଉଦ୍ଦେଶ୍ୟରେ ମୁରୁକି ହସି କହିଥିଲେ– ବଣିଆ ଗୁଣ ଚିହ୍ନିଛି !

ବକୁଳର ସାନଭାଇନା, ଯାହାଙ୍କ ନାଁ ମାନୁ । ବକୁଳ, ପାରୁଲ୍ ତାଙ୍କୁ ହିଁ ସାନଭାଇନା ବୋଲି ଡାକନ୍ତି । ସୁବଳ ତ ଥିଲା ଖାଲି 'ସୁବଳ' । ସେ ତ ବର୍ତ୍ତମାନ ଖାଲି ଗୋଟାଏ ନାଁ, କାନ୍ଥରେ ଟଙ୍ଗା ହୋଇଥିବା ଛବି । ସେ ଥିଲେ ହୁଏତ ଇତିହାସ ଅନ୍ୟପ୍ରକାର ହୋଇଥାନ୍ତା । ହଁ, ସେଇ ସାନଭାଇନା ହସିଦେଇ କହିଥିଲେ– ସ୍ତ୍ରୀଲୋକ ବୋଲି ଲେଖା ଛପାଇ ଦେଇଛନ୍ତି । ଶୁଣିବୁ ? ୟୁନିଭର୍ସିଟିରେ ସୁଦ୍ଧା କେମିତି ମୁଣ୍ଡରେ ଗୋବର ଭର୍ତ୍ତିଥିବା ଝିଅଗୁଡ଼ାକୁ କି ଭଳି ପାସ୍ କରାଇ ଦେଉଛନ୍ତି ? ଏଇ ଲେଖାକୁ ଜଣେ ପୁଅର ନାଁ ଦେଇ ପଠାଇଲେ, ଦେଖିଥାନ୍ତ ସିଧାସଳଖ ୱେଷ୍ଟପେପର୍ ବାସ୍କେଟ୍‌କୁ ଚାଲିଯାଇଛି !

ଆଉ ବକୁଳର ବଡ଼ଭାଉଜ ଅବାକ୍ ହୋଇଗଲାପରି କହିଥିଲେ— ନାଁ ଡାକ ହେବାପାଇଁ ତ ଲୋକେ ବହି ଲେଖନ୍ତି ବାବା, ଇଚ୍ଛା କରି ନାଁ ବଦଳାଇ ଲେଖିବା— ଏ କଥା ତ କେବେ ଶୁଣିନି । ଲେଖାଟା ଯେ ତମର ତା' ପ୍ରମାଣ ହେବ କେମିତି କହିଲ ବକୁଳ ? ହେଇଟି ମୁଁ ଯଦି ଏଇଲେ କହିବି— ମୁଁ ହେଉଛି ଅନାମିକା ଦେବୀ ?

''— କହୁ ନାହଁ, ଆପତ୍ତି କ'ଣ ?'' କହି ହସିଦେଇ ଚାଲିଯାଇଥିଲା ବକୁଳ । ଭାଉଜ ଯେ ପୂରାପୂରି ଅବିଶ୍ୱାସ କରୁଛନ୍ତି ସେକଥା ବୁଝିପାରୁଥିଲା ବକୁଳ ।

ଏଥିପୂର୍ବରୁ ମଧ ତା'ର ଲେଖା ଛପା ହୋଇଥିଲା, କିନ୍ତୁ ଖବରଟା ନିଜ ଭିତରେ ଆଉ ନିର୍ମଳର ଘର ଭିତରେ ସୀମାବଦ୍ଧ ଥିଲା, ଏ ଘରେ ଧକ୍କା ଦେଇ ନାହିଁ । ଏଥର ଧକ୍କା ଦେଲା ବୋଲି ଚହଳ ପଡ଼ିଲା !

ଆଉ ଗୋଟିଏ ଧକ୍କାର ଖବର ପଠାଇଥିଲା ପାରୁଲ୍ ନାନୀ ।

ଲେଖିଥିଲା— ତୁ ତ ବଢ଼ିଆ ଘଟଣାଟେ ଘଟାଇଛୁ । ତୋ'ର ଗଳ୍ପ ନେଇ ତ ଏଠି ପୁରୁଷମହଲରେ ଜବର ଚହଳ ପଡ଼ିଯାଇଛି । ଏଠି 'ନବୀନ ଭାରତ' ପତ୍ରିକାଟି ଖୁବ୍ ବିକ୍ରି ହୁଏ । ସେମାନେ କହୁଛନ୍ତି...... ନିରୁପମା ଦେବୀ, ଅନୁରୂପା ଦେବୀ, ପ୍ରଭାବତୀ ଦେବୀ, ଏ ସମସ୍ତଙ୍କୁ ତ ଆମେ ଜାଣିଛୁ, ଏ ନୂଆ ଦେବୀଟି ପୁଣି କିଏ ? ଏ ନିଶ୍ଚୟ କେଉଁ ମହିଳା ଛଦ୍ମନାମରେ ଲେଖୁଥିବା ପୁରୁଷ ! ଲେଖାର ଧରଣ ଯେମିତି ବଳିଷ୍ଠ...... । ଅର୍ଥାତ୍ 'ବଳିଷ୍ଠ' ହେବାଟା ପୁରୁଷର ହିଁ ଅଧିକାର !

ତୋର ବୁଦ୍ଧିମାନ ଭଗିନୀପତି ଅବଶ୍ୟ କାହା ନିକଟରେ ଲେଖିକାର ପରିଚୟ ପ୍ରକାଶ କରିନାହାନ୍ତି, କିନ୍ତୁ ନିଜେ ତ ଜାଣିଛନ୍ତି । ସେ ବିଷମ ଅପମାନର ଜ୍ୱାଳାରେ ଜଳୁଛନ୍ତି । କାହିଁକି ଜାଣିଛୁ ? ସେ କୁଆଡ଼େ ସେହି ଗଳ୍ପର ଭିଲେନ୍ (ଖଳନାୟକ) ଭିତରେ ନିଜର ଛାୟା ଦେଖି ପାରୁଛନ୍ତି ।

ଯେତେ ବୁଝାଉଛି, ଗଳ୍ପଟାର ନାଁ ଯେତେବେଳେ 'ଆଇନା', ସେତେବେଳେ ତା' ସାମ୍ନାରେ ରହିଲେ ତମେ ନିଶ୍ଚେ ନିଜର ଛାୟା ଦେଖିବ, କିନ୍ତୁ ନିଜକୁ କାହିଁକି ତମେ— , ହେଲେ କିଏ ଶୁଣୁଛି ଏ ସବୁ ସୁଯୁକ୍ତିର କଥା । କହୁଛନ୍ତି, ତାଙ୍କର ଶାଳୀ କୁଆଡ଼େ ଖାସ୍ ତାଙ୍କୁ ଅପମାନ ଦେବା ପାଇଁ ଏଭଳି ଗୋଟିଏ ମର୍ମାନ୍ତିକ ଚରିତ୍ର ସୃଷ୍ଟି କରିଛି । ସେତେବେଳେ ବାଧହୋଇ ହସିହସି କହିବାକୁ ପଡ଼ିଲା— 'ଶାଳୀ ତା'ହେଲେ ଶାଳୀ ଭଳି ବ୍ୟବହାର କରିଛି ।' ଦେଖ ତମର ଅମଳବାବୁ ଆଗରେ ଗ୍ରାମ୍ୟଭାଷା ବ୍ୟବହାର କରିଛି ବୋଲି 'ଛି ଛି' କରିବୁନି ।

ଆମର ଭାଷା ସ୍ତ୍ରୀଲୋକମାନଙ୍କ ସମ୍ପର୍କରେ କେତେ ଯେ ଉଦାସୀନ, ସେ କଥା ପ୍ରତିପଦରେ ଅନୁଭବ କରିବୁ । ଅର୍ଥାତ୍, ଯେତେବେଳେ ଲେଖିବାକୁ ବସିଛୁ ଲକ୍ଷ୍ୟ କରିପାରିବୁ...... ଶଳା ସମ୍ପର୍କରେ 'ସମ୍ବନ୍ଧୀ' 'ବଡ଼ କୁଟୁମ୍ବ' ଏମିତି ଗୋଟାଏ ଦୁଇଟା କଥା କିନ୍ତୁ ଶାଳୀ ସମ୍ପର୍କରେ ବଡ଼ ଜୋର୍‌ରେ 'ଶ୍ୟାଳିକା' । ଛିଃ ! କୌଣସି ଗୁଣବାଚକ ଶବ୍ଦ ଖୋଜେ ନାହିଁ । ସ୍ତ୍ରୀଲୋକମାନଙ୍କ ପାଇଁ କିଛି ନାହିଁ । ଅତଏବ କହିବାକୁ ପଡ଼ିବ 'ମହିଳା କବି', 'ମହିଳା ସାହିତ୍ୟିକ', 'ମହିଳା ଡାକ୍ତର' ଇତ୍ୟାଦି ଇତ୍ୟାଦି, ମିଳେଇ ମିଳେଇ ଦେଖିବୁ । ତେଣୁ ଶାଳୀ ଛଡ଼ା ଉପାୟ କ'ଣ ? ହଁ ଲୋକଟା ଠିକ୍ କହିଛି– ଯାହା ସମ୍ପର୍କ, ଠିକ୍ ସେମିତି କହିଛି ତମର ଭଉଣୀ !

ଏ କଥା ମଧ୍ୟ କହିଲା– "ତମର ଛାୟାକୁହିଁ ଦେଖୁଛ କାହିଁକି ? ତମେ କ'ଣ ଏତେ ନିଷ୍ଠୁର ?" ସେ ସାନ୍ତ୍ୱନାରେ କିଛି ହେଉନି !

## ॥ ୧୨ ॥

ହୁଏ ନାହିଁ । ସେଭଳି ସାନ୍ତ୍ୱନାରେ କିଛି ହୁଏ ନାହିଁ ।

ଅନେକ ସମୟରେ ସେ କଥାଟା ଜାଣିଛନ୍ତି ଅନାମିକା । ତାଙ୍କର ଏହି ଦୀର୍ଘକାଳର ଲେଖିକା ଜୀବନରେ ଅନେକଥର କାଠଗଡ଼ାରେ ଯାଇ ଠିଆ ହେବାକୁ ପଡ଼ିଛି ତାଙ୍କୁ । ସେ କୁଆଡ଼େ ତାଙ୍କର ପରିଚିତ ଅନେକଙ୍କ ମଧ୍ୟରୁ ବାଛି ବାଛି କାହାକୁ କାହାକୁ ଅପଦସ୍ଥ କରିବାକୁ ତାଙ୍କର ଗଳ୍ପର ନାୟକ-ନାୟିକା କରିଛନ୍ତି ।

ଅବଶ୍ୟ କାହାଣୀ ଭିତରର ମହତ୍ ଚରିତ୍ରଗୁଡ଼ିକ ସମ୍ପର୍କରେ ଏ ଧରଣର ଦାବି କେହି କରନ୍ତି ନାହିଁ । 'ହାସ୍ୟକର' ବା କ୍ଷୁଦ୍ରତା, ତୁଚ୍ଛତା ଭିତରେ ନିମଜ୍ଜିତ ଚରିତ୍ରଗୁଡ଼ିକରେ ହିଁ କୁଆଡ଼େ ଅନାମିକା ଦେବୀଙ୍କ କୁଟିଳ ପ୍ରଚେଷ୍ଟା ଦେଖିପାରନ୍ତି ତାଙ୍କର ପରିଚିତ ଜନମାନେ ! ସେଥିପାଇଁ ମୁହଁ କଳା କରିଦେଇ– ଏଇଟା ତ ମୋ ନେଇ ଲେଖା'...... କହନ୍ତି, 'ତମ ମନ ଭିତରେ ଏସବୁ ଥିଲା ବୋଲି ଜାଣି ନ ଥିଲି । ହେଲେ ଏଭଳି ଅପଦସ୍ଥ ନ କରିଥିଲେ ବି ହୋଇଥାନ୍ତା ।'

ସେମାନେ ନିଜେ ଧରି ନ ପାରିଲେ ମଧ୍ୟ ବନ୍ଧୁ-ବାନ୍ଧବମାନେ କୁଆଡ଼େ ଆଖିରେ ଆଙ୍ଗୁଠି ମାରି ଧରାଇ ଦିଅନ୍ତି– ହେଇଟି ଦେଖ ତମର ଅମୁକ ଦେବୀ ଏଥର ତମକୁ ଧରି ପରସ୍ତେ ଖେଳିଛନ୍ତି । ଅମଳବାବୁଙ୍କ ବେଳକୁ ମଧ୍ୟ ସେହି ବନ୍ଧୁମାନେ ହିଁ 'ଜ୍ଞାନାଞ୍ଜନଶଳାକା'ର କାର୍ଯ୍ୟ କରିଥିଲେ ।

ବନ୍ଧୁଙ୍କ ଶଳାକା ପରେ ତ ଆଉ କୌଣସି ଶଳାକା କାମ କରେ ନାହିଁ । ତେଣୁ ପାରୁଲ୍‌ନାନୀର ଯୁକ୍ତି ବୃଥା ହୋଇଯାଇଛି । 'ମୋ ବିଷୟରେ ଲେଖିଛି' ଭାବି ରାଗିଯାଇଥିଲେ ଅମଳବାବୁ ।

ପୁଣି ଏମିତି ଅନୁରୋଧ ମଧ ବାରମ୍ବାର ଆସେ— ମୋ ବିଷୟରେ ଲେଖ । ନ ଲେଖିଲେ ଭାବନ୍ତି ଅବହେଳା କଲେ ।

କିନ୍ତୁ ପ୍ରକୃତରେ ଯେ କୌଣସି ପ୍ରକୃତ ବ୍ୟକ୍ତିଙ୍କ ବିଷୟରେ କୌଣସି ଏକ ପ୍ରକୃତ 'ଚରିତ୍ର' ସୃଷ୍ଟି କରାଯାଏ ନାହିଁ । ଏ ସତ୍ୟଟାକୁ କେହି ଭାବି ଦେଖନ୍ତି ନାହିଁ । ହୁଏତ ସେମାନେ ଜମା ଜାଣନ୍ତି ନାହିଁ ଅଥବା ମାନନ୍ତି ନାହିଁ ଯେ ଲେଖାର ନିୟମ ଅନେକାଂଶରେ ବର୍ଷା ପରି !

ପୃଥିବୀର ମାଟି ଉପରୁ ଉଠିଯାଉଥିବା ଜଳ ହିଁ ପୁଣି ଜଳ ହୋଇ ପୃଥିବୀରେ ଆସି ପଡ଼େ ସତ, ତେବେ ଦୁଇଟାଯାକ ଏକ ନୁହେଁ । ସେହି ପାଣିକୁ ପ୍ରଥମେ ବାଷ୍ପ ହେବାକୁ ପଡ଼େ, ତା'ପରେ ମେଘ ହେବାକୁ ପଡ଼େ, ତା'ହେଲେ ଯାଇ ପୁଣି ବର୍ଷା ହୋଇ ଝରିବାର ପାଳା ଆରମ୍ଭ ହୁଏ ।

ସେହିପରି ନିୟମରେ ହିଁ ପ୍ରାୟ ବହୁ ଚରିତ୍ରର, ଆଉ ବହୁ ବୈଚିତ୍ର୍ୟର ସଂପର୍କରେ ଆସିଥିବା ଅନୁଭୂତିର ବାଷ୍ପ ମଧ ମନର ଆକାଶକୁ ଉଠି ଚିନ୍ତା ହୋଇ ଜମା ହୋଇଥାଏ । ତା'ପରେ କୌଣସି ଏକ ସମୟରେ ଚରିତ୍ରରେ ରୂପାନ୍ତରିତ ହୋଇ କଲମକୁ ଓହ୍ଲାଇ ଆସେ ।

କିନ୍ତୁ ଏତେ କଥା କାହାକୁ ବୁଝାଇ ପାରିଥାନ୍ତେ ? କେହି କ'ଣ ବୁଝିବାକୁ ଚାହିଁବେ ? ତା'ଠାରୁ ରାଗିବା ଅନେକ ସହଜ । ଅନେକ ସିଧାସଳଖ ଭୁଲ୍ ବୁଝି ଅଭିମାନ କରିବାଟା ମଧ ସହଜ । ଯାହାକୁ ନେଇ ଗଳ୍ପ ଲେଖା ହେଲା ନାହିଁ, ସେ ମଧ ଆହତ । ତେଣୁ ସେମାନେ ମଧ ଆହତ । ଆଜି ଦର୍ପଣରେ ଯେ ନିଜକୁ ଦେଖି ପାରିଲେ ସେ ମଧ ଆହତ । ଅତଏବ ସେମାନେ ଦୂରକୁ ଦୂରକୁ ଘୁଞ୍ଚିଯାଆନ୍ତି ।

ଅବଶ୍ୟ ଏ ସମସ୍ୟା କେବଳମାତ୍ର ପରିଚିତ ଲୋକଙ୍କ ବେଳକୁ ।

ଯେଉଁମାନେ ଦୂରର, ସେମାନେ ତ ପୁଣି ସେହି ଦର୍ପଣରେ ମୁହଁକୁ ଦେଖିପାରିବାର ସୂତ୍ରରେ ହିଁ ପାଖକୁ ଆସି ଠିଆ ହୁଅନ୍ତି । ଆନନ୍ଦର ଅଭିବ୍ୟକ୍ତି ନେଇ କହନ୍ତି— ଇସ୍ କେମିତି ଲେଖିଛନ୍ତି, ଲାଗୁଛି ସତେ ଯେମିତି ଆମମାନଙ୍କ କଥା । ଅନାମିକା ଦେବୀ ମଧ ହସନ୍ତି । କହନ୍ତି— ଆପଣମାନଙ୍କର କଥା ଛଡ଼ା ଆଉ କେଉଁଠି କଥା ପାଇବି କହନ୍ତୁ । ମୁଁ ତ ଆପଣମାନଙ୍କ ଭିତରୁ ଜଣେ । ଆକାଶ-ପାତାଳ

ଖୋଜିବା କ୍ଷମତା ମୋର ନାହିଁ । ଆପଣମାନେ ହିଁ ଯଦି ମୋର ଫସଲ ତା'ହେଲେ ଆପଣମାନେ ହିଁ ସାରା ପାଠକ ପାଠିକା ହେଉଛନ୍ତି ମୋର ନାୟକ-ନାୟିକା

କିନ୍ତୁ ଅମଳବାବୁଙ୍କୁ ଏସବୁ କଥା ବୁଝାଇ ଦିଆଯାଇ ପାରିନି । ସେବଠାରୁ ଅମଳବାବୁ ପାରୁଲ୍‌ନାନୀଙ୍କୁ ଏଠାକୁ ଛାଡ଼ିନାହାନ୍ତି । ଆଶ୍ଚର୍ଯ୍ୟ, ଅଭିମାନ ମଣିଷକୁ କି ନିର୍ବୋଧ କରି ପକାଏ ! ଅଥବା ମଣିଷ ଜାତିଟା ହିଁ ନିର୍ବୋଧ ।

'ବକୁଳର କଥା' ଲେଖିବାର ଦାୟିତ୍ୱ ନେଇ ବକୁଳକୁ ଭାବୁ ଭାବୁ ଯେମିତି ବକୁଳ ସହିତ ଏକାତ୍ମ ହୋଇଯାଆନ୍ତି ଅନାମିକା ଦେବୀ । ସେହି ଛଦ୍ମନାମର ଆବରଣ ଖୋଲିଯାଏ, ଆଉ ସେଦିନ— ଅନେକଦିନ ଆଗରୁ ବକୁଳ ଯେଉଁ କଥା ଭାବିଥିଲା, ସେହି କଥା ଭାବିବାକୁ ବସନ୍ତି ସେ, ସତରେ ମଣିଷ କି ନିର୍ବୋଧ !

କେବଳ ଦୁଇଟି ହାତରେ ଶତଦିଗ ସମ୍ଭାଳିବାର କି ଦୁଃସହ ପ୍ରୟାସ ତା'ର ? ଦୁଇଟା ମୁଠା ଭିତରେ ସମସ୍ତ ପୃଥିବୀଟାକୁ ପୂରାଇ ଦେବାର ଚେଷ୍ଟାରେ କ'ଣ ତା'ର ଜୀବନପଥ ଦୁଃସହ ହୋଇଯାଇନି ? କେତେ ଦୁଶ୍ଚିନ୍ତା, କେତେ ଷଡ଼ଯନ୍ତ୍ର କରିବାକୁ ପଡ଼ିଛି !

ଅଥଚ ମୁହୂର୍ତ୍ତକଭିତରେ ସେ ମୁଠାକୁ ଅଲଗା କରି ଦେଇ ଚାଲିଯିବାକୁ ପଡ଼େ ସବୁ ଛାଡ଼ିଦେଇ ! ସବୁ କିଛି ସମ୍ଭାଳିବାର ଦାୟିତ୍ୱରୁ କି ସହଜରେ ମୁକ୍ତି ପାଇଯାଆନ୍ତି ହାତ ଦୁଇଟା !

ଅମଳବାବୁ ତାଙ୍କର ଚାକିରିରେ ଅଧିକ ଉନ୍ନତି କରିବା ପାଇଁ କି ପ୍ରକାର ଆପ୍ରାଣ ଚେଷ୍ଟା କରି ନ ଥିଲେ ? ସେ ତାଙ୍କ ସ୍ତ୍ରୀକୁ ହାତମୁଠାରେ ରଖିବା ପାଇଁ କି ଦୁଃସହ କ୍ଳେଶ ସ୍ୱୀକାର କରି ନ ଥିଲେ ? ସ୍ତ୍ରୀର ଖାଲି ଦୈହିକ୍ ମଙ୍ଗଳ ହିଁ ନୁହେଁ, ଐହିକ, ପାରତ୍ରିକ, ନୈତିକ, ଚାରିତ୍ରିକ, ସର୍ବବିଧ ମଙ୍ଗଳର ଦାୟିତ୍ୱ ନେଇ ଭଦ୍ରଲୋକ ଉଦ୍‌ଭ୍ରାନ୍ତ ହୋଇଯାଉଥାନ୍ତି, କିନ୍ତୁ କେତେ କମ୍ ସମୟର ନୋଟିସ୍ ଭିତରେ ତାଙ୍କୁ ଚାଲିଯିବାକୁ ପଡ଼ିଲା । କେତେ ଅସ୍ୱସ୍ତି ଛାତିରେ ଧରି ସେ ଚାଲିଗଲେ !

ମଝିଆନାନୀ କହିଥିଲା— ଦେଖେ ବକୁଳ "ସ୍ୱର୍ଗ" ଜାଗାଟା ଯଦି ସତରେ କେଉଁଠି ଥାଏ, ଆଉ ସେଠାରୁ ଏହି ମର୍ତ୍ତ୍ୟଲୋକକୁ ଦେଖିହୁଏ, ତା'ହେଲେ ତ ମତେ ନିଶ୍ଚେ ସେ ଦେଖୁଥିବେ । ବିଚରା ମରିଯାଇ ମଧ କି ଯମଯନ୍ତ୍ରଣା ପାଉଛନ୍ତି, ସେହିକଥା ଭାବି ଦୁଃଖିତ ହେଉଛି ।

ବକୁଳ କହୁଥାଏ— ଛତା' ଭଳି ଦୁଷ୍ଟ ବେପରୁଆ ସ୍ତ୍ରୀକୁ ମନେ ରଖିବାକୁ ତାଙ୍କର ଯାଉନି !

ପାରୁଲ୍‌ନାନୀ କହୁଥାଏ— ପାଜୀ ଦୁଷ୍ଟମାନଙ୍କୁ ତ ମଣିଷମାନେ ମନେରଖନ୍ତି । ଦେଖୁନୁ— ସ୍ୱୟଂ ଭଗବାନ୍ ସୁଦ୍ଧା ସାଧୁ-ସଜ୍ଜନମାନଙ୍କୁ ମନେ ନ ରଖି ସବୁବେଳେ ଜଗା-ମାଧିଆକୁ ମନେ ରଖିଛନ୍ତି । ମନେ ରଖିଛନ୍ତି କଂସ, ଜରାସନ୍ଧ, ହିରଣ୍ୟକଶିପୁମାନଙ୍କୁ । ହେଇଟି ଲୋକଟି ମତେ ଆଖିର ଆଡୁଆଳ କରୁଥିଲେ କାହିଁକି ଜାଣିଛୁ— ମୁଁ ପାଜି ଦୁଷ୍ଟ ବୋଲି ! ଶିଷ୍ଟ, ଶାନ୍ତ, ସାଧ୍ୱୀ ସ୍ତ୍ରୀ ହୋଇଥିଲେ କେବଠାରୁ ମତେ ଭୁଲିଯାଇ, ମାରିଦେଇ ଭଣ୍ଡାରଘରର ଗୋଟିଏ କଣରେ ପକାଇ ରଖି ଦେଇଥାନ୍ତେ ତ ! ସେଇଥିପାଇଁ ଭାବୁଛି ସେ କେତେ ଛଟପଟ ହେଉଥିବେ ଯଦି ସତରେ ଦେଖୁଥିବେ !

କିନ୍ତୁ ନାଃ, ଦେଖି ହେବ ନାହିଁ । ମଣିଷ ବଡ଼ ଅସହାୟ । ସର୍ବସ୍ୱ ତଳେ ରଖିଦେଇ ସର୍ବହରା ହୋଇ ତାକୁ ଚାଲିଯିବାକୁ ପଡ଼େ । ତା'ପରେ ଆଉ କିଛି କରିବାକୁ ନ ଥାଏ । କରିବାର ଥିଲେ ଆଜି ପ୍ରବୋଧଚନ୍ଦ୍ରଙ୍କ ନାତୁଣୀ ପ୍ରବୋଧଚନ୍ଦ୍ରଙ୍କ ଢିଅରେ ବସି 'ପ୍ରେମ' କରିବାଟାକୁ ଗୋଟାଏ ମସ୍ତ ବାହାଦୁରୀ ଭାବି ମହା ଉଲ୍ଲାସରେ ତା'ର ପିଉସୀ ପାଖକୁ ଆସି କହିପାରନ୍ତା— ପିଉସୀ କହିଲେ ତମେ ବିଶ୍ୱାସ କରିବ କି ନାହିଁ ଜାଣେନି, ପୁଣି ଗୋଟାଏ ନୂଆ ଶିକାରକୁ ଜାଲରେ ପକାଇଛି !

ସେହି ଅଲକ୍ଷଣୀ ଝିଅଟା ଆଗରେ ଅନାମିକା କୌଣସି ପ୍ରକାରେ ଗାମ୍ଭୀର୍ଯ୍ୟ ରଖି ପାରନ୍ତି ନାହିଁ ! ଝିଅଟା ପ୍ରତି ଏକ ବିଶେଷ ସ୍ନେହ ଅଛି ବୋଲି ? ତା' ହେଲେ ତ 'ସ୍ନେହାନ୍ଧ' ଦଶା ତାଙ୍କର ଘଟିଛି ! କିନ୍ତୁ କ'ଣ ସତ ?

ନା, ତା'ର ସେହି ଲଜ୍ଜାହୀନତା ଭିତରେ କେଉଁଠି ଯେପରି ଏକ ଅମଳିନ ସତ୍ୟ ରହିଛି ବୋଲି ? ଯାହା ଇହସଂସାରରେ ପ୍ରାୟ ଦୁର୍ଲଭ । ତେବେବି ସେ ଗାମ୍ଭୀର୍ଯ୍ୟକୁ ତିଷ୍ଠି ରଖିବାର ଚେଷ୍ଟା କରି ଆଖି ଦେଖାଇ କହନ୍ତି— ନୂଆ ଶିକାର ଜାଲରେ ପକାଇଛି ମାନେ ? ସେ ପୁଣି କି ଅସଭ୍ୟ କଥା !

ଶମ୍ପା ଟିକିଏ ହେଲେ ଦବିଯାଇ ଜୋର୍ ଗଳାରେ କହିଲା — ଅସଭ୍ୟ ହୋଇପାରେ । କିନ୍ତୁ ଜଗତର କେଉଁ ସତ କଥାଟା ହିଁ ବା ସଭ୍ୟ ପିଉସୀ ? ସତ୍ୟ ମାତ୍ରେ ଅ-ସଭ୍ୟ । ମାନେ ସଂସାରୀଲୋକମାନେ ଯାହାକୁ ଅସଭ୍ୟ କହନ୍ତି ।

—ହେଲେ ସଂସାର ଭିତରେ ବାସ କରିବାକୁ ହେଲେ ସଂସାରୀ ଲୋକଙ୍କ ରୀତିନୀତିର ମାପକାଠିରେ ହିଁ ଚଳିବାକୁ ପଡ଼ିବ ।

ଶମ୍ପା ବସିଥିଲା ଚଉକିରେ । ଏଇଲେ ବେଶ୍ ଜୋର୍ ଜୋର୍‌ରେ ପାଦ ହଲାଇ ହଲାଇ କହିଲା— ସେକଥା ମୋର ପରମାରାଧ୍ୟା ମାତୃଦେବୀ କହିପାରନ୍ତି, ତମ ମୁହଁରେ ଶୋଭା ପାଉ ନାହିଁ ।

ଅନାମିକା ଆହୁରି ଜୋର୍‌ଦେଲେ ନିଜ ଚେଷ୍ଟାରେ । କହିଲେ— ଶୋଭା ନ ପାଇବାର କ'ଣ ଅଛି ? ମା' ଆଉ ପିଉସୀ କ'ଣ ଅଲଗା ? ମା' ଯାହା କହିବ, ପିଉସୀ ମଧ ସେଇୟା କହିବେ ।

ଶମ୍ପା ହଠାତ୍ ଚଉକିରୁ ଡେଇଁପଡ଼ି, ଅଣ୍ଟାରେ ହାତ ଦେଇ ପଚାରିଲା— ସତରେ ଏହା ତମର ମନର କଥା ?

ଏ ସିଧା ଆକ୍ରମଣ ଦେଖି ହସିପକାଇଲେ ଅନାମିକା । ଶମ୍ପାର ମୁଣ୍ଡଟାକୁ ଥାପୁଡ଼େଇଦେଇ କହିଲେ— ଏଇଠି ଖାଲି ଦୁଷ୍ଟାମିର ପାହାଡ଼ ଅଛି । କିନ୍ତୁ ଏ ସବୁ ଶିକାର ଫିକାର କଥା କ'ଣ ଭଲ କଥା ?

—ଭଲମନ୍ଦ ଜାଣେନି ବାବା, ସେଇ କଥାଟା ବେଶ୍ ଖାପ ଖାଇଲା ଭଳି ଲାଗିଲା, କହିଦେଲି । ଗୋଟା ଗୋଟାକୁ ଧରି ମାରିଦେଇ ଛାଡ଼ିଦେଉଛି ଯେତେବେଳେ ସେତେବେଳେ ଶିକାର ଛଡ଼ା ଆଉ କ'ଣ ?

—ମୁଁ ତୋ'ର ଗୁରୁଜନ ନା ?

—ହଜାରେ ଥର ।

—ତା'ହେଲେ ? ମୋ ଆଗରେ ଏମିତି ନିର୍ଲଜିଆ କଥା କହିବାକୁ ତତେ ଲାଜ ଲାଗୁନି ?...... କହି ଅନାମିକା ନିଜେ ହଠାତ୍ ଅନ୍ୟମନସ୍କ ଭାବରେ ଶମ୍ପା ପରି ପାଦକୁ ଝୁଲାଇବାକୁ ଲାଗିଲେ ।

ସେଇଆଡ଼କୁ ଥରଟିଏ କଟାକ୍ଷପାତ କରି ଶମ୍ପା କହିଲା— ଦେଖ ପିଉସୀ, ମୋର ଲାଜ-ଫାଜ ବୋଲି କିଛି ନାହିଁ, ଏ କଥା ମୁଁ ବାପାଙ୍କୁ ମଧ କହିପାରେ କିନ୍ତୁ କହିବାକୁ ପ୍ରବୃତ୍ତି ହୁଏନାହିଁ । କଥାଟାର ଅର୍ଥ ହିଁ ସେ ବୁଝିବେନି । ତମେ ସାହିତ୍ୟିକ, ମନସ୍ତତ୍ତ୍ୱ-ଫତ୍ତ୍ୱ ବୁଝୁଛ, ସେଥିପାଇଁ ତମକୁ କହେ । କାଇଁ ବଡ଼ମଝିଆ, ସାନମଝିଆ ପିଉସୀଙ୍କୁ ତ କହିବାକୁ ଯାଏନି ।

—ସେମାନଙ୍କୁ କେଉଁଠୁ ପାଉଛୁ ଯେ ?

—ଆହା ! ଇଚ୍ଛା କଲେ ତ ପାଇପାରିବି । ଜଣେ ତ ଏ କଲିକତା ସହରରେ ବସି ରହିଛନ୍ତି । ଆଉ ଦିଜଣ ମଧ ଆଖପାଖରେ ଅଛନ୍ତି । କଥା ତ ତା' ନୁହେଁ, ଆଶା କରୁଛି ତମେ ଅନ୍ତତଃ ମତେ ବୁଝିପାରିବ ।

ଅନାମିକା ତା' ମୁହଁ ଆଡ଼କୁ ଚାହିଁ ଦେଖନ୍ତି । ଭାବନ୍ତି— ସେ ମୋ ଉପରେ ଏ ବିଶ୍ୱାସ ରଖିଛି ଯେ, ମୁଁ ତାକୁ ବୁଝିପାରିବି । ଯଦିଚ ଏ ସଂସାରରେ ସେଇଟା ହିଁ ହେଉଛି ସବୁଠାରୁ କଷ୍ଟକର କାର୍ଯ୍ୟ । କିଏ କାହାକୁ ବୁଝୁଛି ? କିଏ କାହାକୁ ବୁଝିବାକୁ ଚାହୁଁଛି ?

ମୁଁ ତାକୁ ବୁଝିବାକୁ ଚେଷ୍ଟା କରେ, ସେ କଥାଟା ସେ ବୁଝିପାରୁଛି । ସେଇଥିପାଇଁ ମୋ ପାଖକୁ ଆସେ ସେ ମନର କଥା କହିବା ପାଇଁ । କିନ୍ତୁ ନିତ୍ୟ ନୂତନ ଏହି ପ୍ରେମ ହିଁ ସେ କେଉଁଠାରୁ ଯୋଗାଡ଼ କରୁଛି ?...... ଶମ୍ପାକୁ ସେହି ପ୍ରଶ୍ନ ପଚାରନ୍ତି ଅନାମିକା ।

ଭଲରୂପେ ହସି ଶମ୍ପା କହେ– ଠିକ୍ ଜୁଟିଯାଏ । ଏକାସାଙ୍ଗରେ ଦି'ଟା ତିନିଟା ଆସି କେତେସମୟ ପର୍ଯ୍ୟନ୍ତ ଭିଡ଼ କରନ୍ତି, ଆଉ ଇଏ ତ ମୋର ଏଇଲେ ଭେଙ୍କେନ୍ସି ଚାଲୁଥିଲା । ସେଇ ଯୋଉ ତମେମାନେ କହନ୍ତି, ରତନକୁ ରତନ ଚିହ୍ନେ । ସେଭଳି ଆଉ କ'ଣ ?

ହସିପକାଇ ଅନାମିକା କହନ୍ତି– ଆଚ୍ଛା ନୂଆ ରତ୍ନଟି ବୋଧହୁଏ କାରଖାନାର କୁଲି ଫୁଲି ହେଇଥିବ ?

ଭ୍ରୂକୁଞ୍ଚିତ କରି ଶମ୍ପା କହିଲା– ହଠାତ୍ ଏ ସନ୍ଦେହ କଲ ଯେ ? କ'ଣ ଶୁଣିଛ କି ?

– କୋଉଠୁ ଶୁଣିବି ? ଅନୁମାନ କରୁଛି । ପସନ୍ଦର କ୍ରମୋନ୍ନତିଟା ଦେଖୁଛି ତ ।

ଶମ୍ପା ଆଉ ପରସ୍ତେ ହସିଲା– ତମର ଅନୁମାନ ତ ସତ୍ୟ ହେବ । ଲେଖିକା ଯେ ! ସତରେ, କାରଖାନାରେ କାମ କରେ । ଏଣ୍ଟାଲିରେ ଗୋଟିଏ ଲୁହାର କାରଖାନା ଅଛି, ସେଥିର ଆସିଷ୍ଟାଣ୍ଟ ଫୋର୍‌ମେନ୍ ହୋଇଛି । ଭଲ କଂକ୍ରିଟ୍ ଚେହେରା, ବଡ଼ ସୁନ୍ଦର ଗୋଟାଏ ବନ୍ୟ ବର୍ବର, ବନ୍ୟ ବର୍ବର ଭାବ ଅଛି–

– ବନ୍ୟ-ବର୍ବର ଭାବ ଅଛି !

– ବାଃ, ଆଶ୍ଚର୍ଯ୍ୟ କାହିଁକି ହେଉଛ ଯେ ? କାହାର କାହାର ନ ଥାଏ ?

ହତାଶ ଗଳାରେ ଅନାମିକା କହିଲେ– ଥାଇପାରେ, କିନ୍ତୁ–

– ପିଉସୀନାନୀ ! କିନ୍ତୁର କିଛି ନାହିଁ । ପୁରୁଷଲୋକଙ୍କ ପକ୍ଷରେ ସେଇଟା ହିଁ ତ ସୌନ୍ଦର୍ଯ୍ୟ ! ଦେଖିଲେ ମନେହେବ ରାଗିଗଲେ ଦୁଇଚାପୁଡ଼ା ମାରି ଦେଇପାରିବ । କିଛି ନ ହେଲେ ବାସନ ଭାଙ୍ଗିବ, ବିଛଣା ଚିରିବ, ବହିପତ୍ରକୁ ଫୁଟବଲ୍ କରି ସୁଟ୍ କରିବ, ହୁଏତ ମତେ ମଧ୍ୟ–

– ଚମତ୍କାର ! ଶୁଣି ମୋହିତ ହୋଇଯାଉଛି ! ଏ ନିଧିଟିକୁ ପାଇଲୁ କେଉଁଠାରୁ ?

– ସେ ଗୋଟିଏ ନାଟକ, ବୁଝିଲ ପିଉସୀ !

ଶମ୍ପା ଚଉକି ଭିତରେ ସଜାଡ଼ି ହୋଇ ବସିଲେ, କହିଲା– ତା'ହେଲେ ଶୁଣ କହୁଛି– ବେଶ୍ ବଗିଚାର ସେହି ମୋଡ଼ଟାରେ ବସ୍ ବଦଳାଇବାକୁ ଓହ୍ଲାଇଛି,

ଦେଖିଲି ସେ ମଧ୍ୟ ପାଖାପାଖି ଆସି ଠିଆହେଲା, ଧୂଳି ଆଉ କାଳିବୋଳା ନୀଳ ପ୍ୟାଣ୍ଟ୍ ଆଉ ଖାକି ସାର୍ଟ ପିନ୍ଧିଛି, ବାଳ ପ୍ରାୟ ଲଣ୍ଡା, ମୁହଁଟାର ଗଢ଼ଣ ନିଗ୍ରୋମାନଙ୍କ ପରି, ଟିମା ବାଙ୍ଗରା ମୁଗୁର ଭଳି ଦେଖିବାକୁ, ରଙ୍ଗଟା ଛତାରି କନାଭଳିଆ ପ୍ରାୟ ହେବ । ଭାରି ଇଣ୍ଟରେଷ୍ଟିଂ ଲାଗିଲା । ଅନିମେଷ ନୟନରେ ଚାହିଁ ରହିଲି ବସ୍ ଆସିଲା ପର୍ଯ୍ୟନ୍ତ । ଆଉ ଦେଖିଲି ମୋର ସେ ଚାହାଣି ଦେଖି ସେ ପାଜିଟା ମଧ୍ୟ ଡବ ଡବ ହୋଇ ଚାହିଁରହିଛି । ଆଉ ତା'ପରେ ଗୋଟିଏ ବସ୍‌ରେ ଯାଇ ଚଢ଼ିଲା ! ମତଲବଟା ବୁଝୁଛ ତ ! ବସ୍‌ରେ ଚଢ଼ି ଏକାବେଳେ ପାଖରେ ଠିଆହୋଇ କହିଲା କ'ଣନା— ଏମିତି ଚାହୁଁଥିଲେ ଯେ ? ଚିଡ଼ିଆଖାନାର ଜନ୍ତୁ ଦେଖୁଥିଲେ କି ?...... ଶୁଣି ମନଟା ଯେପରି ଆନନ୍ଦରେ ଡେଇଁଲା । ଓଃ କି ଶବ୍ଦ ଗଳାର ! ଯେମିତି ସତରେ ଚିଡ଼ିଆଖାନାର ବନ୍ଦୀ ବାଘର ହୁଙ୍କାର ! ସେଇ ପଦକ କଥା ଶୁଣି ମନେହେଲା ଏଭଳି ଏକ ପ୍ରାଣୀ ସଙ୍ଗେ ଝୁଲିଗଲେ ସୁଖ ମିଳିବ । ବେଶ୍...... ଚେଷ୍ଟାରେ ଲାଗିଗଲି !

ଅନାମିକା ଆଶ୍ଚର୍ଯ୍ୟ ହୋଇଯାଇ ତା' ମୁହଁ ଆଡ଼କୁ ଚାହିଁରହିଲେ । ଏକାବେଳେ ନିର୍ଦ୍ଦୋଷ ମୁହଁ, କୌଣସି ପ୍ରକାର ଛଳନାର ଚିହ୍ନ ନାହିଁ, ଅଥଚ କ'ଣ ସବୁ କଥା କହିଯାଉଛି ! ଏପର୍ଯ୍ୟନ୍ତ ତା'ର ବାଳଗୁଡ଼ିକୁ ସାନ କରି କାଟିଦେଉଥିଲା ଶମ୍ପା । କିନ୍ତୁ ଆଜିକାଲି କି ଅଲୌକିକ ଉପାୟରେ କେଜାଣି ସେହି ବାଳରେ ମୁଣ୍ଡ ଉପରକୁ ଗୋଟାଏ...... ଚୂଡ଼ା ପରି ଖୋଷା କରୁଛି ସେ । ସେ ଖୋଷାଟା ପାଇଁ ତା' ଚେହେରା ପୂରା ବଦଳିଯାଇଛି । ଅହଙ୍କାରୀ ଝିଅ ଭଳି ଦିଶୁଛି ! ହଠାତ୍ ଅନାମିକାଙ୍କର ମନେପଡ଼ିଗଲା— ତାଙ୍କ ମା'ଙ୍କ ମୁହଁଟା !

ମା'ଙ୍କର ବହୁତ ବାଳ ଥିଲା । ଆଉ ଗରମ ଦିନରେ ଦି'ପହରେ ସେ ବାଳଗୁଡ଼ାକୁ ମୁଣ୍ଡ ଉପରେ ଠେକିଭଳି ଯେତେବେଳେ ବାନ୍ଧି ରଖୁଥିଲେ ଏମିତି ଅହଙ୍କାରୀ— ଅହଙ୍କାରୀ ଦିଶୁଥାନ୍ତି ।

ଶମ୍ପାର ମୁହଁରେ ମା'ଙ୍କର ଆକୃତି ଅଛି । ଅଥଚ ଶମ୍ପାର ବାପାଙ୍କ ମୁହଁରେ ଟିକିଏ ହେଲେ ସାଦୃଶ୍ୟ ନ ଥିଲା । ଆଉ ଶମ୍ପାର ମା' ତ ସଂପୂର୍ଣ୍ଣ ଅଲଗା ଘରର ଝିଅ । ପ୍ରକୃତିର ଏ ଏକ ଆଶ୍ଚର୍ଯ୍ୟ ରହସ୍ୟ ! ସେ ଯେ କେତେ ରହସ୍ୟର ସିନ୍ଦୁକକୁ ସମ୍ଭାଳି ରଖି ନିଃଶବ୍ଦରେ ନିଜର କାମ କରିଯାଏ ! ହଠାତ୍ ପୁଣି ମାଆଙ୍କ ମୁହଁର ସାଦୃଶ୍ୟ ଦେଖି କ'ଣ ନୂଆ କରି ଭଲ ଲାଗିଲା ଶମ୍ପାକୁ ? ଆଉ ଶମ୍ପାକୁ ଅନାମିକା ଅହେତୁକ ପ୍ରଶ୍ରୟ ଦେବାର ଏଇଟା ଗୋଟାଏ କାରଣ ? ମାଆଙ୍କ ଭଳି ମୁହଁ !

ମା'ଙ୍କୁ ମନେ ପକାଇଲାକ୍ଷଣି ତାଙ୍କ ପାଇଁ ଭୟଙ୍କର କଷ୍ଟହୁଏ ଅନାମିକାଙ୍କର । ଆଜି ମଧ୍ୟ ହେଲା ।

ମନେପଡ଼ିଲା ବାହାରର ଜଗତ ପାଇଁ କି ବ୍ୟାକୁଳତା ଥିଲା ମା'ଙ୍କର । ସାମାନ୍ୟ ଆଲୋକର ଜଗତ ପାଇଁ ଟିକେଟ୍ ପାଇବାକୁ କି ଆକୁଳ ହେଉଥିଲେ ସେ । ଅଥଚ ଏମାନେ – ସିଗାରେଟ୍‌ର ସେହି ପ୍ରସିଦ୍ଧ ବିଜ୍ଞାପନର କଥା ମନେପଡ଼ିଲା ଅନାମିକା ଦେବୀଙ୍କର ।...... 'ଆପଣ ଜାଣନ୍ତି ନାହିଁ ଆପଣ କ'ଣ ହରାଉଛନ୍ତି......' ।

ଏମାନେ ଜାଣିପାରୁ ନାହାନ୍ତି ଏମାନେ କ'ଣ ପାଉଛନ୍ତି ! ଏମାନଙ୍କ ହାତରେ ଯଥେଚ୍ଛ-ବିହାରର ଛାଡ଼ପତ୍ର, ଏମାନଙ୍କ ହାତରେ ଅଛି ସବୁ ଦୁଆରର ଚାବି, ସବୁ ଜଗତର ଟିକେଟ୍ । ଏମାନେ ଭାବିପାରୁ ନାହାନ୍ତି ସୁଦ୍ଧା ଯେ ସୁବର୍ଣ୍ଣଲତା କେତେ ଟାଣୁଆ କାନ୍ଥ ଭିତରେ ଆବଦ୍ଧ ରହିଥିଲେ, ଆଉ ବକୁଳକୁ କେତେ କାନ୍ଥ ଭାଙ୍ଗିବାକୁ ନ ପଡ଼ିଛି...... କେତେ ଧୈର୍ଯ୍ୟର ପରୀକ୍ଷା ଦେଉ ଦେଉ କାନ୍ଥ ଭଙ୍ଗାଯାଇଛି ।

ଏମାନଙ୍କୁ କୌଣସିଦିନ ସେ ପରୀକ୍ଷା ଦେବାକୁ ପଡ଼ିନି ।...... ମହାକାଳ ଆଗେଇ ଚାଲିଛି ଆପଣା ନିୟମରେ, ସମସ୍ତ ପ୍ରତିକୂଳ ଚିତ୍ତ ସେ ପ୍ରବାହରେ ଭାସୁ ଭାସୁ ନିଜେ ନିଜେ ହିଁ ଅନୁକୂଳ ହୋଇଯାଇଛି !

ବକୁଳର ଯେଉଁ ବଡ଼ଭାଇନା ତାଙ୍କର ସାନ ଭଉଣୀକୁ ସାହିର ଟୋକାର ମୁହାଁମୁହିଁ ହେବାର ଥରଟିଏ ଦେଖିଲେ ସୃଷ୍ଟି ରସାତଳକୁ ଯାଉଛି ଭାବି କ୍ରୋଧରେ ଜ୍ଞାନ ହଜାଇ ପକାଉଥାନ୍ତି, ସେହି ଭାଇନାଙ୍କ ପୁଅ ନିଜର ଅଠରବର୍ଷର ଝିଅକୁ ତା'ର ବୟ-ଫ୍ରେଣ୍ଡମାନଙ୍କ ସଙ୍ଗେ ପିକ୍‌ନିକ୍ କରିବାକୁ ନେଇ ଛାଡ଼ିଦିଅନ୍ତି ଦୀଘାରେ, ପୁରୀରେ, ରାଞ୍ଚିରେ, କୋଲାଘାଟରେ, ବେତାର ହାଟରେ !!

ସେ ଝିଅଟା କ'ଣ ସଂପର୍କରେ ଅନାମିକାଙ୍କର ନାତୁଣୀ ନୁହେଁ ? ହଁ ତା'ର ଉଚିତ ଥିଲା ଅନାମିକାଙ୍କ ପାଖକୁ ଆସି ହସି ହସି ତା' ବୟ-ଫ୍ରେଣ୍ଡଙ୍କ ବିଷୟରେ ଗଳ୍ପ କରିବା । କିନ୍ତୁ ସେ ତାହା କରେ ନାହିଁ । ଏପଟେ ତା'ର ଛାଇ ସୁଦ୍ଧା ପଡ଼େନି !

ତା'ର ମାତୃଦେବୀ ଆପଣାର ପରିମଣ୍ଡଳରେ ଆତ୍ମସ୍ଥ ତୁଚ୍ଛ ଲେଖିକା-ଫେକିକାଙ୍କୁ ସେ ଧର୍ତ୍ତବ୍ୟ ବୋଲି ବିଚାରନ୍ତି ନାହିଁ । ତାଙ୍କର ପିତୃକୁଳର ଦିଗଦିଗନ୍ତରେ ସମସ୍ତେ ହିଁ ପଦସ୍ଥ ବ୍ୟକ୍ତି, ସରକାରଙ୍କ ଉଚ୍ଚ ଆସନରେ ପ୍ରତିଷ୍ଠିତ । ସେହି ସମାଜଟାକୁ ହିଁ ସେ ଭଲରୂପେ ଜାଣନ୍ତି । ସେହି ସମାଜରେ ଉପଯୁକ୍ତ କରି 'ମଣିଷ' କରି ଗଢୁଛନ୍ତି ଝିଅଟାକୁ । ଝିଅକୁ 'ନର୍ତ୍ତକୀ' କରିବାକୁ ଅନେକ କାଠ-ଛଣ ପୋଡୁଛନ୍ତି ସେ । ସାହିତ୍ୟ-ଫାହିତ୍ୟ ସେମାନଙ୍କ ପାଖରେ ଏକ ଅବାନ୍ତର ଅଦରକାରୀ ବସ୍ତୁ ।

ସେ ଝିଅଟା, ଯାହାର ନାଁ ସତ୍ୟଭାମା, ଆଉ ତାକ ନାଁ କୃଷ୍ଣା (ମହାଭାରତର ନାଁଗୁଡ଼ିକ ହିଁ ତ ଏ ଯୁଗରେ ପେଟେଣ୍ଟ୍ ଫେସନ୍) । ଆଉ ଚଟ୍‌କିନା ଜଣା ବି ପଡ଼େ ନା ବଙ୍ଗଳା କି ଅବଙ୍ଗଳା । ସେ ଯେତେବେଳେ ଦେହରେ ଟିପା ସାଲୁଆର୍ କାମିଜ ପିନ୍ଧି ଆଉ ବହଲିଆ କରି ପେଇଣ୍ଟ୍ କରିଥିବା ନାଲି-ନାଲି ମୁହଁରେ ମହମପାଲିସ୍ ଲଗାଇ ହି ହି ହେଉ ହେଉ ତା'ର ଦଳେ ବୟଫ୍ରେଣ୍ଡଙ୍କ ସହିତ ବୁଲିବାକୁ ବାହାରିଯାଏ । ସେତେବେଳେ ସେ ଦୃଶ୍ୟ ଆଖିରେ ପଡ଼ିଲେ ଅନାମିକା ନିଜର ଅଜ୍ଞାତସାରରେ ତାଙ୍କର ବଡ଼ଭାଇନାଙ୍କ କଥା ମନେ ପକାନ୍ତି ।

ସେହି ଏକା ଘର, ଦାଣ୍ଡ ଦୁଆରଟା ମଧ୍ୟ ଗୋଟିଏ । ସେ ଦୁଆରର ସାମନାରେ ଭୀମ ମନୋଭାବ ଧରି ପହରା ଦେଉଥିଲା ବଡ଼ ଭାଇନା, ଆଉ ବକୁଳ ପଡ଼ିଶାଘରୁ ବୁଲି ଫେରିଲାମାତ୍ରେ ରୁଦ୍ଧ ଗର୍ଜନ କରି ପଚାରୁଥିଲା— କୁଆଡ଼େ ଯାଇଥିଲୁ ? ସେହି ପଡ଼ିଶାଘରଟି ବ୍ୟତୀତ ଯେ ବକୁଳର ବୁଲିଯିବାକୁ ଆଉ କୌଣସି ଜାଗା ନ ଥିଲା ସେ କଥା ଜାଣିଥିବା ସତ୍ତ୍ୱେ ବକୁଳର ବଡ଼ଭାଇନା ସେହି ବୃଥା ପ୍ରଶ୍ନଟି ପଚାରେ ।

ସତ୍ୟଭାମାର ମା' ଅଳକାହେରିକାଙ୍କ ସେହି ବଡ଼ଭାଇନାଙ୍କ ଅନେକ ଯତ୍ନରେ ଖୋଜିଆଣିବା ବୋହୂଟି କ'ଣ ସେ ସେକାଳିଆ ଶଶୁରଙ୍କୁ 'ଉଚିତ ଜବାବ ଦେବାପାଇଁ ସାନଟି ବେଳୁଁ ଝିଅଟାକୁ ହତିଆର ବନେଇଥିଲା ? ବର୍ତ୍ତମାନ ଅବଶ୍ୟ ବଡ଼ଭାଇନା ମରିଯାଇ ରକ୍ଷା ପାଇ ଯାଇଛନ୍ତି ।

କିନ୍ତୁ ସଯତ୍ନରେ ଦାଢ଼ କରିଥିବା ସେହି ହତିଆରଟି ପୁଣି ତା' ନିଜ ବାପା, ମା'ଙ୍କ ପାଇଁ ଶାଣିତ ହେଉଛି କି ନାହିଁ କିଏ ଜାଣିଛି ? ସଂସାରର ନିୟମ ତ ସେଇୟା ।

ସତ୍ୟଭାମା ଆଉ ଶମ୍ପାର ବୟସରେ ସାମାନ୍ୟ ପାର୍ଥକ୍ୟ ଅଛି, ଗୋଟିଏ ଘରେ ବାସ କରନ୍ତି, ତେବେକେ ସେମାନଙ୍କ ଭିତରେ ପଟୁନି । ଶମ୍ପା ସତ୍ୟଭାମାକୁ କୃପା ଦୃଷ୍ଟିରେ ଦେଖେ, ସତ୍ୟଭାମା ଶମ୍ପାକୁ କୃପା ଦୃଷ୍ଟିରେ ଦେଖେ !

ଶମ୍ପାର ଏକମାତ୍ର ବାନ୍ଧବୀ ହେଉଛନ୍ତି ତା'ର ପିଉସୀ । ସେଥିପାଇଁ ଶମ୍ପା ଅତି ସହଜରେ କହିଦେଇପାରେ— ଚେଷ୍ଟା କରିବାକୁ ଲାଗିଗଲି ।

ଅନାମିକାଙ୍କ କଡ଼ା ଗଳାକୁ ଅବଶ୍ୟ ଶମ୍ପା ଗ୍ରାହ୍ୟ କରେ ନାହିଁ, ତେବେକେ ଅନାମିକା କଡ଼ାଗଳାରେ କହନ୍ତି— ଚେଷ୍ଟା କରିବାକୁ ଲାଗିଗଲି ମାନେ ?

—ଏ ଗଲା ! ତମକୁ ପୁଣି ମାନେ ବୁଝାଇବି କ'ଣ ? ତମେ କ'ଣ ଜାଣି ନାହଁ ଯେ ! ଆଉ କ'ଣ ବା ଲେଖୁ ନାହଁ ! ଚେଷ୍ଟାରେ ଲାଗିଗଲି ମାନେ—

କଟମଟ କରି ଚାହିଁ କହିଲେ— ସାହସ ଅଛି ଯଦି ଏକାସଙ୍ଗେ ଓହ୍ଲାଇ ପଡ଼ନ୍ତୁ, କଥା ଦେଉଛି !...... ବାସ୍ ସେତିକି କହିଛି ଯେମିତି ମୁଁ ଓହ୍ଲାଇ ପଡ଼ିଲି, ସାଙ୍ଗେ ସାଙ୍ଗେ ସେ ମଧ୍ୟ ଓହ୍ଲାଇପଡ଼ିଲା ।

—ଓହ୍ଲାଇ ପଡ଼ିଲା ?

—"ପଡ଼ିବନି ?" ଟିକିଏ ବିଜୟ ଗୌରବର ହସ ହସି କହିଲା ଶମ୍ପା— ଅଲ୍‌ରେଡ଼ି ତ ଜାଲରେ ପାଦ ସେତେବେଳକୁ ଛନ୍ଦି ହୋଇଗଲାଣି । ରାସ୍ତାରେ ଓହ୍ଲାଇ ପ୍ରଥମେ କହିଲି— ଆପଣଙ୍କ କଥାର ଉତ୍ତର ହେଉଛି, ଚିଡ଼ିଆଖାନାର ଜୀବକୁ ଖୋଲା ରାସ୍ତାରେ ଦେଖିଲେ ମଣିଷ ନିଶ୍ଚୟ ଚାହିଁରହିବ । କିନ୍ତୁ ଆପଣ ବଡ଼ ବଡ଼ ଆଖି କରି ଚାହୁଁଥିଲେ କ'ଣ କରିବାକୁ ଶୁଣେ ? ସଇତାନଟା କ'ଣ କହିଲା ଜାଣିଛ ? ଆପଣମାନଙ୍କ ପରି ଉଭଟ ବେଶ ପକାଇଥିବା ହାସ୍ୟକର ଜୀବମାନଙ୍କୁ ଦେଖିଲେ ମଧ୍ୟ ଲୋକମାନେ ନିଶ୍ଚୟ ଚାହିଁବେ ।...... ତା'ପରେ ଏମିତି କଥାବାର୍ତ୍ତା ହେଲା, ମୁଁ କହିଲି— ଜାଣନ୍ତି ଏଥିରେ ମୁଁ ଅପମାନିତ ଅନୁଭବ କରୁଛି ।

ସେ କହିଲା— ତା' ଅର୍ଥ ଆପଣମାନଙ୍କର ଦେହର ଚମଡ଼ା ଅଙ୍ଗୁରର ଚୋପା ପରି । ସତକଥା ଶୁଣିଲାମାତ୍ରେ ଫୋଟକା ହୋଇଯିବ ।

ମୁଁ କହିଲି— ଜାଣନ୍ତି ଆପଣଙ୍କର ଏହି ସ୍ପର୍ଦ୍ଧାଜନକ ଉକ୍ତି ଯଦି ରାସ୍ତାର ଲୋକଙ୍କୁ ଡାକି କହିଦେବି, ତା ହେଲେ ଯେ ଯେଉଁଠି ଅଛନ୍ତି, ଆସି ଆପଣଙ୍କ ଉପରେ ଝାମ୍ପି ପଡ଼ିବେ, ଦେହର ଚମଡ଼ାକୁ ଉତାରି ଦେବେ !

—ସେ କଥା ଜାଣେ । ଆଉ ସେହିଠାରେ ହିଁ ଆପଣମାନଙ୍କର ସାହସ ରହିଛି । ଜାଣନ୍ତି ଦୋଷ ଯେଉଁ ପକ୍ଷର ହେଲେ ହେଉ, କାଠଗଡ଼ାରେ ଠିଆହେବାକୁ ପଡ଼ିବ ଏ ପୁରୁଷଜାତିଟାକୁ !

—ଆପଣ ତ କୁଲିକାମ କରୁଛନ୍ତି ! ଏତେ ଲମ୍ବା ଲମ୍ବା କଥା ଶିଖିଲେ କାହାଠାରୁ । କଡ଼ାଗଲାରେ ସେ କହିଲା— ଆପଣମାନଙ୍କ ଭଳି ଝିଅମାନଙ୍କୁ ଦେଖି ଦେଖି ।

—"ଏତେ ଦେଖିଲେ କେଉଁଠି ?" କହିଲା— ଆଖି ଥିଲେ ଆପେ ଦେଖାଯିବ । କେହି ତ ଆଉ ହାରେମ୍‌ରେ ରହୁ ନାହାନ୍ତି ।"

ତା'ପରେ ସେ ଅନେକ କଥା । ମୋଟକଥା, ଶେଷକୁ ସାଙ୍ଗ ହୋଇଗଲୁ । ଏକାସଙ୍ଗେ ଚା' ପିଇଲୁ । ଆଉ ସେଦିନଠୁ—

ଶମ୍ପା ଟିକିଏ ହସି ତୁନି ହୋଇଗଲା ।

—ତା'ରି ସାଙ୍ଗରେ ତା'ହେଲେ ଏବେ ବୁଲୁଛୁ ?

—ଠିକ୍ ବୁଲିବା-ନୁହେଁ । ତା'ର ବେଳ କାହିଁ ? କାରଖାନାର ଓଭରଟାଇମ୍ ଖଟେ, ମୁଁ ମଝିରେ ମଝିରେ ବୁଲିଯାଏ ! ସେହି କଳାବୋଲା ଢାମା ପିନ୍ଧିହୁଏ ତ କୌଣସି ପାର୍କ ଫାର୍କରେ ଆସି ବସିପଡ଼େ ।

—ଭାରି ଭଲ ଲାଗେ, ନାଇଁ ? ବିଶେଷତଃ ଚେହେରାର ଯାହା ବର୍ଣ୍ଣନା ଶୁଣିଲି ।

ଏଥର ଶମ୍ପା ଗମ୍ଭୀର ହୋଇଗଲା । କହିଲା— ଚେହେରାରେ କ'ଣ ଯାଏ ଆସେ ପିଉସୀ ? ମଣିଷଟା କେମିତି ସେଇଟା ତ ଦେଖିବା କଥା ! ଏ ଦେଶରେ ଏକ ସମୟରେ ପୁରୁଷର ଚେହେରାର ଆଦର୍ଶ ଥିଲା କାର୍ତ୍ତିକେୟଙ୍କ ପରି ହେବା । ଆଉ ତା'ର ସାଜସଜ୍ଜାର ଆଦର୍ଶ ଥିଲା ଲମ୍ବା କୁଞ୍ଚ ଧୋତି ପିନ୍ଧା ସୌଖୀନ୍ ବାବୁ ବେଶ । ଏଇଲେ ସେ ଚେହେରା ବରଦାସ୍ତ କରିପାରିବ ? ମନ ସହିତ ଆଖିର ପସନ୍ଦ ମଧ୍ୟ ନିଶ୍ଚେ ବଦଳିଯିବ ।

ହସିଦେଇ ଅନାମିକା ଦେବୀ କହିଲେ— ହେଲା ଏଇଲେ ତ ବନ୍ୟ-ବନ୍ୟ ବର୍ବର-ବର୍ବର ପର୍ଯ୍ୟନ୍ତ ଆସିଗଲାଣି, ୟା ପରେ ? ପୂରା ଅରଣ୍ୟର ପ୍ରାଣୀ ?

ଉଦାସ ଗଳାରେ ଶମ୍ପା କହିଲା— ସେଇଟା ମଧ୍ୟ ଅସମ୍ଭବ ନୁହେଁ । 'ମଣିଷ' ଜାତିଟା ଦିନକୁ ଦିନ ଯେଉଁପ୍ରକାର ଭେଜାଲ ହୋଇ ଯାଉଛି ନା !

ଟେଲିଫୋନ୍‌ଟା ବାଜିଉଠିଲା । ସାଙ୍ଗେ ସାଙ୍ଗେ ଡେଇଁପଡ଼ିଲା ଶମ୍ପା, କହିଲା ନିଶ୍ଚୟ ସେ ।

ରିସିଭର୍‌ର ମୁହଁଟାକୁ ହାତରେ ଘୋଡ଼ାଇ ଅନାମିକା ମୃଦୁକଣ୍ଠରେ କହିଲେ,— ତତେ କହିଥିଲି ନା, ତୋ'ର ଏଭଳି ସାଙ୍ଗମାନଙ୍କୁ ମୋର ଫୋନ୍ ନମ୍ବର ଦେବୁନି ।

—କହିଥିଲ, ସେ କଥା ମାନୁଛି । କିନ୍ତୁ ନ ଦେଲେ ସେମାନଙ୍କର କି ଗତି ହେବ କହିଲ ?...... କିନ୍ତୁ ଫୋନ୍ ଧରି ହତାଶ ହୋଇ ବସିପଡ଼ିଲା ଶମ୍ପା । 'ସେ' ନୁହେଁ ।

ଅନାମିକା ସେତେବେଳକୁ କଥା କହିବା ଆରମ୍ଭ କରିଦେଲେଣି— ଦେଖା କରିବାକୁ ଚାହାନ୍ତି ? କାରଣଟା କହନ୍ତୁ ? ଲେଖା ନା ସଭା ? ଦୁଇଟାଯାକ କିଛି କରିପାରିବିନି...... କ'ଣ କହିଲେ ? ମତେ ସମ୍ବର୍ଦ୍ଧନା ଦେବାକୁ ଚାହାନ୍ତି ? କି ସର୍ବନାଶ ! କାହିଁକି ? ହଠାତ୍ କି ଅପରାଧ କରିବସିଲି ?...... ପାଗଳ ହେଲେ କି ? ନା, ନା, ସେସବୁ ପିଲାଳିଆମି ଛାଡ଼ନ୍ତୁ !...... ଦେଖ ଚାହୁଁଛି ?

କାହିଁକି ମତେ ତ ଏଇଲେ ଅଶୀବର୍ଷ ହୋଇନି ! ଅଶୀ ଆଗରୁ ସେ ସବୁ କରିବା କଥା ନୁହେଁ...... ତା'ହେଲେ ବି ଦେଖା କରିବାକୁ ଆସିବେ ?...... ଦେଖନ୍ତୁ ମୋ ଘରକୁ ଆସନ୍ତୁ ନାହିଁ, ଏ କଥାଟା କହିବା କଷ୍ଟ, କିନ୍ତୁ ଆସି କ'ଣ କରିବେ ? ସେସବୁ ଯାତ୍ରା ଦଳର ହିରୋ ଫିରୋ ସାଜିବା ମୋ ଦ୍ୱାରା ହେବ ନାହିଁ ।....... ତା' ହେଲେ ବି ଆସିବେ ? ଠିକ୍ ଅଛି, ଆସନ୍ତୁ , ତେବେ କାର୍ଡ୍ ଫାର୍ଡ୍ ଛପାଇ ବସିଲେ ସେ ଦାୟିତ୍ୱ ଆପଣଙ୍କର ।...... କ'ଣ କହିଲେ ? ନାକତଲା ଶିଳ୍ପୀ ସଂସ୍ଥା ?...... ଆଚ୍ଛା ଧନ୍ୟବାଦ' ଫୋନ୍‌ଟା ରଖିଦେଲେ ଅନାମିକା । କ୍ଳାନ୍ତ ଦିଶିଲେ ସେ ।

ହେଇଟି ପୁଣି ଚାଲିବ ଧସ୍ତାଧସ୍ତି, ନିତାନ୍ତ ଅଭଦ୍ର ନ ହେଲା ପର୍ଯ୍ୟନ୍ତ ସେମାନଙ୍କ ହାତରୁ ନିଷ୍କୃତି ମିଳିବନି ।...... କାରଣ ସେହି ସମ୍ବର୍ଦ୍ଧନାର ଅନ୍ତରାଳରେ 'ଅଭିସନ୍ଧି' ନାମକ ଯେଉଁ ଜନ୍ତୁଟି ରହିଛି, ସେ ତା'ର ମୁହଁର ଗ୍ରାସଟିକୁ ଛାଡ଼ିବାକୁ ସହଜରେ ରାଜି ହେବ ?

ଅନାମିକାଙ୍କୁ ଦେଶ ସମ୍ବର୍ଦ୍ଧନାରେ ଭୂଷିତ କରିବାକୁ ଚାହେଁ ବୋଲି 'ନାକତଲା ଶିଳ୍ପୀସଂସ୍ଥା' ଦେଶବାସୀଙ୍କ ମୁଖପତ୍ର ହୋଇ ସେହି ଗୁରୁଦାୟିତ୍ୱ ମୁଣ୍ଡେଇ ନେବାକୁ ଚାହାନ୍ତି, ଏଭଳି କଥା ବିଶ୍ୱାସ କଲାପରି ସାନ ଛୁଆ ହୋଇ ନାହାନ୍ତି ଅବଶ୍ୟ ଅନାମିକା ଦେବୀ । ତେବେ ଯେଉଁଟିକକ ଦେଖୁଛନ୍ତି ସେଇଟିକକ ବିଶ୍ୱାସ କରିବାର ଛଳନା କଲେ ଭଲ । ସବୁ ସତ୍ୟକୁ ଉଦ୍‌ଘାଟିତ ନ କରିବା ହିଁ ବୁଦ୍ଧିମାନର କାର୍ଯ୍ୟ । ଶମ୍ପାର ନିୟମରେ ସଂସାରରେ ବାସ କରିବା ଚଳିବ ନାହିଁ ।

ଶମ୍ପା କହିଲା— ପିଉସୀ ! ସେମାନେ ତମକୁ ସମ୍ବର୍ଦ୍ଧନା ଦେବାକୁ ଚାହାନ୍ତି ?

—ସେ ଇଚ୍ଛା ହିଁ ଜଣାଇଲେ । ହଁ, ମନେ ହେଉଛି, ମରିବା ଆଗରୁ ଶ୍ରାଦ୍ଧର ମନ୍ତ୍ର ପାଠ କରି ଶେଷକୃତ୍ୟ କରି ଦେଉଛନ୍ତି ।

—ଅଥଚ କଥାଟା ବଢ଼ି ଚାଲିଛି । ସବୁଦିନ ତ ଶୁଣୁଛି ଯାର ସମ୍ବର୍ଦ୍ଧନା, ତା'ର ସମ୍ବର୍ଦ୍ଧନା ।

—ବଢ଼ିବ ତ । ଦେଶକୁ ତ ଫଙ୍କସନ୍‌ର ନିଶା ଗ୍ରାସିଛି । ଏ ନିଶା ଆଡ଼େଇ ଦେଇପାରେ ଏମିତି ଆଉ ଗୋଟାଏ ନୂଆ ନିଶା ଆସିଲା ପର୍ଯ୍ୟନ୍ତ ବଢ଼ିବ, ଉତ୍ତରୋତ୍ତର ବଢ଼ିବ ।

ମୁହଁରେ ଅନାମିକା ଏତିକି କହିଲେ । ମନେ ମନେ କହିଲେ, ଖାଲି ତ ନିଶା ନୁହେଁ, ସେଇ ଫଙ୍କସନ୍ ପଛରେ ଯେ ଅନେକ ମଧୁ ଥାଏ । ସେହି 'ମଧୁ'ର ହିଁ ନିଶାଟା ! ଦେଶର ଲୋକଙ୍କଠାରୁ ଚାନ୍ଦା ଆଦାୟ କରିବା, ସରକାରଙ୍କ

ଘରୁ 'ଏଇଡ୍' ବାହାର କରିବା, ଅତିକମ୍‌ରେ ନିଜକୁ ପାଦପ୍ରଦୀପର ସାମନାରେ ଟେକି ଧରିବା, ସବୁ କିଛିର ମାଧ୍ୟମ ତ ସେହି ଫଙ୍କସନ୍ ! ଯେତେବେଳେ ଯେଉଁ ଉପଲକ୍ଷ୍ୟଟି ମିଳୁଛି କରୁଛନ୍ତି ।

ଆଶ୍ଚର୍ଯ୍ୟ ! ଆଗେ କି ମୂଲ୍ୟବାନ ହିଁ ମନେହେଉଥିଲା ଏ ଜିନିଷଗୁଡ଼ାକ ! ପ୍ରଥମେ ପ୍ରଥମେ ଯେତେବେଳେ ଏହି ତେର-ଦୁଇ ରାଜେନ୍ଦ୍ରଲାଲ୍‌ର ଷ୍ଟ୍ରୀଟ୍‌ର ଦୁଆରବନ୍ଧକୁ ଡେଇଁ ବାହାର ପୃଥିବୀର ସଭାରେ ଯାଇ ବସିଛନ୍ତି ଅନାମିକା, ଯେତେବେଳେ ଏହି 'ଅଭିସନ୍ଧି' ନାମକ ଲୁଚିଥିବା ଜନ୍ତୁଟିର ନିଶର ଅଗଟି ଦେଖି ଚିହ୍ନିଦେବା ଭଳି ତୀକ୍ଷ୍ଣ ଦୃଷ୍ଟି ଲାଭ ହୋଇ ନ ଥିଲା, ସେତେବେଳେ ସବୁ କଥା କେତେ ଭଲ ଲାଗୁ ନ ଥିଲା ! ଭଲ ଭଲ କଥାଗୁଡ଼ିକ ଯେ କେବଳମାତ୍ର 'କଥା' ଏ କଥା ବୁଝିବାକୁ ତାଙ୍କୁ ବେଶ୍ କିଛିଦିନ ଲାଗିଯାଇଥିଲା ।

ତା'ବୋଲି କ'ଣ ଖାଣ୍ଟି ମଣିଷ ଦେଖି ନାହାନ୍ତି ଅନାମିକା ଦେବୀ ? ଛି, ଛି, ଏକଥା କହିଲେ ପାପ ହେବ । ଉଦାର ଦେବୋପମ ଚରିତ୍ରର ସେହି ମଣିଷଟିକୁ କ'ଣ ଆଜି ମଧ୍ୟ ପ୍ରଣତି ଜଣାନ୍ତି ନାହିଁ ଅନାମିକା ? ଯେଉଁ ମଣିଷଟି ବକୁଳ ନାମ୍ନୀ ଝିଅଟାକୁ ହାତ ଧରି ଖୋଲା ଆକାଶ ତଳକୁ ଡାକି ଆଣିଥିଲେ । ଯେଉଁ ମଣିଷଟିର ସ୍ନେହ ଅନାମିକାଙ୍କର ଏକ ପରମ ସଞ୍ଚୟ ।

ସେହି ଖୋଲା ଗଳାରେ ଉଦାର ସ୍ୱର ଏବେ ମଧ୍ୟ ବାଜୁଛି କାନରେ— ବାପା ଆପତ୍ତି କରିବେ ? ରାଗିବେ ? ତା'ହେଲେ ତମେ ଆଉ ମୁଠାଏ ଭାତ ଅଧିକା ଖାଇଦେବ ମୋ ସଙ୍ଗେ ଚାଲ ତ । ଦେଖିବା କିଏ କ'ଣ କହୁଛି ।...... କି ଆଶ୍ଚର୍ଯ୍ୟ ! ଅନ୍ୟାୟ କାମ ନୁହେଁ, ଅନ୍ୟର ଅନିଷ୍ଟ କରିବାଭଳି କାମ ନୁହେଁ, କବିମାନଙ୍କୁ ଦେଖିବାକୁ ଯିବା । ସେଥିରେ ଏତେ ଡର ? କେତେ ଲୋକ ଯାଉଛନ୍ତି, ସାରା ପୃଥିବୀର ମଣିଷ ଆସୁଛନ୍ତି । ଅଥଚ ଏଠି ଥାଇ ଦେଖିବନି ? ଲୋକେ ଦେବଦର୍ଶନ ପାଇଁ ଯାଉନାହାନ୍ତି ? ତୀର୍ଥସ୍ଥାନକୁ ଯାଉ ନାହାନ୍ତି ? ସେଇୟା ଭାବନ୍ତୁ । ଆଉ ସେଇଥିପାଇଁ ତ ବୋଲପୁର ଶାନ୍ତିନିକେତନ ଆଜି ଭାରତବର୍ଷର ଗୋଟିଏ ତୀର୍ଥ । ତା'ଛଡ଼ା ତମେ ଏଇଲେ ଲେଖିକା ହେଉଛ, ତମର ଯିବା ନିହାତି ଉଚିତ ।

ସେହି ଗମ୍ଭୀର ଉଦାର ସ୍ୱର ଯେପରି ଭୟର ଖୋଳପାଗୁଡ଼ିକୁ ଛଡ଼ାଇଦେଲା ।

ତେବେକେ କ'ଣ କମ୍ ବାଧାକୁ ଆଡ଼େଇବାକୁ ପଡ଼ିଥିଲା ?

ପ୍ରବୋଧଚନ୍ଦ୍ରଙ୍କ ଚାରିକାନ୍ଥ ଭିତରୁ ବାହାରି ତାଙ୍କର ବୟସ୍କା କୁମାରୀ ଝିଅ ଜଣେ ନିହାତି ଦୂର-ଆତ୍ମୀୟ ପୁରୁଷ ସହିତ ଏକାକୀ ବୁଲିବାକୁ ଯାଇ ଦୁଇ ରାତି ବାହାରେ

କଟାଇ ଆସିବ, ଯାଠାରୁ ବଳି ଅନିୟମ ପୃଥିବୀରେ ଆଉ ଅଛି କି ନାହିଁ ସନ୍ଦେହ । ସେ କଥାଟା ଜଣା ନ ଥିଲା ପ୍ରବୋଧଚନ୍ଦ୍ରଙ୍କୁ, ଜାଣିବାକୁ ଅନେକ ପରିଶ୍ରମ କରିବାକୁ ପଡ଼ିଥିଲା, ଅନେକ ବାଧା ସୃଷ୍ଟି କରିବାକୁ ପଡ଼ିଥିଲା ।

ତେବେକେ ବାହାରିପଡ଼ିଥିଲା ପ୍ରବୋଧଚନ୍ଦ୍ରଙ୍କର ଅନୂଢ଼ା ଝିଅ, ବୟସ୍କା କୁମାରୀ ! ସ୍ତ୍ରୀର ତୀର୍ଥଯାତ୍ରାକୁ ରୋଧ କରିବାକୁ ଯେଉଁ କୌଶଳ ଗ୍ରହଣ କରିଥିଲେ ସେ, ସେ କୌଶଳ କରିବାକୁ ସାହସ ହୋଇନି ତାଙ୍କର ।

ହଁ, ବକୁଳର ମା' ସୁବର୍ଣ୍ଣଲତା ଦିନେ ସଙ୍ଗିନୀ ଯୋଗାଡ଼ କରି କେଦାର-ବ୍ରଦରୀ ପଥରେ ପାଦ ବଢ଼ାଇଥିଲେ । ପ୍ରବୋଧଚନ୍ଦ୍ର ସେହି ବଢ଼ାଇଥିବା ପାଦଟିକୁ ଘର ଭିତରକୁ ଫେରାଇ ଆଣିଥିଲେ କେବଳମାତ୍ର ସାମାନ୍ୟ ଟିକିଏ କୌଶଳ କରି ! କିନ୍ତୁ ସେ କୌଶଳ ଏବେ ଆଉ ପ୍ରୟୋଗ କରାଯାଇ ପାରିବନି । ଏବେ ଆଉ ସାହସ ହୁଏନି ଏକାସାଙ୍ଗରେ ଅନେକ ବେଶୀ ମାତ୍ରାର ଝାଡ଼ା ହେବା ଔଷଧ ଖାଇ ନାଡ଼ିକୁ ଛଡ଼ାଇ ଦେବାକୁ ! ଏବେ ଭୟ ହୁଏ ସେହି ଚାଲିଯାଇଥିବା ନାଡ଼ି ଯଦି ଆଉ ଫେରି ନ ଆସେ ? ଅତଏବ ଶେଷକୁ ଏ ସଂସାରରେ ସେହି ଭୟଙ୍କର ଅନିୟମଟା ଘଟିଥିଲା !

ସେତେବେଳେ ବକୁଳର ବଡ଼ଭାଇନାଙ୍କ ପୁଅ ସ୍କୁଲର ସୀମା ପାର ହୋଇ ନ ଥିଲା, ଆଉ ବାକି ସମସ୍ତେ ତ ଏକାବେଳକେ ଛୋଟ ! ସେତେବେଳେ ଏ ଘରେ ଆସାମୀ ଖାଲି ବକୁଳ ନାମର ସେହି ଝିଅଟା । ବଡ଼ଭାଇ ତେଣୁ ବାପାଙ୍କୁ ପଚାରିଥିଲେ, — ଘରେ ତା'ହେଲେ ଏସବୁ ସ୍ୱେଚ୍ଛାଚାର ଚଳିବ ?

କୁଞ୍ଚକାନିରେ ଆଖି ପୋଛି ପ୍ରବୋଧ କହିଥିଲେ— ମୁଁ କିଏ ? ମୁଁ ତ ଏଇଲେ ମଣିଷ ପଦରୁ ବାହାର ହୋଇ ଯାଇଛି । ତମେ ସବୁ ବଡ଼ ହେଇଛ—

—ଆମେ ଆମ ନିଜଘରକୁ ଶାସନ କରିପାରିବୁ । ଆପଣଙ୍କ ଦରବୁଢ଼ୀ ଝିଅକୁ ଆଉ ଶାସନ କରିବୁ କେଉଁ ଜୋର୍‌ରେ ? ସେଥିରେ ସେ ପୁଣି ଲେଖିକା ହୋଇଗଲେଣି ! ପୃଷ୍ଠବଳ ବଢ଼ିଯାଇଛି ।

ତେବେକେ ଆସିଥିଲେ ଶାସନ କରିବାକୁ । ବଡ଼ଭାଇନା ନୁହନ୍ତି, ଯେଉଁ ମଝିଆଭାଇନା କେବେ ସାତରେ ନ ଥାନ୍ତି କି ପାଞ୍ଚରେ ନ ଥାନ୍ତି, ସେ ଆସିଥିଲେ ! କହିଥିଲେ— ବାପାଙ୍କ ଉଚ୍ଚ ମଥାଟାକୁ ଏଭଳି ତଳକୁ ନ କଲେ ହୁଅନ୍ତା ନି ?

ବକୁଳ ତା'ର ମଝିଆଭାଇନାର ମୁହାଁମୁହିଁ ହୋଇ ଠିଆ ହୋଇ କହିଥିଲା, — ବାପାଙ୍କର ଏଥିରେ ମୁଣ୍ଡ ତଳକୁ ହେବ, ଏ କଥା ଭାବୁନି ମୁଁ ! ଅନେକ ତ ଏମିତି ଯାଉଛନ୍ତି !

— ଓଃ ତୁ ଭାବୁନୁ ? ଅନେକ ଏମିତି ଯାଆନ୍ତି ! ଚମତ୍କାର । ତା'ହେଲେ ଆଉ କହିବାର କ'ଣ ଅଛି ? କିନ୍ତୁ ସୁବିଧା ପାଇଁ ଏ କଥାଟା ମଧ୍ୟ ଭୁଲି ଯାଉଛୁ ସମସ୍ତଙ୍କର ସମାନ ଘର ନୁହେଁ । ଏ ଘରର ରୀତିନୀତିରେ —

ବକୁଳର ମୁହଁରେ ଟିକିଏ ହସ ଫୁଟି ଉଠିଥିଲା । ସେ ହସ ସହିତ ବକୁଳ କହିଥିଲା — ସୁବିଧା ପାଇଁ ଅନେକେ ତ ଅନେକ କଥା ଭୁଲି ଯାଆନ୍ତି ଭାଇନା ! ଏକ ସମୟରେ ଏ ଘରେ ଗୌରୀଦାନର ରୀତି ତ ଥିଲା, ଏବେ କୁମାରୀ ଝିଅର ବୟସ ପଚିଶିରେ ଯାଇ ପହଞ୍ଚିଗଲେ ମଧ୍ୟ ଅନିୟମ ବୋଲି ମନେ ହେଉ ନାହିଁ । ଏ କଥାଟା କ'ଣ ସବୁବେଳେ ମନେ ରହୁଛି ?

ତା'ର ଅର୍ଥ ବକୁଳ ତା'ର ଏହି ପଚିଶି ବର୍ଷର କୁମାରୀତ୍ୱର କଥା ଉଠାଇ ଭାଇନାକୁ ଦୋଷ ଦେଇଥିଲା ! ତା' ଅର୍ଥ କଥାଟା ଯେ ବକୁଳର ଜିଦ୍ ଯୋଗୁ ଘଟି ନାହିଁ, ସେହି କଥାଟା ବୁଝାଇଦେଲା ବକୁଳ ।

'ଓଃ ସେଇଥିପାଇଁ !' ମଝିଆ ଭାଇନା ଏକ ତୀକ୍ଷ୍ଣ ଦୃଷ୍ଟି ନିକ୍ଷେପ କରି କହିଥିଲେ — ଠିକ୍ ସମୟରେ ବାହା ଦିଆଯାଇନି ବୋଲି ଯଥେଚ୍ଛାଚାରର ଛାଡ଼ପତ୍ର ପାଇଯାଇଛୁ । ସେ କଥା ମନକୁ ଆସିନି । ତେବେ ବାହାଘରର ଚେଷ୍ଟାଟା ବାପା ଥାଉଣୁ ଆମେ କରିବା କଥା ନୁହେଁ । ବାପା ନ ଥିଲେ ଆମେମାନେ — ଅବଶ୍ୟ —

ଏଥର ଜୋର୍‌ରେ ହସିଥିଲା ବକୁଳ । କହିଥିଲା — ତମ ପାଦତଳେ ପଡୁଛି ମଝିଆଭାଇନା, ତୁମେମାନେ ମୋର ବାହାଘର କରିନାହଁ ବୋଲି ରାଗିଯାଇ ଯଥେଚ୍ଛାଚାର କରିବାକୁ ଚାହୁଁଛି, ଏତେଦୂର ଭାବନି ସୁନାଟା ! ସେଇ ବାହାଘରଟା ନ ହେବା ମୋ ପକ୍ଷରେ ପରମ ଆଶୀର୍ବାଦ ! ସନତ୍‌କକେଇ ଆଗ୍ରହ କରି କହିଲେ, ସେଇଥିପାଇଁ ସାହସ କଲି ! ଜୀବନର ଏ ସ୍ୱପ୍ନ ଯେ କେବେ ସଫଳ ହେବ ସେ କଥା ଭାବିନି କୌଣସିଦିନ । ଯଦି ତମମାନଙ୍କ ଘରର ଜଣେ ଝିଅର ଜୀବନରେ ଏମିତି ଅଘଟଣ ଘଟେ —

## ॥ ୧୩ ॥

ହଁ ଶେଷକୁ ସେହି ଅଘଟଣ ଘଟିଥିଲା ।

ସନତ୍‌କକେଇଙ୍କ ସଙ୍ଗେ ବୋଲପୁର ରାସ୍ତାରେ ପାଦ ରଖିଥିଲା ବକୁଳ ।

ଜୀବନର ପ୍ରଥମ ବିସ୍ମୟ ! ସେ କି ଆଶ୍ଚର୍ଯ୍ୟ ସ୍ୱାଦ ! ସେ କି ଅଭାବିତ ରୋମାଞ୍ଚ ! ଆକାଶରେ କେତେ ଆଲୁଅ ଅଛି, ପବନରେ କେତେ ଗୀତ ଅଛି,

ଜଗତରେ କେବେ ଆନନ୍ଦ ଅଛି, ସେ କଥା ତା' ଆଗରୁ କେତେ ବକୁଳ ଜାଣିଥିଲା ?

× × × × ×

କିନ୍ତୁ ବକୁଳ କ'ଣ ସେହି ଜ୍ୟୋତିର୍ମୟ ପୁରୁଷଙ୍କ ନିକଟକୁ ଯାଇଥିଲା ? ପାଦରେ ହାତ ଦେଇ ପ୍ରମାଣ କରିଥିଲା ? ତାଙ୍କୁ କହିପାରିଥିଲା— ମୋ'ର ଜୀବନ ଧନ୍ୟ ହୋଇଗଲା !

ପାଗଳ ! ଅନେକ ଲୋକଙ୍କ ଭିଡ଼ ଭିତରେ ଅନେକ ପଛରେ ବସିଥିଲା ବକୁଳ । ଖାଲି ଅନ୍ୟକୁ କହିବା କଥା ଶୁଣିଥିଲା । ଅଥବା କଥା ମଧ ଶୁଣି ନାହିଁ । ବକୁଳ ଖାଲି ଏକ ରୂପମୟ ଶବ୍ଦମୟ ଆଲୋକମୟ ଦୁଆର ପାଖରେ ଠିଆହୋଇଥିଲା— ସମସ୍ତ ଚେତନାକୁ ଲୁପ୍ତ କରି ।

ପୌଷ ମେଳା ଦେଖିବାକୁ ମେଳା ପଡ଼ିଆକୁ ନେଇଯାଇଥିଲେ ସନତ୍‌କକେଇ । ବାଧ ହୋଇ ବକୁଳକୁ ତାଙ୍କ ସଙ୍ଗେ ଯିବାକୁ ପଡ଼ିଥିଲା । କିନ୍ତୁ ବକୁଳର ମନେହୋଇଥିଲା କି ଅର୍ଥହୀନ ବୁଲିବା ! କି ଲାଭ ସେ ମାଟିର ସୋ଼ରେଇ, କାଠର ବାରକୋଣ, ରଙ୍ଗିନ କୁଲା, ପଥର ବାସନ, ଲୁହା କରେଇ, ଚଟୁ ଆଉ ନାଗରଦୋଳା ଦେଖିବାରେ !...... ଅବଶ୍ୟ ଖାଲି ଏତିକି ନୁହେଁ, ମେଳାରେ ଆହୁରି ଅନେକ ଆକର୍ଷଣୀୟ ବସ୍ତୁ ଥିଲା, ଲୋକମାନେ ତ ସେହି ମେଳା-ପଡ଼ିଆରେ ପଡ଼ି ରହୁଥିଲେ ଏବଂ ସେମାନଙ୍କର ମୁହଁ ଦେଖି ଆଦୌ ମନେହେଉ ନ ଥିଲା ଯେ କୌଣସି ଅର୍ଥହୀନ କାମ କରୁଛନ୍ତି । ଖାଲି ବକୁଳର ମନେ ହୋଇଥିଲା ଅନନ୍ତକାଳ ସେହି ଦେବମନ୍ଦିରର ଦ୍ୱାର ନିକଟରେ ବସି ରହିଲେ କ୍ଷତି ବା କ'ଣ ? ଜୀବନରେ କ'ଣ ଆଉ କେବେ ଏ ସୌଭାଗ୍ୟ ହେବ ?

ହୋଇ ନାହିଁ ମଧ । ତା'ପରେ ବହୁତ ଦିନ ବିତି ଯାଇଥିଲା । ତା'ପରେ ତ ଦେବତା ବିଦାୟ ନେଇଥିଲେ । ସନତ୍‌କକେଇ ଆସି କହିଥିଲେ— ଯାହାହେଉ ଭାଗ୍ୟକୁ ସେଦିନ ବାପାଙ୍କ ରାଗ ଭୟରେ ଅଟକି ରହିଯାଇ ନାହିଁ, ସେଇଥି ପାଇଁ ନା—

କିନ୍ତୁ ବକୁଳ ଘରେ ବକୁଳର ସନତ୍‌କକେଇଙ୍କ ପରିଚୟ କ'ଣ ? ମାସିକ ପତ୍ରିକାର ସମ୍ପାଦକ ? ପ୍ରେସ୍‌ର ମାଲିକ ? ପୁସ୍ତକ ପ୍ରକାଶକ ? ପ୍ରକୃତରେ ଏଗୁଡ଼ିକ ହିଁ ପରିଚୟର ସୂତ୍ର । ତେବେକେ ଆହୁରି ଗୋଟିଏ ଟିକେଟ୍ ଥିଲା, ଯାହା ବଳରେ ସନତ କକେଇଙ୍କର ଏ ପରିବାରରେ ପ୍ରବେଶାଧିକାର ଥିଲା । ପ୍ରବୋଧଚନ୍ଦ୍ରଙ୍କର ଅନେକ ଦୂର ସମ୍ପର୍କର ମାମୁପୁଅ ଭାଇ ସେ । ନ ହେଲେ ଖାଲି କାଗଜର ସମ୍ପାଦକ ବା ପୁସ୍ତକ ପ୍ରକାଶକ ହେଲେ ଏ ଦୁଆରବନ୍ଧକୁ

କିଏ ଡେଇଁବାକୁ ଦେଇଥାନ୍ତା ତାଙ୍କୁ ? ଆଉ କିଏ ସହିଥାନ୍ତା ସେକଥା– ପ୍ରବୋଧ ଭାଇନା, ଆପଣଙ୍କ ଝିଅଟି ଗୋଟାଏ ରତ୍ନ ! ଯାକୁ ଆପଣ ଘର ଭିତରେ ବସେଇ ରଖିଛନ୍ତି ? କଲେଜ-ଫଲେଜକୁ ପଠାଇଲେ–

କିନ୍ତୁ ଖାଲି କ'ଣ ସମ୍ପର୍କ ? ଚରିତ୍ର ନୁହେଁ ? ଯାହା ବଳରେ ମଣିଷ ଜୋର୍ ଗଳାରେ କହି ପାରିବ– ମୋ ସଙ୍ଗେ ଯିବ, ତା'ହେଲେ ଆଉ ଏତେ ଚିନ୍ତା କ'ଣ ?

ଅନେକ ସମୟ ପାର ହୋଇଯାଇଥିଲା ବୋଧହୁଏ, ହଠାତ୍ ଶମ୍ପାର ପ୍ରଶ୍ନରେ ଯେପରି ଅନ୍ୟ ଜଗତରୁ ଫୋପାଡ଼ି ହୋଇ ଫେରିଆସିଲେ ଅନାମିକା ।

ଶମ୍ପା ପଚାରୁଛି– ତମର ସେ ପୁରୁଣାକାଳିଆ ବାପାଙ୍କର ଝିଅ ହୋଇ ମଧ ତମେ କିପରି ଚିରକୁମାରୀ ରହିଗଲ ପିଉସୀ ? ତମ ବାପା ବୁଢ଼ାଙ୍କ ବିଷୟରେ ଯାହା ସବୁ ଗପ ଶୁଣୁଛି ! ତମର...... ହତାଶ ପ୍ରେମ-ଫ୍ରେମ ନୁହେଁ ତ ?

–ତୋର ମୁହଁ ବଡ଼ ବଢ଼ିଯାଇଛି ଶମ୍ପା–'

–ଆହା ବଢ଼ିବାଟା ତ ଭଲ ପିଉସୀ ! ତମର କାହାଣୀ କହିବନି ?

–ତୋ ପରି ରାତିଦିନ ଘଟନା ଘଟାଉଥିଲି, ମତେ ଦେଖି ତୋ'ର କ'ଣ ସେଇୟା ମନେହେଉଚି ?

–ଅବଶ୍ୟ ତା' ଭାବୁନି, ତେବେ ଚିରକୁମାରୀ ରହିବାର କାରଣଟା ମଧ ତ ଜାଣିବା ଦରକାର ।

–ତୁ ଚୁପ୍ କରିବୁ ନା ଏ ବୁଢ଼ୀ ବୟସରେ ମାଡ଼ ଖାଇବୁ ?

ବାଚାଳ ଶମ୍ପାକୁ ଧମକାଇ ଚୁନି କରାଇଲେ ଅନାମିକା । କିନ୍ତୁ ତା'ର ପ୍ରଶ୍ନର ଧକ୍କାଟାକୁ ସାଙ୍ଗେ ସାଙ୍ଗେ ଅଟକାଇ ଦେଇ ପାରିଲେନି । ଆଉ ସବୁଦିନ ଭଳି ବସିଲେ– ତାଙ୍କ ଜୀବନର ଏହି ଅବିଶ୍ୱାସ୍ୟ ଘଟଣା, ନିଜ ମନରେ ନିଜ ଭଳି ରହି ଯିବାଟା, ଏଇଟା ଆଉକିଛି ନୁହେଁ, ତାଙ୍କ ଭାଗ୍ୟଦେବତାଙ୍କର ଅପାର କରୁଣାର ଫଳ । ସେ କରୁଣାର ସ୍ପର୍ଶ ସାରାଜୀବନରେ ବାରମ୍ବାର ଅନୁଭବ କରିଛନ୍ତି, ତେବେକେ ଏଇଟା ହିଁ ବୋଧହୁଏ ସବୁଠାରୁ ବଡ଼ । ଯାହା ପାଇଁ ତାଙ୍କର ଭାଗ୍ୟ ନିକଟରେ କୃତଜ୍ଞତାର ଅନ୍ତ ନାହିଁ ।

ହତାଶ ପ୍ରେମ ?...... ପାଗଳ ନା କଅଣ ?

ଏବକାର ଦୃଷ୍ଟିଭଙ୍ଗୀ ଦ୍ୱାରା ସେହି 'ପ୍ରଥମ ପ୍ରେମ'କୁ କୌତୁକସହ ଦେଖି ତା'ର ମୂଲ୍ୟାୟନ କରି ଅନାମିକା ଅବଜ୍ଞା କରୁ ନାହାନ୍ତି, ଖାଲି ସେ କାଳର ପରିପ୍ରେକ୍ଷୀରେ ଚାହିଁ ଦେଖି କହୁଛନ୍ତି, ପାଗଳ ନା କଅଣ ?

ହତାଶ ପ୍ରେମରେ ଯାହାର ପାଗଳ ହେବା କଥା ସେ କ'ଣ ଅନାମିକା ? ସେ ତ ବକୁଳ ! ସେ ବକୁଳ ପକ୍ଷରେ କ'ଣ ଏଭଳି ଗୋଟାଏ ଅଦ୍ଭୁତ କଥା ଭାବିବା ସମ୍ଭବ ଥିଲା ? ବକୁଳର ବାପା କି ଭାଇନାମାନେ ଯଦି ଯୋଗ୍ୟ ପାତ୍ର ଯୋଗାଡ଼ କରି ଆଣି ସେହି ତରୁଣୀ ଝିଅଟାକୁ ବାହାଘର-ପିଢ଼ା ଉପରେ ବସାଇ ଦେଇଥାନ୍ତେ, ଝିଅଟା କ'ଣ ଏ ଯୁଗର ସିନେମା-ନାୟିକାମାନଙ୍କ ପରି ବେଦୀ ଉପରୁ ଡେଇଁପଡ଼ି, ଚନ୍ଦନପାଟୀକୁ ରୁମାଲରେ ପୋଛିଦେଇ, ବେକରୁ ମାଳଟାକୁ ଟାଣି ଛିଣ୍ଡାଇ ପକାଇ ଲୋକଭର୍ତ୍ତି ହୋଇଥିବା ବାହାଘରୁ ଊର୍ଦ୍ଧ୍ୱଶ୍ୱାସରେ ରାସ୍ତା ଉପରକୁ ବାହାରିପଡ଼ି ପାରିଥାନ୍ତା 'ଏ ଅସମ୍ଭବ' 'ଏ ଅସମ୍ଭବ' ବୋଲି କହୁ କହୁ ?

ନା ଅଭିଭାବକମାନେ ଚେଷ୍ଟା କଲାବେଳେ, ସେମାନଙ୍କ ମୁହଁ ଉପରେ କହି ପାରିଥାନ୍ତା – ବୃଥା ଚେଷ୍ଟା କରିବନି । ଯଦି କରିବ ତ ନିଜ ଦାୟିତ୍ୱରେ କରିବ ।

ନାଃ, ଏସବୁ କିଛିହେଲେ କରି ପାରି ନ ଥାନ୍ତା ସେ । ସେତେବେଳେ କେହି ପାରୁ ନ ଥିଲେ । ବକୁଳ ହେଉଛନ୍ତି 'ଦେବଦାସ' ପଢ଼ି ମଣିଷ ହୋଇଥିବା ଝିଅ । ଅଭିଭାବକମାନେ ବାହା ଦେବେ, ସେ ବର 'ହାତିପୋତା'ର ଜମିଦାର ହେଉ ବା 'ମଶାପୋତା'ର ସ୍କୁଲମାଷ୍ଟର ହେଉ, ତା'ର ଚାଦରରେ ଗଇଁଠାଳ ବାନ୍ଧି ଠିକ୍ ତା'ରି ପଛେ ପଛେ ଯାଇ ଦୁଧ-ଅଳତାର ଥାଳିରେ ଠିଆ ହେଉଥାନ୍ତି । ତାପରେ ? ତା'ପରେ ସାରାଜୀବନ ଧରି ସେହି ଜୀବନର କୁଟା କାଟୁଥାନ୍ତି, ଆଉ କେତେବେଳେ କେଉଁ ଅସତର୍କ ମୁହୂର୍ତ୍ତରେ ହୁଏତ ଗୋଟିଏ ଅନ୍ୟମନସ୍କ ନିଃଶ୍ୱାସ ପକାଉଥାନ୍ତି ।

ପାରୁଲ୍‌ର ଜୀବନରେ ପ୍ରଥମ ପ୍ରେମ ପ୍ରେମ କିଛି ନାହିଁ, ତେବେକେ ପାରୁଲର ଜୀବନଟା ମଧ୍ୟ ସେଇ ଜୀବନ କାଟିବା ଛଡ଼ା ଆଉ କ'ଣ ? ପାରୁଲ୍ ମଧ୍ୟ ଅନ୍ୟମନସ୍କ ଭାବରେ ଅନେକ ନିଃଶ୍ୱାସ ପକାଇଛି । ଯେଉଁ ପ୍ରେମ ଜୀବନରେ କେବେ ଆସିନି ତା'ରି ବିରହରେ ହିଁ ନିଃଶ୍ୱାସ ପକାଇଛି ପାରୁଲ୍ । ଏବେ ମଧ୍ୟ ତା'ର ଗଙ୍ଗାତୀରରେ ଥିବା ବାରଣ୍ଡାରେ ଅସ୍ତଗାମୀ ସୂର୍ଯ୍ୟ ଆଡ଼କୁ ଚାହିଁ ରହୁ ରହୁ, ଯେଉଁ ନିଃଶ୍ୱାସଟି ପାରୁଲ୍ ପକାଏ, ସେଇଟା ତା'ର ପୁଅମାନଙ୍କ ପ୍ରତି ଅଭିମାନ ହେତୁ ନୁହେଁ, ସେହି ନ ପାଇବାର ଗଭୀର ଶୂନ୍ୟତା ଯୋଗୁଁ ।

ହଠାତ୍ ଗୋଟାଏ କଥା ଭାବିଲେ ଅନାମିକା – ନିର୍ମଳ ଯଦି ମଝିଆନାନୀକୁ ଭଲ ପାଇଥାନ୍ତା ! ଯଦିଚ ପାରୁଲ୍ ନାମର ପ୍ରଖରା ମହିଳା ଜଣକ ନିର୍ମଳ ନାମକ ମେରୁଦଣ୍ଡବିହୀନ ଭୀରୁ ଟୋକାଟାକୁ ତୁଚ୍ଛ କରି ଦେଇଥିଲା, ତେବେକେ ଏ କଥାଟା ଏତେଦିନ ପରେ ମନକୁ ଆସିଲା ଅନାମିକାଙ୍କର !

ନିର୍ମଳ ଉପରେ ବକୁଳ ସଂପର୍କରେ ଏକ ପ୍ରତ୍ୟାଶା ଥିଲା ବୋଲି ପାରୁଲ୍ ହୁଏତ ଏତେ ଧିକ୍କାର କରିଥିଲା ତାକୁ । ଯଦି ସେଭଳି କିଛି ପ୍ରତ୍ୟାଶା ନ ଥାନ୍ତା, ଯଦି ପୁଅଟା ତା'ର ପରିପୂର୍ଣ୍ଣ ଜୀବନର ମଝିରେ ବସି ମଧ୍ୟ ପାରୁଲ୍ ଆଡ଼କୁ ଦୀନ ଦୃଷ୍ଟିରେ ଚାହିଁ ରହିଥାନ୍ତା, ପାରୁଲ୍ ହୁଏତ ସମ୍ପୂର୍ଣ୍ଣତା ପାଇଥାନ୍ତା । ପାରୁଲ୍ ସେଇ ମଣିଷଟିକୁ ପରମ ମୂଲ୍ୟ ଦେଉଥିଲା !

ନାନୀ ଏବେ ପ୍ରେମ ପ୍ରେମ କଥା ଭଲ ବୁଝେ— ମନେ ମନେ କହିଲେ ଅନାମିକା— ମୋ' ଭଳି ଏମିତି ନୀରସ ହୋଇଯାଇନି ସେ, ଅବିରତ ଯେତେସବୁ କାଳ୍ପନିକ ଲୋକଙ୍କ ପ୍ରେମ-ଭଲପାଇବା କଥା ଲେଖୁ ଲେଖୁ, ନିଜର ଅନୁଭୂତିଟାର ଧାର୍ ଚାଲିଯାଇଛି ମୋର । ଦନ୍ତୁରା ହୋଇଯାଇଛି ।

ନ ହେଲେ ସେଦିନ ମହାଜାତି ସଦନରେ, ସେହି ଉତ୍ସବ ଦିନ କେମିତି ମୁଁ...

ହଠାତ୍ କିପରି ସ୍ତବ୍ଧ ହୋଇଗଲେ ଅନାମିକା !

ଦନ୍ତୁରା ହୋଇଯାଇଥିବା ଅନୁଭୂତିଟା ମଧ୍ୟ କ'ଣ ତୀକ୍ଷ୍ଣ ହୋଇ ଝଣଝଣ ଶବ୍ଦ କଲା ? ସେହି ଧକ୍କାରେ ସ୍ତବ୍ଧ ହୋଇଗଲେ ?

ନିର୍ମଳ ! ସୁନିର୍ମଳ ନାମକ ସେହି ବଡ଼ ଚାକିରିଆ ପିଲାଟା ଭିତରେ ମଧ୍ୟ ବୋଧହୁଏ ମଝିଆନାନୀ ପରି ଏକ ନ ପାଇବାର ଶୂନ୍ୟତା ଥିଲା ?

ସେଥିପାଇଁ ନିର୍ମଳ କହିଲା— କେତେ ଗଳ୍ପ ଲେଖୁଛ, ଆମର ଗଳ୍ପଟା ଟିକିଏ ଲେଖ ନା !

ସେତେବେଳେ ଆଉ ମୋତିହାରୀରେ ନ ଥିଲା ନିର୍ମଳ, ବଦଳି ଚାକିରି ହେତୁ ଆଉ କେଉଁଠି ଗୋଟାଏ ଥିଲା । ସେଠାରେ ବଙ୍ଗଳା-ପତ୍ରିକା ପାଇବା ଦୁର୍ଲଭ । ତେବେବି ଖୋଜି ଖୋଜି ପଢୁଥାଏ । ଆଉ ଛୁଟିରେ ଘରକୁ ଆସିଲାକ୍ଷଣି ନିହାତି କମ୍ ବୟସର ପିଲା ପରି ଚେଷ୍ଟା କରି କରି ଉପଲକ୍ଷ୍ୟ ଖୋଜି ଅନାମିକା ଦେବୀଙ୍କ ସଙ୍ଗେ ଦେଖା କରିବାକୁ ଆସୁଥିଲା ! ହଁ, ସେତେବେଳେ ମଧ୍ୟ ଉପଲକ୍ଷ୍ୟ ଖୋଜିବାକୁ ଚେଷ୍ଟା କରିବାକୁ ପଡୁଥିଲା !

ସାରା ଜଗତରେ ଏତେଲୋକ ଥାଉଣୁ, ଜଣେ ଆରଜଣକ ସହିତ ଦେଖା କରିବା ପାଇଁ ବ୍ୟାକୁଳ ହେଉଛି, ଏ କଥାଟା ଧରା ପଡ଼ିଯିବାଟା ତ ଦାରୁଣ ଲଜ୍ଜାକର । ସେମାନଙ୍କର ବୟସ ଯେତେ ହୋଇଥାଉ ପଛକେ ! ଧରା ପଡ଼ିଲାମାତ୍ରେ ମରିବେ ! ଆଉ ନିଶ୍ଚେ ଧରା ପଡ଼ିବେ !

ସେହି ବ୍ୟାକୁଳତାଟା ଏଭଳି ଜିନିଷ ଯେ ସଂସାରର ପୋଖତ ମଣିଷଗୁଡ଼ାକ ତ ଦୂରର କଥା, ଶିଶୁର ଆଖିରେ ମଧ୍ୟ ଧରା ପଡ଼ିବାକୁ ବିଳମ୍ବ ହୁଏ ନାହିଁ ।

ଶିଶୁ ମଧ୍ୟ ଯେ 'ବିଶେଷ' ଦୃଷ୍ଟିଟା ବିଶେଷ ବୋଲି ବୁଝିପକାଇ କୌତୂହଳ ଦୃଷ୍ଟି ମେଲାକରି ଚାହିଁ ଦେଖେ !

ଅତଏବ ନିର୍ମଳ ନିଜର କେତେବର୍ଷର କୁନିପୁଅଟାକୁ ମଧ୍ୟ ଡରେ ! କିନ୍ତୁ ଚେଷ୍ଟା କରି କରି ଉପଲକ୍ଷ୍ୟ ସୃଷ୍ଟି କରୁଥାଏ ନିର୍ମଳ !

ସେହିପରି ଏକ ମିଥ୍ୟା ଉପଲକ୍ଷ୍ୟର ମୁହୂର୍ତ୍ତରେ ଟିକିଏ ଗଭୀର ଦୃଷ୍ଟିରେ ଚାହିଁ ନିର୍ମଳ କହିଥିଲା– ଏତେ ଗଳ୍ପ ଲେଖୁଛ, ଆମ ଦି'ଜଣଙ୍କ ଗଳ୍ପଟା ଲେଖୁନ ?

ସେତେବେଳେ ତ ବକୁଳ ଅନାମିକାର ଖୋଳପାରେ ବନ୍ଦୀ, ସେ ଖୋଳପା ଭାଙ୍ଗିପକାଇ ବକୁଳ ହୋଇ ଫୁଟିବାର ଉପାୟ ତା'ର କାହିଁ ? ବକୁଳକୁ ତ ଚିରକାଳ ସେହି ଆବରଣର ବୋଝଟା ବୋହି ବୁଲିବାକୁ ପଡ଼ିବ ।

ଏହି ଖୋଳ ଜିନିଷଟା ବଡ଼ ଭୟଙ୍କର, ପ୍ରଥମରେ ମନେହୁଏ ମୁଁ ବୋଧହୁଏ ନିଜେ ନିଜେହିଁ ଦେହଟା ଉପରେ ଏଇଟାକୁ ମଡ଼େଇ ଦେଲି, ଖୋଲି ରଖିବାର ଇଚ୍ଛା କଲାକ୍ଷଣି ଖୋଲି ରଖିବି, କିନ୍ତୁ ତା' ହୁଏ ନାହିଁ । ଆସ୍ତେ ଆସ୍ତେ ନାଗପାଶର ବନ୍ଧନରେ ବାନ୍ଧିପକାଏ ସେ, ତା'ଠାରୁ ଆଉ ମୁକ୍ତି ନାହିଁ । ତେଣୁ ଅନାମିକା ଦେବୀଙ୍କୁ ଅନାମିକା ଦେବୀ ହୋଇ ରହିବାକୁ ପଡ଼ିବ । ଆଉ କୌଣସିଦିନ ବକୁଳ ହେବା ସମ୍ଭବ ନୁହେଁ, ଅନ୍ୟ କିଛି ହେବା ଇଚ୍ଛାଥିଲେ ମଧ୍ୟ ଚଳିବନି ।

ତେଣୁ ବକୁଳକୁ ନିର୍ମଳର ସେହି ପିଲାଳିଆ କଥା ଶୁଣି ହସିଉଠି କହିବାକୁ ପଡ଼ିଥିଲା– ଆମର ଗଳ୍ପ ? ସେଇଟା ପୁଣି କି ବସ୍ତୁ ? ନିର୍ମଳର ସେହି ପିଲାଳିଆ ଅଥଚ ଗଭୀର ଚାହାଣି ଭିତରେ ଆଘାତର ବେଦନା ଫୁଟି ଉଠିଥିଲା । ଆହତ ଗଳାରେ ନିର୍ମଳ କହିଥିଲା– ଏବେ ହୁଏତ ସେ ବସ୍ତୁ ତମ ପାଖରେ ତୁଚ୍ଛ ହୋଇଯାଇଛି, ତମେ ଅନେକ ବଡ଼ ହୋଇଯାଇଛ, ତେବେକେ ମୋ ପାଖରେ ତାହା ସମାନ ମୂଲ୍ୟବାନ ଅଛି । ତୁଚ୍ଛ ହୋଇ ଯାଇନି ।

ମନକୁ ଚଞ୍ଚଳ ହେବାକୁ ଦେବା ଉଚିତ ନୁହେଁ । କାରଣ ସେଇଟା ପିଲାଳିଆମି । ସେଇଟା ଏ ଖୋଳଟାର ଉପଯୁକ୍ତ ନୁହେଁ । ସେଥିପାଇଁ ଅଚଞ୍ଚଳ କୌତୁକରେ କହିବାକୁ ପଡ଼େ– ଆରେ ବାପା ! ସେହି ତମାଦି ହୋଇଯାଇଥିବା ଦଲିଲଟାକୁ ଏବେ ଆଇରନ୍ ଚେଷ୍ଟ୍‌ରେ ସାଇତି ରଖିଛ ? ତମର ତ ଭାରି ଦୃଢ଼ ଅଧ୍ୟବସାୟ ?

ନିର୍ମଳ ତା'ର ପ୍ରକୃତିଗତ ଆବେଗ ସହିତ କହିଥିଲା– ତମ ପାଖରେ ହୁଏତ ତମାଦି ହୋଇଯାଇଛି ବକୁଳ, ମୋ ପାଖରେ ନୁହେଁ ।

–ସେଇଆ ତ ! ତା'ହେଲେ ମତେ ଚିନ୍ତାରେ ପକାଇଲ !...... କହି ହସି ପକାଇଥିଲେ ଅନାମିକା ଦେବୀ । ଆଉ ଭାବିଥିଲେ– ଅନୁଭୂତିର ଧାରଗୁଡ଼ିକ

ସବୁ ଘଷି ହୋଇ ହୋଇ କ୍ଷୟ ହୋଇଯାଇଛି, ମୋ'ର ବୋଲି ଭାବୁଛି ମୁଁ ବୋଧହୁଏ, କିନ୍ତୁ ସତରେ କ'ଣ ସେଇୟା ? ତା' ଯଦି ହୋଇଥାନ୍ତା ତା'ହେଲେ ତାକୁ ଦେଖିଲେ କାହିଁକି ମନ ଭିତରୁ ଏଭଳି ଏକ ଉଛୁଳି ଉଠୁଥିବା ଉଲ୍ଲାସର ଭାବ ଆସେ ? କାହିଁକି ତା'ର ଯେଉଁ କେତେଦିନ ଛୁଟିଥାଏ, ଲାଗେ ଆକାଶ-ପବନ ସବୁ ଯେପରି ଆନନ୍ଦରେ ଭାସୁଛି ! ତା'ର ଛୁଟି ସରିଲେ ଲାଗେ କି ଆଶ୍ଚର୍ଯ୍ୟ ! ଯାରି ଭିତରେ ମାସେ ହୋଇଗଲା ? କାହିଁକି ମନେହୁଏ, ଦିନଗୁଡ଼ିକ କିପରି ଗୋଟିଏ ରଙ୍ଗର ହୋଇଗଲା । କାହିଁକି ?

—"ଚିନ୍ତାରେ ପକାଇଦେଲି ?" ନିର୍ମଳ ଆଗ୍ରହଭରା ଗଳାରେ କୌତୁକ ସ୍ୱରରେ କହିଥିଲା— ସେଇଟା ମଧ୍ୟ ଆଶାର କଥା । ହେଲେ ଚିନ୍ତାଟାକୁ ରୂପ ଦେଇ ପକାଅନା, ଲେଖିଦିଅନା ଆମମାନଙ୍କର ଗଳ୍ପ ! ମନଗଢ଼ା ଗଳ୍ପ ତ ଏତେ ଲେଖୁଛ !

ସେହି ଆବେଗ ଆଡ଼କୁ ଚାହିଁ ମମତା ହୋଇଥିଲା ଅନାମିକାଙ୍କର, ହଠାତ୍ ଯେମିତି କେଉଁଠି କେଉଁ ଧୂଳି ସ୍ତର ତଳୁ ମୁଣ୍ଡ ଟେକି ଗୋଟାଏ ବିଶ୍ୱାସଘାତକ ଦୁଷ୍ଟ ତୁନି ତୁନି କହି ଉଠିଥିଲା— ବାଜେ କଥା କହୁଛ କାହିଁକି ? ଛାତିରେ ହାତ ଦେଇ କହିଲ ଦେଖିବା ଜିନିଷଟା ଏକାବେଳେ ତମାଦି ହୋଇଯାଇଛି, ଏକଥା ତମେ ନିଜେ କ'ଣ ବିଶ୍ୱାସ କରୁଛ !

ସେଥିପାଇଁ ଅନାମିକା ମୃଦୁ ହସି କହିଲେ— ଆଚ୍ଛା ନ ହେଲା ଏବେ ଗୋଟାଏ ସତ ଗପ ଲେଖିଲି, କିନ୍ତୁ ତା'ପରେ ?

—କ'ଣ ତା'ପରେ ?

—ଲୋକେ ଭୁଲି ଯାଇଛନ୍ତି, ପୁଣି ସେମାନଙ୍କୁ ମନେପକାଇ ଦେଇ ଏ ବୁଢ଼ା ବୟସରେ ଧରାପଡ଼ିଯିବା ସାର ହେବ ସେଇୟା ନା ?...... ଭାରି ତରଳ ଶୁଣାଯାଉଥିଲା ଗଳାଟା ।

ନିର୍ମଳର ଝକମକ୍ କରୁଥିବା ଆଖି ଦୁଇଟା ହଠାତ୍ ଆନନ୍ଦର ଆଲୋକରେ ଝଲସି ଉଠିଥିଲା । ନିର୍ମଳ କ'ଣ ଅନାମିକାର ସେହି ତରଳତାର ବୁଦ୍‌ବୁଦରେ 'ବକୁଳ'ର ଛାୟା ଦେଖିପାରିଥିଲା ?—

ଆଶ୍ଚର୍ଯ୍ୟ ! ନିର୍ମଳର ଆଖିଦୁଇଟିର ସେହି ଝକମକ୍ ଆଲୋକଟି କୌଣସିଦିନ ମ୍ଲାନ ହୋଇଯାଇନି ! ହୁଏତ ସେହି ଦୀପ୍ତିଟା ଅନ୍ୟ ଏକ ଆଲୋକର । ହୁଏତ ନିର୍ମଳ ତା'ର ବାହାରର ସମସ୍ତ ସମାରୋହର ଅନ୍ତରାଳରେ ଏକ ଅନ୍ତରଙ୍ଗ କୋଣରେ ଗୋଟିଏ ଅକମ୍ପିତ ଦୀପଶିଖା ଜାଳି, ସେଇଟିକୁ ବିଶ୍ୱସ୍ତତାର ସ୍ଫଟିକ ଆଧାରରେ ଭରି ରଖିଥିଲା, ଏହି ଦୀପ୍ତି ସେହି ଶିଖାର ଦୀପ୍ତି ।

ନିର୍ମଳ ସେହି ଦୀପ୍ତି ଧରି କହିଥିଲା– ଧରା ପଡ଼ିଯିବା ମାନେ ? ତା'ହେଲେ ଆଉ କେଉଁଥିପାଇଁ ବଡ଼ ଲେଖିକା ? ଏଭଳି କୌଶଳରେ ଲେଖିବ ଯେ, କେହି ଜମା ଜାଣିପାରିବେନି ଏଇଟା ସତ ଗପ !

–ଚିହ୍ନାଲୋକମାନେ ଜାଣିପାରିବେ ।

–ଉହୁଁ ! ଜାଣି ଯେମିତି ପାରିବେନି, ସେହିପରି ଲେଖିବ ।

ଅନାମିକା ହସିପକାଇଥିଲେ– ତା'ହେଲେ ଆଉ ଲେଖି ଲାଭ କ'ଣ ? କେହି ଯଦି ନ ଜାଣିପାରିବେ ?

–ବାଃ ନ ଜାଣନ୍ତୁ । ନ ଜାଣନ୍ତୁ ବୋଲି ତ ଚାହୁଁଛି ମୁଁ । ଲୋକଙ୍କ ପାଇଁ ତ ନୁହେଁ, ଆମ ନିଜ ପାଇଁ ଲେଖିବ । କେହି ଧରିପାରିବେନି କେବଳ ଆମେ ଦୁଇଜଣ ବୁଝିବା । କହିଲ ଦେଖି ସେଇଟା କି ମଜା ହେବ ?

–"ତା'ହେଲେ ମଧ୍ୟ– "ଅନାମିକା ଟିକିଏ ଦୁଷ୍ଟାମିର ହସ ହସିଥିଲେ ।"– ଗଳ୍ପଟିର ମୂଳନାୟିକା ତ ବଡ଼ ଦେଠେଙ୍କୁ ହିଁ କରିବାକୁ ପଡ଼ିବ ?"

–ଧେତ୍ ! ତମକୁ ସେ ଗପ ଲେଖିବାକୁ କିଏ ଖୋସାମତ କରୁଛି ଯେ ? ଏକାବେଳେ ଆମ ନିଜର ଗଳ୍ପଟା ଲେଖ । ଯେଉଁ ଗଳ୍ପଟି ଏବେ ମଧ୍ୟ ପ୍ରତିଦିନ ତିଆରି ହେଉଛି ।

–ଲେଖିଲେ ତ ରାଜୁର ପିଲା ଦୁଇଟା ବହୁତ ଉଚ୍ଚ ନୀଚ ହୋଇଯିବ । "ଅନାମିକା ହସି ହସି କହିଥିଲେ– ଗୋଟିଏ ଦିଗରେ ସୁନ୍ଦରୀ ସ୍ତ୍ରୀ, ସୁନାର ଚାନ୍ଦ ଭଳି ପୁଅ, ମୋଟା ଦରମାର ଚାକିରି, କର୍ମସ୍ଥଳରେ ପ୍ରତିପତ୍ତି, ଅନ୍ୟ ଦିଗରେ ଜଣେ ଅଖାଦ୍ୟ-ଗଳ୍ପ ଲେଖିକା । ବର ଜୁଟି ନାହିଁ, ଘର ଜୁଟି ନାହିଁ, ସେଇଥିପାଇଁ ସମୟ କଟାଇବାକୁ କଲମ ଧରୁଛି ।

ନିର୍ମଳର ଆଖିର ସେହି ଝଲମଲ ଦ୍ୟୁତି ଉପରେ ମେଘର ଛାୟା ଓହ୍ଲାଇ ଆସିଥିଲା, ନିର୍ମଳ କହିଥିଲା– ସୁନ୍ଦରୀ ସ୍ତ୍ରୀ, ମୋଟା ଦରମାର ଚାକିରି, ସେଇଟା ବାହାର ଲୋକେ ଦେଖିବେ । ତମେ ଲେଖିକା, ତମେ ମଧ୍ୟ ସେଇଟାକୁ ହିଁ ଦେଖିବ ?

–ବାଃ, ଲେଖିକା ପୁଣି ନୂଆ କ'ଣ ଦେଖିବ ?

–ଲେଖିକା ଦେଖିବ ସମାରୋହର ଅନ୍ତରାଳରେ ଅବସ୍ଥିତ ଦୈନ୍ୟକୁ । ଦେଖିବ ଏପଟେ ଝକମକ କରୁଥିବା ଜୀବନର ସେପଟେ ରହିଥିବା ଗଭୀର ଶୂନ୍ୟତାକୁ । କିନ୍ତୁ– ନିର୍ମଳ ଟିକିଏ ମଧୁର ହସ ହସି କହିଥିଲା– କିନ୍ତୁ ସେ ଗଳ୍ପ ମଧ୍ୟ ଏଇଲେ ମୋର ଦରକାର ନାହିଁ । ଏ ଗଳ୍ପ ପରେ ଲେଖିବ, ଯେତେବେଳେ

ମରି ଫରି ଯିବି । ମୁଁ ଚାହେଁ ସେହି ବୋକା ପୁଅଝିଅ ଦୁଇଟାର ଗଳ୍ପ । ଯେଉଁମାନେ 'ଆଙ୍କି ନାହାନ୍ତି ଛବି, ସୃଜିଥିଲେ ଖାଲି ପଟ୍ଟଭୂମି' ।

ହସି ହସି ବେଦମ ହୋଇଯାଇଥିଲେ ଅନାମିକା, କହିଥିଲେ— କାହିଁକି ? ସେମାନେ ଯେ କେତେ ବୋକା ଥିଲେ, ସେ କଥା ନୂଆକରି ଅନୁଭବ କରିବାକୁ ?

ତା'ପରେ କହିଥିଲେ— ଆଚ୍ଛା ଲେଖିବି ।

ନିର୍ମଳ କହିଲା— ଠିକ୍ ଅଛି । କେଉଁଥିରେ ଦେବ କହ । ସେ ପତ୍ରିକାଟାର ଗ୍ରାହକ କାଲିଠାରୁ ହେବି ।

—ଆରେ ! ତମେ କୋଉ ଦୁଃଖରେ ଗ୍ରାହକ ହେବାକୁ ଯିବ ଯେ ? ନ ହେଲା ଏବେ ଲେଖିକା ନିଜେ ପଠାଇଦେବ ।

—ନାଃ । "ମୃଦୁ ହସି ସେ କହିଥିଲା— ବିନା ପ୍ରତୀକ୍ଷାରେ ପାଇଲେ ସେ ଜିନିଷ ଆଉ ମୂଲ୍ୟବାନ ହୋଇ ନ ଥାଏ । ଏଇଟା ଭଲ, ପ୍ରତିମାସରେ ଡାକର ପ୍ୟାକେଟ୍‌ଟା ଖୋଲିବା ସମୟରେ ହାତ ଧରିବ— "

ଅନାମିକାଙ୍କ ଚିନ୍ତା ଦୂର ହୋଇଯାଇଥିଲା । ଅନାମିକାଙ୍କର ମନେ ହୋଇଥିଲା ଏଭଳି ସାନ ସାନ କଥାର ଚାବି ଘୂରାଇ ଘୂରାଇ ନିର୍ମଳ ନାମକ ପୁଅଟା ବୋଧହୁଏ ଅନାମିକା ଦେବୀର ସେଲ ଅନେକ ଆଗରୁ ବନ୍ଦ କରି ଦେଇଥିବା, ଅନେକ ତଳେ ଥିବା ପାତାଳ ଘରଟାକୁ ଖୋଲି ଦେବାକୁ ଚାହେଁ । ସେଥିପାଇଁ ସେ ଭାରି ଜୋର୍‌ସେ ହସିପକାଇଥିଲେ— ଏ ବାବା ! ଏତେ ବେଶୀ— ?

—ତମେ ଥଟ୍ଟା କରୁଛ ?

—ବାଃ ଥଟ୍ଟା କରିବି କାହିଁକି ? ଏମିତି କହୁଛି ? ଏତେ ବେଶୀ ? ନିର୍ମଳ ଉଦାସ ହସ ହସି କହିଥିଲା— ତମେ ଅବଶ୍ୟ ଥଟ୍ଟା କରିପାର, ସେ ରାଇଟ୍ ତମର ଅଛି । ମୋର ଆଉ ମୁହଁ କାହିଁ ?

—"ସେକଥା କହନି ତମେ— " ବକୁଳ ସେତେବେଳେ ବକୁଳ ହୋଇ କହିଥିଲା— ସେକଥା କେବେହେଲେ କହିବନି । ମୋ ମତରେ ଏଇଟା ହିଁ ଭଲ ହୋଇଛି ।

—"ସେଇୟା ଭାବିବି ?" ଦୀର୍ଘନିଃଶ୍ୱାସ ଭଳି ଗୋଟିଏ ଶବ୍ଦ ଶୁଣିଥିଲେ ଅନାମିକା । ତା'ପରେ ପୁଣି ସେହି ଆବେଗଭରା ଗଳାର ଉତ୍ତେଜିତ କଥା "— ମୁଁ ସତରେ ପ୍ରତୀକ୍ଷା କରିବି ।"

ନିର୍ମଳ କହିଥିଲା ।

ପ୍ରତୀକ୍ଷା କରିବି !

କିନ୍ତୁ ସେ ଗଳ୍ପ କ'ଣ କେବେ ଲେଖା ହୋଇଥିଲା ?

କାହିଁ ଆଉ ଲେଖା ହେଲା କେବେ ?

ଲେଖା ହୋଇଥିଲେ ଆଉ ସେ ଘର-ସଂସାର କରିଥିବା ବଡ଼ ମଣିଷଟା କେତେଦିନ ପରେ ପୁଣି ଖଣ୍ଡେ ଚିଠି ଲେଖିଥାନ୍ତା କାହିଁକି ?– କାହିଁ ? କାହିଁ ତମର ସେ ଗଳ୍ପ ? ଯେଉଁ ଗଳ୍ପ କେବଳ ତମେ ବୁଝିବ ଆଉ ମୁଁ ବୁଝିବି, ଆଉ କେହି ବୁଝି ପାରିବେନି !

## ॥ ୧୪ ॥

ହଁ, ଅକସ୍ମାତ୍ ଦିନେ ସେ ଚିଠିଟା ଆସି ହାଜର ହୋଇଥିଲା । ଅବାକ୍ ହୋଇଯାଇଥିଲେ ଅନାମିକା ଦେବୀ । ମଣିଷଟା ଆଶ୍ଚର୍ଯ୍ୟରକମର ପିଲାଳିଆ ହୋଇ ରହିଛି ତ ? ଏବେ ମଧ୍ୟ ସେ 'ଗଳ୍ପ'ଟା କଥା ମନେ ରଖି ବସିଛି ? ଏବେ ମଧ୍ୟ ଭାବୁଛି ସେ ଗଳ୍ପଟା ତାକୁ ଭଲ ଲାଗିବ ? ଖାଲି ଏକାକୀ ସେ ବୁଝିପକାଇ ପରମ ଆନନ୍ଦରେ ଉପଭୋଗ କରିବ ? ଅଥବା ପରମ ବେଦନାରେ ଦୀର୍ଘନିଃଶ୍ୱାସଟିଏ ପକାଇ, ସେ ଦୀର୍ଘଶ୍ୱାସକୁ ମିଶାଇଦେବ ଅନନ୍ତକାଳର ବିରହୀ ହିଆର ତପ୍ତ ଶ୍ୱାସ ସଙ୍ଗେ !

ଭଗବାନ୍ ଜାଣନ୍ତି ସେ କ'ଣ ଭାବୁଛି । କିନ୍ତୁ ସତରେ ଆଶ୍ଚର୍ଯ୍ୟ ଲାଗୁଛି । ଆଶ୍ଚର୍ଯ୍ୟ ଲାଗୁଛି ଏ କଥା ଭାବି ଅଥଚ ମାଧୁରୀକୁ ସେ ପ୍ରାଣତୁଲ୍ୟ ଭଲପାଏ । ନିବିଡ଼ ଗଭୀର ସ୍ନେହ-ସହାନୁଭୂତି ଭରା ସେହି ଭଲପାଇବାର ଖବର ଅଜଣା ନୁହେଁ ବକୁଳର । ତେବେକେ ସେହି ଅତୀତ କୈଶୋର କାଳର 'ପ୍ରଥମ-ପ୍ରେମ' ନାମକ ହାସ୍ୟକର ମୂଢ଼ତାଟାକୁ ଆଜି ମଧ୍ୟ ଭିଡ଼ି ଧରି ରଖିଛି ଲୋକଟା ! ଆଜିମଧ୍ୟ ତା'ର ପ୍ରାଣ ମଧ୍ୟରେ ଗୋପନ ଗଭୀରତାରେ ସେହି ମୂଢ଼ତାଟିକକ ପାଇଁ ହାହାକାର ଲାଗି ରହିଛି !

ହୁଏତ ତା'ର ସେହି ପିଲାଳିଆ ମନଟା ସେମିତି ରହିଯିବା ମୂଳରେ ମାଧୁରୀର ଆଶ୍ଚର୍ଯ୍ୟ ହୃଦୟର ଅନାବିଳ ପ୍ରେମର ଅବଦାନ ରହିଛି । ମାଧୁରୀ ଯଦି ସଂସାରର ଆହୁରି ଅସଂଖ୍ୟ ଝିଅଙ୍କ ପରି ଈର୍ଷା ବିଦ୍ୱେଷ, ସନ୍ଦେହ ଆଉ ଅଭିମାନରେ ଭରା ଜଣେ ଝିଅ ହୋଇଥାନ୍ତା, ଯଦି ମାଧୁରୀ ତା'ର ତୀବ୍ର ତୀକ୍ଷ୍ଣ ଅଧିକାରର ଛୁରୀ ଧରି ସେହି ଅବୋଧ ମଣିଷଟାର ସେ ମୂଢ଼ତା ଟିକକକୁ ଦୀର୍ଣ୍ଣବିଦୀର୍ଣ୍ଣ,

ଛିନ୍ନଭିନ୍ନ କରି ଉତ୍ପାଟିତ କରି ପକାଇବା କାମରେ ଉତ୍ସାହ ଦେଖାଇଥାନ୍ତା, ଯଦି ତାକୁ ବୁଝାଇ ଛାଡ଼ିଥାନ୍ତା– ଏବେବି ତମର 'ପ୍ରଥମ ପ୍ରେମ'କୁ ପରମ ପ୍ରେମରେ ଲାଳନ କରିବା 'ମହାପାତକ' ତା'ହେଲେ କ'ଣ ହୋଇଥାନ୍ତା କହି ହେବନି ହୁଏତ ମୃଦୁ ପିଲାଳିଆ ମଣିଷଟା ସେହି ତୀବ୍ର ଶାସନବାଣୀରେ କୁଣ୍ଠିତ ହୋଇ ସଙ୍କୁଚିତ ହୋଇଯାଇଥାନ୍ତା, ନିଜକୁ କରି ପକାଇଥାନ୍ତା ନିଛର ।

କିନ୍ତୁ ମାଧୁରୀ କୌଣସି ଦିନ ତା' କରି ନାହିଁ । ମାଧୁରୀ ତାକୁ ଯେପରି ମାତୃହୃଦୟ ଦେଇ ଭଲ ପାଇଥିଲା । ଭଲ ପାଇଥିଲା ବନ୍ଧୁର ହୃଦୟ ଦେଇ ।

ମାଧୁରୀ ନିର୍ମଳର ପ୍ରଥମ ପ୍ରେମର ନିଷ୍ଠାକୁ ଶ୍ରଦ୍ଧା କରେ ।

ମାଧୁରୀ ମଧ ବକୁଳକୁ ଚିଠି ଲେଖୁଥାଏ ।

ଅଥବା କହିହେବ ଯେ ମାଧୁରୀ ହିଁ ଲେଖୁଥାଏ । ନିର୍ମଳ ତ ମାତ୍ର ଦୁଇଥର ସେହି ଅନେକଦିନ ପୂର୍ବେ ଛୋଟ ଦି' ଲାଇନ୍‌ର ଗୋଟିଏ, କ'ଣ ଯେ ସେଥିରେ ବକ୍ତବ୍ୟ ଥିଲା ସେକଥା ଅନାମିକା ଭୁଲିଗଲେଣି । ଆଉ ତା'ପରେ ଅନେକଦିନ ପରେ ଏ ଚିଠି !

ଯୋଗାଯୋଗ ରଖୁଥାଏ ମାଧୁରୀ । କେଉଁଠାକୁ କେଉଁଠାକୁ ସେମାନଙ୍କର ବଦଳି ହେଉଛି କେମିତି, କ୍ୱାଟର୍ସ ପାଇଛନ୍ତି, ଜାଗାଟା କେମିତି, ଏଭଳି ସାନସାନ ଖବର ଥିବା ଚିଠି ।

କିନ୍ତୁ ବକୁଳ ? ନିୟମିତ କ'ଣ ଉତ୍ତର ଦେଉଥିଲା ? ନାଃ । ମୋଟେ ନାହିଁ । ପ୍ରଥମେ ପ୍ରଥମେ ଭଦ୍ରତା ଜଣାଇ ଦି'ଚାରିଟା ଉତ୍ତର ଦେଇଥିଲା, ତା'ପରେ ଆଉ ନୁହେଁ । କିନ୍ତୁ କାହିଁକି ?

ତା'ପରେ କ'ଣ ଅଭଦ୍ର ହୋଇଗଲା ? ନା ଅହଙ୍କାରୀ ହୋଇଗଲା ? ଅଥବା ଅଳସୁଆମି ? ସେ କଥା ଠିକ୍ ନୁହେଁ । ବକୁଳ ନିଷେଧାଜ୍ଞା ପାଳନ କରିବାକୁ ଯାଇ ସ୍ତବ୍ଧ ହୋଇଯାଇଥିଲା ।

ହେଲେ ସେହି ନିଷେଧାଜ୍ଞାଟା କ'ଣ ବକୁଳର ବଡ଼ଭାଇନାଙ୍କର ? ନା ନିର୍ମଳର ଦେଠେଇଙ୍କର ? ସେହି ନିଷେଧାଜ୍ଞାକୁ ବକୁଳ ପାଳନ କରିଥିଲା ? ନାଃ ସେତେବେଳେ ଏମିତି ଏତେ ବେଶୀ ହାସ୍ୟକର କୌଣସି ଘଟଣା ଘଟି ନ ଥିଲା । ନିଷେଧାଜ୍ଞା ଥିଲା ସ୍ୱୟଂ ପତ୍ରଦାତ୍ରୀର ।

ମାଧୁରୀ ନିଜେ ଲେଖିଥିଲା– ଆମମାନଙ୍କର ଖବର ଜଣାଇ ମୁଁ ମଝିରେ ମଝିରେ ଚିଠି ଦେବି ତମକୁ, ସେଥିରେ ତମେ ଆନନ୍ଦିତ ହୁଅ ବା ନ ହୁଅ, ମୁଁ ଆନନ୍ଦିତ ହେବି । କିନ୍ତୁ ସେଥିପାଇଁ ତମେ ଉତ୍ତରଟା ଦେବନି !...... କ'ଣ ?

ନିଶ୍ଚୟ ଭାବୁଛ ଏ ପୁଣି କେଉଁ ଧରଣର ଭଦ୍ରତା । ସେ କଥା ତମେ ଭାବିଲେ ମଧ, ମୁଁ ଏ ଅଭଦ୍ରତା କରୁଛି ! ହୁଏତ ଏମିତି ଅଦ୍ଭୁତ ଅଭଦ୍ରତା ସଂସାରର ଆଉ କାହା ସଙ୍ଗେ କରିପାରି ନ ଥାନ୍ତି, ଖାଲି ତମେ ବୋଲି କରିପାରିଲି ! ଜାଣେନି ତମେ ଲେଖିକା ବୋଲି ନା ମୋର ଘରର ପ୍ରେମିକା ବୋଲି ମୁଁ ଏହା କରି ପାରୁଛି । ଯାହା ହେଉ ମୋଟ କଥା ଯା କରିପାରିଲି । ନ ପାରି ଉପାୟ କ'ଣ କହ ? ଯେଉଁଦିନ ତମର ଚିଠି ଆସେ, ଲୋକଟାର ଆହାରନିଦ୍ରା ଯେ ପ୍ରାୟ ବନ୍ଦ ହୋଇଯାଏ ।

ଖାଇବସିଲେ ଭୋକ ମରିଯାଉଛି । ଶୋଇବାକୁ ଗଲେ ଘନ ଘନ ଦୀର୍ଘଶ୍ୱାସ ପକାଉଛନ୍ତି । ପୁଣି ମୋର ଏମିତି ସନ୍ଦେହ ମଧ ହେଉଛି ଯେ ମୋର ବୋଧହୁଏ ଈର୍ଷା ହେଉଛି । ଯେଉଁ ବସ୍ତୁ ତାଙ୍କ ନିକଟରେ ଦୁର୍ଲଭ, ସେ ବସ୍ତୁ ମୁଁ ଏମିତି ଅନାୟାସରେ ଲାଭ କରୁଛି, ଏଇଟା ହିଂସାର ବିଷୟ ହେଲେ ଅବା ହୋଇପାରେ ।

ଅଥଚ ବାବୁଙ୍କର ନିଜେ ସାହସ କରି ଚିଠି ଲେଖିବା କଥା ନାହିଁ । କହିଥିଲି, ମୋ ଚିଠି କାହିଁକି ପଢୁଛ ? ଇଚ୍ଛା ହେଉଛି ଯଦି ନିଜେ ଚିଠି ଲେଖି ଉତ୍ତର ଅଣାଅ । ମୋ' ଚିଠିରେ ତ ଅଛି ଘୋଡ଼ାଡିମ୍ବ । ତମ ଚିଠିରେ ବରଂ ରୋମାନ୍ସ-ଫୋମାନ୍ସ ରହିଥିବ ।...... ହେଲେ ଭଲରୂପେ ଗୋଟାଏ ଉତ୍ତର ଦେଇ ପାରିଲେନି । ଚିଠି ରଖିଦେଇ କହିଲା– 'ଠିକ୍ ଅଛି, ପଢ଼ିବାକୁ ଚାହେଁନି ।' ଦେଖିଲ ନା ? ଯା'ପରେ ପୁଣି ମାନ ହରାଇ ଚିଠି ପଢ଼ିପାରିବେନି, ଦୀର୍ଘଶ୍ୱାସ ଆହୁରି ବଢ଼ିବ ।

ଏଭଳି ଚିଠି ଲେଖୁଥିଲା ମାଧୁରୀ ।

ଥରେ ଲେଖିଥିଲା– ମଝିରେ ମଝିରେ ଭାବେ, ଆଶ୍ଚର୍ଯ୍ୟ, ତମେମାନେ ଚିଠି ଲେଖାଲେଖି ହେଲେ କରୁନ କାହିଁକି ? ଚିଠି ଦ୍ୱାରା ସମାଜକୁ ଆଉ କେତେ ବା ରସାତଳକୁ ନିଆଯାଇପାରିବ ? ପୁଣି ଭାବେ– ଥାଉ, ଏଇୟା ହିଁ ଭଲ । ଲକ୍ଷ୍ମୀଙ୍କ ଫରୁଆରେ ସାଇତି ରଖିଥିବା ମୋହର ଭଙ୍ଗାଇବାକୁ ନ ବାହାର କରିବା ହିଁ ଭଲ ।

ଆଉଥରେ ଲେଖିଥିଲା– ଓ ବାବାଃ, କ୍ରମେ କ୍ରମେ କିପରି ବଡ଼ ଲେଖିକା ହୋଇଯାଉଛ ! ଏଠି ତ ତମ ନାଁ ପଢ଼ିଲାକ୍ଷଣି ଲୋକେ ଧନ୍ୟ ଧନ୍ୟ କରୁଛନ୍ତି ! ମୁଁ ବାପା ମରିଗଲେ ମଧ ଖୋଲି କହେନି, ଏ ବିଖ୍ୟାତ ଲେଖିକାଟି ମୋର ଜଣାଶୁଣା କହି ଲାଭ କ'ଣ ? ଆଣି ତ ଦେଖାଇ ପାରିବିନି । ତା'ଛଡ଼ା ଯା ମଧ ଭାବେ ଯେ ସତରେ କ'ଣ ଚିହ୍ନାଜଣା ? ଯେଉଁ 'ତୁମେ'କୁ ଦେଖେ,

ଗପ କରେ, ହୁଏତ ହତାଶ ପ୍ରେମର ନାୟିକା ବୋଲି ମଝିରେ ମଝିରେ କରୁଣା ମଧ କରିଦିଏ, ଏମିତି ଜଟିଳ କୁଟିଳ ଭୟଙ୍କର ଭୟଙ୍କର ଗପସବୁ କ'ଣ ତାଙ୍କରି ଲେଖା ? ନା ଆଉ କିଏ ଲେଖିଦିଏ ? ସତରେ ଭଉଣୀ, ତମର ମୁହଁର ଭାଷା ସଙ୍ଗେ ତମ ଲେଖାର ଭାଷାର ଆଦୌ ସାଦୃଶ୍ୟ ନାହିଁ ।...... ତେବେକେ ମଝି ମଝିରେ ସେହି ଅଭାଗା ଲୋକଟି ପାଇଁ ମାୟା ହୁଏ । ଏଭଳି ଏକ ନିଧି ଘରକୁ ନେଇପାରିଥାନ୍ତେ ବିଚରା, କିନ୍ତୁ ବିଧି ବାମ ହେଲା । ତା' ବଦଳରେ କପାଳରେ ଜୁଟିଲା ଏହି ରଙ୍ଗମୂଳା ।

ଶ୍ଳେଷ କରି ଲେଖୁ ନ ଥାଏ, ଅସୂୟାବଶତଃ ଲେଖୁ ନ ଥାଏ, ମନଟା ତ ଏମିତିରେ ସହଜ-ସରଳ ମାଧୁରୀର । ସ୍ତ୍ରୀଲୋକର ମନ ଏମିତି ଅସୂୟାଶୂନ୍ୟ, ଏଇଟା ବଡ଼ ଦୁର୍ଲଭ ।

× × × × ×

ମାଧୁରୀ କହିଥିଲା— ଲକ୍ଷ୍ମୀଙ୍କ ଫରୁଆରେ ରଖିଥିବା ମୋହର ନ ଭଙ୍ଗାଇଲେ ଭଲ । ତେବେକେ ସେଥର ସେ ମୋହରକୁ ବାହାର କରିବାକୁ ଯାଉଥିଲା ନିର୍ମଳ । କେଜାଣି ମାଧୁରୀକୁ ଜଣାଇଥିଲା କି ନାହିଁ । ହୁଏତ ଜଣାଇନି ।

ହୁଏତ ଅଫିସରେ ବସି ଲେଖି ପଠାଇଛି— କାହିଁ ? କେଉଁଠି ସେ ଗଳ୍ପ ? ଯେଉଁ ଗଳ୍ପକୁ କେବଳ ତମେ ବୁଝିବ ଆଉ ମୁଁ ବୁଝିବି । ଆଉ କିଏ ବୁଝିପାରିବେନି ।...... ଚିଠିର ଉତ୍ତର ଦରକାର ନାହିଁ, ଗଳ୍ପଟି ହିଁ ଉତ୍ତର ହେବ ।

ଚିଠିର ଉତ୍ତର ଦେବାକୁ ନିର୍ମଳ ମଧ ବାରଣ କରିଥିଲା ।

ଚିଠି ପଢ଼ି ହସିଦେଇଥିଲେ ଅନାମିକା ଦେବୀ । ତାଙ୍କର ଭାଗ୍ୟଟା ମନ୍ଦ ନୁହେଁ । ଲୋକମାନେ ଚିଠି ଦେଇ ଉତ୍ତର ଦେବାକୁ ମନା କରନ୍ତି !

କିନ୍ତୁ ଉତ୍ତର ସ୍ୱରୂପ ଯାହା ଚାହିଁଥିଲା ?

ଯାହା ପାଇଁ ହୁଏତ ଦିନ ପରେ ଦିନ, ମାସ ପରେ ମାସ ପ୍ରତୀକ୍ଷା କରିଥିଲା ସେ ଗଳ୍ପ କାହିଁ ?...... ସେହି ଏକ ବିଦାରଣ ରେଖା ଟଣା ହୋଇ ରହିଛି ଅନାମିକାଙ୍କ ଜୀବନରେ ! ସେ ଗଳ୍ପ ଲେଖା ହୋଇ ନାହିଁ ।

ଅଥଚ ତା'ପରେ କେତେ ଗଳ୍ପ ଲେଖିଛନ୍ତି । ଏବେ ମଧ ଲେଖିଚାଲିଛନ୍ତି ।

କିନ୍ତୁ ଏକାବେଳକେ କ'ଣ ଲେଖାହୋଇନି ସେ ଗଳ୍ପ ?

ସେଦିନ ମହାଜାତି ସଦନରୁ ଫେରି ତୁନି ତୁନି ସେହି ପ୍ରଶ୍ନଟା ହିଁ କରିଥିଲେ ଅନାମିକା ଆକାଶର କୌଣସି ଏକ ନକ୍ଷତ୍ରକୁ— ତମର ଆଉ ମୋର ସେହି

ଗଳ୍ପଟିକୁ କ'ଣ ମୁଁ ଏକାବେଳେ ଲେଖିନି ? ଲେଖିଛି ଲେଖିଛି । ଲେଖିଛି ନାନା ଛଳରେ ନାନା ପ୍ରକାର କରି, ନାନା ପରିବେଶର ମାଧ୍ୟମରେ । ଆମମାନଙ୍କର ଗଳ୍ପଟା ରେଣୁ ରେଣୁ କରି ମିଶାଇ ଦେଇଛି 'ଅନେକଙ୍କ' ଗଳ୍ପ ମଧ୍ୟରେ !

ତେବେକେ—

ତମେ ଖାଲି ଜାଣିଲ, ଅନେକ ଗଳ୍ପ ଲେଖିଲି ମୁଁ, ଖାଲି ତମର ଆଉ ମୋର ସେ ଗଳ୍ପଟା କେବେହେଲେ ଲେଖିଲିନି । ତମେ ଅନେକଥର କହିଛ, ତେବେକେ ଲେଖିନି । ପିଲାଙ୍କ ପରି ପ୍ରତୀକ୍ଷା କରିଛ ତମେ, ପିଲାଟିଏ ଭଳି ହତାଶ ହୋଇଛ, ସେ କଥା ବୁଝିପାରିଛି ମଧ୍ୟ, ତେବେକେ ହୋଇପାରିନି ।

କାହିଁକି ହୋଇପାରିଲାନି, ମୁଁ ନିଜେ ହିଁ ଭଲରୂପେ ଜାଣେନି । ହୁଏତ ଲେଖି ପାରିଲିନି ବୋଲି । ତେବେକେ ଆଜି ସେକଥା ଭାବି ବହୁତ ଯନ୍ତ୍ରଣା ହେଉଛି । ବହୁତ ଯନ୍ତ୍ରଣା ।

କିନ୍ତୁ ନକ୍ଷତ୍ରଟା କ'ଣ ସେକଥା ବିଶ୍ୱାସ କରିଥିଲା ? ବିଶ୍ୱାସ କରିବା କଥା ନୁହେଁ ତ । ସେ ତ ସବୁକିଛି ଦେଖିଥିଲା ଆକାଶର ଆସନରେ ବସି । ଦେଖିଥିଲା ମହାଜାତି ସଦନରେ ମସ୍ତ ଗୋଟାଏ ସାଂସ୍କୃତିକ ଅନୁଷ୍ଠାନର ଆୟୋଜନ ହୋଇଛି । ଭିଡ଼ରେ ହଲ୍ ଭାଙ୍ଗିପଡୁଛି, ପ୍ରବେଶଦ୍ୱାର ଆଲୋକରେ ଝଲମଲ କରୁଛି ।

ବିରାଟ ଏକ ମଟରଗାଡ଼ିରୁ ଓହ୍ଲାଇଲେ ଅନୁଷ୍ଠାନର ସଭାନେତ୍ରୀ । ସେମାନେ ହିଁ ଗାଡ଼ି ପଠାଇଥିଲେ ।

ଶାନ୍ତ ପ୍ରସନ୍ନ ଚେହେରା, ଭଦ୍ରମାର୍ଜିତ ସାଜସଜ୍ଜା । ଉଦ୍ୟୋକ୍ତାମାନଙ୍କର ଆଭୂମି ନମସ୍କାରର ବିନିମୟରେ ନମସ୍କାର କରିଛନ୍ତି । ସାହିର ସେହି ଗୋଟାଏ ପୁଅ, ରାଜେନ୍ଦ୍ରଲାଲ ଷ୍ଟ୍ରୀଟ୍‌ର କୌଣସି ଗୋଟିଏ ଜାଗାରେ ତା' ଘର, ଅନାମିକାଙ୍କୁ ଧରି କେବେ ଗୋଟାଏ ଏ ଅନୁଷ୍ଠାନରେ ପ୍ରବେଶପତ୍ରଟିଏ ଯୋଗାଡ଼ କରିଥିଲା, ସେହି ପୁଅଟି କିପରି କେଜାଣି ମହାଜନବେଷ୍ଟିତ ସଭାନେତ୍ରୀଙ୍କର ଏକାବେଳେ ପାଖକୁ ଲାଗିଆସି ଖୁବ୍ ଧୀର ଗଳାରେ କହିଥିଲା— ଆପଣ ବାହାରିଆସିଲେ, ଆଉ ସାଙ୍ଗେ ସାଙ୍ଗେ ପାଖଘରେ ଆପଣଙ୍କର ଗୋଟାଏ ସ୍ୟାଡ୍ ଘଟଣା ! ବିରାଟ କନ୍ଦାକଟା !......

ପିଲାଟି ପାଖକୁ ଲାଗିଆସିବାର ଦେଖି ଅନାମିକା ଭାବୁଥିଲେ— ତାଙ୍କ ସାଙ୍ଗ ଧରି ଏକାବେଳେ ପ୍ରଥମ ଧାଡ଼ିର ଚଉକିରେ ଯାଇ ବସିବାକୁ ମତଲବ କରିଛି ବୋଧହୁଏ ।...... ସାହିର ପିଲାମାନେ ସୁବିଧାଟା ଖୋଜନ୍ତି, ଘରର ପିଲାମାନେ କେବେହେଲେ ଯାଆନ୍ତି ନାହିଁ । ଅନାମିକାଙ୍କ ପୁତୁରାମାନେ କୌଣସିଦିନ ସାମାନ୍ୟ

ଏକ କୌତୂହଳ ପ୍ରଶ୍ନ ମଧ୍ୟ କରନ୍ତି ନାହିଁ ଅନାମିକାଙ୍କ ଗତିବିଧି ସଂପର୍କରେ । କେବେ କଦାଚିତ୍ କୌଣସି ଭଲ ଅନୁଷ୍ଠାନର ପ୍ରବେଶପତ୍ର ଉପହାର ଦେଇ ଅନାମିକା ଦେଖିଛନ୍ତି– ସେମାନଙ୍କର ସମୟ ହୋଇନି ଦେଖିବାକୁ ଯିବା ପାଇଁ ! ଅଥଚ ତା'ଠାରୁ ବାଜେ ଜିନିଷ ପଇସା ଖର୍ଚ୍ଚ କରି ଦେଖିବାକୁ ଯାଇଛନ୍ତି । ହୁଏତ ତା'ପରଦିନ ହିଁ ଯାଇଛନ୍ତି ।

ସାହିର ପିଲାମାନେ ହିଁ ସୁଯୋଗ-ଫୁଯୋଗ ଆଶାରେ ପାଖକୁ ଲାଗିଆସନ୍ତି । ଅନାମିକା ଭାବିଲେ ସେଇଥିପାଇଁ ପିଲାଟି ଆସୁଛି । କିନ୍ତୁ ପୁଅଟା ହଠାତ୍ ପାଖକୁ ଲାଗି ଆସି ପଡ଼ିଶାଘରର ଖବର ଦେବାକୁ ବସିଲା ।

କହିଲା – ଆପଣ ଯେମିତି ବାହାରି ଆସିଛନ୍ତି ନା –

ଅନାମିକା ଝାପ୍‌ସା ଭାବରେ ତାଙ୍କ ଘରର ଏ ପାଖ ସେପାଖରେ ଥିବା ଘରଗୁଡ଼ିକୁ ସ୍ମରଣ କଲେ– ତାରାଚରଣ ବାବୁଙ୍କ ମା' ତା'ହେଲେ ମରିଗଲେ, ଅନେକଦିନ ହେଲା ଭୋଗୁଥିଲେ । କହିଲେ– ସେଇୟା ନା କ'ଣ ? ମୁଁ ତ –

ଉଦ୍ୟୋକ୍ତାମାନେ ଆଗେଇ ଚାଲିଲେ, ପିଲାଟାକୁ ଗୋଟାଏ ପାଖକୁ ଠେଲି ଦେଇଛନ୍ତି, ତେବେକେ ପିଲାଟା ଯେମିତି ଲାଗିଯୋଡ଼ !

ହୁଏତ ସେ ସେହି ସ୍ୱଭାବର ମଣିଷ, ଯେଉଁମାନେ କାହା ପାଖରେ ଗୋଟିଏ ଦୁଃସମ୍ବାଦ ପରିବେଷଣ କରିବାର ସୁଯୋଗଟାକୁ ବେଶ୍ ଗୋଟାଏ ପ୍ରାପ୍ତିଯୋଗ ବୋଲି ଭାବନ୍ତି । ସେଥିପାଇଁ ସୁଯୋଗଟାକୁ ହରାଇବାକୁ ଚାହାନ୍ତି ନାହିଁ । ପିଲାଟା ସାଙ୍ଗରେ ସାଙ୍ଗରେ ଆଗେଇ ଚାଲିଥାଏ, ହଲ୍ ଭିତରେ ପ୍ରବେଶ କରେ, ଆଉ ହଠାତ୍ ଥରଟିଏ 'ଚାନ୍ସ' ପାଇ କହି ପକାଏ– ଆପଣ କେମିତି ଜାଣିବେ ? ସେହିକ୍ଷଣି ତ ଟେଲିଗ୍ରାମ୍ ଆସିଲା । ସେଇ ଯୋଉ ଆପଣଙ୍କ ପଡ଼ିଶାଘରର ସୁନିର୍ମଳବାବୁ ନ ଥିଲେ ! ବମ୍ବାଇରେ ରହିଥିଲେ –

କଥାଟା ସାରିପାରିଲାନି ସେ ।

ସେତେବେଳକୁ ତ ଅନାମିକା ଦେବୀଙ୍କୁ ମଞ୍ଚ ଉପରକୁ ନେବାପାଇଁ ଗ୍ରୀନ୍‌ରୁମ୍ ଆଡ଼କୁ ନେଇଗଲେଣି ସେମାନେ । ସମସ୍ତଙ୍କ ସମ୍ମୁଖରେ ଦୋଦୁଲ୍ୟମାନ ପର୍ଦ୍ଦା ସେପଟେ ସଜାଇ ବସାଇ ମାହେନ୍ଦ୍ର କ୍ଷଣରେ ଯବନିକା ଉତ୍ତୋଳନ କରିବେ ।

ଏବେ ମଧ୍ୟ ଭାବିଲେ ବିସ୍ମୟର ସୀମା ଦେଖନ୍ତି ନାହିଁ ଅନାମିକା । ବୁଝିପାରନ୍ତି ନାହିଁ ସତ ସତରେ ସେ ଘଟଣାଟା ଘଟିଥିଲା ନା ନାହିଁ ! ଅଥଚ ଘଟିଥିଲା । ଯବନିକା ଉତ୍ତୋଳିତ ହୋଇଥିଲା ନାଟକୀୟ ଭଙ୍ଗୀରେ, ଉତ୍ସୁକ ଦର୍ଶକ ଦଳ

ଦେଖି ପାରିଥିଲେ ଧାଡ଼ି ଧାଡ଼ି ହୋଇ ପଡ଼ିଥିବା ଚଉକିରେ ସଭାନେତ୍ରୀ, ପ୍ରଧାନ ଅତିଥି ଏବଂ ଉଦ୍‌ବୋଧକ ସମାସୀନ ।

ତା'ପରେ ନାଟକର ଦୃଶ୍ୟ ପରି ହିଁ ପରେ ପରେ ଦେଖି ପାରିଥିଲେ, ଉଦ୍‌ବୋଧନ ସଙ୍ଗୀତ ଶେଷରେ ତିନିଜଣ ପ୍ରଧାନଙ୍କୁ ମୋଟା ଗେଣ୍ଡୁଫୁଲର ମାଳ ପିନ୍ଧାଇ ଦିଆଗଲା । ତା'ପରେ ଜଣେ ଜଣେ ହୋଇ ଉଦ୍‌ବୋଧକ, ପ୍ରଧାନ ଅତିଥି ଏବଂ ସଭାନେତ୍ରୀ ଭାଷଣ ଦେଲେ । ତା'ପରେ ଯଥାରୀତି ସମାପ୍ତି ସଙ୍ଗୀତ ସରିଲା ।

ଆଉ ତା'ପରେ ଅସଲ କଥା ସାଂସ୍କୃତିକ ଅନୁଷ୍ଠାନ ଆରମ୍ଭ ହେବା ପାଇଁ ପୁଣି ଯବନିକା ପଡ଼ିଲା ।

ସଭାନେତ୍ରୀଙ୍କ ଭାଷଣ ଭଲ ହୋଇଥିଲା ?

ହୋଇଥିଲା ନିଶ୍ଚୟ ।

ଏଭଳି ସୁନ୍ଦର ଅନୁଷ୍ଠାନରେ ତ୍ରୁଟି କେବେ ଥାଇପାରେ ?

ତା'ପରେ ଯଦି ସଭାନେତ୍ରୀ ହଠାତ୍ ଅସୁସ୍ଥତା ବୋଧ କରି ଘରକୁ ଚାଲିଯାଆନ୍ତି, ସେଥିରେ ଅନୁଷ୍ଠାନର ତ୍ରୁଟି ହେବାର କଥା ନୁହେଁ ।

ନା, ଅନୁଷ୍ଠାନର କୌଣସି ତ୍ରୁଟି ହୋଇ ନାହିଁ ।

ସଭାନେତ୍ରୀଙ୍କ ଭାଷଣରେ ମଧ୍ୟ କୁଆଡ଼େ ଲେଶମାତ୍ର ତ୍ରୁଟି ନ ଥିଲା । ଉଦ୍ୟୋକ୍ତାମାନଙ୍କ ଭିତରୁ ଜଣେ ଏ ଅଭିମତ ମଧ୍ୟ ପ୍ରକାଶ କଲେ, 'ଏହିପରି ମୃଦୁ, ସଂକ୍ଷିପ୍ତ ଏବଂ ହୃଦୟଗ୍ରାହୀ ଭାଷଣ ହିଁ ସେମାନେ ଚାହାନ୍ତି । ଦୀର୍ଘ ବକ୍ତୃତା ସେମାନଙ୍କ ଦୁଇ ଆଖିର ବିଷ ।'

ଅତଏବ ଧରାଯାଇପାରେ ସଭା ସାଫଲ୍ୟମଣ୍ଡିତ ହୋଇଥିଲା । ତା'ଛଡ଼ା କୃତଜ୍ଞତା ପ୍ରକାଶ, ଧନ୍ୟବାଦ, ଶୁଭେଚ୍ଛାଜ୍ଞାପନ ଇତ୍ୟାଦି ସବୁ କିଛି ଠିକ୍‌ରୂପେ ସଜାଇ ଦିଆଯାଇଥିଲା ।

ଆକାଶର ସେହି ନକ୍ଷତ୍ରଟି ଆକାଶର ଝରକା ବାଟେ ଚାହିଁ ଚାହିଁ ସବୁ କଥା ତ ଦେଖିଥିଲା ।

ତା'ହେଲେ କିପରି ସେ ବିଶ୍ୱାସ କରିବ, ଏହି ଭୟାନକ ଯନ୍ତ୍ରଣାଟା ସତ୍ୟ । ବିଶ୍ୱାସ କରିନି, ନିଶ୍ଚୟ ବିଶ୍ୱାସ କରିନି । ହୁଏତ ମୃଦୁହସି ନିଃଶବ୍ଦ ଉଚ୍ଚାରଣରେ କହିଥିଲା– 'ଏତେ ବେଶୀ ଯଦି ଯନ୍ତ୍ରଣା ତ, ସେ ସବୁ ସଜାଇଥିବା, ସଜାଡ଼ିଥିବା କଥାଗୁଡ଼ାକୁ କେମିତି ଚଳାଇଦେଲା ଶୁଣେ ? ଶୁଣିଲାକ୍ଷଣି ତ ସଂଜ୍ଞାହୀନ ହୋଇ

ପଡ଼ିଯାଇ ପାରିଥାନ୍ତି ଏପ୍ରକାର ପରିସ୍ଥିତିରେ ଯାହା ଖୁବ୍ ସ୍ୱାଭାବିକ ଥିଲା । ଆକସ୍ମିକ ସେହି ଅସୁସ୍ଥତାକୁ ଲୋକେ ଏମିତି କିଛି ଅସ୍ୱାଭାବିକ ବୋଲି ମଧ୍ୟ ଭାବି ନ ଥାନ୍ତେ ।

କହିଥାନ୍ତେ– 'ଗରମ ହେତୁ', କହିଥାନ୍ତେ ଅତିରିକ୍ତ ମାନସିକ ପରିଶ୍ରମ ହେତୁ । ଅଥବା କହିଥାନ୍ତେ, ଦେହ ଖରାପ ଥିବା ସତ୍ତ୍ୱେ ବୋଧହୁଏ ଆସିଥିଲେ । ଆଉ କ'ଣ ? ସଭା ବୃଥା ହୋଇଯାଇଥାନ୍ତା ?

ପାଗଳ ?

ରାଜାଙ୍କ ବିନା ରାଜ୍ୟ ଚଳୁଛି, ଆଉ ସଭାନେତ୍ରୀଙ୍କ ବିନା ସଭା ଚାଲି ନ ଥାନ୍ତା ?

କେତେ କେତେ ଜାଗାରେ ତ ଏଭଳି 'ସଭାପତି ଅନ୍ତର୍ଦ୍ଧାନ' ଘଟିଥାଏ । ହେଇଟି ଆସୁଛନ୍ତି, ଏଇଲେ ପହଞ୍ଚିବେ, ଆଣିବାକୁ ଯାଇଛନ୍ତି କହି କହି କର୍ତ୍ତୃପକ୍ଷ ଆଶ୍ରା ଛାଡ଼ିଦେଇ ଅନ୍ୟ କୌଣସି କୃଷ୍ଣବିଷ୍ଣୁଙ୍କୁ ସଭାପତିଙ୍କ ଆସନରେ ବସାଇ ଦିଅନ୍ତି ।

ଅନାମିକା ଦେବୀ ସେଦିନ ହଠାତ୍ ସଂଜ୍ଞାହୀନ ହୋଇପଡ଼ିଥିଲେ ସେଇଯା ହୋଇଥାନ୍ତା । ତା'ଛଡ଼ା ଆଉ କ'ଣ କ୍ଷତି ଘଟିଥାନ୍ତା ?

ଅଥଚ ସେହି ମୂର୍ଖ ସଭାନେତ୍ରୀ ଆପ୍ରାଣ ଚେଷ୍ଟା କରି ସେହି ସଂଜ୍ଞାଟିକକୁ ହିଁ ଧରି ରଖିବାକୁ ଉଦ୍ୟମ କରିଛନ୍ତି । ସତରେ ଅନାମିକା ସେଇଆ କରିଥିଲେ । ସେହି ପଳାଇଯିବାକୁ ଚେଷ୍ଟା କରିବା ବସ୍ତୁଟାକୁ ଧରି ରଖିବା ପାଇଁ ସେତେବେଳେ ଯେପରି ଗୋଟାଏ ଲଢ଼େଇ ମନୋବୃତ୍ତି ନେଇ ଯୁଦ୍ଧକ୍ଷେତ୍ରରେ ଓହ୍ଲାଇଥିଲେ । ପରାଜୟ ସ୍ୱୀକାର କରିବିନି । କଦାପି ପରାଜୟ ସ୍ୱୀକାର କରିବିନି । କାହାକୁ ଜାଣିବାକୁ ଦେବିନି । ଜାଣିବାକୁ ଦେବିନି ମୋ ମନ ଭିତରେ କ'ଣ ହେଉଛି ?

କିନ୍ତୁ ସମ୍ଭବ ହୋଇଥିଲା ତ । ଅନେକଥର ନିଜକୁହିଁ ପଚାରିଛି ବକୁଳ, କେମିତି ସମ୍ଭବ ହେଲା ?

ତା'ର ଅର୍ଥ ଅସଲରେ 'ମନ' ନାମକ ଲୋକଟାର ନିଜସ୍ୱ କୌଣସି ଚରିତ୍ର ନାହିଁ, ସେ ଖାଲି ପରିବେଶ ଦ୍ୱାରା ନିୟନ୍ତ୍ରିତ !

ଭଗବାନଙ୍କ ସଂପର୍କରେ କେବେହେଲେ ଗଭୀର ଚିନ୍ତା ନ ଥିଲା ବକୁଳର । ଚଳନ୍ତି କଥାର ନିୟମରେ ହୁଏତ 'ଭଗବାନ' ଶବ୍ଦଟା ବ୍ୟବହାର କରୁଥିଲା । 'ଭଗବାନ ଖୁବ୍ ରକ୍ଷା କରିଦେଇଛନ୍ତି । 'ଭଗବାନ ଜାଣନ୍ତି କଥାଟା କ'ଣ ? ଭାରି ଭାଗ୍ୟ ଯେ ଭଗବାନ ଅନୁକଟା କରିନାହାନ୍ତି ।' ଏମିତି । ଯା ଛଡ଼ା ଆଉ କ'ଣ କରିଛି ?

ଖାଲି ଏହି ଗୋଟିଏ ଜାଗାରେ ଭଗବାନଙ୍କୁ ମୁହାଁମୁହିଁ କରି ରଖି ପ୍ରଶ୍ନ କରିଛି ବକୁଳ, ଏବେ ମଧ୍ୟ କରେ, 'ଭଗବାନ୍ ! ତମର କି ଦରକାର ଥିଲା ସେହି ଶାନ୍ତ ସଭ୍ୟ ଅବୋଧ ମଣିଷଟାକୁ ଏତେ ଚଞ୍ଚଳ ପୃଥିବୀରୁ ଘୁଞ୍ଚାଇ ଦେଲ ? ତମର କ'ଣ କ୍ଷତି ହୋଇଥାନ୍ତା ଯଦି ସେହି ମଣିଷଟି ପୃଥିବୀର ଟିକିଏମାତ୍ର କୋଣରେ ସାମାନ୍ୟ ଟିକିଏ ଜାଗା ଦଖଲ କରି ଆଉ କିଛିଦିନ ଥାଆନ୍ତା । ତମର ଏ ଆକାଶରେତ ନକ୍ଷତ୍ରର ସୀମା ନାହିଁ, ତା'ହେଲେ କାହିଁକି ଏତେ ଜଲ୍‌ଦି ଆହୁରି ଗୋଟିଏ ନକ୍ଷତ୍ର ବଢ଼ାଇବା ପାଇଁ ଏମିତି ନିର୍ଲଜ୍ଜ ଚୌର୍ଯ୍ୟ ବୃତ୍ତି କଲ ତମେ ?

ଭଗବାନଙ୍କୁ ଉଦ୍ଦେଶ୍ୟ କରି କଥା କହିବାର ଅଭ୍ୟାସ ସେହି ପ୍ରଥମ କଲେ ସେ । ଭଗବାନଙ୍କ ନିର୍ଲଜ୍ଜତାରେ ସ୍ତମ୍ଭିତ ହୋଇ, ଭଗବାନଙ୍କ ନିଷ୍ଠୁରତାରେ ସ୍ତବ୍ଧ ହୋଇଯାଇ କଥା ହୋଇଥିଲେ ସେ ଭଗବାନଙ୍କ ସହିତ ।

ବକୁଳର ଖାତାରେ ଛନ୍ଦର ଚରଣ ଧୂଳି ବାଜିଲାକ୍ଷଣି ସେ ଧ୍ୱନି ପହଞ୍ଚିଯାଉଥିଲା ମଝିଆନାନୀ ପାଖରେ । ସବୁଦିନର ନିୟମ ଥିଲା ଏଇଟା ।

ଖାଲି ସେତିକିବେଳେ, 'ମହାଜାତି ସଦନ'ରେ ଅନୁଷ୍ଠିତ ଉତ୍ସବର କେତେଦିନ ପରେ ବକୁଳର ଖାତାରେ ଛନ୍ଦର ପଦପାତ ପଡ଼ିଥିଲା, କିନ୍ତୁ ନାନୀ ପାଖରେ ତାହା ପହଞ୍ଚି ନାହିଁ । ଖାତା ଭିତରେ ହିଁ ସମାଧିସ୍ଥ ହୋଇ ରହିଛି ସେଇଟା ।

ସେହି ଖାତାଟା ଯାହାର ପତ୍ରର ସନ୍ଧିରେ ଏ ପର୍ଯ୍ୟନ୍ତ ସେ ଚିଠିଟା ଶୋଇରହିଛି !

'କାହିଁ ? କେଉଁଠି ? ଆମମାନଙ୍କର ସେ ଗଚ୍ଛଟା ?'

ନା, ମଝିଆନାନୀ ପାଖକୁ ଯାଇନି ଖାତାର ସେ ପୃଷ୍ଠାଟା । ଯାଇଥିଲେ ହୁଏତ ଯତ୍ନର ମୋହର ବସିଥାନ୍ତା ତା ଦେହରେ । ଦେଖା ଯାଇଥାନ୍ତା ଛନ୍ଦରେ କେତେ ତ୍ରୁଟି ରହିଛି । ଶବ୍ଦ ଚୟନରେ କେତେ ଦକ୍ଷତା ଅଛି ।

ଆଉ ହୁଏତ ଶେଷ ପର୍ଯ୍ୟନ୍ତ ସରିଥାନ୍ତା ମଧ୍ୟ । କୌଣସି ଗୋଟାଏ ଜାଗାରେ ସମାପ୍ତିର ରେଖା ଟଣା ଯାଇଥାନ୍ତା । କିନ୍ତୁ ଖାତାଟା ପଠାଯାଇନି ମଝିଆନାନୀ ପାଖକୁ ବକୁଳର ଅକ୍ଷମତାର ସାକ୍ଷୀ ହୋଇ ଖାତା ଭିତରେ ପଡ଼ି ରହିଛି ।

ଅଥଚ ସେଇ ରାତିରେ ହିଁ ବକୁଳ ଲେଖିନି ଯେ, ଅକ୍ଷମତାଟାକୁ କ୍ଷମା କରାଯିବ । କେତେଦିନ ପରେ ହିଁ ଲେଖିଥିଲା ବୋଧହୁଏ ।

ଲେଖିଥିଲା –

ରାତିର ଆକାଶରେ ହେଇଟି ବସିଛନ୍ତି ଯେଉଁମାନେ

ସ୍ଥିର ଅଚଞ୍ଚଳ,

ଆଲୋକ ସ୍ଫୁଲିଙ୍ଗ ସମ
ଲକ୍ଷ ଲକ୍ଷ କୋଟି କୋଟି ତାରା,
ଆମେ ସେମାନଙ୍କୁ ଜାଣିଛୁ ।
ପୃଥିବୀଠାରୁ ବି ବଡ଼ ବହୁତ ବଡ଼
ଗ୍ରହ ଉପଗ୍ରହ ।

ନାମ-ପରିଚୟହୀନ ଦୂରାନ୍ତର ପଡ଼ୋଶୀ ଆମର ।
ଦୁର୍ଲଙ୍ଘ୍ୟ ନିୟମେ ଅହର୍ନିଶି ଘୂରୁଛନ୍ତି
ଆପଣା ଆପଣା କକ୍ଷରେ ।
କିରଣ ବିକୀର୍ଣ୍ଣ କରି ।
ବିଜ୍ଞାନର ଜ୍ଞାନାଲୋକେ
ଧରା ତ ପଡ଼ିଛି ସେମାନଙ୍କ ସ୍ୱରୂପ ।
ଅନେକ ଅଙ୍କ ଆଉ ଅନେକ ଯୁକ୍ତିକୁ
ପୋଛିଲେ ପ୍ରମାଣ କରି ।
ରଖି ନାହାନ୍ତି କେଉଁଠି ସନ୍ଦେହର ଅବକାଶ ।
ସେମାନେ ସତ୍ୟ, ସେମାନେ ଗ୍ରହଦଳ ।
ତେବେବି ମନେହୁଏ —
ଜୀବନର ଉଷାକାଳେ ମାତାଙ୍କ ମୁଖରୁ
    ଶୁଣିଛି ଯା ଭ୍ରାନ୍ତବାଣୀ, ଶିଖିଛି ଯେଉଁ ଭୁଲ୍
ସବୁଠାରୁ ବେଶୀ ସତ୍ୟ ସେହି ।
ସତ୍ୟ ସବୁଠାରୁ ବେଶୀ ଯୁକ୍ତିହୀନ ବୁଦ୍ଧିହୀନ
ସେହି ମିଥ୍ୟା ମୋହ !
ସେଥିପାଇଁ ସ୍ତବ୍ଧ ରାତ୍ରିକାଳେ
ନିଃସୀମ ନିକଷପଟେ ନିର୍ନିମେଷ ଦୃଷ୍ଟି ମେଲି
ଦେଖେ ଚାହିଁ ଚାହିଁ
ଅନେକ ତାରାଙ୍କ ମଧ୍ୟରେ କେଉଁଠି ଯେ ଅଛି

ଦୁଇଟି ଆଖିର ତାରା ।
ଯେଉଁ ଦୁଇ ତାରା କୋଟି କୋଟି ଯୋଜନର
ଦୂରଲୋକେ ବସି
ଚାହିଁଛନ୍ତି ତନ୍ଦ୍ରାହୀନ ।
ଚାହିଁରହିଛନ୍ତି ସକରୁଣ ମହିମାରେ
ମାଟିର ପୃଥିବୀକୁ ।
ଯେଉଁଠି ଏକଦା ସେ—
ଗୋଟିଏ ନକ୍ଷତ୍ର ହୋଇ ଜଳୁଥିଲା ଯେ ଏକାକୀ
ଆଲୋକିତ କରିଦେଇ ଗୋଟିଏ ଘରକୁ ।
ନିୟତିର କ୍ରୂର ଆକର୍ଷଣେ
ଯେଉଁଠୁ ସେ ନେଇଛି ବିଦାୟ
ପ୍ରାଣବୃନ୍ତଠାରୁ ଛିଣ୍ଡାଇଛି ଆପଣାରେ !
ଲକ୍ଷ କ୍ରୋଶ ଦୂରାନ୍ତରୁ—
ଲକ୍ଷ୍ୟ ସ୍ଥିର କରି
ହୁଏତ ସେ ଅଛି ଚାହିଁ
ସେହି ଗୃହଟି ଆଡ଼କୁ ନତନେତ୍ର ମେଲି ।
ହୁଏତ ଦେଖୁଛି ଖୋଜି—
ଦୀପହୀନ ଦୀପ୍ତିହୀନ ସେହି ଗୃହଟିରୁ
ଦୁଇଟି ଚକ୍ଷୁ ଅଛି କି ନା ଜାଗି
ଊର୍ଦ୍ଧ୍ୱ ଆକାଶକୁ ଚାହିଁ ।
କୋଟି ତାରକା ମଝିରେ
ଖୋଜିବାକୁ ଦୁଇ ଆଖି ତାରା ।
ସହସା ଏକଦା ଯଦି—

ନା, ଆଉ ଲେଖା ହୋଇନି ।

କେତେକାଳ ହୋଇଗଲା, ଖାତାର ପୃଷ୍ଠାର ରଙ୍ଗଟା ହଳଦିଆ ପଡ଼ିଗଲାଣି ! କବିତାଟା ଅସମାପ୍ତ ହିଁ ରହିଗଲା । ତା'ହେଲେ କେମିତି କହିହେବ ଯେ 'ମନ' ନାମକ କୌଣସି ସତ୍ୟବସ୍ତୁ ଅଛି ?

ନା ନାହିଁ, 'ମନ' ନାମକ କୌଣସି ସତ୍ୟବସ୍ତୁ ନାହିଁ । ଅନ୍ତତଃ ଅନାମିକା ଦେବୀଙ୍କ ଭିତରେ ତ ଜମା ନାହିଁ । ଥିଲେ ତା'ପରେ ଆହୁରି ଅନେକ ଅନେକ ଗଳ୍ପ ସେ ଲେଖିପାରି ନ ଥାନ୍ତେ । ଥିଲେ ସେ ଚିଠିଟି ହିଁ ତାଙ୍କର କଲମର ମୁହଁଟାକୁ ଚିପି ଧରିଥାନ୍ତା, କହିଥାନ୍ତା, "ରହ, ରହ, ତମକୁ ଲାଜ ଲାଗୁନି ? ଭୁଲିଯାଉଛ ନକ୍ଷତ୍ରମାନେ ଅହର୍ନିଶି ଚାହିଁ ରହିଥାନ୍ତି ।"

କିନ୍ତୁ ସେସବୁ କିଛି ହୋଇ ନାହିଁ । ସେ କଲମ ଅବ୍ୟାହତ ଗତିରେ ଚାଲିଛି । ବରଂ ଦିନକୁ ଦିନ କୁଆଡ଼େ ଆହୁରି ଧାରୁଆ ଆହୁରି କଡ଼ା ହେଉଛି । ଅନ୍ତତଃ ଶମ୍ପା ତ ସେଇଆ କହେ । ଆଉ ଶମ୍ପା ନିଜକୁ ଏ ଯୁଗର ପାଠକ-ପାଠିକା ସମାଜର ମୁଖପାତ୍ର ବୋଲି ହିଁ ବିଶ୍ୱାସ କରେ ।

ଶମ୍ପା ମଝିରେ ମଝିରେ ଆସି କହେ, "ଆଚ୍ଛା ପିଉସୀ, ତମେ ଏମିତି ଚୁପ୍ ସଇତାନ ବିଲେଇ ପ୍ୟାଟର୍ଣ୍ଣର କାହିଁକି ହେଲ ?"

ତା'ର କୌଣସି କଥାରେ ହିଁ ବିସ୍ମୟାହତ ହେଉ ନ ଥିଲେ ଅନାମିକା, ସେଥିପାଇଁ ଧୀରେ ହସିଦିଅନ୍ତି । ଅଥବା କହନ୍ତି– ସେ ଉତ୍ତର ମୋର ସୃଷ୍ଟିକର୍ତ୍ତାଙ୍କ ପାଖରେ ଅଛି । ତୁ ବା ଏମିତି ବାଘୁଣୀ ପ୍ୟାଟର୍ଣ୍ଣର କାହିଁକି ହୋଇଛୁ ? ସେ କଥାଟା ମଧ ତ ଗୋଟିଏ ପ୍ରଶ୍ନ ।

'ବାଜେ କଥା ରଖ' । ଉତ୍ତପ୍ତ ଗଳାରେ ଶମ୍ପା କହେ, ତମକୁ ଦେଖିଲେ ତ ଖାଲି ଗୋଟାଏ ଦଲଡ଼ା ପିଉସୀ ବୋଲି ମନେହୁଏ, ଅଥଚ କଲମରୁ ଲେଖାଗୁଡ଼ିକ ଏମିତି ଜବ୍ବର କରି ବାହାର କରୁଛ କେମିତି କହିଲ ?

ଆଜି ମଧ ଉଦ୍ଦୀପ୍ତ ମୂର୍ତ୍ତିରେ ହିଁ ଆସି ଉଦୟ ହେଲା, 'ନାଃ, ତମର ସେ ଚୁପ୍ ସଇତାନ ନାଁଟା ହିଁ ହେଉଛି ଅସଲ ନାଁ ।

ଅନାମିକା ଜାଣିଲେ ତାଙ୍କର ଏବେ ଲେଖିଥିବା କୌଣସି ଗୋଟାଏ ଲେଖା ତା'ର ଭାରି ପସନ୍ଦ ହୋଇଯାଇଛି, ସେଥିପାଇଁ ଏ ଉଚ୍ଛ୍ୱାସ । ମୃଦୁ ହସି କହିଲେ– ସେ କଥା ତ ଆଗରୁ ସ୍ଥିର ହୋଇଯାଇଛି ।

–ହଁ, ତେବେବେଳେ ଟିକିଏ ସନ୍ଦେହ ଥିଲା, ଆଜି ସେଇଟା ଗଲା ।

–ରକ୍ଷା ପାଇଲି ।

–ତମେ ତ ରକ୍ଷା' ପାଇଲ, ମୁଶ୍କିଲ୍ ମୋର । ତମ ପାଖରେ ଆସି ବସିଲାମାତ୍ରେ ଲାଗିବ ଶାନ୍ତ ବିରାଡ଼ିଟା ଆଖିବୁଜି ବସିଛି, କିନ୍ତୁ କୌଣସି ସୁଯୋଗରେ ଅନ୍ତରର ଅନ୍ତଃସ୍ଥଳ ପର୍ଯ୍ୟନ୍ତ ଦେଖିସାରିଲାଣି !

—ସେଥିରେ ଚିନ୍ତା କ'ଣ ? "ହସିଲେ ଅନାମିକା," ତୋ ଅନ୍ତଃସ୍ଥଳରେ ତ ଆଉ କିଛି ଅଳନ୍ଧୁ ହେରିକା ନାହିଁ !"

"ହେଲା ଏବେ ସେଗୁଡ଼ାକ ମୋର ନାହିଁ" ଶମ୍ପା ଅନାୟାସ ମହିମାରେ କହିଲା, "ମୋର ଭିତରଟା ନ ହେଲା ଏବେ ଦେଖିପକାଇଲ, ମୋର କିଛି ଯିବନି" । ହେଲେ ଅନ୍ୟମାନଙ୍କର ? ସେମାନଙ୍କ କଥା ମଧ୍ୟ ତ ଭାବିବାକୁ ହେବ ।

—ତୁ ଭାବେ । ତା'ପରେ ମତେ କି କି ଶାସ୍ତି ଦେବୁ ଦେ ।

—ଶାସ୍ତି !

ଶମ୍ପା ଉତ୍ତାଳ କଣ୍ଠରେ କହିଲା— ଶାସ୍ତି କ'ଣ ? କହ ପୁରସ୍କାର । କ'ଣ ସେ ପଦେ କଥାରେ ଛୁରୀ ବିନ୍ଧିଯିବା ଗଳ୍ପ ଲେଖିଛ ଏଥରର 'ଉଦୟନ'ରେ, ପଢ଼ି ମୋର କଲେଜର ସାଙ୍ଗମାନେ ତ ଏକାବେଳେ 'ଆଁ' କରିଦେଇଛନ୍ତି । କହିଲେ, ଆଚ୍ଛା ତୋ' ପିଉସୀଙ୍କୁ ତ ଆମେ ଦେଖିଛୁ, ଦେଖିଲେ ତ ଲାଗୁନି ସେ ଆମର, ମାନେ ଆଉ କ'ଣ ଆଧୁନିକ ଝିଅଙ୍କ କଥା ଏମିତି ଜାଣିପାରୁଛନ୍ତି ? ଆଶ୍ଚର୍ଯ୍ୟ, କେମିତି ସେ ଆଧୁନିକ ଝିଅମାନଙ୍କର ଯାହାକୁ କହନ୍ତି ଗଭୀର ଗୋପନ ବ୍ୟଥା— ବେଦନାର କଥା ଏମିତି ପ୍ରକାଶ କରନ୍ତି ? ସତରେ ପିଉସୀ ତମକୁ ଦେଖିଲେ ତ ମନେହୁଏ ତମେ ଆଧୁନିକତା ହେରିକା ସେମିତି ପସନ୍ଦ କରନି !

ଅନାମିକା ଈଷତ୍ ଗମ୍ଭୀର ଗଳାରେ କହିଲେ— ଏମିତି ଭାବିବାର କାରଣ ?

—କି କଥା ! ଯାହା ମନେହୁଏ ତା'ର ପୁଣି କାରଣ ଥାଏ ?

—ଥାଏ ନିଶ୍ଚୟ । କାର୍ଯ୍ୟ ଥିଲେ ହିଁ କାରଣ ରହିବ, ଏଇଟା ତ ଚିର ସତ୍ୟ ।

କାରଣଟା ଦେଖା ।

—ଆରେ ବାପା ! ଏତେ ଚାପ ଦିଅନି । ସେମାନେ ତ କହନ୍ତି ।

—ଦେଖ୍ ବିଚ୍ଛୁଆତି, ତୋ'ର ସେମାନଙ୍କୁ ଯଦି କେବେ ଏ ପ୍ରଶ୍ନର ଉତ୍ତର ଦେବାକୁ ଚାହିଁବୁ ତ କହିବୁ 'ଆଧୁନିକତା' ଆଉ ଉଚ୍ଛୃଙ୍ଖଳତା ଏକ ବସ୍ତୁ ନୁହେଁ । ଆଉ— "ଅନାମିକା ଟିକିଏ ହସିଲେ ଆଉ 'ଆଧୁନିକ' ଶବ୍ଦଟାର ବିଶେଷ ଗୋଟିଏ ଅର୍ଥ ଅଛି, ତାକୁ ବୟସ ଦ୍ୱାରା ମପାଯାଏ ନାହିଁ । ଜଣେ ଅଶୀବର୍ଷଠାରୁ ବେଶୀ ଲୋକ ମଧ୍ୟ ଆଧୁନିକ ହୋଇପାରିବେ । ଜଣେ କୋଡ଼ିଏ ବର୍ଷର ତରୁଣ ଯୁବକ ମଧ୍ୟ ପୁରୁଣାକାଳିଆ ହୋଇପାରେ । ଏଇଟା ହେଉଛି ମନୋଭାବ । କେବଳମାତ୍ର ବୟସର ଟିକଟ ଖଣ୍ଡିକ ହାତରେ ଧରି ଯେଉଁମାନେ ନିଜକୁ 'ଆଧୁନିକ'

ଭାବି ଗର୍ବ ଓ ଗୌରବରେ ସ୍ଫୀତ ହୁଅନ୍ତି, ସେମାନେ ଜାଣି ନାହାନ୍ତି ସେ ଟିକେଟ୍‌ଟା ପ୍ରତି ମୁହୂର୍ତ୍ତରେ ବାସି ହୋଇ ଯାଉଛି, ଅକାର୍ଯ୍ୟ ହୋଇଯାଉଛି । କୋଡ଼ିଏ ବର୍ଷଟା ପଚିଶିବର୍ଷ ଆଡ଼କୁ ଚାହିଁ ଅନୁକମ୍ପାର ହସ ହସୁଛି ଏବଂ ଦି'ବର୍ଷ ନ ଯାଉଣୁ ଅଠରବର୍ଷ ବୟସ୍କମାନେ ପୁଣି କୋଡ଼ିଏ ବର୍ଷମାନଙ୍କ ଆଡ଼କୁ ଚାହିଁ ସେହି ଏକପ୍ରକାର ହସ ହସିବେ । ମୁଁ ଜଣକୁ ଜାଣେ, ଏବେ ଯାହାଙ୍କ ବୟସ ଅଶୀଠାରୁ କମ୍ ନୁହେଁ, ତେବେକେ ତାକୁହିଁ ମୁଁ, ମୁଁ ଜାଣିଥିବା ଜଗତର ସବୁ ଲୋକଙ୍କଠାରୁ ବେଶୀ ଆଧୁନିକ ବୋଲି ଭାବେ ।

—'ଜାଣିନି ବାପା !' ଦୁଇହାତ ଓଲଟାଇ ଶମ୍ପା କହିଲା— ତା'ହେଲେ ତମର ସେ ଅଶୀବର୍ଷର ଆଧୁନିକ ଲୋକଟିକୁ ଦିନେ ଦେଖାଇଦେବ, ଦେଖି ଚକ୍ଷୁ ସାର୍ଥକ ହୋଇଯିବ । ତେବେ ତମର ସେ ଉଦୟନର 'ନବକନ୍ୟା' ପଢ଼ି କଲେଜର ଝିଅମାନେ ତମକୁ ଫୁଲଚନ୍ଦନ ଦେଉଛନ୍ତି, ଏ ଖବରଟା ଜଣାଇଦେଲି । ଲିଲି ତ କହୁଥିଲା, ଇଚ୍ଛା ହେଉଛି ଯାଇ ପିଉସୀଙ୍କ ପାଦଧୂଳି ନେଇକରି ଆସିବି । ଲେଖକମାନେ ତ ଖାଲି ଯୁଗଯନ୍ତ୍ରଣାରେ ଛଟପଟ ହୋଇ ମରୁଥିବା ପୁଅଗୁଡ଼ିକୁ ହିଁ ଦେଖିପାରନ୍ତି । ସେ ଯନ୍ତ୍ରଣା ଯେ ଝିଅମାନଙ୍କ ଭିତରେ ବି ଅଛି, ସେ କଥା କ'ଣ କିଏ କେବେ ଭାବୁଛନ୍ତି ! ସେମାନେ ଜାଣନ୍ତି କେବଳମାତ୍ର ଦେହଯନ୍ତ୍ରଣା ଛଡ଼ା ଝିଅମାନଙ୍କର ଆଉ କୌଣସି ଯନ୍ତ୍ରଣା ନାହିଁ । ଘୃଣା ଲାଗେ, ଲାଜ ଲାଗେ, ରାଗରେ ମଥା ଜଳିଯାଏ । ପିଉସୀଙ୍କୁ ଯାଇ କହିବି—

କଥାରେ ବାଧାଦେଇ ଅନାମିକା କହନ୍ତି— ସେକଥା ହେଲା ବୁଝିଲି, ହେଲେ ପାଦଧୂଳି ନେବାଟା, ସେଇଟା ଯେ ଅତି ପୁରୁଣାକାଳିଆ । ଏମିତି ତୋର ସାଙ୍ଗ ! ସେକାଳର ଗାଉଁଲି ଝିଅଟିଏ ! ଛିଃ !

—କହ ପଛକେ ! କ୍ଷତି ନାହିଁ । ଶମ୍ପା ବିଛଣାରେ ବେଶ୍ ଜମେଇ ବସି ଗମ୍ଭୀର ଗଳାରେ କହିଲା— ଦେଖ ପିଉସୀ, ତମକୁ ଆଉ ମୁଁ କ'ଣ କହିବି ? ତମେ କ'ଣ ବୁଝୁ ନାହଁ ଯେ ? ତେବେ ମୁଁ ତ ଦେଖୁଛି ପ୍ରକୃତରେ ପ୍ରାଣ ଭିତରେ ଯେତେବେଳେ ସତକୁ ସତ ଆବେଗ ଜାତ ହୁଏ, ସେତେବେଳେ ତମର ସେସବୁ ସେକାଳ ଏକାଳ ଜ୍ଞାନ ରହେନି ।

—ରହେନି କହୁଛୁ ?

—କାହିଁ କେଉଁଠୁ ରହୁଛି ? ମୁଁ ନିଜେ ତ ଦେଖିଲି— ସାତଜନ୍ମରେ ଠାକୁର ଦେବତାଙ୍କୁ ଡାକେନି, ପାଖକୁ ମଧ୍ୟ ଯାଏନି, ଯେଉଁମାନେ ଏମିତି ଠାକୁର ଠାକୁର ହୁଅନ୍ତି ସେମାନଙ୍କ ଆଡ଼କୁ କୃପାର ଦୃଷ୍ଟିରେ ଚାହେଁ । କିନ୍ତୁ ପିଉସୀ, ତମପାଖରେ ଆଉ କହିବାକୁ ଲାଜ ନାହିଁ, ଜାମ୍ବୋର ଯେଉଁଦିନ ହଠାତ୍ ଏକାବେଳେ ଶହେଛଅ

ଜର ଉଠିଗଲା ସାଇଁ ସାଇଁ ହେଇ, ଡାକ୍ତର ମୁଣ୍ଡରେ ହାତଦେଇ ବସିପଡ଼ିଲେ ବୋଲି ଲାଗିଲା ସେଦିନ ଠାକୁରଙ୍କ ପାଖରେ ସେଇଯୋଉ ମାନସିକ ନା କ'ଣ କରି ପକାଇଲି । କହିଲି– ହେ ଠାକୁର, ଯାଙ୍କ ଜର ଭଲ କରିଦିଅ ତମକୁ ଅନେକ ପୂଜା ଦେବି । କଥାଟା ବୁଝିଲ ତ ?

ଅନାମିକା ହସି କହି ପକାଇଲେ– କଥାଟା ତ ଭଲକରି ବୁଝିଗଲି– ପାଣିଭଳିଆ ବୁଝିଲି, କିନ୍ତୁ 'ଜାମ୍ବୋ'ଟି କି ବସ୍ତୁ ତା' ତ ଜାଣିପାରିଲିନି ।

–'ଜାମ୍ବୋକୁ ଚିହ୍ନିନ ?' ଶମ୍ପା ଯେମିତି ଆକାଶରୁ ଖସି ପଡ଼ିଲା ।

–ତା' ନାଁଟା କ'ଣ ତମକୁ କେବେହେଲେ କହିନି ମୁଁ ?

–କାହା ନାଁ ?

–ଆଃ, ସେଇ ଟୋକାଟାର ! ମାନେ ସେଇ ମିସ୍ତ୍ରୀଟାର । ଯାହାର ଭାରି ବନ୍ୟଭାବ ରହିଛି ବୋଲି ଏବେବି ତାକୁ ରିଜେକ୍ଟ କରିନି ।

–ତା' ନାଁ ଜାମ୍ବୋ ? ଆଫ୍ରିକାନ୍ ନା କ'ଣ ?

–ଆହା, ଆଫ୍ରିକାନ୍ ହେବାକୁ ଯିବ କାହିଁକି ଯେ ? ତା' ଚେହେରାଟା ପାଇଁ ତା' କକା କୁଆଡ଼େ ସେଇ ନାଁରେ ଡାକୁଥିଲେ । ଶୁଣି ମୋର ମଧ୍ୟ ବେଶ୍ ପସନ୍ଦ ହୋଇଗଲା ।

–ତା' ତ ହେବ । ତୁ ନିଜେ ଯେମିତି । ତୋ ନାଁ ମଧ୍ୟ ଶମ୍ପା ନ ହୋଇ ହିଡ଼ିମ୍ବା ହେବା ଉଚିତ ଥିଲା । କାହିଁକି ଟିକିଏ ସଭ୍ୟ ଭବ୍ୟ ହୋଇପାରୁନୁ ? ଘରେ ତ ତୋ' ବୟସର ଆଉ ଗୋଟିଏ ଝିଅ ଅଛି, ତାକୁ ଦେଖି ତ ଶିଖିପାରନ୍ତୁ !

–'କ'ଣ ଶିଖିପାରିବି ? ସଭ୍ୟତା ? କାହାକୁ ଦେଖି ? ତମର ସେ ନାତୁଣୀଟିକୁ ଦେଖି ? ଦରକାର ନାଇଁ ମୋର ।' ଶମ୍ପା ଅବଜ୍ଞାରେ ଓଠ ଲେଉଟାଇଲା । ତା'ପରେ କହିଲା– ମୁଁ ନିହାତି ଅଶିକ୍ଷିତ ଅସଭ୍ୟ ବୋଲି ତା'ର କୀର୍ତ୍ତିକଳାପକୁ ମୁହଁରେ ଧରିବାକୁ ଚାହେଁନି । ନାତୁଣୀର ଗୁଣାବଳୀକୁ ଶୁଣିଲେ ତମେ ମୋହିତ ହୋଇଯାଇଥାନ୍ତ !

–ଆହା, ଲେଖାପଢ଼ାରେ ହୁଏତ ସେତେ ଭଲ ନୁହେଁ, ଆଉସବୁରେ ତ...

–'ଲେଖାପଡ଼ା ପାଇଁ କିଏ ମରିଯାଉଛି ?...' ଉତପ୍ତ କଣ୍ଠରେ କହିଲା ଶମ୍ପା ।

–ବର୍ଣ୍ଣପରିଚୟ ନ ଥିଲେ ବି କିଛି କ୍ଷତି ନାହିଁ । କିନ୍ତୁ 'ଆଉସବୁ'ଟା କ'ଣ ଶୁଣେ ?

—"କାହିଁକି, ନାଚଗୀତ, ଛବି ଆଙ୍କିବା, ସିଲେଇ, ଟେବୁଲ୍ ମ୍ୟାନର୍ସ, ପାର୍ଟିରେ ଯୋଗ ଦେବାର କ୍ୟାପାସିଟି—"

—ତମେ ତୁନିହେଲ ପିଉସୀ, ମୁଣ୍ଡ ଭିତରେ ନିଆଁ ଜଳେଇ ଦିଅନି ତମର ସେ ବୋହୂଟି ଝିଅଟାର ଇହକାଳ, ପରକାଳ ସବୁ ଖାଇ ସାବାଡ଼ କରିଦେଇଛନ୍ତି, ଜାଣିଛ ? ଛବି ଆଙ୍କେ ? ହୁଁ ! ଯାହା ଦେଖିବ ଜାଣିବ ଯେ ସବୁଯାକ ତା'ର ମାଷ୍ଟ୍ରଙ୍କ ଦ୍ୱାରା ଅଙ୍କାହୋଇଛି । ସିଲେଇଯାକ ତ ସବୁ ଖାଲି ତା'ର ମାତୃଦେବୀର— ତେବେ ହଁ, ସଜେଇହେବାଟା ଭଲ ଶିଖିଛି । ଯାଉ ସେ ମରୁ.... ମହାପୁରୁଷମାନେ କହନ୍ତି ପରଚର୍ଚ୍ଚା ମହାପାପ ! ତମେ ଯେ ଦୟାକରି ତମର ସେ ନାତୁଣୀଟିକୁ ଏ ଯୁଗର ଆଧୁନିକାମାନଙ୍କର ପ୍ରତିନିଧି ଭାବି ନାହଁ ଏଇଟା ଭଲ ! ଯାହେଉ— ଲିଲି ଯଦି ଆସିବ, ଆଉ ପାଦର ଧୂଳିଫୁଲି ନେବ, ସେକଥା ନେଇ କିଛି କହିବନି ଯେମିତି...... ଟିକିଏ ଆବେଗ ଧରି ସେ ଆସିବ ତ ? ଆଉ ଆବେଗ ଉଦ୍‌ବେଳିତ ଅବସ୍ଥାରେ...... ହଠାତ୍ ଅଟ୍ଟ ହେରିକା ଶୁଣିଲେ......

—ଆଚ୍ଛା, ଆଚ୍ଛା, ତୋ'ର ବନ୍ଧୁର ଭାରଟା ମୋ ଉପରେ ଛାଡ଼ି ଦେ । କିନ୍ତୁ ସେଇ ଯୋଉ ଜାମ୍‌ବାନ୍ ନା କାହାପାଇଁ ଠାକୁରଙ୍କ ପାଖରେ ମାନସିକ କରିଥିଲୁ, ପୂଜା କରିଛୁ ? ନା ତା'ର ଜର ଛାଡ଼ିଯିବା ସାଙ୍ଗେ ସାଙ୍ଗେ ତୋ'ର ମୁଣ୍ଡରୁ ଭଗବାନ୍‌ଙ୍କ ଭୂତ ଓହ୍ଲାଇଗଲେ ?

ହସି ପକାଇଲା ଶର୍ମା । ଅପ୍ରସ୍ତୁତ ହସ ।

କହିଲା— କଥାଟା ମୁଁ ନିଜେ ଠିକ୍ ବୁଝିପାରୁନି ପିଉସୀ ! ଠାକୁର ଫାକୁର ତ ମାନେନି, ହଠାତ୍ ସେଦିନ କାହିଁକି ଯେ ମରିବାକୁ— ଏବେ ଭାବିପାରୁନି କ'ଣ କରିବି । ପୂଜା ଫୁଜା କରିବା କଥା ଭାବିଲାକ୍ଷଣି ତ ନିଜକୁ ଦୟା ଲାଗୁଛି, ଅଥଚ—'

—"ତା'ହେଲେ ଆଉ ଅଥଚ କ'ଣ ?" ନିର୍ଲିପ୍ତ ଗଳାରେ କହିଲେ ଅନାମିକା— ଭାବିବେ ହଠାତ୍ ଗୋଟାଏ ବୋକାମି କରି ପକାଇଥିଲୁ, ସେଥିରେ କ'ଣ ଯାଏ ଆସେ ?

—"ତମେ ସେଇୟା କହୁଛ ?......" ଶର୍ମା ପ୍ରାୟ ଅସହାୟ ମୁହଁରେ କହିଲା, ମୁଁ ବି ତ ଭାବୁଛି ସେ କଥା, ମାନେ ଭାବିବାକୁ ଚେଷ୍ଟା କରୁଛି, କିନ୍ତୁ କେମିତି ଗୋଟାଏ ଅସ୍ୱସ୍ତି ଲାଗୁଛି । ଶାଢ଼ୀରେ ଚୋରକଣ୍ଟା ବିନ୍ଧି ହୋଇ ରହିଥିଲେ ଯେମିତି ହୁଏ ପ୍ରାୟ ସେହିପରି । ଦେଖିପାରୁନି ! କିନ୍ତୁ—

—'ତା'ହେଲେ ଜିନିଷଟା ଚୋରକଣ୍ଟା ତ ?......' ଅନାମିକା ଓଠ ଚିପି ହସି କହନ୍ତି— ଚୋରର କଣ୍ଟା । ଅଲକ୍ଷିତରେ ଚୋର ତୁନିହୋଇ ସିନ୍ଧିକାଟି—

"ପାଗଳ ! ପାଗଳ ହୋଇଗଲ କି ?......" ଶମ୍ପା ହାଁ ହାଁ କରି କହିଲା, ତମେ ଭାବୁଛ ସେଇ ସୁଯୋଗରେ ମୋ ଭିତରେ ଠାକୁର ପ୍ରବେଶ କରି ବସିଛନ୍ତି ? ତମ ମୁଣ୍ଡ ଖରାପ ! ତେବେକେ କଥାଟା କ'ଣ କି, ସେମିତି ଅସ୍ୱସ୍ତି ଲାଗିବାରୁ ଭାବୁଥିଲି– ତମେ ପୂଜାଟା କରିଦେଇପାରିବନି ?

–ପୂଜା ? ମୁଁ ?

–ଆହା କିଛି ତ ବୁଝୁନ ଯେମିତି ! ଏମିତି ଅଭିନୟ କଲେ କ'ଣ ହେବ ଯେ ? ଟିକିଏ କ'ଣ ପୂଜା ଫୂଜା କରିଦେଲେ– ମାନେ ସତ୍ୟରକ୍ଷା ହୋଇଯିବ ଆଉ କ'ଣ ! ପ୍ରତିଜ୍ଞାଟାକୁ ପାଳନ କରିବା ଦରକାର ।

କ୍ଷୁବ୍ଧ ଗଳାରେ ଅନାମିକା କହିଲେ– କାହା ପାଖରେ ପ୍ରତିଜ୍ଞା ? ଯାହାଙ୍କୁ ବିଶ୍ୱାସ କରୁ ନାହୁଁ ତାଙ୍କରି ପାଖରେ ତ ? ସେଠି ପୁଣି ସତ୍ୟରକ୍ଷା କ'ଣ ? ଅନାୟାସରେ ହିଁ ତ ଭାବିପାରୁ ଯେ– ଦେବିନି, କ'ଣ ହେଇଯିବ ? ଠାକୁର ନା ହାତୀ ?

ଆଉ ଟିକିଏ ଅପ୍ରସ୍ତୁତ ଭାବରେ ହସି ଶମ୍ପା କହିଲା, ଚେଷ୍ଟା କରିଛି, ସୁବିଧା ହେଉନି ! ହେଲା ଏବେ ତମେ ଯାହାହେଲେ କିଛି କରିଦିଅ ବାପା !

–ମୁଁ ? ମୁଁ କ'ଣ କରିବି ?

–ଆଃ, କହିଲି ପରା, ସେଇ ଫୂଜା ଫୁଜା ଯାହା କିଛି । ତମରି ପାଖରୁ ଟଙ୍କା ନେଇ ତ ପୂଜା କରିଥାନ୍ତି !

କୌତୁକପୂର୍ଣ୍ଣ ହସକୁ ଲୁଚାଇଦେଇ ଅନାମିକା କହିଲେ, ସେ ତ ଅଲଗା କଥା । ହେଲେ ତୁ କେଉଁ ଠାକୁରଙ୍କ ପାଖରେ ମାନସିକ କରିଛୁ, ମୁଁ କ'ଣ ଜାଣିଛି ?

–"କୋଉ ଠାକୁର ?"...... ଶମ୍ପା ପୁଣି ଆକାଶରୁ ପଡ଼ିଲା ଯେମିତି, କହିଲା ଠାକୁର ପୁଣି କୋଉଁ ଠାକୁର ? ଏମିତି ଠାକୁର ତ !

–ଆହା, କ'ଣ ହେଲେ ଗୋଟାଏ ମୂର୍ତ୍ତି ତ ଭାବିଥିବୁ ? କାଳୀ ନା କୃଷ୍ଣ, ଦୁର୍ଗା କି ଶିବ..... ?

"ନା ପିଉସୀ, ସେସବୁ କିଛି ଭାବିନି ।"...... ଶମ୍ପା ଏଥର ଶୁଖିଲା ଗଳାରେ କହିଲା, ଆକାଶ ଆଡ଼କୁ ଚାହିଁ ତ କହି ମରିଥିଲି ! ମାନେ ତାଙ୍କର ଟେମ୍ପରେଚରଟା ଯେତେ ଉପରକୁ ଉଠୁଥିଲା, ମୋ ଆଖି ତ ସେତେ ଉପର ଆଡ଼କୁ ଯାଉଥିଲା । ଜ୍ୱର ଯେତେବେଳେ ଶହେଛଅ ଡେଇଁ ଆହୁରି ଚାରି ପଏଣ୍ଟ ହୋଇଗଲା ମୋ ଆଖି ମଧ୍ୟ ସେତେବେଳେ ଆକାଶ ଆଡ଼କୁ ଗତି କରିଥିଲା । ମୂର୍ତ୍ତି ଫୁର୍ତ୍ତି କିଛି

ଭାବିନି, ଖାଲି ସେହି ଆକାଶଟାକୁ କହିଥିଲି, ଟୋକାଟା ଏମିତି ତମର କି କାମରେ ଲାଗିବ କହିଲ, ତାକୁ ଏମିତି ଟଣାଟଣି କରିବାକୁ ଆରମ୍ଭ କରି ଦେଇଛ ? ତମର ସେଠି ତ ଅନେକ ତାରା ଅଛନ୍ତି, ଆହୁରି ଗୋଟାଏ ବଢ଼ାଇ ତମର ଲାଭ କ'ଣ ହେବ ?

ହଠାତ୍ ଜୋର୍‌ରେ ହସିଲା ଶମ୍ପା— ଦେଖୁଛ ପିଉସୀ, କୁସଂସ୍କାରର କି ଶକ୍ତି ! ଯେମିତି ବିପଦରେ ପଡ଼ିଛି, ସେମିତି ସାଙ୍ଗେ ସାଙ୍ଗେ ପିଲାଙ୍କ ଭଳି ଭାବିବାକୁ ଆରମ୍ଭ କରିଦେଲି— ମୃତ୍ୟୁର ଦୂତ ଆକାଶରୁ ଓହ୍ଲାଇଆସେ, ମରିଗଲେ ମଣିଷମାନେ ଆକାଶରେ ନକ୍ଷତ୍ର ହୋଇଯାଆନ୍ତି ! ଏସବୁ ହେଉଛି ଭୁଲ୍ ଶିକ୍ଷାର କୁଫଳ ।...... ଯା ଚାଲିଯା, ହେଇଟି ତମେ ଶୋଇପଡୁଛ ଯେ ! ବାପା ପୁଣି କେବଠାରୁ ମୋ ମାତୃଦେବୀଙ୍କ ପରି ତମକୁ ମଧ୍ୟ ନିଦ ଗ୍ରାସିଲାଣି ? ମା' ତ— ଥାଉ ବାପା, ଶୁଅ । ରାତିଯାକ ଚେତା ରହି ଲେଖିଲେଖି ବୁଢ଼ୀଟା ମରିବ ଦେଖୁଛି !

ଶମ୍ପା ତଳକୁ ଓହ୍ଲାଇଗଲା ।

ଆଉ ସେ ମୁଦ୍ରିତ ପଲ୍ଲବର ଭିତରଟାରେ ଯେମିତି ଭୟାନକ ଜ୍ୱାଳା ହେବାକୁ ଲାଗିଲା ।

ଠିକ୍ ସେତିକିବେଳେ ଆଉଜଣଙ୍କର ଆଖି ଭିତରଟା ମଧ୍ୟ ପୋଡୁଥିଲା । ସେ ଆଖି ଶମ୍ପାର ମା' ରମଲାର । ତାଙ୍କ ଝିଅ ଯେ ଖାଲି ତାଙ୍କୁ ଡେଇଁ, ଅଥବା ସତ କହିଲେ ତାଙ୍କୁ ଆଡ଼େଇ ଦେଇ ଗୁଣବତୀ ପିଉସୀ ପାଖକୁ ଧାଇଁବ ସବୁବେଳେ, ଏ କଥାଟା ତାଙ୍କର ଚକ୍ଷୁସୁଖକର ହୋଇପାରିବନି ନିଶ୍ଚେ । ଅଥଚ କରିବାର କିଛି ନାହିଁ । ଶ୍ୱଶୁର, ଘରଟା ରଖିଦେଇ ଯାଇଛନ୍ତି, କିନ୍ତୁ ଅଗଣା ମଝିରେ ଗୋଟାଏ ବିଷବୃକ୍ଷ ପୋତି ରଖି ଦେଇ ଯାଇଛନ୍ତି ।

ହୋଇପାରେ ନଣନ୍ଦଟି ତାଙ୍କର ପରମ ଗୁଣବନ୍ତୀ, ତାଙ୍କର ନିଜର ଭଉଣୀମାନେ, ଭାଉଜମାନେ, ଭାଉଜଙ୍କ ଭଉଣୀମାନେ ଯାଆ ନଣନ୍ଦ ଭାଣିଜୀ ଝିଆରୀ ଇତ୍ୟାଦି ସହିତରେ ପରିଚିତଗଣ ସମସ୍ତେ ସେଇ ଗୁଣବତୀର ଭକ୍ତ ସେ କଥା ମଧ୍ୟ ଜାଣିବାକୁ ବାକି ନାହିଁ ଶମ୍ପାର ମା'ଙ୍କର, ଏପରିକି ସେ ଅନାମିକା ଦେବୀ ସଙ୍ଗେ ଗୋଟିଏ ଘରେ ବାସ କରିବା ପରି ପରମ ସୌଭାଗ୍ୟର ଅଧିକାରିଣୀ ବୋଲି ଅନେକେ ଈର୍ଷାର ଛଳନା କରିଥାନ୍ତି, କିନ୍ତୁ ନିଜେ ତ ସେ ଜାଣନ୍ତି ସବୁବେଳେ ନଣନ୍ଦର କଥାବାର୍ତ୍ତା ଚାଲିଚଳଣ ଦେଖିଲେ ତାଙ୍କର ହାଡ଼ ଜଳିଯାଏ ।

ଏଣେ ତ ୟୁନିଭର୍ସିଟିର ମୋହର ମଧ୍ୟ ଗୋଟିଏ ହେଲେ ନାହିଁ, ଅଥଚ ବଡ଼ ବଡ଼ ପଣ୍ଡିତଲୋକମାନେ ମଧ୍ୟ ମାନ୍ୟ କରି କଥା କହିବାକୁ ଆସନ୍ତି ।

ସଭାର ଶୋଭାବର୍ଦ୍ଧନ କରିବାକୁ ଖୋଷାମତ କରି ଡାକି ନେଇଯାଆନ୍ତି ! ଏଇଟା କ'ଣ ଅସହ୍ୟର ପର୍ଯ୍ୟାୟରେ ପଡ଼ିବନି ?

ଯାଆନ୍ତୁ, ମରନ୍ତୁ, ନିଜର ମାନ, ଯଶ, ଅର୍ଥ, ପ୍ରତିଷ୍ଠାର ଉଚ୍ଚମଞ୍ଚରେ ବସି ବସି ଥାଆନ୍ତୁ । ଶମ୍ପାର ମା'ର ଝିଅଟା କାହିଁକି ତାଙ୍କ କାନି ଧରି ବୁଲିବ ? ଝିଅକୁ ଯେ ସେ ହାତମୁଠାରେ ପୂରାଇ ରଖିପାରିଲେନି, ତା'ର କାରଣ ତ ସେହି ଗୁଣବତୀଟି !

ନା ସତରେ, ପରିବାର ଭିତରେ ଯଦି କେହି ଜଣେ ବିଶେଷ ଗୁଣସମ୍ପନ୍ନ ହୋଇଯିବ, ସେ ପରିବାରରେ ଅପର ବ୍ୟକ୍ତିମାନଙ୍କର ଜ୍ୱାଳାର ସୀମା ନ ଥାଏ । ଖାଲି ଆଖି ହିଁ ନୁହେଁ, ଅହରହ ସର୍ବାଙ୍ଗ ଜଳେ ସେମାନଙ୍କର । ପ୍ରତିଭା-ପ୍ରତିଭା ଏସବୁ ଦୂରରୁ ଦେଖିଲେ ହିଁ ଭଲ, ପାଖରେ ଥିବା ଲୋକଙ୍କର କୌଣସି ସୁଖ ନାହିଁ । ଏମିତିକି ପରିବାରର ଜଣେ ଯଦି ସାଧୁ ସନ୍ନ୍ୟାସୀ ମଧ୍ୟ ହୋଇଯିବ ତାହେଲେ ବି ସୁଖ ନାହିଁ । ଆତ୍ମଜନଙ୍କ ଭକ୍ତଜନ ଆସି ପହଞ୍ଚିଲାକ୍ଷଣି ଘର ଲୋକଙ୍କୁ ନିଶ୍ଚୟ ବିଷ ପରି ଲାଗିବ ।

ଅତଏବ ଶମ୍ପାର ମା'ଙ୍କୁ ଦୋଷ ଦିଆଯାଇପାରେନା । ତେବେକେ ପୁରୁଷଲୋକ ହୋଇଥିଲେ ଅବା ସହନ୍ତେ, ଏ ତ ସ୍ତ୍ରୀଲୋକ ! ତା'ଛଡ଼ା ଶମ୍ପାର ମା'ର କପାଳରେ ଏ ଝିଅଟାର ଜ୍ୱାଳା ମଧ୍ୟ ରହିଛି । ଘରେ ତ ଜଣେ ଝିଅ ଅଛି, ଆହୁରି କେତେଜଣ ମଧ୍ୟ ଥିଲେ, ବାହାହୋଇ ଜଣେ ଜଣେ କରି ଯାଇଛନ୍ତି । କେହି ତ ତାଙ୍କର ଏ ଅଖାଡୁଆ ଝିଅଟା ପରି ପିଉସୀ-ଭକ୍ତ ନ ଥିଲେ । ଆଉ ଝିଅ ତାଙ୍କର ସେହି ପିଉସୀ ପାଇଁ ହିଁ ଏମିତି ଉପରମୁହାଁ ହୋଇଯାଇଛି ।

ହେଇଟି ଅଳକା-ବୋହୂର ଝିଅ, ଫେସନରେ ସବୁଠାରୁ ଟପ୍, ମଣିଷକୁ ତ ମଣିଷ ବୋଲି ମନେ କରେ ନାହିଁ, ତେବେକେ ଦେଖିଲ ! ଏ ବୟସରେ ମା' ଆଉ ଆଈ ସହିତ ମିଶି ଗୁରୁଦୀକ୍ଷା ନେଇଗଲାଣି । ଏପଟେ ଯେତେ ଫେସନ କରୁ, ନାଚି ବୁଲୁ । ସପ୍ତାହକୁ ଦିନେ ସେହି 'ଆତ୍ମାବାବା'ଙ୍କ ମଠରେ ହାଜର ହେବ ନିଶ୍ଚେ । ଯାହାହେଉ ଗୋଟାଏ ଦିଗରେ ତ ଉନ୍ନତି ହେଉଛି ! ତା'ଛଡ଼ା ସେଠି କୁଆଡ଼େ ସମାଜର ବଛା ବଛା ଲୋକ ଆସି ମଥା ନତ କରନ୍ତି, ତେଣୁ 'ଗୁରୁମନ୍ତ୍ର' ବୋଲି ଗୋଟାଏ ଲୋକଲଜ୍ଜା ମଧ୍ୟ ନାହିଁ । କୁଳଗୁରୁଙ୍କ ପାଖରେ ଦୀକ୍ଷା ନେବାରେ ଯେଉଁ ଗ୍ରାମ୍ୟତା ଅଛି, ଏମାନଙ୍କ ପାଖରୁ ଦୀକ୍ଷା ନେଲେ ତ ସେଇଟା ନାହିଁ । ବରଂ ସେଥିରେ ହିଁ ମାନ-ମର୍ଯ୍ୟାଦା, ସେଥିରେ ହିଁ ରହିଛି ଆଧୁନିକତା ।

ସେ ସବୁ ଜାଗାମାନଙ୍କରେ ଆହୁରି ଗୋଟାଏ ମସ୍ତ ସୁବିଧା ଅଛି । ବାବାଙ୍କର ଯେତେକ ମାନ୍ୟଗଣ୍ୟ ଶିଷ୍ୟମାନେ ତ ସପରିବାରରେ ଆସି ଧାରଣା ଦିଅନ୍ତି, ଭଲ ଭଲ ପାତ୍ର-ପାତ୍ରୀମାନଙ୍କର ସନ୍ଧାନ ମିଳେ ସେ ସୁଯୋଗରେ । ବାବା ନିଜେ କୁଆଡ଼େ କେତେ ଶିଷ୍ୟ-ଶିଷ୍ୟାଙ୍କର ପୁଅଝିଅଙ୍କର ବାହାଘର କରାଇ ଦେଇଛନ୍ତି ।

ଶମ୍ପାର ମା'ର ଅବଶ୍ୟ ଏସବୁ ଶୁଣିବା କଥା । ଘଟଣାଟାକୁ ନିଜେ ଯାଇ ଥରଟେ ଦେଖିଆସିବା ପାଇଁ ଯେତେ କୌତୂହଳ ଥିଲେ ମଧ୍ୟ, ନିଜର ସମ୍ମାନକୁ ବଳି ଦେଇ ପୁତୁରା ଓ ପୁତୁରାବୋହୂ ପାଖକୁ ଯାଇ କହିପାରନ୍ତି ନାହିଁ– ତମର ଗୁରୁଙ୍କ ପାଖକୁ ଥରଟେ ମତେ ନେଇଚାଲ ।

ଆଉ କହିଲାମାତ୍ରେ ଯେ ନେଇଯିବେ, ସେଥିର ନିଶ୍ଚୟତା କିଛି ନାହିଁ । ହେଇଟି ତ ତାହାହିଁ ନିଜ ଶାଶୁ କହିଥିଲେ ଦିନେ ।

'ସେଠି ବେଶୀ ଭିଡ଼, ସେଠି ଆପଣଙ୍କର କଷ୍ଟ ହେବ, ଆପଣ ବ୍ଲଡ୍‌ପ୍ରେସରର ରୋଗୀ – ସଙ୍କୀର୍ତ୍ତନର ଶବ୍ଦରେ ଆପଣଙ୍କର ପ୍ରେସର ବଢ଼ିଯିବ' – କହି କେମିତି ଆଡ଼େଇ ଦେଲେ । ବୋହୂଟିତ ସହଜ ଲୋକ ନୁହେଁ, ପକ୍କା ଚାଲବାଜ୍ ! ତେବେବି ନିଜର ଝିଅଟିକୁ କେମିତି ନିଜ ମନ ମୁତାବକ କରି ଗଢ଼ିପାରିଛି । ଭାଗ୍ୟ, ଭାଗ୍ୟ, ସବୁ ଭାଗ୍ୟ ! ଶମ୍ପାର ମା'ର ଭାଗ୍ୟରେ ସବୁ ଓଲଟା ।

ଝିଅକୁ ତଳକୁ ଓହ୍ଲାଇବା ଦେଖିଲାକ୍ଷଣି ଶମ୍ପାର ମା' ଅଟକାଇଲେ, କହିଲେ – କୁଆଡ଼େ କହିଲେ କୁଆଡ଼େ ଦିନସାରା ବୁଲି ବୁଲି ଘରକୁ ଆସିଲାକ୍ଷଣି ତ ପିଉସୀର ମନ୍ଦିରକୁ ଚଢ଼ିଯାଇଥିଲୁ, ତତେ ପଚାରୁଛି ସେଠି କ'ଣ ଡାହାଣ ହାତର ବ୍ୟବସ୍ଥା ଅଛି ? ନା ପିଉସୀର ମୁହଁ ଦେଖିଲାକ୍ଷଣି ପେଟ ପୂରିଯାଇଛି ତୋ'ର ?

ଶମ୍ପା ଠିଆହୋଇ ପଡ଼ି କଠିନ ଗଳାରେ କହିଲା – ତମର ଆଉକିଛି କଥା ଅଛି ?

– 'ମୋର ପୁଣି କି କଥା ଥିବ ?' ଶମ୍ପାର ମା' ମଧ୍ୟ ଧାତବ ଗଳାରେ କହିଦେଲେ – ଯେତେବେଳ ପର୍ଯ୍ୟନ୍ତ ମୋ'ର ହେପାଜତରେ ଅଛୁ, ଠିକଣା ସମୟରେ ଖାଇବାକୁ ଦେବା ଡିଉଟିଟା ତ ମତେ ପାଳନ କରିବାକୁ ପଡ଼ିବ । ଦୟା କରି କିଛି ଖାଇବାକୁ ଚାଲ୍ ।

– ମୋର ଭୋକ ନାଇଁ ।

– ଭୋକ ନାଇଁ ? ପିଉସୀ ବୋଧହୁଏ ଘରେ କଡ଼ାପାଗର ସନ୍ଦେଶର ବାକ୍ସ ସଜେଇ ରଖିଥିଲା ଝିଆରୀ ପାଇଁ ?

ଶମ୍ପା ଟିକିଏ ତୀକ୍ଷ୍ଣ ହସ ହସି କହିଲା, 'ନାଃ କଡ଼ାପାଗଟା ପିଉସୀର ଭାଉଜ ଦଖଲରେ କେବଳ ଅଛି ।'

—ସତେ ! ଭାରି ବଢ଼ି ବଢ଼ି କଥା କହୁଛୁ ! କେବେ ଯେ ତତେ ଭିନ୍ନଗୋତ୍ର କରିଦେଇ ହାଡ଼ ଶୀତଳ କରିବି !

ଶମ୍ପା ଆଉ ଟିକିଏ ହସି କହିଲା— ସେଇଥିପାଇଁ ତମେ ମୁଣ୍ଡ ଘୂରାଅନି ମା ! ସେଇ ଗୋତ୍ର ବଦଳ କାମଟା ମୁଁ ନିଜେ ହିଁ କରିଦେଇ ପାରିବି ।

—କ'ଣ କହିଲୁ ? କ'ଣ କହିଲୁ ଶୁଣେ ?

—ଯାହା କହିଲି ତା' ଏକାବେଳେ ତମେ ବୁଝିପାରିଛ ମା' । ଆଉଥରେ ଶୁଣି କାହିଁକି ରାଗକୁ ବଢ଼େଇବ ?...... କହିଦେଇ ଘୂରିଯାଇ ଘର ଭିତରେ ପଶିଗଲା ଶମ୍ପା ।

ଆଉ ଠିକ୍ ସେ ମୁହୂର୍ତ୍ତରେ ଶମ୍ପାର ବାପା ପ୍ରାୟ ନିଜର ବାପାଙ୍କ ଗଳାରେ ଝିଅକୁ କହିଲେ— ଠିଆ ହୁଅ, ତୋ ସଙ୍ଗେ କଥା ଅଛି ।

ଶମ୍ପା ବୁଲିପଡ଼ି ବାପାଙ୍କ ମୁହାଁମୁହିଁ ହୋଇ ଠିଆହେଲା ! ତା' ବାପାଙ୍କ ଭଉଣୀ ପରି ଭୀରୁ ଭଙ୍ଗୀରେ ନୁହେଁ, ଠିଆହେଲା ନିଜର ଭଙ୍ଗୀରେ ! ସେ ଭଙ୍ଗୀରେ ଭୀରୁତା ତ ନ ଥିଲା, ବରଂ ରହିଥିଲା କିଛି ଅସହିଷ୍ଣୁତା । ଯେପରି, ଟ୍ରେନ୍‌ର ଟିକେଟ୍ କଟା ହୋଇଯାଇଛି, ଯିବାର ବେଳ ହୋଇଯାଉଛି, ଅତଏବ ଯାହା କହିବ ଚଟ୍‌ପଟ୍ କହିଦିଅ ।

ବାପା ସେହି ଅସହନୀୟ ଭଙ୍ଗୀଟାକୁ ମଧ୍ୟ ପ୍ରାୟ ସହିଯାଇ ପଥର ଗଳାରେ କହିଲେ— ପିଲାଦିନରୁ ତତେ ବାରମ୍ବାର କହିଛି, ତେବେବି କୌଣସିମତେ ତତେ ବାଧ୍ୟ ବିନୀତ ସଭ୍ୟତାଜ୍ଞାନସମ୍ପନ୍ନ କରି ଗଢ଼ିବା ସମ୍ଭବ ହୋଇନି । ତୁ ଯେ ଗୋଟାଏ ଭଦ୍ରଘରର ଝିଅ, ସେ କଥାଟା ଯେମିତି ଖିଆଲ କରୁ ନାହୁଁ । କିନ୍ତୁ ଭାବୁଛି କଥାଟାକୁ ଏଥର ମତେ ହିଁ ମନେରଖିବାକୁ ପଡ଼ିବ । କିଛିଦିନହେଲା ତୋ' ନାଁରେ ଅନେକ ରିପୋର୍ଟ ପାଉଛି ଏବଂ—

କଥା ମଝିରେ ବାପାଙ୍କୁ ହତବାକ୍ କରିଦେଇ ଶମ୍ପା ଟିକିଏ ହସିଦେଇ କହିଲା— ରିପୋର୍ଟରଟି ନିଶ୍ଚୟ ଆମର ମା'-ଜନନୀ ?

—ଚୁପ୍ କର । ବାଚାଳତା ବନ୍ଦ କର ।...... ବାପା ତାଙ୍କର ସେହି ଭୁଲି ଯାଇଥିବା ବାପାଙ୍କ ପରି ହିଁ ଗର୍ଜନ କରନ୍ତି— ମୁଁ ଜାଣିବାକୁ ଚାହେଁ ସତ୍ୟବାନ ଦାସ କିଏ ?

—ସତ୍ୟବାନ ଦାସ !...... ଶମ୍ପା ଆକାଶରୁ ପଡ଼ିଲା— ସତ୍ୟବାନ ଦାସ କିଏ ମୁଁ କେମିତି ଜାଣିବି ?

—ତୁ କେମିତି ଜାଣିବୁ ? ଓଃ ! ଗୋଟାଏ ଗୁଣ ନ ଥିଲା ବୋଲି ଜାଣିଥିଲି, ସେଇଟା ମଧ୍ୟ ହେଇଗଲାଣି ତା'ହେଲେ ? ମିଛ କଥା କହିବା ଶିଖିଛୁ ! ହବ ତ, ଯେମିତି ସବୁ ବନ୍ଧୁବାନ୍ଧବ ଜୁଟିଛନ୍ତି ! କାରଖାନାର କୁଲି, ମଜୁରିଆ—

—କାରଖାନାର କୁଲି !...... ଶମ୍ପାର ମୁହଁରେ ହଠାତ୍ ବିଜୁଳି ଗାରଟିଏ ଚମକିଗଲା । ଜାଣ୍ଣୋର ନାଁ ଯେ ସତ୍ୟବାନ, ସେ କଥା ମନେ ନ ଥିଲା ତା'ର । ମୁହଁଟାକୁ ଅନ୍ୟଆଡ଼କୁ ଫେରାଇ ହସ ଲୁଚାଇ ଶମ୍ପା କହିଲା— ମିଛକଥା କହିବାର କିଛି ଦରକାର ନାହିଁ, ଖାଲି ଚଟ୍‌କିନା ମନେ ପଡ଼ି ନ ଥିଲା । ଡାକ ନାଁଟାହିଁ ମନେଥାଏ—

—'ଓଃ !' ଶମ୍ପାର ବାପା ଫାଟି ପଡ଼ିବାର ଅବସ୍ଥାକୁ ଆୟତ୍ତକୁ ଆଣି କହିଲେ, "ଡାକ ନାଁ ଧରି ଡକା-ଡକି ଚାଲିଛି ତା'ହେଲେ ! ହେଲେ ମୁଁ ଜାଣିବାକୁ ଚାହେଁ କେଉଁ ସାହସରେ ତୁ ଜଣେ ଛୋଟଲୋକ ସହିତ ମିଶୁଛୁ ?"

ଶମ୍ପା ଫେରାଇଥିବା ମୁହଁକୁ ଏପଟକୁ କରି ସ୍ଥିର ଗଳାରେ କହିଲା, "ଛୋଟ କାମ କଲେ କେହି ଛୋଟ ହୋଇଯାଏନି ବାପା !"

'ଆଉ ଥାଉ, ସେସବୁ ପଚା ପୁରୁଣା 'ବୋଲି' ଢେର୍ ଶୁଣିଛି । ମୁଁ ଚାହେଁନି ଯେ ମୋର ଝିଅ ଜଣେ ଇତର ଲୋକ ସହିତ ମିଶୁ ।'

ଶମ୍ପାର ସମସ୍ତ ଚାପଲ୍ୟର ଭଙ୍ଗୀ ହଠାତ୍ ଏକ କଠିନ ରେଖାରେ ସୀମିତ ହୋଇଗଲା । ଶମ୍ପା ତା'ର ବାପାଙ୍କ ଆଖି ଆଡ଼କୁ ସିଧା ଚାହିଁ କହିଲା, 'ତମର ଚାହିଁବା ଓ ମୋର ଚାହିଁବା ଭିତରେ ଯଦି ସାମଞ୍ଜସ୍ୟ ନ ଥାଏ ବାପା ?

ଯଦି ସାମଞ୍ଜସ୍ୟ ନ ଥାଏ !

ଶମ୍ପାର ବାପା ସେହି ଦୁଃସାହସ ଆଡ଼କୁ ଚାହିଁ ଶେଷକୁ ସତକୁ ସତ ଯେମିତି ଫାଟିପଡ଼ିଲେ । କହିଲେ— ତାହେଲେ ତୋ'ର ଆଉ ଏ ଘରେ ଜାଗା ରହିବନି ।

'ଆଚ୍ଛା, ଜାଣି ରଖିଲି ।'

ଶମ୍ପା ଏଥର ପୁଣି ସେହି ଆଗର ଅସହିଷ୍ଣୁ ଭଙ୍ଗୀକୁ ଫେରିଆସି କହିଲା, 'ଆଉ କିଛି କହିବ ? ମୋର ଟିକିଏ କାମ ଥିଲା । ବାହାରିବାକୁ ପଡ଼ିବ ।

—'ବାହାରିବାକୁ ପଡ଼ିବ !' ଶମ୍ପାର ବାପା ଭୁଲିଗଲେ ସେ ତାଙ୍କର ବାପାଙ୍କ ସମୟ ଜାଲରେ ଆବଦ୍ଧ ନୁହନ୍ତି । ତାଙ୍କର ମନେ ପଡ଼ିଲା ନାହିଁ, ଏବେ ଆଉ ଚାରିଟଙ୍କାରେ ମହଣେ ହୋଇଥିବା ଚାଉଳ ସେ ଖାଉ ନାହାନ୍ତି କି ଆଠଅଣା ସେରରେ ରୋହିମାଛ ଖାଉ ନାହାନ୍ତି । ତୀବ୍ର କଣ୍ଠରେ କହିଲେ ସେ, 'ପାରେ ଯାଇପାରିବୁନି ତୁ । କଲେଜ୍ ଛଡ଼ା ଆଉ କେଉଁଠାକୁ ନୁହେଁ ।'

ହଠାତ୍ ବାପାଙ୍କୁ ସ୍ତମ୍ଭିତ କରିଦେଇ ଜୋର୍‌ରେ ହସିପକେଇଲା ଶମ୍ପା । ହସି ହସି କହିଲା, 'ତମେ ଠିକ୍ ଯେମିତି ସେକାଳର ରାଜରାଜୁଡ଼ାମାନଙ୍କ ପରି କଥା କହିଲ ବାପା ! ଯେଉଁମାନେ ଆଜି ଯାହାକୁ କାଟି ରକ୍ତଦର୍ଶନ କରୁଥିଲେ, କାଲି ପୁଣି ତାଙ୍କୁ ଡାକି ଆଣିବାକୁ କହୁଥିଲେ । ଏଇକ୍ଷଣି ତ ହୁକୁମ ହୋଇଗଲା– ଏ ଘରେ ଜାଗା ନାହିଁ ।' ପୁଣି ଏଇଲେ ହୁକୁମ ହେଉଛି ଘରୁ ବାହାରି ପାରିବୁନି । ଅଦ୍ଭୁତ ।

ହଠାତ୍ ଯେମିତି କ'ଣ ହୋଇଗଲା !

ଶମ୍ପାର ବାପା କାଣ୍ଡଜ୍ଞାନ-ଶୂନ୍ୟ ହୋଇ ଝିଅର ସେହି ଚୂଡ଼ା ଭଳି ବନ୍ଧା ହୋଇଥିବା ଖୋଷାଟାକୁ ଧରି ଜୋର୍‌ରେ ଝଙ୍କାଇଦେଇ କହିଲେ, 'ଓଃ ପୁଣି ବଡ଼ ବଡ଼ କଥା ! ତୋ'ର ତ ଆସ୍ପର୍ଦ୍ଧାର ସୀମା ନାହିଁ ? ତତେ ମୁଁ ତାଲା ପକାଇ ରଖି ଦେବି ଜାଣିଛୁ, ପାଜୀ ଝିଅ !'

ଶମ୍ପା ନିହାତି ଶାନ୍ତ ଭାବରେ ଖୋଷାରୁ ଖସି ପଡ଼ିଥିବା ପିନ୍‌ଗୁଡ଼ାକୁ ସଜାଡୁ ସଜାଡୁ କହିଲା, 'ରଖି ପାରିବନି । ମିଛରେ ଏତେ କଷ୍ଟରେ ବାନ୍ଧିଥିବା ଖୋଷାଟାକୁ ନଷ୍ଟ କରିଦେଲ । ଯାଉ, ମରୁ । ଆଚ୍ଛା, ତା'ହେଲେ ଯାଉଛି'.... କହି ସୁନ୍ଦର ଚଟିହଳଟା ପାଦରେ ଗଳାଇ ଟାଣି ଟାଣି ବାପାଙ୍କ ସାମନାରେ ଘରୁ ବାହାରିଗଲା ଶମ୍ପା !

ବାପାଙ୍କ ମୁହଁରୁ ଆଉ ପଦଟେ କଥା ବାହାରି ନ ଥିଲା । ହଠାତ୍ ସେହି କେଶ ମୁଠାଟାକୁ ଧରିବା ସଙ୍ଗେ ସଙ୍ଗେ କ'ଣ ନିଜର ଭୁଲଟା ଆଖିରେ ତାଙ୍କର ପଡ଼ିଲା ? ମନେପଡ଼ିଲା ନିରୁପାୟତାର ପାତ୍ର ବଦଳ ହୋଇଯାଇଛି ! ସେଥିପାଇଁ ଝିଅର ଚାଲିଯାଇଥିବା ବାଟଆଡ଼କୁ ସ୍ତବ୍ଧ-ବିହ୍ୱଳ ଦୃଷ୍ଟିରେ ଚାହିଁ ରହିଲେ ? ନା ନିଜର ଅଧୀନର ଔଦ୍ଧତ୍ୟ ତାଙ୍କୁ ଶକ୍ତିହୀନ କରିଦେଇଗଲା ? ହୋଇପାରେ ।

ଚାରିଟଙ୍କାକୁ ମହଣେ ଚାଉଳର ଭାତରେ ଯାହାଙ୍କ ହାଡ଼ର ମୂଳଦୁଆ ପଡ଼ିଛି । ସେମାନଙ୍କର ଚିତ୍ତଜଗତରୁ ଯେ କୌଣସିମତେ ସେହି 'ଉର୍ଦ୍ଧ୍ୱତନ-ଅଧସ୍ତନ' । 'ପ୍ରଭୁ-ଭୃତ୍ୟ' 'ଗୁରୁଜନ-ଲଘୁଜନ' ଇତ୍ୟାଦି ବିପରୀତାର୍ଥକ ଶବ୍ଦଗୁଡ଼ିକ ପୁରୁଣା ଅର୍ଥ ହରାଇ ବିପରୀତ ଅର୍ଥବାହୀ ହେବାକୁ ଚାହିଁବେନି । ସେଥିପାଇଁ ସେମାନଙ୍କର ପ୍ରତି ପାଦରେ ଭୁଲ୍– ଏତେ ଭୁଲ୍ ହୁଏ, ଯେଉଁ ଭୁଲ୍ ଯୋଗୁ କ୍ରମାଗତ ଶକ୍ତିହୀନ ହୋଇପଡୁଛନ୍ତି ସେମାନେ ।

ଅନିବାର୍ଯ୍ୟର ବିରୋଧରେ ଲଢ଼େଇ କରିବାକୁ ଗଲେ ତ ଶକ୍ତିର ବୃଥା ଅପଚୟ ଘଟିବ ।

ଅନାମିକା ଏ ସବୁର କିଛି ଜାଣିପାରି ନ ଥିଲେ । ତିନିତାଲା ଉପରେ ନିଜର ଆପଣା ପରିମଣ୍ଡଳରେ ନିମଗ୍ନ ଥିଲେ ଅନାମିକା, ସାନଭାଇନାର ଉଚ୍ଚ କଣ୍ଠସ୍ୱର ଯଦିବା ଟିକିଏ କାନକୁ ଶୁଭିଥିଲା, ସେଇଟାକୁ ଗୁରୁତ୍ୱ ଦେଇ ନାହାନ୍ତି । ନାନା କାରଣରେ ତା'ର କଣ୍ଠସ୍ୱର ମଝିରେ ମଝିରେ ଉଚ୍ଚସ୍ତରକୁ ଉଠିଯାଏ, ଖବର ନେବାରେ ଜଣାପଡ଼େ କାରଣଟା ନିହାତି ସାଧାରଣ । ଅତଏବ ସ୍ୱରଟା କାନଠାରୁ ମନ ଭିତରକୁ ଯାଇ ନ ଥିଲା ।

କିନ୍ତୁ ଘଟନାଟାକୁ କ'ଣ ସତରେ ଗୋଟାଏ ଭୟାବହ ଘଟଣା ବୋଲି ମନେ ହୋଇଥିଲା ଶମ୍ପାର ବାପା-ମାଆଙ୍କର ? ସେମାନେ ଖାଲି ଝିଅର ଦୁଃସହ ସ୍ପର୍ଦ୍ଧା ଦେଖି ସ୍ତବ୍ଧ ହୋଇଯାଇଥିଲେ । ତା'ର ଅର୍ଥ ନିଜର ସନ୍ତାନକୁ ଆଜିପର୍ଯ୍ୟନ୍ତ ଚିହ୍ନି ନ ଥିଲେ ସେମାନେ ।

କିଏ ବା ଚିହ୍ନିଥାନ୍ତି ? କିଏ ଚିହ୍ନିପାରନ୍ତି କି ? ସମସ୍ତଙ୍କଠାରୁ ବେଶୀ ଅପରିଚିତ ଯଦି କିଏ ଥାଏ,ତେବେ ସେ ହେଉଛି ଆପଣାର ସନ୍ତାନ । ଯାହାକୁ ନିଶ୍ଚିନ୍ତ ବିଶ୍ୱାସର ଢରିକାଗଜରେ ଘୋଡ଼ାଇ ରଖିଥାଏ ମଣିଷ ।

ତେଣୁ ସାମାନ୍ୟ ସେହି କଥା କଟାକଟିର ସୂତ୍ରରେ କ'ଣ ଘଟିଗଲା ସେ କଥା ଜାଣିପାରିଲେନି ଶମ୍ପାର ବାପା-ମା' । ସେମାନେ ଠିକ୍ କଲେ ଝିଅ ଆସିଲେ ତା' ସହିତ କଥା କହିବେନି । ବାକ୍ୟାଳାପ ନିଶ୍ଚେ ବନ୍ଦ କରିଦେବେ ।

× × × × ×

ଅନାମିକା ଲେଖାର ଇତି ଟାଣିଦେଇ ଟିକିଏ ସିଧାସଳଖ ହୋଇ ବସିଲେ ଆଉ ସେହିକ୍ଷଣି ଆଖିରେ ପଡ଼ିଲା ଟେବୁଲ ପାଖରେ ଥିବା ଟୁଲ୍‌ଟା ଉପରେ । ଆଜିର ଡାକର ଚିଠିପତ୍ରଗୁଡ଼ିକ ପଡ଼ି ରହିଛି ।

ଚାକର ପିଲାଟା କେତେବେଳେ ଘରକୁ ଆସିଥିଲା, ରଖିଦେଇଯାଇଛି । ଅନେକ ବହିପତ୍ର ଉପରେ ଖଣ୍ଡିଏ ପରିଚିତ ହାତରେ ଲେଖା ପୋଷ୍ଟକାର୍ଡ !

## ।। ୧୫ ।।

ପୋଷ୍ଟକାର୍ଡ ଉପରେ ତାରିଖ ତଳେ ଲେଖାଯାଇଥିବା ଠିକଣାଟା ଦେଖି ଆଖି ଦୁଇଟା ଯେପରି ଧନ୍ୟ ହୋଇଗଲା । ଆଗ୍ରହରେ ଉଠାଇ ନେଇ ତରବରରେ ଥରେ ଆଖି ବୁଲାଇ ଦେଇ ଧୀରସୁସ୍ଥରେ ପଢ଼ି ବସିଲେ ।

ଅଥଚ ଅନାମିକାର ନାଁରେ ଆସିଥିବା ସେହି ପୋଷ୍ଟକାର୍ଡରେ ମାତ୍ର ଦୁଇଲାଇନ୍ ଲେଖା ହୋଇଛି...... ଅନେକଦିନ ପରେ କଲିକତାକୁ ଫେରି ତୋ କଥାଟା ହିଁ ସର୍ବପ୍ରଥମେ ମନେପଡ଼ିଲା, ସେଥିପାଇଁ ଗୋଟାଏ ଚିଠି ପୋଷ୍ଟ କରି ଦେଉଛି । ନିଶ୍ଚେ ଭଲ ଅଛୁ ।

ସନତ୍‌କକା

ସନତ୍ କକେଇଙ୍କର ଚିଠିର ଧରଣ ଏମିତି ! ଗତାନୁଗତିକ ପଦ୍ଧତିରେ ସ୍ନେହ-ସମ୍ବୋଧନ ପରେ ଆରମ୍ଭ କରି 'ଆଶୀର୍ବାଦାନ୍ତେ ଇତି'ର ଚଳଣି ନାଇଁ । ଅଧିକ କଥା ପଦଟିଏ ନାହିଁ । ପ୍ରୟୋଜନୀୟ କଥାତକ ପରିଷ୍କାର ଭାବରେ ଲେଖା । କେତେବେଳେ କେତେବେଳେ ପୋଷ୍ଟକାର୍ଡର ପୂରା ଦିଗଟା ଅଲେଖା ଥାଏ, ଆରପଟେ ଥିବା ଅର୍ଦ୍ଧାଂଶରେ ସେହି କେତୋଟି ଲାଇନ୍ ଲେଖା ହୋଇଥିବ ।

ଥରେ, ଅନାମିକାଙ୍କ ବାପା ଯେତେବେଳେ ବଞ୍ଚିଥିଲେ, ସେଇ ଚିଠିର ବ୍ୟାଖ୍ୟା କରି ତୀବ୍ର ଆପତ୍ତି କରିଥିଲେ ସେ, ଏ ପୁଣି ତୋ'ର କି ଚିଠି ସନତ୍ ? ଏଇଟାକୁ କ'ଣ ଚିଠି କୁହାଯାଏ ?

ହସିଦେଇ କକେଇ କହିଥିଲେ— ଚିଠି ତ କହନ୍ତିନି । କହନ୍ତି କାର୍ଡ଼, ପୋଷ୍ଟକାର୍ଡ଼ ।

—ସେଥିରେ କ'ଣ ହେଲା ? ଲେଖୁଛୁ ଯେତେବେଳେ ସେ ଚିଠିରେ ଗୋଟାଏ ଯଥାଯୋଗ୍ୟ ସଂପର୍କରେ ସମ୍ବୋଧନ ନ ଥିବ, କୁଶଳ ପ୍ରଶ୍ନ ନ ଥିବ, ନିଜେ କେମିତି ଅଛୁ ଏ ଖବର ନ ଥିବ, ପ୍ରଣାମ ଆଶୀର୍ବାଦ ରହିବନି, ମୁଣ୍ଡ ଉପରେ ଜଣେ ଦେବଦେବୀଙ୍କ ନାଁ ନ ଥିବ, ଏ କେମିତିକା କଥା ? ନା, ନା, ଏଇଟା ଠିକ୍ ନୁହେଁ । ଏଥିରେ କୁ-ଦୃଷ୍ଟାନ୍ତ ରଖାଯାଏ । ତମଠୁ ଦେଖି ଅନ୍ୟମାନେ ମଧ୍ୟ ଏଭଳି ଲାଞ୍ଜମୁଣ୍ଡ-ବିହୀନ ଚିଠି ଲେଖିବାକୁ ଶିଖିବେ ।

ସବୁ ଶୁଣି କକେଇ ଟିକିଏ ହେଲେ ଲଜ୍ଜିତ ନ ହୋଇ ବରଂ ହସିଉଠିଥିଲେ । କହିଥିଲେ— ଚିଠିଟା ତ ଆଉ ସଜ ରୋହିମାଛ ନୁହେଁ ଯେ ଲାଞ୍ଜମୁଣ୍ଡ ଚାଲିଗଲେ ଲୋକସାନ ହେବ । ଯଥାଯୋଗ୍ୟ ସମ୍ବୋଧନ ତ ନାଁ ଭିତରେ ହିଁ ରହିଛି ! ତମକୁ ଲେଖିଲେ ଲେଖିବି 'ପ୍ରବୋଧ ଭାଇନା', ଜଣାପଡ଼ିଯିବ ତମେ ଗୁରୁଜନ, ବକୁଳକୁ ଲେଖିଲେ ଖାଲି ଲେଖିବି ବକୁଳ, ଅତଏବ ସମସ୍ତେ ଜାଣିବେ ଯେ ସେ ଲଘୁଜନ ।

—ତା ବୋଲି ଗୋଟାଏ ଶ୍ରୀଚରଣକମଳେଷୁ କି କଲ୍ୟାଣୀୟାସୁ ଲେଖିବୁନି ?

—ସେଇଟା ନ ଲେଖିଲେ କ'ଣ ଜଣାପଡ଼ିବନି ?

ସନତ କକେଇ ବୋଧହୁଏ ତାଙ୍କ ପ୍ରବୋଧଭାଇନାର ତୁଚ୍ଛ କାରଣରେ ଉତ୍ତେଜିତ ହେବାଟା ଦେଖି ଆମୋଦ ଅନୁଭବ କରିଥିଲେ । ସେଥିପାଇଁ ହସି ହସି କହି

ଚାଲିଥିଲେ— ଦେଖେଇ ହୋଇ ନ କହିଲେ ମଧ୍ୟ ଜଣା କଥା ଆମେମାନେ ସାନମାନଙ୍କର କଲ୍ୟାଣ କାମନା ସବୁବେଳେ କରୁ, ଆଶୀର୍ବାଦ କରୁ ଏବଂ ବଡ଼ମାନଙ୍କୁ ଭକ୍ତି-ଫକ୍ତି, ପ୍ରଣାମ ପ୍ରଭୃତି କରିଥାଉ । କୁଶଳ ପ୍ରଶ୍ନ ତ ରହିଥାଏ ନିଶ୍ଚୟ ଭଲ ଅଛି, ଏଇଟା ହିଁ ତ କୁଶଳ ପ୍ରଶ୍ନ । ଅଥବା କୁଶଳ ପ୍ରାର୍ଥନା ।

—"ନିଶ୍ଚୟ ଭଲ ଅଛି, ଏଇଟା ଗୋଟାଏ କଥା ? ଯାର କିଛି ଅର୍ଥ ଅଛି ?" ସନତ୍‌କକେଇଙ୍କ ପ୍ରବୋଧଭାଇନା ରାଗିଯାଇ ଲାଲ୍ ହୋଇଯାଇଥିଲେ, "ସବୁବେଳେ ମଣିଷ ନିଶ୍ଚୟ ଭଲ ଥାଏ ? ହେଇଟି ମୁଁ ? କେତେଦିନ ଭଲଥାଏ ?"

—ଆମମାନଙ୍କର ସମସ୍ତଙ୍କ ଇଚ୍ଛାର ଜୋର୍‌ରେ ଭଲ ଥିବ, ତାହା ହିଁ ପ୍ରାର୍ଥନା ।

—ବାଜେ କଥା ରଖ୍ । ଏସବୁ ହେଉଛି ତମମାନଙ୍କର ଏଯୁଗର ଠକାମି । କେମିତି ଏ ଟିକକ ଲେଖିବାକୁ ମଧ୍ୟ ଅଳସ ଲାଗୁଛି ନିଜକୁ !

ସନତ୍‌ଙ୍କୁ ପ୍ରବୋଧ 'ଏ ଯୁଗର' ବୋଲି ଚିହ୍ନିତ କରନ୍ତି । କେତେଦିନର କଥା ହେଲାଣି ? ସନତ୍‌କକେଇଙ୍କ ବୟସଟା ଯାଇ କେଉଁଠି ପହଞ୍ଚିଛି ? ଅଥଚ ତାଙ୍କର ପ୍ରବୋଧଭାଇନାଙ୍କ ଅର୍ଦ୍ଧଶତାବ୍ଦୀ ପାର ହୋଇ ଯାଇଥିବା ଝିଅଟା ମଧ୍ୟ କହେ, ସନତ କକେଇଙ୍କୁ ମୁଁ କହେ ଆଧୁନିକ ।

ତା ଅର୍ଥ କକେଇ ହେଉଛନ୍ତି ସେଇ ଦଳର, ଯେଉଁମାନେ ଚିର-ଆଧୁନିକ । ସେହି ଆଧୁନିକ ସନତ କକେଇ ଏବେ ମଧ୍ୟ ସେମିତି ଚିଠି ଲେଖିଛନ୍ତି । ଯେଉଁଥିରେ କି ମୁଣ୍ଡଲାଞ୍ଜ ନାହିଁ । ନିଜର କୁଶଳବାର୍ତ୍ତା ମଧ୍ୟ ନାହିଁ । ଯାହାପାଇଁ ସେ ପ୍ରତିବାଦ ଜଣାଇ କହିଥିଲେ— ଏହାକୁ କଦାପି ଆଳସ୍ୟ ବୋଲି କହିବାକୁ ମୁଁ ରାଜି ନୁହେଁ ।"ମୋର ଭଲଥିବା, ମନ୍ଦ ଥିବାର ଖବର ମୁଁ ଯାଚି ଯାଚି ଦେବାକୁ ଯିବି କାହିଁକି ? ସେ କଥାଟା କାହାକୁ ଦରକାର ମୁଁ ଜାଣେ । ଯାହାର ଦରକାର ସେ ନିଜେ ଜାଣିବାକୁ ଚାହିଁ ଚିଠି ଲେଖିବ । ପୋଷ୍ଟକାର୍ଡ଼ର ଦାମ ସେହି ଦୁଇଲାଇନ୍‌ରେ ହିଁ ଅସୁଲ ହୁଏ ବାବା !

ଏମିତି ଚିଠି ଲେଖେ ପାରୁଲ୍ ମଧ୍ୟ । ହୁଏତ ଏ ଦୃଷ୍ଟାନ୍ତର ଫଳ । ଅବଶ୍ୟ ସନତ୍‌କକେଇଙ୍କ 'ଲଫାଫା ଚିଠିରେ ବ୍ୟତିକ୍ରମ ଦେଖାଦିଏ । ଖାଲି ସେଇଟାର ଦାମ୍‌କୁ ଆଦାୟ କରି ସେ ଛାଡ଼ନ୍ତି ନାହିଁ । ଅନେକ ସମୟରେ ଅସୁଲ ଉପରେ ଅଧିକା ମାହାସୁଲ ବସାଇ ତେବେ ଯାଇ ଛାଡ଼ନ୍ତି । ଆଉ ସେଇଟାର ମଧ୍ୟ ସେହି ମୁଣ୍ଡଲାଞ୍ଜ ନ ଥାଏ ବୋଲି ପତ୍ର ନ କହି ପ୍ରବନ୍ଧ କୁହାଯାଇପାରେ । ହୁଏତ କୌଣସି ଗୋଟାଏ ବିଶେଷ ପ୍ରସଙ୍ଗ ନେଇ ତା'ର ଆରମ୍ଭ ଓ ଶେଷ ହୋଇଥାଏ ।

ଦିଲ୍ଲୀରେ ଥିବା ନିଜର ପୁତୁରା ପାଖକୁ ସେଭଳି ଗୋଟିଏ ଚିଠି ଥରଟେ ମାତ୍ର ଲେଖିଥିଲେ ଜକେଇ । ଯାହାର ଆରମ୍ଭ ଦିଲ୍ଲୀର ସମାଜ ବିଷୟରେ ଏବଂ ଶେଷ ମଧ୍ୟ ସେଇଯା । ତେବେ ଯାମଧ୍ୟ ଲେଖିଥିଲେ— ଏଇଟା ହେଉଛି ପ୍ରଥମ ମୋହର, ଅର୍ଥାତ୍ ଫାଷ୍ଟ ଇମ୍ପ୍ରେସନ୍ । ଦେଖିବା ଏଠାରେ ଥିବା ସମୟରେ ଏମାନଙ୍କ ମରମର ଗଭୀର ପ୍ରଦେଶରେ ପ୍ରବେଶ କରିପାରିବି କି ନାହିଁ ଏବଂ ମୋହରଟା ବଦଳିବ କି ନାହିଁ ।

କିନ୍ତୁ ସେ ଚିଠି ଆଉ ତାଙ୍କର ଆସିନି । ଦିଲ୍ଲୀ ସମାଜର ମର୍ମ ମୂଳରେ ପ୍ରବେଶ କରିବାଟା କ'ଣ ଏପର୍ଯ୍ୟନ୍ତ ତାଙ୍କର ହୋଇ ନାହିଁ ? ନା ସେହି ପ୍ରବେଶର ମୋହରଟା କଥା ପ୍ରକାଶ କରିବାକୁ ଆଉ ଉତ୍ସାହ ପାଇ ନାହାନ୍ତି ?

କିନ୍ତୁ ଅନାମିକା ହିଁ କ'ଣ ଅନୁସନ୍ଧାନ କରିଥିଲେ— "କି ଧରଣର ମୋହର ବସିଲା ଆପଣଙ୍କର ସନତ କକେଇ ?" ଆଉ ଜଣାଇଥିଲେ କି ଆପଣ କେମିତି ଅଛନ୍ତି ? ସେକଥାଟା ଜାଣିବା ମୋର ଭାରି ଦରକାର ? ନାଃ ! ହୋଇପାରିନି !

ପୁତୁରା ପାଖରେ ହିଁ ଶେଷଜୀବନଟା ରହିବାକୁ ପଡ଼ିବ, ଏହି ଅନିର୍ବାର୍ଯ୍ୟକୁ ମାନିନେଇ ସନତ୍ କକେଇ ରହିବାକୁ ଯାଇଥିଲେ ପୁତୁରା ପାଖରେ । କାରଣ ଲୋକବାକଙ୍କୁ ଚଳାଇ ଏକୁଟିଆ ସଂସାର କରିବା ପରି ବୟସ ଯେ ଆଉ ନାହିଁ ଅଥବା ରହିବନି, ଏକଥା ସେ ଉପଲବ୍ଧି କରି ପକାଇଥିଲେ । ଆଉ ତା' ନ ପାରିଲେ ଶେଷ ଗତି ତ ସେଇ ପୁତୁରା ଆଉ ପୁତୁରାବୋହୂ । ନିଜର ସ୍ତ୍ରୀଟି ଏପରି ଦୂର ଅତୀତ କାଳରୁ ତାଙ୍କୁ ଛାଡ଼ି ଚାଲିଗଲେଣିଯେ ଏବେ ଆଉ ବୋଧହୁଏ ମନେ ବି ପଡ଼େନି ଯେ ଦିନେ ସେ ଥିଲେ । ଏ କାଳର ପରିଚିତ ସମାଜର ଅନେକ ସନତ୍ ବାନାର୍ଜିଙ୍କୁ ଚିରକୁମାର ବୋଲି ଜାଣନ୍ତି ।

ଅନାମିକା ତାଙ୍କର ସ୍ତ୍ରୀଙ୍କୁ ଥରଟିଏ ମାତ୍ର ଦେଖିଥିଲେ । ସ୍ତ୍ରୀଙ୍କୁ ଧରି କୁଆଡ଼େ ଗୋଟାଏ ବୁଲିବାକୁ ଯିବା ବାଟରେ ପ୍ରବୋଧଭାଇନାଙ୍କ ଘରେ ଓହ୍ଲାଇଥିଲେ ସେ । ପ୍ରେମଘଟିତ ବିବାହ ବୋଲି ଚଉଠିର ଭୋଜି ଫୋଜି କିଛି ହୋଇନି । ସେଥିପାଇଁ ବାହାବେଳେ କେହି ବୋହୂକୁ ଦେଖି ନ ଥିଲେ ।

ଅନାମିକାଙ୍କର ମନେଅଛି, ସେମାନେ ଚାଲିଗଲା ପରେ ପ୍ରବୋଧଚନ୍ଦ୍ର କହିଥିଲେ— ଏମିତି ରୋଗିଣା ଧଡ଼ଧଡ଼ିଆ କାଳିଆ ସ୍ତ୍ରୀ ! କ'ଣ ଦେଖିକରି ସନତ୍‌ବାବୁ ଆମର ମଜ୍ଜିଗଲେ ସେଥିପାଇଁ ବାନାର୍ଜୀ ହୋଇ ଘୋଷାଲ ଘରେ ମୁଣ୍ଡ ଲଣ୍ଡା ହେବାକୁ ଗଲେ ! ଛିଃ !

ଯାହାହେଉ ସେହି ଅତୀତ ଇତିହାସକୁ ଧରି ଆଉ କେହି ଭାବନ୍ତି ନାହିଁ । ସମସ୍ତେ ଧରିନେଇଛନ୍ତି ଲୋକଟି ଏତେଦିନ ସ୍ୱାଧୀନ ଭାବରେ ଏକାକୀ ଥିଲେ

ମଧ୍ୟ ଏଥର ତାକୁ ପରାଧୀନ ହେବାକୁ ପଡ଼ିବ । ଆଉ ସେହି ସୂତ୍ରରେ ବଙ୍ଗଳା, ବିହାର, ଓଡ଼ିଶା, ମଧ୍ୟପ୍ରଦେଶ, ଗୋଟିଏ କଥାରେ ଭାରତବର୍ଷର ଯେ କୌଣସି ପ୍ରଦେଶରେ ହେଉ ଶେଷଜୀବନଟା କଟାଇବାକୁ ପଡ଼ିବ । ଅତଏବ ସନତ୍ କକେଇ ବହୁତ ଦିନ ହେଲା ନିଜ ପ୍ରଦେଶ ଛାଡ଼ିଛନ୍ତି ।

ଏତେଦିନ ପରେ ହଠାତ୍ ଆସିଛନ୍ତି ବିଶେଷ ଚିକିତ୍ସାର ପ୍ରୟୋଜନ ହେତୁ ? ନା ସନତ୍ କକେଇଙ୍କର ସେହି ପୁତୁରା ଜଣକ ବଦଳି ହୋଇ ପୁଣି ବଙ୍ଗଳାର କୌଣସି ଆସନରେ ଅଧିଷ୍ଠିତ ହେବାକୁ ଆସିଲେ ? ତା' ସହିତ ଜିନିଷପତ୍ର ପରି ସନତ୍ କକେଇ ମଧ୍ୟ ଆସିଛନ୍ତି ।

ଏ ଇଙ୍ଗିତର ସାମାନ୍ୟତମ ସୂଚନା ସେ ଅନାମିକାଙ୍କୁ ଦେଇ ନାହାନ୍ତି ଯେ ତମେ ଆସ କିମ୍ବା ତମକୁ ଦେଖିବାକୁ ଇଚ୍ଛା ହେଉଛି ।

ତେବେକେ ଅଭିମାନର କୌଣସି ପ୍ରଶ୍ନ ନାହିଁ ।

'ଆସ' ଶବ୍ଦଟି ବ୍ୟବହାର ନ କଲେ ମଧ୍ୟ ଅନାମିକା ଯେ ସେଠାରେ ସବୁବେଳେ 'ସ୍ୱାଗତ'ଯୋଗ୍ୟ, ସେକଥା ଅନାମିକା ଯେତେ ଜାଣିଛନ୍ତି ସେତେ ବୋଧହୁଏ ସନତ୍ ବାନାର୍ଜୀ ସୁଦ୍ଧା ନିଜେ ଜାଣନ୍ତି ନାହିଁ ।...... ସେହି ଚିଠିଟା ହିଁ ତ ହେଉଛି ଆସ ! ସେହି ଗୋଟିକ 'ଅନୁକ୍ତ' 'ଆସ୍' ଶବ୍ଦଟି ଅନାମିକାଙ୍କୁ ଘର ଭିତରୁ ଟାଣି ବାହାର କରିଥିଲା !

ବାହାରିବା ବେଳେ ସେ ଆଶା ବା ଆଶଙ୍କା କରିଥିଲେ ଦୁଷ୍ଟ ଝିଅଟା କେଉଁ ସୁଯୋଗରେ ଆସି ଜେରା କରିବାକୁ ଆରମ୍ଭ କରିବ— ଏ କ'ଣ ଶ୍ରୀମତୀ ଲେଖିକା ଦେବୀ ନିଜେ ନିଜେ ଟାକ୍ସି ଡାକି ବାହାରି ପଡ଼ୁଛ ଯେ ? ତମର ରଥ ଆସିନି ? ଫୁଲମାଳରେ ଶୋଭିତ କରି ସଭାର ଶୋଭାବର୍ଦ୍ଧନ କରି ରଖିବା ପାଇଁ ରଥ ଆସିନି ? ନା ଝିଅଟାକୁ ଆଖପାଖରେ କେଉଁଠି ଦେଖିଲେନି ସେ । ନିଶ୍ଚେ ସେ କାରଖାନାର କୁଲିଟା ସହିତ କେଉଁଠି ବୁଲୁଛି, ନ ହେଲେ ଯିବ କୁଆଡ଼େ ? ଆଜି ତ କଲେଜ ଛୁଟି ।

ଘର ଜାଣିଥିଲେ ମଧ୍ୟ ଖୋଜି ବାହାର କରିବାକୁ ଟିକିଏ ଡେରି ହୋଇଗଲା । ରାସ୍ତାର ଚେହେରାଟା ଏକାବେଳେ ବଦଳିଯାଇଛି । ଅନେକଦିନ ହେଲା ଯେ ଏପଟକୁ ଆସିନାହାନ୍ତି ସେ କଥାଟା ଜଣାପଡ଼ିଲା ରାସ୍ତାର ଏ ଚେହେରାକୁ ଦେଖି ।

ସନତ୍ କକେଇଙ୍କ ପୈତୃକ ଘର ଥିଲା ମଝିଆ ଆକାରର ଗୋଟାଏ ଗଳିରେ । ସେ ଗଳିଟାର ଆରମ୍ଭରେ ଅନେକ ଖାଲି ଜମି ପଡ଼ିରହିଥିଲା ବହୁତଦିନ ପର୍ଯ୍ୟନ୍ତ । ଜାଗାଟା ସାହିପିଲାମାନଙ୍କର ଖେଳପଡ଼ିଆ ହୋଇଥିଲା, ଚାକରାଣୀମାନଙ୍କର ଡଷ୍ଟବିନ୍

ମଧ୍ୟ ହୋଇଥିଲା । ରାସ୍ତା ସେପଟେ ଥିବା କର୍ପୋରେସନ୍‌ର ଡଷ୍ଟବିନ୍‌ରେ, ପାଉଁଶ ଅଳିଆ ପ୍ରଭୃତି କଷ୍ଟପଡ଼ି ଯାଇ କେହି ପକାଉ ନ ଥିଲେ, ସେ ପଡ଼ିଆରେ ହିଁ ପକାଇ ଦେଉଥିଲେ । ସେଥିଯୋଗୁଁ ଯେ ପିଲାଙ୍କ ଖେଳର ଆମୋଦ ଟିକିଏ କମୁଥାଏ ତା' ନୁହେଁ, ଖାଲି ଖେଳିସାରି ଘରକୁ ଫେରିଲାକ୍ଷଣି ମା' – ବୁଢ଼ୀମା'ଙ୍କର 'ଲୁଗାପଟା ବଦଳାଅ, ଗୋଡ଼ହାତ ଧୁଅ' ଇତ୍ୟାଦି ଚିତ୍କାରରେ ଶାନ୍ତି କିଛି ବିଘ୍ନିତ ହେଉଥିଲା ।

ଅନେକଦିନ ପରେ ଅନାମିକା ଆସି ଦେଖିଲେ ସେଇ ପଡ଼ିଆଟାର ଗୋଟାଏ ବିରାଟ ମ୍ୟାକ୍‌ସନ୍ ହୋଇଗଲାଣି । ଯେଉଁଥିରେ ରହିଛି ଅଜସ୍ର ଖୋପ । ସେହି ଖୋପମାନଙ୍କରେ କେଜାଣି କେତେ ପରିବାର ଆସି ବସା ବାନ୍ଧି ରହିଛନ୍ତି । କେଜାଣି ଯାରି ଭିତରେ ରହି ସେମାନେ ଜୀବନର କୌଣସି ଅର୍ଥ ଖୋଜି ପାଉଛନ୍ତି କି ନାହିଁ ।

ତେବେ ଆପାତତଃ ଚିହ୍ନା ଘରଟାକୁ ଖୋଜି ପାଇବାକୁ ଡେରି ହେଲା ସେ ବହୁ ଖୋପଯୁକ୍ତ ଆକାଶଛୁଆଁ ଘରଟା ପାଇଁ । ତା'ପରେ ଗଲେ ତା' ଭିତରକୁ । ସନତ୍ କକେଇ ହୋହା କଲେ ନାହିଁ, ଭାରି ଶାନ୍ତ ସହୃଦୟ ହସ ସହିତ କହିଲେ – ଆ, ତୋ'ରି ଅପେକ୍ଷାରେ ଥିଲି ।

ପ୍ରଣାମ କରି ବସିପଡ଼ି ପିଲାଟିଏ ଭଳି ଅନାମିକା କହିଲେ – ଅପେକ୍ଷା କରୁଥିଲେ ମାନେ ? ମତେ ଆସିବାକୁ କହିଥିଲେ କି ?

– କହିନି କିଲୋ ? ସେ କି କଥା ? ନ କହିଥିଲେ ଆସିଲୁ କାହିଁକି ?

ସନତ କକେଇ ହସିଲେ । ଲଜ୍ଜିତ ହେଲେ ଅନାମିକା । କହିଲେ – ତା'ପରେ କେମିତି ଅଛନ୍ତି କହିଲେ ?

– ଭାରି ଭଲ । ଖାଉଛି ପିଉଛି, ଘରେ ବସିଛି । ଖଟିବାକୁ ପଡୁନି । ଯାଠାରୁ ଆରାମଦାୟକ ଅବସ୍ଥା ଆଉ କ'ଣ ଥାଇପାରେ ?

ଅନାମିକା ଅବଶ୍ୟ ଏ 'ଆରାମଦାୟକ ଅବସ୍ଥା'ର ଖବର ଶୁଣି ବିଶେଷ ଉତ୍ସାହିତ ହେଲେ ନାହିଁ । ବରଂ ଟିକିଏ ଶଙ୍କିତ ଗଳାରେ କହିଲେ – କାହିଁକି ବସିଛନ୍ତି କାହିଁକି ଶୁଣେ ? ବୁଲିବାକୁ ତ ବାହାରନ୍ତେ ।

– ବାହାରିବି କାହିଁକି ଯେ ? "ଉଦାର ଗଳାରେ ହସିଉଠିଲେ କକେଇ, କହିଲେ – ଚଳତ୍‌ଶକ୍ତି ଜନ୍ମିବା ପାଇଁ ଯଦି ବର୍ଷଟିଏ ଲାଗିଥାଏ, ସେଇଟାକୁ ବାଦ୍ ଦେଇ କହୁଛି, ଅଣାଅଶୀ ବର୍ଷ ତ ଚାଲିଲି, ବାହାରିଲି, ବୁଲିଲି, ବାକି ଦିନଗୁଡ଼ିକ ଘରେ ବସି ରହିଲେ ବା ମନ୍ଦ କ'ଣ ?"

—"ସେଇଟା ତ ବାଜେ କଥା" ଅଧିକ ଶଙ୍କିତ ଗଳାରେ କହିଲେ ଅନାମିକା, ଅସଲ କଥାଟା କହନ୍ତୁ ତ ! ଦେହ ଭଲ ନାଇଁ !'

—ହେଇଟି ଦେଖ୍ ! ଦେହ ଭଲ ନାଇଁ ମାନେ ? ଭଲ ନ ଥିଲେ ଚଳିବ ?

—ତା'ହେଲେ ? ତା'ହେଲେ ଘରେ ବସି ରହିବେ କାହିଁକି ?

—ବାଃ କହିଲି ପରା । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଚାଖି ଚାଖି ଉପଭୋଗ କରିବା ଦରକାର ନାହିଁ ? ନୀରୁକୁ କହିଲି, ଦେଖ୍ ନୀରୁ ଏ ହୃଦ୍‌ଯନ୍ତ୍ରଟା ତ ବହୁକାଳ ହେଲା ଖଟି ଖଟି ମଲାଣି, ଏଥର ଯଦି ଛୁଟି ଚାହୁଁଛି ତ ଛୁଟି ଦେଇ ଦେ । ହେଲେ ଶୁଣିବାକୁ ସେ ରାଜି ନୁହେଁ । ଗୋଟାଏ ଡାକ୍ତରକୁ ଧରି ନେଇଆସିଲା, ମୋଟା ଫିସ୍, ସେ କାହିଁକି ତା'ର ପାଣ୍ଡିତ୍ୟ ଦେଖାଇବାକୁ ଛାଡ଼ିବ ? ବାସ୍ ହୁକୁମ୍ ହୋଇଗଲା— ନଟ୍ ହଲଚଲ, ନଟ୍ କିଛି ! ଅତଏବ ସ୍ରେଫ୍ 'ପିଲ୍ ଗିଳି' ପଡ଼ି ରହିଛି ।

କଥାଟା ବୁଝିଲେ ଅନାମିକା । ଆସ୍ତେ କହିଲେ— କେତେଦିନ ହେଲା ଏମିତି ସବୁ ହେଲାଣି ?

—ଆରେ ବାବା, କିଛି ତ ହୋଇନି । ତା'ହେଲେ କେମିତି ଦିନର ହିସାବ ଦେବି ? କେବେଠାରୁ ତ ବାଳ ପାଚିଲାଣି, କେବେଠାରୁ ଦାନ୍ତ ହଲିଲାଣି । ଏସବୁ ହିସାବ ତ ପୁଣି ମାଗିପାରିବୁ । ଗୋଟାଏ ଯନ୍ତ୍ର ବହୁତ ଦିନ ହେଲା ଖଟିଲାଣି, ଦିନେ ତ ସେଇଟା ବିକଳ ହେବ, ତାକୁ ଘଷିମାଜି ଚକରେ ଯୋଡ଼ିଦେବାର ଚେଷ୍ଟା କ'ଣ ଠିକ୍ ? କ'ଣ ଆଉ କରିବା ? କର୍ତ୍ତାଙ୍କ ଇଚ୍ଛାରେ କର୍ମ । ଆପାତତଃ ନୀରୁବାବୁ ହିଁ ଯେତେବେଳେ କର୍ତ୍ତା, ତାଙ୍କର ଇଚ୍ଛା ହିଁ ବଳବତ୍ତର ହୋଇ ରହୁ ।

—ନୀରୁଭାଇନା କ'ଣ ଆଉଥରେ କଲିକତାକୁ ବଦଳି ହୋଇ ଆସିଲେ ?

—ବଦଳି ? ଆରେ ନା ନା । ସେ ତ ରିଟାୟର୍ କରି ନିଜ ଜାଗାକୁ ଆସିଲା ରହିବାକୁ ।

—"ରିଟାୟାର୍ କଲେଣି ?" ଅବାକ୍ ହୋଇ କହିଲେ ଅନାମିକା, ଏତେ ଶୀଘ୍ର ?

—ଶୀଘ୍ର କ'ଣ କିଲୋ ? ସରକାରୀ ହିସାବ କ'ଣ ଭୁଲ୍ ହୁଏ ? ଠିକ୍ ସମୟରେ ଅବସର ନେଇଛି । ଆମେମାନେ ଖାଲି ମନେ ରଖିବାକୁ ଭୁଲିଯାଉ ଯେ ଦିନ ଆଗେଇ ଚାଲିଛି ।

—ତା'ହେଲେ ଏଇଲେ ଏଇଠି, ଅର୍ଥାତ୍ କଲିକତାରେ ହିଁ ରହିବେ ?

—"ତା' ଛଡ଼ା ?" ସନତ୍‌ବାବୁ ପୁଣି ହସିଲେ, କହିଲେ, ନୀରୁର ସଂସାରର ଏଣୁତେଣୁ ଜିନିଷଗୁଡ଼ାକ ସହିତ ଏ ଗୋଟିଏ ଅବାନ୍ତର ବସ୍ତୁ ମଧ୍ୟ ରହିବ । ଯେତେଦିନ ପର୍ଯ୍ୟନ୍ତ— " ହସି ଅଟକିଗଲେ ସେ ।

—କଲିକତାକୁ ଆସିଲା ପରେ ଆଉ କୌଣସି ଡାକ୍ତରଙ୍କୁ ଦେଖାଇଛନ୍ତି ?

—ଦେଖ୍ ବକୁଳ, ଯୋଉ ରେଟ୍‌ରେ ଖାଲି ମନେପକାଇ ଦେବାକୁ ଚେଷ୍ଟା କରୁଛୁ ଯେ, କକେଇ ତମେ ବୁଢ଼ା ହେଇଗଲଣି, କକେଇ ତମେ ରୋଗୀ ହୋଇ ବସିଛ, ସେଥିରେ ତୋର ଆଉ ନୀରୁ ଭିତରେ ଫରକ୍ ଦେଖିବା କଷ୍ଟ ହେଉଛି । ସେ ପ୍ରସଙ୍ଗର ଯବନିକାପାତ କର । ତୋ'ର କଥା କହ । ତୁତ ଲେଖାଲେଖି କରୁଛୁ । ଦିଲ୍ଲୀରେ ମଧ୍ୟ ନାଁ ଡାକ ହୋଇଗଲାଣି । ନୂଆ କ'ଣ ଲେଖୁଛୁ କହିଲୁ ?

—ନୂଆ କ'ଣ ଲେଖୁଛି ? "ଅନାମିକା ହସି କହିଲେ— କିଛି ନାହିଁ ।"

—କିଛି ନାଇଁ ? ସେ କି କଥା ଲୋ ? ମୁଁ ତ ଶୁଣୁଛି ଏଓଳି ସେଓଳି ବହି ବାହାରୁଛି ତୋ'ର !

—"ଖବର ତ ଯେତେ ଚାଲେ ସେତେ ବଢ଼େ ।" ଆଉ ଟିକିଏ ହସି ଅନାମିକା କହିଲେ— ନ'ଶହ ମାଇଲ ଡେଇଁଯାଇ ଖବରଟା ପହଞ୍ଚିଯାଇଛି ନା ?

—ତା' ମାନେ, ତୁ କହୁଛୁ ଖବରଟା ଅସଲରେ ଖବର ନୁହେଁ । ଖାଲି ବାଜେ କଥା ଲେଖା ଲେଖି କରୁନୁ !

—ଲେଖୁନି ସେ କଥା କହିପାରୁନି, କହିଲେ ବାଜେ କଥା କହିବା ହେବ, ତେବେ ନୂଆ କିଛି ଆଉ କ'ଣ ଲେଖୁଛି ?

—"କାହିଁକି ଲୋ ?" ସନତ୍ କକେଇ ଟିକିଏ ଟେଙ୍ଗା ହୋଇ ଉଠି ବସି କହିଲେ, ସମାଜରେ ସଂସାରରେ ପ୍ରତିଦିନ ଏତେ ନୂଆ ଘଟଣା ଘଟିଯାଉଛି, ପ୍ରତି ମୁହୂର୍ତ୍ତରେ ସମାଜର ଚେହେରା ବଦଳୁଛି, ତେବେକେ ନୂଆ କଥା ଲେଖି ପାରୁନୁ ?

ଅନାମିକା ହଠାତ୍ ଯେପରି ଅନ୍ୟମନସ୍କ ହୋଇଗଲେ, ଯେପରି ନିଜ ସହିତ କଥା ହେଲେ— ହୁଏତ ସେଇଥିପାଇଁ ପାରୁନି, ମୁହୂର୍ତ୍ତଗୁଡ଼ାକୁ ଧରିଦେଇ ପାରୁନି । ପ୍ରତିଦିନ ନୂଆ ନୂଆ ଘଟଣା ଘଟୁଛି ଯେ ତା'ର ହିସାବ ରଖିପାରୁନି, ମୁହୂର୍ତ୍ତଗୁଡ଼ାକୁ ଧରି ପକାଇ ପାରୁନି, ହଜି ଯାଉଛନ୍ତି, ସେଗୁଡ଼ିକ ଅନ୍ୟପ୍ରକାର ହୋଇଯାଉଛନ୍ତି ।

—"ଧରିବାର ଚେଷ୍ଟା କରିବାକୁ ପଡ଼ିବ ।" ଜୋର୍ ଦେଇ ଯେପରି ନିର୍ଦ୍ଦେଶ ଦେଲେ ସନତ୍ କକେଇ ।

—ଚେଷ୍ଟା କରୁଛି, ହେଉନି । ସେହି ମୁହୂର୍ତ୍ତଗୁଡ଼ାକ ତ କୌଣସି ଘାଟିକୁ ଭିତର ଦେଇ ଯାଉ ନାହିଁ, ସେମାନେ ଖାଲି ସାବୁନ୍ ଫେଣ ଭଳି ରଙ୍ଗିନ୍ ବୁଦ୍‌ବୁଦ ସୃଷ୍ଟି କରି ପବନରେ ମିଳାଇ ଯାଉଛନ୍ତି । ଆଉ ଗୋଟିଏ ଦିଗରେ—' ଯେପରି ଟିକିଏ ଭାବିଲେ ଅନାମିକା, କହିଲେ— ଆଉ ଗୋଟାଏ ଦିଗରେ କେଉଁଠି ଯେପରି ଭୟଙ୍କର ଗୋଟାଏ ଧ୍ୱଂସର କାମ ଚାଲିଛି, ସେଥିରୁ ଛିଟିକି ଆସିଥିବା ଖୁଆଗୋଡ଼ି ଖଣ୍ଡ, ଉଡ଼ିଆସି ଦେହରେ ମୁହଁରେ ଆଖିରେ ଧୂଳି ପଡୁଛି, କିନ୍ତୁ ସେହି 'ଭୟାନକ'କୁ ବା କେମିତି ଧରିଦେଇ ପାରିବି ? ତା' ସହିତ ତ ମୋର ପ୍ରତ୍ୟକ୍ଷ ଯୋଗସୂତ୍ର ନାହିଁ । ଯୋଗ ନାହିଁ ନିକଟ ଅଭିଜ୍ଞତାର । ଆଧୁନିକ, ବା 'ଆଧୁନିକ' କହିବିନି, କହିବି ବର୍ତ୍ତମାନ— ସମାଜକୁ ତା'ହେଲେ ମୁଁ କଲମ ଭିତରେ ପୂରାଇଦେବି କେମିତି ? ଶୁଣୁଛି ଅବିଶ୍ୱାସ୍ୟ ରକମର ସବୁ ନାଁ ଜଣା ନ ଥିବା ଭୟାନକ ପ୍ରାଣୀ ଜଙ୍ଗଲରୁ ବାହାରି ଘର ଭିତରକୁ ଆସି ପଶିଯାଉଛନ୍ତି, ଘରଲୋକଙ୍କ ସହିତ ମିଶି ଯାଉଛନ୍ତି ଏବଂ ସେହି ପ୍ରାଣୀମାନେ ସେମାନଙ୍କର ନଖ, ଦାନ୍ତ, ଶିଙ୍ଗକୁ ଲୁଚାଇବା ଚେଷ୍ଟା ମଧ୍ୟ କରୁ ନାହାନ୍ତି । ବରଂ ସେହିଗୁଡ଼ିକ ଗୌରବର ବସ୍ତୁ ଭାବି ସମାଜରେ ଦେଖାଇ ବୁଲୁଛନ୍ତି । ଆଉ ଘରର ଲୋକମାନେ ମଧ୍ୟ ତାହା ଦେଖି ପଡ଼ିଉଠି ଲାଗିଛନ୍ତି ନଖ, ଦାନ୍ତ, ଶିଙ୍ଗ ଗଜୁରାଇବା ପାଇଁ ! କିନ୍ତୁ ଏ ସବୁ ତ ମୋର ଶୁଣା କଥା । ଶୁଣା କଥା ନେଇ ଲେଖିବାକୁ ଚେଷ୍ଟା କରିବାଟା ତ ହାସ୍ୟକର କକେଇ ! ଅଥଚ ଯା ମଧ୍ୟ ଶୁଣିଛି ସେମାନଙ୍କ ପାଖରେ ହିଁ ସାହିତ୍ୟର ନୂଆ ବିଷୟବସ୍ତୁ ସବୁ ଅଛି, ସେମାନଙ୍କ ପାଖରେ ହିଁ ସାହିତ୍ୟର ନୂଆ ନୂଆ କଥା ଅଛି ।

ସନତ କକେଇ ଆସ୍ତେ କହିଲେ— ମାତୃଭୂମି ବିଷୟରେ ଗୋଟାଏ ମୋହ ଥିଲା, ସେଇଟାକୁ ଆଉ ତା'ହେଲେ ରଖିବିନି କହୁଛୁ ?

—ଏମିତି ଗୋଟାଏ ଦୃଢ଼ ମତ ଦେଇଦେବି, ଏ ସାହସ ମୋର ନାଇଁ କକେଇ । ମୁଁ ତ ନିଜେ ହିଁ ଜାଣିନି ମୋହଟା ଏକାବେଳେ ପୋଛି ଫୋପାଡ଼ି ଦେବା ଭଳି ଦୁଃସମୟ ସତରେ ଆସିଛି କି ନାହିଁ । ତେବେ ମଝିରେ ମଝିରେ ଭାବେ, ଆମେ କ'ଣ ଏଇଯା ଚାହିଁଥିଲୁ ? ଏଇଟା ହିଁ କ'ଣ ଆମମାନଙ୍କ ଦୀର୍ଘଦିନର ତପସ୍ୟାର ପୁରସ୍କାର ? ବହୁ ଦୁଃଖ, ବହୁ କ୍ଳେଶ ସହି ଏଇ ଦେବତାକୁ ହିଁ ଜାଗ୍ରତ କଲୁ ଆମେମାନେ ଆମର ଧ୍ୟାନର ମନ୍ତ୍ରରେ ? ତା' ଯଦି ହୁଏ ତ ସେଇଟା କ'ଣ ସେ ମନ୍ତ୍ରର ହିଁ ତ୍ରୁଟି !

''ତେବେ ସେ କଥା କହ ଜୋର୍ ଗଳାରେ । ତମେମାନେ ସାହିତ୍ୟିକମାନେ, କବିମାନେ, ଶିଳ୍ପୀମାନେ, ତମେ ହିଁ ତ କହିବ । ମାନେ ତମେମାନେ କହିଲେ

ହିଁ ଲୋକଙ୍କ କାନରେ ପହଞ୍ଚିବ । ଆମ ପରି ଫାଲ୍‌ତୁ ଲୋକମାନେ ଏକାସଙ୍ଗେ ଚିତ୍କାର କରି କହିଲେ ମଧ୍ୟ କିଛି ହେବ ନାହିଁ । କିଛି ହେବ ନାହିଁ ।''

ଅନାମିକା ହସିପକାଇଲେ । ଏ ଅଶୀବର୍ଷର ବୃଦ୍ଧଙ୍କର ଏମିତି ଗୋଟିଏ ନିହାତି ପିଲାଳିଆ ଭଙ୍ଗୀ ଦେଖି ଭାରି କୌତୁକ ଅନୁଭବ କଲେ ଅନାମିକା । ହସି କହିଲେ– କାହାରି କହିବାରେ କିଛି ହେବନି । ସମାଜର ଗୋଟିଏ ଗତି ଅଛି । ଯେଉଁ ଗତିଟା, ଯାହାକୁ କହନ୍ତି ଦୁରନ୍ତ, ଦୁର୍ବାର, ଦୁର୍ଜୟ ଏବଂ ତାକୁ ନିଜକୁ ମଧ୍ୟ ଜଣା ନାହିଁ ଗତିର ଛକଟା କ'ଣ । ଯେତେଦିନ ଯାଉଛି, ସେତେ ଅନୁଭବ କରୁଛି କେଇ ତିନୋଟି ଜିନିଷକୁ ଅନ୍ତତଃ ପରିକଳ୍ପନା କରି ଗଢ଼ି ତୋଳି ହେବନି । ସେ ତିନୋଟି ହେଉଛି– 'ସମାଜ, ସାହିତ୍ୟ ଏବଂ ଜୀବନ ।'

–ଆରେ ଗଲା ! ଝିଅଟା କ'ଣ କହୁଛି ! 'ସନତ୍ କକେଇ ଗୋଟାଏ ବିସ୍ମୟ-ଆତଙ୍କର ଭଙ୍ଗୀ କଲେ– କ'ଣ କହୁଛୁ ତୁ ! ଦୁଇଟା ନ ହେଲେ ଏବେ କରିପାରିଲନି, କିନ୍ତୁ ବାକିଟା ? ସାହିତ୍ୟକୁ ପରିକଳ୍ପନା ଅନୁସାରେ ଗଢ଼ାଯାଇ ପାରିବନି ? ସେଇଟା ତ ନିଜ ହାତର ଅଛି !

–''ଆଗ ସେଇୟା ଭାବୁଥିଲି ।'' ଅନାମିକା ପୁଣି ଯେପରି ଅନ୍ୟମନସ୍କା ହୋଇଗଲେ ''ଆଗ ସେହି ଧାରଣା ହିଁ ଥିଲା । ଭାବୁଥିଲି କଲମଟାତ ଲେଖକର ନିଜର ଆୟତ୍ତରେ ଅଛି । କିନ୍ତୁ କ୍ରମଶଃ ମନେହେଉଛି, ହୁଏତ ଠିକ୍ ନୁହେଁ । କେଉଁଠି କେଉଁ ଜାଗାରେ କାହାର ଗୋଟିଏ ଗଭୀର ଅଭିପ୍ରାୟ ଅଛି, ସେହି ଅଭିପ୍ରାୟ ଅନୁସାରେ ଯାହା ହେବାର ହେଉଛି ।''

'ସର୍ବନାଶ ! ତୁ ଯେ ତତ୍ତ୍ୱକଥାକୁ ଚାଲିଯାଉଛୁ । ଅର୍ଥାତ୍ ସବୁ ତମର ଇଚ୍ଛା ଇଚ୍ଛାମୟୀ ତାରା ତମେ !'

–''ମଝିରେ ମଝିରେ ସେଇୟା ମନେହୁଏ ।'' ମୃଦୁସ୍ୱରରେ ଅନାମିକା କହିଚାଲନ୍ତି– 'ଇଚ୍ଛାମୟୀ' କି 'ଅନିର୍ବାର୍ଯ୍ୟ' ଯାହା ନାଁ ଦେଲେ ମଧ୍ୟ, ଅଦୃଶ୍ୟ ଏକ ଶକ୍ତିକୁ କ'ଣ ଆପଣ ଅସ୍ୱୀକାର କରିପାରିବେ କକେଇ ? କବିଗୁରୁ କରି କହିଲେ 'ଜୀବନ ଦେବତା' । କବିଙ୍କ କଥାରେ ମଧ୍ୟ ଏକଥା କୁହାହୋଇଛି, 'ଏ କି କୌତୁକ ନିତ୍ୟ ନୂତନ ଆଗୋ କୌତୁକମୟୀ, ମୁଁ ଯାହା ଚାହେଁ କହିବାକୁ ତାହା କହିବାକୁ ଦିଅ କାହିଁ ?''

ସନତ କକେଇ ମୃଦୁ ହସି ଯୋଗ ଦେଲେ, ''ଅନ୍ତର ମଧ୍ୟେ ବସି ଅହରହ ମୁହଁରୁ ତୁମେ ଯେ ଭାଷା କାଢ଼ି ନିଅ, ମୋର କଥା ନେଇ କି କଥା ଯେ କହ'' ତା'ହେଲେ ଏଇୟା ହେଉଛି ତୋର ବକ୍ତବ୍ୟ ?

—ସବୁବେଳେ ନ ହେଲେ ବି ଅନେକ ସମୟରେ । ଅନ୍ତରଦେବତା ହିଁ କହନ୍ତି ବା ଅନିବାର୍ଯ୍ୟ କହନ୍ତୁ ଗୋଟାଏ କିଛି ଘଟଣା ଅଛି । ସେ କୌଣସି ଫାଙ୍କରେ ଲେଖକର କଲମଟାକୁ ନିଜ ପକେଟ୍‌ରେ ପୂରାଇ ଦିଏ ! ସେଇଥିପାଇଁ କହୁଥିଲି, ସାହିତ୍ୟର ନିଜର ଗୋଟିଏ ଗତି ଅଛି । ସଭା ଡାକି, ଆଇନ୍ କରି ଅଥବା ନିର୍ଦ୍ଦିଷ୍ଟ କୌଣସି ନକ୍ସା ଆଙ୍କିଦେଇ ତାହାକୁ ବିଶେଷ ଗୋଟାଏ ଗତିରେ ନିୟନ୍ତ୍ରିତ କରାଯାଏ ନାହିଁ । ମୋର ତ ଅନ୍ତତଃ ସେଇଆ ମନେହୁଏ ।

—ତା'ମାନେ ତୋ' ମତରେ ଯେ ଯାହା ଲେଖୁଛି, ସବୁ ସେହି ଅଦୃଶ୍ୟ ଶକ୍ତିର କ୍ରୀଡ଼ନକ ହୋଇ ଲେଖୁଛି ?

—କିଏ କ'ଣ କରନ୍ତି ଜାଣେନି ନକେଇ, ତେବେ ମୁଁ ଏକଥା ଅନେକ ସମୟରେ ଅନୁଭବ କରେ ।

ନକେଇ ତମମାନଙ୍କର ଆଜିକାଲି ସାହିତ୍ୟର ନିୟନ୍ତକ ହୋଇଛି । ତା'ର ସେହି ଶକ୍ତିର ପ୍ରଭାବରେ ହିଁ ଲେଖକର କଲମ—

ଅନାମିକା ହସିଦେଇ କହିଲେ— ଦେଖୁଛି ତ ଶୁଣିବାକୁ ଆପଣଙ୍କର କିଛି ବାକି ନାହିଁ । କିନ୍ତୁ 'ଯେତେ ଦୋଷ ନନ୍ଦିଘୋଷ' କହିଲେ ଚଳିବ କେମିତି ? ଏ କେମିତି ? ଏ ଗୋଲକଧନ୍ଦା ତ ଚିରଦିନର— ପୃଥିବୀଟା କାହାର ବଶରେ ଅଛି ?

—ଆହା ସେ ଗୋଲକଧନ୍ଦାର ଉତ୍ତର ତ ସମସ୍ତଙ୍କୁ ଜଣା । କିନ୍ତୁ ଆମେ ଚାହୁଁ କବି, ସାହିତ୍ୟିକ, ଶିଳ୍ପୀ, ଏମାନେ ସେ ପୃଥିବୀ ବାହାରର ଲୋକ ହୋଇଥିବେ । ଅନ୍ତତଃ ସେଇଟା ହିଁ ଆମର ଧାରଣା ଭିତରେ ଅଛି ।

—ସେମିତି ହେଲେ ଉତ୍ତମ । କିନ୍ତୁ ସେମିତି ଧାରଣାର କ'ଣ ସତରେ କୌଣସି ଉତ୍ତର ଅଛି ନକେଇ ? ସେକାଳରେ ମଧ୍ୟ ମହାମହା କବିମାନେ ରାଜସଭାର ସଭାକବି ହୋଇପାରିଲେ କୃତାର୍ଥ ହେଉଥିଲେ । ତାହାହିଁ ତାଙ୍କର ପରମପ୍ରାପ୍ତିର ମାପକାଠି ଥିଲା । ଆଉ ସେଇଟା ଆଶ୍ଚର୍ଯ୍ୟର କଥା ମଧ୍ୟ ନୁହେଁ । ପୃଥିବୀଟା ଯେହେତୁ ଟଙ୍କାରେ ବଶ, ସେଇ ହେତୁ ହିଁ ସବୁକିଛିର ମୂଲ୍ୟ ନିର୍ଦ୍ଧାରଣ ତ ହୁଏ । ଏହି ଟଙ୍କାର ଅଙ୍କ ଦେଇ ? ନିଜ ପ୍ରତି ଆସ୍ଥା ଆସିବାର ମଧ୍ୟ ତ ସେଇଟା ହିଁ ମାନଦଣ୍ଡ ! ତା'ପରେ ପୁଣି ସାହିତ୍ୟ ଜିନିଷଟା ଆଜିକାଲି ଧାନଚାଉଳ ତୁଳା ରାଶି ପରି ବ୍ୟବସାୟର ଗୋଟିଏ ବିଶେଷ ଉପକରଣ ହୋଇଛି । ଅତଏବ ଲେଖକମାନେ ମଧ୍ୟ ଟଙ୍କାର ଅଙ୍କ ଦେଇ ନିଜର ମୂଲ୍ୟ ନିରୂପଣ କରିବାକୁ ଅଭ୍ୟସ୍ତ ହେବେ, ଏଥିରେ ଆଉ ବିଚିତ୍ର କ'ଣ ? ଆଉ ଯେଉଁ ଲେଖା ବେଶୀ

ଟଙ୍କା ଆଣିବ, ସେଭଳି ଲେଖାକୁ ହିଁ କଲମକୁ ଆଣିବାକୁ ଚେଷ୍ଟା କରିବାଟା ଅତି ସ୍ୱାଭାବିକ ।

ସନତ କକେଇ ଈଷତ୍ ଉତ୍ତେଜିତ ଗଳାରେ କହିଲେ— ତା' ମାନେ ତୁ ମଧ୍ୟ ସେଇ ଟଙ୍କା ପାଇଁ ଲେଖାଟାକୁ ସମର୍ଥନ କରୁଛୁ ?

ଅନାମିକା ହସିଦେଇ କହିଲେ— ସମର୍ଥନର କଥା ନୁହେଁ କକେଇ, ସମର୍ଥନର କୌଣସି ପ୍ରଶ୍ନ ହିଁ ନାହିଁ । ମୁଁ ସେହି ଅନିର୍ବାର୍ଯ୍ୟର କଥା ହିଁ କହୁଛି । ମୋ ଧାରଣାରେ ଏଇଟା ହେଲେ ଆଉଟା ନିଶ୍ଚେ ହେବ । ଅବଶ୍ୟ ଆପଣ ଜାଣନ୍ତି, ଆଜି ଏମିତି ଗୋଟାଏ ଅବସ୍ଥା ହୋଇଛି, ସମାଜର ପ୍ରତି ସ୍ତରର ଲୋକ ଅର୍ଥାତ୍ ପ୍ରତି ସୁଯୋଗ-ସନ୍ଧାନୀ ହିଁ ଲେଖକର କଲମକୁ ବିକ୍ରି କରି ଖାଉଛନ୍ତି । ଲେଖକର କଲମ ହିଁ ତ ବିଜ୍ଞାପନର ବାହକ । କାଗଜର ସମ୍ପାଦକମାନେ ଏବେ ଆଉ 'ଲେଖକ' ତିଆରି କରିବାର ଦାୟିତ୍ୱ କଥା ଭାବନ୍ତି ନାହିଁ । ଭାବନ୍ତି ଖାଲି ସେହି ଲେଖକ କଥା, ଯାହାର ଲେଖା ଥିଲେ ପତ୍ରିକାକୁ ବିଜ୍ଞାପନ ମିଳିବ । ଅତଏବ ପ୍ରତିଷ୍ଠିତ ଲେଖକମାନେ କ୍ରମଶଃ ସେମାନଙ୍କର ସେହି ବିଜ୍ଞାପନ ସଂଗ୍ରହର କଳ ହୋଇଯାଉଛନ୍ତି । ଆଉ ତା'ର ଅବଶ୍ୟମ୍ଭାବୀ ପରିଣାମ ହିସାବରେ ନୂତନମାନେ ସେହି ଦରବାରରେ ପଶିବାର ପଥ ନ ପାଇ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଉତ୍କଟ ରଙ୍ଗର ଉଦ୍ଭଟ ପୋଷାକ ଦେହରେ ମଡ଼େଇ ଦରବାରର ଦରଜାରେ ଠିଆହୋଇ ଅଙ୍ଗଭଙ୍ଗୀ କରି ଟିଣ ବାଡ଼ଉଛନ୍ତି । ଜାଣିଛନ୍ତି ଏଥିରେ ଲୋକମାନେ ଜୁଟିବେ । ଦରବାରରେ ପଶିଯାଇ ପାରିଲେ ସେତେବେଳେ ଦେଖାଯିବ ପ୍ରତିଭା ।

—ଅବସ୍ଥା ତ ବେଶ୍ ମନୋରମ ଲାଗୁଛି !

—କିନ୍ତୁ କିଛି ବଢ଼େଇ କହୁନି କକେଇ । ନୂଆ ଲେଖକମାନଙ୍କୁ ଅନେକ ସଂଗ୍ରାମ କରି ପ୍ରତିଷ୍ଠିତ ହେବାକୁ ପଡ଼େ । ଅନେକ ଭଙ୍ଗୀ, ନୂତନ ଚମକ ଲଗାଇ ନ ପାରିଲେ ଉପାୟ ନାହିଁ । ଆଉ ତେବେ ଯାଇ ତା'ରି ଅନିବାର୍ଯ୍ୟ ପ୍ରତିକ୍ରିୟାରେ ଥରେ ପ୍ରତିଷ୍ଠିତ ହୋଇ ବସିପାରିଲେ ଆଉ କେହି ଖଟିବାକୁ ଚାହାନ୍ତି ନାହିଁ । ଆଉ ନୂତନ କଥା ଦେବାର ଚିନ୍ତା ରହେନି, ଚିନ୍ତାଟା ରହେନି କି କହିବାପାଇଁ ଆସିଥିଲି । ସେଇ ଟିଣ ବାଡ଼େଇବାଟା ଯେତେବେଳେ ସହଜ କାର୍ଯ୍ୟକାରୀ, ଆଉ ଗୋଳମାଳରେ କାର୍ଯ୍ୟ କ'ଣ ! ତା'ଛଡ଼ା ସେହି ଜିନିଷଟା ଉପରେ ବିଶେଷ ଗୋଟାଏ ଆସ୍ଥା ମଧ୍ୟ ରହିଥାଏ । ଦେଖୁଛନ୍ତି ଯେତେବେଳେ ସେଇଟା ହିଁ ଦରବାରର ଦରଜା ଖୋଲିବାର ଚାବି । ଅସଲ କଥା କ'ଣ ଜାଣିଛନ୍ତି କକେଇ, ମନନଶୀଳତାରେ ସ୍ଥିର ହୋଇପାରିବାର ଅବକାଶ ସୁଦ୍ଧା କେହି ଦେଉ ନାହାନ୍ତି ଶିଳ୍ପୀ ଓ ସାହିତ୍ୟିକଙ୍କୁ ।

ନିର୍ଜନରେ ରହିବାକୁ ଦେଉ ନାହାନ୍ତି । ତା'ର ସେହି ସ୍ଥିରତାର ସ୍ୱପ୍ନ ମଧ୍ୟରେ ବୁଡ଼ିଯାଇ ଭିଡ଼କୁ ବଢ଼ାଉଛନ୍ତି ।

ସନତ୍ କକେଇ ହସି କହିଲେ— ସେଥିରେ ଆଉ ଦୁଃଖ କରିବାର କ'ଣ ଅଛି ? ତୋ' ମତରେ ତ ଏ ସବୁ 'ଅନିବାର୍ଯ୍ୟ' ହାତର କଣ୍ଢେଇ !

—ସେଇଟା ମଧ୍ୟ ଭୁଲ୍ ନୁହେଁ । ତା'ଛଡ଼ା ଚିନ୍ତାର କଥା ହେଉଛି, ସେହି ଟିଣ ବାଡ଼େଇବା ଲୋକଙ୍କଠାରୁ ଟିଣ ବାଡ଼େଇବା ହିଁ ଚାହିଁବେ । ଯେମିତି କୌତୁକ ଅଭିନେତା ପାଖରେ କୌତୁକ ଅଭିନୟ ଛଡ଼ା ଆଉ କିଛି ନୁହେଁ । ଜୀବନରେ ଥରଟିଏ ଯେ ଭାଣ୍ଡାମି କରି ମରିଛି, ଜୀବନରେ କେବେହେଲେ ଆଉ ତା'ର ସିରିଏସ୍ ନାୟକ ହେବାର ଉପାୟ ନାହିଁ ।

—ତା'ହେଲେ ତ ଦେଖୁଛି ତମମାନଙ୍କର ଏହି ସାହିତ୍ୟକ୍ଷେତ୍ରଟା ମଧ୍ୟ ନିହାତି ଗୋଳମାଳିଆ ।

—ଭୀଷଣ ଗୋଳମାଳିଆ କକେଇ ! ନିଭୃତ ଚିନ୍ତାରେ ନିମଗ୍ନ ହେବାର ଗଭୀର ଆନନ୍ଦରୁ ବଞ୍ଚିତ ହୋଇ ଉଦ୍‌ଭ୍ରାନ୍ତ ହୋଇ ବୁଲୁଛନ୍ତି ସମସ୍ତେ ।

—"ତୋର ମଧ୍ୟ ସେଇ ଅବସ୍ଥା ?" ସନତ୍ କକେଇ ଟିକିଏ କୌତୁକର ହସ ହସିଲେ ।

—"ମୋ କଥା ବାଦ୍ ଦିଅନ୍ତୁ ।" ଅନାମିକା କହନ୍ତି— ଲେଖିଦେଲେ ହିଁ ସାହିତ୍ୟିକ ହୋଇଯାଇପାରେନା ମଣିଷ । ନିଜକୁ ଅନ୍ତତଃ ମୁଁ 'ସାହିତ୍ୟିକ' ଶବ୍ଦଟାର ଅଧିକାରୀ ବୋଲି ସୁଦ୍ଧା ଭାବେନି ।

"ଲେଖିବାର ଅଧିକାର ଅଛି କି ନାହିଁ ଏ କଥା ନ ଭାବିଚିନ୍ତି ଏକଦା ଲେଖିବାକୁ ଆରମ୍ଭ କରିଥିଲି, ଏବେ ଦେଖୁଛି ପାଠକମାନେ ଅଥବା ସଂପାଦକମାନେ ହିଁ ଲେଖାଉଛନ୍ତି । ଯାଠାରୁ ବେଶୀ କିଛି ନୁହେଁ । ତେବେ ଭାବେ କିଛି ନୂଆ କଥା ଲେଖିବି, ବିଶେଷ କଥା କିଛି ଲେଖିବି......" ଅନାମିକା କହିଲେ— ସେହି ବିଶେଷ କ୍ଷମତା ଥିଲେ ତ ? ସତ କହିବି କକେଇ । ଏ ଯୁଗକୁ ମୁଁ ଚିହ୍ନେନି । ଚିହ୍ନିବାକୁ ଚେଷ୍ଟା କରିବି ଏଭଳି ପରିବେଶ ସୁଦ୍ଧା ନାହିଁ । ଏ ଯୁଗ ସଂପର୍କରେ ଯେଉଁସବୁ ଭୟାବହ ଚିତ୍ର ଶୁଣୁଛି ବା ପଢୁଛି, ତାହା ବିଶ୍ୱାସ କରିପାରୁନି ।

'କିନ୍ତୁ— ' କକେଇ ଆସ୍ତେ କହିଲେ, ଅନେକକ୍ଷେତ୍ରରେ ହିଁ ତାହା ଠିକ୍ 'ବାସ୍ତବ' ବସ୍ତୁଟା କଳ୍ପନାଠାରୁ ମଧ୍ୟ ଅବିଶ୍ୱାସ୍ୟ ।

—"ହୁଏତ ସେଇୟା !" ପୁଣି ଯେମିତି ଅନ୍ୟମନା ହୋଇଗଲେ ଅନାମିକା । 'ତା'ର ସତ୍ୟ ସାକ୍ଷୀ ପୁଲିସ୍‌ର ରିପୋର୍ଟ, ଡାକ୍ତରର ରିପୋର୍ଟ, କିନ୍ତୁ ସାହିତ୍ୟିକ

ମଧ କ'ଣ ସେହି ସତ୍ୟର ସାକ୍ଷୀ ହେବ ? ସାହିତ୍ୟିକ ମଧ କ'ଣ ଏହି ସତ୍ୟ ଉଦ୍‌ଘାଟନ କାମରେ କଲମ ଧରିବ ? ଜାନୁଆର୍ ସହିତ ମଣିଷର ତଫାତ୍ ଖାଲି ବାହାରର ଚେହେରାଟାରେ ! ଅନ୍ୟ କୌଣସି ତଫାତ୍ ଅଛି କି ନାହିଁ ସେ ସନ୍ଧାନ ନ କରିହିଁ ହସି କହିବ, ଆରେ ବାପା ଥାଉ, କାହିଁକି ତଫାତ୍ ରହିବ ? ଏଇଠି ବି ରକ୍ତମାଂସ ସେଇଠି ବି ରକ୍ତମାଂସ ! ରକ୍ତମାଂସ ବ୍ୟତୀତ ଆଉ କେଉଁଠି କ'ଣ ଅଛି ?

— ଏ ପ୍ରଶ୍ନଟା ହିଁ ଆଜିକାଲି ବହୁତ ପ୍ରବଳ ହୋଇଛି, ସେଇୟା ନା ?

— ହଁ, ବହୁତ ପ୍ରବଳ ! ହୁଏତ ଅନବରତ ସେକଥାଟା ଶୁଣୁ ଶୁଣୁ ସେଇଟା ହିଁ ବିଶ୍ୱାସର ବସ୍ତୁ ହୋଇଯିବ ।

ସନତ କକେଇ ଦୃଢ଼କଣ୍ଠରେ କହିଲେ— ଉହୁଁ ! ଲୋକେ ତ ଅନବରତ ନୂଆ କଥା ଶୁଣିବାକୁ ଚାହିଁବେ, ଏ କଥା ଆଉ କେତେଦିନ ନୂଆ ରହିଥିବ ? ମଣିଷ ନାମକ ଜୀବଟା ତ ବାଘସିଂହ ପରି ଏତେ ବଡ଼ ନୁହେଁ, ମାତ୍ର ସାଢ଼େ ତିନିହାତର ଦେହଟା ଧରି ତ ତା'ର କାରବାର । ତା'ର ରକ୍ତମାଂସ ସରିବାକୁ କେତେବେଳ ଲାଗିବ ?

— କଥାଟା ତ ସେଇୟା । ମୁଁ ମଧ ସେଇୟା ଭାବେ । ଉପରେ ଅନନ୍ତ ଆକାଶ, ତଳ ଆଡ଼କୁ ପାଦ ବଢ଼ାଇଲାମାତ୍ରେ କାଦୁଅରେ ପାଦ ପଡ଼ିବ । କେଉଁଟା ସତ୍ୟ ?

— "ନାଃ ଯାହା ବୁଝୁଛି ତୋ ଦ୍ୱାରା ଆଉ ନୂଆ କଥା ଲେଖା ହେବନି !" ହସିଲେ ସନତ୍ କକେଇ ।

— "ହୁଏତ ସେଇୟା !" ଅନାମିକା ମଧ ହସିଲେ, ଅନ୍ୟମନସ୍କର ହସ ।

ତା'ପରେ କହିଲେ— ମଣିଷର ସଂଜ୍ଞା ଯେ ଜୀବମାତ୍ର, 'ଶିବ' ଶବ୍ଦଟା ଯେ ଅର୍ଥହୀନ, ଯାର ପ୍ରମାଣ ଯେତେବେଳେ ଏବେମଧ ସ୍ୱଷ୍ଟ ରୂପେ ପାଇନି, ସେତେବେଳେ ହେବନି ବୋଲି ମନେହୁଏ । ତେବେ ଏକଥା ମଧ ଠିକ୍ କକେଇ, ଯାହା ମୋର ଅଜଣା, ତାହା ଧରି ଲେଖିବାକୁ ଗଲେ ପଦେ ପଦେ ଭୁଲ୍ ହିଁ ହେବ ସେ କଥାଟା ଜାଣେ । ମତେ ତ ଭାବିବାକୁ ଅବାକ୍ ଲାଗେ—

କଥାରେ ବାଧା ପଡ଼ିଲା । କକେଇଙ୍କ ପୁତୁରାବୋହୂ ଆସି ଠିଆହେଲେ । କହିଲେ, ଔଷଧ ଖାଇବାର ବେଳ ହେଲାଣି କକେଇ ।

କୋମଳ ମଧୁର କଥା । ମା'ର ଆଦରଭରା କଥା । ମନେହେଲା ଯେମିତି ଗୋଟିଏ ଶିଶୁ ପାଖକୁ ଆସି କଥା କହିଲେ ।

ସଙ୍ଗେ ସଙ୍ଗେ ଚମକି ଉଠିଲେ ଅନାମିକା, କାରଣ ଉତ୍ତରରେ ପରକ୍ଷଣରେ ସତକୁସତ ଯେପରି ଗୋଟିଏ ଶିଶୁର କଣ୍ଠସ୍ୱର ଶୁଣିପାରିଲେ ସେ !

—ନାଃ, ଏ ନିର୍ଭୁଲ୍ ହୁସିଆର ମା-ଜନନୀଟି ପାଖରୁ ବୁଢ଼ା ପୁଅଟାର ଆଉ ଖସିଯିବାର ଉପାୟ ନାହିଁ ! ଦିଅ କେଉଁଠି କି ଓଷଧ ଅଛି ତମର ।

କିଏ କହିଲେ କଥାଟା ? ସନତ୍ କକେଇ ? ହଁ ତ ସେହିଁ କହିଲେ । ଅଥଚ ଅନାମିକାଙ୍କ କାନରେ ଯେପରି ଭୟଙ୍କର ପ୍ରକାରର ଅପରିଚିତ ସ୍ୱରଟା ବୋଲି ଲାଗିଲା । ସ୍ୱର, ସୁର, ଭଙ୍ଗୀ !

ସର୍ବଦା ଯେଉଁମାନେ ସଜାଡ଼ି ଭାବିଚିନ୍ତି ଟିକିଏ ଟିକିଏ କଥା କହନ୍ତି, ଠିକ୍ ଯେମିତି ସେମାନଙ୍କ ପରି । ଅନାମିକାଙ୍କୁ ଖରାପ ଲାଗିଲା, ଭାରି ଖରାପ ଲାଗିଲା, ଅଥଚ ଏମିତି ଆଉ ଏତେ ଖରାପ ଲାଗିଲା ଭଳି କ'ଣ ବା ଘଟିଛି ?

ଯେଉଁ ମହିଳାଟି ତାଙ୍କର ଜଣେ ବୃଦ୍ଧ ଗୁରୁଜନଙ୍କୁ ସ୍ନେହ-ସମାଦର ଜଣାଇବାକୁ ମହିମାମୟୀ ମାତୃମୂର୍ତ୍ତିରେ ପାଖକୁ ଆସି ଠିଆହୋଇ ଠିକ୍ ଜଣେ ମାଆର ଗଳାରେ ଜଣାଇଲେ ଓଷଧ ଖାଇବାର ସମୟ ହୋଇଛି, ତାଙ୍କର କଣ୍ଠସ୍ୱରଟି ସୁମଧୁର, ମୁଖଶ୍ରୀ ସୁନ୍ଦର, ସାଜସଜା ଗ୍ରାମ୍ୟତା-ବର୍ଜିତ ଏବଂ ସର୍ବ ଅବୟବରେ ରହିଛି ଏକ ମାର୍ଜିତ ରୁଚିର ଛାପ ।

ଯାଙ୍କରି ସହିତ କଥାବାର୍ତ୍ତା କରିବାକୁ ହେଲେ ତ ସେଇପ୍ରକାରର ଗଳାରେ କହିବା ଉଚିତ । ମହିଳା ଜଣକ ଯଦି ତାଙ୍କର ପୂଜନୀୟ ଗୁରୁଜନମାନଙ୍କର ଦ୍ୱିତୀୟ ଶୈଶବ କାଳର କଥା ସ୍ମରଣ କରି ତାଙ୍କ ସଙ୍ଗେ ଶିଶୁଜନୋଚିତ ବ୍ୟବହାର କରନ୍ତି, ଗୁରୁଜନଙ୍କର କ'ଣ ଶ୍ୱଶୁରଜନୋଚିତ ବ୍ୟବହାର ସଙ୍ଗତ ?— ହେଲେ ବି ଅନାମିକାଙ୍କୁ ଖରାପ ଲାଗିଲା । ସତରେ ଭାରି ଖରାପ ।

ଏତେ ସମୟ ପରେ ମହିଳା ଯେମିତି ଦେଖିପାରିଲେ ଅନାମିକାଙ୍କୁ, ସେଥିପାଇଁ ଔଷଧର ଶିଶି ଗିଲାସ ଟେବୁଲ ଉପରେ ରଖି ଦୁଇ ହାତ ଯୋଡ଼ି ଈଷତ୍ ନମସ୍କାରର ଭଙ୍ଗୀରେ ସୌଜନ୍ୟର ହସ ହସି କହିଲେ— ଶୁଣିଛି ଆପଣ ହେଉଛନ୍ତି ମୋର ସ୍ୱାମୀଙ୍କର ସାନଭଉଣୀ, ତେବେବି 'ଆପଣ' ବୋଲିବା ଛଡ଼ା କଥା କହିପାରିବିନି ।

ହଠାତ୍ ଏପ୍ରକାର ଅଦ୍ଭୁତ ଧରଣର କଥାରେ ବିସ୍ମୟ ସହିତ କୌତୁକ ଅନୁଭବ କଲେ ଅନାମିକା । ମୃଦୁ ହସି ପ୍ରତିନମସ୍କାର କରି କହିଲେ— 'କାହିଁକି କହିଲେ ?'

ମହିଳା ଅବସରପ୍ରାପ୍ତ ସ୍ୱାମୀଙ୍କ ସ୍ତ୍ରୀ ଏବଂ ଦ୍ୱିତୀୟ ପକ୍ଷ ମଧ୍ୟ ନୁହନ୍ତି, ତେଣୁ ନିତାନ୍ତ ତରୁଣୀ ପର୍ଯ୍ୟାୟରେ ପଡ଼ିବେନି, ତେବେବି ନିତାନ୍ତ ତରୁଣୀ

ଗଳାରେ ହିଁ ସଭୟ ସମୀହ କରି କହିଲେ— ବାଃ ବାଃ ! ଆପଣ ଯାହା ଜଣେ ଭୀଷଣ ବଡ଼ ଲେଖିକା ! ଓଃ, ଆପଣଙ୍କ ସଙ୍ଗେ ତ କଥା କହିବାକୁ ଡର ଲାଗୁଛି ।

ସନତ୍ କକେଇଙ୍କ ପୁତୁରାବୋହୂର ଉଚ୍ଚାରଣ ମାଜିଦେଲା ଭଳି ବେଶ୍ ସ୍ପଷ୍ଟ, ପ୍ରତିଟି ଶବ୍ଦ ଯେପରି ଅଲଗା ଅଲଗା କରି ଉଚ୍ଚାରିତ ହେଉଛି । 'କଥା' ବସ୍ତୁଟା ଯେ ଗୋଟିଏ ଆର୍ଟ, ତାଙ୍କର ଯେ ଏ ବୋଧ ରହିଛି, ସେଥିରେ ସନ୍ଦେହ ନାହିଁ । ଜଣେ ଭୀଷଣ ବଡ଼ ଲେଖିକାଙ୍କ ସହିତ କଥା କହୁଛନ୍ତି ବୋଲି କ'ଣ ପୁତୁରାବୋହୂ ଏଭଳି କାଟିକୁଟି ମାଜି ଘଷି କଥା କହିଲେ, ନା ଏମିତି ସବୁବେଳେ କହନ୍ତି ସେ ? ହୁଏତ ସେଇୟା କହନ୍ତି । ହୁଏତ ଏଇଟା ହିଁ ତାଙ୍କର ନିଜସ୍ୱ ଭଙ୍ଗୀ, ତେବେକେ କାହିଁକି ଯେ ଅନାମିକାଙ୍କର ମନେହେଲା ଅନେକ ଦିନର ଚେଷ୍ଟାରେ ସେ ଏହି କଥା କହିବାର ଆର୍ଟଟିକୁ ଆୟତ୍ତ କରିଛନ୍ତି !

ପୁତୁରାବୋହୂଙ୍କ ଶାଢ଼ୀ ପିନ୍ଧିବା ଢଙ୍ଗଟି ବେଶ୍ ସୁନ୍ଦର, ବାଳଗୁଡ଼ିକ ସୁଦୃଶ୍ୟ କବରୀରେ ସୁବିନ୍ୟସ୍ତ, ଦେହରେ ହାଲୁକା ଧରଣର ଗୋଟାଏ ଦିଇଟା ଅଳଙ୍କାର, ଆଖିକୋଣରେ ସୁର୍ମାର ହାଲୁକା ଗାର ଟଣାଯାଇଛି । ପାଦରେ ହାଲୁକା ଧରଣର ଚଟି, ଶାଢ଼ୀର ଛାପାଟା ଧରାପଡୁଛି ନ ପଡୁଛି ଧରଣର ହାଲୁକା ସବୁଜରଙ୍ଗର ଏବଂ ଚଷମାର ଫ୍ରେମ୍ ମଧ୍ୟ ହାଲୁକା ପାଉଁଶିଆ ରଙ୍ଗର । ଅର୍ଥାତ୍ ସବୁ ମିଶି ଗୋଟାଏ ହାଲୁକା ଓଜନର ତରୁଣୀ ଭଳି ଲାଗିଲା ତାଙ୍କୁ ।

ଅନାମିକା ହସି କହିଲେ— ବଡ଼ ଲେଖିକା, ଏ ଶବ୍ଦଟାକୁ ମୁଁ ମାନି ନେଇପାରୁନି । ତେବେକେ ପ୍ରଶ୍ନଟା ହେଉଛି ଯଦି କେହି କୌଣସି କଥାରେ ବଡ଼ ହୁଏ, ଘରର ଲୋକମାନେ ମଧ୍ୟ କ'ଣ ତାକୁ ସମୀହ କରି ଚଳିବେ ?

—'ଆରେ ବାବା ! ତା' ଆଉ କହିବାକୁ ଅଛି ?' ବୋହୂ ହସିଲେ, ହେଇଟି ଆପଣଙ୍କର ଭାଇନା ଯେତେବେଳେ ବଡ଼ ଅଫିସର ଥିଲେ, ଭୀଷଣ 'ବିଗ୍' ଅଫିସର, ସେତେବେଳେ ମୁଁ ତ ଡରିମରି କଣ୍ଟା ହୋଇଯାଉଥିଲି ।''

ଖିଲିଖିଲି ହୋଇ ହସିଉଠିଲେ ପୁତୁରାବୋହୂ, ଆଉ ସେ ହସ ସହିତ ଏଭଳି ଏକ ଲୀଳା ଉଦ୍‌ଭାସିତ ହେଲା, ଯେଉଁଟା ଏହି 'ବିଗ୍' ଅଫିସରମାନଙ୍କର ଗୃହିଣୀମାନଙ୍କୁ ହିଁ ମାନେ ।

ସେହି ଭଙ୍ଗୀରେ ହିଁ ସେ ହୁଏତ କହିପାରିବେ— ଘର ମରାମତି କରିବି ? କୁ-ଠୁ ? ଖାଇବାକୁ ତ ଅଣ୍ଟୁନି ଆଉ ଘର !

ସଖୀ-ସାମନ୍ତ ଧରି ଯେତେବେଳେ ଏମାନେ ବସନ୍ତି, ସେତେବେଳେ ମଧ୍ୟ ସେହି ବଜାର ଦର ନେଇ କ୍ଷୋଭ ପ୍ରକାଶ କରନ୍ତି ହୁଏତ ଏମିତି ଲୀଳାଭଙ୍ଗୀରେ ।

ଅନାମିକା ସେହି ଲୀଳାହାସ୍ୟମଣ୍ଡିତ ମୁହଁ ଆଡ଼କୁ ଚାହିଁ କହନ୍ତି– ଏବେ ଆଉ ଡରୁ ନାହାନ୍ତି ତ ?

–"ଉହୁଁ ! ଆଉ ଡରିବି କାହିଁକି ? ଏବେ ତ ବେକାର !"

ସନତ୍ କକେଇ କହିପକାନ୍ତି– ଦେଖୁଛୁ ତ ବକୁଳ, ଝିଅଟା କି ସାଂଘାତିକ ! ଅନାମିକା କହନ୍ତି– ଦେଖୁଛି ତ ।

ହଁ ଦେଖୁଛନ୍ତି । ଦେଖିପାରୁଛନ୍ତି ତାଙ୍କର ସାଂଘାତିକ ମହିମାରେ ସନତକକେଇ ସୁଦ୍ଧା ସଜେଇ କଥା କହିବା ଶିଖିଛନ୍ତି । ହୁଏତ ଶିଖିବାକୁ ସମୟ ଲାଗିଛି, ହୁଏତ ଶିଖିବାକୁ ବିରକ୍ତ ଲାଗିଛି, ତେବେକେ ଶିଖିଛନ୍ତି !

କିନ୍ତୁ ସତରେ କ'ଣ ଶିଖିବା ଦରକାର ଥିଲା ? କିଏ ଜାଣିଛି, ହୁଏତ ଥିଲା । ପରିବେଶ ସହିତ ଖାପ ଖାଇ ନ ଶିଖିଲେ ତ ପ୍ରତିପଦରେ ବାୟୁମଣ୍ଡଳ ବିଷମୟ ହୋଇଯାଏ ।

–ଦିଲ୍ଲୀରେ ମଧ୍ୟ ତ ଆପଣଙ୍କର ଭାରି ନାଆଁ ।

ଓଷଧଟି ଢାଳିଦେଇ ଓଷଧ ମାପିବା ଗଳାରେ ସେହି ମନ୍ତବ୍ୟଟି କଲେ ପୁତୁରାବୋହୂ ।

ଅନାମିକା ମୃଦୁ ହସି କହିଲେ– ତା'ହେଲେ ତ ଆଉ ନିଜକୁ ବଡ଼ ଲେଖିକା ନ ଭାବି ଉପାୟ ନାହିଁ ।

ସନତକକେଇ ଅନାମିକାର ମୁହଁକୁ ଚାହିଁ ଟିକିଏ ହସି କହିଲେ– ସ୍ୱୀକାର କରିବାକୁ ପଡ଼ିଲା ତ ? ତା'ହେଲେ କହିଲୁ ଝିଅଟାକୁ 'ସାଂଘାତିକ' କୁହାଯାଇ ପାରିବ କି ନାହିଁ ? ଏତେବେଳ ହେଲା ତ ମୋ ନିକଟରେ ସ୍ୱୀକାର କରୁ ନ ଥିଲୁ । ମା'-ଜନନୀମାନଙ୍କର କ'ଣ ଗୋଟାଏ ସମିତି ଅଛି ସେଇଠି, ତା ଲାଇବ୍ରେରୀରେ ତୋର କେତେ ବହି ଅଛି, ବୋହୂ ସେଇୟା ନା ?

ବୋହୂ ସ୍ମିତହାସ୍ୟରେ କହିଲେ– ହଁ, କିଛି କିଛି । ମୁଁ ନିଜେ କିଣେଇଛି । ଲାଇବ୍ରେରୀର ସବୁତକ ଭାର ତ ମୋ ମୁଣ୍ଡରେ ଲଦି ଦେଇଥିଲେ ସେମାନେ !

ଅନାମିକାଙ୍କ ମୁହଁକୁ ଆସୁଥିଲା '– ଯାହାହେଉ ଭାଗ୍ୟକୁ ଆପଣ ମୋର ଜଣେ ଭାଉଜ ଥିଲେ ରାଜଧାନୀରେ, ସେଇଥିପାଇଁ ମୋର ଲେଖା 'କିଛି କିଛି' ବହିର ପ୍ରବେଶାଧିକାର ମିଳିଲା ରାଜଧାନୀ ପରି ଜାଗାରେ ।'

ହେଲେ ମୁହଁକୁ ଆସିଥିବା କଥାଟାକୁ ଆଉ ମୁହଁର ବାହାରକୁ ଆଣିଲେନି । କହିଲେ– ତା'ହେଲେ ମୋ ଲେଖା ପଢ଼ିଛନ୍ତି ?

ପୁତୁରାବୋହୂ ପୁଣି ଥରେ ଲୀଳାଭଙ୍ଗିମାରେ ହସିଲେ, କହିଲେ, ସେ ପ୍ରଶ୍ନଟା କଲେ ଉତ୍ତର ଦେବାକୁ ହଇରାଣ ହେବି । ମୁଁ ପୁଣି ଧୈର୍ଯ୍ୟ ଧରି ବସି ବସି ଗଳ୍ପ, ଉପନ୍ୟାସ ଜମା ପଢ଼ିପାରେନି । ତା'ଛଡ଼ା......

ପୁତୁରାବୋହୂ ଔଷଧଶିଶି ଓ ଗିଲାସକୁ ଯଥାସ୍ଥାନରେ ରଖୁ ରଖୁ କହିଲେ– ତା'ଛଡ଼ା ଆଜିକାଲିର ବହିଗୁଡ଼ାକ ପଢ଼ା ହେବାର ଅଯୋଗ୍ୟ ।

– ପଢ଼ାହେବାର ଅଯୋଗ୍ୟ !

ପୁତୁରାବୋହୂଙ୍କ ବକ୍ତବ୍ୟଟିକୁ ଅନୁଧାବନ କରିବା ପୂର୍ବରୁ ପ୍ରଶ୍ନଟି ଯେପରି ଖସିପଡ଼ିଲା ଅନାମିକା ଦେବୀଙ୍କ କଣ୍ଠରୁ ।

ବୋହୂ ତାଙ୍କର ହାଲୁକା ଚଟିପିନ୍ଧା ଗୋଟିଏ ପାଦ ଟେବୁଲ୍‌ର ଗୋଡ଼ର ତାଳ ପକାଇ ଠୁକ୍ ଠୁକ୍ କରି କହିଲେ, ''ସେଇଆ ତ ଶୁଣେ । କୁଆଡ଼େ ଭୀଷଣ ଅଶ୍ଳୀଳ !''

– 'ଶୁଣିଛନ୍ତି, ଯାହେଉ ଭଲକଥା !' ମୃଦୁ ହସିଲେ ଅନାମିକା, କହିଲେ– ଭାଗ୍ୟକୁ ପଢ଼ନ୍ତିନି ।

ପୁତୁରାବୋହୂଙ୍କ ହାସ୍ୟରଞ୍ଜିତ ମୁହଁଟା ମୁହୂର୍ତ୍ତକରେ ଯେପରି କାଠ ହୋଇଗଲା, ଗମ୍ଭୀର ମୁହଁରେ କହିଲେ– ରୁଚି ମଧ୍ୟ ନାହିଁ । ଯେଉଁସବୁ ବହି ନେଇ ଅଦାଲତରେ କେସ୍ ହୁଏ । ସେସବୁ ବହି ଯେ ମଣିଷ କିପରି ପଢ଼େ ?

– ''ମୁଁ ମଧ୍ୟ ସେଇୟା କୁହେ– '' ଅଳ୍ପ ହସି କହନ୍ତି ସନତ କକେଇ– ''ତମର ସେ ମହିଳା-ସମିତିର ମହିଳାମାନେ ଯେ କାହିଁକି ଖାଲି ଆଧୁନିକ ସାହିତ୍ୟ ପଢ଼ିବା ପାଇଁ ଅସ୍ଥିର ହୁଅନ୍ତି !''

ପୁତୁରାବୋହୂ ଥରଟିଏ ତାଙ୍କର ଶ୍ରଦ୍ଧେୟ ଗୁରୁଜନଙ୍କ ଆଡ଼େ କଟାକ୍ଷପାତ କରନ୍ତି, ମୁହଁଟା ଆଉ ଟିକିଏ କାଠ ହୋଇଯାଏ, ଚଉକିରୁ ଉଠିପଡ଼ି ସେ ଠିଆ ହୋଇଯାଆନ୍ତି, କହନ୍ତି– ''ସମସ୍ତଙ୍କର ରୁଚି ସମାନ ନୁହେଁ !'' ଚଉକିଟାକୁ ଠିକ୍ କରି, ଘରୁ ବାହାରିଯାଆନ୍ତି ସେ ।

ଆଉ ସେହି ମୁହୂର୍ତ୍ତରେ ହିଁ ଅନାମିକା ଅନୁଭବ କଲେ– ସନତ କକେଇଙ୍କ କଣ୍ଠରେ ଏପରି ଗୋଟିଏ ଅପରିଚିତ ସ୍ୱର କାହିଁକି ଶୁଣିଥିଲେ ।

ପୁତୁରାବୋହୂ ଚାଲିଯିବା ପରେ ସନତକକେଇ ମୃଦୁ ହସି କହିଥିଲେ– ବୁଦ୍ଧିମାନର ଧର୍ମ ହେଲା ଆତ୍ମରକ୍ଷା କରି ଚଳିବା, କ'ଣ କହୁଛୁ ?

କ'ଣ କହୁଛୁ ?

ଅନାମିକା କିଛି କହିଲେନି, ଖାଲି ଚାହିଁ ରହିଲେ ତାଙ୍କର ହାସ୍ୟରଞ୍ଜିତ ମୁହଁ ଆଡ଼କୁ ।

— କିଲୋ ଏମିତି ବୋକାଙ୍କ ଭଳି ଚାହିଁ ରହିଛୁ କାହିଁକି ?

— ଦେଖୁଛି !

— କ'ଣ ଦେଖୁଛୁ ?

କିଛି ନାଇଁ ।

ସନତ କକେଇ ହୁଏତ ଆଉକିଛି କହିଥାନ୍ତେ, ହଠାତ୍ ଘରେ ପଶିଲେ ସନତ କକେଇଙ୍କର ପୁତୁରା । ଯାହାଙ୍କ ପୂରା ନାଁଟା ଅନମିକାଙ୍କୁ ଜମା ଜଣା ନାହିଁ । ନୀରୁ ଭାଇନା ବୋଲି ହିଁ ଜାଣନ୍ତି ସେ ।

ନୀରୁଭାଇନା ପିନ୍ଧିଥିଲେ ଗାଢ଼ ରଙ୍ଗର ସିଲ୍କ ଲୁଙ୍ଗି, ଦେହରେ ଗୋଟାଏ ଟେପ୍ ଗେଞ୍ଜି, ହାତରେ ଟୋବାକୋର ଟିଣ । ସ୍ତ୍ରୀଙ୍କର ସମ୍ପୂର୍ଣ୍ଣ ବିପରୀତ ଭଙ୍ଗୀରେ ଏକାବେଳେ ହୋ ହା କରି ସେ ଆସିଲେ— ଆରେ ଆମର କି ଭାଗ୍ୟ ! ଶ୍ରୀମତୀ ଲେଖିକା ଦେବୀଙ୍କର ଆଗମନ ! ତା'ପରେ କେମିତି ଅଛୁ ? ଘର ଖବର ସବୁ କ'ଣ ? ବହୁତ ଲେଖାଲେଖି ତ କରୁଛ !

ଅନାମିକା କହିଲେ— ଗୋଟିଏ ପରେ ଗୋଟିଏ ଉତ୍ତର ଦେବି ? ଭଲ ଅଛି । ଘରର ଖବର ସବୁ ଭଲ । ଲେଖୁଛି ଅବଶ୍ୟ, ତେବେ ବହୁତ କି ନାହିଁ ଜାଣିନି ।

ଜାଣିନ ! ଶୁଣୁଛି ତମେ କୁଆଡ଼େ ଭାରି ପପୁଲାର୍ ! ସ୍ତ୍ରୀଲୋକମାନେ କୁଆଡ଼େ ତମ ଲେଖା ପାଇଁ ପାଗଳ !

ଅନାମିକା ହସିପକାଇ କହିଲେ— ସ୍ତ୍ରୀଲୋକମାନେ ତ ? ସ୍ତ୍ରୀଲୋକମାନଙ୍କ କଥା ବାଦ୍ ଦିଅ, ସେମାନେ କୋଉଥିପାଇଁ ପାଗଳ ନ ହୁଅନ୍ତି ଯେ ?

— "ହଁ ଯାହା କହିଲ— " ହୋ ହୋ ହୋଇ ହସିଲେ ନୀରୁ ଭାଇନା— ଭାରି ଖାଣ୍ଟି କଥାଟା କହିଲ । ଶାଢ଼ୀ ଦେଖିଲେ ତ ପାଗଳ ହେଲେ, ଗହଣା ଦେଖିଲେ ତ ପାଗଳ ହେଲେ, ଲୋକଙ୍କ ଗାଡ଼ି— ଘର ଦେଖିଲେ ମଧ୍ୟ ପାଗଳ । ସିନେମା ନାଁରେ ପାଗଳ, ଖେଳ ଦେଖିବା ନାଁରେ ପାଗଳ, ବଜାର କରିବାକୁ ପାଗଳ, ବାପଘର ନାଁରେ ପାଗଳ । ଏମିତିକି ଗୋଟାଏ ଉଲ୍ ପ୍ୟାଟର୍ଣ୍ଣ ପାଇଁ ମଧ୍ୟ ପାଗଳ । ତା'ଛଡ଼ା ରାଗରେ ପାଗଳ, ସନ୍ଦେହରେ ପାଗଳ, ଅଭିମାନରେ ପାଗଳ, ଅହଙ୍କାରରେ ପାଗଳ, ଅନ୍ୟଲୋକଙ୍କଠାରୁ ଜିତିବାକୁ ପାଗଳ, ମୋଟକଥା ନେଚର୍ ସେମାନଙ୍କୁ ଅଧାଅଧି ପାଗଳ କରି ପଠାଇଛି । ବାକିଟା ସେମାନେ ନିଜେ ନିଜେ ହିଁ—

"ଝିଅମାନଙ୍କୁ ତ ତମେ ଅନେକ କ୍ଷତି କରୁଛ ନୀରୁ ଭାଇନା ?" ଅନାମିକା ହସିଲେ, "ଲେଖିଥିଲେ ତମେ ମଧ୍ୟ ସାହିତ୍ୟରେ ସୁନାମ ଅର୍ଜିଥାନ୍ତ ।

—"ଲେଖିଥିଲେ ?" ନୀରୁଭାଇନା ଉଦାତ୍ତ ଗଳାରେ କହିଲେ— ସେମିତି ନାଁ କରିବାର ଦରକାର ନାହିଁ ମୋର । ଦେଶର ପିଲାଗୁଡ଼ାକୁ ତଥା ସମାଜକୁ ଉଚ୍ଛନ୍ନ କରି ଜାତିର ସର୍ବନାଶ କରି ନାଁ ଆଉ ପଇସା କରା ହେଉଛି । ଏଇ ଯୋଉ ସିନେମାଗୁଡ଼ାକ ହେଉଛି, ଯାର ଉତ୍ପତ୍ତି କେଉଁଠାରୁ ? ସେଇ ତମର ସାହିତ୍ୟଠାରୁ ତ ? ସେଥିରୁ କ'ଣ ସବୁ ଘଟୁଛି ? ପୁଅଗୁଡ଼ାକ ସେଥିରୁ ଅସଭ୍ୟତା, ଅଭବ୍ୟତା, ଖୁନ୍‌ଖରାପ, ଡକେଇତି ଶିଖୁନାହାନ୍ତି ?

ସନତ କକେଇ ହସିପକାଇ କହିଲେ— ଶୁଣିଲୁ ତ ? ଏଥର କ'ଣ ଜବାବ ଦେବୁ ଯେ ?

—"ଜବାବ ଦେବାକୁ କିଛି ଥିଲେ ତ ?" ଅନାମିକା ହସିଲେ, "ଜବାବ ଦେବାର କିଛି ନାହିଁ ନିଜେ ଯେତେବେଳେ କାଠଗଡ଼ାର ଆସାମୀ । ଆଉ ସିନେମାର ଗଳ୍ପକୁ ମଧ୍ୟ ଯଦି ସାହିତ୍ୟ ବୋଲି ଧରିବାକୁ ପଡ଼ିବ, ତା'ହେଲେ ତ ଫାଶୀର ଆସାମୀ ଆମେ ।"

କହି ପକାଇ ଅନାମିକା ଡରିଗଲେ ଟିକିଏ— ଯାଙ୍କରି ମୁହଁରେ ମଧ୍ୟ ସଙ୍ଗେ ସଙ୍ଗେ 'କାଠ' ଚାଷ ହବନି ତ !

କିନ୍ତୁ ଭୀତିଟା ଅମୂଳକ, ନୀରୁ ଭାଇନା ବରଂ ଆହୁରି ଅଧିକ ବୀରଦର୍ପରେ କହିଲେ— ହଁ ସାହିତ୍ୟ ହେବନି କାହିଁକି ? ସାହିତ୍ୟିକମାନଙ୍କର ଲେଖା ଗଳ୍ପ ହିଁ ଯେତେବେଳେ ନିଆଯାଉଛି ।

—ସତକଥା !

—"ହଁ ବାପା ! ସ୍ୱୀକାର ନ କରି କ'ଣ ଉପାୟ ଅଛି ?" ନୀରୁଭାଇନା କକେଇଙ୍କ ଆଗରେ ଟୋବାକୋର ଟିଣ ପିଟି ତମାଖୁ ବାହାର କରି ଗୋଟିଏ ସିଗାରେଟ୍ ତିଆରି କରୁ କରୁ କହିଲେ, ହଁ ଶୁଣୁଛି ତମର ଗଳ୍ପଗୁଡ଼ିକ ମଧ୍ୟ ସିନେମା ହେଉଛି, ସତ ନା ?

ଅନାମିକା ଲକ୍ଷ୍ୟ କଲେ— ନୀରୁ ଭାଇନା ଆଉ ତାଙ୍କୁ 'ତୁ' ବୋଲି କଥା କହୁନାହାନ୍ତି ଅଥଚ ଆଗ କହୁଥିଲେ । 'ତୁ' ଛଡ଼ା କଥା କହୁ ନ ଥିଲେ ।

ତା'ର ଅର୍ଥ ବର୍ତ୍ତମାନ ମର୍ଯ୍ୟାଦା ଦେଉଛନ୍ତି । କ'ଣ ଦୀର୍ଘଦିନର ଦୂରତ୍ୱ ପାଇଁ ? କିନ୍ତୁ ତା କ'ଣ ହେବ ?

କାହିଁ ସନତ କକେଇ ତ ତାକୁ 'ତୁମେ' ବୋଲି କହିଲେନି ।

ବେଦନା ଅନୁଭବ କଲେ ଅନାମିକା । ଆତ୍ମୀୟଜନ 'ମର୍ଯ୍ୟାଦା' ଦେଉଛନ୍ତି ଏ କଥାଟା ପୀଡ଼ାଦାୟକ । ଅଥଚ ଅନେକକ୍ଷେତ୍ରରେ ଏ କଥାଟା ଘଟିବା ଦେଖିଛନ୍ତି ସେ । ପୁରୁଣା ସଂପର୍କର ସହଜ ଭଙ୍ଗୀଟିକୁ ଯେପରି ଖୋଜି ପାଆନ୍ତି ନାହିଁ । ନିହାତି ଘରଲୋକ ଯେଉଁମାନେ ସେମାନେ ମଧ୍ୟ କ'ଣ ମଝିରେ ମଝିରେ ଏମିତି ଦୂରତ୍ୱ ସୃଷ୍ଟି କରନ୍ତି ନାହିଁ ? ଯେମିତି 'ବକୁଳ' ନାଆଁର ଝିଅଟା ଅନ୍ୟ ଏକ ନାଆଁର ଛଦ୍ମବେଶ ପିନ୍ଧି ଅନ୍ୟପ୍ରକାର ହୋଇଯାଇଛି ! ଅତଏବ ସେମାନେ ବା ଅନ୍ୟପ୍ରକାର ହୋଇଯିବେନି କାହିଁକି ?

ଅଥଚ ସେହି ଛଦ୍ମନାମଟାର ସଂପର୍କରେ ସେମାନଙ୍କର ଅନାଗ୍ରହର ସୀମା ନାହିଁ । ଟିକିଏ ହେଲେ ଜାଣିବାକୁ ଇଚ୍ଛା କରନ୍ତି ନାହିଁ । ଶମ୍ପା ଛଡ଼ା, ଘରର ଅନ୍ୟମାନେ ଅନାମିକା ଦେବୀଙ୍କ ବହିର୍ଜୀବନ ଏବଂ କର୍ମକାଣ୍ଡ ସଂପର୍କରେ ଖାଲି ଉଦାସୀନ ନୁହନ୍ତି ଯେପରି ବିଦ୍ୱିଷ୍ଟ । ସେମାନଙ୍କ କଥାର ସୁରରେ କଣ୍ଠସ୍ୱରର ଭଙ୍ଗୀରେ ଅନେକ ସମୟରେ ମନେହୁଏ ଅନାମିକା ବୋଧହୁଏ ଖାଲି ସଂସାରକୁ ଫାଙ୍କି ଦେବାପାଇଁ ଗୋଟିଏ ଆଳ ଆବିଷ୍କାର କରି ମନସୁଖରେ ସ୍ୱାଧୀନତା ଉପଭୋଗ କରୁଛନ୍ତି । ଯେପରି ବକୁଳର ତାହା ପ୍ରାପ୍ୟ ନୁହେଁ, ବକୁଳ ଏପ୍ରକାର କୌଶଳ କରି ଲୁଟି ନେଉଛି ତାଙ୍କୁ ।

ଅନାମିକା କ'ଣ ଲେଖୁଛନ୍ତି, କେତେ ଲେଖୁଛନ୍ତି, କେଉଁଠି ଲେଖୁଛନ୍ତି, ଏ କଥାରେ କାହାର କିଛି ମୁଣ୍ଡବଥା ନାହିଁ, ଅନାମିକା ଯେ ବିନା ପରିଶ୍ରମରେ ଖାଲି କାଗଜ ଉପରେ କେତେଗୁଡ଼ିଏ ଗାର ଟାଣି ଅନେକ ଟଙ୍କା ମାଗଣା ପାଇଯାଉଛନ୍ତି, ଖାଲି ସେହି କଥାଟାକୁ ନେଇ ମନରେ କୌଣସି ଜାଗାରେ ଗୋଟାଏ ବ୍ୟଥା ରହିଛି ସେମାନଙ୍କର । ସେହି ଟଙ୍କାର ସୁଯୋଗ ଯେଉଁମାନେ ପାଉଛନ୍ତି– ଷୋହଳଅଣା ଛାଡ଼ି ଅଠରଅଣା ମଧ୍ୟ ପାଉଛନ୍ତି, ସେମାନଙ୍କର ମଧ୍ୟ ମନକଷ୍ଟ ରହିଛି ।

ନା; ଅନାମିକାଙ୍କ ଭାଇନା– ଭାଉଜମାନେ ହାତ ପତେଇ କୌଣସି ଖର୍ଚ୍ଚ ନିଅନ୍ତି ନାହିଁ ଅନାମିକାଙ୍କ ପାଖରୁ, କିନ୍ତୁ ସେମାନଙ୍କ ଛଡ଼ା ଅନାମିକାଙ୍କର ମଧ୍ୟ କିଏ ଅଛି ଯେ ? କାହାପାଇଁ ଖର୍ଚ୍ଚ କରିବେ ? ଦୂରସମ୍ପର୍କର ଦୁଃସ୍ଥ ଆତ୍ମୀୟସ୍ୱଜନ ? ହୁଏତ କିଛି କରିବାକୁ ହୁଏ ସେମାନଙ୍କ ପାଇଁ, କିନ୍ତୁ ସେଥିରେ ପରିତୃପ୍ତି କାହିଁ ?

ସେହି ରୂଢ଼ ରୁକ୍ଷ କଥାଟା ଥାଉ, ଅଭିମାନର ଆହୁରି କ୍ଷେତ୍ର ଅଛି ସତ ।

ଅନାମିକାଙ୍କର 'ସାହିତ୍ୟ' ବିଷୟରେ ଏକାବେଳେ ବରଫଶୀତଳ ହେଲେ ମଧ୍ୟ ବାହାରେ ଅନାମିକାଙ୍କ ଅସାକ୍ଷାତରେ ଯେ 'ସେମାନେ' ଅନାମିକାଙ୍କ ଅତି ନିକଟଜନ

ବୋଲି ପରିଚିତ ହେବାକୁ ପରମ ଉତ୍ସାହୀ, ସେ କଥା ଅବିଦିତ ନାହିଁ ଅନାମିକାଙ୍କୁ । ହୁଏତ ଜୀବନ ଏହିପରି ।

ଏଥିରେ ଆହତ ହେବାଟା ହିଁ ନିର୍ବୁଦ୍ଧିତା !

ଅନାମିକା ଯେତେବେଳେ ତାଙ୍କର ପରିଚିତ ବନ୍ଧୁସମାଜ ଆଡ଼କୁ ଚାହିଁ ଦେଖନ୍ତି, ସେତେବେଳେ ମଧ୍ୟ ଏ ଅନୁଭୂତି ହିଁ ସ୍ପଷ୍ଟ ହୋଇଉଠେ— ଜୀବନ ଏହିପରି ।

ମଣିଷ ସଂପର୍କରେ ମର୍ଯ୍ୟାଦାବୋଧ ନାହିଁ, ଖାଲି ଭଙ୍ଗେଇ ଖାଇବା ଭଳି, ମଣିଷକୁ ଭଙ୍ଗେଇ ଖାଇବାର ଚେଷ୍ଟାଟା ଅଛି ପ୍ରବଳ । ଆଜିକାଲି ସବୁଠାରୁ ବଡ଼ ଶିଳ୍ପ ବୋଧହୁଏ ମଣିଷକୁ ଭଙ୍ଗେଇ ଖାଇବାର ଶିଳ୍ପ । ଯଦି ଅନାମିକା ନାମର ମଣିଷଟାକୁ ଭଙ୍ଗେଇ କିଛି ସୁବିଧା ଅର୍ଜନ କରିନିଆଯାଇପାରେ, ତା'ହେଲେ ଯାଇ ସେହି ଅର୍ଜନକାରୀମାନେ ଅନାମିକାର ଅନୁରକ୍ତ ଭକ୍ତ ବନ୍ଧୁ । କିନ୍ତୁ ଅନାମିକା ଭଲରୂପେ ଜାଣନ୍ତି, ଯେଉଁ ମୁହୂର୍ତ୍ତରେ ସେ ସେହି ଭଙ୍ଗେଇ ଖାଇବାଟାକୁ ବୁଝି ପାରୁଛନ୍ତି ବୋଲି ସେମାନଙ୍କୁ ଜାଣିବାକୁ ଦେବେ, ସେହି ମୁହୂର୍ତ୍ତରେ ସମସ୍ତଙ୍କର ସବୁ ଭକ୍ତି ନିଶ୍ଚିହ୍ନ ହୋଇଯିବ ।

ଆଉ ନିଜେ ଯଦି ସେ ପ୍ରତ୍ୟାଶାର ପାତ୍ର ହାତରେ ଧରି ଥରଟିଏ କହିବାକୁ ଯିବେ— ମତେ ତ ଅନେକ ଭଙ୍ଗାଇଲ, ଏବେ ମୋ ପାଇଁ କିଛି ଭଙ୍ଗାଉନ ? ତା' ହେଲାକ୍ଷଣି ଲଜ୍ଜାରେ ଘୃଣାରେ ଦୁଃଖରେ ଧିକ୍କାରରେ ବନ୍ଧୁମାନେ ସହସ୍ର ଯୋଜନ ଦୂରକୁ ଘୁଞ୍ଚିଯିବେ !

ହଁ, ଏହାହିଁ ପୃଥିବୀ !

ତମେ ଯଦି ବୋକା ହେବ, ଆତ୍ମସ୍ୱାର୍ଥରେ ଉଦାସୀନ ହେବ, ବନ୍ଧୁର ଗୁଣଗୁଡ଼ିକ ସମ୍ପର୍କରେ ଚକ୍ଷୁଷ୍ମାନ୍ ଆଉ ଦୋଷଗୁଡ଼ିକ ସମ୍ପର୍କରେ ଅନ୍ଧ ହେବ, ତମେ ଯେଉଁ ପୃଥିବୀର ସବୁକିଛିକୁ ଧରି ଦେଖି ଦେଇପାରୁଛ, ତାହାକୁ ଧରିବାକୁ ନ ଦିଅ, ତେବେ ହିଁ ତମର ବନ୍ଧୁଲୋକ ତମ ପ୍ରତି ସହୃଦୟ ହେବେ ।

ନଚେତ୍ ?

ହୃଦୟବର୍ଜିତ !

ହେଇଟି ଏଇଲେ ଦେଖୁଛ ଏ ନୀରୁ ଭାଇନା ନାମକ ବିଜ୍ଞ ବୟସ୍କ ଏବଂ ଆପଣା ପ୍ରାକ୍ତନ ପଦମର୍ଯ୍ୟାଦା ସମ୍ବନ୍ଧରେ ଯଥେଷ୍ଟ ଅବହିତ ଥିବା ଆତ୍ମୀୟ ଜଣକ, ଅନାୟାସରେ ହିଁ ଏ ପିଲା ଭଳି ଓଜନହୀନ କଥା କହିଛନ୍ତି, କିନ୍ତୁ ତାଙ୍କର ଭକ୍ତି ଯେ ପିଲାଳିଆମି, ଏକଥା ଥରଟିଏ ଉଚ୍ଚାରଣ କଲ ଦେଖି ଅନାମିକା ଦେବୀ ?

ସଙ୍ଗେ ସଙ୍ଗେ ଯେ ସେ ଭିନ୍ନ ମୂର୍ତ୍ତି ଧାରଣ କରିବେ, ସେଥିରେ ସନ୍ଦେହ ନାସ୍ତି । ଯେମିତି ତାଙ୍କର ସ୍ତ୍ରୀ କଲେ । ସେ ହୁଏତ 'ଶିରୀଷ କୁସୁମ ସମ' ଅତି ସୁକୁମାର ଏ ହୁଏତ ତାଙ୍କଠାରୁ ଟିକିଏ ଅଧିକ ସହନଶୀଳ, କିନ୍ତୁ କଳସୀ ଭିତରେ ଗୋଖର ଅଛି ।

ଅତଏବ ହାସ୍ୟମୁଖରେ ଯାଙ୍କର ପିଲାଳିଆମିକୁ ଉପଭୋଗ କର ।

ଅତଏବ କହିଦିଅ, 'ଏ ବାପା ! ତମର ସେହି ବିରାଟ କର୍ମଚକ୍ରର ଘର୍ଘର ଧ୍ୱନି ଭିତରେ ଏତେ ଖବର ପହଞ୍ଚୁଛି ତମ ପାଖରେ ? ଏତେ ଦୂରରେ ରହି ?

"ପହଞ୍ଚୁବନି ?" ନୀରୁଭାଇନା ଗୋଟାଏ ଖୁବ୍ ଉଚ୍ଚାଙ୍ଗର ରସିକତାର ହସ ହସି କହିଲେ— ତମର ସୁଖ୍ୟାତି ତ କାନପାତି ଶୁଣିବାକୁ କଷ୍ଟ । ଯାହେଉ, ତମେ ଯେ ଏ ସବୁ ଆଧୁନିକ ଲେଖକମାନଙ୍କ ପରି ଅଶ୍ଳୀଳ-ଅଶ୍ଳୀଳ ଲେଖା ଲେଖୁ ନାହଁ, ଏଥିରେ ହିଁ ଆମେ ବଞ୍ଚିଯାଉଛୁ !

ମନେ ମନେ ହସିଲେ ଅନାମିକା ।

ଭଦ୍ରଲୋକ ହୁଏତ ଜୀବନଟାଯାକ ଉଚ୍ଚ ରାଜକର୍ମଚାରୀ ହିସାବରେ ଯଥେଷ୍ଟ କର୍ମଦକ୍ଷତା ଦେଖାଇଆସିଛନ୍ତି, ହୁଏତ ସୂକ୍ଷ୍ମ ଦର୍ଶନ କ୍ଷମତାରେ ଅଧସ୍ତନମାନଙ୍କ ଆଖିରେ ସୋରିଷଫୁଲ ଏବଂ ଉର୍ଦ୍ଧ୍ୱତନମାନଙ୍କ ଆଖିରେ ନିଷ୍କୃତିର ଆଲୋକ ଫୁଟାଇ ଆସିଛନ୍ତି, କିନ୍ତୁ ସଂସାରକ୍ଷେତ୍ର ଯେ 'ଆଉଜଣକର ଆଖି' ଦ୍ୱାରା ଜଗତକୁ ଦେଖି ଆସିଛନ୍ତି, ସେଥିରେ ସନ୍ଦେହ ନାହିଁ ।

ଏ ଗୋଟିଏ ଟାଇପ୍ ।

ବଶମ୍ବଦ ସ୍ୱାମୀଙ୍କ ଉଦାହରଣ । ଯାଉ, କଥାବାର୍ତ୍ତାଗୁଡ଼ାକ କୌତୁକକର । ସେଥିପାଇଁ ହସହସ ମୁହଁରେ ଉତ୍ତର ଦିଅନ୍ତି ଅନାମିକା— ମୁଁ ଯେ ସେମିତି ସବୁ ମାରାତ୍ମକ ଲେଖା ଲେଖେ ନାହିଁ, ସେ କଥା କିଏ କହିଲା ତମକୁ ?

"ଆହା ସେଇଟା ପୁଣି ଗୋଟାଏ କହିବା ଭଳିଆ କଥା ? ତମେ ଏସବୁ ଆଦୌ ଲେଖିପାରିବ ନାହିଁ । ଯାହାହେଲେ ବି ଭଦ୍ରଘରର ଝିଅ ତ ? ଆମମାନଙ୍କ ଘରର ଝିଅ ! ରୁଚିଟା ଏମିତି କୁ ହୋଇପାରିବ ନାହିଁ !

—"ତା ସତ ।" ଅମାୟିକ ଗଳାରେ ସ୍ୱୀକାର କଲେ ଅନାମିକା, "ସେ କଥା ସତ । ତା'ଛଡ଼ା ମୁଁ ତ ଆଉ ଆଧୁନିକ ନୁହେଁ ।

—"ବୟସର କଥା କହୁଛ ?" ଉଦାତ୍ତ ଗଳାରେ କହିଲେ ନୀରୁ ଭାଇନା, "ସେଇଟାକୁ ପୁଣି ଆଜିକାଲି କିଏ ମାନୁଛି ? ରାଜ୍ୟର ଯେତେକ ବୁଢ଼ା ଦଳକୁ ଶିଙ୍ଗ ଭାଙ୍ଗି ବାଛୁରୀ ଦଳରେ ପଶିବା କଥା ଶୁଣିଛି । ଏମାନେ କ'ଣ ସମାଜର

ଶତ୍ରୁ ନୁହଁନ୍ତି ? ହୁଏତ ଏମାନେ ହିଁ କଲେଜର ପ୍ରଫେସର, ହୁଏତ ସମାଜର ମଥାର ମଣି, ଅଥଚ ଖାଲି ପଇସା ଲୋଭରେ କଦର୍ଯ୍ୟ କଦର୍ଯ୍ୟ ଲେଖି–''

କଥାଟାର ଉପସଂହାରଟାକୁ ବେଶ୍ ସୁନ୍ଦର କରିବା ପାଇଁ ବୋଧହୁଏ ନୀରୁ ଭାଇନା ଥରଟେ ଦମ୍ ନେଲେ, ସେହି ଅବକାଶରେ ଅନାମିକା ଭାରି ନିରୀହ ଗଳାରେ ପଚାରିଲେ– କାହାର କାହାର ଲେଖା ତମକୁ ଏତେ କଦର୍ଯ୍ୟ ଲାଗେ ନୀରୁଭାଇନା ?

''କାହାର କାହାର ?'' ନୀରୁଭାଇନା ଖଟା ଖାଇଲା ପରି ସ୍ୱରରେ କହିଲେ– କାହାର ନୁହେଁ ? ଗୋଟାଏ କଥାରେ ସମସ୍ତଙ୍କର । ଆଜିକାଲି କେଉଁ ଲେଖକଟା ସଭ୍ୟ ଭବ୍ୟ ଲେଖା ଲେଖୁଛି ? ଲେଖିବ କାହିଁକି ? ଆଜିକାଲି ତ ଅସଭ୍ୟ ଲେଖାରେ ହିଁ ପଇସା ମିଳେ । ସେଇୟା ନା ? ଯିଏ ଏ ଅସଭ୍ୟତାର ଦାୟରେ କୋର୍ଟକୁ ଯିବ, ସେହି ବହିର ସେତେ ଏଡିଶନ୍ ହେବ ।

ଅନାମିକା ମୃଦୁ ହସି କହିଲେ– କୋର୍ଟକୁ ଯାଇନି, ଏମିତି ବହିର ମଧ ଅନେକ ସଂସ୍କରଣ ହୁଏ ।

–ହେଇଥିବ ! ମୁଁ ସେ ଖବର ରଖିନି ।

–ଓ ସେଇଥିପାଇଁ ବୋଧହୁଏ ! ଖାଲି ଏସବୁ ଆଧୁନିକ ସାହିତ୍ୟକୁ ହିଁ ବହୁତ ପଢୁଛ ବୋଧହୁଏ ?

–''ପଢୁଛି ? ମୁଁ ?'' ନୀରୁ ଭାଇନା ଆକାଶରୁ ଖସିପଡ଼ିଲେ, କହିଲେ,''ମୁଁ ସେ ସବୁ ଗନ୍ଧିଆ ଅପବିତ୍ର ଅସନା ବହିକୁ ଛୁଇଁବି ? ରାବିଶ୍ ! କୋଉ ବହିର ମଲାଟଟା ଓଲଟାଇ ଦେଖିନି । ମୋ ହାତରେ ଆଇନ୍ ଥିଲେ ଏସବୁ ଲେଖକଗୁଡ଼ାକୁ ଏକାବେଳେ ନେଇ ଜେଲ୍‌ରେ ପୂରାଇଥାନ୍ତି, ବୁଝିଲୁ ? ଯାବଜ୍ଜୀବନ କାରାଦଣ୍ଡ ! ଇହଜୀବନ ଆଉ ଯେମିତି ବାଲୁଙ୍ଗାଗୁଡ଼ାକ କଲମ ଧରି ନ ପାରନ୍ତି ସେ ବ୍ୟବସ୍ଥା କରିଥାନ୍ତି ।

ଉତ୍ତର ଦେବାକୁ ଅନେକ କଥା ଅବଶ୍ୟ ଥିଲା, ତେବେ ସେଇଟା ତ ଅର୍ଥହୀନ, ସେହି ନିରର୍ଥକ ଚେଷ୍ଟା କଲେ ନାହିଁ ଅନାମିକା, ଖାଲି ଭାରି ଡରିଗଲା ପରି ଛଳନା କରି କହିଲେ, ''ଆରେ ବାପା ! ଭାଗ୍ୟକୁ ତମ ହାତରେ ନାହିଁ ! ସେଥିପାଇଁ ବିଚରାମାନେ ଖାଇ ପିଇ ବଞ୍ଚି ରହିଛନ୍ତି ।''

ଯାହାର ଆଖିରେ ନୀରୁଭାଇନା ଜଗତକୁ ଦେଖନ୍ତି, ତାଙ୍କ ପରି ଅନୁଭୂତିର ସୂକ୍ଷ୍ମତା ଯେ ଅର୍ଜନ କରିପାରି ନାହାନ୍ତି ସେ କଥାଟା ଠିକ୍ । ସେଥିପାଇଁ ଶ୍ଳେଷଭରା କଣ୍ଠରେ କହିଲେ, ''ଖାଲି ଖାଇ ପିଇ ଗାଡ଼ି-ଘର କରି ନୁହେଁ ? ଅଥଚ

ଚିରକାଳ ଶୁଣିଆସିଛି ସରସ୍ୱତୀଙ୍କ ସହିତ ଲକ୍ଷ୍ମୀଙ୍କର ବିରୋଧ ଅଛି । ମାଇକେଲ୍ ପଇସା ଅଭାବରେ ବହି ବିକି ଖାଇଛନ୍ତି, ଗୋବିନ୍ଦ ଦାସ ନା କିଏ କୁଆଡ଼େ ନ ଖାଇ ମରିଛନ୍ତି । ଗୀତରେ ମଧ ଅଛି– ହାୟମା, ଯେଉଁମାନେ ତୋ'ର ଭକ୍ତ, ନିଃସ୍ୱ କି ମା ସମସ୍ତେ...... ଅଥଚ ଏଇଲେ ?

କୌତୁକର ହସ ମୁହଁରେ ବୋଳି ଏତେ ସମୟ ହେଲା ଏହି ଆଳାପ-ଆଲୋଚନା ଶୁଣିଯାଉଥିଲେ ସନତ କକେଇ, ଏଇଲେ ହଠାତ୍ ଟିକିଏ ଯୋଗ ଦେଲେ । କହିଲେ– ଆହା ସେ ତ ନିଶ୍ଚୟ ହେବ ! ଏମାନେ ତ ଆଉ ମା' ସରସ୍ୱତୀଙ୍କର ଭକ୍ତ ନୁହନ୍ତି, ସେମାନେ ଦୁଷ୍ଟ ସରସ୍ୱତୀଙ୍କର ଭକ୍ତ, ତେଣୁ ଲକ୍ଷ୍ମୀଙ୍କ ସହିତ ବିରୋଧ ନାହିଁ । ନା କ'ଣ କହୁଛ ବକୁଳ ?

–"ସେଇୟା ମନେ ହେଉଛି–" ଅନାମିକା ହସିଦେଇ କହିଲେ –"କିନ୍ତୁ ଯାହା ପଛକେ କହ ନୀରୁ ଭାଇନା, ସରକାରଙ୍କର ଏତେବଡ଼ ଗୋଟାଏ ଦାୟିତ୍ୱର ଜୁଆଳି କାନ୍ଧରେ ପକାଇ ମଧ ଯେ ତମେ 'ସାହିତ୍ୟ' ନେଇ ଏତେ ଭାବିଛ, ଚର୍ଚ୍ଚା କରିଛ, ସେଇଟା ଆଶ୍ଚର୍ଯ୍ୟ ! ଏମିତି କି ଏତେ କଥା ମୁଖସ୍ଥ କରି ରଖିଛ ଯେ–

–"ଚର୍ଚ୍ଚା ରଖିବାର ଦାୟ ପଡ଼ିଛି–" ନୀରୁ ଭାଇନା ସିଗାରେଟ୍‌ର ଧୂଆଁ ଉଡ଼ାଇ ଅମ୍ଳାନ ବଦନରେ କହିଲେ– "ତମର ଭାଉଜ କହେ, ମୁଁ ସେଇଥିପାଇଁ ଶୁଣେ । ସେ ତ କହେ– ନାଟକ, ନଭେଲ, ଗଳ୍ପ ହେରିକା ଏକାବେଳେ ନିଶ୍ଚିହ୍ନ ହୋଇଗଲେ ଯାଇ ଦେଶର କିଛି ଉନ୍ନତି ହେବ । ଜିନିଷଗୁଡ଼ାକ କ'ଣ ? କେତେଗୁଡ଼ିଏ ମନଗଢ଼ା କଥା କେବଳ, ତା'ଛଡ଼ା କ'ଣ ଆଉ କିଛି ଅଛି ? ସେମାନଙ୍କ ଝିଅ ଏମାନଙ୍କ ପୁଅ ସହିତ ପ୍ରେମ କଲା, ନ ହେଲେ ୟା'ର ସ୍ତ୍ରୀ ତା ସଙ୍ଗେ ପଳାଇଗଲା, ବିଷୟବସ୍ତୁ ତ ଏଇୟା ! ୟାକୁ ନେଇ ଫେଣେଇ ବନେଇ ଚୁନେଇ ସାତଶହ ପୃଷ୍ଠାର ବହି ! କୋଡ଼ିଏ ଟଙ୍କା ଦାମ୍, ଦଶଟା ଏଡିଶନ୍, ଗୋଟାଏ କ୍ଲାସ୍ ୱାନ୍ ଅଫିସରଠାରୁ ବେଶୀ ଆୟ ହେଉଛି ଆଜିକାଲିର ନାମଜାଦା ଲେଖକର ! ରାବିଶ୍ !

ଅନାମିକାଙ୍କର ହଠାତ୍ ମନେହେଲା ଗାତ୍ରଦାହଟା ବୋଧହୁଏ ସେହି ଆୟଟାକୁ ହିଁ କେନ୍ଦ୍ର କରି ଏବଂ ସହସା ହାତ ପାଖରେ ଜଣେ ଘୋରତର ପାପୀକୁ ପାଇ–

ଚିନ୍ତାରେ ଛେଦ ପଡ଼ିଲା । ସୁଦୃଶ୍ୟ ଗୋଟିଏ ଟ୍ରେ ଧରି, ତଉଲିଆ କାନ୍ଧରେ ପକାଇ ଜଣେ ଭୃତ୍ୟର ଆବିର୍ଭାବ ହେଲା । କହିବା ବାହୁଲ୍ୟ ଟ୍ରେରେ ଅନାମିକାଙ୍କ ପାଇଁ ଚା' ଏବଂ 'ଫା' ।

ନୀରୁଭାଇନା ଟିକିଏ ସଜାଡ଼ି ହୋଇ ବସିଲେ । ଟିକିଏ ଯେପରି ଅସହାୟ ଅସହାୟ ଏବଂ ଅପ୍ରସ୍ତୁତ ଗଳାରେ କହିଲେ— ମେମ୍‌ସାହେବ କେଉଁଠାରେ ଅଛନ୍ତି ?

ଭୃତ୍ୟର ଗଳାରେ କିନ୍ତୁ ଗଭୀର ଆତ୍ମସ୍ଥତା, କହିଲା— ଘରେ ଅଛନ୍ତି, ମୁଣ୍ଡ ବଥାଉଛି !

—"ମୁଣ୍ଡ ବଥାଉଛି ! ଆରେ ଯା !" ଚଞ୍ଚଳ ହୋଇପଡ଼ିଲେ ନୀରୁ ଭାଇନା, କହିଲେ— ବିଚରାର ଏ ବ୍ୟାଧିଟା ତ ସାଙ୍ଗସାଥୀ ଭଳି ରହିଗଲା !

ସନତ କକେଇ ଉଦ୍‌ବିଗ୍ନ ଗଳାରେ କହିଲେ— ଯା ଗଲୁ, ଟିକିଏ ଦେଖିବୁ ଯା ।

—ନା ଦେଖିବି ଆଉ କ'ଣ ? "ନୀରୁ ଭାଇନାଙ୍କ କଣ୍ଠ ସ୍ଖଳିତ"— ସେ ତ ଅଛି ସେମିତି । "ତା'ପରେ ଯେମିତି ଜୋର୍ କରି ନିଜକୁ ସତେଜ କରିଦେଇ କହିଲେ— ଆଚ୍ଛା ବକୁଳ, କକେଇଙ୍କୁ କେମିତି ଦେଖୁଛ କହିଲ ?"

—ଭଲ ତ ।

—ହଁ ଏଇଲେ ତ ନିଶ୍ଚେ ଭଲ ବୋଲି କହିବ । ଯାହା ଅବସ୍ଥା ହେଇଥିଲା ଆଉ ଯୋଉଭଳି ଏ 'ଭଲ'ର ପର୍ଯ୍ୟାୟକୁ ଅଣାଗଲା । କଥା ତ ଜମା ଶୁଣିବାକୁ ରାଜି ନୁହନ୍ତି । ଆର୍ଗୁମେଣ୍ଟଟା କ'ଣ ଜାଣିଛ ? ଏତେ ସାବଧାନ...... ଖାଲି ସାବଧାନରେ ନିଜକୁ ବଞ୍ଚାଇ ରଖି ଆଉ କେତେଦିନ ପୃଥିବୀରେ ରହିବାର ଦରକାର କ'ଣ ଅଛି ? ବୁଝ ! ଏମିତି କଥା ଶୁଣିଛ ? ତମର ବହିରେ ଏମିତି କ୍ୟାରେକ୍ଟର୍ ଅଛି ?

—"ନା ନାଇଁ !" ଅନାମିକା ଈଷତ୍ ଗମ୍ଭୀର ସ୍ୱରରେ କହିଲେ— ମୋର କ'ଣ ସାଧ ଅଛି ଏ କ୍ୟାରେକ୍ଟର୍‌କୁ ଚିତ୍ରଣ କରିବାକୁ !

ନୀରୁ ଭାଇନା ଖୋଲା ଗଳାରେ କହିଲେ— ଅସାଧ ହେବନି ଯଦି ମୋ ପାଖରେ ଦୁଇଦିନ ବସି ଡିକ୍ଟେଶନ୍ ନିଅ । ଓଃ ! ତେବେ ହଁ, ଗୋଟାଏ ଜାଗାରେ ପୂରା ଜବ୍‌ଦ !

ଝଲକାଏ ହସରେ ନୀରୁ ଭାଇନାଙ୍କର ମୁହଁ ଉଦ୍‌ଭାସିତ ହୋଇଗଲା; କହିଲେ— ବୋହୂଟି ପାଖରେ ତାଙ୍କର ଉଁ କି ଚୁଁ କରିପାରୁ ନାହାନ୍ତି ! କହିଲେ, ତମେ ବିଶ୍ୱାସ କରିବନି ବକୁଳ, ଏଇଲେ ମୋ କକେଇଙ୍କର ଦିନରାତି 'ମା'-ଜନନୀ' ଛଡ଼ା—

ହଠାତ୍ କିପରି ଏକ ଚାଞ୍ଚଲ୍ୟ ବୋଧ କଲେ ନୀରୁ ଭାଇନା । ବୋଧହୁଏ ଶିରପୀଡ଼ାଗ୍ରସ୍ତ ସେହି ବିଚାରୀର ପୀଡ଼ା କଥା ସହସା ଛାତିରେ ଆସି ଧକ୍କା

ମାରିଲା । ସେ ଉଠିପଡ଼ିଲେ । କହିଲେ– କାଇଁ ତମେ ତ କିଛି ଖାଇଲନି, ଅନ୍ତତଃ ସ୍ୟାଣ୍ଡଉଇଚ୍‌ଟା ଖାଅ କହିଦେଇ ଶିଥିଳ ଚରଣରେ ଚଟିକୁ ଟାଣି ଟାଣି ଆଗେଇ ଗଲେ ।

ସେହି ଆଡ଼କୁ ସନତ୍ କକେଇ କେତେ ସେକେଣ୍ଡ୍ ଚାହିଁ ରହି ମୃଦୁ ହସି କହିଲେ– ପିଲାଟା ପାଇଁ ଦୁଃଖ ଲାଗେ ।

–''ସେ କ'ଣ କକେଇ !'' ଅନାମିକା ଗାଲରେ ହାତ ଦେଲେ– ''ନିଜେ ତ ସେ ଦୁଃଖର ସାଗରରେ ଭାସୁଛନ୍ତି ।''

–ସେଇଟା ତ ଆହୁରି ଅଧିକ ଦୁଃଖର କଥା ।

ସନତ କକେଇଙ୍କ କଥାଟା କ'ଣ ଗୋଟାଏ ଗୋଲକ ଧନ୍ଦା ? ନା ଭାରି ସିଧା ? ଏକାବେଳେ ପାଣିଭଳିଆ । ଯେଉଁମାନେ ସୁଖର ସାଗରରେ ଭାସୁଛନ୍ତି, ସେମାନଙ୍କ ପାଇଁ ହିଁ ଚିନ୍ତାଶୀଳମାନଙ୍କର ଯେତେ ସବୁ ଦୁଃଖ ! ସେମାନଙ୍କ ଦୁଃଖବୋଧ ଜାଗ୍ରତ କରି, ସେହି ଦୁଃଖ ନିରାକରଣ ପାଇଁ ମୁଣ୍ଡ ପିଟାପିଟି ଚାଲିଛି ।

କିନ୍ତୁ–

ମନେ ମନେ ଟିକିଏ ହସିଲେ ଅନାମିକା, କିନ୍ତୁ ଯେଉଁମାନେ ଚେଇଁ ଶୋଇଥାନ୍ତି ? ଯେଉଁମାନେ ଜାଣି ବୁଝି କୃତ୍ରିମତାର ଦେବତାଙ୍କୁ ପୂଜା କରନ୍ତି ?

ଆଚ୍ଛା କାହିଁକି ପୂଜା କରନ୍ତି ? ଚମଡ଼ା ଉଠିଯାଇଥିବା ଖାଲି ରକ୍ତମାଂସର ଚେହେରାଟାକୁ ସହିପାରନ୍ତିନି ବୋଲି ?

ସନତ କକେଇଙ୍କ ଘରଠାରୁ ଅନାମିକା ହେରିକାଙ୍କ ଘରର ଦୂରତ୍ୱ ନିହାତି କମ୍ ନୁହେଁ, ଟାକ୍ସିରେ ବସି ଚିନ୍ତାକୁ ଛାଡ଼ିଦେଇ ଯେପରି ଗଭୀରତା ଭିତରେ ବୁଡ଼ିଯାଆନ୍ତି ଅନାମିକା ।

ନୀରୁ ଭାଇନା ଚାଲିଯିବା ପରେ ଆହୁରି କିଛି ସମୟ ସେ ବସିଥିଲେ କକେଇଙ୍କ ପାଖରେ, ଆହୁରି କେତେ କଥା ହେଲେ, ସନତ କକେଇଙ୍କର ହସର ସୁରବୋଳା ପ୍ରଶ୍ନଟା ଯେପରି ଏବେସୁଦ୍ଧା କାନରେ ଲାଗି ରହିଛି– ଆଖିରୁ ଯଦି ପୋଛି ହୋଇଯିବ ସବୁ ରଙ୍ଗ, ସବୁ ଅନୁରାଗ, ଶୁଝିବାକୁ କାହା ଋଣ, କଟାଇବାକୁ ହେବ ଦିନ, ଧରଣୀର ଅନ୍ନଜଳେ ବସାଇ ଯେ ଭାଗ ।

ସନତ କକେଇ କ'ଣ କବିତା ଲେଖନ୍ତି ?

ଆସ୍ତେ ଆସ୍ତେ ନିଜ ଭିତରୁ ଗୋଟାଏ ପ୍ରଶ୍ନ ଜାଗିଉଠେ । ଲେଖା ନେଇ ତ ଅନେକ ହାସ୍ୟକର କଥା ହେଲା, ହସିଲି ମଧ । କିନ୍ତୁ ନିଜର ଜମାଖାତାରେ ଅଙ୍କଟା କ'ଣ ?

ସତରେ କ'ଣ କିଛି ଲେଖିଛି ?

ଯେଉଁ ଲେଖା କେବଳମାତ୍ର ନଗଦ ବିଦାୟ ନେଇ ଚାଲିଯାଏ ନାହିଁ, କିନ୍ତୁ ପାଉଣା ରଖିଦେଇଯାଏ ?

ମୁଁ କ'ଣ ସତରେ କାହାର କାହାର କଥା କହିପାରିଛି ? ମୁଁ କ'ଣ ପ୍ରକୃତ ଜୀବନର ଛବି ଆଙ୍କିପାରିଛି ? ନା ନୀରୁ ଭାଇନାଙ୍କ ଭାଷାରେ, ଖାଲି କେତେଗୁଡ଼ିଏ କାଳ୍ପନିକ ଚରିତ୍ର ଠିଆ କରିଦେଇ ଗଳ୍ପ ଲେଖିଛି ?

ହୁଏତ ଅପସୃୟମାନ ସମାଜଜୀବନର କିଛି ଛବି ରହିଗଲା ମୋ ଖାତାରେ, କିନ୍ତୁ ଯେଉଁ ସମାଜଜୀବନ ବର୍ତ୍ତମାନର ସ୍ରୋତରେ ଉତ୍ତାଳ ? ମୁହୂର୍ତ୍ତେ ମୁହୂର୍ତ୍ତେ ଯାହାର ରଙ୍ଗ ବଦଳୁଛି, ଗଢ଼ଣ ବଦଳୁଛି ? ମୋର ଅଭିଜ୍ଞତାରେ କ'ଣ ସେମାନଙ୍କୁ ଧରିପାରୁଛି ? ନା ପାରୁନି । ତା'ର କାରଣ, ଆଜି ଆଉ ସମାଜର ଗୋଟାଏ ଚେହେରା ନାହିଁ, ସେ ଖଣ୍ଡ ଖଣ୍ଡ ଛିନ୍ନ ଭିନ୍ନ ଟିକି ଟିକି ହୋଇଯାଇଛି ? ସେହି ଖଣ୍ଡଗୁଡ଼ିକ ଅସମାନ ତୀକ୍ଷ୍ଣ, ସେଥିରେ ଯେତେ ଧାର ଅଛି ସେତେ ଭାର ନାହିଁ । ଆଉ ଯେପରି ସେହି ତୀକ୍ଷ୍ଣତାଟା ଅଦୂର ଭବିଷ୍ୟତ୍‌ରେ ଦନ୍ତୁରା ହୋଇଯିବାର ସୂଚନା ବହନ କରୁଛି । ତେବେକେ ଏଇଲେ ଯେଉଁମାନେ ତାକୁ ଧରି ପାରୁଛନ୍ତି, ସେମାନେ ସମାଜର ସେହି ଧାରୁଆ ଖଣ୍ଡଗୁଡ଼ିକୁ ତୋଳି ନେଇ ଆହୁରି ଘଷି ଦାରୁଆ କରୁଛନ୍ତି ।

ତା'ହେଲେ କ'ଣ କଲମକୁ ଏଥର ଛୁଟି ଦେବେ ଅନାମିକା ?

କହିବେ, ତମର ଧାଁଧପଡ଼ ଏଥର ଶେଷ ହେଉ !

ହୁଏତ ଅନାମିକା ଦେବୀଙ୍କ ଭକ୍ତ ପାଠକଦଳ ସେହି ଅନୁପସ୍ଥିତିରେ ହତାଶ ହେବେ, କିନ୍ତୁ ନୂଆ କିଛି ଯଦି ସେମାନଙ୍କୁ ଦେଇ ନ ପାରିବି, କ'ଣ ହେବ ପୁରୁଣା କଥାକୁ ନୂଆ ଜରିରେ ଗୁଡ଼ାଇ ?

ଗାଡ଼ି ଗୋଟାଏ ବୁଲାଣି ଅତିକ୍ରମ କଲା, ସାମାନ୍ୟ ଟିକିଏ ନିର୍ଦ୍ଦେଶ ଦେଲେ ଚାଳକକୁ, ତା'ପରେ ପୁଣି ଭାବିଲେ, କିନ୍ତୁ ସେ ନୂଆ କଥାଟା କ'ଣ ? କେବଳମାତ୍ର ନିଷ୍ଠୁର ହାତରେ ସବୁକିଛିର ଆବରଣ ଉନ୍ମୋଚନ କରିବା ?

ତା'ଛଡ଼ା ? ତା'ଛଡ଼ା ତ ଆଉ ସବୁଯାକ ପୁରୁଣା ।

ଜୀବନ ନେଇ ହିଁ ସାହିତ୍ୟ, ଚରିତ୍ର ନେଇ ହିଁ କଳ୍ପନା । ଆଦିକାଳରେ ମଧ ଯାହା ଥିଲା, ଆଜିମଧ କ'ଣ ତା' ନାହିଁ ? ଯେଉଁଟି ଅନ୍ୟଙ୍କମର ସେଇଟା ହିଁ ଯେ ପରିବେଶ । ସମାଜରେ ଯେତେବେଳେ ଯେଉଁ ପରିବେଶ, ତା'ର ପ୍ରତି ଭାଙ୍ଗରେ ସେହି ଜୀବନଟାକୁ ଯେମିତି ଦେଖିବାକୁ ମିଳେ, ସେଇଟାହିଁ

ସାହିତ୍ୟର ଉପଜୀବ୍ୟ । ଆଜିର ପରିବେଶ ଯଦି ଖାପ୍‌ଛଡ଼ା, ପାଲଛିଣ୍ଡା, କାତ ଭଙ୍ଗା ହୁଏ, ସାହିତ୍ୟ ମଧ୍ୟ କାହିଁକି ବା –

"ନୋ, ନୋ, ବାଁପଟେ ନୁହେଁ, ଡାହାଣପଟେ ।" ଅନାମିକା ନିର୍ଦ୍ଦେଶ ଦେଲେ ଚାଳକକୁ । ତା'ପରେ ଶିଥିଳ ଭଙ୍ଗୀ ତ୍ୟାଗ କରି ସଜାଡ଼ି ହୋଇ ବସିଲେ । ଏଥର ଠିକ୍ ଜାଗାରେ ଓହ୍ଲାଇବାକୁ ପଡ଼ିବ । ଯେଉଁ ମନଟାକୁ ଛାଡ଼ି ଦେଉଥିଲେ, ତା' ଆଡ଼କୁ ଚାହିଁଲେ, ତା'ପରେ ଆସ୍ତେ କହିଲେ– କିନ୍ତୁ ପରିବେଶ ସାହିତ୍ୟ ଉପରେ ଜୟୀ ହେବ, ନା ସାହିତ୍ୟ ପରିବେଶ ଉପରେ ? ସାହିତ୍ୟର ଭୂମିକା କ'ଣ ପରାଜିତର ଭୂମିକା ?

ଘର ଆଗକୁ ଆସି ଗାଡ଼ିରୁ ଓହ୍ଲାଇଲେ ସେ, ଟିକିଏ ଆଶ୍ଚର୍ଯ୍ୟ ହେଲେ ଦୁଆର ପାଖରେ ସାନଭାଇନା ଠିଆ ହୋଇଛନ୍ତି, ବଡ଼ଭାଇନାଙ୍କ ପୁଅ ମଧ୍ୟ ଠିଆ ହୋଇଛି ।

ସେମାନେ ଏମିତି ରାସ୍ତା ପାଖରେ ଠିଆ ହୋଇଛନ୍ତି କାହିଁକି ?

ଅନାମିକାଙ୍କର ଡେରି ହେବା ଦେଖି ଉଦ୍‌ବିଗ୍ନ ହୋଇ ? ସେଇଟା ତ ଅଳୀକ କଳ୍ପନା ? ଅନାମିକାଙ୍କର ଗତିବିଧି ନେଇ କିଏ ମୁଣ୍ଡ ଘୂରାନ୍ତି ?

ଅନାମିକା ବ୍ୟସ୍ତ ହେଲେ ନାହିଁ, ଭାବିଲେ ନିଶ୍ଚୟ ସଂପୂର୍ଣ୍ଣ ଅନ୍ୟ କାରଣ । ଧୀରେ ସୁସ୍ଥେ ମିଟର ଦେଖୁଥିଲେ, ବଡ଼ଭାଇନାଙ୍କ ପୁଅ ଆଗେଇ ଆସିଲା, ଦ୍ରୁତ କଣ୍ଠରେ ପ୍ରଶ୍ନ କଲା– ଶମ୍ପା ସାଙ୍ଗରେ ଦେଖା ହୋଇଛି ?

– ଶମ୍ପା ସାଙ୍ଗରେ ?

– ହଁ,ହଁ ତମ ସଙ୍ଗେ କିଛି ଯୋଗାଯୋଗ କରିଛି ?

ପୁତୁରାର ଗଳାରେ ଯେପରି ଗୋଟିଏ ନିଶ୍ଚିତ ସନ୍ଦେହର ସୁର, ଯେଉଁ ପ୍ରଶ୍ନଟା ସେ ପଚାରିଛି ଯେପରି ସେ ପ୍ରଶ୍ନଟାର ଉତ୍ତରଟା ତା'ର ଅନୁକୂଳ ହେବାର ସମ୍ଭାବନା ଅଛି !

ଆଶ୍ଚର୍ଯ୍ୟ ହେଲେ ଅନାମିକା, କହିଲେ– ମୁଁ ତ ତାକୁ ସକାଳ ପରେ ଆଉ ଦେଖିନି । କାହିଁକି, କ'ଣ ହେଇଛି ?

– "ଯାହା ହେବାର ତା' ହେଇଛି !" ବଡ଼ପୁତୁରା ଯେମିତି ପିଉସୀକୁ ଉଡ଼ାଇ ଦେଲା ପରି ସ୍ୱରରେ କହିଲା– ପଳେଇ ଯାଇଛନ୍ତି ! ସକାଳଠୁ ତାଙ୍କୁ ପାଉନୁ !'

## ॥ ୧୬ ॥

ଜଳର ଅପର ନାମ କାହିଁକି 'ଜୀବନ' ଏକଥା ବୋଧହୁଏ ଏଭଳି ଉପଲବ୍ଧି କରି ପାରି ନ ଥାନ୍ତା ପାରୁଲ୍ ଯଦି ସେ ତା'ର ଏହି ଚନ୍ଦନନଗରର ଘରେ ଏକୁଟିଆ ଆସି ରହି ନ ଥାନ୍ତା, ଆଉ ଯଦି ଘଣ୍ଟା ପରେ ଘଣ୍ଟା ଖାଲି ଚୁପ୍‌ଚାପ୍ ଗଙ୍ଗାଜଳ ଆଡ଼କୁ ଚାହିଁ ରହି କଟାଇ ନ ଥାନ୍ତା ।

ଏକା ଗଙ୍ଗାର କେତେ ରୂପ, କେତେ ରଙ୍ଗ, କେତେ ବୈଚିତ୍ର୍ୟ ! ଖାଲି ପ୍ରତି ଋତୁରେ ନୁହେଁ, ଦିନ ରାତିରେ, ସକାଳ ସନ୍ଧ୍ୟାରେ, ପ୍ରଖର ରୌଦ୍ରର ଦିପହରେ, ଛାୟା-ଛାୟା ଭରା ଅପରାହ୍ଣରେ, ଶୁକ୍ଳପକ୍ଷରେ, କୃଷ୍ଣପକ୍ଷରେ, ବଦଳି ଯାଉଛି ତା'ର ରଙ୍ଗ ରୂପର ଭଙ୍ଗିମା ।

ଏହି ଅସରନ୍ତି ବୈଚିତ୍ର୍ୟ ମଧ୍ୟରେ ଯେପରି ରହିଛି ଅସରନ୍ତି ଜୀବନର ସ୍ୱାଦ ।

ସେକାଳରେ ତିଆରି ହୋଇଥିବା ଘର, ସାନ ହେଲେ ମଧ୍ୟ ସାନ ନୁହେଁ, ଏକାଳର ଫ୍ଲାଟ୍‌ଘରର ଅଙ୍କ ତା ସହିତ ତା'ର ସ୍ୱଚ୍ଛତାର ତୁଳନା ହୁଏ ନାହିଁ । ଏଣେତେଣେ ହୋଇ ଅନେକ ଘର-ବାରଣ୍ଡା, ଅକାରଣରେ ଅର୍ଥହୀନ ଗୋଟାଏ ଅଗଣା । ଏ ଘରେ ଖାଲି ଏକା ପାରୁଲ୍ ତା'ର ନିତାନ୍ତ ସଂକ୍ଷିପ୍ତ ଜୀବନଯାତ୍ରା ମଧ୍ୟରେ ନିମଜ୍ଜିତ, ପାଟିତୁଣ୍ଡ କେଉଁଠି ନାହିଁ, ପ୍ରାଣର ସ୍ପନ୍ଦନ ନାହିଁ ।

ତେବେକେ ଯେପରି ପାରୁଲ୍‌କୁ ଘେରିଚାଲିଛି ଏକ ଅସରନ୍ତି ପ୍ରାଣପ୍ରବାହ । ନିଃସଙ୍ଗ ପାରୁଲ୍ ଖାଲି ଏହି ଜଳପ୍ରବାହ ଆଡ଼େ ଚାହିଁ ଚାହିଁ ଯେପରି ପାଏ ଅସରନ୍ତି ସଙ୍ଗ-ସ୍ୱାଦ । ଯେପରି ପାଏ ଅନନ୍ତ ପ୍ରାଣର ସ୍ପର୍ଶ ।

ପରିବର୍ତ୍ତନର ଅର୍ଥ ତ ଜୀବନ, ଯାହା ଅଚଞ୍ଚଳ, ଅଚଳ, ଅପରିବର୍ତ୍ତିତ, ସେଠାରେ ଜୀବନର ସ୍ପନ୍ଦନ କାହିଁ ? ଅଚଳାୟତନ ମଧ୍ୟରେ ହିଁ ମୃତ୍ୟୁର ବସା । ଜୀବନହିଁ ପ୍ରତି ମୁହୂର୍ତ୍ତରେ ରଙ୍ଗ ବଦଳାଏ । ସେଇଥିପାଇଁ ନଦୀପ୍ରବାହ ଜୀବନପ୍ରବାହର ପ୍ରତୀକ । ତେବେକେ ନଦୀର ଏହି ନିୟମ ରୂପବୈଚିତ୍ର୍ୟର ଭଙ୍ଗୀରେ ଯେ ଗୋଟିଏ ସ୍ଥିର ସତ୍ତା ଅଛି, ପାରୁଲ୍‌ର ପ୍ରକୃତି ଭିତରେ ବୋଧହୁଏ ଅଛି ତା'ର ଏକାତ୍ମତା । ପାରୁଲ୍ ସେହି ସତ୍ତାର ଗଭୀରତାରେ ନିମଗ୍ନ ରହି ଏହି ରୂପବୈଚିତ୍ର୍ୟ ଭିତରୁ ଆହରଣ କରେ ବଞ୍ଚିବାର ଖୋରାକ, ବଞ୍ଚିବାର ପ୍ରେରଣା ।

ଅଥଚ ପାରୁଲ୍‌ର ଭଳି ଅବସ୍ଥାରେ ଅନ୍ୟ କେଉଁ ଝିଅ ଅନାୟାସରେ ଭାବିପାରିଥାନ୍ତା, ଆଉ କି ସୁଖରେ ବଞ୍ଚିବି ? ଭାବିଥାନ୍ତା ଆଉ ବଞ୍ଚି ଲାଭ କ'ଣ ?

ପାରୁଲ୍ ତା ଭାବେନି ।

ନିଃସଙ୍ଗ ପାରୁଲ୍ ଯେପରି ତା'ର ଜୀବନର ପାତ୍ରଟିକୁ ହାତରେ ଧରି ଚାଖି ଚାଖି ଉପଭୋଗ କରେ ।

ପ୍ରତିଟି ଦିନ ହିଁ ଯେପରି ପାରୁଲ୍ ପାଖରେ ଏକ ଗଭୀର ଉପଲବ୍ଧିର ଉପଚାର ହାତରେ ଧରି ଆସି ଠିଆହୁଏ ।

ପାରୁଲ୍ ଯେ କେବଳମାତ୍ର ସେହି ଦୀର୍ଘଦିନ ପୂର୍ବେ ମୃତ ଅମଳବାବୁ ନାମଧେୟ ଲୋକଟିର ସ୍ତ୍ରୀ ନୁହେଁ, ଯେ ମୋହନଲାଲ ଏବଂ ଶୋହନଲାଲ ନାମକ ଦୁଇଜଣ କ୍ଲାସ୍ ଓ୍ୱାନ୍ ଅଫିସରଙ୍କ ମା' ନୁହେଁ, ପାରୁଲ୍ ଯେ ବହୁ ଆତ୍ମୀୟସ୍ୱଜନଙ୍କ ମଧ୍ୟରୁ ଜଣେ ନୁହେଁ, ପାରୁଲ୍ ଗୋଟିଏ ସତ୍ତାର ନାଁ, ସେହି କଥାଟା ହିଁ ଅନୁଭବ କରେ ପାରୁଲ୍ । ଆଉ ସେହିପରି ଏକ ଅନୁଭବର ମୁହୂର୍ତ୍ତରେ ମା'ଙ୍କୁ ମନେପଡ଼େ ପାରୁଲ୍‌ର ।

ଆଗ ପାରୁଲ୍ ମା'ଙ୍କୁ ବୁଝିପାରୁ ନ ଥିଲା । ପାରୁଲ୍ ତା'ର ମା'ଙ୍କର ସଦା ଉତ୍ତେଜିତ ସ୍ୱଭାବ ପ୍ରତି ବିଦ୍ୱେଷ ପୋଷଣ କରୁଥିଲା, ପାରୁଲ୍ ତା' ମା'ଙ୍କର ସେହି ଡଙ୍କହେବ ପୁଅଝିଅଙ୍କୁ ବରଖାସ୍ତ କରିପାରୁ ନ ଥିଲା । କିନ୍ତୁ ଏବେ ପାରୁଲ୍ ଯେପରି ଦର୍ଶକର ଭୂମିକାରେ ବସି ମା'ଙ୍କୁ ଦେଖିପାରେ ।

ଗୋଟିଏ ଦୀର୍ଘନିଃଶ୍ୱାସ ପଡ଼ିଲା ପାରୁଲ୍‌ର । ପାରୁଲ୍ ଭାବିଲା ମା' ଯଦି ବହୁତ ଅଳ୍ପ ବୟସରେ ବିଧବା ହୋଇଯାଇଥାନ୍ତେ, ତାହାହେଲେ ହୁଏତ ମା' ବଞ୍ଚିଯାଇଥାନ୍ତେ ।

ହୁଏତ ବକୁଳ ହିଁ ପାରୁଲ୍‌କୁ ଏହି ଦୃଷ୍ଟିଟା ଦେଇଛି । ବକୁଳ ହିଁ ତା'ର ମା'ର ଅପରିସୀମ ନିରୁପାୟତାର ଇତିହାସ ଲିପିବଦ୍ଧ କରିଛି କାଳ୍ପନିକ ଚରିତ୍ର ମଧ୍ୟ ଦେଇ । ସେହି ଅପରାଧର ଅସହାୟତାରେ ପ୍ରାୟ ସବୁ ଭାରତୀୟ ସ୍ତ୍ରୀଲୋକଙ୍କ ଜୀବନରେ ତ ବକୁଳ-ପାରୁଲ୍‌ର ମା'ଙ୍କ ଜୀବନର ପ୍ରତିଫଳନ ହୋଇଥିଲା ।

ଖାଲି କିଏ ଥିଲା ଅନ୍ଧ ଅବୋଧ, କିଏ ଦୃଷ୍ଟିଶକ୍ତି ଓ ବୋଧର ଯନ୍ତ୍ରଣାରେ ଜର୍ଜରିତ । ପାରୁଲ୍ ତା'ର ମା'ର ସେହି ଜ୍ୱାଳାଟା ଧରି ଛଟପଟ ହେବା ଦେଖି ବିରକ୍ତ ହେଉଥାଏ, ଏବେ ଦୂରଲୋକରୁ ମମତାର ଦୃଷ୍ଟିରେ ଚାହେଁ ।

ସମୟ ସମୟରେ ପାରୁଲ୍ ତା'ର ମା'ଙ୍କୁ ଆଣି ଗଙ୍ଗାର ଉପରେ ଥିବା ଏହି ବାରଣ୍ଡାରେ ବସାଏ, ତା'ପରେ ଗଭୀର ନିଃଶ୍ୱାସଟିଏ ଉତ୍ସର୍ଗ କରେ ମୁକ୍ତିର କାଙ୍ଗାଳ ସେହି ମଣିଷଟାର ଉଦ୍ଦେଶ୍ୟରେ । ପାରୁଲ୍‌ର ବିଧାତା ପାରୁଲ୍ ପ୍ରତି ଟିକିଏ ପ୍ରସନ୍ନ ନିଶ୍ଚୟ, ସେଥିପାଇଁ ପାରୁଲ୍‌କୁ ଦୀର୍ଘଦିନ ଧରି ଗୋଟିଏ ସ୍ଥୂଳ

ପୁରୁଷ ଚିତ୍ତର କ୍ଲେଦାକ୍ତ ଆସକ୍ତିର ଶିକାର ହୋଇ ପଡ଼ିରହିବାକୁ ହୋଇ ନାହିଁ, ଯେଉଁ ଆସକ୍ତି ବୁଢ଼ିଆଣୀ ପେଟର ସୂତା ପରି ଆବିଳ କରି ରଖେ, ଯେଉଁ ଆସକ୍ତି କେଉଁଠି କେଉଁଦିଗକୁ ହେଲେ ମୁକ୍ତିର ଝରକା ଖୋଲିବାକୁ ଦିଏ ନାହିଁ ।

କିନ୍ତୁ ଏବେ କୁଆଡ଼େ ପାତ୍ର ବଦଳ ହୋଇଛି ।

ହଁ, ତା ହୋଇଛି ନିଶ୍ଚୟ । ବର୍ତ୍ତମାନ ଶିକାର ଶିକାରୀର ଜାଗା ବଦଳ ହୋଇଛି ! ହଠାତ୍ ନିଜର ପୁଅ ଦୁଇଟିଙ୍କ କଥା ମନେ ପଡ଼ିଯାଏ ପାରୁଲ୍‌ର ।

କିନ୍ତୁ ସେମାନେ କ'ଣ ମୁକ୍ତିର ଝରକାକୁ ଖୋଜି ବୁଲନ୍ତି ? ପାରୁଲ୍‌ର ପିଲାମାନେ ? ନା ପରମ ପରିତୃପ୍ତିରେ ସେହି ଅଠାଳିଆ ଆସକ୍ତିକୁ ଦେହରେ ବୋଳିହୋଇ ପଡ଼ିରହି ନିଜକୁ ଭାରି ସୁଖୀ ମନେକରନ୍ତି ? ହୁଏତ ସେଇୟା ।

ହୁଏତ ଅଧିକାର-ବୋଧରେ ତୀବ୍ର, ତୀକ୍ଷ୍ଣ, ସଚେତନ, ଅଥଚ ଅଭିମାନାରକ୍ତ ସେହି ଏକ ପ୍ରଭୁ-ଚିତ୍ତ ପାଖରେ ସମର୍ପିତ-ପ୍ରାଣ ହୋଇ ରହିବାହିଁ ସେମାନଙ୍କର ଆନନ୍ଦ । ପ୍ରଭୁଙ୍କ ଇଚ୍ଛାରେ ନିଜର ଇଚ୍ଛା ବିଲୀନ କରିବା ଭିତରେ ରହିଛି ସେମାନଙ୍କ ଜୀବନର ଚରମ ସାର୍ଥକତା ।

ନିଜର ସନ୍ତାନକୁ ମଧ୍ୟ କ'ଣ ସଂପୂର୍ଣ୍ଣ ପଢ଼ା ଯାଇପାରିବ ? ହୁଏତ କେତେକମାତ୍ରାରେ ପଢ଼ିହେବ, ତେବେକେ ସବୁତକ ନୁହେଁ । ଅନେକ ପଢ଼ିହେବ ବୋଲି ଶୋଭନ ପାଇଁ ଏକ ଗଭୀର ବେଦନାବୋଧ ରହିଛି । ପାରୁଲ୍ ଯେପରି ବୁଝିପାରେ, ଶୋଭନର ଶାନ୍ତିପ୍ରିୟତା ହିଁ ଶୋଭନକୁ ବହୁତ ଅସହାୟ କରି ରଖିଛି ।

ସମୟ ସମୟରେ ପାରୁଲ୍‌କୁ ଭାରି ଅଦ୍ଭୁତ ଲାଗେ । ମନେହୁଏ ପାରୁଲ୍ ଯେପରି ଅନେକ ଦଉଡ଼ିର ଗଣ୍ଠି କାଟି କି ପ୍ରକାର ଏକ ଭୟଙ୍କର କବଳରୁ କେତେହାତ ଦୂରକୁ ଚାଲିଆସି ନିଃଶ୍ୱାସ ପକାଇ ବଞ୍ଚିଛି ।

ସେହି ଭୟଙ୍କରଟା କ'ଣ ? ସମାଜ ? ଲୋକସମାଜ ?

ବୋଧହୁଏ ସେଇୟା ।

ଲୋକସମାଜର ମୁହଁକୁ ଚାହିଁ ପାରୁଲ୍‌କୁ ଆଉ ଏବେ ଇଚ୍ଛା ବିରୋଧରେ କିଛି କରିବାକୁ ପଡୁ ନାହିଁ । ହଠାତ୍ କେତେବେଳେ ଗୋଟାଏ ପାରୁଲ୍ ସେହି 'ଲୋକନିନ୍ଦା' ଜିନିଷଟା ମଧ୍ୟରେ ଥିବା ପରମହାସ୍ୟକର ଦିଗଟାକୁ ଉପଲବ୍ଧି କରିପକାଇ, 'ତେଲି ହାତରୁ ଖସେଇ ଦେଲି' କରି ଦେଇଛି ।

ଏବେ ଆଉ ପାରୁଲ୍‌ର ଶ୍ୱଶୁରକୁଳର କେହି ପାରୁଲ୍ ସମ୍ପର୍କରେ, ଆତ୍ମୀୟସ୍ୱଜନମାନଙ୍କର ସୁଖଦୁଃଖରେ ଯୋଗ ଦେଇ ଛାତି ପତାଇ ସାହାଯ୍ୟ କରିବ, ଏ ଆଶା କାହାର ନାହିଁ । ପାରୁଲଯଦି କିଏ ଅସୁସ୍ଥ ବୋଲି ଶୁଣି ଦେଖିବାକୁ ଯାଏ,

ତା'ହେଲେ ସେ ବ୍ୟକ୍ତି ବିଗଳିତ ହୋଇଯାଏ । ପାରୁଲ୍ ଯଦି କାହାର ବାହାଘର ନିମନ୍ତ୍ରଣରେ ଯାଇ ଠିଆ ହୁଏ, ସେ ଧନ୍ୟବୋଧ କରେ ।

ନ ଗଲେ ମଧ୍ୟ କେହି କିଛି ଭାବନ୍ତି ନାହିଁ । କାରଣ ଏବେ ସମସ୍ତେ ଧରି ନେଇଛନ୍ତି– ସେ ସେହିଭଳି ଲୋକ ।

ଏବେ ଆଉ ପାରୁଲ ସମ୍ବନ୍ଧୀଣୀମାନେ ପାରୁଲ୍‌ର ପୁଅ-ବୋହୂ ପ୍ରତି କର୍ତ୍ତବ୍ୟହୀନତା ଥିବା କଥା କହି ସମାଲୋଚନାରେ ମୁଖର ହୁଅନ୍ତି ନାହିଁ । ସେମାନେ ମଧ୍ୟ ଧରି ନେଇଛନ୍ତି– ସେ ତ ସେହିଭଳି ଲୋକ ।

କିନ୍ତୁ ସମସ୍ତେ କ'ଣ ଏହି ଯୁକ୍ତି ଆହରଣ କରିପାରନ୍ତି ? ପାରନ୍ତି ନାହିଁ ।

କାରଣ ବନ୍ଧନ ତ ବାହାରେ ନୁହେଁ, ବନ୍ଧନ ନିଜ ଭିତରେ । ସେହି ବନ୍ଧନଟି ହେଉଛି 'ମୁଁ' । ସେହି 'ମୁଁ'ଟି ଯେପରି ଲୋକଚକ୍ଷୁରେ ସବୁବେଳେ ଝକ୍‌ଝକ୍ ଚକ୍‌ଚକ୍ ନିଖୁଣ, ନିର୍ଭୁଲ ରହେ, ଯେପରି ତାକୁ କେହି ତ୍ରୁଟିର ଅପରାଧରେ ଚିହ୍ନିତ କରି ନ ପାରେ, ମଣିଷର ତ ଏହି ଚେଷ୍ଟା ଚାଲିଥାଏ । 'ମୁଁ' ଟିକୁ ପ୍ରକୃତରେ ପରିଶୁଦ୍ଧ କରି ନିର୍ଭୁଲ, ନିଖୁଣ କରିବାର ଚେଷ୍ଟା କେତେଜଣ ବା କରିଥାନ୍ତି ? 'ମୁଁ'ଟିକୁ ସଜ୍ଜିତ କରି ଦେଖାଇବାର ସଂଖ୍ୟା ହିଁ ଅଧିକ ।

ସେହିପରି ଦେଖାଇବା ମୋହଟିକୁ ତ୍ୟାଗ କରିପାରିଲେ ବା ହୁଏତ ସେହି ତ୍ୟାଗର ପଥ ଧରି ପରିଶୁଦ୍ଧି ଆସିଲେ ବା ଆସିପାରିବ । କିନ୍ତୁ 'ମୁଁ'ର ବନ୍ଧନ ବଡ଼ ବନ୍ଧନ ।

ପାରୁଲ୍‌ର ହୁଏତ ଏ ବନ୍ଧନଟା ସବୁକାଳେ କମ୍ ଥିଲା, ଏବେ ଆହୁରି ଚାଲିଯାଇଛି । କିନ୍ତୁ ସେହି ବନ୍ଧନହୀନ ପାରୁଲ୍ ଆଗରେ ହଠାତ୍ ଗୋଟିଏ ବନ୍ଧନରଜ୍ଜୁ ଆସି ପିଟିହୋଇ ପଡ଼ିଗଲା । ହଁ, ଏକରକମ ପିଟିହୋଇ ହିଁ ପଡ଼ିଗଲା । କାରଣ ଘଟଣାଟା ବିନା ନୋଟିସ୍‌ରେ ଘଟିଲା ।

ପାରୁଲ୍ ଆଜି ସାମାନ୍ୟ ରନ୍ଧାର ଆୟୋଜନ କରିଦେଇ ସେଇକ୍ଷଣି ଷ୍ଟୋଭ୍‌ଟାକୁ ଜଳାଇଛି, ହଠାତ୍ ବାହାର ଦୁଆରରେ ଗୋଟାଏ ସାଇକେଲ୍ ରିକ୍ସାର ଶବ୍ଦ ଶୁଣାଗଲା । ସଙ୍ଗେ ସଙ୍ଗେ ରିକ୍ସାବାଲାର ଡାକ ଶୁଣାଗଲା– ''ମାଇଜୀ ମାଇଜୀ ।''

ତା' ଅର୍ଥ ଆରୋହୀ ତା' ଦ୍ୱାରା ହିଁ ଡାକ ଦେବାର କାର୍ଯ୍ୟଟି କରାଉଛନ୍ତି । ଏତିକିବେଳେ କିଏ ଆସିଲା ? କିଏ ଆସିଲା ପାରୁଲ୍ ପାଖକୁ ? ଆଉ କିଏ ଅଛି ? ପୁଅମାନଙ୍କ ଛଡ଼ା ? ଯେଉଁମାନେ ଚାକିରି ଜାଗାରୁ କଲିକତାକୁ ଯିବାଆସିବା କଲାବେଳେ ରାସ୍ତାରେ ଗୋଟାଏ କିମ୍ୱା ଅଧେ ଓଳି ପାଇଁ ଆସି ଦେଖା ଦେଇ ଯାଆନ୍ତି ଅଥବା ମା'ଙ୍କୁ ଦେଖି ଯାଆନ୍ତି ।

କିନ୍ତୁ ସେମାନେ ତ ନିଜେ ଆଗ ଚାଲିଆସନ୍ତି । ପଛରେ ପଛରେ ହୁଏତ ରିକ୍ସାବାଲା ଜିନିଷପତ୍ର ନେଇ–

ତେବେ କ'ଣ କିଏ ଅସୁସ୍ଥ ହୋଇ–

ତରବର ହୋଇ ତଳମହଲାକୁ ଓହ୍ଲାଇପଡ଼ିଲା ପାରୁଲ୍ । ଆଉ ଓହ୍ଲାଇପଡ଼ି ଥମକି ଠିଆ ହୋଇଗଲା ।

ପାହାଚରେ ଝରକା ପାଖରୁ ରିକ୍ସାରେ ବସିଥିବା ରୋଗିଣା ଝିଅଟାକୁ ହଠାତ୍ ଶୋଭନର ସ୍ତ୍ରୀ ବୋଲି ଭୁଲ୍ ହୋଇଥିଲା, ସେ ଗୋଟିଏ ଅପରିଚିତ ଝିଅ । ତା' ପାଖରେ ଜଣେ ଅପରିଚିତ ପୁରୁଷ ମୂର୍ତ୍ତି ।

କିନ୍ତୁ ଝିଅଟା କ'ଣ ଏକାବେଳେ ଅପରିଚିତ ? କେଉଁଠି ଯେମିତି ଦେଖିଛି, ନା ? ଆରେ କି ଆଶ୍ଚର୍ଯ୍ୟ, ଝିଅଟା ପାରୁଲ୍‌ର ପିତୃକୁଳର ନା ? ପାରୁଲ୍‌ର ଝିଆରୀ ତ ! ତେବେକେ ପାରୁଲନ ପଚାରି ରହିପାରିଲା ନାହିଁ– କିଏ ସେ ?

"ମୁଁ !"

ଝିଅଟା ଓହ୍ଲାଇ ପଡ଼ିଲା, ଯେପରି କଷ୍ଟରେ ନଇଁପଡ଼ି ଗୋଟାଏ ପ୍ରଣାମ ଭଳି କରିଦେଇ କହିପକାଇଲା– ମୁଁ ହେଉଛି ଶମ୍ପା । ଆପଣଙ୍କ ଭାଇଙ୍କ ଝିଅ । ପିଉସୀଙ୍କୁ, ମାନେ ସାନପିଉସୀଙ୍କୁ ଅବଶ୍ୟ ମୁଁ 'ତୁ' କରି କଥାବାର୍ତ୍ତା କହେ । କିନ୍ତୁ ଆପଣଙ୍କ ସାଙ୍ଗରେ ତ ଜମା ଜଣାଶୁଣା ନାହିଁ, ସେଥିପାଇଁ ଆପଣ ବୋଲି କହୁଛି । ଯଦି ଏଠି କିଛିଦିନ ରହିଯିବା ସମ୍ଭବ ହେବ ତ ପରେ ସେ କଥା ଦେଖାଯିବ । ଏଇଲେ କଥା ପଡ଼ିଛି ରହିବା, ଖାଇବା । ଅଦ୍ଭୁତ ଗୋଟିଏ ପରିସ୍ଥିତିରେ ପଡ଼ି ଚଟ୍‌କିନା ଆପଣଙ୍କର ଏଠାକୁ ଚାଲିଆସିଲି । କାହିଁକି ଆସିଲି ତା ଜାଣିନି । ଆପଣଙ୍କୁ ତ ସାତଜନ୍ମ ହେଲା ଚିହ୍ନିନି । ନିହାତି ସାନପିଉସୀର ଲେଖା ଲଫାଫାରେ ଠିକଣାଟା ସବୁବେଳେ ଦେଖି ଦେଖି ମୁଖସ୍ଥ ହୋଇଯାଇଥିଲା ସେଇଥିପାଇଁ...... ଏଇଲେ କଥାଟା ଶୁଣନ୍ତୁ......

–'ମତେ ତୁ ତୁମେ ବୋଲି କହ ।' ପାରୁଲ୍ ହସିଲା, 'ମୁଁ ରାଗିବିନି ।'

–ରାଗିବନି ତ ? ରକ୍ଷା ପାଇଲି ବାବା ! ଏତେବେଳ ପରେ କଥା କହିବାଟା ସହଜ ହେଲା । ଶୁଣ, ମୁଁ ନା– ଯାହାକୁ କହନ୍ତି ଗୋଟାଏ ଅସୁବିଧାରେ ପଡ଼ି, ମାନେ ବିରାଟ ଗୋଟାଏ ଅସୁବିଧାରେ ପଡ଼ି ନ ଭାବି-ଚିନ୍ତି ତମର ଏଠାକୁ ଚାଲିଆସିଲି, ବୁଝିଲ ? ନା, ଏକାବେଳେ ଯେ ଭାବିନି ତା' ନୁହେଁ, ଭାବିବା, ଚିନ୍ତିବା ଭିତରେ ତମର ନାଁଟା ମନେପଡ଼ିଗଲା । ଅବଶ୍ୟ ଉପକାରର ଆଶାରେ ହିଁ ଆସିଛି । ତେବେ ଉପକାର କରିବା ନ କରିବାଟା ତମର ଇଛା ।

ହେଇଟି ଏଇ ଯୋଉ ପୁଅଟାକୁ ରିକ୍ସାରେ ଦେଖୁଛ ନା ? ତା' ନାଁ ସତ୍ୟବାନ ଦାସ । ମାନେ ଆଉ କ'ଣ ବୁଝି ତ ପାରୁଥିବ— ବ୍ରାହ୍ମଣ-ସନ୍ତାନ ନୁହେଁ । ମାନେ ଏକାବେଳେ କୁଳିମକୁରିଆ ହେଲେ ସେ ଯାହାହେଉ ତାକୁ ବାହାହେବି ବୋଲି ଠିକ୍ କରିଛି, ଆଉ ସେଇଥିପାଇଁ ତା' ସଙ୍ଗେ ବୁଲାବୁଲି କରୁଛି । ହଠାତ୍ ମୋର ଶ୍ରୀଯୁକ୍ତ ବାପା, ମାନେ ଆଉ କ'ଣ ତମର ସାନଭାଇନା କେମିତି ଏ କଥାଟା ଜାଣିପାରି ଏକାବେଳେ ଅଗ୍ନିଶର୍ମା !

ଦମ୍ ନେଲା ଶମ୍ପା ।

କହିଲା— ଓଃ ସେ କି ରାଗ ! କହିଲେ— ସେ ହତଭାଗାଟା ସାଙ୍ଗରେ ମିଶିବୁ ଯଦି ଏ ଘରେ ରହିପାରିବୁନି ଇତ୍ୟାଦି ପ୍ରଭୃତି । ହେଲେ ମୁଁ ମଧ୍ୟ ତ ସେଇ ବାପାଙ୍କ ଝିଅ, ମୁଁ ମଧ୍ୟ ଛାଡ଼ିବି କାହିଁକି ? କହିଲି— ବେଶ୍ ଠିକ୍ ଅଛି । ତାକୁ ଯେତେବେଳେ ଛାଡ଼ିପାରିବିନି, ଘରକୁ ଛାଡ଼ିଦେଉଛି । ବାସ୍ ଚାଲିଆସିଲି । ଏପଟେ ଏହି ମହାପ୍ରଭୁଙ୍କ ବସାକୁ ଆସି ଦେଖିଲି ବାବୁ ଶହେଚାରି ଜର ଧରି କମ୍ବଳ ଘୋଡ଼େଇ ପଡ଼ିଛନ୍ତି, ବୁଝିଲ ନା ମୋ ଅବସ୍ଥା ? ମେସ୍‌ର ଘର, ଆହୁରି ଦି ଦିଇଟା ରୁମ୍-ମେଟ୍ ରହିଛନ୍ତି, ସେଠି ଏ ରୋଗୀଟାକୁ ଧରି କ'ଣ କରିବି ! ତା'ହେଲେ ଉପାୟ କ'ଣ ? ଶେଷକୁ ଏ ଉପାୟଟି ହିଁ ମୁଣ୍ଡକୁ ଆସିଗଲା । ମାନେ...... ଆଉ କ'ଣ, ବିପଦରେ ପଡ଼ିଲେ ହିଁ ପିଉସୀ ପାଖକୁ ଯିବାଟା ତ ଅଭ୍ୟାସ ? ଅଥଚ ପିଉସୀ ଏବେ ତାଙ୍କର ମାନ୍ୟଗଣ୍ୟ ଭାଇନାଙ୍କ ଘରେ । ସେତେବେଳେ ମନେପଡ଼ିଗଲା ଆଉ ପିଉସୀମାନେ ମଧ୍ୟ ଅଛନ୍ତି । ତାଙ୍କରି ପାଖକୁ ଚାଲିଯାଏଁ ! ଅବଶ୍ୟ ସମସ୍ତେ ତ ଆଉ ଏକାଭଳିଆ ହୁଅନ୍ତି ନାହିଁ । ତମେ ମଧ୍ୟ ଯେ ସାନ-ପିଉସୀ ଭଳିଆ ହେବ ତା'ର କୌଣସି ଅର୍ଥ ନାହିଁ । ଅଜଣା ଅଚିହ୍ନା ଏକ ଲକ୍ଷ୍ମୀଛଡ଼ା ଝିଆରୀ ରାସ୍ତାରୁ ଜ୍ୱରଗ୍ରସ୍ତ ଆଉ ଗୋଟିଏ ଲକ୍ଷ୍ମୀଛଡ଼ାକୁ ଜୁଟାଇ ନେଇଆସି, 'ତମ ଘରେ ରହିବି ମୁଁ' ବୋଲି ଜିଦ୍‌କଲେ ଯେ ତମେ ଆହ୍ଲାଦରେ ତରଳିଯାଇ 'ରହ ରହ' କହିବ ଏମିତି କଥା ନାହିଁ, କିନ୍ତୁ କ'ଣ କରିବି ? ଏକାବେଳେ ଉପାୟ ନ ଥିଲା, ଯାହାହେଉ ଗୋଟାଏ ଶେଯର ବ୍ୟବସ୍ଥା କରିଦିଅ ବାବା ଏଇ ତଳମହଲାର ଗୋଟାଏ ଘରେ । ୟାକୁ ଟିକିଏ ଶୁଆଇଦେବା ଦରକାର । ଦେଖୁଛ ତ କେମିତି ମୁଣ୍ଡ ଗୁଞ୍ଜି ଦେଇ ବସିଛନ୍ତି, ଗଡ଼ି ପଡ଼ିଲାକ୍ଷଣି ଦଫା ଶେଷ । କୌଣସିମତେ ଆସିବାକୁ ଚାହୁଁ ନ ଥିଲା, ମୁଁ ପ୍ରାୟ ଜୋର୍ କରି......

ତା'ର କଥାର ସ୍ରୋତରେ ଭାସିଯାଉଥିବା ପାରୁଲ୍ ଏତେସମୟ ପରେ ସେହି ସ୍ରୋତ ମଝିରେ ନିଜକୁ ଟିକିଏ ଯୁକ୍ତ କରିଦେଲା, କହିଲା, "ଆଚ୍ଛା ତୋର

ସେ ସବୁ କାହାଣୀ ପରେ ଶୁଣିବି, ଏଇଲେ ତାକୁ ନେଇ ଚାଲ୍ । ରିକ୍ସାବାଲା ତମେ ବାପା ଭାଇଙ୍କୁ ଟିକିଏ ଧରିଲ—''

ଏତେବେଳକୁ ଗାଡ଼ିର ଆରୋହୀ ମଧ୍ୟ ଟିକିଏ ଚେଷ୍ଟା କରି ସିଧା ହୋଇ ବସି ଜଡ଼ିତ ଗଳାରେ କହିଲା, ''ନା, ନା, ଧରିବା ଦରକାର ନାହିଁ ।

—''ନା ହବନି ! ଭାରି ସର୍ଦ୍ଦାରୀ ନା !'' ପ୍ରବଳ । ଗାର୍ଜେନ୍ ତା'ର ଗୋଟାଏ ହାତକୁ ଚିପିଧରି ଓହ୍ଲାଇବାକୁ ସାହାଯ୍ୟ କରି କହିଲା, ''ତା'ପରେ ରାସ୍ତାର ମଝିରେ ଆଲୁଦମ୍ ହେବ ଆଉ କ'ଣ ! ଚାଲ ଆସ୍ତେ ଆସ୍ତେ, ରିକ୍ସାବାଲା ସାବଧାନ—

ଯେତେ ଶୀଘ୍ର ସମ୍ଭବ ତଳମହଲାର ବୈଠକଖାନା ନାମଧାରୀ ଚିର ଅବ୍ୟବହୃତ ଘରଟାରେ ପଡ଼ିଥିବା ପଟାଖଟଟା ଉପରେ ଗୋଟାଏ ବିଛଣା ପକାଇ ଦେଇ ପାରୁଲ୍ ମଧ୍ୟ ଧରିବାରେ ଟିକିଏ ସାହାଯ୍ୟ କରି କହିଲା, ଏଇଲେ ତଳ ମହଲାରେ ହିଁ ବିଛଣାଟା ପକାଇଲି । ଜର ନ କମିଲେ ତ ପାହାଚ ଚଢ଼ିବା ସମ୍ଭବ ହେବନି । ଶାନ୍ତ ହୋଇ ଶୋଇଲେ ଡାକ୍ତରଙ୍କ ବ୍ୟବସ୍ଥା କରିବି !

ପୁଅଟି ଯେମିତି ଶୋଇଯାଇ ରକ୍ଷା ପାଇଗଲା । ପାରୁଲ୍ ଖବରକାଗଜଟିଏ ଧରି ବିଞ୍ଚୁ ବିଞ୍ଚୁ କହିଲା, ''ରିକ୍ସାବାଲା, ତୁ ଏଇଲେ ଚାଲିଯିବୁନି । ମୁଁ ତୋ ରିକ୍ସାରେ ଟିକେ ଯିବି । ବଜାର ପାଖରେ କୁଉଠି ଗୋଟାଏ ଡାକ୍ତରଖାନା ଅଛି ନା ? ଡାକ୍ତର ବସିଥାନ୍ତି ତ ?

—ଯା ହେଉ ମଣିଷ ରକ୍ଷା ପାଇଗଲା !

ଧପ୍‌କିନା ଖଟଟାର ଗୋଟାଏ ପାଖରେ ବସିଲା ଶମ୍ପା । ତା'ପରେ କାଗଜଟିକୁ ନେଇ ନିଜେ ପବନ ଖାଉ ଖାଉ କହିଲା, ଦେଖାଯାଉଛି, ମୋର ଜେଜେମା'ଙ୍କର ପୁଅଗୁଡ଼ିକ ଯେଉଁ ମାଟିରେ ତିଆରି, ଝିଅଗୁଡ଼ିକ ସେଥିରେ ତିଆରି ହୋଇ ନାହାନ୍ତି । ଅବଶ୍ୟ ବଡ଼ପିଉସୀ, ମଝିଆ ପିଉସୀଙ୍କ କଥା ଜାଣିନି, ତେବେ ତମେ ଦୁଇଜଣ ଭଲ ଲୋକ । ଏଇ, ତମେ ଯେ ସେତେବେଳେ କହୁଥିଲ ଶୋଷ କରୁଛି, ପାଣି ପିଇବ ?

—ଖାଲି ପାଣି ଥାଉ, ପଇଡ଼ ଘରେ ଅଛି, ରହ ଆଣି ଦେଉଛି । ତା'ପରେ ଡାକ୍ତର ଯାହା କହିବେ— ବୋଲି ପାରୁଲ୍ ଉଠି ଚାଲିଗଲା ।

ପାରୁଲ୍ ନିକଟରେ କାମଟା ଅଭାବନୀୟ ନିଶ୍ଚେ । ହଠାତ୍ ଏହି ପରିସ୍ଥିତିର ମୁହାଁମୁହିଁ ହୋଇ ଠିଆହେବାକୁ ନ ହେଲେ ପାରୁଲ୍ କ'ଣ ଭାବି ପାରିଥାନ୍ତା ସେ ବଜାରର ବୁଲାଣି ପର୍ଯ୍ୟନ୍ତ ଯାଇ ଡାକ୍ତରକୁ ଡାକିଆଣୁଛି !

ଭାବି ପାରି ନ ଥାନ୍ତା, ଅଥଚ ଏବେ ସେଇ କାମଟା ହିଁ କରି ପକାଇଲା । ସହଜରେ, ଅନାୟାସରେ । ମନୁଷ୍ୟ ଯେ ପରିସ୍ଥିତିର ଦାସ ମାତ୍ର ଏଥିରେ ଆଉ ସନ୍ଦେହ କ'ଣ ଅଛି ?

ତାକୁ ଔଷଧପଥ୍ୟ ଖୁଆଇବା ପରେ ଶମ୍ପା ହାଲିଆ ହୋଇ ବସିପଡ଼ି କହିଲା— ଏତେବେଳ ହେଲା କହିବାକୁ ଲାଜ ଲାଗୁଥିଲା, କେଜାଣି ତମେ ହୁଏତ ଭାବିବ ଝିଅଟା କି ପିଶାଚୀ ଗୋ ! ଏ ବିପଦବେଳେ କ'ଣ ନା ତାକୁ ନିଜର ଭୋକ କଥା ମନେପଡ଼ିଲା ତା'ର । ହେଲେ ଏଇଲେ ତ ଆଉ ରହି ହେଉନି ।

—"ଇସ୍ ! ଆହାରେ !" ପାରୁଲ୍ ଲାଜଭରା କଣ୍ଠରେ କହିଲା— ଛି, ଛି ! ମୁଁ କେମିତି ଲୋକଟେ ସତେ ! ଏଇଟା ତ ତୋ'ର କହିବା କଥା ନୁହେଁ, ମୋର ଉଚିତ ଥିଲା ତତେ ଆଗ ଅଳ୍ପ ଜଳଖିଆ ଖାଇବାକୁ ଦେଇଥାନ୍ତି ।

ଉଚିତ ପୁଣି କ'ଣ ? ଅକସ୍ମାତ୍ ଯାହା ଗୋଟାଏ ଗନ୍ଧମାଦନ ପର୍ବତ ଆଣି ଲଦିଦେଲି ତମ ମୁଣ୍ଡରେ ।'

## ॥ ୧୭ ॥

—ମୋର ଘରେ କିନ୍ତୁ ଭଲ ଜିନିଷ କିଛି ମହଜୁଦ ନ ଥାଏ—

ଶମ୍ପାକୁ ବସାଇ ତା' ଆଗରେ କେତୋଟି ବିସ୍କୁଟ୍ ଆଉ ଟିକିଏ ହାଲୁଆ ବାଢ଼ିଦେଇ ଟା' ଢାଲୁ ଢାଲୁ ପାରୁଲ୍ କହିଲା— ରସଗୋଲା ଫସଗୋଲା ଖାଇବାର ଇଚ୍ଛା ହେଲେ ନିଜେ ଦୋକାନକୁ ଯାଇ ଖାଇବାକୁ ପଡ଼ିବ ।

—"ଏବେ ନୁହେଁ, ହେଲେ ଭାରି ଇଚ୍ଛା ହେବ ।" ଶମ୍ପା ଆଗ ଢକ୍ ଢକ୍ କରି ଗିଲାସେ ପାଣି ପିଇଦେଇ କହିଲା— ସେ ଟୋକାଟା ଭଲ ହୋଇଗଲେ ଖାଇବି, ଭାରି ଲୋଭୀ ସେ ଜାଣିଛ ? ମିଠା ଖାଇବାରେ ଏକାବେଳେ ଯମ । ମୁଁ ଏକୁଟିଆ ଖାଇଲେ ଦେଖି ହିଂସାରେ ମରିଯିବ । ହେଲେ ତମର ହାଲୁଆ ମଧ୍ୟ କିଛି ମନ୍ଦ ହୋଇନି । ଏବେ ତ ଦେଖିଥିଲେ ହିଂସାରେ ମରିଯାଇଥାନ୍ତା । ଚା' ମଧ୍ୟ ଦେଉଛ ? ଗୁଡ୍ । ତମର ରନ୍ଧା ଖିଆ ସରିଗଲାଣି ?

ପାରୁଲ୍ ହସିଦେଇ କହିଲା— କ'ଣ ଯେ କହୁଛୁ ? ତୁ ଆସୁଛୁ । ମୁଁ ଖାଇପିଇ ବସିଥିବି ?

—"ତା'ର ଅର୍ଥ ?" ତମେ କ'ଣ ଜାଣିଥିଲ ମୁଁ ଆସୁଛି— !

—"ଜାଣିଥିଲି ତ' !" ହସିଲା ପାରୁଲ୍, କହିଲା, "ଜଣାପଡ଼େ—"

— ସେ କି କଥା ବାବା ? ଜ୍ୟୋତିଷ ହେରିକା ଜାଣିଛ ନା କ'ଣ ?

ପାରୁଲ୍ ପୁଣି ହସି କହିଲା, ଧରିନେ ଜାଣିଛି ।

— "ଜାଣିଛ ? ସତରେ ?" ଶମ୍ପା ସତେ ଯେମିତି ଡେଇଁପଡ଼ି ଉଠିପଡ଼ିଲା, କହିଲା— ତା'ହେଲେ ଖିଆପିଆ ପରେ ମୋ ହାତଟା ଟିକିଏ ଦେଖିବଟି । ପ୍ରେମ, ବିବାହ , ପାରିବାରିକ ସୁଖ, ଶିକ୍ଷାଦୀକ୍ଷା ଏସବୁର ଫଳାଫଳ କ'ଣ ହେବ ?

ପାରୁଲ୍ ତା'ର ମୁହଁ ଆଡ଼କୁ ଏକଲୟରେ ଚାହିଁରହି କହିଲା— ସବୁ ଫଳ ଭଲ ।

— ତମେ ଠକି ଦେଉଛ ! ଦେଖିବାକୁ ହେବ— କାହିଁ ତମେ ଚା' ଖାଇଲନି ?

ପାରୁଲ୍ ହସିଦେଇ କହିଲା— ମୁଁ ଏମିତି ବାରଟାବେଳେ ଚା' ଖାଏନି ।

—ଆରେ ବାବା ! ଏଇଟା କରୁନି, ଏଇଟା ଖାଉନି, ଏସବୁର କିଛି ଅର୍ଥ ଅଛି ? ଇଚ୍ଛା ହେଲାମାତ୍ରେ କରିବ ।

—ତା'ହେଲେ ଧରିନେ ଇଚ୍ଛାହେଉନି ।

—ସେଇଟା ଅଲଗା କଥା ! ତା'ହେଲେ ବରଂ ମତେ ଆଉ ଗୋଟିଏ କପ୍ ଦିଅ । ଆଚ୍ଛା ପିଉସୀ, ଏକୁ ଟିକିଏ ଦେଲେ କ'ଣ ଖରାପ ହେବ ?

—ତାକୁ ? ଓ ! ମାନେ ଚା' ? ନା, ନା ଏତେ ଖରାରେ ଜର ଉପରେ— ଏଇଲେ ତ ଓଷଧ ଖାଇଛି ।

—"ତା'ହେଲେ ଥାଉ । ଚା' ବୋଇଲେ ମରିଯିବ ! ସେଥିପାଇଁ ମନଟା ଖରାପ ଲାଗୁଛି ।" କହି ଚାହା ପ୍ଲେଟ୍‌ର ଧାରରେ ଚାମଚଟାକୁ ଠୁକ୍ ଠୁକ୍ କରି ଠୁକେଇବାକୁ ଲାଗିଲା ଶମ୍ପା ।

—ତା ନାଁ କ'ଣ କହିଲୁଟି ?

ଖାଇପିଇ ସୁସ୍ଥ ହୋଇ ଶମ୍ପା ମୁହଁଟାକୁ ପୋଛୁ ପୋଛୁ କହିଲା, ମାନେ ମା' ବାପାଙ୍କ ଦେବା ନାଁ ସତ୍ୟବାନ । ମୁଁ ଜାମ୍ବବାନ୍ ବୋଲି ଡାକେ ।

ପାରୁଲ୍ ଯେପରି ଝିଅଟାର କଥାବାର୍ତ୍ତା ଶୁଣି ଅଧିକ ଆକୃଷ୍ଟ ହୋଇଯାଉଥିଲା । ଆଶ୍ଚର୍ଯ୍ୟ ତ ! ପାରୁଲର ସେହି ସାନଭାଇନାର ଝିଅ ଏ ? ସାନଭାଇନାର ଚାଲିଚଳଣ— ଧରଣ ଧାରଣ ସବୁ ତ ସନାତନୀ । ସେହି ସନାତନୀ ବାୟୁମଣ୍ଡଳରୁ ଏମିତି ଗୋଟିଏ ନିର୍ଲଜ୍ଜ ଝିଅ ଜନ୍ମହେଲା କିପରି ? କହିଲା, "ହେଲେ ଏ ଜାମ୍ବବାନର ଗଳାରେ ମାଳା ଦେବାର ଇଚ୍ଛା ତୋ'ର କେମିତି ହେଲା ?

—ତମେମାନେ ବିଧିଲିପି ନା କ'ଣ କହ, ସେଇୟା ଆଉ କ'ଣ ?

—ଆମେମାନେ ଯେ ବିଧିଲିପିରେ ବିଶ୍ୱାସୀ, ଏ କଥା ତତେ କିଏ କହିଲା ?

—ଆରେ ବାବା ! ସେଇଟା କ'ଣ କହିବାକୁ ହୁଏ ? ଯେ କୌଣସି ସମୟରେ ହେଲେ ସମସ୍ତଙ୍କୁ ତା' ହେବାକୁ ପଡ଼ିବ । ହେଇଟି ମତେ ଦେଖୁନ, ମୁଁ କିଛି ମାନେନି ପୁଣି ସେ ହତଭାଗାଟା ପାଇଁ ମାନସିକ କରିଛି ପୂଜା କରିବି । ଏବେ କେମିତି ଯେ—

ପାରୁଲ୍ ହସିପକାଇ କହିଲା— ସେଥିରେ ଆଉ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ପିତୃପିତାମହଙ୍କ ରକ୍ତଧାରା ଯିବ କୁଆଡ଼େ ? କିନ୍ତୁ ଏ ନିଧିଟିକୁ କୁଆଡୁ ଜୁଟାଇଲୁ ?

'ଏ ମା' ! ତମେ ଯେ ଠିକ୍ ପିଉସୀ ଭଳି କଥା କହିଲ ! ହଠାତ୍ ମନେହେଲା ପିଉସୀ ହିଁ ବୋଧହୁଏ କଥା କହିଲେ । ଗଳାର ସ୍ୱରଟା ମଧ୍ୟ ତମର ଠିକ୍ ପିଉସୀ ପରି । ଯଦିଚ ତମେ ଦେଖିବାକୁ ଆହୁରି ଅଧିକ ସୁନ୍ଦରୀ । ତମର ବାପା ବୁଢ଼ା ଭାରି ସୁପୁରୁଷ ଥିଲେ, ସେଇୟା ନା ?

—"ଥିଲେ ।" ପାରୁଲ୍ ଟିକିଏ ଗମ୍ଭୀର ହୋଇ କହିଲା— 'ମା' ମଧ୍ୟ ଭାରି ସୁନ୍ଦର ଥିଲେ ।'

ଶମ୍ପା ମଧ୍ୟ ହଠାତ୍ ଗଭୀର ସ୍ୱରରେ କହିଲା, "ଭାବିଲେ ସମୟ ସମୟରେ ଭାରି ଆଶ୍ଚର୍ଯ୍ୟ ଲାଗେ । ଘରଟା ସେହି ଘର ରହିଛି । ସେହି ଘର, ଅଗଣା, ଦୁଆର, ଅଥଚ ମଣିଷଗୁଡ଼ାକ ବଦଳି ଯାଉଛନ୍ତି, ସଂସାରର ରୀତିନୀତି ବଦଳି ଯାଉଛି । ଦଳେ ଚାଲି ଯାଉଛନ୍ତି, ଦଳେ ଆସୁଛନ୍ତି—"

ପାରୁଲ୍ ମୃଦୁ ହସି କହିଲା —"ଦଳେ କାନ୍ଥରେ ମୁଣ୍ଡ ପିଟୁଛନ୍ତି ଆଉ ପରବର୍ତ୍ତୀ ଦଳ ସେହି କାନ୍ଥ ଭାଙ୍ଗୁଛନ୍ତି—"

ଶମ୍ପା ଟିକିଏ ଚାହିଁଦେଖି, ପୁଣି କହିଲା— ତମ ଦି'ଭଉଣୀଙ୍କ ଭିତରେ କଥାରେ ଓ ଚିନ୍ତାଧାରାରେ ବହୁତ ସମାନତା ରହିଛି । ହେଲେ କହିଲେ ତମର କ'ଣ ମନେ ହେଉଛି ଯେଉଁମାନେ ଭାଙ୍ଗୁଛନ୍ତି ସେମାନେ ଭୁଲ୍ କରୁଛନ୍ତି ?

ପାରୁଲ୍ ସେହିପରି ମୃଦୁ ହସି କହିଲା— ମୁଁ କହିବାକୁ କିଏ ? କୋଉଟା ଭୁଲ୍ କୋଉଟା ଠିକ୍ ସେ ବିଷୟରେ ରାୟ ଦେବାର ମାଲିକ ହେଉଛି କେବଳ ଇତିହାସ । ଖାଲି ଏତିକି କହିପାରେ ଯାହା ହେଉଛି ତାହା ଅନିର୍ବାର୍ଯ୍ୟ ।ଇତିହାସର ନିୟମ । ସେହି ନିୟମ ରକ୍ଷା କରିବା ପାଇଁ ମୋର ବାପାଙ୍କ ନାତୁଣୀ ଛାୟବାନ୍‌ର ଗଳାରେ ମାଳା ଦେବ ।...... ଏଇଲେ ଆଡ୍‌ଡା ଭଙ୍ଗ ହେଉ ବାବା, ଯାଇ ଦେଖେ ପିଉସୀ-ଝିଆରୀ କ'ଣ ଖାଇପାରିବା । ଅବଶ୍ୟ ମୋର ରନ୍ଧାଘରେ

କୌଣସି ସମାରୋହର ଆଶା କରନା, ନିହାତି ଆଳୁସିଝା ଆଉ ଭାତର ବ୍ୟବସ୍ଥା ଅଛି । ବଡ଼ଜୋର୍‌ରେ ହେଲେ ଖେଚେଡ଼ି ।

—"ବାସ୍ ବାସ୍ ସେଥିରେ ହିଁ ଚଳିବ ।" କହିପକାଇଲା ଶର୍ମା,— ଯା' ଚାଲିଯା କହି ତଡ଼ି ନ ଦେଇ ଘରେ ଜାଗା ଦେଇଛ, ସେତକ ଯଥେଷ୍ଟ, ପୁଣି ରାଜଭୋଗ ପାଇଁ ଜିଦ୍ କରିବି ନା କ'ଣ ? ମତେ ବେଶୀ କଥା କହିଆସେନି ସେଥିପାଇଁ, ନ ହେଲେ ତମ ଉଦ୍ଦେଶ୍ୟରେ 'ମହତ୍-ଫହତ୍' ବୋଲି ଗୋଟାଏ ପ୍ରଶସ୍ତି ଗାଇଦେଇ ପାରିଥାନ୍ତି ।

—ତମକୁ ବେଶୀ କଥା କହିବା ଆସେନି ରକ୍ଷା, ଏବେ ଯା ଦେଖେ ତୋ'ର ରୋଗୀର କ'ଣ ହେଉଛି । ଏଇଲେ ଶୋଇଛି ଆହୁରି, ନା ନିଦ ଭାଙ୍ଗିଲାଣି ?

—"ଯାଉଛି ।" ସହସା ଗମ୍ଭୀର ଭାବରେ ଶର୍ମା କହିଲା— ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି ତମକୁ ନ ଚିହ୍ନି ନ ଜାଣି ଚାଲିଆସିଲି କେମିତି ?

—କିଏ କହିଲା, ଜାଣି ନ ଥିଲୁ ଚିହ୍ନି ନ ଥିଲୁ ବୋଲି ?

—ଜାଣିଥିଲି କହୁଛ ? ତା' ହେଇଥିବ । ହୁଏତ ଜାଣିଥିଲି । ସେଥିପାଇଁ ସାହସ ହେଲା । ହଠାତ୍ ତା'ର ଏମିତି ଜର ଫର ହୋଇ— ମାନେ କିଛିଦିନ ପୂର୍ବେ ଥରେ ଭାରି ଦେହ ଖରାପ ହୋଇଥିଲା, ବଞ୍ଚିବ କି ମରିବ ଏମିତି ଅବସ୍ଥା । ଭଲ କରି ଛାଡୁ ନ ଛାଡୁଣୁ ଆଉଥରେ ଖଟିବାକୁ ଲାଗିଲା, ତେଣୁ ଏ ଅବସ୍ଥା । କୁଲିମଜୁରିଆ କାମ ତ । ହେଲେ ନିଜ କଥା ତ ସାତକାହାଣ କହିଲିଣି, ତମ କଥା ଶୁଣେ । ତମର ଦୁଇପୁଅ ତ ଅନ୍ୟ ଜାଗାରେ ଥାଆନ୍ତି, ତମ ପାଖରେ କିଏ ରହୁଛି ?

—ମୋ ପାଖରେ ? ମୁଁ ନିଜେ ରହେ ।

—ବାଃ ଚମତ୍କାର ! ବେଶ୍ ଭଲରେ ଅଛ ମନେହେଉଛି ! ଗଙ୍ଗା ଉପରେ ବାରଣ୍ଡା ତିଆରି ହୋଇଥିବା ଏମିତି ଗୋଟାଏ ଘର, ଖାଲି ନିଜକୁ ଧରି ରହିଛି— ପାରୁଲ ଅଳ୍ପ ହସି କହିଲା— ଖାଲି ନିଜକୁ ଧରି ରହିବାଟା ତୋ' ପାଖରେ ଗୋଟାଏ ଆଦର୍ଶ ଜୀବନ ବୋଧହୁଏ ?

—"ମୋ ପାଖରେ ?" ଶର୍ମା ହସି ପକାଇଲା— ମୁଁ ତ ଏଇଟା ଭାବିପାରୁନି । ମୋର ମନେହୁଅନ୍ତା— କେହି ମତେ ଭଲପାଉ ନାହାନ୍ତି । କେହି ମୋ ପାଇଁ ବିକଳ ହେଉ ନାହାନ୍ତି, କେହି ମୋ ବିନା ପୃଥିବୀକୁ ଅନ୍ଧକାର ଦେଖୁ ନାହାନ୍ତି । ଏମିତି ଜୀବନ ଅସହ୍ୟ । ତେବେ ତମ କଥା ଅଲଗା । ତମର ବୟସ ହୋଇଗଲାଣି...... ଆଚ୍ଛା ତା'ହେଲେ ଚଳକୁ ଯାଉଛି !

ପାରୁଲ୍ ବୋଧହୁଏ ଶେଷଆଡ଼ର ବିଦାୟ ପ୍ରାର୍ଥନାଟା ଶୁଣିପାରିଲା ନାହିଁ । ସେଥିପାଇଁ ଆସ୍ତେ କହିଲା— ଏତେ କଥା ତୁ ଶିଖିଲୁ କୁଆଡୁ ?

—କେଜାଣି ! ହୁଏତ ମନକୁ ମନ । ତେବେ ମା' କହିଲେ— କୁଆଡ଼େ ପିଉସୀ ମୋର ବାରଟା ବଜେଇ ଦେଇଛି । ପିଉସୀର ଦୃଷ୍ଟାନ୍ତ ହିଁ ମୋର ପରକାଳକୁ ଝଳଝଳ କରିଦେଇଛି । ଅଥଚ ଦେଖ ସେମିତି ସାମଞ୍ଜସ୍ୟ କିଛି ନାହିଁ । ପିଉସୀ ସାରା ଜୀବନଟାଯାକ ଖାଲି ମନଗଢ଼ା ପ୍ରେମର ଗଳ୍ପ ହିଁ ଲେଖିଲା, ସତ ପ୍ରେମର କଥା ଜମା ଲେଖିଲାନି, ଆଉ ମୁଁ ତ ସେ ଆଠବର୍ଷ ବୟସରୁ ପ୍ରେମରେ ପଡ଼ିଆସୁଛି !

—ଚମତ୍କାର ! ହେଲେ ସବୁଗୁଡ଼ିକ କ'ଣ ସତ ପ୍ରେମ ?

—ସେତେବେଳେ ସେଇୟା ତ ମନେ ହେଉଥିଲା, ତେବେ କ'ଣ ଜାଣିଛ, ଧୋବା ଘରେ ଲୁଗା ପଡ଼ିଲେ ବେଶୀଦିନ ରହେନି । ଦୁଇଦିନ ଦଶଦିନ ଟିକିଏ ଭଲପାଇବା ଭଳି ଲାଗିଲେ ଟୋକାଗୁଡ଼ାକ ଧରିନିଅନ୍ତି ଯେ ବାହାଘର ହେଇଯିବ ; ମୋର ଦି ଆଖିର ବିଷ ! ଖାଲି ଭଲ ପାଇବାଟା ବୋଧହୁଏ ଗୋଟାଏ ମଜାର ଜିନିଷ ନୁହେଁ !

ପାରୁଲ୍ ଈଷତ୍ ଗମ୍ଭୀର ଗଳାରେ କହିଲା— ହଁ ମଜା ଲାଗେ ନିଶ୍ଚୟ । ତେବେ କଥା ହେଉଛି, କଥା ହେଉଛି ତା'ହେଲେ ଏ ଲୋକଟିକୁ ଦୁଇ ଆଖିରେ ବିଷ ଭଳି ଦେଖିଲୁନି କାହିଁକି ? ବାହାଘର ପ୍ରଶ୍ନ କହିଲାରୁ ସିନା ବାପ ସହିତ ଝଗଡ଼ା ହେଲା ?

ଶମ୍ପା ମଧ୍ୟ ହଠାତ୍ ଗମ୍ଭୀର ଗଳାରେ କହିଲା— ଏ କ୍ଷେତ୍ରରେ କଥା ଟିକିଏ ଅଲଗା । ଏଠି ଏ ହତଭାଗାଟା ନିଜେ ବାହାଘର ବିପକ୍ଷରେ । ଖାଲି କହେ— ଚାଲିଯାଅ ତମେ ବାବା, ମୋ'ଠାରୁ ଦୂରକୁ ଘୁଞ୍ଚିଯାଅ ! ତମର ବାପା କେତେ ମୂଲ୍ୟବାନ ଛାତ୍ରପାତ୍ର ଆଣି ବାହାଘର କରିଦେବ, ମୁଁ ହତଭାଗ୍ୟ ଲୋକଟେ, ଚାଳ ଖଣ୍ଡେ ନାହିଁ, ଚାକିରିର ସ୍ଥିରତା ନାହିଁ, ସ୍ତ୍ରୀକୁ କ'ଣ ଖାଇବାକୁ ଦେବି ତା ଠିକ୍ ନାହିଁ, ମୋ ସହିତ କାହିଁକି ଦୋସ୍ତି କରିବାକୁ ଆସିଛ ?...... ମୋର ମଧ୍ୟ ସେଥିପାଇଁ ଜିଦ୍‌ଟା ବଢ଼ିଯାଇଛି— '

ପାରୁଲ୍ ତା' ଆଡ଼କୁ ଚାହିଁ ଆସ୍ତେ କହିଲା— ଏ ବାହାଘରେ ସୁଖୀ ହୋଇପାରିବୁ ?

ଶମ୍ପା ଅମ୍ଳାନ ବଦନରେ କହିଲା— ହେବାକୁ ବାଧା କ'ଣ ? ସୁଖୀ ହେବା ତ କେବଳ ନିଜ ହାତରେ । ତେବେ ଯଦି ହତଭାଗାଟା ମରି ଫରି ଯିବ ସେ ଅଲଗା କଥା ।'

'ଷଠୀ ମା' ରଖନ୍ତୁ ।' ପାରୁଲ୍ କହିଲା– ଝିଅ ତୋ ମୁହଁରେ କ'ଣ କିଛି ବାଡ଼ବତା ନାହିଁ ?'

–"ପିଉସୀ ମଧ୍ୟ ସେଇୟା କହେ ।" ଶମ୍ପା ହସି ହସି ଚାଲିଗଲା ।

ଅଭାବନୀୟ ଗୋଟାଏ ଗୁରୁ ଭାର କାନ୍ଧରେ ପଡ଼ିବା ସତ୍ତ୍ୱେ ଭାରି ଭଲ ଲାଗୁଥିଲା ପାରୁଲ୍‌କୁ । ଭଲ ଲାଗୁଥିଲା !

## ।। ୧୮ ।।

ଅନେକ– ଅନେକ ଦିନ ପରେ ଚନ୍ଦନ ଆସିଲା ବାପଘରକୁ । ଅଥବା ଭାଇମାନଙ୍କ ଘରକୁ । ଆବିର୍ଭାବଟା ଅପ୍ରତ୍ୟାଶିତ ।

ସ୍ୱର୍ଗତ ପ୍ରବୋଧକୁମାରଙ୍କ ବଡ଼ଝିଅ ଚମ୍ପା ବରଂ କେତେବେଳେ କେମିତି ଏ ଘରକୁ ଆସେ, ପାଚିଲାବାଳର ମଝିରେ ସୁଗୋଲ ଚନ୍ଦା ଉପରେ ବେଶୀଟିକିଏ ସିନ୍ଦୂର ଲିପି ଆଉ କପାଳ ମଝିରେ ବଡ଼ ସିନ୍ଦୂର ଟୋପାଟିଏ ପିନ୍ଧି, ଢିଲା ସେମିଜ୍ ଉପରେ ଓସାରିଆ ଧଡ଼ି ଶାଢ଼ୀଟିଏ ଗୁଡ଼ାଇ ହୋଇ ପ୍ରସାଧିତ ବେଶରେ ଆସି ଗୋଡ଼ଲମ୍ବାଇ ବସେ । ଯେତେସମୟ ଥାଏ ନିଜ ଆଣ୍ଠୁର ବାତ, ଅମ୍ଳଶୂଳ ଓ ସ୍ୱାମୀଙ୍କର ଶ୍ୱାସ, ରକ୍ତଆମାଶୟ ଏବଂ ଚିଡ଼ିଚିଡ଼ା ସ୍ୱଭାବ ବିଷୟରେ ଗଳ୍ପ କରେ, ଭାଇ ଭାଇ-ବୋହୂ ପୁତୁରାବୋହୂଙ୍କ ବିଷୟରେ ପଚିଶି ତିରିଶିଟା ନାଲିସ୍ ଲଦି ଦେଇ, ବନ୍ଧେଇଥିବା ଦାନ୍ତଭାଡ଼ିକ ଖୋଲି ରଖିଦେଇ ପାକୁଳି ପାକୁଳି ସିଙ୍ଗଡ଼ା, କଚୁରୀ, ସନ୍ଦେଶ, ରସଗୋଲା ଖାଇ, ବକୁଳ ସମ୍ପର୍କରେ କିଛି ତଥ୍ୟ ଆଉ ତା'ର ଲେଖା ଦୁଇଚାରିଟା ବହି ସଂଗ୍ରହ କରି ଚାଲିଯାଏ ସେ । କୋଉଦିନ ଦେଖା ହୁଏ ବକୁଳ ସାଙ୍ଗରେ, କୋଉଦିନ ଦେଖାହୁଏନି । ଦେଖା ହେଲେ ପ୍ରତ୍ୟେକ ଥର ହିଁ ନୂଆ କରି ଥରଟେ ପଚାରେ । "ନିଜର ଏଡ଼େସୁନ୍ଦର ଖାସ ନାଁଟେ ଥାଉ ଥାଉ ଏମିତି ଗୋଟାଏ ଅନାମି-ବିନାମି ନାଁ ଲେଖିବାକୁ ତୋ'ର ଇଚ୍ଛା ହେଉଛି ?

ତା'ପରେ ପାକୁଆ ପାଟିରେ ଭଲରୂପେ ହସି କହେ, ମୋର ଝିଆରୀ, ପୁତୁରାବୋହୂମାନେ ଆଉ ନାତୁଣୀ ଟୋକୀଟା ତୋ ନାଁ ଖାଲି ଗାଉଛନ୍ତି ! ତୋ ନାଁ ଶୁଣିଲେ ମରିଯାଉଛନ୍ତି ! ଏସବୁ ବହି ଫହି ତାଙ୍କରି ପାଇଁ ନେଇଯାଉଛି । ମୁଁ ତ ସାତଜନ୍ମରେ ନାଟକ-ନଭେଲ ପଢ଼େନି । ହେଲେ ସେମାନଙ୍କର ଏତେ କୌତୂହଳ । ତୁ କେମିତି ଲେଖୁଛୁ, କେମିତି ଚାଲୁଛୁ, କେମିତି ଉଠୁଛି, କେମିତି ବସୁଛି । ମୁଁ କହେ, ଆରେ ବାବା ଆମରି ଭଉଣୀ ତ, ଆମେ ଯେମିତି

ସେ ସେମିତି । ଚାରିଟା ପାଦ ମଧ୍ୟ ନାହିଁ । ମୁଣ୍ଡରେ ଦୁଇଟା ଶିଙ୍ଗ ମଧ୍ୟ ନାହିଁ । ତେବେ ବାହା ହେଲାନି । ପାଦରେ ପବନ ବଜାଇ ଜୀବନଟା କଟାଇଦେଲା, ସେଥିପାଇଁ ଟାଣୁଆ ଅଛି । ହେଲେ ଟୋକୀଗୁଡ଼ାକର ବଡ଼ ଇଚ୍ଛା ବୁଝିଲୁ ତୋ' ସହିତ ଦେଖା କରିବାକୁ, ମାନେ ତତେ ଥରଟେ ଦେଖିବେ, ମୁଁ ନିଜେ ସେମାନଙ୍କୁ ଆଣୁନି ।

ଅଳ୍ପ ହସି ବକୁଳ କହେ, "ଆଣୁନୁ କାହିଁକି ଯେ ?"

ଚମ୍ପା ହୁଏତ ପର୍‌କିନା ଅଗଣା କୋଣରେ, ନ ହେଲେ ପାହାଚ କଣରେ ଥୋଡ଼ାଏ ପାନଛେପ ପକାଇ ମୁହଁକୁ ଖାଲି କରି ଦେଇ କହିବ— ଆଣିବା ଅର୍ଥ ତ ମୁଁ ହଇରାଣ ହେବା । ସେମାନଙ୍କ ପାଇଁ ଗାଡ଼ି ଭଡ଼ା କରେ, ହା-ହୁତାଶ ହୋଇ ବସି ରହ କେତେବେଳେ ବେଶବାସ ସରିବ, ପୁଣି ଫେରିବା ପାଇଁ ତାଗିଦା ରହିଥିବ, ଏତେ କଥା ଭଲ ଲାଗେନି । ହେଇଟି ମୁଁ ସ୍ୱାଧୀନ ଭାବରେ ଆସିଲି । ଦି' ଦଣ୍ଡ ବସିଲି, ମୁହଁ ଫିଟାଇ ଘର ବିଷୟରେ ଦି' ଚାରିପଦ ଗପ କଲି, ସରିଲା । ସେଥିପାଇଁ ସେମାନଙ୍କୁ କହେ, ସେ ଅନାମୀ ଦେବୀକୁ ଦେଖି ତମମାନଙ୍କର କ'ଣ ଚାରିହାତ ଗଜୁରିବ ?''...... ସେଠୁ ସେମାନେ କହନ୍ତି, ବେଶ୍ ତା'ହେଲେ ତାଙ୍କର ବହି ନେଇ ଆ । ଦେ ବାବା, ଦି ଚାରିଖଣ୍ଡ ବହି ଦେଲୁ ।

ଚମ୍ପାକୁ ସୁବର୍ଣ୍ଣଲତାଙ୍କ ଝିଅ ବୋଲି ମନେ ହୁଏ ନାହିଁ ।

ଫେରିଲାବେଳକୁ ବହି ପେକେଟ୍‌କୁ ବାନ୍ଧୁ ବାନ୍ଧୁ ଆଉ ପଦେ କଥା ମଧ୍ୟ କହିଦେଇଯାଏ ଚମ୍ପା, 'ଏଇଲେ ତ ନୂଆ ଆଇନ୍‌ରେ ଝିଅମାନେ ମଧ୍ୟ ବାପାଙ୍କ ସମ୍ପତ୍ତି ପାଉଛନ୍ତି, ହେଲେ ଆମମାନଙ୍କର କପାଳରେ ଆଇନ କାନୁନ ସବୁ ମିଛ, ଯେଉଁ ଘାସ ପାଣିକୁ ସେଇ ଘାସ ପାଣି ! ଯାହାହେଉ ତୁ ଚାଲାକି କରି ବାପାଙ୍କ ଘରଟା ବେଶ୍ ଭୋଗ କରୁଛୁ ।

ବକୁଳ ଅଳ୍ପ ହସିଦିଏ । ହସଟା କ'ଣ ନିଜର ଚାଲାକିର ମହିମାରେ ? ଚମ୍ପାର ସେହି ଆସିବାଟା ଦୈବାତ୍‌ର ଘଟଣା ହେଲେ ମଧ୍ୟ, କେବେ କେବେ ଘଟିଥାଏ ।

କିନ୍ତୁ ଚନ୍ଦନ ?

ତା'ର ଚେହେରାଟାକୁ ସୁଦ୍ଧା ଭୁଲି ଯାଇଛନ୍ତି ଏ ଘରର ଲୋକମାନେ ।

ଅଥଚ ଏମିତି କିଛି ଦୂରରେ ରହୁନି । ରାଣାଘାଟରେ ଥାଏ । ତେବେକେ ଚନ୍ଦନର ପାଦଧୂଳି ଏ ଘରେ ଦୁର୍ଲଭ ।

ଚନ୍ଦନର ଶ୍ୱଶୁର ରାଣାଘାଟର ଜଣେ ନାମଜାଦା ଓକିଲ ଥିଲେ । ସେଠି ସେ ବିଷୟ-ସମ୍ପତ୍ତି କରି ଦେଇ ଯାଇଛନ୍ତି । ଜମିଜମା, ବଗିଚା, ପୋଖରୀ, ଧାନଚାଉଳ ଅଛି, ଚନ୍ଦନର ସ୍ୱାମୀ ବଞ୍ଚିଥିଲାବେଳେ ସେଇୟା ସମ୍ବଳ କରି ଚଳିଛନ୍ତି । ଏଇଲେ ଚନ୍ଦନ ହେଉଛି ସେଥିର ମାଲିକ । ଚନ୍ଦନର ଛଅଟି ଝିଅ, ପୁଅ ନାହିଁ । ଝିଅମାନେ ସମସ୍ତେ ପ୍ରାୟ ବାହା ହୋଇଗଲେଣି । ଜଣେ କେବଳ ଅବିବାହିତ ହୋଇ ଏପର୍ଯ୍ୟନ୍ତ ରହିଛି । ତେବେକେ ଚନ୍ଦନର ମରିବାକୁ ସମୟ ନାହିଁ । ସେହି ଦୁର୍ମୂଲ୍ୟ ସମୟରୁ କିଛି ବାଜେ ଖର୍ଚ୍ଚ କରି ଏବଂ ରେଲଗାଡ଼ି ଭଡ଼ା ଖର୍ଚ୍ଚ କରି ଚନ୍ଦନ ହଠାତ୍ ଭାଇର ଘରକୁ ଆସିଲା କାହିଁକି ? ଏଇଟା ଦୁର୍ବୋଧ । ଝିଅମାନଙ୍କ ବିଭାଘରେ ଗୋଟାଏ ନିମନ୍ତ୍ରଣପତ୍ର ପଠାଇବା ଛଡ଼ା ଆଉ ତ କୌଣସି ଯୋଗାଯୋଗ ହିଁ ରଖି ନାହିଁ । ଏମାନେ ମଧ୍ୟ ରଖି ନାହାନ୍ତି । ପତ୍ରର ଉତ୍ତରରେ କିଛି ମନିଅର୍ଡ଼ର– ବାସ୍ ।

ଆସି ଠିଆହୋଇ ବିସ୍ମୟ ଆନନ୍ଦ ଏବଂ କୌତୂହଳର ପ୍ରଶ୍ନ ଶିକାକୁ ଉଠାଇଦେଇ ଆଗ ଟାକ୍ସିରୁ କଢ଼ାଯାଇଥିବା ଜିନିଷପତ୍ରଗୁଡ଼ାକ ବିଷୟରେ ହିଁ ବ୍ୟତିବ୍ୟସ୍ତ ହୋଇପଡ଼ିଲା ଚନ୍ଦନ । ଘରର ସମସ୍ତେ ଏବେ ଗୋଟିଏ ହାଣ୍ଡିର ନା ଭିନ୍ନ ହାଣ୍ଡିର, ଏ ପ୍ରଶ୍ନ ତାକୁ ଉତ୍ତାଳ କରିପକାଇଲାଣି । ଭିନ୍ନ ହାଣ୍ଡି ହୋଇଥିଲେ ତ ଯାହା କିଛି ଆଣିଛି, ଯଥା ରାଣାଘାଟର ବିଖ୍ୟାତ କାଁଜାଗୋଲା, କଅଁଳ ଭେଣ୍ଡି, ସଜନାଛୁଇଁ, କଞ୍ଚା ଅମୃତଭଣ୍ଡା, ବଡ଼ ସାରୁ ଇତ୍ୟାଦି ସବୁ ଭିନ୍ନ ଭିନ୍ନ ଭାଗ କରିବାକୁ ପଡ଼ିବ ।

କିନ୍ତୁ ପଚାରିବାଟା ମଧ୍ୟ କଷ୍ଟକର ।

ତେବେ କଥାର କୌଶଳରେ ଜଗତ ଚଳେ ଏ ଭରସା ଅଛି । ଡାକ ପକାଇ ଚନ୍ଦନ କହିଲା– ଆଲୋ ସମସ୍ତେ କୁଆଡ଼େ ଗଲ ? ସମସ୍ତେ କ'ଣ ରନ୍ଧାଘରେ ଅଛ ? ତା'ପରେ ଦୃଷ୍ଟିକୁ ତୀକ୍ଷ୍ଣ କଲା ସେ– ଦେଖିବ କିଏ କେଉଁଆଡ଼ୁ ଆସୁଛନ୍ତି ?

ଯାଭିତରେ ଖବରଟା ପ୍ରଚାରିତ ହୋଇଯାଇଥିଲା ଏବଂ ସମସ୍ତେ ସଚକିତ ହୋଇ ଉଣ୍ଟୁଥିଲେ– ଏ ହଠାତ୍ କାହିଁକି ଆସିଛନ୍ତି ? ଅପ୍ରସ୍ତୁତ ହେବା କଥା ତାଙ୍କର । କିନ୍ତୁ ସେ ଅପ୍ରସ୍ତୁତ ହେବାର ଝିଅ ନୁହନ୍ତି, ସେ ତାଙ୍କର ବୁଢ଼ୀମା' ମୁକ୍ତକେଶୀଙ୍କ ହାତରେ ତିଆରି ହୋଇଛନ୍ତି । ସେଥିପାଇଁ ସେ କୁଆଡ଼କୁ ନ ଚାହିଁ ସାଙ୍ଗରେ ଥିବା ଲୋକଟାକୁ ନିର୍ଦ୍ଦେଶ ଦେଲେ– ମାଛତକ ଅଗଣାରେ ରଖି ସେ କଳରେ ହାତ ଧୋଇ ଯାଇ ଅନ୍ୟ ଜିନିଷରେ ହାତ ଦେବୁ । ରହ ରହ, ପାଚଲା କୋଳିଗୁଡ଼ାକୁ ଆଉ ଚକଟିପକାନା । ଆଚାର ତିଆରି

କରି ଆଣିବି ଭାବିଥିଲି, ହେଲେ ହଠାତ୍ ଚାଲିଆସିଲି ତ ।...... ସବୁବେଳେ ତ ସାଙ୍ଗ କିଏ ଜୁଟନ୍ତି ନାହିଁ । କେବେହେଲେ ତ ଭାଇଭାଉଜ ଆଉ ଡାକିବେନି, ତେବେକେ ବାପର ଘର, ମା-ବାପାଙ୍କ ସ୍ମୃତି ଆଖିରେ ଟିକିଏ ଦେଖିବାକୁ ଇଚ୍ଛା ହୁଏ ।...... ବଡ଼ ପୋଖରୀରେ ଜାଲ ପକାଇ ପାରିଲିନି, ମନରେ ସେ ଦୁଃଖଟା ରହିଗଲା । ହଠାତ୍ ଚାଲିଆସିଲି ତ ।— ଝିଅଟା କାହାର ? ବାହା ହେଇନି ଦେଖୁଛି...... ମୁଣ୍ଡରେ ଏ କି ଖୋଷା ପକାଇଛୁ କିଲୋ ? ଆମ୍ବଝୁଡ଼ିକୁ ବସେଇ ତା ଉପରେ ଚୂଡ଼ା ତିଆରି କରିଛୁ କିଲୋ ? ଏ ଗୋଟାଏ ଅଦ୍ଭୁତ ଅସୁନ୍ଦର ଢଙ୍ଗର ଖୋଷା ଫେସନ ହେଇଛି ବାବା ! ଆମ ରାଣାଘାଟରେ ମଧ୍ୟ ଛାଡୁ ନାହାନ୍ତି । ଯେଉଁମାନଙ୍କର ପେଟକୁ ଭାତ ଜୁଟୁନି ସେମାନଙ୍କ ମୁଣ୍ଡରେ ମଧ୍ୟ ଏଡ଼ିକି ଖୋଷା । କାନୁର ସ୍ତ୍ରୀକୁ ତ ଦେଖୁନି ? ତା'ପରେ ବକୁଳ କେଉଁଠି ? ଆମମାନଙ୍କର ବହି-ଲେଖିବା ଭଉଣୀ ? ତା'ର ତ ନାଁ ବିଖ୍ୟାତ ହୋଇଗଲାଣି ! ରାଣାଘାଟରେ ମଧ୍ୟ କିଛି କମ୍ ହେଇନି ।...... ବକୁଳ ଘରେ ନାଇଁ ? କୁଆଡ଼େ ଯାଇଛି ?

ଅପୂର୍ବର ସ୍ତ୍ରୀ ଅଳକା ମୁଚୁକି ହସି କହିଲା, କୁଆଡ଼େ ଯାଇଛନ୍ତି ସେକଥା ଆଉ କିଏ ଜାଣିବାକୁ ଅଛି ?

—ଏ ମା' ! ସେ କି କଥା ! କୁଆଡ଼େ ଯାଉଛି କହିକରି ଯାଉନି ? ଯେତେ ମିଟିଂ କରୁ ପଛକେ, ଆଉ ଲେକ୍‌ଚର ମାରୁ, ସ୍ତ୍ରୀଲୋକ ଗଲାବେଳକୁ ଘରେ କହିଦେଇ ଯିବନି ?...... ସ୍ୱାଧୀନ ଜେନାନା ହୋଇଯାଇଛନ୍ତି ବୋଧହୁଏ ? ମୋର ଝିଅମାନେ ତ ସବୁଦିନ ଖବରକାଗଜ ଆଣି ଖାଲି ଦେଖାନ୍ତି— ମା' ଦେଖ, ତମ ଭଉଣୀଙ୍କ ଫଟୋ, ହେଇଟି ଦେଖ ତମ ଭଉଣୀଙ୍କ ନାଁର ସୁଖ୍ୟାତି । ହେଲେ ମୁଁ କହେ, ତମେମାନେ ଏ ଅନାମୀ ଦେବୀଙ୍କୁ ଦେଖ, ଗଦ୍‌ଗଦ ହୁଅ । ମୋ ପାଖରେ ସେହି ସବୁଦିନର ବୋକା ଲାଜକୁଳୀ ବକୁଳ ହିଁ ହେଉଛି ଭଉଣୀ । ଯା ମୁହଁରୁ ପଦେ କଥା ବାହାରୁ ନ ଥିଲା, କିଏ ଅନ୍ୟାୟ କରି ଶାସନ କଲେ କହି ଜାଣୁ ନ ଥିଲା— 'ଖାଲିରେ ବକୁଳ କାହିଁକି ? ମୁଁ ତ ଏ ଦୋଷଟା କରିନି !' ସେଇ ବକୁଳ ଲେକ୍‌ଚର ଦେଇ ବୁଲୁଛି ଶୁଣିଲେ ହସ ମାଡ଼େ । ଅବଶ୍ୟ ଆମମାନଙ୍କୁ ତା ବାପା ଆମର ଅତି ଶୀଘ୍ର ତଣ୍ଟି ଚିପି ଦେଇ ଘରୁ ବାହାର କରିଦେଇ ଖଲାସ ହୋଇଯାଇଥିଲେ, ପରେ ବୋଧହୁଏ ପାରୁଲ୍ ଆଉ ବକୁଳକୁ ଆଧୁନିକ-ଫାଧୁନିକ କରି ମଣିଷ କରିଥିବେ । ପୁଅମାନଙ୍କୁ ସେଇଥିପାଇଁ କହେ, ଆରେ ଗୋଟିଏ ମାଆର ପେଟର ପିଲା ଆମେମାନେ, ତମ ମା'କୁ ମଧ୍ୟ ଏତେ ଶୀଘ୍ର ଗୁହାଳରେ ପୂରାଇ ଦେଇ ନ ଥିଲେ, ସେ

ମଧ୍ୟ ତମ ମାଉସୀ ଭଳିଆ ହୋଇପାରିଥାନ୍ତା ।...... ତେବେ ଏ କଥା ମଧ୍ୟ କହିବି, ବାହା ନ ହୋଇ ବକୁଳ ଗୋଟିଏ କୀର୍ତ୍ତି ରଖିବା କାମ କରିଛି । ଏ ବଂଶର ତିନି କୁଳରେ ଆଉ କେହି ଦ୍ୱିତୀୟ ଗୋଟିଏ ଦୃଷ୍ଟାନ୍ତ ଦେଖାଇ ପାରିବେନି । ପ୍ରଥମେ ପ୍ରଥମେ ତ ଶଶୁର ଘରେ ମୁହଁ ଦେଖାଇ ପାରୁ ନ ଥିଲି— ସେହି କାରଣରୁ ବାପଘରକୁ ଆସିବା ଏକାବେଳେ ବନ୍ଦ ହୋଇଯାଇଥିଲା—

ଅପୂର୍ବର ସ୍ତ୍ରୀ ଅଳକା ମୃଦୁ ହସି କହିଲା— ସେ ସବୁ ତ କ୍ଲାଇଭ୍‌ଙ୍କ ଅମଳର କଥା ।

ଚନ୍ଦନ ମହା ଉତ୍ସାହରେ କହିଲା— ତମମାନଙ୍କ ପାଖରେ ସେଦିନ ହେଲେ ଆମ ପାଖରେ କାଲି ପରି ଲାଗୁଛି । ସେ ଯାହାହେଉ ମିଠାତକ ଘର ଭିତରକୁ କିଏ ନେଇଯାଅ ପିମ୍ପୁଡ଼ି ଲାଗିଯିବ । କୋଳିଗୁଡ଼ାକୁ ଏଓଳି ଖରାରେ ପକାଇ ଦେଇଥିଲେ ହୋଇଥାନ୍ତା ।

ବଡ଼ ସାରୁ, କଞ୍ଚା ଅମୃତଭଣ୍ଡା, ପାଚିଲା ବରକୋଳି, ଭାକୁଡ଼ ମାଛ ପ୍ରଭୃତି ସହିତ ଏକା ଏକାହିଁ ଘରର ସବୁକଥା କହିଯାଏ ଚନ୍ଦନ ।

ଅଳକା ଆଉ ତା'ର ଝିଅ ଘର ଭିତରକୁ ପଶିଯାଇ ହସାହସି କରି କହିଲେ, ଅଜବ୍ ଜୀବଟିଏ !

କାନୁର ସ୍ତ୍ରୀ ଘରେ କାନୁକୁ କହିଲା, ଭାଗ୍ୟକୁ ତାଙ୍କର ବାପଘରକୁ ଆସିବାଟା ବନ୍ଦ ହୋଇଥିଲା ! ନ ହେଲେ ହସି ହସି ଆମମାନଙ୍କୁ ମରିଯିବାକୁ ପଡ଼ିଥାନ୍ତା । କିନ୍ତୁ ହଠାତ୍ ଏମିତି ଆସିବାଟାର କାରଣ କ'ଣ ବୁଝିପାରୁଛ ?

କାନୁ କହିଲା, ସେ କଥା ତ ଭାବୁଛି ।

ଏ ଦୁଇଜଣ ମଝିଆବାବୁ ଓ ମା' କାହାରି କଥାରେ ନ ଥାନ୍ତି । ଘରେ ଯେଉଁପ୍ରକାର ଘଟଣା ଘଟିଲେ ମଧ୍ୟ, ସେମାନେ ନିର୍ଲିପ୍ତର ଭୂମିକା ଅଭିନୟ କରି ଯାଆନ୍ତି, ତେବେକେ ସେମାନେ ମଧ୍ୟ ଚନ୍ଦନର ଆଗମନ ସଂପର୍କରେ କୌତୂହଳୀ ହୋଇଯାଇଛନ୍ତି । ସମସ୍ତଙ୍କର ଗୋଟିଏ ଚିନ୍ତା— ଏ ହଠାତ୍ କାହିଁକି ଆସିଛନ୍ତି ?

× × × × ×

ସନ୍ଧ୍ୟାପରେ ବକୁଳ ଫେରିଲା ।

ଦ୍ୱାରମୁହଁରେ ଛୋଟ ଚାକରଟା ବସିଥିଲା, ତରତର ହୋଇ କହିଦେଲା— ପିଉସୀ ମା', ବିଦେଶରୁ ଆପଣଙ୍କର ଜଣେ ଭଉଣୀ ଆସିଛନ୍ତି ।

ବକୁଳର ଛାତିଟା ଆହ୍ଲାଦରେ ଧକ୍ କଲା, ପାରୁଲ୍‌ର ଢକ୍‌ଢକ୍ କରୁଥିବା ମୁହଁଟା ଆଖି ଆଗରେ ଭାସି ଉଠିଲା । ପାରୁଲ୍ ଛଡ଼ା ଆଉ କିଏ ? ନାନୀ କହିଲେ ତ ପାରୁଲ୍ ।

ସତ କହିବାକୁ ଗଲେ, ଚମ୍ପା ଚନ୍ଦନକୁ କେବେହେଲେ ନିଜର ଭଉଣୀ ବୋଲି ମନେ ହୋଇନି । ଏକରେ ତା'ର ଜ୍ଞାନ ହେବା ଆଗରୁ ସେମାନଙ୍କର ବାହାଘର ହୋଇଯାଇଥିଲା, ତା'ଛଡ଼ା ସେମାନଙ୍କ ସଙ୍ଗେ ବକୁଳ, ପାରୁଲ୍‌ର ମାନସିକ ବ୍ୟବଧାନ ଆକାଶ-ପାତାଳ ।

ପାରୁଲ୍ ଆବିର୍ଭାବ ଆଶାରେ ବକୁଳର ମନ ଭିତର ଭାରଟା ଭାରି ହାଲୁକା ହୋଇଗଲା । ହଁ ମନରେ ଗୋଟାଏ ଭାର ରହିଛି । ଶମ୍ପା ଚାଲିଯିବା ପରେ ସବୁତକ ଦୋଷ ତ ସାନଭାଇନା ଓ ଭାଉଜ ଅବ୍ୟକ୍ତ ଭାବରେ ତା'ରି ଉପରେ ଲଦି ଦେଇଛନ୍ତି ।

ଅଥବା ଏକାବେଳେ ଅବ୍ୟକ୍ତ ନୁହେଁ । ଯେତେବେଳେ ଜଣାଗଲା ବାପର ନାକ ସାମନାରେ ସେହି ଯାହା ଚଟି ପାଦରେ ଗଳାଇ 'ଆଚ୍ଛା ତମର ଆଦେଶ ମନେ ରଖିବି' ବୋଲି ଶମ୍ପା ବାହାରିଗଲା, ତାହାହିଁ ତା'ର ଶେଷ ଯିବା— ସେତେବେଳେ ବକୁଳକୁ ଧରି ଜେରା କରିଲେ ତା'ର ସାନଭାଉଜ ଓ ଭାଇନା । ଏମିତିକି ପୁତୁରା ଅପୂର୍ବ ଆଉ ତା'ର ସ୍ତ୍ରୀ-କନ୍ୟା ସୁଦ୍ଧା ।

ଝିଅଟା କୁଆଡ଼କୁ ଯାଇପାରେ ଭାବି ବକୁଳ ନିଜେ ଯେତେବେଳେ ଭାରି ଚିନ୍ତିତ (କାରଣ ବକୁଳର ତ ସେହି ଯାତ୍ରାକାଳୀନ ଇତିହାସଟା ଜଣା ନ ଥିଲା), ସେତେବେଳେ ଯେଉଁ ସାନଭାଇନା ଜୀବନରେ କେବେହେଲେ ତିନିତାଲାରୁ ଏଇ ଘରଟାର ଛାଇ ମାଡ଼ି ନ ଥିଲେ, ସେ ଏକାବେଳେ ସସ୍ତ୍ରୀକ ଉଠିଆସି କହିଲେ, "ଶ୍ରୀମତୀ ଅନାମିକା ଦେବୀ ଟିକିଏ ମୂଲ୍ୟବାନ ସମୟ ନଷ୍ଟ କରିବାକୁ ଆସିଲି ।"

ଅନାମିକା ଦେବୀ !

ବକୁଳ ଥରଟେ ସାନଭାଇନାଙ୍କ ମୁହଁକୁ ଚାହିଁଲା, ତା' ମୁହଁକୁ ଆସିଲା, କହନ୍ତା ହଠାତ୍ ପାଗଳାମି ଆରମ୍ଭ କଲେ କାହିଁକି ? କିନ୍ତୁ ତା' କଲା ନାହିଁ, ସଙ୍ଗେ ସଙ୍ଗେ ଅନାମିକା ଦେବୀ ହିଁ ହୋଇଗଲା ସେ । ଠିକ୍ ବାହାରର ଲୋକଙ୍କ ସଙ୍ଗେ କଥା ହେଲା ପରି ଶାନ୍ତ ଭଙ୍ଗୀରେ କହିଲା, "ବସ, କ'ଣ କହିବ କହ ।"

"ନୂଆକରି କିଛି କହିବାର ନାହିଁ—" କହିଲା ପଛରେ ଠିଆହୋଇଥିବା ଅପୂର୍ବ । ଯାପୂର୍ବରୁ କେଉଁଦିନ ଅପୂର୍ବକୁ ତା'ର ସାନକକେଇର ଏମିତି ପାଖାପାଖି ହୋଇ

ଠିଆହୋଇଥିବା ଦେଖିଛନ୍ତି କି ନାହିଁ ମନେପକାଇ ପାରିଲେନି ଗାମ୍ଭୀର୍ଯ୍ୟମୟୀ ଅନାମିକା ଦେବୀ । ସେହି ଗାମ୍ଭୀର୍ଯ୍ୟର ଅନ୍ତରାଳରେ ଝଲକାଏ ବ୍ୟଙ୍ଗ ହସ ଖେଳିଗଲା— ଓଃ, ପାରିବାରିକ ମାନମର୍ଯ୍ୟାଦାର ପ୍ରଶ୍ନ ଯେ ! ଏ ଘର ଯାହା ବରାବର ପୁରୁଷମାନଙ୍କୁ ବାନ୍ଧିଛି ମୈତ୍ରୀବନ୍ଧନରେ । ବାପାଙ୍କ ସଙ୍ଗେ କେବେହେଲେ ବଡ଼ଭାଇନାଙ୍କର ପଟୁ ନ ଥିଲା, କିନ୍ତୁ ବକୁଳ ନିର୍ମଳ ଘରକୁ ଯିବାଆସିବା କଥାକୁ ନେଇ ପିତାପୁତ୍ର ଏକାବେଳେ ଗୋଟିଏ ଦଳ ହୋଇଯାଇଥିଲେ ।

ଅପୂର୍ବର ସେହି ଉତ୍ତେଜିତ ମୁହଁ ଆଡ଼କୁ ଖାଲି ଚାହିଁ ଦେଖିଲେ ଅନାମିକା, କିଛି କହିଲେନି । ଅପୂର୍ବ ବାକି କଥାଟା କହିଲା— ଶମ୍ପାର ଘଟନା ନେଇ କଥାଟା । ଆଉ ଠିକଣାଟା ତ ଜାଣିବା ଦରକାର ।

ଅନାମିକା ଅତି ସ୍ଥିର ଭାବରେ କହିଲେ— ସେ ଠିକଣାଟା ମୋର ଖାତାରେ ଲେଖାହୋଇଛି, ଏଇଟା କ'ଣ ତମମାନଙ୍କର ଧାରଣା ?

ଏଥର ସାନଭାଇନା ଉତ୍ତର ଦେଲେ, ''ସେ ଧାରଣାଟା ଖୁବ୍ ଅସ୍ୱାଭାବିକ ନୁହେଁ ନିଶ୍ଚୟ ?''

—ମତେ ତ ଭାରି ଅସ୍ୱାଭାବିକ ଲାଗୁଛି ।

—''ବକୁଳ, ଏଇଟା ତମର ଖାଲି ଆଡ଼େଇଦେବା କଥା, ତା'ର ସବୁ ଗଳ୍ପ ସବୁ କଥା ତ ଖାଲି ତମରି ପାଖରେ କହୁଥିଲା ସେ ।'' କଥାଟା କହିଲେ ସାନଭାଉଜ ।

''ଅନାମିକା ଦେବୀଙ୍କ ଭଙ୍ଗୀରେ ହିଁ ମୃଦୁ ହସିଲା ବକୁଳ ।'' ଦେଖୁଛି ତ ତମର ତ୍ରିଶକ୍ତି ସମ୍ମିଳନୀ, ଏକୁଟିଆ କ'ଣ ପାରିପାରିବି ? ତେବେ ଏଇଟା ତମମାନଙ୍କର ଭୁଲିଯିବା କଥା ନୁହେଁ, ଶମ୍ପା କୌଣସି ପୂର୍ବ-ପରିକଳ୍ପିତ ବ୍ୟବସ୍ଥା ଅନୁସାରେ ବାକ୍ସ-ବିଛଣା ବାନ୍ଧି ଚାଲିଯାଇନି । କଥା କହୁ କହୁ, ଜିଦ୍‌ରେ ଚାଲିଯାଇଛି ଅନ୍ତତଃ ମୁଁ ତମମାନଙ୍କ ମୁହଁରୁ ଯାହା ଶୁଣିଛି । ଅତଏବ ମୋ ପକ୍ଷରେ ତା'ର ଠିକଣା ଜାଣିବା ପ୍ରଶ୍ନଟା ଅଦ୍ଭୁତ ନିଶ୍ଚୟ । ବ୍ୟବସ୍ଥା କରି ଯଦି ଯାଇଥାନ୍ତା ହୁଏତ ମତେ ଜଣେଇ ଯାଇଥାନ୍ତା ।''

—''ହୁଏତ କାହିଁକି, ନିଶ୍ଚୟ, ସବୁ ପରାମର୍ଶ ତ ତା'ର ତମରି ସାଙ୍ଗରେ—'' ସାନଭାଉଜ ପୁଞ୍ଜୀଭୂତ କ୍ରୋଧ ଉଦ୍‌ଗିରଣ କରି କହିଥିଲେ, ''ମା' ତ ମୂର୍ଖ, ସେକାଳର ପୁରୁଣାକାଳିଆ ଗାଉଁଲୀ, ପିଉସୀ ବିଦୂଷୀ, ଆଧୁନିକା, ସଭ୍ୟ, ତେଣୁ ମା'ଠାରୁ ପିଉସୀର ମାନସମ୍ମାନ ବେଶୀ ହେବ, ଏକଥାଟା ତ ସ୍ୱାଭାବିକ । ତେବେ ଏକଥା ମଧ କହିବି— ତମେ ଯଦି ପ୍ରକୃତରେ ତା'ର ହିତୈଷୀ ହୋଇଥାନ୍ତ,

ତା'ହେଲେ ତାକୁ ତା'ର ଇଷ୍ଟ-ଅନିଷ୍ଟ ବୁଝାଇଥାନ୍ତ । ତମେ ତା' କରିବ, ଖାଲି ଗେହ୍ଲା କରି କରି ନିଜର ଦଳକୁ ଟାଣିଛ ।

—"ଦଳକୁ !" ଅନାମିକାଙ୍କ ମୁହଁଟା ହଠାତ୍ ବହୁତ ବେଶୀ ଲାଲ୍ ଦିଶିଲା, ହେଲେବି ସେ ବେଶ୍ ନିରୁତ୍ତେଜ କଣ୍ଠରେ ହିଁ କଥା କହିଲେ, "ମୋର ଯେ ବିଶେଷ କୌଣସି ଦଳ ଅଛି, ସେକଥା ତ ମତେ ନିଜକୁ ଜଣା ନ ଥିଲା ସାନଭାଉଜ । ତେବେ ଦଳ ଥିଲେ ଦଳକୁ ଟାଣିବାର ଚେଷ୍ଟା ରହିବାଟା ମଧ୍ୟ ସ୍ୱାଭାବିକ ।

ସାନଭାଇନା ଗମ୍ଭୀର ଗଳାରେ କହିଲେ, "ଏଇଟା ଝଗଡ଼ା କରିବାର ସମୟ ନୁହେଁ । ଗୋଟାଏ ପାରିବାରିକ ସୁନାମ-ଦୁର୍ନାମର ପ୍ରଶ୍ନ ନେଇ କଥା ହେଉଛି । ତୁ ଯଦି ଜାଣିଥିବୁ ବକୁଳ, ତା'ହେଲେ ସେଇଟା କହିଦେବା ଉଚିତ, ସେ ମନା କରିଥିଲେ ମଧ୍ୟ ।"

—ହେଲେ ମୋ' ଉତ୍ତର ତ ଆଗରୁ ଶୁଣିସାରିଛ ସାନଭାଇନା ! ଶମ୍ପା ଯଦି ଆଗରୁ ଠିକଣା ଠିକ୍ଠାକ୍ କରି ଯାଇଥାନ୍ତା କେଉଁଠାକୁ, ତା'ହେଲେ ହୁଏତ ଠିକଣାଟା ମତେ ଦେଇ ଯାଇଥାନ୍ତା, କିନ୍ତୁ ଘଟଣାଟା ତ ତା' ନୁହେଁ ।

—କିନ୍ତୁ ମା-ବାପଙ୍କୁ ବାଦ୍ ଦେଇ ତତେ ବା କାହିଁକି ଦେଇଥାନ୍ତା ?

ଅନାମିକା ହସି ପକାଇଥିଲେ— ଏ କାହିଁକିର ଉତ୍ତର ମତେ ଜଣା ନାହିଁ ଭାଇନା ! ଝିଅଟା ପାଖରେ ଥିଲେ ତାକୁ ହିଁ ପ୍ରଶ୍ନଟା କରିଥିଲେ ହୋଇଥାନ୍ତା ।

—"ପ୍ରଶ୍ରୟ ଦେଲେ ସେ ଭଲ ହୋଇଥାନ୍ତା" ତୀବ୍ର ଗଳାରେ ଭାଉଜ କହିଲେ— କୋଉମାନଙ୍କ ସହିତ ସେ ମିଶୁଥିଲା, ସେ ଖବର ତ ତମକୁ ଜଣା, ସେଗୁଡ଼ିକ ହେଲେ କହ ।

—"ଯେଉଁମାନଙ୍କ ସଙ୍ଗେ ମିଶୁଥିଲା, ସେମାନଙ୍କ ଆକୃତି-ପ୍ରକୃତିର ପରିଚୟ ସେ ମଝିରେ ମଝିରେ ମତେ ଦେବାକୁ ଆସୁଥିଲା, କିନ୍ତୁ ଠିକଣା ? କାହିଁ ମନେ ତ ପଡୁନି ।"

—ତା'ହେଲେ ତମେ କହିବାକୁ ଚାହଁ ଜୀଅନ୍ତା ମଣିଷଟା କର୍ପୂର ପରି ଉଭାଇଯିବ, ଆଉ ସେକଥାକୁ ମାନି ନେବାକୁ ପଡ଼ିବ ?

ହଠାତ୍ ସାନଭାଉଜଙ୍କ ଆଖିରୁ ଝଲକାଏ ଲୁହ ଝରିପଡ଼ିଥିଲା ।

ଅନାମିକା ସେହି ଆଡ଼କୁ ଚାହିଁ ଦେଖି ଆସ୍ତେ ବକୁଳର ଛାଞ୍ଚକୁ ଫେରି ଆସିଥିଲେ । ନମ୍ର କୋମଳ ଗଳାରେ କହିଥିଲେ— ମୁଁ ଏ ଅଦ୍ଭୁତଟା ହିଁ ଚାହୁଁଛି, ସେକଥା କାହିଁକି ଭାବୁଛ ସାନଭାଉଜ ? ସତ କହୁଛି ମୁଁ ତମମାନଙ୍କ ଭଳି ଅନ୍ଧକାରରେ ଅଛି ।

— ସେ କଥା କହି ତମେ ନିଶ୍ଚିନ୍ତ ହୋଇ ଉପନ୍ୟାସ ଲେଖିବାକୁ ବସିଯାଇପାରିବ ବକୁଳ, ଆମେ ପାରିବୁନି ।

ସାନଭଉଜଙ୍କ ଗଳାରେ କାଠିନ୍ୟ, କିନ୍ତୁ ଏବେ ମଧ୍ୟ ଆଖିରେ ଲୁହ ଅଛି । ଅତଏବ ବକୁଳକୁ ନମ୍ର ଏବଂ କୋମଳ ରହିବାକୁ ହିଁ ପଡ଼ିଲା । କହିବାକୁ ପଡ଼ିଲା— ସେ ତ ସତକଥା ଭାଉଜ ! ମା'-ବାପଙ୍କ ମନପ୍ରାଣ ସହିତ ଆଉ କାହାର ତୁଳନା ଅଛି ?

ସାନଭାଇନା ମଧ୍ୟ ଏଥର କଅଁଳ ହୋଇଥିଲେ, କହିଥିଲେ— ନା, ସେ କଥା ନୁହେଁ । ତୁ ମଧ୍ୟ ତାକୁ ମା'-ବାପଠାରୁ କମ୍ ସ୍ନେହ କରୁ ନାହୁଁ, ବରଂ ବେଶୀ । ଆଉ ସେଇଥିପାଇଁ ହିଁ ତତେ ବ୍ୟସ୍ତ କରିବାକୁ ଆସିଲି । ମନେହେଉଛି ଖବର ଫବର ଯଦି କିଛି ଦିଏ ସେହି ଉଦ୍ଧତ ଅହଙ୍କାରୀ ନିଷ୍ଠୁର ଝିଅଟା, ତୋ' ପାଖକୁ ହିଁ ଦେବ । ଯଦି ଦେବ, ତା'ହେଲେ ସାଙ୍ଗେ ସାଙ୍ଗେ ଜଣାଇବୁ ।

ଆଖି ଟେକି ଚାହିଁ ବକୁଳ ଟିକିଏ ହସିଥିଲା । ଯେଉଁ ହସଟା କଥା ହୋଇଥିଲେ— ହୋଇଥାନ୍ତା— ସେକଥା ପୁଣି କହୁଛ ?

ଆଉ ସେତିକିବେଳେ ହଠାତ୍ ଖିଆଲ ହୋଇଥିଲା ବକୁଳର, "ଯେମିତି ଯୁଗଯୁଗାନ୍ତର ପରେ ସାନ ଭାଇନା ତାକୁ 'ତୁ' ବୋଲି କଥା କହିଲେ ।

ବକୁଳର ଏକାନ୍ତ ବାସନା ହେଉଥିଲା କାଲି ଯେମିତି ଶମ୍ପାର ଖବର ଚାଲିଆସୁ, ଆଉ ତାହା ଯେମିତି ତା'ର ମା'-ବାପାଙ୍କ ପାଖକୁ ହିଁ ଆସୁ । ବକୁଳର ଗର୍ବ ଖର୍ବ ହେଉ, ତାହାହିଁ ପ୍ରାର୍ଥନା । ସେ ପ୍ରାର୍ଥନା ପୂରଣ ନ ହେବା ପର୍ଯ୍ୟନ୍ତ ଯେପରି ମଥା ଟେକି ପାରିବନି ବକୁଳ ।

କିନ୍ତୁ ତା'ପରେ କେତେଗୁଡ଼ିଏ ଦିନ କଟିଗଲା, କାହାରି ଗର୍ବ ତିଷ୍ଠି ରହିଲା ନାହିଁ, ଶମ୍ପାର କିଛି ଖବର ଆସିଲା ନାହିଁ ।

ପିଉସୀ ପାଖକୁ ନୁହେଁ କି ମା'-ବାପଙ୍କ ପାଖକୁ ନୁହେଁ ।

ତା'ହେଲେ କ'ଣ ଏମାନେ ସମସ୍ତେ ଭାବିବସିବେ, ରାଗରେ ଚାଲିଯାଇ କୌଣସି ଦୁର୍ଘଟଣାରେ ପଡ଼ିଗଲା ଶମ୍ପା ? କିନ୍ତୁ ସେକଥା ମଧ୍ୟ ସେମାନେ ଭାବିପାରୁ ନାହାନ୍ତି ତ ! ସେଭଳି ଖବର କ'ଣ ଚାପି ହୋଇ ରହିବ ?

ସେଭଳି ଖବର ନିଶ୍ଚୟ କେବେହେଲେ ଚାପିହୋଇ ରହିବନି ।

ବିଶେଷତଃ ଦୁଃସମ୍ବାଦର ଖବର ।

ଦୁଃସମ୍ବାଦର ଗୋଟାଏ ଦୁରନ୍ତ ବେଗ ଅଛି, ସେ ପବନର ଆଗେ ଆଗେ ଧାଏଁ । ନ ହେଲେ ଶମ୍ପାର ଏ ହଜିଯିବାର ଖବରଟା ଶମ୍ପାହେରିକାଙ୍କ ସମସ୍ତ ଆତ୍ମୀୟସ୍ୱଜନଙ୍କ ପାଖରେ ପହଞ୍ଚିଗଲା କିପରି ?

ନିଶ୍ଚିତ ଭାବରେ ପହଞ୍ଚିଗଲା, ନ ହେଲେ କେମିତି ଏମାନଙ୍କ ଘରକୁ ଏତେ ଆତ୍ମୀୟ ବନ୍ଧୁଙ୍କ ପାଦଧୂଳି ପଡ଼ନ୍ତା ? ଆଉ କାହିଁକି ବା ସେମାନେ ଅନେକ ଗଳ୍ପସଳ୍ପ କଲାପରେ ଉଠିଗଲାବେଳକୁ ହଠାତ୍ ସଚକିତ ହୋଇ ପଚାରନ୍ତେ– ଶମ୍ପାକୁ ଦେଖିଲିନି ତ ?

ଶମ୍ପାର ଅନ୍ୟ ଭାଇ ବିଲାତରେ ଅଛି, ଘରେ ଆହୁରି କେତେ ଝିଅ ଅଛନ୍ତି ସାନମଝିଆ ଭାଇଙ୍କର, ସମସ୍ତଙ୍କ କଥା ତ କାହିଁ ମନେପଡ଼ିଲାନି ସମସ୍ତଙ୍କର !

ଗୋଳିଆପୋଳିଆ କରି ଗୋଟାଏ ଉତ୍ତରରେ ସେମାନେ ସନ୍ତୁଷ୍ଟ ହୋଇ ନ ଥିଲେ । ଖାଲି ସନ୍ତୋଷଭାବ ଦେଖାଇଲେ । କିନ୍ତୁ ସେମାନଙ୍କ ମୁହଁର ଭାବ ଅନ୍ୟ କଥା କହୁଥିଲା ।

ତଥାପି ଏ ପ୍ରଶ୍ନଟା ଯେ ରାଣାଘାଟ ପର୍ଯ୍ୟନ୍ତ ଚାଲିଯିବ ଆଉ ଏ ଘରର ସ୍ୱର୍ଗତ କର୍ତ୍ତାଙ୍କ ଅନେକଦିନର ଅନୁପସ୍ଥିତ ଝିଅ ସେହି ପ୍ରଶ୍ନଟାକୁ ବହନ କରି ଆଣିବ ଏତେଦୂର କେହି ଆଶା କରି ନାହାନ୍ତି । ଆଶା କରିବା ଭଳି ନୁହେଁ ବୋଲି ଆଶା କରି ନାହାନ୍ତି ।

'ସେଥିପାଇଁ ବିଦେଶରୁ ଭଉଣୀ ଆସିଛନ୍ତି' କଥାଶୁଣି ଆଶାରେ ଆନନ୍ଦରେ ଉଦ୍‌ବେଳିତ ହୋଇ ଉଠିଥିଲା ବକୁଳର ଛାତି । ବକୁଳର ଆଖି ଆଗରେ ପାରୁଲ୍‌ର ଝକ୍ ଝକ୍ ଚେହେରାଟା ଭାସି ଉଠିଥିଲା । କିନ୍ତୁ ତା' ବଦଳରେ ଚିର ଅବ୍ୟବହୃତ 'ମଝିଆନାନୀ' ଶବ୍ଦଟାର ପୋଷାକ-ପିନ୍ଧା ଅଜ୍ଞାତ ଅପରିଚିତ ମଣିଷଟା ବକୁଳର ଘରକୁ ଆସି ବକୁଳର ମୁହାଁମୁହିଁ ହୋଇ ଫୁସ୍‌ଫୁସ୍‌କରି ପ୍ରଶ୍ନ କଲା– ହଁ ଲୋ, ମାନୁର ଝିଅଟା କୁଆଡ଼େ ଗୋଟାଏ ଛୋଟଲୋକ ସଙ୍ଗେ ବାହାରି ଯାଇଛି ?'

ବକୁଳ ଚମକି ପଡ଼ିଲା ।

ତା' ଭିତରେ ରୁଚି ନାମକ ଶବ୍ଦଟା ଯେପରି ସଙ୍କୁଚିତ ହୋଇଗଲା ଏ ପ୍ରଶ୍ନ ଶୁଣି , ଆଉ ସାଙ୍ଗେ ସାଙ୍ଗେ ହଠାତ୍ ମନେହେଲା ବକୁଳର– ଏ ହେଉଛନ୍ତି ମୋ ପାରୁଲ୍ ନାନୀର ସହୋଦର ଭଉଣୀ ? ଏ ଆମ ମା'ଙ୍କର ଗର୍ଭଜାତ !

ପ୍ରକୃତରେ ଆଶ୍ଚର୍ଯ୍ୟ !

ଭାବିଲେ କି ଅଦ୍ଭୁତ ରକମର ଆଶ୍ଚର୍ଯ୍ୟ ଲାଗେ । ଗୋଟିଏ ମଣିଷ ଭିତରେ ହିଁ ସୃଷ୍ଟ ହୁଏ କେତେ ବର୍ଣ୍ଣ-ବୈଚିତ୍ର୍ୟ, କେତେ ଜାତି-ବୈଚିତ୍ର୍ୟ !

ମଝିଆ ନାନୀ ଓ ସାନମଝିଆ ନାନୀ କ'ଣ ଗୋଟିଏ ଜାତିର ?

ବଡ଼ନାନୀ ଆଉ ମୁଁ ? ଅଥବା ସବୁଯାକ ପରିବେଶର କାରସାଦି ?

ସେହି ଭାବନାଟା ମଝିରେ ହିଁ ମଝିଆନାନୀ ପୁଣି ପଚାରିଲା– କଥାଟା ତା'ହେଲେ ସତ ? ବାପାଙ୍କ ବଂଶରେ ତା'ହେଲେ ସବୁରକମର ହେଲା ?

ବକୁଳ ମୁହଁଟାକୁ ଟିକିଏ ଘୁଞ୍ଚାଇ ଦେଇ ଟିକିଏ କଠିନ ହସ ହସି କହିଲା, ଖାଲି ଆମ ବାପାଙ୍କ ବଂଶରେ କାହିଁକି ମଝିଆନାନୀ, ଆଜିକାଲି ସମସ୍ତଙ୍କ ବଂଶରେ ସବୁପ୍ରକାର ହେଉଛି !

–ହେଉଛି ! ସମସ୍ତଙ୍କର ହେଉଛି ?

–ସତରେ ହେଉଛି । ଆଉ ସେଇଟା ତ ହେବାକୁ ପଡ଼ିବ । କାଳବଦଳ ହେବନି ? ଯୁଗ ବଦଳିବନି ? ସମାଜର ରୀତିନୀତି ଆଚାର-ଆଚରଣ ସବୁ କ'ଣ ଏକାଭଳି ଥିବ ? ମଣିଷ କ'ଣ ଚିରକାଳ ଗୋଟିଏ ଛାଞ୍ଚରେ ରହି ଯିବ ?

ଏ ଧରଣର କଥା ସାଧାରଣତଃ କହେନି ବକୁଳ । ଖାଲି ମଣିଷଟା ତା'ର ଏକାନ୍ତ ଅନ୍ତରଙ୍ଗ ହୋଇ ଏକାନ୍ତରେ ତା'ର ଭାଇ-ଭାଉଜ-ଝିଆରୀଙ୍କ ସମାଲୋଚନା କରିବାକୁ ବସିଛି ଦେଖି କହିଲା ।

ବକୁଳର ତିନିତାଲା ଘରଟିରେ ହିଁ ଚନ୍ଦନ ପାଇଁ ବିଛଣା ବିଛାହୋଇଛି, ଆଉ ଅପ୍ରତିବାଦରେ ହିଁ ସେଇଟା ମାନିନେବାକୁ ପଡ଼ିଛି ବକୁଳକୁ । ସେଥିପାଇଁ ପ୍ରଥମରୁ ବକୁଳ ଆତ୍ମରକ୍ଷା ପାଇଁ ସଚେତନ ହେବାକୁ ଚାହୁଁଛି ।

ଯୁଗ ଯେ ବଦଳେ, କାଳ ଯେ ବଦଳେ, ଏଇଟା ସ୍ପଷ୍ଟ କରି କହି ନିଜକୁ ମୁକ୍ତ ରଖିବାକୁ ଚାହୁଁଛି ସେହି ସମାଲୋଚନାର ଜାଲରୁ ।

ଚନ୍ଦନ କହିଲା– ତୁ ତ ସେଇଆ କହିବୁ । ତୁ ତ ଆହୁରି ନଭେଲ ଲେଖୁଛୁ । ସେଇ ନାଟକ ନଭେଲ ଆଉ ସିନେମା ଯୋଗୁଁ ତ ଦେଶ ଧ୍ୱଂସ ହେବାକୁ ଯାଉଛି ।

–ତତେ ଏକଥାଟା କିଏ କହିଲା ?

–"କହିବେ ଆଉ କିଏ ?" ଚନ୍ଦନ ଗଭୀର ଆତ୍ମସ୍ଥ ଗଳାରେ କହିଲା, "ଆଖି ଦିଇଟା ନାହିଁ ? ଦେଖିପାରୁନି ? ସମାଜ କ'ଣ ଥିଲା, ଆଉ କ'ଣ ହୋଇଯାଉଛି ?"

–କ'ଣ କିଛି ଖରାପ ହୋଇଛି ?

–"ଖରାପ ହେଇନି ?" ଗାଲରେ ହାତ ଦେଲା ଚନ୍ଦନ– "ଆଜିକାଲି ଯା ହେଉଛି ତା' ଖରାପ ନୁହେଁ ? ଭଲ ହେଉଛି ? ହେଇଟି ପରା ମୋ

ମଝିଆଝିଅର ନଣନ୍ଦଟା, ବାହାଘର ହେଲା ଆଉ ବରସାଙ୍ଗରେ ଆମେରିକା ଚାଲିଗଲା, ଏଇଟାକୁ ତୁ ଭାରି ଭଲ ବୋଲି କହୁଛୁ ?

ବକୁଳ ହସିଦେଇ କହିଲା– ଖରାପ କ'ଣ ହେଲା ? ନିଜ ବରସାଙ୍ଗରେ ତ ?

ବାପା ! ବାପା ! ତୋ ସଙ୍ଗେ କଥା କହିବାଟା ମୋର ଭୁଲ୍ । ତୁ ମଧ୍ୟ ଅତି ଆଧୁନିକ ହୋଇଗଲୁଣି । ବର ହେଲାମାତ୍ରେ ଏମିତି ତାକୁ ଅଣ୍ଟାରେ ଖୋଷିଦେବ ? ଦି'ଦିନ ଅପେକ୍ଷା କର ? ଯେଉଁଠି ବାହାହେଲୁ ସେମାନଙ୍କ ସହିତ ଟିକେ ଜଣାଶୁଣା ହେଉ । ତା' ନୁହେଁ ଜଗତରେ ଖାଲି ବରଟି ଆଉ କନିଆଁଟି ! ଯେମିତି ଜୀବଜନ୍ତୁ ପକ୍ଷୀ ଚଢ଼େଇ ? ତ୍ରିଭୁବନରେ ଆଉ କେହି ନାହାନ୍ତି, ଆଉ ମୁଁ । ତା ମଧ୍ୟ ତ ସେ ଯୋଡ଼ିଟି ମଧ୍ୟ ଭାଙ୍ଗିଯାଉଛି, ଯେତେବେଳେ ଇଚ୍ଛା ସେତେବେଳେ ଆଉ ଗୋଟାଏ ସାଙ୍ଗରେ ଯୋଡ଼ି ବାନ୍ଧି ଭଙ୍ଗାସଂସାର ଯୋଡ଼ି ନେଇ ଆରାମରେ ଆଉଥରେ ଘର କରୁଛନ୍ତି । ତା'ହେଲେ ଆଉ ଏତେକାଳ ପରେ ପୃଥିବୀରେ ଏତେ ବେଦ ପୁରାଣ ଶାସ୍ତ୍ର ପାଲା ଗଢ଼ାହେଲା କାହିଁକି ? ଏମିତି ଚାଲିଲେ ମଣିଷ ୟାପରେ ହୁଏତ ଗଛର ଫଳ ପତ୍ର ଖାଇବେ ଆଉ ଲଙ୍ଗଳା ହୋଇ ବୁଲିବେ ଦେଖୁଛି ।

ଚନ୍ଦନର ମତବାଦ ଶୁଣି ବକୁଳ ଚମତ୍କୃତ ହେଲା, ପୁଣି ଶଙ୍କିତ ମଧ୍ୟ ହେଲା, ୟାରି ପାଖରେ ସାରାରାତି କଟେଇବାକୁ ପଡ଼ିବ ବକୁଳକୁ । ହୁଏତ ମାତ୍ର ଗୋଟିଏ ରାତ୍ରି ନୁହେଁ, ଏକାଧିକ ରାତ୍ରି ।

ଅଥଚ ପାରୁଲ୍ ମଧ୍ୟ ଆସି ପାରିଥାନ୍ତା, ଆଶ୍ଚର୍ଯ୍ୟ ! ପାରୁଲ୍‌ର କ'ଣ ଥରେହେଲେ ମା'-ବାପାଙ୍କ ସ୍ମୃତି-ସମ୍ବଳିତ ଘରଟା କଥା ମନେପଡ଼େ ନାହିଁ ?

ଚନ୍ଦନର ପୁଣି ଥରକୁଥର ଦୋଷ୍ଡା ଖାଇବାର ଅଭ୍ୟାସ, ସେହି ବିଜାତୀୟ ଗନ୍ଧଟାଠାରୁ ନିଜକୁ କିଛି ଦୂରକୁ ଘୁଞ୍ଚାଇ ଆଣି ବକୁଳ କହିଲା, ନାନୀ, ଗୋଟାଏ ସମୟରେ ତ ମଣିଷ ସେଇୟା ହୋଇ ବୁଲୁଥିଲା, ଆଉ ଲୋକେ ସେଇଟାକୁ ହିଁ ସତ୍ୟ ଯୁଗ ବୋଲି କହୁଥିଲେ ।

ସୃଷ୍ଟିରେ ନ ହେବା କଥା କହନା ବକୁଳ, ଦେଖୁଛି ତୋ'ର ମତି-ଗତି ବେହେଡ୍ ହୋଇ ଯାଇଛି । ସାନ ଭାଉଜ ଦୁଃଖ କରି ଯାହା କହିଲା ଦେଖୁଛି, ତା ତ ସତ !

ଚମକିଲାନି ବକୁଳ । ତୁନି ହୋଇ ରହିଲା ।

ସାନଭାଉଜ ଦୁଃଖ କରି କ'ଣ କହିଛି ସେ କଥାଟା ସେ ଅନୁମାନ କରିପାରୁଛି ।

ଚନ୍ଦନ ଡିବା ଖୋଲି ପାନ ମୁହଁରେ ଦେଇ କହିଲା— ହେଲେ ତୋ'ର ମଧ ବକୁଳ ଉଚିତ ହେଲାନି ବଢ଼ିଲା ଝିଅଟାକୁ ଏଭଳି ମୁହଁ ବଢ଼ାଇବା । ଲେଖିକା ହୋଇ ନାଁ କରିଛୁ ବୋଲି କ'ଣ ମୁଣ୍ଡ କିଣି ନେଇଛୁ ? ଆମମାନଙ୍କର କେତେ ବଡ଼ ବଂଶ, ସେଇଟା ଭାବି ଦେଖିବୁନି ?

ତା' ସଙ୍ଗେ ତର୍କ କରିବାକୁ ଆଉ ଇଚ୍ଛା ହେଲାନି ବକୁଳର, ତେବେକେ କଥାର ଉତ୍ତର ନ ଦେବାଟା ଅସୌଜନ୍ୟ ଭାବି ଶାନ୍ତଗଳାରେ କହିଲା— ନାନୀ ବଡ଼ବଂଶ କାହାକୁ କୁହାଯାଏ କହିଲୁ ?

ନାନୀ ଟିକିଏ ଥାଥାମାମା ହୋଇ କହିଲା— କାହାକୁ କହନ୍ତି ସେଇଟା ମୁଁ ତତେ ବୁଝେଇବି ? ଏ ବଂଶରେ ଆଗେ କେବେ ଏମିତି ଏପଟସେପଟ ହୋଇଥିଲା ?

—ନାନୀ, ସେଇଟା ହିଁ କ'ଣ ବଡ଼ ବଂଶର ପରିଚୟ ?

ନାନୀ ମଧ ହାରିଗଲା ନାହିଁ, ସେଥିପାଇଁ କହିଲା— ସେଇଟାକୁ ହିଁ ବଡ଼ କହୁ ଆମେ । ସବୁ ବଂଶରେ କ'ଣ ଆଉ ରାମକୃଷ୍ଣ କି ବିବେକାନନ୍ଦ ଜନ୍ମ ହୁଅନ୍ତି !

—"ତା ସତ ।" ଟିକିଏ ହସି କହିଲା ବକୁଳ । ଚନ୍ଦନ ଉଠିପଡ଼ି ଚାଲିଯାଇ ଛାତର କୋଣରେ ପାନ ପିକ ପକାଇ ଆସି କହିଲା— ସାନ-ଭାଉଜର ପ୍ରାଣରେ ତ କମ୍ ଜ୍ୱାଳା ନାହିଁ । ଏକରେ ପୁଅଟା ଲେଖାପଢ଼ା ସାରିଦେଇ ମଧ ବିଲାତରେ ବସିଛି । ଭଗବାନ ଜାଣନ୍ତି କି ମତଲବରେ । ତା' ଉପରେ ପୁଣି ଝିଅ ଏମିତି କୀର୍ତ୍ତି କଲା ଶେଷକୁ—

—"ପ୍ରସୂନ ତ ବିଲାତରେ ଚାକିରି କରୁଛି—"

—ତୁ ତୁନିହେଲୁ ବକୁଳ ! ବିଲାତରେ ଚାକିରି କରୁଛି ! ବିଲାତରେ ଆଉ କ'ଣ ଚାକିରିର ଉପଯୁକ୍ତ ଲୋକ ନାହାନ୍ତି, ସେଥିପାଇଁ ଗୋଟେ ବଙ୍ଗାଳୀର ପୁଅକୁ ଧରି ଚାକିରି ଦେଇଛନ୍ତି ! ସେ ସବୁ ଡମ୍ଫାମି ଶୁଣିବା ଲୋକ ଚନ୍ଦନ ନୁହେଁ । ଟୋକା ମେମ୍ ଫେମ୍ ବାହା ହେଇଛି କି ନାହିଁ କିଏ ଜାଣିଛି !

ବକୁଳ ପୁଣି ଥରେ ନିଃଶ୍ୱାସ ପକାଇଲା । ଏହି ଭଦ୍ରମହିଳା ବକୁଳର ଭଉଣୀ !

ଚନ୍ଦନ ପୁଣି କହିପକାଇଲା— ଅବଶ୍ୟ ଦୋଷ ପୁଅ-ଝିଅଙ୍କୁ ଦେବିନି । ବାପା-ମା'ଙ୍କୁ ହିଁ ଦେବି । ଯେମିତି ଗଢ଼ିଛନ୍ତି ସେମିତି ହୋଇଛି । ତମେ ଗଢ଼ିପାରିଲେ ଶିବ ପାଇବ, ନ ପାରିଲେ ମାଙ୍କଡ଼ ପାଇବ ।

ମୃଦୁ ହସି ବକୁଳ କହିଲା— ସେଇଟା କ'ଣ ଠିକ୍ ନାନୀ ? ଆମର ମା'-ବାପା ତ ତତେ ମଧ ଗଢ଼ିଛନ୍ତି, ପୁଣି ମତେ ମଧ—

ଭ୍ରୂକୁଞ୍ଚିତ କରି ଚନ୍ଦନ କହିଲା – କ'ଣ କହିଲୁ ?

–ଅନ୍ୟ କିଛି ନୁହେଁ । ତୋର ଆଉ ବଡ଼ନାନୀର କେତେ ଶିକ୍ଷାଦୀକ୍ଷା, ଶାସ୍ତ୍ରଜ୍ଞାନ ସେ ତୁଳନାରେ ପାରୁଲ୍ ନାନୀ ଆଉ ମୁଁ ତ ଯାହା-ତାହା ! ଅଥଚ ଏକ ମା'ର –

ଚନ୍ଦନ ଏହି ଅଭିମତଟିକୁ ପରିପାକ କରି କହିଲା– ଆମର ଶିକ୍ଷାଦୀକ୍ଷା ସବୁ ତ ବାପା ଶ୍ୱଶୁରଘରର । ଏ ଘରୁ ତ କେତେଦିନରୁ ଗଲିଣି । ନିହାତି ନାଡ଼ୀର ବନ୍ଧନ, ସେଇଥିପାଇଁ ଲୋକଟାର ଝିଅଟା ପଳାଇଯିବାର ଖବର ଶୁଣି –

ବକୁଳ ଶାନ୍ତଗଳାରେ କହିଲା, ନାନୀ ତୋର ଝିଅମାନଙ୍କ କଥା କହ ?

ଚଟ୍‌କିନା ନିଜ ଜଗତକୁ ଚନ୍ଦନ ଚାଲିଗଲା, ଗୋଟି ଗୋଟି କରି ତା'ର ପାଞ୍ଚଝିଅଙ୍କ ନିଖୁଣ ଜୀବନୀକୁ କହି ବସିଲା ।

କ୍ଳାନ୍ତ ବକୁଳ ମୁଣ୍ଡରେ କିଛି ପଶିଲା ନାହିଁ ! କିନ୍ତୁ ବକୁଳକୁ କିଏ ଉଦ୍ଧାର କରିବ ?

ହେଲେ ସେଭଳି କାତର ପ୍ରାର୍ଥନା ବୋଧହୁଏ ଭଗବାନ ଶୁଣନ୍ତି ।

ନ ହେଲେ ରାତି ସାଢ଼େ ନ'ଟାରେ 'ଜଣେ ଭଦ୍ରମହିଳା' ଅନାମିକାଙ୍କ ସଙ୍ଗେ ଦେଖା କରିବାକୁ ଆସିଲେ ! ଭାଷାଟା ମୁଖସ୍ଥ ହୋଇଯାଇଛି ଛୋଟ ଚାକରଟାର । ସେ ସିଡ଼ିର ଅଧପର୍ଯ୍ୟନ୍ତ ଚଢ଼ି ପାଟି କରି ଡାକିଲା– ପିଉସୀ ମା', ଜଣେ ଭଦ୍ରମହିଳା ଦେଖା କରିବାକୁ ଆସିଛନ୍ତି ଆପଣଙ୍କ ସଙ୍ଗେ ।

ଭଦ୍ରମହିଳା ! ଏ ରାତି ସାଢ଼େ ନ'ଟାରେ ? ବକୁଳ ଟିକିଏ ଆଶ୍ଚର୍ଯ୍ୟ ହେଲା, ତେବେ ଏମିତି ଘଟଣା ଏକାବେଳେ ଅପୂର୍ବ ଅଘଟଣ ନୁହେଁ । ରାତି ଦଶଟା ପରେ ଆସି ପହଞ୍ଚିଯାଆନ୍ତି ଏଭଳି ଲୋକ ମଧ୍ୟ ଅଛନ୍ତି ।

ବକୁଳ ତରବରରେ ଉଠିପଡ଼ି କହିଲା– ପଚାରି ଆସେ ତ କେଉଁଠାରୁ ଆସିଛନ୍ତି ?

–ପଚାରିଛି । ଜାଣିଛି ତ ନ ହେଇଥିଲେ ଆଉଥରେ ଧାଇଁବାକୁ ପଡ଼ିଥାନ୍ତା କହିଲେ ଯାଇ କହିଦେବୁ ଜଲପାଇଗୁଡ଼ିର ନମିତା, ତା'ହେଲେ ସେ ବୁଝିପାରିବେ ।

ଟୋକାଟା ଭାରି ପାରିବାର ।

ସିନେମା-ଥିଏଟର୍‌ର ଚାକର ଭୂମିକାର ଅଭିନେତାଙ୍କ ପରି ଅଦ୍ଭୁତ ବୋକା ନୁହେଁ ।

ପାଇଜାମା ପେଣ୍ଟ ନ ହେଲେ ଅନ୍ୟ କିଛି ପିନ୍ଧେନି ସେ । ପ୍ରତିଦିନ ସାବୁନରେ ଜାମା ଗେଞ୍ଜି ନ କାଚିଲେ ଛୁଇଁବ ନାହିଁ ! ପାଉଁରୁଟି ବ୍ୟତୀତ ହାତ ତିଆରି ରୁଟି ଜଳଖିଆ ଖାଇପାରେନି । ସପ୍ତାହରେ ଥରଟେ ସିନେମାକୁ ଯିବା ତା'ର

ଧରାବନ୍ଧା ନିୟମ ଏବଂ ବଙ୍ଗାଳୀ ପିଲା ହୋଇ ମଧ୍ୟ ବଙ୍ଗଳା ଛବିଠାରୁ ହିନ୍ଦୀ ଛବିକୁ ବେଶୀ ପ୍ରାଧାନ୍ୟ ଦିଏ । ବାବୁ-ଫାବୁମାନଙ୍କର ସାମନାରେ ହିଁ ସେହି ହିନ୍ଦୀ-ସିନେମା ଗୀତର ଦୁଇପଦ ଗୁଣୁଗୁଣୁ ହୋଇ ଗାଇବାକୁ କିଛି ହେଲେ ଲଜ୍ଜାବୋଧ କରେନି ଏବଂ ପୂଜା ବେଳେ ତାକୁ ଧୋତି ଦେଲେ— ଧୋତି ପିନ୍ଧିପାରୁନି, ପାଦରେ ଛନ୍ଦି ହୋଇଯାଉଛି କହି ଫେରସ୍ତ ଦେବାକୁ କୁଣ୍ଠା ବୋଧ କରେନି ।

ଏମିତି ଚାକର ଥିଲେ ବାହାର କାମ କରାଇବାକୁ ଅସୁବିଧା ନାହିଁ । ତା'ଛଡ଼ା ପିଉସୀ-ମା'ଙ୍କ କାମ ହେଲେ ପିଲାଟା ପରମ-ଉତ୍ସାହୀ, ଅନାମିକା ପାଖକୁ ତ ଅନେକ ଲୋକ ଆସନ୍ତି, ସାଙ୍ଗେ ସାଙ୍ଗେ ସେମାନଙ୍କ ପାଇଁ ଚାହା ବସାଇଦେବାକୁ ଟୋକାଟି ସଦା ପ୍ରସ୍ତୁତ ।

ବକୁଳ ହାତ ହଲାଇ କହିଲା— ଆଚ୍ଛା ତୁ ଯା, ମୁଁ ଯାଉଛି ।

ଜଳପାଇଗୁଡ଼ିର ନମିତା ! ନାଁ ଟା ଭାରି ସ୍ପଷ୍ଟ ମନେପଡୁଛି, ତା' କଥାଗୁଡ଼ାକ ମଧ୍ୟ ମନେପଡୁଛି । ହେଲେ ଚେହେରାଟା ? ସେଇଟା ସ୍ପଷ୍ଟ ନୁହେଁ, ଯେମିତି ଝାପ୍‌ସା, ଝାପ୍‌ସା, ଅସ୍ପଷ୍ଟ । ଭାବୁ ଭାବୁ ଓହ୍ଲାଇଗଲା ବକୁଳ ।

ମଝିଆନାନୀ ଭାରି ବିରକ୍ତ ହୋଇ କହିଲା— ବାବା ! ଏ ଦିପହର ରାତିରେ ଫେରେ କିଏ ଆସିଲା ମ ? ମରଣ ହଉନି ! ସେଇଥିପାଇଁ ସେମାନେ କହୁଥିଲେ, ଘର ତ ନୁହେଁ, ହାଟ-ବଜାର, ଦିନରାତି ଲୋକ ! ଭାରି ଜମକ ଦେଖେଇଦେଲୁ ସତରେ !

ଶେଷପଦକ ବକୁଳର କାନରେ ପଶିଲାନି । ସେ ସେତେବେଳକୁ ଓହ୍ଲାଇଗଲାଣି ।

ଜଳପାଇଗୁଡ଼ିର ନମିତା ! ସେଇ ଯୋଉ ରାତିମଝିରେ ଆସି ଧୀରେ ଧୀରେ କଥା କହୁଥିବା ଝିଅଟା । ଭାରି ଦୁଃଖିତ ଚେହେରା । ଦିନକର ଦେଖାରେ ହିଁ ଜୀବନର କାହାଣୀ କହିବାକୁ ବସିଥିଲା । ଅବଶ୍ୟ ଅନାମିକାଙ୍କ ଭାଗ୍ୟରେ ଏହିପରି ଅଭିଜ୍ଞତା ଅନେକ ଅଛି, ଅଦେଖା ମଣିଷ ଟେଲିଫୋନ୍‌ରେ ଡାକି ମଧ୍ୟ ଆପଣା ଜୀବନର ଦୁଃଖର କାହାଣୀ ଶୁଣାନ୍ତି— କିନ୍ତୁ ଏ ବୋହୂଟିର ଦୁଃଖ ଯେପରି ଟିକିଏ ଅନ୍ୟପ୍ରକାରର ।

କି ପ୍ରକାରର ?

ମନେପକାଇ ତଳକୁ ଯିବାକୁ ପଡ଼ିବ, ତା ନ ହେଲେ ଲାଜରେ ପଡ଼ିବାକୁ ହେବ । ସେ ଆହତ ହୋଇ କହିବ— ସେ କ'ଣ ? ମୋ କଥା ଆପଣଙ୍କର ମନେ ନାହିଁ ?

ହେଲେ ମନେପଡ଼ିଗଲା ।

ସ୍ୱାମୀ ସାଧୁ ହୋଇ ଚାଲିଯାଇଛନ୍ତି ହରିଦ୍ୱାର ନା ଋଷିକେଶକୁ କେଜାଣି କୋଉଠାକୁ ! କିନ୍ତୁ ତା'ର ମୁହଁଟା ମନେପଡୁନି କାହିଁକି ? ନମିତାର ମୁହଁଟା ଦେଖିବାକୁ କେମିତି ? ଭାବୁ ଭାବୁ ଓହ୍ଲାଇଆସି ଘରେ ପାଦ ପକାଇବା ସଙ୍ଗେ ସଙ୍ଗେ ମନେ ମନେ ଭାରି ଲଜ୍ଜିତ ହେଲେ ଅନାମିକା । ଭାବିଲେ— ଏତେ ଚିହ୍ନା ମୁହଁଟା ମନେପକାଇ ପାରୁ ନ ଥିଲି ? ଅଥଚ ଏଇଲେ ଏକାବେଳେ ଅତି ପରିଚିତ ଲାଗୁଛି ।

ହୁଏତ ଏମିତି ଲାଗିବାର କାରଣ ଝିଅଟାର ଏକାନ୍ତ ବିଶ୍ୱସ୍ତ ଚେହେରାଟା ପାଇଁ । ସେ ଯେମିତି ତା'ର କୌଣସି ପରମ ଆତ୍ମୀୟ ପାଖରେ ଆସି ଠିଆ ହୋଇଛି । ତା' ମୁହଁରେ ସେହି ଆଶ୍ରୟ-ପ୍ରାପ୍ତିର ଚିହ୍ନ ।

ସେହି ଚିହ୍ନ ମନେ ପକାଇଲା ମୁହଁଟା ଅତି ପରିଚିତ । ଯାକୁ ପୁଣି ଅନାମିକା ମନେପକାଇ ପାରୁ ନ ଥିଲେ !

ଆଜିକାଲି ଅନାମିକାଙ୍କର ପ୍ରାୟ ଏମିତି ହେଉଛି । ନାଁ ମନେପଡୁଛି ତ ମୁହଁଟା ମନେପଡୁନି । ପୁଣି ହୁଏତ ମୁହଁଟା ମନେପଡୁଛି ତ, ନାଁଟା ଜମା ମନେପକାଇ ପାରୁନାହାନ୍ତି । ସ୍ମୃତିର ଦ୍ୱାରରେ ମୁଣ୍ଡ ପିଟିଦେଲେ ମଧ୍ୟ ନୁହେଁ ।

ବୟସ ହୋଇଯିବାର 'ଏଇଟା ହିଁ ବୋଧହୁଏ ପ୍ରଥମ ଲକ୍ଷ୍ୟ । ଅବଶ୍ୟ ସମସ୍ତଙ୍କ ବୟସ ଗୋଟିଏ ନିୟମରେ ବଢ଼େନି । ସନତ କକେଇଙ୍କର କ'ଣ କାହା ମୁହଁ ଚିହ୍ନିବାକୁ ଡେରି ହୁଏ ? ଅଥବା ସେମାନଙ୍କ ନାଁଗୁଡ଼ିକ ମନେ ପକାଇବାକୁ ? କେଜାଣି ?

ଅନାମିକାଙ୍କୁ ଦେଖିଲାକ୍ଷଣି ଧଡ଼ପଡ଼ ହୋଇ ଉଠିପଡ଼ିଲା ନମିତା, ଆଗେଇଆସି ଅନାମିକା 'ଥାଉ ଥାଉ' ବୋଲି ପଛେଇଯିବା ସତ୍ତ୍ୱେ ପାଦଧୂଳି ନ ଦେଇ ଛାଡ଼ିଲାନି ଏବଂ ଅନାମିକା କିଛି କହିବା ଆଗରୁ ହିଁ ତରବର ହୋଇ କହି ପକାଇଲା— ଏତେ ରାତିରେ ଆସି ଭାରି ବିରକ୍ତ କଲିନି ତ ?

ଏ କ୍ଷେତ୍ରରେ ଯାହା କହିବା କଥା ସେଇୟା କହିଲେ ଅନାମିକା । ବିରକ୍ତ ହେବାର ପ୍ରଶ୍ନ ଯେ ଉଠୁନି ସେଇଟା ହିଁ ଜଣାଇଲେ ସୁନ୍ଦର ଭାବରେ । ତା'ପରେ କହିଲେ— କି ଖବର ?

ସ୍ୱଭାବସିଦ୍ଧ ମୃଦୁ ଗଳାରେ ନମିତା କହିଲା— ଖବର କିଛି ନାହିଁ । ଆପଣଙ୍କୁ ଦେଖିବାର ଇଚ୍ଛା ବହୁତ ହେଲା—

ଖାଲି ମତେ ଥରେ ଦେଖିବାକୁ ଇଚ୍ଛା ? ଅନାମିକା ହସିଲେ— ଆଶ୍ଚର୍ଯ୍ୟ ତ ସେଥିପାଇଁ ଏତେ କଷ୍ଟ କଲ ? କେବେ ଆସିଲ କଲିକତାକୁ ? ଏଠିକୁ ଆସିଲ କାହା ସାଙ୍ଗରେ ?

ଗୋଟି ଗୋଟି କରି କହିଲା ନମିତା— ମୋର ଜଣେ ପୁତୁରା ଆସି ଛାଡ଼ି ଦେଇଯାଇଛି । ଦଶଦିନ ହେଲା ଆସିଛି କଲିକତାକୁ । ଆପଣଙ୍କୁ ଆସି ଦେଖିବାକୁ କଷ୍ଟ କଲି କାହିଁକି କହୁଛନ୍ତି ? କଷ୍ଟ କ'ଣ ? ବରଂ କହନ୍ତୁ ଭାଗ୍ୟ ! ଆପଣଙ୍କ ଭଳି ମଣିଷମାନଙ୍କୁ ଆଖିରେ ଖାଲି ଦେଖିଲେ ପ୍ରାଣରେ ସାହସ ଆସେ ।

ନମିତା ଝିଅଟା ପ୍ରାଣରେ ସାହସ ସଂଗ୍ରହ କରିବା ପାଇଁ କେବଳ ଏତେ ରାତିରେ ଚେଷ୍ଟାକରି ସଙ୍ଗୀ ଯୋଗାଡ଼ କରି ଆସି ହାଜର ହୋଇଛି । ତା' ଅର୍ଥ ବର୍ତ୍ତମାନ କୌଣସି କାରଣରୁ ନମିତାର ସାହସ ଦରକାର ।

ତେବେ ପ୍ରଶ୍ନ କରି ବିପନ୍ନ ହେବା ସାହସ ହେଲାନି ଅନାମିକାଙ୍କର । ଏମିତି ପଚାରିଲେ— ଜଳପାଇଗୁଡ଼ିର ଖବର କ'ଣ ?

—ଖବର ଭଲ । ମାମୁଁ ବେଶ୍ ଭଲ ଅଛନ୍ତି । କହି ସେ କଥା ଛାଡ଼ି ନମିତା କହିଲା— ମୁଁ ସେଠୁ ସବୁଦିନ ପାଇଁ ଚାଲିଆସିଛି । ଆଉ ଫେରିବିନି ।

ଅନାମିକା ସେଭଳି କିଛି ଅନୁମାନ କରିଥିଲେ । ତାକୁ ଦେଖିଲାକ୍ଷଣି ଜଣାପଡୁଛି, ଯେତେ ମୃଦୁଛନ୍ଦରେ କଥା କହିଲେ ମଧ୍ୟ, ଆପାତତଃ ସେ ଏକ ଛନ୍ଦପତନର ଶିକାର, ତା'ର ସେ ଯେଉଁ 'ଲକ୍ଷ୍ମୀ ବୋହୂ'ର ଭୂମିକା, ସେ ଭୂମିକାରେ ଆଉ ବନ୍ଦୀ ହୋଇ ରହିନି ନମିତା ।

ତେବେକେ ପ୍ରଶ୍ନ ଭିତର ଦେଇ ଗଲେନି ଅନାମିକା, ସାବଧାନରେ କହିଲେ— ସତେ କି ?

—ହଁ, ମୁଁ ମନସ୍ଥିର କରି ଦେଇଛି । କାହିଁକି ଫେରିବି କହିଲେ ? ସେଠାରେ ମୋର ପ୍ରତ୍ୟାଶାର କ'ଣ ଅଛି ?

ଅନାମିକାଙ୍କର ମନେହେଲା— ସେ ବଦଳିଯାଇଛି । ଆଉଥରେ ଭାବିଲେ ସେ ବଦଳିଯାଇଛି, ଏକଥା ଭାବୁଛି କାହିଁକି ? ସେ ହୁଏତ ଏଭଳି ହିଁ ଥିଲା । ଦିନେ ଦି'ଦିନରେ କ'ଣ ମଣିଷକୁ ଚିହ୍ନିହୁଏ ? ମୁଁ କ'ଣ ତା' ଜୀବନର ସବୁ ଇତିହାସ ଜାଣିଛି ? ହୁଏତ ସେ ଏମିତି ଏକାଧିକ ଆଶ୍ରୟରୁ ଛିଟିକି ପଡ଼ି ବାହାରି ଆସୁଛି । ଏତ ମୂଳକେନ୍ଦ୍ରଠାରୁ ଚ୍ୟୁତ ହେଲେ ଏଭଳି ଗୋଟିଏ ଅବସ୍ଥା ହିଁ ଘଟେ ।

ସ୍ୱାମୀଙ୍କ ଘରଟା ଗୋଟିଏ ଆଇନସଙ୍ଗତ ଅଧିକାରର ମାଟି, ସେଠାରେ ଠିଆହୋଇ ଜୀବନ-ଯୁଦ୍ଧରେ ଲଢ଼ିବା ସହଜ । ସେଠାରେ 'ପ୍ରେମ' ନାମକ ଦୁର୍ଲଭ ବସ୍ତୁଟିକୁ ନେଇ ମୁଣ୍ଡ ନ ଘୂରାଇଲେ ବି କାମ ଠିକ୍ ଚଳିଯାଏ । କିନ୍ତୁ ଆଉ ସବୁ ତ ଅନଧିକାରର ଭୂମି । ସେଠାରେ କେବଳ ମନୋରଞ୍ଜନ ... ଜୋର୍‌ରେ

ତିଷ୍ଠି ହୁଏ । ଅତଏବ ପ୍ରତି ପଦପାତରେ ହିଁ ହତାଶ ହେବାକୁ ପଡ଼େ । ନମିତା ହୁଏତ ସେହିଭଳି ହତାଶ ହୋଇଛି ।

ଚେଷ୍ଟା କରି ଦେଖୁଛି, କାହାର ମନୋରଞ୍ଜନ କରି ହେବନି । କେଉଁଠି କୌଣସି ମନ ଯଦି ଆପଣାଛାଏଁ ରଞ୍ଜିତ ହେଲା ତ ହେଲା । ନଚେତ୍ ଶ୍ରମ ହିଁ ସାର ।

କିନ୍ତୁ ଏ କଥା ପଚାରି ହେବନି, ସେଥିପାଇଁ ଅନାମିକା କହିଲେ, କଲିକତାରେ ତମ ବାପଘର, ନୁହେଁ କି ?

ଅନାମିକା ଅବଶ୍ୟ ଅନ୍ଦାଜରେ ଟେକା ଫୋପାଡ଼ିଲେ । ହୁଏତ ନମିତା ତା'ର ପରିଚୟଲିପି ଦେଇଥିଲା ସେଦିନ ରାତିରେ, କିନ୍ତୁ ମନେରଖିବା ସମ୍ଭବ ନୁହେଁ । ଅଥଚ ସମ୍ଭବ ଯେ ନୁହେଁ, ସେ କଥା ଅପରକୁ ବୁଝାଇବା କଠିନ ।

ସେ ଭାବିବ, ଆଶ୍ଚର୍ଯ୍ୟ ! ଏତିକି କଥା ମନେ ରହିଲାନି ! ତେବେକେ ନମିତା ଏ ପ୍ରଶ୍ନରେ ଆହତ ହେଲା ।

ସେହି ଆହତ ସ୍ବରରେ ହିଁ କହିଲା— ବାପଘରେ ଫେରେ ମୋର କିଏ ଅଛି ? ଆପଣତ ସବୁ ଜାଣିଛନ୍ତି ! ସବୁକଥା ତ କହିଛି !

ବିପଦ ! ମନେ ମନେ ଅନାମିକା କହିଲେ, ସବୁ ତ କହିଥିଲ, ହେଲେ ମୋର କ'ଣ କିଛି ମନେଅଛି ? କିନ୍ତୁ ମୁହଁରେ ତ ସେକଥା କୁହାଯାଇପାରିବନି । ତେଣୁ କହିବାକୁ ପଡ଼େ— ହଁ ସେ କଥା ତ ଜାଣିଛି । ତେବେ...... ମାନେ କହୁଥିଲି କ'ଣ କି, ଏଇଲେ ତ କଲିକତାରେ ରହିବାକୁ ପଡ଼ିବ ?

ଅନାମିକାଙ୍କ ସ୍ବର ନିରୁତ୍ତାପ, ନିର୍ଲିପ୍ତ, କିନ୍ତୁ ନମିତା ସେ ନିର୍ଲିପ୍ତ ଭଙ୍ଗୀଟା ଧରିପାରିଲା ନାହିଁ । ନମିତାର ବୋଧହୁଏ ମନେହେଲା, ଏଇଟା ନିର୍ଦ୍ଦେଶ, ସେଥିପାଇଁ ନମିତା ଈଷଦ୍ ଉତ୍ତେଜିତ ଗଳାରେ କହିଲା, "ରହିବାକୁ ଯେ ବାଧ୍ୟ ତା'ର କିଛି ଅର୍ଥ ନାହିଁ । ଏବେ ମୁଁ ସ୍ବାଧୀନ, ଏବେ ମୁଁ ଯାହା ଇଚ୍ଛା କରିପାରେ ।"

ଆଶ୍ଚର୍ଯ୍ୟ !!

ହଠାତ୍ ଏମିତି ଅଗାଧ ସ୍ବାଧୀନତା କୋଉ ସୂତ୍ରରୁ ଲାଭ କରିପକାଇଲା ନମିତା ? ହେଲେ ନମିତା ନିଜେ ସୂତ୍ରଟା ଧରାଇ ଦେଲା । ଧରାଇଦେଲା ତା'ର ଉତ୍ତେଜିତ ଚିତ୍ତର ପରସ୍ପର-ବିରୋଧୀ ସଂଳାପ ।

—ହଠାତ୍ ଦିନେ ଆଖିଟା ଖୋଲିଲା ବୁଝିଲେ ? ହଠାତ୍ ନିଜକୁ ନିଜେ ପଚାରିଲି, ଏଠି ଏମିତି ଦାସୀ ପରି ତୁ ପଡ଼ିରହିଛୁ କାହିଁକି ? ଉତ୍ତର ପାଇଲି— ଖାଲି ଦି'ମୁଠା ଭାତ ପାଇଁ ।' ନିଜ ଉପରେ ଘୃଣା ଧରିଗଲା ।

ଅନାମିକା ଶାନ୍ତଗଳାରେ କହିଲେ— ଖାଲି ଭାତ ପାଇଁ ବୋଲି କାହିଁକି କହୁଛ ନମିତା ? ତା'ଠାରୁ ବହୁତ ବଡ଼ କଥା ହେଉଛି ''ଆଶ୍ରୟ ?'' ଆଶ୍ରୟ, ନିରାପତ୍ତା, ସାମାଜିକ ପରିଚୟ— ଏଗୁଡ଼ିକ ପାଖରେ ହିଁ ମଣିଷ ନିରୁପାୟ ।

କିନ୍ତୁ ନମିତା ଏ ଯୁକ୍ତିରେ ବିଚଳିତ ହେଲା ନାହିଁ । କାରଣ ନମିତାର ଆଖି ହଠାତ୍ ଖୋଲିଯାଇଛି ।

ଦୃଷ୍ଟିହୀନର ଦୃଷ୍ଟି ହଠାତ୍ ଖୋଲିଯିବାଟା ଅତି ଭୟାନକ, ସେହି ସଦ୍ୟଖୋଲା ଦୃଷ୍ଟିରେ ସେ ଯେତେବେଳେ ନିଜର ଅତୀତକୁ ଦେଖିବାକୁ ପାଏ ଏବଂ ସେହି ଦେଖା ଭିତରେ ଆପଣାର 'ଅନ୍ଧତ୍ୱ'ର ଶୋଚନୀୟ ଦୁର୍ବଳତାକୁ ଆବିଷ୍କାର କରେ, ସେତେବେଳେ ଲାଜରେ, ଧିକ୍କାରରେ ମାରମୁଖୀ ହୋଇପଡ଼େ । ଆଉ ସେତେବେଳେ ସେହି ଦୁର୍ବଳତାର ତ୍ରୁଟି ପୂରଣର ଚେଷ୍ଟାରେ କାଣ୍ଡଜ୍ଞାନହୀନ ହୋଇଯାଏ ।

—ମତେ ସମସ୍ତେ ଠକି ଖାଇଛନ୍ତି, ବୁଝିଲେ ? ସମସ୍ତେ ମୋଠାରୁ ସୁବିଧା ମାରିଛନ୍ତି ! ମୁଁ ଯେ ଗୋଟାଏ ରକ୍ତମାଂସର ମଣିଷ, ମୋର ମଧ୍ୟ ଯେ ସୁଖଦୁଃଖ ବୋଧ ଅଛି, ଶାନ୍ତି-କ୍ଳାନ୍ତି ଅଛି, ଭଲ ଲାଗିବା ନ ଲାଗିବା ଅଛି । ସେକଥା କୋଉଦିନ କାହାର ଖିଆଲ ହୋଇନି ।

ନମିତାର ନିଜର ମଧ୍ୟ ଯେ ଖିଆଲ ହୋଇନି, ଏକଥା ତାକୁ କିଏ ବୁଝାଇବ ? 'ସୁନା-ବୋହୂ' ନାଁ କିଣିବା ପାଇଁ, ଅସହାୟର ପରମ ଆଶ୍ରୟଟିକୁ ଟାଣିଆ ରଖିବାକୁ ନିଜକୁ ପଥର ଭଳି କରି ରଖିଥିଲା ନମିତା । ତେଣୁ ନମିତାର ପରିବେଶଟା ଭୁଲିଯାଇଥିଲା ଯେ ନମିତା ରକ୍ତମାଂସର ମଣିଷ ।

କିନ୍ତୁ ତା'ର ଉତ୍ତେଜିତ ଅବସ୍ଥାରେ କୁହାଯାଇପାରିବନି ସେ କଥା । କହିହେବନି, ନମିତା ଏକାବେଳେ ପଥରର ଦେବୀ ହୋଇ ବସିଲେ ପୁଣି ରକ୍ତମାଂସର ଭୂଇଁକୁ ଓହ୍ଲାଇଆସିବା ବଡ଼ କଠିନ । ତମେ ହିଁ ହେବ ତମର ମୁକ୍ତିର ପ୍ରତିବନ୍ଧକ । ଅଥବା ହୁଏତ ତୁମେ ତୁମର ଏହି ନବଲବ୍ଧ ସ୍ୱାଧୀନତା ଟିକକକୁ ଅପବ୍ୟବହାର କରି ନାମ-ପରିଚୟହୀନ ଅନ୍ଧକାରରେ ହଜିଯିବ ।

କିନ୍ତୁ ଏସବୁ ତ ଅନୁମାନ ମାତ୍ର, ଏସବୁ ତ କହିବାର କଥା ନୁହେଁ ! ଅଥଚ କହିବା ପରି କଥା କ'ଣ ବା ଅଛି ? ଜଣକର ଜୀବନର ସମସ୍ୟାର ସମାଧାନ କ'ଣ ଆଉଜଣେ କରିଦେଇପାରେ ?

ଅଥଚ ନମିତା ମାଗିବାକୁ ଆସିଛି ସେ ସମାଧାନ । କେବଳ ମାତ୍ର ଦେଖିବାର ଇଚ୍ଛାରେ ଦଉଡ଼ି ଚାଲିଆସିବାର ଯେଉଁ ମଧୁର ଭାଷ୍ୟଟି ନମିତା ଅନାମିକାଙ୍କୁ ଉପହାର ଦେଇଛି, ତା' ଭିତରେ ଯେ ବହୁତ ଛଳନା ରହିଛି, ସେକଥାଟା ନମିତା ନିଜେ ଜାଣିପାରିନି ।

ସେଇଥିପାଇଁ ସେ ସେ କଥା କହିବା ପରେ ସହଜରେ କହିପାରୁଛି– ବର୍ତ୍ତମାନ ମୁଁ କେଉଁ ରାସ୍ତାରେ ଯିବି ଆପଣ କହିଦିଅନ୍ତୁ । ଏ କଥା ପଚାରିବାକୁ କେବଳ ଏତେ କଷ୍ଟରେ ଆସିଛି ।

ଅନାମିକା ଆସ୍ତେ କହିଲେ– ଜଣକର କର୍ତ୍ତବ୍ୟ କ'ଣ ଆଉଜଣେ ଠିକ୍ କରିଦେଇପାରେ ନମିତା ?

–"ଆପଣମାନେ ନିଶ୍ଚୟ ପାରିବେ ।" ଆବେଗପୂର୍ଣ୍ଣ ଗଳାରେ ନମିତା କହିଲା ଆପଣଙ୍କ ଭଳି କବିମାନେ, ସାହିତ୍ୟିକମାନେ ତ ଆମର ପଥପ୍ରଦର୍ଶକ ।

"ସେଇଟା ଅଜ୍ଞାତସାରରେ ହୋଇଯାଇପାରେ–" ମୃଦୁ ହସିଲେ ଅନାମିକା, ପ୍ରତ୍ୟକ୍ଷ ଭାବରେ ଗାଇଡ୍ ସାଜି କିଛି କହିବା କଷ୍ଟକର । ତମେ ତ ଅବଶ୍ୟ ତମ ନିଜର କୌଣସି ଗୋଟିଏ ରାସ୍ତା ବିଷୟରେ ଯାହା ପରିକଳ୍ପନା ଅଛି, ତା' ଜାଣିଥିବ ?

ନମିତା ଟିକିଏ ତୁନିହୋଇ ରହି ହତାଶ-ହତାଶ ନିଃଶ୍ୱାସ ପକାଇ କହିଲା– ବିଶେଷକରି କିଛି ଗୋଟାଏ ଭାବି ପାରୁନି ମୁଁ । ଅନେକ ପଥ ଅନେକ ଦିଗରେ ଚାଲିଯାଇଛି ; ଶୁଣିଲେ ଆପଣ ହୁଏତ ହସିବେ । ହଠାତ୍ କ'ଣ ମନେ ହେଉଛି ଜାଣିଛନ୍ତି, ଜଣେ ଗରିବ ଲୋକ ହଠାତ୍ ଲଟେରିରେ ଅନେକ ଟଙ୍କା ପାଇଗଲେ ତା'ର ଅବସ୍ଥା ଯେପରି ହୁଏ, ସେ କ'ଣ କରିବ ଭାବିପାରେନି, ମୋର ଯେପରି ସେଇୟା ହୋଇଛି । ମୋର ଏ ଜୀବନଟା ଯେପରି ପ୍ରଥମ କରି ଏବେ ଆସିଲା ମୋ ହାତକୁ, ଭାବିପାରୁନି ସେଇଟାକୁ ନେଇ କ'ଣ କରିବି !

ପୁଣି ହସିଲେ ଅନାମିକା, କହିଲେ– ତମର ଉପମାଟି ଅତି ସୁନ୍ଦର ନମିତା, ମୋର ନିଜର ଇଚ୍ଛା ହେଉଛି ମୋ ଲେଖାର କେଉଁଠି ରଖିଦେବାକୁ । କିନ୍ତୁ ବୁଢ଼ାମଣିଷର ପରାମର୍ଶ ଯଦି ଶୁଣିବ ତ କହୁଛି– ଲଟେରିରେ ମିଳିବା ଟଙ୍କାଟାକୁ କେମିତି ଖର୍ଚ୍ଚ କରିବି ଭାବି ବାଉଳା ହେବା ଆଗରୁ ତମର ସର୍ବପ୍ରଥମ କର୍ତ୍ତବ୍ୟ ହେଉଛି ଟଙ୍କାଟାକୁ ବ୍ୟାଙ୍କ୍‌ରେ ରଖିଦେବା । ତା'ପରେ ଭାବିଚିନ୍ତି ଧୀରେସୁସ୍ଥେ–

ନମିତା କ୍ଳାନ୍ତଗଳାରେ କହିଲା, "କିନ୍ତୁ ଧୀରେସୁସ୍ଥେ କିଛି କରିବାର ସମୟ ମୋର କାହିଁ ? ଜଣେ ପିଉସୀପୁଅ ଭାଇନାଙ୍କ ଘରେ ଆସି ଓହ୍ଲାଇଛି, ସେଠି ଆଉ କେତେଦିନ ରହିହେବ କହନ୍ତୁ ? ଏଠୁ ଚାଲିଯିବାକୁ ପଡ଼ିବ ନିଶ୍ଚେ଼ । କିନ୍ତୁ କେଉଁଆଡ଼କୁ ଯିବି ?

ଅନାମିକା କୋମଳ କରି କହିଲେ– କିଛି ମନେ କରିବନି ନମିତା, ପଚାରୁଛି ଜଳପାଇଗୁଡ଼ିରେ ରହିବାଟା କ'ଣ ସତରେ ଆଉ ସମ୍ଭବ ହେଲାନି ?

ନମିତା ଆଖି ଟେକି ଚାହିଁଲା ।

ନମିତା ବୋଧହୁଏ ଟିକିଏ ହସିଲା ମଧ୍ୟ, ତା'ପରେ କହିଲା, ଅସମ୍ଭବ କିଛି ନ ଥିଲା । ଯେମିତି ଥିଲି ଠିକ୍ ସେମିତି ରହିଥିଲେ ମଲାପର୍ଯ୍ୟନ୍ତ ରହିଯାଇପାରିଥାନ୍ତି । ମତେ ତ କିଏ ତଡ଼ି ଦେଇ ନାହାନ୍ତି । ଆଉ ନୂଆ କିଛି ମନାନ୍ତର, ମତାନ୍ତରର ଘଟଣା ମଧ୍ୟ ଘଟିନି । ଏତେଦିନ ହେଲା ଜୀବନର ଖାତାଖଣ୍ଡିକରେ ଦିନର ପୃଷ୍ଠାଗୁଡ଼ିକ ହଠାତ୍ ଓଲଟାଇ ଚାଲିଛି, ଦିନରୁ ରାତି, ରାତିରୁ ଦିନ– ଖାତାର ପୃଷ୍ଠା ହଠାତ୍ କେଉଁ ଜାଗାରେ ହେଲେ ହୁଏତ ସରିଯାଇଥାନ୍ତା । କିନ୍ତୁ ଥରେ ତ ଗୋଟାଏ ହିସାବନିକାଶ କରିବାକୁ ହିଁ ପଡ଼ିବ ! ସେଇଟା କରିବାକୁ ବସି ହଠାତ୍ ଆଖିରେ ପଡ଼ିଲା ଖାଲି ବାଜେ ଖର୍ଚ୍ଚର ପର୍ବତ ଜମି ଉଠିଲାଣି !

–"ନାଃ, ତମେ ଝିଅ ଜଣେ ସାହିତ୍ୟିକ ହେବା ଉଚିତ ଥିଲା ।" ଅନାମିକା କହିଲେ "– କି ସୁନ୍ଦର ସୁନ୍ଦର ଉପମା ଦେଇପାରୁଛ ! କିନ୍ତୁ ମୁଁ କହିଥିଲି କ'ଣ କି, ହୁଏତ ସେହି ବାଜେ ଖର୍ଚ୍ଚର ଅଙ୍କଟା ପୂରା ଠିକ୍ ନୁହେଁ । ହୁଏତ ତା'ରି ଭିତରେ ମଧ୍ୟ କିଛି କାମରେ ଲାଗିବା ଖର୍ଚ୍ଚ ଅଛି ।"

–କିଛି ନାଇଁ, କିଛି ନାଇଁ । ଆପଣ ଜାଣନ୍ତି ନାହିଁ, ଏତେଦିନର ପ୍ରାଣପାତ ସେବାର ପୁରସ୍କାର ଏତିକି ଟିକିଏ ମଧ୍ୟ ସ୍ନେହ ପାଇନି । ଖାଲି ସ୍ୱାର୍ଥ, ସେଇଥିପାଇଁ କେବଳ ମିଠା କଥା । କହନ୍ତୁ ଯେଉଁଠି ଟିକିଏ ବୋଲି ସ୍ନେହ ନାହିଁ, ସେଠି ମଣିଷ ଚିରକାଳ ରହିପାରିବ ?

ମନେ ମନେ ହସିଲେ ଅନାମିକା । ଅନାମିକାଙ୍କର ମନେହେଲା, ତମ ଆଖି ସତରେ ହଠାତ୍ ଖୋଲିଯାଇଛି । ଅନ୍ଧତ୍ୱଟା ଅତି ବେଶୀ ଥିଲା ବୋଲି ସେଇ ଖୋଲା ଆଖିରେ ମଧ୍ୟାହ୍ନର ଖରାଟା ଅସହ୍ୟ ଲାଗୁଛି ।

ତେବେବେ ସ୍ନେହ-କାଙ୍ଗାଳ ଝିଅଟା ପାଇଁ କରୁଣା ହେଲା, ସେ ମମତା ଅନୁଭବ କଲେ ଝିଅଟା ପାଇଁ । 'ଏଡ଼ିକି ସାନ ବସାଟିଏ'ର କାଙ୍ଗାଳ ସାନ ପକ୍ଷୀଟିଏ ଦେଖିଲେ ଯେମିତି ମନେହୁଏ । ସେଇ ବସାଟାର ଆଶାରେ ପକ୍ଷୀଟା ଝଡ଼ ମୁହଁରେ ପଡ଼ିବାକୁ ଯାଉଛି । କହିଲେ– ନମିତା, ପୃଥିବୀଟା ଠିକ୍ ଏମିତି !'

"ଠିକ୍ ଏମିତି ?" ନମିତା ଉତ୍ତେଜିତ ହୋଇଗଲା, "ଆପଣ କ'ଣ କହୁଛନ୍ତି ? ପୃଥିବୀରେ ସ୍ନେହ ନାହିଁ ? ମମତା ନାହିଁ ? ହୃଦୟ ନାହିଁ ? ଯଦି ନାହିଁ ଆପଣ ମତେ ଏତେ ସ୍ନେହ କଲେ କାହିଁକି ? ଆପଣ ତ ମୋର କେହି ନୁହଁନ୍ତି ।

ଅନାମିକା ଯେମିତି ହଠାତ୍ ଗୋଟାଏ ହାତୁଡ଼ିର ପାହାର ଖାଇଲେ । ମରମରେ ମରିଗଲେ ଅନାମିକା । ସେଇ ନିତାନ୍ତ ନିର୍ବୋଧ ଝିଅଟାର ଏହି ସରଳ ବିଶ୍ୱାସ ଆଗରେ ନିଜକୁ ଯେପରି ଅତି ଛୋଟ ମନେହେଲା ।

ସ୍ନେହ ? କେଉଁଠାରେ ସେ ଐଶ୍ୱର୍ଯ୍ୟ ଅଛି ?

ଶମ୍ପା ପାଇଁ ଯେଉଁ ଉଦ୍‌ବେଗ ଅଛି, ଶମ୍ପା ପାଇଁ ଯେଉଁ ପ୍ରାର୍ଥନା କରିଛନ୍ତି, ଶମ୍ପା ପାଇଁ ଯେଉଁ ଅସରନ୍ତି ସ୍ନେହ, ସେଥିର ଶତାଂଶର ଏକାଂଶ ମଧ୍ୟ କ'ଣ ଏ ଝିଅଟା ପାଇଁ ସଞ୍ଚିତ ଥିଲା ଅନାମିକାଙ୍କର ?

ଅନାମିକା ତ ତାକୁ ପୂରା ଭୁଲିଯାଇଥିଲେ ।

ଅଥଚ ସେ ଭାବିଛି ଅନାମିକା ତାକୁ ସ୍ନେହ କରନ୍ତି !

ଇସ୍ ! ସତରେ ଯଦି ତା ହୋଇଥାନ୍ତା ? ଅନାମିକାଙ୍କର ଯେମିତି ନିଜ ପାଖରେ ହିଁ ନିଜର ମୁଣ୍ଡ କଟି ଯାଉଛି ।

ଆମମାନଙ୍କ ମନ କେଡ଼େ ଦୀନ ! ଆମମାନଙ୍କ ପ୍ରକୃତିରେ କେତେ ଛଳନା ! ଆମମାନଙ୍କ ବ୍ୟବହାର ଭିତରେ କେତେ ଅସତ୍ୟ ! କାହିଁ ଅନାମିକା କ'ଣ ସ୍ପଷ୍ଟକରି ତା ମୁହଁ ଉପରେ କହିପାରିଲେ– ଭଲ ପାଇବା ? ସ୍ନେହ ? କାହିଁ ସେ ଜିନିଷଟା ତ ତମପାଇଁ ଅଛି ବୋଲି ମନେହେଉନି ଝିଅ ? ମୁଁ ଦେଖିପାରୁନିତ ? ଯାହା ଅଛି ତା' ତ କେବଳମାତ୍ର ଟିକିଏ କରୁଣାମିଶ୍ରିତ ମମତା !

ନା, କହିପାରିଲେନି ଅନାମିକା ।

ସେହି ମିଥ୍ୟାର ମୋହ ଦେଇ ଗଢ଼ା କେତୋଟି ମଧୁର କଥା କହିଲେ– ତମେ ବି ଯେ ମତେ ସ୍ନେହ କରୁଛ । ସ୍ନେହ ହିଁ ସ୍ନେହକୁ ଟାଣିଆଣେ ।

–ନିଆଁ ପାଉଁଶ ଆଣେ ! ପୃଥିବୀକୁ ତ ଦେଖିଲି !

ଅନାମିକାର ମନେହେଲା ଅଭିମାନଟା ଯେତେବେଳେ "ମଣିଷର କ୍ଷୁଦ୍ର ଘରସଂସାର"ର ପରିଧିକୁ ଡେଇଁ ସମଗ୍ର ପୃଥିବୀ ଉପରେ ଯାଇ ଅଜାଡ଼ି ହୋଇଯାଏ, ସେତେବେଳେ ତା'ର ସ୍ୱାଭାବିକ ସୁସ୍ଥତା ଫେରାଇଆଣିବା କଷ୍ଟକର ।

ତେବେକେ ତ କିଛି କହିବାକୁ ପଡ଼ିବ, ସେଥିପାଇଁ କହିଲେ, "ଆଚ୍ଛା, ନିଜେ ନିଜେ ତ କ'ଣହେଲେ ଭାବିବ ?"

–"ସେଇୟା ତ !" ନମିତା ମୁଣ୍ଡ ଉଠାଇ କହିଲା– ମୁଁ ତାଙ୍କ ପରି ସନ୍ନ୍ୟାସୀ ହେଇଯିବି ? ତାଙ୍କ ପାଖକୁ ଚାଲିଯିବି ? କିଛିଦିନ ହେଲା ଏ ଭାବନାଟା ହିଁ ମନରେ ଦେଖାଦେଇଛି । ସେ ଜୀବନରେ କେତେ ମାନ-ସମ୍ମାନ ଗୌରବ ! ଆଉ ପରର ଆଶ୍ରିତ ଏଜୀବନରେ କ'ଣ ଅଛି ? ମାନ ନାହିଁ, ସମ୍ମାନ ନାହିଁ, ଗୌରବ ନାହିଁ–

ସତରେ ଦୁଃଖ ଲାଗିଲା ଅନାମିକାଙ୍କୁ । ଅନାମିକା ଅନୁଭବ କଲେ ବ୍ୟଥାଟା କେଉଁଠାରେ ? ତେବେକେ ଆସ୍ତେ କହିଲେ– ତାଙ୍କ ପାଖକୁ ଚାଲିଯିବି କହିଲେ ତ ଆଉ ଚାଲି ଯାଇପାରିବନି । ତାଙ୍କର ମତାମତ ଜାଣିବା ଦରକାର, ସେଠାରେ ରହିବାଟା ସମ୍ଭବ ହେବକି ନାହିଁ ଜାଣିବା ଦରକାର–''

–''ଆପଣ ମଧ୍ୟ ଏକଥା କହୁଛନ୍ତି ?'' ନମିତା ଯେପରି ହଠାତ୍ ଆହତ ହୋଇ ଅଭିମାନରେ ଫଣା ଟେକିଲା– ମୋର ସେ ଜଳପାଇଗୁଡ଼ିର ଆତ୍ମୀୟମାନଙ୍କ ପରି ? ରହିବା କାହିଁକି ସମ୍ଭବ ହେବନି ? ମୁଁ ତ ତାଙ୍କ ସଙ୍ଗେ ଘରସଂସାର ବସାଇ ରହିବାକୁ ଚାହୁଁନି । ତା'ଛଡ଼ା ମତର କଥା କାହିଁକି ଉଠୁଛି ? ମୁଁ କ'ଣ ତାଙ୍କର ବିବାହିତା ସ୍ତ୍ରୀ ନୁହେଁ ? ମୋର କ'ଣ ଗୋଟାଏ ଅଧିକାର ନାହିଁ ?

ନମିତାର ଏହି ସଦ୍ୟଜାଗ୍ରତ ଅଧିକାରବୋଧର ଚେତନା ଓ ସ୍ୱାଧୀନତାର ଚେତନା ହିଁ ଯେ ତାକୁ ବିପର୍ଯ୍ୟସ୍ତ କରୁଛି, ସେଥିରେ ସନ୍ଦେହ ନାହିଁ । ତା'ର ସେହି ଅସ୍ଥିର ଚାଞ୍ଚଲ୍ୟର ମାଟିରେ ଉପଦେଶର ବୀଜ ବୁଣିବା ବୃଥା, ତେବେକେ ଅନାମିକା କହିଲେ– ଜୀବନକୁ ଆହୁରି କେତେପ୍ରକାର ଗଢ଼ାଯାଇ ପାରିବ !

–ଗଢ଼ି ହେବନି । ମୋ ଭଳି ସ୍ତ୍ରୀଲୋକମାନଙ୍କର କିଛି ହୁଏ ନାହିଁ । ମୁଁ କ'ଣ ସାହିତ୍ୟିକ ହୋଇପାରିବି ଯେ ଲୋକଙ୍କ ପାଖରେ ବଡ଼ ମୁହଁ ନେଇ ଠିଆ ହୋଇପାରିବି ? ମୁଁ କ'ଣ ବଡ଼ ଗାୟିକା ହୋଇପାରିବି ? ମୋର କ'ଣ ଅନେକ ଟଙ୍କା ଅଛି ଯେ ଦାନ ଧ୍ୟାନ କରି ନାଁ କିଣିପାରିବି ? ମୋ ପକ୍ଷରେ ବଡ଼ ହେବାର ତ ସେହି ଗୋଟିଏ ମାତ୍ର ପଥ ଦେଖିପାରୁଛି, ଭଗବାନଙ୍କୁ ଡାକି ଡାକି ଅଧ୍ୟାତ୍ମଜଗତର ଅନେକ ଉଚ୍ଚକୁ ଉଠିଯାଇପାରେ ।

ନମିତାର ଆବେଗଭରା ମୁହଁଟି ଆଡ଼କୁ ଚାହିଁଲେ ଅନାମିକା । ଅନାମିକା ନିଃଶବ୍ଦରେ ଟିକିଏ ହତାଶ ନିଃଶ୍ୱାସ ପକାଇଲେ । ବଡ଼ ହେବାର କ୍ଷମତା ନ ଥାଇ ମଧ୍ୟ ଯିଏ ତାହା ହେବାକୁ ଚାହେଁ ତାକୁ ରକ୍ଷାକରିବା କଠିନ ।

ଅଥଚ ଏପଟେ ରାତି ବଢ଼ିଯାଉଛି, ଚାକର ଟୋକାଟା ଦି'ଥର ବୁଲିଗଲାଣି ଦୁଆର ମୁହଁରେ, କାରଣ ଏ ବସିବାର ଘରଟା ହିଁ ତା'ର ରାତିର ଶୟନମନ୍ଦିର !

କେତେ କମ୍ କ୍ଷମତା ଆମମାନଙ୍କର ! ନିଃଶ୍ୱାସ ପକାଇ ଭାବିଲେ ଅନାମିକା, କାହା ପାଇଁ କ'ଣ ବା କରି ପାରିବି ?

ଆମେ ହୁଏତ ଲୋକଙ୍କ ରୋଗରେ ସେବା କରିପାରିବା, ଅଭାବରେ ସାହାଯ୍ୟ କରିପାରିବା, କିନ୍ତୁ କାହାର ଜୀବନରେ ଯଦି ବିଶୃଙ୍ଖଳା ଆସିଯାଏ ? ଯଦି କାହାର ମନ ତା' ନିଜର ଶୁଭବୁଦ୍ଧିର ଆୟତ୍ତ ବାହାରେ ଚାଲିଯିବ ?

କରିପାରିବାର କିଛି ନାହିଁ । ହୁଏତ କିଛି ଶୁଖିଲା ଉପଦେଶ ବିତରଣ କରି ମନକୁ ଭୁଲାଇପାରେ । ଭାବି ପାରେ– ବହୁତ ତ କହିଲି ! ନ ଶୁଣିଲେ କ'ଣ କରିବି ?

ତା'ଛଡ଼ା ପ୍ରତ୍ୟକ୍ଷଭାବରେ ବା କେତେଟିକିଏ କ୍ଷମତା ଅଛି ମୋର ? ଅନାମିକା ଭାବିଲେ– ମୁଁ କ'ଣ ତାକୁ ସାଙ୍ଗରେ ନେଇ ତା'ର ସେଇ ପଳାତକ ସ୍ୱାମୀଟା ପାଖରେ ପହଞ୍ଚାଇ ଦେବା ସାହାଯ୍ୟଟିକକ କରିପାରିବି ? ପାରିବିନି, ଖାଲି ତାକୁ ଆର୍ଥିକ ସାହାଯ୍ୟ କରିପାରେ । ବହୁତ ସାବଧାନରେ କହିଲେ– ହେଲେ ତମେ କ'ଣ ତମର ସ୍ୱାମୀଙ୍କର ଠିକଣା ଜାଣିଛ ?

–ଜାଣିଛି ।

–ଚିଠିପତ୍ର ଦେଉଛ ?

ନମିତାର ଦୁଇ ଆଖିରୁ ହଠାତ୍ ଲୁହ ଝରିପଡ଼ିଲା, କହିଲା– ଆଗ ଆଗ ଅନେକ ଦେଇଛି, ଉତ୍ତର ଦିଅନ୍ତି ନାହିଁ, ଥରେ ମାମୁଙ୍କ ପାଖକୁ ଗୋଟାଏ ପୋଷ୍ଟକାର୍ଡ଼ରେ ଲେଖି ପଠାଇଲେ '– ସେଠୁ ଚିଠିପତ୍ର ଆସିବାଟାକୁ ମୁଁ ପସନ୍ଦ କରୁନି ।' ବାସ୍, ସେ ଦିନୁ–

ଅନାମିକା ସେହି ଅଶ୍ରୁଲାଞ୍ଛିତ ମୁହଁଟା ଆଡ଼କୁ ଚାହିଁ ଦେଖିଲେ । ନିଜକୁ ହିଁ ଯେପରି ଭାରି ଅପରାଧୀ ମନେ ହେଲା ଅନାମିକାଙ୍କର । ଯେପରି ଏ ଝିଅଟାର ଦୁଃଖର କାରଣ ଭିତରେ ତାଙ୍କର ମଧ କିଛି ଅଂଶ ଅଛି । ସାରାଜୀବନ ଧରି ସେ ଯାହା କିଛି ଲେଖିଛନ୍ତି, ସେଥିର ଅଧିକାଂଶ ହିଁ ସ୍ତ୍ରୀଲୋକମାନଙ୍କର ଚିନ୍ତାର ମୁକ୍ତି କଥା ଭାବି । କିନ୍ତୁ ମୁକ୍ତିର ପଥଟା କେଉଁଠି ତା ଦେଖାଇ ଦେଇ ପାରି ନାହାନ୍ତି ।

କିନ୍ତୁ କେହି କ'ଣ ତାହା ପାରିବ ?

କୌଣସି କବି, କୌଣସି ସାହିତ୍ୟିକ ?

କେଉଁ ସମାଜସେବୀ ?

ସାମଗ୍ରିକ ଭାବରେ କିଛି କରିବାର କ୍ଷମତା ଏମାନଙ୍କର ନାହିଁ ।

–ଏଥର ଭାବୁଛି କୌଣସି ଖବର ନ ଦେଇ ସିଧା ଚାଲିଯିବି, ଦେଖିବି କେମିତି ତଡ଼ିଦେବେ ?

ଅନାମିକା ଚିନ୍ତିତ ହେଲେ ।

କହିଲେ– ସେଇଟା କ'ଣ ଠିକ୍ ହେବ ? କହୁଛ ତ ସେଇଟା ଗୋଟିଏ ଆଶ୍ରମ ସେଠି ନିଶ୍ଚେ ଅନ୍ୟ ସାଧୁ ସନ୍ନ୍ୟାସୀ ଥିବେ, ସେମାନେ ଯଦି......

ନମିତା ପ୍ରାୟ ଛିଟିକିପଡ଼ିଲା ଭଳି କହିଲା— ଆପଣଙ୍କ ପାଖକୁ ମୁଁ କିଛି ନୂଆକଥା ଶୁଣିବାକୁ ଆସିଥିଲି । ଅଥଚ ଆପଣ ମୋର ସବୁ ଆତ୍ମୀୟମାନଙ୍କ ଭଳି କଥା କହୁଛନ୍ତି ।

ଅନାମିକା ଅବଶ୍ୟ ଲଜ୍ଜିତ ହେଲେ । କିନ୍ତୁ ଏହି ହଠାତ୍ ପାଗଳ ହୋଇଯାଇଥିବା ଝିଅଟିକୁ ସେ କି ନୂଆ ଉପଦେଶ ବା ଦେବେ ? ତା'ରି ଭଳି ପୃଥିବୀଟାକୁ ତ ସେ ଏତେ କମ୍ ଦେଖି ନାହାଁନ୍ତି ? ଅପରାଧୀର ଗଳାରେ ଆସ୍ତେ କହିଲେ— ମୁଁ ମଧ୍ୟ ତମର ଆତ୍ମୀୟ ନମିତା ! ସେଇଥିପାଇଁ ତମକୁ ନୂଆକଥା କହି ବିଭ୍ରାନ୍ତ କରି ପାରିବିନି । ତେବେ ସତରେ ଯଦି ତମେ ଯିବ, ତମ ସଙ୍ଗେ ନିଶ୍ଚେ ଜଣେ କେହି ପିଲା ଫିଲା ଯିବ ! ଅନେକ ଖର୍ଚ୍ଚ ହେବ— ରାଗିବନି ଯଦି ତା'ହେଲେ କହୁଛି......

ନମିତା ବାଧା ଦେଲା ।

ଏଥର ନମ୍ର ଗଳାରେ କହିଲା ନମିତା— ଆପଣଙ୍କ ସ୍ନେହ ମୋର ମନେଥିବ । କିନ୍ତୁ ଭାରି ଦରକାର ପଡ଼ିଲେ ମଧ୍ୟ ଟଙ୍କାର ସାହାଯ୍ୟ ମୁଁ ଆପଣଙ୍କ ପାଖରୁ ନେବି ନାହିଁ । ମୋ ଦେହରେ ଏବେ ମଧ୍ୟ କିଛି ସୁନା ଅଛି ।

— କିନ୍ତୁ ନମିତା—''

ଅନାମିକା ତୁନିହେଲେ । ସାଙ୍ଗେ ସାଙ୍ଗେ ତାକୁ କ'ଣ ହତାଶାର କଥା ଶୁଣାଇବା ଉଚିତ ହେବ ? ଅଥଚ ସେ ନିଶ୍ଚିତରୂପେ ବୁଝିପାରୁଛନ୍ତି, ନମିତାକୁ ନିଶ୍ଚେ ଫେରିଆସିବାକୁ ପଡ଼ିବ । ସାବଧାନରେ କହିଲେ— କିନ୍ତୁ ନମିତା, ଧର ଯଦି ତମକୁ ସେଠି ଭଲ ନ ଲାଗିବ, ଧର ଯଦି ଠିକ୍‌ଭାବରେ ସୁବିଧା ହେବନି—

—''କହୁ ନାହାନ୍ତି, ଧର ଯଦି ତଡ଼ିଦେବେ—'' ହଠାତ୍ ଉଦ୍ଭଟ ଭାବରେ ହସିଉଠିଲା ନମିତା । କହିଲା— ତା'ହେଲେ ସେତେବେଳେ ପୁଣି ଆପଣଙ୍କ ପାଖକୁ ଆସିବି । ଶୁଣିବି ଜୀବନକୁ ଆଉ କେଉଁ ଦିଗରୁ ଗଢ଼ା ଯାଇପାରିବ ଯାହା ମୋର ସାଧ ଭିତରେ ଥିବ ।

ଚାକର ପିଲାଟା ଅଭ୍ୟାସ ଅନୁସାରେ କେତେବେଳୁ କପେ ଚା ଓ ଦୁଇଟା ସନ୍ଦେଶ ରଖିଦେଇ ଯାଇଥିଲା, ନମିତା ତାହା ଛୁଇଁ ନ ଥିଲା । କେତେଥର ଅନାମିକା କହିବେ କହିବେ ହୋଇଛନ୍ତି, ଏଥର କହିଲେ— ନମିତା, ଚା'ଟା ଯେ ଥଣ୍ଡା ହୋଇଗଲା !

ନମିତା ଅଦ୍ଭୁତ ଭାବରେ ଟିକିଏ ହସି କହିଲା— ସେଇୟା ଦେଖୁଛି । ''ଠିକ୍ ମୋର ଜୀବନଟା ପରି, ସେଇୟା ନା ? ଭରି ରହିଥିଲା, ଗରମ ଥିଲା—

କେହି ଖାଇଲେନି । ଏବେ ଆଉ କ'ଣ—'' କପ୍‌ଟାକୁ ହଠାତ୍ ଟେକି ଥଣ୍ଡା ଚାହାକୁ ଢକ୍‌ଢକ୍ କରି ଗୋଟିଏ ଥରରେ ପିଇଦେଲା, ସେ କହିଲା— ତେବେକେ ପିଇଦେଲି, ନଷ୍ଟ କରିବାଠାରୁ ଭଲ ହେଲା । ସେଇୟା ନା ?

ଅନାମିକା ଅବାକ୍ ହୋଇଗଲେ । ଯେମିତି ଏ ଧରଣର କଥା ତା ମୁହଁରେ ଅପ୍ରତ୍ୟାଶିତ । ଚିନ୍ତିତ ହେଲେ ଅନାମିକା । ମାନସିକ ବ୍ୟାଧିର ପୂର୍ବଲକ୍ଷଣ ନୁହେଁ ତ ?

କପ୍‌ଟାକୁ ରଖିଦେଇ ନମିତା ଏଥର ଘଣ୍ଟା ଆଡ଼କୁ ଚାହିଁଲା, ଟିକିଏ ଚଞ୍ଚଳ ହେଲା । କହିଲା— ଦେଖୁଛନ୍ତି ତ ମୋ ପୁତୁରାର କଥା ! ଏ ପର୍ଯ୍ୟନ୍ତ ଆସିଲାନି । ମାଉସୀ ପାଖରେ ଖାଇପିଇ ଆସୁଛି ବୋଧହୁଏ । ପର ନିର୍ଭରତାରେ ଏହି ଜ୍ୱାଳା ରହିଛି ।

ସହଜ କଣ୍ଠରେ କଥାଗୁଡ଼ାକ ତା'ର ଶୁଣି ଆଶ୍ୱସ୍ତ ହେଲେ ଅନାମିକା । ସେ ମଧ୍ୟ ସହଜଭାବରେ କହିଲେ, ''ହେଲେ ଆଜିକାଲି ତ ଆଉ ସ୍ତ୍ରୀଲୋକମାନେ ପରନିର୍ଭରଶୀଳ ହୋଇ ରହିନାହାନ୍ତି, ନିଜେ ନିଜେ ତ ଏକୁଟିଆ ଯିବା-ଆସିବା କରୁଛନ୍ତି'' । ନମିତା ଉଠି ଠିଆହୋଇ କହିଲା— ସେକଥା ଜାଣିଛି । ହେଲେ ଏପର୍ଯ୍ୟନ୍ତ ତ ପାଦରେ ଶିକୁଳି ବନ୍ଧା ହୋଇଥିଲା । ଅଭ୍ୟାସ ତ ନାହିଁ । ରାସ୍ତା-ଘାଟ କିଛି ଚିହ୍ନିନି । ଏଥରଠୁ ଲାଗିପଡ଼ି ଚିହ୍ନିବାକୁ ପଡ଼ିବ । ଟିକିଏ ହସି କହିଲା— ଶିକୁଳିଟା ତ ମନର ଜୋର୍‌ରେ କାଟି ଦେଇଛି ।

ଆଗେଇ ଆସି ନଇଁପଡ଼ି ପୁଣି ପ୍ରଣାମ କଲା ନମିତା ।

ଅନାମିକା ଦୁଇପାଦ ପଛେଇଯାଇ କହିଲେ— କ'ଣ ହେଲା ?

ହେଇଟି ମତେ ନେବାକୁ ପରା ଆସିଲାଣି । ଆପଣଙ୍କୁ ବହୁତ ହଇରାଣ କରିଦେଇଗଲି । ହୁଏତ ପୁଣି ଆସିବି ।

ନମିତା ଦୁଆର ବାହାରକୁ ଚାଲିଗଲା ।

ସେହି ଶିକୁଳି ଛିଣ୍ଡାଇଥିବା ପକ୍ଷୀଟାର ଗତି ଆଡ଼କୁ ଅନାମିକା ଚାହିଁ ରହିଥିଲେ । ସେ କ'ଣ ସତରେ ଆକାଶରେ ଉଡ଼ିପାରିବ ? ନା ଅନଭ୍ୟସ୍ତ ଡେଣାରେ ତରବର ହୋଇ ଉଡ଼ିବାକୁ ଯାଇ ଭୂଇଁରେ ପଡ଼ି ଡେଣାକୁ ଭାଙ୍ଗିବ ?

ସେ ଝିଅଟାକୁ ମୁଁ କେଉଁ ରାସ୍ତା ଦେଖାଇ ପାରିଥାନ୍ତି ?...... ଅନାମିକା ତଳ ଘରୁ ଉଠିଆସି ସିଡ଼ିର ଝରକା କଟାଯାଇ ତିଆରି ହୋଇଥିବା ଦୁଆର ବାଟେ ଦୁଇଫୁଟ ବାଇ ଚାରିଫୁଟର କୁନି ବାଲ୍‌କୋନିଟାରେ ଠିଆ ହୋଇପଡ଼ି ଭାବିଲେ...... ସେ ଯଦି ମୋର ଗପର ନାୟିକା ହୋଇଥାନ୍ତା, ତା' ପାଇଁ କେଉଁ ପରିଣତି ମୁଁ ନିର୍ଦ୍ଧାରଣ କରିଥାନ୍ତି ?

ହଠାତ୍ ଝଲକାଏ ଥଣ୍ଡା ପବନ ଆସି ଦେହରେ ବାଜିଲା, ଆଉ ହଠାତ୍ ମନେହେଲା, ବାଃ କେତେଦିନ— କେତେଦିନ ହେଲା ଏଠି ଆସି ମୁଁ ଠିଆ ହୋଇ ନାହିଁ । ଏଇଟା ଯେ ଥିଲା ସେ କଥା ବି ମନେପଡୁ ନ ଥିଲା । ଆଜି ମନେପଡ଼ିଲା— ନିଜ ଘରେ ମଝିଆନାନୀର ଉପସ୍ଥିତି ସ୍ମରଣ କରି । ଠିକ୍ ଏ ମୁହୂର୍ତ୍ତରେ ସେ ଅତି-ସଂସାରୀ ମଣିଷଟା ପାଖକୁ ଯାଇ ବସିବାକୁ ଇଚ୍ଛା ହେଲା ନାହିଁ । ଯେଉଁ ମଣିଷଟା ନିକଟ ଆତ୍ମୀୟତ୍ୱର ଦାବିରେ ନିତାନ୍ତ ଅନ୍ତରଙ୍ଗ ସୁରରେ କଥା କହିବାକୁ ଚାହେଁ, ଅଥଚ ଯାହା ପାଖରେ ସେ କହିବାକୁ ଚାହେଁ ଯେ ଦିହିଁଙ୍କ ଭିତରେ କେତେ ଯୋଜନ ବ୍ୟବଧାନ ସେ ଅନୁଭବ କରୁଛି । ସେମାନେ ସଂପୂର୍ଣ୍ଣ ଭିନ୍ନ ଜାତିର ।

ଏହି ଯୋଜନ ବ୍ୟବଧାନ ଧରି ତ ଆତ୍ମୀୟ ସଙ୍ଗେ ଅନ୍ତରଙ୍ଗତା ଅଛି । ସବୁ କ୍ଷେତ୍ରରେ ନ ହେଉ— ବହୁକ୍ଷେତ୍ରରେ ଅଛି ।

କଥା କହି ଚାଲିଥିଲେ ସେ । କହୁଥାନ୍ତି ଏକାବେଳେ ଏତେ ପାହାଚ ଉଠିଲାବେଳେ ବା ଓହ୍ଲାଇଲାବେଳକୁ ମଝିରେ ଟିକିଏ ନିଃଶ୍ୱାସ ପକାଇବାକୁ ଜାଗା ରହିଥିବା ଦରକାର ।

ଅନବରତ ବିଦ୍ୟୁତ୍‌ପଙ୍ଖାର ପବନ ଖାଇବାରେ ଅଭ୍ୟସ୍ତ ଶରୀରକୁ ଏ ବେଶୀ ରାତିର ବହିଆସୁଥିବା ପବନଟା ଯେପରି ଆଚ୍ଛନ୍ନ କରି ଦେଉଛି ।

ଛୋଟ ଏହି ବାଲ୍‌କୋନି ବା ବାରଣ୍ଡାଟାର ପରିକଳ୍ପନା ଥିଲା ବକୁଳର ମା' ସୁବର୍ଣ୍ଣଲତାଙ୍କର । ଘର ତିଆରି ହେଲାଠୁ ଝରକାଟାକୁ ଭାଙ୍ଗି ଦୁଆରଟିଏ କରି ଏଇ ଝୁଲା ବାରଣ୍ଡାଟା କରିବା କଥା କହି ଚାଲିଥିଲେ ସେ । କହୁଥିଲେ— ଏକା ନିଃଶ୍ୱାସରେ ଏତେ ପାହାଚ ଚଢ଼ିଲାବେଳକୁ ଓହ୍ଲାଇଲାବେଳକୁ ଟିକିଏ ନିଃଶ୍ୱାସ ପକାଇବାକୁ ଜାଗା ଥିବା ଦରକାର ।

ସେତେବେଳେ ବକୁଳର ବାପା ରାଗିଯାଇ କହୁଥିଲେ— ଏମିତି କ'ଣ ଏବେ ବେଣୀମାଧବଙ୍କ ପତାକା ବାନ୍ଧିବାକୁ ଯିବା ପାହାଚ ହେଉଛି ଯେ ମଝିରେ ମଝିରେ ନିଃଶ୍ୱାସ ପକାଇବାକୁ ହେବ ? ଏତେ ଏତେ ନିଃଶ୍ୱାସ ନେବାର ଦରକାରଟା କ'ଣ ଅଛି ମୁଁ ବୁଝିପାରୁନି ତ ! କାନ୍ଥ ଫୋଡ଼ି ବାହାରି ଯାଇ ନିଃଶ୍ୱାସ ନେବାକୁ ପଡ଼ିବ ! ଆଶ୍ଚର୍ଯ୍ୟ !

ଅଥଚ ସୁବର୍ଣ୍ଣଲତା ମରିଯିବାର କିଛିଦିନ ପରେ ହଠାତ୍ ବାପା ମିସ୍ତ୍ରୀକୁ ଡାକି ବେଶ୍ କିଛି ପଇସା ଖର୍ଚ୍ଚ କରି ଝରକା କାଢ଼ି ଦୁଆର କରି ଏଇ ଛୋଟ ଝୁଲା-ବାରଣ୍ଡା ଦୁଇଟା କରିପକାଇଲେ ଉପର ଆଉ ତଳର ଦୁଇଟା ସିଡ଼ିରେ ।

କିନ୍ତୁ କିଏ କେବେ ଆସିଛି ନିଃଶ୍ୱାସ ନେବାକୁ, କେହି କେବେ ଆସନ୍ତି ? ନୂଆ ନୂଆ ହେଲାବେଳେ ଆସିବାକୁ ତ ବକୁଳର ପାଦ ଜମା ଉଠି ନାହିଁ । ମନେ ହେଉଥିଲା ମା' ବୋଧହୁଏ କେଉଁଠି ବସି କରୁଣ ଆଖିରେ ଚାହିଁ କହିବେ— ସେଇ ତିଆରି ହେଲା ଅଥଚ ମୋର ଭୋଗରେ ଲାଗିଲାନି । ତମେମାନେ ବେଶ୍— ହଁ ଏହି ଧରଣର ଅନୁଭୂତି ସେତେବେଳେ ଦୁଆରମୁହଁକୁ ଆସିଲାକ୍ଷଣି ବକୁଳକୁ ହଠାତ୍ ଠିଆ କରାଇ ଦେଉଥିଲା । ଅଥଚ ସେତେବେଳେ ବକୁଳର ମଧ ମଝିରେ ମଝିରେ କାନ୍ଧ କଣା କରି ନିଃଶ୍ୱାସ ନେବାର ଦରକାର ଥିଲା ।

ତା' ନିଜ ମନର ଦରକାର ଥିଲା, ଦରକାର ଥିଲା ଜଣେ ଲାଜକୁଳା ମଣିଷର ଆବେଦନ ପାଇଁ । ସୁଯୋଗ ପାଇଲାକ୍ଷଣି ଯେ କହୁଥିଲା— ଏଡ଼େସୁନ୍ଦର 'ଅଳିନ୍ଦ' ତମର ହେଲା, ଟିକିଏ ଠିଆ ହୋଇପାରୁନି ?

ତେବେକେ ଠିଆ ହୋଇପାରୁ ନ ଥିଲା । ବକୁଳ ଦୁଆରଟା ଖୋଲିବା ମାତ୍ରେ ଆକାଶର ତାରା ଆଡ଼କୁ ଆଖିର ଦୃଷ୍ଟି ଚାଲିଯାଉଥିଲା । କେମିତି ଗୋଟାଏ ଅପରାଧ ବୋଧ ଆସି ଯାଉଥିଲା । ତା'ପରେ ?

ତା'ପରେ ତ ବକୁଳ ଅନାମିକା ହୋଇଗଲା । ଅନାମିକାର ଆଉ ପବନର ସେହି ମୁଠାଏ ଦକ୍ଷିଣା ନେବାର ଅବକାଶ ରହିଲା ନାହିଁ ।

କିନ୍ତୁ ଏ ଘରେ କାହାର ବା ଅବକାଶ ଅଛି ? କାହିଁ ଦରକାର ମଧ କୁଆଡ଼େ ହେଉଛି ? ଦଉଡ଼ି ଦଉଡ଼ି ଚଢ଼ିବା ଓହ୍ଲାଇବା, ଏଇୟା ତ ? ସେମାନେ ଜାଣନ୍ତି ସିଡ଼ିର ଦରକାର କେବଳ ସେଇ ଟିକକ ।

ହୁଏତ ଏମିତି ହିଁ ହୁଏ । ଯାହାକୁ ପବନ ବହୁତ ଦରକାର, ସେ ପାଏ ନାହିଁ, ଯେ ସେଇୟାକୁ ଅନାୟାସରେ ପାଏ, ସେ ତା'ର ପ୍ରୟୋଜନ ହିଁ ବୋଧ କରେ ନାହିଁ । ତେବେକେ ଆଜି ସାମୟିକ ଗୋଟିଏ କାରଣ ହେତୁ ପ୍ରୟୋଜନ ବୋଧ କଲେ ଅନାମିକା ଆଉ ଯେପରି କୃତାର୍ଥ ହୋଇଗଲେ ।

ଭାବିବାକୁ ଲାଗିଲେ, ନମିତା ଯଦି ମୋର ଗଳ୍ପର ନାୟିକା ହୋଇଥାନ୍ତା ମୁଁ ତାକୁ କେଉଁ ପରିଣତି ଦେଇଥାନ୍ତି ?

ସନ୍ନ୍ୟାସୀ ସଜାଇ ଦେବତାତ୍ମା ହିମାଳୟର ଶାନ୍ତିମୟ କୋଳରେ ବସାଇ ନିଶ୍ଚିନ୍ତତାର ନିଃଶ୍ୱାସ ପକାଇ ନ ଥାନ୍ତି ନିଶ୍ଚୟ !...... ତା'ହେଲେ ତାକୁ ପୁଣି ସଂସାର ଆଶ୍ରୟର ନିଶ୍ଚିନ୍ତ ଛାୟା ତଳକୁ ଫେରାଇ ଦେଇଥାନ୍ତି ? ସେହି ଉତ୍ତରବଙ୍ଗର ଗୋଟିଏ ସମୃଦ୍ଧ ପରିବାର ଭିତରକୁ ?

ନା, ନା, ଛିଃ ।

ତେବେ ?

ତାକୁ କ'ଣ ବଜାରରେ ଚଳୁଥିବା ସମାଧାନ ଅନୁସାରେ ନର୍ସ କରି ଛାଡ଼ି ଦେଇଥାନ୍ତି ? ଆଉ ଦିନେ ତା'ର ସେହି ଭଣ୍ଡ ସନ୍ନ୍ୟାସୀ ସ୍ୱାମୀଟିକୁ ବ୍ୟାଧିଗ୍ରସ୍ତ କରି ତା ହାତରେ ସମର୍ପଣ କରିଥାନ୍ତି ?

ଛି, ଛି !

ତେବେ କ'ଣ ତା'ର ଡେଣା ଭାଙ୍ଗି ସିଧା ପକାଇ ଦେଇଥାନ୍ତି ପଥପ୍ରାନ୍ତରେ ? ଅନାମିକା ତୁନିହୋଇ ଟିକିଏ ଭାବିଲେ । ତା'ପରେ ପ୍ରାୟ ନିଜ ମନକୁ କହିଲେ, ହୁଏତ ଗଜ୍ଜର ନମିତାକୁ ଶେଷପର୍ଯ୍ୟନ୍ତ ସେଇୟା କରିଥାନ୍ତି । ହୁଏତ ବା ତା'ରି ଭିତରେ କିଛି ନୂତନତ୍ୱ ଆଣିବାକୁ ଚେଷ୍ଟା କରିଥାନ୍ତି । କିନ୍ତୁ ଆଖିରେ ଦେଖୁଥିବା ଏହି ସତ ଝିଅଟା ପାଇଁ ମୁଁ ସେ ପରିଣତି ଭାବିପାରୁନି ଜମା । ତା'ର ସେହି ସ୍ୱାମୀଟାକୁ ଜବଦ୍ କରିବା ପାଇଁ ମଧ୍ୟ ନୁହେଁ– 'ତାକୁ' ଠିକ୍ ଯେସାକୁ ତେସା ଜବାବ ଦେବା ପାଇଁ ମଧ୍ୟ ନୁହେଁ । ଆଚ୍ଛା, ପ୍ରଗତିଶୀଳ ମନ କାହାକୁ କହନ୍ତି ? ସେ ମନ କ'ଣ ନିତାନ୍ତ ପ୍ରିୟଜନ ପାଇଁ, ନିକଟଜନଙ୍କ ପାଇଁ, ସେଭଳି ଦୁଃସାହସିକ ପ୍ରଗତିର ପଥ ଦେଖାଇପାରିବ ? ଯେଉଁ ପଥର ଅକଲ୍ୟାଣ ରହିଛି , ଯେଉଁ ପଥକୁ ମାନି ଚଳୁଛେ ?

ସେଭଳି ପ୍ରଗତିଶୀଳ ହେବା ମୋର କାମ ନୁହେଁ, ଭାବିଲେ ଅନାମିକା । ତା'ହେଲେ କ'ଣ ହେବ ତା'ର ? ଅର୍ଥାତ୍ ସେ କ'ଣ କରିବ ? ମନେ ହେଉଛି ତା'ଭିତରେ ଗୋଟାଏ ସର୍ବନାଶୀ ନିଆଁ ଜଳୁଛି, ସେ ନିଆଁ ତା' ଛଡ଼ା ଆଉ କାହାକୁ ଦଗ୍ଧ କରିବ ?

ତା'ପରେ ଭାରି ହାଲୁକା ଏବଂ ନିହାତି ସଂସାରୀ କଥାଟିଏ ମନକୁ ଆସିଲା– ଏ ସଂସାରଟା ଯଦି ମୋର ହୋଇଥାନ୍ତା, ହୁଏତ କିଛିଦିନ ମୋ ପାଖରେ ରହିବାକୁ କହି ପାରିଥାନ୍ତି । ହେଲେ କହିବାକୁ ଗଲେ ମୁଁ ମଧ୍ୟ ତ ଆଶ୍ରିତ । ନିହାତି ବାପାଙ୍କ ଉଇଲ୍‌ରେ କ'ଣ ଗୋଟାଏ ଅଛି, ସେଇଥିପାଇଁ–

ଅନାମିକା ମନେ ମନେ ହସିଦେଲେ, ହେଲେ ସେଥିରେ ମଧ୍ୟ କ'ଣ ଲାଭ ହୋଇଥାନ୍ତା ନମିତାର ? ସେଇ ପରିଚୟ ତ ହୋଇଥାନ୍ତା ପରାଶ୍ରିତ ! ଆଉ ସେ ନିଶ୍ଚେ ତା'ର ନିଜସ୍ୱ ସ୍ୱଭାବରେ ମୋର ମନୋରଞ୍ଜନ କରିବାକୁ ବସିଥାନ୍ତା !...... ନା ସେଇଟା ଜମା ସମାଧାନର ପଥ ନୁହେଁ । ପ୍ରକୃତ ଦରକାର ତା'ର ସ୍ନେହ ! କରୁଣା ନୁହେଁ, ଦୟା ନୁହେଁ, ମମତା ନୁହେଁ, ଖାଲି ଗୌରବମୟ ପ୍ରେମ ଦରକାର ତା'ର । ତା'ଛଡ଼ା ଆଉ ବଞ୍ଚିବାର ଉପାୟ ନାହିଁ ତା'ର । କିନ୍ତୁ ସେ ବସ୍ତୁ କିଏ ଆଣି ତା' ହାତରେ ଟେକିଦେବ ?

ଏକମାତ୍ର ସୁପଥ ହୋଇପାରେ, ଯଦି ତା' ସ୍ୱାମୀ ମିଥ୍ୟା ସନ୍ୟାସର ଖୋଳଟାକୁ ଖୋଲିଦେଇ ତା'ପାଖରେ ଆସି ଠିଆହେବ—

ଏଥା ଭାବିବାକୁ ଯାଇ କେଜାଣି କାହିଁକି ମନଟା ବିରୂପ ହୋଇଗଲା । ମନେହେଲା — ଭାରି ପାଣିଚିଆ ଆଉ ବିବର୍ଣ୍ଣ ଗୋଟାଏ ଭାବନା ଭାବୁଛି । ନାଃ, ସତରେ 'ବିଧାତା' ହେବାର ସାଧ 'ଦ୍ୱିତୀୟ ବିଧାତା'ର ନାହିଁ ।

କିନ୍ତୁ ବିଧାତାଙ୍କ ବା ପ୍ଲଟ୍‌ର ବାହାଦୁରୀ କେଉଁଠି ଅଛି ?

ନୂତନତ୍ୱର ତ ନାଁ ସୁଦ୍ଧା ଦେଖୁନି । ସବୁ ତ ସେମିତି ଗୋଳିଆ ପୋଳିଆ ।

ପାଖରେ ରହିଥିବା ଘରଟା ଆଡ଼କୁ ଚାହିଁଲେ ଅନାମିକା, ଘରଟା ଏବେ ଏ ଦଶଟା, ସାଢ଼େଦଶଟା ରାତିରେ ଗଭୀର ଅନ୍ଧକାରରେ ଆଚ୍ଛନ୍ନ ହୋଇଗଲାଣି ।...... ତା'ରି କୋଣରେ ଗୋଟାଏ ଘରେ ଦୀନହୀନ ଅଳ୍ପ ଗୃହସଜ୍ଜା ଭିତରେ ନିର୍ମଳର ସ୍ତ୍ରୀ ହୁଏତ ନିଦରେ ଶୋଇପଡ଼ିଛି, ହୁଏତ ବା ଅନିଦ୍ରାର ଶିକାର ହୋଇ ପଡ଼ି ପଡ଼ି ନିଃଶ୍ୱାସ ପକାଉଛି । ତାକୁ ଦେଖିଲେ ଏବେ ଆଉ ଜଣାଯାଉ ନାହିଁ ଯେ ଏକଦା ସେ ପରମା ସୁନ୍ଦରୀ ଥିଲା ।......

ଭାଉଜମାନଙ୍କ ଆଳାପ-ଆଲୋଚନା ଭିତରେ କାନକୁ ଆସେ, ତା'ର ବୋହୂଟି କୁଆଡ଼େ ଭାରି ଦୁଷ୍ଟ, କେମିତି କେଜାଣି ଶାଶୁକୁ କୋଣକୁ ପେଲିଦେଇ ନିଜେ ସର୍ବଗ୍ରାସୀ ହୋଇ ଜାଗା ମାଡ଼ିବସିଛି ।...... ଘରେ ଆଉ କିଏ ବା ଅଛନ୍ତି ? ନିର୍ମଳର ଦେଢେଇ ଜଣେ ପୁତୁରାକୁ ପୋଷିଥିଲେ, ବର୍ତ୍ତମାନ ସେ କୁଆଡ଼େ ଘରଟାର ଅର୍ଦ୍ଧାଂଶ ଦଖଲ କରି ରହିଛି । ଆଉ ସେମାନଙ୍କ ସାଙ୍ଗରେ ହିଁ କୁଆଡ଼େ ନିର୍ମଳର ବୋହୂ ଭାରି ସାଙ୍ଗ ହୋଇଛି । କି ପୁରୁଣା ପ୍ଲଟ୍ !

ଆଗ ଏ ଘର ରାତି ବାରଟା ପର୍ଯ୍ୟନ୍ତ ସରଗରମ ରହୁଥିଲା, ଅନେକ ରାତି ପର୍ଯ୍ୟନ୍ତ ଗ୍ରାମଫୋନ୍‌ର ଗୀତ ଶୁଭୁଥିଲା, ପ୍ରତି ଘରେ ଜଳୁଥିଲା ଆଲୁଅ ।

ଏବେ ? ଏହି ଅନ୍ଧକାର ହିଁ ତା'ର ଉତ୍ତର ଦେଉଛି ।

ତା'ହେଲେ ?

ବିଧାତାଙ୍କ ପ୍ଲଟ୍‌ରେ ନୂତନତ୍ୱର ନାଁ ନାହିଁ । ଆଲୁଅ ଜଳାଅ, ଆଉ ଆଲୁଅ ଲିଭାଅ...... ତାଙ୍କର ପ୍ଲଟ୍ ହେଉଛି ଏଇଆ ।

ମୁଁ ସେ ଘରଟା ଆଡ଼େ କେତେଦିନ ହେଲା ଚାହିଁବି...... ଭାବିଲେ ଅନାମିକା । ଚାହିଁ ରହୁ ରହୁ ଯେପରି ଅବାକ୍ ହୋଇଗଲେ ଅନାମିକା । କେବେ ଏତେ ଜରାଜୀର୍ଣ୍ଣ ହୋଇଗଲା ଘରଟା ? ଏମିତି ମଳିନ ବିବର୍ଣ୍ଣ ହୋଇଗଲା ?

ଦିନକରେ ନିଶ୍ଚୟ ହୋଇନି । ଆସ୍ତେ ଆସ୍ତେ ହୋଇଛି ।

ତା' ଅର୍ଥ ଦିନ ପରେ ଦିନ, କେତେ କେତେ ଦିନ– ଆଉ ମୁଁ ଚାହିଁ ଦେଖିନି । ତା'ର ଅର୍ଥ– 'ନିର୍ମଳ' ନାମକ ଗୋଟିଏ ଅନୁଭୂତି ମଧ୍ୟ ଆସ୍ତେ ଆସ୍ତେ ସେହିପରି ବିବର୍ଣ୍ଣ ଜରାଜୀର୍ଣ୍ଣ ହୋଇଯାଉଛି । କିନ୍ତୁ ତେବେକେ–

ଏଇ ସିରିସିରି ପବନ ବହୁଥିବା ରାତିର ଆକାଶ ତଳେ ଚିରପରିଚିତ ଅଥଚ ଅପରିଚିତ ଜାଗାରେ ଠିଆହୋଇ ସେହି ବିବର୍ଣ୍ଣ ଝରକାଟା ଆଡ଼କୁ ଚାହିଁ ରହୁ ରହୁ ଅନୁଭୂତିଟା ପୁଣି ଯେପରି ଆଲୋକରେ ଭରିଗଲା...... ସେହି ଆଲୋକ ସେ ଝରକାରେ ଯାଇ ପଡ଼ିଲା ଯେପରି । ଦେଖାଗଲା ଖୋଲା ଝରକା କଡ଼ରେ ଫ୍ରେମ୍‌ରେ ବନ୍ଧା ହୋଇଥିବା ଗୋଟିଏ ଆଲୋକର ଚିତ୍ର ।

ଘର ଭିତରୁ ଗ୍ରାମଫୋନ୍‌ରୁ ଗୀତ ଭାସି ଆସୁଛି...... 'ଦାଁଡ଼ିଏ ଆଛୋ ତୁମି ଆମାର ଗାନେର ଓପାରେ– ' (ମୋର ଗୀତର ଆର ପାଖରେ ତୁମେ ଠିଆ ହୋଇଛ)

ଧରିବା-ଛୁଇଁବା ନାହିଁ, ତେବେ ବି ଯେପରି କେଉଁଠି ରହିଛି ବକ୍ତବ୍ୟର ଆଭାସ । ଯେଉଁମାନେ ଲାଜକୁଳା, ଯେଉଁମାନେ ଭୀରୁ– ସେମାନେ ପରର କଥା ଭିତରେ ହିଁ ନିଜର କଥା ମିଶାଇ ଦେଇ ନିବେଦନ କରନ୍ତି । ଜାଣିଛନ୍ତି ଯେ ଧରିବା କଥା ସେ ହିଁ ଧରିବ, ଯେ ଛୁଇଁବା କଥା ସେ ହିଁ ଛୁଇଁବ, ଆଉ କାହାର ସାଧ୍ୟ ନାହିଁ ଧରିବାକୁ, ଛୁଇଁବାକୁ ।

'ଦେବତାର ଯାହା ଦିତେ ପାରି, ଦିଇ ତାଇ ପ୍ରିୟଜନେ– ' ସେଇଥିପାଇଁ 'ଆମାର ସୁରଗୁଲି ପାୟ ଚରଣ, ଆମି ପାଇନା ତୋମାରେ ।'

ଆଜିକାଲି ଆଉ କେହି ଏମିତି ବୋକାଙ୍କ ପରି ଆଉ ବିଚରାଙ୍କ ପରି ଭଲ ପାଆନ୍ତି ନାହିଁ ।

ଏ ଯୁଗ ସେହି ମୃଦୁତାକୁ– ସେହି ଚାରୁତାକୁ ପ୍ରେମ କହିବେନି ! ଦେଖିଲେ ଓଠ ବଙ୍କାଇବେ, 'ରାବିଶ୍' କହିବେ ଅଥବା 'ପାଣିଚିଆ ଭାବବିହ୍ୱଳତା' କହି ହସି ହସି ଉଡ଼ାଇ ଦେବେ । ଏ ଯୁଗ ଜାଣେ ପ୍ରେମଟା ଗୋଟାଏ ଭୋଗ୍ୟ ବସ୍ତୁ, ତାକୁ ଲୁଟି ନେବାକୁ ପଡ଼େ, ଛିଣ୍ଡାଇ ଆଣିବାକୁ ପଡ଼େ, ଦଖଲ କରିବାକୁ ପଡ଼େ ।

ହୁଏତ ଏମାନେ ହିଁ ଠିକ୍ ଜାଣିଛନ୍ତି ଅଥବା ଏମାନେ ମଧ୍ୟ କିଛି ଜାଣିନାହାନ୍ତି, ପ୍ରକୃତ ଜାଣିବାଟା ଆଜି ମଧ୍ୟ ଅପେକ୍ଷା କରୁଛି କୌଣସି ଏକ ଭବିଷ୍ୟତ ଯୁଗର ଆଶାରେ । ଯଦିଚ ଶମ୍ପାହେରିକା ଭାବି ଆତ୍ମପ୍ରସାଦ ଅନୁଭବ କରୁଛନ୍ତି– ଆମେ ଠିକ୍ କଥାଟା ଜାଣିଛୁ ।

ତେବେକେ ସେହି ଟିକକତ ଜୁଟିଛି ସେମାନଙ୍କ ଭାଗ୍ୟରେ । ସେହି ଆତ୍ମପ୍ରସାଦ ! ସେମାନେ ତ ଭାବୁଛନ୍ତି— ଆମେ ନେଲୁ, ଆମେ ପାଇଲୁ । ସେ ଯୁଗର ଭାଗ୍ୟରେ ସେଇଟିକକ ଜୁଟାଇଥିଲେ ବିଧାତା ।

ଅଥଚ ସେ ଯୁଗ ମଧ ଭାବୁଥିଲା— ଭଲ ପାଇଲି ! ଭାବୁଥିଲା ଯାରି ନାଁ ପ୍ରେମ !...... ଶମ୍ପା ହେରିକା......

ଆଶ୍ଚର୍ଯ୍ୟ, ଶମ୍ପା ମତେ ମଧ ଗୋଟାଏ ଚିଠି ଦେଲାନି ! ଯଦିଚ ମୁଁ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରିଥିଲି, ହେ ଈଶ୍ୱର ! ମୋର ଅହଙ୍କାର ଖର୍ବ ହେଉ, ତା'ର ମା', ବାପାଙ୍କ ପାଖକୁ ଆଗ ଚିଠି ଆସୁ । ତା'ହେଲେ ବି କେଉଁଠି ଯେପରି ଗୋଟାଏ ଶୂନ୍ୟତାବୋଧ ସବୁବେଳେ ସବୁକିଛିକୁ ନିରାନନ୍ଦ କରି ରଖିଛି ।

ମନେ ମନେ ନିଶ୍ଚିତ ଭାବିଥିଲି, ସେ ମତେ ଅନ୍ତତଃ ଜଣାଇବ ।

ଶମ୍ପା ଯେପରି ନିଜର ଜୀବନଟାକୁ ବାଜିକରି ବାପ ସଙ୍ଗେ ଖେଳିବାକୁ ବସିଛି ! ଶମ୍ପା କେମିତି ଲଢୁଆ ଝିଅ । କିଏ ଜାଣିଛି ଏ ଖେଳରେ କିଏ ଜିତିବ ? ଶମ୍ପା ନା ଶମ୍ପାର ବାପା ? ବାପା ଜିତିବାଟା ତ ପରମ ଦୁଃଖର କଥା । ଅଥଚ ବାପାର ହାରିବାଟା ମଧ ଦୁଃଖର କଥା ।

ଏ ଘରଟାରେ ଆହୁରି ଜଣେ ଝିଅ ମଧ ଅଛି, ତାକୁ ଧରି ତା'ର ମା' ନିଜର ସମ୍ପତ୍ତି ଭାବି ଖେଳିବାକୁ ଯାଉଛି । ସେଇଟା ଆହୁରି ଦୁଃଖର କଥା, ବରଂ ଭୟାବହ ବୋଲି ମଧ କହିହେବ ।

ତା'ର ମା' ଏଇ ପରିବେଶରୁ— ତା'ର ନିଜର ଧାରଣା ଅନୁଯାୟୀ 'ଉଚ୍ଚ'କୁ ଉଠିବାକୁ ଚାହେଁ । ଅନେକ ଉଚ୍ଚକୁ । ସେ 'ଉଚ୍ଚ'କୁ ଧରିବାକୁ ହେଲେ ଭାରି ବଡ଼ କିଛି ଗୋଟାଏ ବାଜି ଧରି ଜୁଆ ଖେଳରେ ବସିବାକୁ ପଡ଼ିବ ।....... 'ଜୀବନ' ଜିନିଷଟା ସବୁଠାରୁ ବଡ଼, ଆଉ ସବୁଠାରୁ ସହଜରେ ହାତ ମୁଠା ଭିତରେ ରହିଲା ଜିନିଷ ।

କିନ୍ତୁ ସେହି ହତଭାଗୀ ଝିଅଟାର ମା'ର ନିଜର ଜୀବନଟା ଏବେ ଆଉ ଚଢ଼ା ଦାମରେ ବିକ୍ରି ହେବ ନାହିଁ, ସେଥିପାଇଁ ମୂଲ୍ୟବାନ ବସ୍ତୁଟିକୁ ମୁଠାରେ ଚିପି ଧରିଛି । ଝିଅଟାର ବୁଝିବାର କ୍ଷମତା ନାହିଁ ତାକୁ ନେଇ କଣ କରାଯାଇଛି, ତାକୁ କେତେ ଭଙ୍ଗେଇ ଦିଆଯାଉଛି ।

ହେଲେ ଯେଉଁମାନଙ୍କର ବୁଝିବାର କ୍ଷମତା ଅଛି ସେମାନେ ବି କ'ଣ କିଛି ପ୍ରତିକାର କରିପାରୁଛନ୍ତି ? ପାରିବେ କି ?

ଆଶ୍ଚର୍ଯ୍ୟ ! ଆମର କ୍ଷମତା କେତେ ସୀମିତ !

ଆହୁରି ଥରେ ନିଜର କ୍ଷମତାର ପରିସରକୁ ମାପି ଦେଖି ଯେମିତି ଲାଜରେ ମରିଗଲେ ଅନାମିକା । ଭାବିଲେ— ମୁଁ କି ଅକ୍ଷମ ! ମୋ ଆଖି ଆଗରେ ଗୋଟିଏ ନିର୍ବୋଧ ଝିଅ, ଆଉ ଗୋଟିଏ ବୋଧହୀନ ଝିଅକୁ ହାତ ଧରି କାଦୁଅରେ ଖସଡ଼ା ଗଭୀର ପୋଖରୀ ଘାଟରେ ଓହ୍ଲାଇବାକୁ ଯାଉଛି, ମୁଁ ଚାହିଁ ଦେଖୁଛି । ଖୁବ୍ ଦୂରରେ ବସି ମଧ୍ୟ ଦେଖୁନି, ବରଂ ବହୁତ ନିକଟରେ ଗଛ ଛାଇରେ ବସିଛି ।

ମୁଁ ଚାହିଁ ଚାହିଁ ଦେଖିବି ସେମାନେ ଖସିଯିବେ ଆଉ ବୁଡ଼ିଯିବେ । ସେଇଟା ତାଙ୍କର ନିଶ୍ଚିତ ପରିଣତ ଜାଣି ମଧ୍ୟ ମୁଁ 'ହାଁ-ହାଁ' କରି ଡାକ ପକାଉନି, ଦଉଡ଼ି ଯାଇ ସେମାନଙ୍କ ହାତଧରି ଟାଣି ଆଣିବାକୁ ଚେଷ୍ଟା କରୁନି, ମୁଁ ଖାଲି ଭୟାନକ ଆଶ୍ୱସ୍ତି ଅନୁଭବ କରୁଛି, ଭୟାନକ ଏକ ନିରୁପାୟତାର ଯନ୍ତ୍ରଣା ଭୋଗ କରୁଛି । କାରଣ, ମୁଁ ଧରିନେଇଛି ମୋର ଭୂମିକା ଦର୍ଶକର ଭୂମିକା !

ଧରି ନେଇଛି ଏମାନେ ମୋର କଥା ଶୁଣିବେନି, ନିଷେଧ-ବାଣୀ ଶୁଣିବେନି ।

ତା'ହେଲେ କାହିଁକି ମିଛରେ ଅପମାନିତ ହେବାକୁ ଯିବି ଭାବି ପଦେ କଥା କହୁନି ? ଚେଷ୍ଟା କରି ନ ଦେଖି ସେହି କଳ୍ପିତ ଅପମାନର ଭୟରେ ଉଦାସ ଦୃଷ୍ଟି ମେଲା କରି ବସି ବସି ସେମାନଙ୍କ ବୁଡ଼ିବାକୁ ଯିବା କଥା ଦେଖୁଛି !

ଆମମାନଙ୍କର ଅକ୍ଷମତା ହେଉଛି ଆମମାନଙ୍କର ଅହମିକା । ଆମ ନିରୁପାୟତା ହେଉଛି ଆମମାନଙ୍କର ଗୋଟାଏ ଆତ୍ମସମ୍ମାନବୋଧ । ସେଥିପାଇଁ ହୁଏତ ଆପଣାର ସନ୍ତାନକୁ ମଧ୍ୟ ଭୁଲ୍ ରାସ୍ତାରୁ ନିବୃତ୍ତ କରିବାକୁ ହାତ ବଢ଼ାଉନୁ । ଅନିଷ୍ଟର ପଥର ଟାଣି ଆଣିବାକୁ ଧାଇଁ ଯାଉନୁ । ଯା ଭାବି ନିଥର ହୋଇ ବସି ରହୁଛୁ— ଯଦି ମୋ କଥା ଶୁଣିବନି !

ସେହି ନ ସହିବା ମାନେ ତ ଖର୍ବ ହେବ ମୋର ଅହମିକା, ଅହଙ୍କାରରେ ଆଘାତ ବସିବ । ଆମର ଏହି ଅହଙ୍କାରକୁ ଆମେ କେତେ ବେଶୀ ଭଲ ନ ପାଉଛୁ !

କାହି ମୁଁ କ'ଣ ଦିନେହେଲେ ସାନଭାଇନାର ଘରକୁ ଯାଇ ବସିପଡ଼ି ପଚାରିବାକୁ ଯାଉଛି— ସାନଭାଇନା, କିଛି ଚିଠି ଆସିଲା ?

ଅଥଚ ମଝିରେ ମଝିରେ ସନ୍ଦେହ ହେଉଛି— କେଜାଣି ହୁଏତ ଆସିଛି, ହୁଏତ ଗ୍ରାହ୍ୟ କରି ଅଥବା ମାନ ଖୁଆଇ ମତେ କହି ପାରୁନି । 'ଏହି 'ମାନ୍' ଜିନିଷଟା କି କଠିନ ପଥର କାନ୍ଥ ପରି ଆମମାନଙ୍କୁ ଘେରି ନ ରଖିଛି ! ତା' ଭିତରୁ ବାହାରି ପଡ଼ିବାର ଦୁଆର ଆମର ନାହିଁ । ଅଥଚ ଆଶ୍ଚର୍ଯ୍ୟ ! କି ତୁଚ୍ଛା କାରଣରୁ ଜିନିଷଟାକୁ ଆମେ ହଜାଇ ଦେଉ ନାହୁଁ !

ସେଇଟା ଯେମିତି ଗୋଟାଏ ଭାରି ଦାମିକା ରତ୍ନ, ସେଥିପାଇଁ ହଜାଇ ଦେବାର ଭୟରେ ସବୁବେଳେ ସନ୍ତ୍ରସ୍ତ ହୋଇ ରହିଥାଉ । ସେ ଯେପରି ଆମର ପ୍ରଭୁ, ସେଥିପାଇଁ ତା'ର ଦାସତ୍ୱ କରୁଛୁ ସବୁବେଳେ ।

ଆଚ୍ଛା, ସେଇଟାକୁ ଆମର ଅଧୀନ କରି ରଖିହେବନି ? ମୁଁ ଯଦି ତା' ଉପରେ ପ୍ରଭୁତ୍ୱ କଲି ? ଅଥବା ଯଦି ଭାବେ କେବେହେଲେ ହଜିବାକୁ ଦେବିନି ସେଇଟାକୁ, ଦେଖିବି କାହାର ସାଧ୍ୟ ନେବ ? ସଯତ୍ନରେ ପହରା ଦେଇ ନୁହେଁ, ଅଯତ୍ନରେ ରଖିଦେଇ ଯଦି ତାକୁ ରକ୍ଷା କରିବି ?– ନାଃ ଯେତେବେଳେ ସବୁ ଗୋଳମାଳିଆ ଚିନ୍ତା !

ଅସଲ ହେଉଛି– ମୁଁ ମୋର ସେହି ମଝିଆନାନୀର ଶୋଇବା ପର୍ଯ୍ୟନ୍ତ ଅପେକ୍ଷା କରିଛି, ବୟସ ହେଇଛି, ରେଲଗାଡ଼ିରେ ଆସିଛି, ସାରାଦିନ କଥା କହିଛି, ଆଉ କେତେ ସମୟ ନିଦ ସଙ୍ଗେ ଲଢ଼େଇ କରିପାରିବ ? ନିଶ୍ଚୟ ଏତେବେଳକୁ ଶୋଇପଡ଼ିବଣି ।

ଅଳକା ଆଉ ଅପୂର୍ବ ସହିତ ଏ କେତେଘଣ୍ଟା ଭିତରେ ହିଁ ମଝିଆନାନୀର ବେଶ୍ ହୃଦ୍ୟତା ହୋଇଯାଇଛି । ଏକତ୍ରିତ ପରିବାରରେ ଏହି କୌତୁକ ନାଟକର ଅଭିନୟଟା ହେବା ସର୍ବଦା ଦେଖାଯାଏ । ବହିରାଗତ ଅତିଥିମାନେ ଅର୍ଥାତ୍ ଆସିଥିବା ଆତ୍ମୀୟମାନେ ହଠାତ୍ କେମିତି ଯେ ସେହି 'ଏକ' 'ଭିତରେ ଏକାଧିକ'ର ସନ୍ଧାନ ପାଇ ଯାଆନ୍ତି ! ଅବଶ୍ୟ ବାହାରର ଥାଟ୍‌ଟା ସର୍ବଜୀବଙ୍କଠି ସମାନ ଭାବେ ଥାଏ, କିନ୍ତୁ ଆସ୍ତେ ଆସ୍ତେ ଦଳ ଭେଦଟା ପ୍ରକଟ ହୋଇଯାଏ ଏବଂ ଲୁଣି ଧରିଥିବା ଯେଉଁ କାନ୍ଥଟା ଏବେ ସୁଦ୍ଧା ଛାତଟାକୁ ଧରି ରଖିବାର କାମନାରେ ସାହାଯ୍ୟ କରୁଥିଲା, ସେଇଟା ଧସିଯାଇ ଛାତଟାକୁ ନିମ୍ନଗାମୀ କରିଦିଏ ।

ଅବଶ୍ୟ ଏଗୁଡ଼ାକ ହେଉଥିଲା, କାଳକ୍ରମେ ହେଉଥିଲା, ଆତ୍ମୀୟ ଅତିଥି ସେହି ଟିକକୁ ତ୍ୱରାନିତ କରି ଦେଉଥିଲେ । ହଁ, ଏ ନାଟକ ସବୁବେଳେ ଘରେ ଘରେ ହେଉଛି ।

କିନ୍ତୁ ଦୁଷ୍ଟ ଦଳକୁ ବା ସେମାନେ ଚଟ୍‌କିନା ଚିହ୍ନିପକାନ୍ତି କିପରି ?

ତାହାହିଁ ଆଶ୍ଚର୍ଯ୍ୟ ରହସ୍ୟ ।

ଅବଶ୍ୟ ସେହି ଖୁଣ୍ଟିଟାକୁ ହିଁ ଧରିବାର ନିୟମ ଅଛି ।

ନୌକା ବାନ୍ଧିବାକୁ ହେଲେ ବଡ଼ ଗଛରେ ହିଁ ବାନ୍ଧିବାକୁ ପଡ଼େ । ଆଉ କିଏ ନ ଜାଣିଛି ଶିଷ୍ଟଠାରୁ ଦୁଷ୍ଟ ହିଁ ଶକ୍ତିରେ ବଡ଼ !

ମଝିଆନାନୀ କେମିତି କେଜାଣି ସେଇ ବଡ଼ ଗଛଟାକୁ ଚିହ୍ନି ପକାଇଲା, ଆଉ ନୌକାଟା ବାନ୍ଧିଲା । ହେଲେ ସେ ତ ରହିବାକୁ ଆସିନି ! ଆସିନି ସତ, ତେବେ ଏବେ ମଧ୍ୟ ଯେ ତା'ର ଜଣେ ଅବିବାହିତା ଝିଅ ଅଛି, ସେଇଟାକୁ କଲିକତାର ବାହାରେ ରଖିବାକୁ ସେ ଚାହେଁ, ତା'ର ସେତେବେଳର ସେକଥାଟା ଜଣାପଡ଼ିଛି ।

ଯେତେବେଳେ ଖାଇବାକୁ ବସିଥିଲେ ସମସ୍ତେ ଏବଂ ଅନାମିକା ଘରପିନ୍ଧା ଶାଢ଼ିଟାକୁ ଘରପିନ୍ଧା ଧରଣରେ ଗୁଡ଼ାଇ ହୋଇ 'ବକୁଳ' ହୋଇଯାଇ ସେ ସଭାରେ ବସିଥିଲେ, ସେତେବେଳେ ମଝିଆନାନୀ ଆମିଷ ସଙ୍ଗେ ଦୂରତ୍ୱ ବଞ୍ଚେଇ ରଖି ବଡ଼ଭାଉଜ ପାଖରେ ଖାଇବାକୁ ବସି ଇଚ୍ଛାଟା ବ୍ୟକ୍ତ କରିଥିଲେ– କଲିକତାର ହାଲଚାଲ ତ ଦେଖିଲେ ଦେହ ଜଳିଯାଉଛି, ତେବେକେ ଆଜିକାଲିର ପୁଅମାନଙ୍କର ତ ସେଇୟା ପସନ୍ଦ, ଝିଅଟାକୁ ଏଠିକୁ ପଠାଇଦେବି । କହିବି, ଯା କେତେ ହାଲଚାଲ ଶିଖି ପାରିବୁ ଶିଖି ।

କହିବା ନିଷ୍ପ୍ରୟୋଜନ, ଶ୍ରୋତ୍ରୀବର୍ଗ କେହିହେଲେ ଏ ଇଚ୍ଛାରେ ଉତ୍ସାହ ପ୍ରକାଶ କରି ନ ଥିଲେ ଏବଂ ମଝିଆନାନୀ ମଧ୍ୟ ସାଙ୍ଗେ ସାଙ୍ଗେ ସେଇଟା ବୁଝିପାରି କହିଥିଲା– ଅବଶ୍ୟ ଝିଅ ମୋର ରହିବାକୁ ଚାହିଁବ କି ନାହିଁ ସନ୍ଦେହ । ମା' ଛଡ଼ା ଆଉ କୌଣସି କଥା ଦରକାର ନାଇଁ ତା'ର । କୋଡ଼ପୋଛା ତ ?...... ମୁଁ କେବଳ କହୁଛି, ପର ଘରକୁ ଯିବାକୁ ହେବନି ? ହେଲେ ଚାଣ୍ଡାଳୀଟା ହସି ହସି ଗଡ଼ି ଯାଉଛି । କହୁଛି, 'ଜମା ଯିବିନି' ।

ସେଠି ବକୁଳକୁ ମୁଣ୍ଡ ତଳକୁ କରି ହିଁ ଖାଇବାକୁ ପଡ଼ିଲା । ଏପଟେ ସାନଭାଇନାଙ୍କ ସ୍ତ୍ରୀ ବି ଥିଲେ, ବଡ଼ଭାଇନାଙ୍କର ବାହା ଫାହା ହୋଇଯାଇଥିବା ସଂସାରୀ ଝିଅ ହେନା ମଧ୍ୟ ଥିଲା । ଅପୂର୍ବର ନିଜର ଭଉଣୀ ସେ, କିନ୍ତୁ ବାପଘରକୁ ଆସିଲେ ଏଇପଟେ ଖାଏ । କହେ "– ବାବାଃ, ଅଳକାର ସେଠି କିଏ ଖାଇବ ? ବାସନ-ମଜା ଚାକରାଣୀଟା ରାନ୍ଧୁଛି, ଚାକର ବାସିଲୁଗା ପିନ୍ଧି ପାଣି ଦେଉଛି, ମସଲା ବାଟୁଛି ।"

ମନେ ମନେ ହସେ ବକୁଳ । ଭାବେ– 'ତମର ମହା ବିଶ୍ୱରେ କିଛି କେବେ ହଜି ଯାଏ ନାହିଁ– ' ବାଃ କୋଉ କାଳରେ ହେଲେ ନୁହେଁ ।

ହେନା ଯେତେବେଳେ ଆସେ, ବେଶ୍ କିଛିଦିନ ରହେ, କାରଣ ତା'ର ସ୍ୱାମୀ ଅଫିସ୍‌କାମରେ ଟୁର୍‌ରେ ଯାଆନ୍ତି, ଆଉ ସେଇଟା ହିଁ ତା'ର ବାପଘରକୁ ଆସିବା ସମୟ । ଆସିଲାକ୍ଷଣି କହେ– ଚାଲି ଆସିଲି ! ବର ନ ଥିବା ଶ୍ୱଶୁରଘର ! ଛି, ଯେମିତି ଲୁଣ ନ ଥିବା ପଖାଳ !

ହେନାର ପୁଅଝିଅ ନାହାନ୍ତି, ତେଣୁ ହେନାର ସ୍ୱାଧୀନତାଟା ଏତେ ବେଶୀ ରହିଛି ।

ଚନ୍ଦ୍ର-ସୂର୍ଯ୍ୟଙ୍କ ଗତିର ନିୟମରେ ହିଁ ହେନା ତା'ର ନିଜର ଭାଉଜଠୁ, ଜକେଇ ଖୁଡ଼ୀଙ୍କୁ ହିଁ ବେଶୀ ଭଜେ । ମା' ? ସେ ତ ବର୍ତ୍ତମାନ ନଖଦନ୍ତବିହୀନ, ତାଙ୍କୁ ଅତି ହେଲେ ଟିକିଏ କରୁଣା କରିହେବ । ତାଙ୍କ ପାଖରେ ତ ଆଶ୍ରୟ ନାହିଁ ।

ବଡ଼ଭାଇନାଙ୍କର ଆଉ କେତେଜଣ ଝିଅ ମଧ୍ୟ ଅଛନ୍ତି, ସେମାନେ ତାଙ୍କ ବାପା ମରିଯିବା ପରଠୁ ଆଉ ଆସନ୍ତି ନାହିଁ । ଯେମିତି ସୁବର୍ଣ୍ଣଲତା ମରିଯିବାପରେ ଚମ୍ପା ଓ ଚନ୍ଦନ ଆସିବା ଛାଡ଼ି ଦେଇଥିଲେ । କହିଥିଲେ— ଆଉ କେଉଁଠାକୁ ଯିବୁ ?

କିନ୍ତୁ ପାରୁଲ୍ ?

ଭାବନାଗୁଡ଼ିକ ଯେପରି ପାରଦ ପରି, ଆଦୌ ତମେ ହାତରେ ଧରି ରଖିପାରିବ ନାହିଁ, ସେଗୁଡ଼ିକ ଗଡ଼ି ପଡ଼ିଯିବ, ଯେଉଁଠି ସେଇଠି ଛିଟିକି କରି ପଡ଼ିବ ଖାଲି ଯେଉଁଠି ହେଲେ ପଡ଼ିଲେ ଝକ୍‌ଝକ୍ ଆଖିରେ ଚାହିଁବ ।

ପାରୁଲ୍‌ର କଥା ମନେପଡ଼ିଲାକ୍ଷଣି ପାରୁଲ୍ ଯେପରି ଆଗରେ ଠିଆ ହୋଇ ହସିଉଠିଲା ।

ଯେମିତି କହିଲା, କାହିଁ ଲୋ ବକୁଳ ତୋ'ର ଆଉ ତା'ହେଲେ ସମୟ ହେଲାନି ? ଅଥଚ କହିଥିଲୁ— ନାନୀ, ତୋ ପାଖକୁ ନିଶ୍ଚେ ଯିବି । ତୋ ସଙ୍ଗେ ମିଶି ବକୁଳକୁ ପୂରା ଖୋଜି ଦେଖିବି । ମୋ ପାଖରେ ଖାଲି ଭଙ୍ଗାଭଙ୍ଗି ଖଣ୍ଡ କେତେଟା ରହିଛି ।

ହଁ, ବକୁଳ କହିଥିଲା । କିନ୍ତୁ ସେ ପୂରାଟା ଖୋଜି ଦେଖିବାକୁ ଯିବାର ସମୟ ମିଳିଲାନି ସତରେ ଆଜିପର୍ଯ୍ୟନ୍ତ ।

କାହିଁକି ? ଖାତାପତ୍ରର ଜଞ୍ଜାଳ କେବେ ସାରିପାରୁନି ବୋଲି ? ପାହାଡ଼ ଉପରେ ପୁଣି ପାହାଡ଼ ଜମିଯାଏ ବୋଲି ? ମୁଁ ସେଗୁଡ଼ିକର ଗତି କରିବି ବୋଲି ଦୃଢ଼ସଙ୍କଳ୍ପ ହୋଇ ବସିଲାମାତ୍ରେ ଫଙ୍କସନ୍‌ବାଲାମାନେ ବାଜପକ୍ଷୀ ପରି ଆସି ଝାମ୍ପି ନେଇଯାଆନ୍ତି ବୋଲି ? ତା' ମଝିରେ ଥାଇ ସୁଦ୍ଧା ସମୟ ଟିକିଏ ବାହାର କରିନେବାର ଚେଷ୍ଟା କରୁଥିଲାବେଳେ ଦର୍ଶନାର୍ଥୀ ଆଉ ବିନାମୂଲ୍ୟରେ ଲେଖା ନେବାର ପ୍ରାର୍ଥୀଙ୍କ ଭିଡ଼ ଆସି ଜୁଟିଯାଆନ୍ତି ବୋଲି ?

ଯେତେବେଳେ ଇଚ୍ଛା ହେବ ରଡ଼ି ଛାଡ଼ି ଛାଡ଼ି କହିବି– ଯେ ତ ବଡ଼ ହଇରାଣିଆ କଥା । ଗୋଟା ଦେଶଟାଯାକର ତମେମାନେ କ'ଣ ଖାଲି ପତ୍ରିକା ବାହାରକରିବ ? ଆଉ ଆମେ ହେବୁ ସେଇ ଯୂପକାଠର ବଳି ?

ସେତେବେଳେ ଭାରି ମଧୁର ହସ ହସି କହିବାକୁ ହେବ– କ'ଣ କରିବି କହିଲ ? ସମୟ ତ ମୋଟେ ନାହିଁ, ପ୍ରତିଦିନ କେତେ କାଗଜ ବାହାରୁଛି–

ସମୁଦ୍ରରେ ବାଲିର ବନ୍ଧ ପରି ସେହି କଥାର ବନ୍ଧ ସେମାନଙ୍କ କଥାର ଜୁଆରରେ ଭାସିଯିବ ବୋଲି ? ଏଗୁଡ଼ିକ ହିଁ ସବୁଠୁ ବେଶୀ ଦରକାର ।

ସେହି ଦରକାର ସ୍ତୂପର ସେପଟେ ପାରୁଲ୍ ନାନୀ ବସି ବସି ମିଟି ମିଟି କରି ହସିବ, ଆଉ ତା'ପରେ ମୁହଁ ଫେରାଇ ନେବ । ଆଉ ତା'ପରେ ମଧ ଆସ୍ତେ ଆସ୍ତେ ବୁଢ଼ୀ ହୋଇଯିବ । ବଦଳିଯିବ ? ହୁଏତ ସେହି ଚିହ୍ନା ପାରୁଲ୍ ନାନୀକୁ ଆଉ ଖୋଜି ପାଇ ହେବନି କୌଣସିଦିନ, ହୁଏତ କୌଣସିଦିନ ମରିଯିବ ମଧ । ଆଉ ବକୁଳ ବସି ବସି ଟେବୁଲ ଉପରେ ଜମି ରହିଥିବା ସ୍ତୂପକୁ ସଫା କରିବ ? କୌଣସିଦିନ ସେ ସଫା ହେବନି, ପୁଣି ଜମିଯିବ, ଏ କଥା ଜାଣି ସୁଦ୍ଧା ବକୁଳ ତା'ର ଟେବୁଲକୁ ସଫା କରିବା ଚେଷ୍ଟାରେ ରହିବ ?

ଏ ଜାଲରୁ କ'ଣ ଥରଟେ ପଳାଇଯାଇ ହେବନି ?

ହଠାତ୍ ଯାଇ କହି ହେବନି– ଚାହିଁଲୁ ଦେଖ୍, ମତେ ତୁ ଚିହ୍ନିପାରୁଛୁ କି ନାହିଁ ?

ଅଫିସ୍‌ର କାମରେ ମୋହନକୁ 'ପଶ୍ଚିମ'ରୁ ପଶ୍ଚିମବଙ୍ଗକୁ ଚାଲିଆସିବାକୁ ପଡ଼ିଥିଲା, ତେବେବେଳେ ମୋହନ ଏମିତି ଆସି ଠିଆହେଲା, ଦେଖିଲେ ଲାଗିବ ମା'ଙ୍କୁ ଖାଲି ସେ ପ୍ରଶ୍ନଟା ପଚାରିବାକୁ ଆସିଥିଲା ମୋହନ । ଏଇମାତ୍ର ଯେଉଁ ପ୍ରଶ୍ନର ଉତ୍ତରଟା ପାରୁଲ୍ ହସିଦେଇ କହିଥିଲା– ଏ ମା' ! ହେଲେ କ'ଣ ତଡ଼ିଦେବି ? କେତେଦିନ ରହିବ ବୋଲି ପିଉସୀ ପାଖକୁ ଆସିଛି–

ରାଗଟାକୁ ଲୁଚାଇବାର ଚେଷ୍ଟା ନ କରି ମୋହନ କହିଲା– ଏକୁଟିଆ ହେଲେ କେତେଦିନ କାହିଁକି ଦଶ ମାସ ହିଁ ରହି ପାରିଥାନ୍ତା, ଆପତ୍ତି କରିବାର କିଛି ନ ଥିଲା କିନ୍ତୁ ଆଉ ଗୋଟାଏ କଥା ଶୁଣିଲି–

–"କି କଥା ଶୁଣିଲୁ ?" ପଚାରିଲା ପାରୁଲ୍ ।

ମୋହନ ମନେ ମନେ ଓଠକୁ କାମୁଡ଼ିଲା । ମନେ ମନେ ଚିତ୍କାର କଲା– ମା', ତମର ଏ ସିଆଣିଆ ପଣିଆଟା ଗଲାନି କେବେ ? ସେଇ ପିଲାଟିଦିନରୁ ଏ ବୁଢ଼ାବୟସ ପର୍ଯ୍ୟନ୍ତ ଦେଖୁଛି– ତମେ ଠିକ୍ ଶରତଚନ୍ଦ୍ରଙ୍କ ନଭେଲର ନାୟିକା

ପ୍ୟାଟର୍ଣ୍ଣରେ କଥା କହୁଛ ! ଆମେ ଏତେ ନଅ ପାଞ୍ଚ ବୁଝୁନୁ । ଗୃହସ୍ଥ ଘର ଲୋକ ଗୃହସ୍ଥ ଧରଣରେ କଥା କହିବୁ, ଉତ୍ତର ପାଇବୁ ଗଲା ସମସ୍ୟା ତୁଟିଲା, ଟା' ନୁହେଁ ।...... କାହିଁକି ତମେ ବୁଝିପାରୁ ନାହଁ, ଆଉ କ'ଣ ଶୁଣିଛି ? ଠିକ୍ ବୁଝିପାରିଛ ତମେ, ତେବେକେ ମୋ ମୁହଁରୁ କୁହାଇବାକୁ ଚାହୁଁଛ । ତୁଚ୍ଛାକୁ ଆଉ କ'ଣ ତମ ବୋହୂମାନେ ଏତେ ଅସନ୍ତୁଷ୍ଟ ! ମୁଁ ତମର ନିଜର ପୁଅ, କିନ୍ତୁ ମତେ ଅପଦସ୍ଥ କରିବା ଭିତରେ ହିଁ ତମର ଆନନ୍ଦ ରହିଛି !

ମୋହନ କଥାଗୁଡ଼ାକ କହୁଥିଲା ମନର ମୁହଁରେ ଚିତ୍କାର କରି କରି, କିନ୍ତୁ ବାହାରେ ସେ ମଧ୍ୟ ପାରୁଲ୍‌ର ପୁଅ । ସ୍ଥିର ଅଚଞ୍ଚଳ ।

—ଯାହା ଶୁଣିଲି ସେଇଟା ତମେ ବୁଝିପାରି ନାହଁ ନୁହେଁ । ମୁଁ କହିବାକୁ ଚାହୁଁଛି ଗୋଟାଏ କୁଲି ମଜୁରିଆ ଧରଣର ବାଜେ ଲୋକକୁ ଧରି ସେ କୁଆଡ଼େ ଚାଲିଆସି ରହିଛି ତମ ପାଖରେ ଏବଂ ଲୋକଟା କୁଆଡ଼େ ରୋଗଗ୍ରସ୍ତ ?

—'ରୋଗଗ୍ରସ୍ତ ? ନା ତ—' ପାରୁଲ୍ ବିସ୍ମୟଭରା ଗଳାରେ କହିଲା— ତତେ ଯେ ଖବର ଦେଇଛି, ଦେଖୁଛି ସେ ତ ଭଲ କରି ନ ବୁଝୁଣୁ—

—'ମତେ କେହି କିଛି ଖବର ଫବର ଦେଇନି ।' କହି ପକାଇଲା ମୋହନ ।

ପାରୁଲ୍‌ର କ'ଣ ମନେ ପଡ଼ିଲାନି, ମୋହନ ରେଳ-ରାସ୍ତାରେ ଅନେକଦୂରରୁ ଆସିଛି, ତାକୁ ଶୋଷ କରୁଥାଇପାରେ, ଭୋକ କରୁଥାଇପାରେ ! ଆଉ କ'ଣ ମନେ ପଡ଼ିଲାନି ପାରୁଲ୍‌ର ଯେ ମୋହନ ତା'ର ଗର୍ଭଜାତ ସନ୍ତାନ ? ପାରୁଲ୍ ମୋହନର ମା !

ହୁଏତ ମନେପଡ଼ିଲାନି ।

ଯେଉଁମାନଙ୍କର ମନ ଅନ୍ୟ ଧାତୁରେ ଗଢ଼ା, ସେମାନଙ୍କର ହୁଏତ ସେହି ସବୁ ଛୋଟ ମୋଟ କଥାଗୁଡ଼ାକ ମନେ ପଡ଼େନାହିଁ । ସେମାନେ ଖାଲି ଖାଣ୍ଟି ବାସ୍ତବଟାକୁ ଦେଖିପାରନ୍ତି ।

ସେହି ବାସ୍ତବ ଦୃଷ୍ଟିରେ ପାରୁଲ୍ ମୋହନକୁ ପାରୁଲ୍‌ର 'ଅପରାଧର ବିଚାରକ' ଛଡ଼ା ଆଉ କୌଣସି ଦୃଷ୍ଟିରେ ଦେଖି ପାରୁନି, ଅତଏବ ପାରୁଲ ନିଜ ପକ୍ଷରେ ଉତ୍ତର ମହଜୁଦ୍ ରଖିବାକୁ ହିଁ ତତ୍ପର ରହୁଛି । ଆଉ ୟା ମଧ୍ୟ ସ୍ଥିର ନିଶ୍ଚିତ ଯେ ଅନଧିକାରରେ ଯଦି କିଏ ବିଚାରକ ସାଜି ଜେରା କରିବାକୁ ଆସିବ, ପାରୁଲ୍ ତାକୁ ଜମା ଛାଡ଼ିବନି । 'ପୁଅ' ହେଲେ ମଧ୍ୟ ନୁହେଁ ।

ସେଥିପାଇଁ ପାରୁଲ୍ ପୁଅଟାର କ୍ଳାନ୍ତ ମୁହଁଟା ଆଡ଼କୁ ନ ଚାହିଁ ଖୁବ୍ ହାଲୁକା ଟିକିଏ ହସ ସହିତ କହିଲା— କେହି ଖବର ଫବର ଦେଇ ନାହାନ୍ତି ? ଏ'

ମା', ସେଇୟା ନା କ'ଣ ? ତୁ ତା'ହେଲେ ଆଜିକାଲି ବୋଧହୁଏ ହାତଫାତ ଦେଖିବା ଶିଖୁଛୁ ? କାହାର ବହି ପଢୁଛୁ ? କିରୋଙ୍କର ?

କଥାଟା କହିଦେଇ ମୋହନ ଅପ୍ରସ୍ତୁତ ହୋଇଯାଇଥିଲା, ଏ କଥାଟା ସତ, ତା' ବୋଲି ଏମିତି ଅପଦସ୍ଥ କରିବାଟା ?...... ମୋହନ ଗମ୍ଭୀର ହେଲା । ମୋହନର କ୍ଲିଷ୍ଟ ମୁହଁ ଆରକ୍ତ ହୋଇଗଲା, ତୀବ୍ରତାକୁ ଏଡ଼ାଇଦେଇ ଗମ୍ଭୀର ସ୍ୱରରେ ହିଁ ସେ କହିଲା— ମୁଁ ବେଶୀ ସମୟ ହାତରେ ଧରିଆସିନି ମା' ! ସିଧା ଆଉ ସହଜ ଭାବରେ କଥା କହିଲେ ଶୀଘ୍ର ସରିଯିବ ।

ଓଃ ସେଇୟା ନା କଣ ?

ପାରୁଲ୍ ଚଟ୍‌କିନା ନିଜକୁ ମଧ ପ୍ରାୟ ସିଧା କରି ଠିଆ କରାଇଦେଇ କହିଲା— ତା'ହେଲେ ତୁ ହିଁ କହ ଚଟ୍‌ପଟ୍ କରି ତୋ'ର କ'ଣ ଜାଣିବାର ଅଛି ? ହଠାତ୍ କୋଉଥିପାଇଁ ଆସିଲୁ ? ଏକ ନମ୍ବର, ଦୁଇ ନମ୍ବର କରି କହ— ଉତ୍ତରଟା ଚଟ୍‌ପଟ୍ ଦେଇଦେବି ।

ଓଃ ଅସହ୍ୟ !...... ମନେ ମନେ କହିଲା ମୋହନ ।

ତେବେକେ ବାହାରେ ସହିଷ୍ଣୁତାଭରା କଣ୍ଠରେ କହିଲା— ମୁଁ ଜାଣିବାକୁ ଚାହେଁ— ତମର ସେ ଝିଅାରୀ ସହିତ ଆଉ ଜଣେ ଲୋକ ଅଛି କି ନାହିଁ ?

— ଅଛି ।...... ଯାନ୍ତ୍ରିକ ଉତ୍ତର ପାରୁଲ୍‌ର ।

ମୋହନ ମନେ ମନେ ପୁଣି ଚିତ୍କାର କରିବାକୁ ଲାଗିଲା— ତୁମ୍ଭାକୁ କ'ଣ ମୁଁ ଭାବୁଛି ବାପା ଚଣ୍ଡଳ ମରିଯାଇ ରକ୍ଷା ପାଇ ଯାଇଛନ୍ତି । ବାହାରେ ପଚାରିଲା— ଲୋକଟା କିଏ ? ତା'ର ଖବର ନେଇଥିଲ ?

— ଦରକାର ମନେ କରିନି ।

— ଓଃ ଦରକାର ବୋଲି ଭାବି ନାହଁ ? ସାତଜନ୍ମରେ ଯୋଉ ଝିଅାରୀକୁ ତମେ ଦେଖି ନ ଥିଲ ସେ ଆସି ଘରେ ରହିଲା ଗୋଟାଏ ବାଜେ ଲୋକକୁ ଧରି, ତମେ ତା'ର ପରିଚୟ ଜାଣିବାଟା ଦରକାର ବୋଲି ଭାବିଲନି ?

— "ମୋର ଝିଅାରୀ ଯେତେବେଳେ ସାଙ୍ଗରେ ଧରି ଆସିଛି, ତାହାହିଁ ଯଥେଷ୍ଟ ପରିଚୟ ବୋଲି ଭାବିଲି—"

— ଚମତ୍କାର ! ତମର ଝିଅାରୀ ଯଦି ଗୋଟାଏ ରାସ୍ତାର କୁଲି ମଜୁରିଆକୁ ନେଇକରି ଆସିବ—

— ସେଇଟାକୁ ବି ମାନିନେବାକୁ ପଡ଼ିବ । ସେହି କୁଲିଟାକୁ ହିଁ ସେ ଯେତେବେଳେ ତା'ର ଭାବୀ ସ୍ୱାମୀ ବୋଲି ଠିକ୍ କରି ରଖିଛି !

— ଅତଏବ ତାକୁ ଘରେ ଆଶ୍ରୟ ଦେଇ କ୍ୱାଇଁ ଆଦରରେ ରଖିବାକୁ ଆପତ୍ତି ନାଇଁ, ଏଇୟା ନା ? ତମର ସେ ଝିଆରୀର ବୟସ ନିଶ୍ଚେ ଏତେ ବେଶୀ ହେଇନି ଯେ, ମଣିଷ ଚିହ୍ନି ଦେଇପାରିବ । ଲୋକଟା ଜେଲ୍‌ଖାନାର ଆସାମୀ କି ନାହିଁ—

ମୋହନର ଦ୍ରୁତ କଥାର ଘନ ଜାଲ ମଝିରେ ଆସ୍ତେ ଗୋଟିଏ ପାତଳ ଛୁରୀର ଆଘାତ ବସାଇଲା ପାରୁଲ୍— ବୟସଟା ଅନେକ ବେଶୀ ହେଲେ ହିଁ ମଣିଷର ଚିହ୍ନିବାର କ୍ଷମତା ହୁଏ, ଏ କଥାଟା ପୁଣି ତତେ କିଏ କହିଲା ମୋହନ ? ହେଲେ ତୋର ତ ଅନେକ ବୟସ ହୋଇଛି, ଜନ୍ମରୁ ମତେ ଦେଖିଆସୁଛୁ, କାହିଁ କେବେହେଲେ ଚିହ୍ନି ପାରିଲୁ ?......

## ।। ୧୯ ।।

ନମିତା ଯେ ଏମିତି ଚାରିଦଉଡ଼ିକଟା ହୋଇ ଚାଲି ଯାଇପାରିବ, ସେକଥା ଢଳପାଇଗୁଡ଼ିର ସେମାନେ ଭାବିପାରି ନ ଥିଲେ । ଯେଉଁ ନମିତାର ମୁହଁରୁ କଥା ବାହାରୁ ନ ଥିଲା, ସେ ହଠାତ୍ ସ୍ପଷ୍ଟ ଗଳାରେ କହିଲା— 'ମୁଁ ଚାଲିଯିବି !' କହିଲା— ଦାସତ୍ୱ-ବନ୍ଧନରୁ ମୁକ୍ତି ଦରକାର !

ଆଶ୍ରୟଦାତାଙ୍କ ପାଖରେ ଏ କଥାଟା ଲଜ୍ଜାକର ଏବଂ ଦୁଃଖକର ମଧ୍ୟ । ସର୍ବୋପରି ଅପମାନକର ମଧ୍ୟ ।

—ଏ ହତଭାଗୀ ନିମକହାରାମ୍‌ର ଝିଅ, ଯୋଉ ମାମୁଶ୍ୱଶୁର ଅସମୟରେ ତତେ ମୁଣ୍ଡରେ ଧରିଆଣି ଆଶ୍ରୟ ଦେଇଥିଲେ, ତାଙ୍କ ମୁହଁ ଉପରେ ଏତେ ବଡ଼ କଥା ? ସେ ତତେ ଦାସ୍ୟବୃତ୍ତି କରାଇବାକୁ ଆଣିଥିଲେ ? ଭିତରେ ଭିତରେ ତୋର ଏତେ ପେଞ୍ଚ ? କହୁଛି, କୋଉ ଚୁଲିକୁ ଯିବୁ ? ଯିବାକୁ ଯଦି ଜାଗା ଥିଲା, ତା'ହେଲେ ଆସିଥିଲୁ କାହିଁକି କୃତାର୍ଥ ହେଇ ? ଏତେକାଳ କାହିଁକି ପଡ଼ି ରହିଥିଲୁ ?

ଅନିଲବାବୁ କ୍ଲାନ୍ତ ଗଳାରେ କହିଲେ— ଆଃ, ମା, ତୁନି ହୁଅ । ବୋହୂମା'ଙ୍କର ଯଦି ହଠାତ୍ ଏଠି ଅସୁବିଧା ହେଲା, ଆଉ ତା'ର ପ୍ରତିକାରର ଉପାୟ ଆମମାନଙ୍କ ହାତରେ ନାହିଁ, ବାଧା ଦେବାର କଥା ଉଠୁ ନାହିଁ ।

ମାଇଁଶାଶୁ ନମିତାର ସେହି ଦୃଢ଼ ଘୋଷଣା ପରଠାରୁ ସମଗ୍ର ସଂସାର ଆଡ଼କୁ ଚାହିଁ ଚାହିଁ ଦେଖୁଥିଲେ, ଆଉ ତାଙ୍କର ଭିତରଟା କାନ୍ଦୁଥିଲା, ଏ ସବୁ କାମ ତାଙ୍କରି କାନ୍ଧରେ ପଡ଼ିବ ଏଥର ! ନମିତା ଚାଲିଯିବା ଅର୍ଥ ତାଙ୍କୁ ହିଁ ଭୋର

ପାଞ୍ଚଟା ବେଳେ ବିଛଣା ଛାଡ଼ି ଉଠିବାକୁ ପଡ଼ିବ । ଉଠିଲାକ୍ଷଣି ଘରଯାକର ସମସ୍ତେ ମୁହଁ ଧୋଇବା ପାଇଁ ଗରମପାଣି ବସାଇବାକୁ ପଡ଼ିବ । ହଁ, ହାତମୁହଁ ଧୋଇବା ପାଣି ମଧ୍ୟ ଗରମ ନ ହେଲେ ଉପାୟ ନାହିଁ ଏ ସମୟରେ, କାରଣ କାଳଟା ଶୀତକାଳ । କେମିତି ଜାଣି ଜାଣି ଅସଲ ସମୟଟାରେ ବୁଦ୍ଧିଟା ପ୍ରୟୋଗ କଲା ନମିତା ! କିଛିଦିନ ହେଲା ଭାବଟା ବେଶ୍ ଅସ୍ୱାଭାବିକ ଜଣାଯାଉଥିଲା— ଯେମିତି ଏ ପରିବାରରେ କାମ କରି, ସେବା-ଯତ୍ନ କରି ସେଭଳି କୃତାର୍ଥ ହେଲା ପରି ଦିଶୁ ନ ଥିଲା, ଯେମିତି ନ କଲେ ନ ଚଳେ ସେହିପରି କରୁଥିଲା ।

ତେବେକେ କରୁଥିଲା— ସେଗୁଡ଼ିକ ତାଙ୍କରି ଉପରେ ଆସି ପଡ଼ିଲା, ଅଥଚ ତାଙ୍କ ଦେହ ଭଲ ନାହିଁ— ବିଶେଷତଃ ଶୀତଦିନେ ମୋଟେ ଭଲ ରହେନି । ସକାଳ ଆଠଟା ଆଗରୁ ବିଛଣା ଛାଡ଼ି ଉଠିଲେ ଦେହରେ ଯାଏନି । ସେଇ ବେଡ୍-ଟି ଟିକେକ ଗଳାରେ ଡାକିଲେ ତେବେ ଯାଇ ବଳ ଆସେ ଦେହକୁ । ଆଉ ୟାପରେ ? ସେ ବେଡ୍-ଟି ତାଙ୍କୁ ହିଁ ତିଆରି କରିବାକୁ ପଡ଼ିବ ଆଉ ସମସ୍ତଙ୍କ ପାଖକୁ ଯାଇ ଦେବାକୁ ପଡ଼ିବ । ହୋଇପାରେ, ଯେଉଁମାନଙ୍କ ହାତଗୁଡ଼ିକ ମଶାରି ଭିତରୁ ବାହାରି ଆସିବ ଗରମ ଚା' କପ୍‌ଟିକୁ ଧରିବାକୁ । ସେମାନେ ତାଙ୍କରି ସ୍ୱାମୀ, ପୁତ୍ର-କନ୍ୟା, ହେଲେ ଦେହ ତ ଏ କଥା ଶୁଣିବନି ।

କିନ୍ତୁ ଖାଲି ସେଇଠି ତ କର୍ତ୍ତବ୍ୟ ଶେଷ ହୋଇଗଲାନି, ତା'ପରେ ଜଳଖିଆ ତିଆରି କରିବାକୁ ପଡ଼ିବ, ତା'ପରେ ପୁଣି ଚା' କରିବାକୁ ହେବ, ସଜାଇ ସଜାଇ ଟେବୁଲ୍‌ରେ ରଖିବାକୁ ପଡ଼ିବ । ତା'ପରେ ପରିବା କାଟିବା, ତା'ପରେ ରନ୍ଧା, ତା'ପରେ ବଢ଼ାବଢ଼ି, ତା'ପରେ ଦେଖିବାକୁ ହେବ କାହାର କ'ଣ ଦରକାର । କାହାର ଠିକ୍ ସ୍କୁଲକୁ ଯିବାବେଳକୁ ଜାମାର ବୋତାମ ଛିଣ୍ଡିଗଲା, କାହାର ବହି ବେଗ୍‌ର ଷ୍ଟ୍ରାପ୍ ଖୋଲିଗଲା, କାହାର ପ୍ୟାଣ୍ଟ ମଇଳା, କାହାର ଗେଞ୍ଜି ଶୁଖିନି, ଆହୁରି କେତେକଣ ! ସେହି କୁରୁକ୍ଷେତ୍ର କାଣ୍ଡ ପରେ ଗାଧୋଇ ଆସି ପୁଣି ଶାଶୁଙ୍କ ନିରାମିଷ ପଟର ରନ୍ଧାରନ୍ଧି କରିବା ଅଛି । ଖରାଦିନେ ବୁଢ଼ୀ ଯଦିବା ଦିନେ-ଦୁଇଦିନ ନିଜେ ଦିଇଟା ଫୁଟାଇନେଇ ପାରିବେ, ଶୀତକାଳରେ ଜମା ନୁହେଁ । ଅଥଚ ଏ ସମୟରେ ହିଁ ଯେତେକ ଖାଇବା ଆଡ଼ମ୍ବର— କୋବି, ମଟରଛୁଇଁ, ନୂଆ ଆଳୁ, ପାଳଙ୍ଗ ଶାଗ, ମୂଳା, ବାଇଗଣ— ପରିବାପତ୍ରର ସମାରୋହ ଚାଲିବ । ତା'ଛଡ଼ା ପୁଣି ବାବୁଙ୍କର ପ୍ରଖର ଦୃଷ୍ଟି ରହିଥିବ ମା'ଙ୍କର ସମାନ ଆଦର ଯତ୍ନ ହେଉଛି କି ନାହିଁ ସେହିପଟକୁ !

ଅତଏବ ଶାଶୁଙ୍କର ରାଜଭୋଗଟି ସଜେଇ ଦେଇ ପୁଣି ପଡ଼ିବାକୁ ହେବ ଉପରଓଳିର ଜଳଖିଆ ତିଆରି ପାଲାରେ । ନିତ୍ୟନୂତନ ଜଳଖିଆପତ୍ର କରି

କରି ତ ନମିତା ଦେବୀ ମୁହଁଗୁଡ଼ିକୁ ଆଉ ସ୍ୱଭାବଗୁଡ଼ିକୁ ଲମ୍ବା କରି ଦେଇଛନ୍ତି । କରିବେନି କାହିଁକି ଯେ, ପରର ପଇସା, ପରର ଭଣ୍ଡାର ଉଦାର ହାତରେ ଖର୍ଚ୍ଚ କରି କରି ସମସ୍ତଙ୍କର ପ୍ରିୟ ହେବା ଦରକାର ! ଏଇଲେ ତାଙ୍କର ମୁଣ୍ଡରେ ଲଦିଦେଇ ପଳାଇଯିବାର ମତଲବ । ସାଦାସିଧା ଜଳଖିଆ, ରୁଟି-ଲହୁଣୀ କି ଲୁଚି-ପରଟା ଆଉ ପିଲାଙ୍କୁ ରୁଚିବ ? କିଏ ସମ୍ଭାଳିବ ଏ ଅବସ୍ଥାକୁ ?

ଖାଲି କ'ଣ ଜଳଖିଆ ? ରାତିରେ ?

ଖଣ୍ଡିଏ ଖଣ୍ଡିଏ କରି ଗରମ ରୁଟି ସେକି ସେକି ପତ୍ରରେ ଦେବା କ୍ଷମତା ତାଙ୍କର ଅଛି ? ନ ପାରିଲେ ବାବୁ-ବିବିମାନଙ୍କର ହୁଏତ ରୁଚିବନି । ଏସବୁ ନମିତା କରୁଥିଲା । ତେବେବେଳେ ତ ଗଳଗଳର ସୀମା ନ ଥିଲା । ଏସବୁ ବଦଅଭ୍ୟାସ ନମିତା ହିଁ କରେଇଛି । ତା' ମାନେ ନୀରବରେ ନିଃଶବ୍ଦରେ ମାମୁଁଶ୍ୱଶୁରଙ୍କର ଭଣ୍ଡାର ସଫା କରିଦେଇଛି, ଆଉ ମାଇଁଶାଶୁର ଭବିଷ୍ୟତ୍ ସଫା କରିଛି ! ଏସବୁ ପରିକଳ୍ପିତ ଶତ୍ରୁତା ଛଡ଼ା ଆଉ କ'ଣ ?

ସେହେତୁ ନମିତାକୁ ଦେଖିଲାମାତ୍ରେ ବିଷ ଚରିଯାଉଛି ତାଙ୍କ ଦେହରେ ।

ଆଉ ହଠାତ୍ କେମିତି ଭୟ-ଶୂନ୍ୟ ହୋଇ ବସିଛି ଦେଖ ! ବସିଛି ଶୋଇବା ଘର ଭିତରେ, ତରବର ହୋଇ ଦି'ପହରର ଜଳଖିଆ କରିବାକୁ ଆଗେଇ ଆସୁନି ତ ! କାହିଁକି ? କେଉଁଥିପାଇଁ ? ଅସମୟରେ ଯେ ଆଶ୍ରୟ ଦିଏ, ତା'ର ବୋଧହୁଏ ଆଶ୍ରିତ ଉପରେ କିଛି ଜୋର୍ ନ ଥାଏ ? ଯାଉନୁ ଦେଖିବା କେମିତି ଯିବୁ ?

ସ୍ୱାମୀଙ୍କର ସେହି ଦେହକୁ ନ ଲାଗିବା କଥା ଶୁଣି ସେଥିପାଇଁ ତାତିଲା କରେଇର ତେଲ ଭଳି ଜଳିଉଠିଲେ ଭଦ୍ରମହିଳା, ରୁକ୍ଷ ଗଳାରେ କହିଲେ— କାହିଁକି ? ବାଧାଦେବା କଥା ଉଠୁନି କାହିଁକି ? ହଠାତ୍ ଯିବି କହିଲେ ଚାଲିଯିବ ? ହୋଟେଲ୍‌ରେ ରହିଥିଲା ନା କ'ଣ ? ସେଥିପାଇଁ ଏଠି ମୋର ସୁବିଧା ହେଉନି ବୋଲି ଚାଲିଯିବ ? ତମେ କହିଦିଅ— ଏ ସମୟରେ ତମେ ଯାଇପାରିବନି ।

ଅନିଳବାବୁ ବଡ଼ ଚୁପ୍‌ଚାପ୍ ମଣିଷ, ମୃଦୁ ଗଳାରେ କହିଲେ— ଅକାରଣରେ ମୁଣ୍ଡ ଗରମ କରନି ମୃଣାଳ, ବାଧା ଦେବାକୁ ମୁଁ କିଏ ?

—ତମେ କେହି ନୁହଁ ?

—ଜୋର୍ କରିବା ଭଳି ଉପଯୁକ୍ତ କେହି ନୁହେଁ ।

—ଓଃ ତା'ହେଲେ ଏତେଦିନ ଏତେକାଳ ବେକରେ ବାନ୍ଧି ବୋହିଲ କାହିଁକି ? "ଚିତ୍କାର କରି କହିଲେ ମୃଣାଳ," ତମେ ଯଦି କେହି ନୁହଁ, ତା'ହେଲେ ଏ

ପର୍ଯ୍ୟନ୍ତ ଭାତ ଆଉ ଲୁଗା ଦେଇ ପୋଷିଲ କାହିଁକି ? ଆଣିବାକୁ ଯାଇଥିଲ କାହିଁକି ?

—ପାଟିତୁଣ୍ଡ କରି ଲାଭ କ'ଣ ମୃଣାଳ ? ସେହି କାହିଁକି ଗୁଡ଼ାକର ଉତ୍ତର ତମେ ନିଜେ ମଧ୍ୟ ଭଲକରି ଜାଣିଛ । ନୀପୁ, ରୀତା, ଖୋକା, ବୀରା ସମସ୍ତେ ସେତେବେଳେ ସାନ ହୋଇଥିଲେ । ତମ ଦେହ ଖରାପ ହେଲା, ମା' ବେମାରିରେ ପଡ଼ିଲେ, ସେତିକିବେଳେ ବିଜୁର ସନ୍ନ୍ୟାସୀ ହୋଇ ଚାଲିଯିବାଟା ଆମମାନଙ୍କ ପାଖରେ ଭଗବାନଙ୍କ ଆଶୀର୍ବାଦ ଭଳି ଲାଗିନି କି ?

ମୃଣାଳିନୀ ଚପା ଅଥଚ ତୀବ୍ର ଗଳାରେ କହିଲେ, ଓଃ ତା' ଅର୍ଥ ଉପକାର ଖାଲି ଆମମାନଙ୍କର ହୋଇଥିଲା, ତା'ର କିଛି ନୁହେଁ ?

—ତା କାହିଁକି ହେବ ! ଦୁହିଁଙ୍କର ଉପକାର ହୋଇଥିଲା, କିନ୍ତୁ ସେ ଯଦି ବର୍ତ୍ତମାନ ଏ ଜୀବନରେ କ୍ଲାନ୍ତ ହୋଇଗଲେ, କହିବାକୁ କ'ଣ ଅଛି କହିଲ ?

—ଚମତ୍କାର ! କିଛି ହେଲେ ନାହିଁ ? ଅଳ୍ପ ବୟସର ସ୍ତ୍ରୀଲୋକ, ତେଜ ଦେଖାଇ ଏକା ଚାଲିଯାଇ ରହିବ କୋଉଠି, କଣ କରିବ, ସେ କଥାଟା ଦେଖିବାର ଦାୟିତ୍ୱ ନାହିଁ ତମର ? ତମେ ତା'ର ଜଣେ ଗୁରୁଜନ ନୁହଁ ?

ଅନିଲବାବୁ ଅଳ୍ପ ହସିକରି କହିଲେ— ସେତେବେଳ ପର୍ଯ୍ୟନ୍ତ ଗୁରୁଜନଙ୍କର ଗୁରୁଦାୟିତ୍ୱ ଥାଏ ଲଘୁଜନ ଯେତେବେଳ ପର୍ଯ୍ୟନ୍ତ ଗୁରୁ-ଲଘୁ ଜ୍ଞାନଟିକକ ରଖିଥାଏ । ସେମାନେ ଯଦି ସେ ଜ୍ଞାନର ଉପଦେଶ ମାନିବାକୁ ନ ଚାହିଁବେ, ସେତେବେଳେ ଆଉ କି ଦାୟିତ୍ୱ ରହିବ ? ନାବାଳିକା ତ ନୁହେଁ ?

—ମୋର ମନେହେଉଛି ବିଲେଇ ଆଖି ବୁଜି ଦୁଧ ପିଉଛି । ଭିତରେ ଭିତରେ ପ୍ରେମ ପ୍ରେମ କ'ଣ କଲାଣି—

—ଆଃ ମୃଣାଳ, ଚୁପ୍ କଲ ।

—ବେଶ୍ ଚୁପ୍ ହେଉଛି । ତେବେ ଏଇଟା ଜାଣିଥାଅ ମତେ ଚୁପ୍ କରାଇଦେଲେ ମଧ୍ୟ ସାହିଲୋକଙ୍କୁ ଅଟକାଇ ଦେଇ ପାରିବନି ।

—ଯା ସଙ୍ଗେ ସାହି ଲୋକଙ୍କ ସଂପର୍କ କ'ଣ ?

—ନିଶ୍ଚେ ସମ୍ପର୍କ ଅଛି । ସାହିଲୋକଙ୍କ ସଙ୍ଗେ ସବୁକିଛିର ସମ୍ପର୍କ ଥାଏ । ସେମାନେ ଭାବିବେନି, ହଠାତ୍ ଏମିତି ଚାଲିଗଲା କାହିଁକି, ଭିତରେ କିଛି କଥା ଅଛି ନିଶ୍ଚୟ ।

—ସେମିତି ଭାବିଲେ ଆଉ କ'ଣ କରାଯିବ ?

—ତମର ଆଉ କ'ଣ କି ? କ'ଣ କରାଯିବ କହିଦେଲେ ହେଲା ! ଦୋଷ ଦେଲାବେଳକୁ ଲୋକେ ମତେ ହିଁ ଦୋଷୀ କରିବେ ! କହିବେ— ମାଇଁଶାଶୁ ମାଙ୍କଡ଼ୀ ଦୁର୍ବ୍ୟବହାର କରି ତଡ଼ିଛି !

— କହିଦେଲେ କ'ଣ ଦେହରେ ଫୋଟକା ହୋଇଯିବ ?

— ଯେଉଁମାନଙ୍କ ଦେହରେ କଇଁଚ ଖୋଳ ଅଛି, ସେମାନଙ୍କର କିଛି ହେବନି, ମଣିଷର ଚମଡ଼ା ଥିଲେ ଫୋଟକା ହେବ ।

— ତା'ହେଲେ ଫୋଟକାର ଜଳା ସହିବାକୁ ପଡ଼ିବ ।

— ତା'ହେଲେ ! ତାହେଲେ ତମେ ତାକୁ ମନା କରିବନି ? ଟିକିଏ ସଦ୍-ପରାମର୍ଶ ମଧ ଦେବନି ?

— ଠିକ୍ ଅଛି, ଦେବି ।

ଅନିଲବାବୁ କହିଥିଲେ ଏବଂ ନମିତାକୁ ଡାକି ମଧ ଉପଦେଶ ଦେଇଥିଲେ— ମୁଁ କହୁଥିଲି ବୋହୂ, ଫଟ୍‌କିନା ଚାଲି ନ ଯାଇ, ବରଂ ବିଜୁକୁ ଗୋଟାଏ ଚିଠି ଲେଖି ବିସ୍ତାରିତ ସବୁ ଜଣାଇ—

— ବିସ୍ତାରିତ ଭାବରେ କିଛି ଜଣାଇବାର ନାହିଁ ମାମୁଁ ।

—ନାଃ, ଏଠି ରହିବାକୁ ତମର ଆଉ ଜମା ଇଚ୍ଛା ହେଉ ନାହିଁ, ସେଇଟା ଜାଣିପାରିଲେ— ହୁଏତ—

— "ସେ କିଛି କରିବେନି ।" ନମିତା ଅତି କଷ୍ଟରେ ଆଖିଲୁହକୁ ଦବାଇ କହିଲା— କିଛି କରିବାର ଇଚ୍ଛା ଥିଲେ ଚିଠି ସୁଦ୍ଧା ଲେଖିବାକୁ ବାରଣ କରି ନ ଥାନ୍ତେ ।

ଅନିଲବାବୁ ମୁଣ୍ଡ ତଳକୁ କରି କହିଥିଲେ— ସେ କଥା ସତ ! ହେଲେ ତମର ଏଠି କି କି ଅସୁବିଧା ହେଉଛି, ସେ କଥାଟା ଯଦି ଟିକିଏ କହିଥାନ୍ତ, ଚେଷ୍ଟା କରି ଦେଖିଥାନ୍ତି, ସେଥିପାଇଁ କିଛି ପ୍ରତିକାର—

ଏତିକିବେଳେ ନମିତାର ଆଖିରୁ ଲୁହ ଝରି ପଡ଼ିଥିଲା । ନମିତା ମଧ ମୁଣ୍ଡ ତଳକୁ କରି କହିଥିଲା— "ଅସୁବିଧା କିଛି ନାଇଁ ମାମୁଁ, ଏଠି ଯୋଉ ସୁବିଧାରେ ଥିଲି, ସେମିତି ନିଜ ଘରେ ମଧ ରହିନି କୋଉଦିନ । ହେଲେ—" ଟିକିଏ ରହି କହିଥିଲା— ଅସଲରେ ଏବେ ଖାଲି ଏ ପ୍ରଶ୍ନଟା ହିଁ ସ୍ଥିର ଭାବେ ରହିବାକୁ ଦେଉନି, ଏ ଜୀବନଟାର କିଛି ଅର୍ଥ ଅଛି କି ନାହିଁ ।

ମାମୁଶ୍ୱଶୁର ସହିତ ଏପର୍ଯ୍ୟନ୍ତ ହଁ, ନା ଛଡ଼ା କୌଣସି କଥା କେବେ କହି ନ ଥିଲା ନମିତା, ସେଥିପାଇଁ କହିସାରି ଥରୁଥିଲା, ତେବେକେ କହିଥିଲା ।

ଟିକିଏ ହସିଥିଲେ ଅନିଳବାବୁ । କହିଥିଲେ– ସେ ପ୍ରଶ୍ନ କରିବାକୁ ବସିଲେ ଆମର କାହାର ଜୀବନର ହିଁ କୌଣସି ଅର୍ଥ ଖୋଜି ପାଇବ ବୋହୂ ? କିନ୍ତୁ ଥାଉ, ମୁଁ ତମକୁ ବାଧା ଦେବିନି, ଦେଖ ଯଦି ଅନ୍ୟ କେଉଁଠି ଶାନ୍ତି ପାଇପାରିବ ।

ଅନିଳବାବୁଙ୍କର ମା' ବିରକ୍ତ ଗଳାରେ କହିଥିଲେ– ନାତୁଣୀବୋହୂ ତୋ ସଙ୍ଗେ ଏତେ କଥା କ'ଣ କହୁଥିଲା ରେ ?

–ଏତେ ଆଉ କ'ଣ ! ଏଇ ଯିବା କଥା !

–ତୋ'ର ପରାମର୍ଶ ଶୁଣିଲା ? କୁମତଲବ ଛାଡ଼ିଲା ?

–ମୁଁ ତ କୌଣସି ପରାମର୍ଶ ଦେବାକୁ ଯାଇନି ମା', ଆମେ ଯେ ତାଙ୍କୁ ଚାଲିଯିବାକୁ ବାଧା ଦେବୁ ନାହିଁ, ସେ କଥାଟା ଖାଲି ଜଣାଇଦେଲି ।

–ବା ବାଃ ! ଭଲରେ ମୋର ବୁଦ୍ଧିମନ୍ତ ପୁଅ ! ଏ ଅସମୟରେ ଏଠି ଏବେ ଲୋକବାକ ମିଳୁ ନାହାନ୍ତି, ଏମିତି ଗୋଟାଏ କାମିକା ଝିଅକୁ ପଦେ କଥାରେ ମଣିଷ ଛାଡ଼ିଦିଏ ?

–"ଆମେ ତାଙ୍କୁ ଚାକରାଣୀ କରି ରଖିନାହୁଁ ମା' !" କହି ଚାଲି ଆସିଥିଲେ ଅନିଳବାବୁ ।

ଆଉ ସେହି ମୁହୂର୍ତ୍ତରେ ହଠାତ୍ ତାଙ୍କର ମନେହୋଇଥିଲା, କାହିଁକି ନମିତା ତା'ର ଜୀବନର ଅର୍ଥ ଖୋଜି ପାଉ ନାହିଁ ।

ଘରର ପ୍ରତି ପୁଅ ଝିଅ ବ୍ୟଙ୍ଗ-ବିଦ୍ରୂପ-ରାଗ କରି କରି ନମିତାକୁ ବିନ୍ଧୁଥିଲେ, ଆଉ ସେଥିରେ ହୁଏତ ନମିତାର ମନ ଭିତରେ ଯେଉଁ ଟିକକ ଦ୍ୱିଧା ଆସିଥିଲା, ସେଟିକକ ପୋଛି ହୋଇଗଲା ।

ଖାଲି ନୀରୁ କହିଥିଲା– ଯାଉ, ଭାଉଜ ତା'ହେଲେ ସତରେ ଚାଲିଯିବ ? ଆମମାନଙ୍କୁ ସିଧାସଳଖ ମୃଣାଳିନୀ ଦେବୀଙ୍କ ହାତରେ ପକାଇ ଦେଇ ଚାଲିଯିବ ?

ନମିତାର ଆଖିକୁ ଲୁହ ଆସି ଯାଇଥିଲା ।

ତେବେକେ ନମିତା ଚାଲି ଆସିଥିଲା । କିଏ ଜାଣିଛି ଜୀବନର କେଉଁ ଅର୍ଥ ଖୋଜି ପାଇବାକୁ !

ଅଥଚ କେତେ ନିଶ୍ଚିନ୍ତରେ ରହି ପାରିଥାନ୍ତା ନମିତା, ଯଦି ସେ ଜୀବନର ଅର୍ଥ ଖୋଜିବାକୁ ବାହାରି ନ ଥାନ୍ତା !

ଜଳପାଇଗୁଡ଼ି ସହରରେ ଅନିଳବାବୁଙ୍କର ଯଥେଷ୍ଟ ମାନ-ସମ୍ମାନ ଅଛି । ସେ ଘରର ଜଣେ ହୋଇ ନମିତା ତ ରହିଥିଲା ! କେଉଁଠି କାହା ଘରେ ନିମନ୍ତ୍ରଣ

ଥିଲେ, ଅନିଳବାବୁଙ୍କ ସ୍ତ୍ରୀ-କନ୍ୟା ସହିତ ଏକାଠି ଯାଉଥିଲା, ଦୃଷ୍ଟିକଟୁ ହେବା ଭୟରେ ନିଜର ବା ଝିଅର ଶାଢ଼ୀ-ଗହଣାରେ ନମିତାକୁ ସଜାଇଦେଇ ନେଇଯାଆନ୍ତି ତା'ର ମାଈଁଶାଶୁ ! ଆଉ ପାଞ୍ଚଜଣଙ୍କ ପାଖରେ— ଇଏ ମୋର ଗୋଟିଏ ବୋହୂ ବୋଲି ପରିଚୟ ମଧ ଦିଅନ୍ତି ।

ତା'ହେଲେ ଏଠି କ'ଣ ଅନେକ ଦାମ୍ ପାଉ ନ ଥିଲା ସେ ? ଅନେକ ମାନ ?

ତା'ଛଡ଼ା ନିଜର ପୁଅଝିଅଙ୍କ ସଙ୍ଗେ ନମିତାର ଖାଇବାପିଇବାର ପ୍ରଭେଦ ରଖି ନ ଥିଲେ ମଧ ମାଈଁଶାଶୁ । ଯଦି କିଛି ପ୍ରଭେଦ ଘଟିଥାଏ ତ ସେଇଟା ନମିତା ନିଜେ ହିଁ କରେ । ପୋଡ଼ା, କଞ୍ଚା, ଭଙ୍ଗା ସେ ନିଜ ଭାଗରେ ହିଁ ବରାବର ରଖେ । ସେ ତ ଗଲା, ଅନ୍ୟ ଆଡ଼କୁ ଚାହିଁ ନିରାଶ୍ରୟ ହୋଇଯାଇଥିବା ନମିତା କେତେବଡ଼ ନିର୍ଭରତାର ଆଶ୍ରୟଟିଏ ପାଇଥିଲା, ସବୁକାଳ ପାଇଁ ଏ ଆଶ୍ରୟ ରହିଥାନ୍ତା । ତା'ଛଡ଼ା ଏ ଘରେ କୋଉଦିନ କିଏ ତାକୁ ଦୂର୍‌ଦୂର୍ ମାର୍ ମାର୍ କରିଛି, କିଏ କହିପାରିବ ଏ କଥା ?

ସବୁଠାରୁ ବଡ଼ କଥା, କେହି କେଉଁଦିନ ନମିତାର କର୍ତ୍ତୃତ୍ୱ ଉପରେ ହସ୍ତକ୍ଷେପ କରିଛି ? ଅତିବେଶୀ ହେଲେ ଅନିଳବାବୁଙ୍କ ମା' କୋଉଦିନ କହିଛନ୍ତି— ସବୁଦିନ କ'ଣ ଭୋଜି ରନ୍ଧା ପରି ରାନ୍ଧଣା ? ପର ପଇସାରେ ହାତର ସୁଖ ମେଣ୍ଟୁଛି । ଟିକିଏ ଭାବିଚିନ୍ତି କାମ କରିବାକୁ ପଡ଼େ ଲୋ ନାତୁଣୀ ବୋହୂ !

କେଉଁଦିନ ହୁଏତ ଅନିଳବାବୁଙ୍କ ସ୍ତ୍ରୀ କହିଛନ୍ତି— ଏ ନମିତା ହିଁ ଆମର ପରକାଳକୁ ଖାଇଲା ! ୟାପରେ ଆଉ ରାନ୍ଧୁଣୀ ରାନ୍ଧିଲେ କାହା ମୁହଁକୁ ରୁଚିବ ? ଅବଶ୍ୟ ରାନ୍ଧୁଣୀକୁ ମୁଁ ହାତରେ ଟେକିକରି ଦେଲେ ସେ ରାନ୍ଧିବ । ନିଜ ହାତର ବାହାଦୁରି ଦେଖାଇବାକୁ 'ସ୍କୋପ୍' ପାଉନି ସେ ।

ନମିତା ସେ 'ସ୍କୋପ୍' ପାଏ । ଅତଏବ ନମିତା ଭଲ ରନ୍ଧା ରାନ୍ଧି ହାତର କରାମତି ଦେଖାଇପାରେ । ଅର୍ଥାତ୍ ନମିତା ରନ୍ଧାଘର ଓ ଭଣ୍ଡାରଘରର ସର୍ବମୟୀ କର୍ତ୍ତ୍ରୀ, ଯଦିଚ ନିଜର ସ୍ୱଭାବର ନମ୍ରତା ହେତୁ ଦୁଇଓଳି ରନ୍ଧା ପୂର୍ବରୁ ସେ ପଚାରୁଥିଲା— ମାଇଁ କ'ଣ ରନ୍ଧା ହେବ କହିଲେ ?

କିନ୍ତୁ ମାଈଁ ସେ ଭାର ନେଉ ନ ଥିଲେ, ଉଦାର ମହିମାରେ କହି ଦେଉଥିଲେ ଝିଅ, ତୋ'ର ଯାହା ଇଚ୍ଛା କରେ କ'ଣ ରନ୍ଧା ହେବ ଭାବିବାକୁ ଗଲେ ମତେ ଜର ହେଇଯିବ ।

ତା'ହେଲେ ? ଏହି ଅଖଣ୍ଡ ଅଧିକାରର ମର୍ଯ୍ୟାଦାରେ ରହି ମଧ ଜୀବନର ଅର୍ଥ ଖୋଜି ପାଇଲାନି ନମିତା ?

ଆଉ ସେହି ଖୋଜି ନ ପାଇବାର କିଛି ଭାର ପୁଣି ଲଦି ଦେଇଗଲା ଅନାମିକାଙ୍କ ମୁଣ୍ଡରେ ?

ଅନାମିକା ହେଲେ କ'ଣ ପାଉଛନ୍ତି ସେ ଅର୍ଥ ?

ଅର୍ଥାତ୍– ତାଙ୍କ ନିଜ ଜୀବନର ଅର୍ଥ ?

ଅତୀତର ସ୍ମୃତିକୁ ଅଣ୍ଡାଳିଲେ ତ ଜୀବନ ଗୋଟାଏ ଭଙ୍ଗାରୁଜା ଅସମାନ, ରଙ୍ଗର ବର୍ଣ୍ଣ ବିଭାବ ନ ଥିବା ବସ୍ତୁ ରୂପେ ଦିଶେ । ସେଥିପାଇଁ ବର୍ତ୍ତମାନର ରୀତି ଅନୁସାରେ ଯେତେବେଳେ ସାକ୍ଷାତକାରୀମାନେ ତାଙ୍କ ପାଖକୁ ଆସି 'ସାକ୍ଷାତକାର'ଟାକୁ ଲିପିବଦ୍ଧ କରିବାକୁ ଚାହାନ୍ତି ସେତେବେଳେ ଅତୀତର ସ୍ମୃତି କଥା କହିବାକୁ ଯାଇ କେଉଁଠି କିଛି ସମ୍ବଳ ଖୋଜି ପାଆନ୍ତି ନାହିଁ ଅନାମିକା ।

ଅଥଚ ଅନ୍ୟ ସମସ୍ତଙ୍କର କିଛି ନା କିଛି ଅଛି । ମାନେ କବି-ସାହିତ୍ୟିକମାନଙ୍କର । ଲେଖକ-ଲେଖିକାମାନଙ୍କର । ସେମାନେ ତାଙ୍କର ପ୍ରଶ୍ନରେ ସେଥିପାଇଁ 'ସ୍ମୃତିଚାରଣ' ଭିତରେ ନିମଗ୍ନ ହୋଇଯାଆନ୍ତି । ଅଥବା ସ୍ମୃତି କଥାର ଖାତାର ସିଡ଼ିରେ ଓହ୍ଲାଇ ଯାଆନ୍ତି ଅନେକ ଗଭୀରକୁ । ଯେଉଁଠାରେ ହାତ ବୁଡ଼ାଇଲାକ୍ଷଣି ମୁଠାରେ ଭର୍ତ୍ତି ହୋଇ ବାହାରିଆସେ ମୁଠା ମୁଠା ମଣିମୁକ୍ତା ।

ସେଇ ଝକମକ୍ କରୁଥିବା ମୁକ୍ତାଗୁଡ଼ିକରେ ଗୁନ୍ଥାଯାଏ ସ୍ମୃତି କଥାର ମାନ ।

ଅନାମିକାଙ୍କର ଗୋପନ ଭଣ୍ଡାରରେ ମଣିମୁକ୍ତାର ଜଞ୍ଜାଳ ନାହିଁ ।

ସେଥିପାଇଁ ଗୋଟାଏ ପତ୍ରିକାର ବିଶେଷ ଫିଚର୍‌ର ତାଲିକାରେ ଯେତେବେଳେ ଅନାମିକା ଦେବୀଙ୍କ ପାଲା ଆସେ, ସେତେବେଳେ ପ୍ରଶ୍ନ ଉତ୍ତର ଦେବାକୁ ଏକାବେଳେ ବିପଦରେ ପଡ଼ିଯାଆନ୍ତି ଅନାମିକା ।

ହସିଦେଇ କହନ୍ତି, ମୋ' ଭଳିଆ ଜୀବନ ତ ଆମ ଦେଶର ହଜାର ହଜାର ସ୍ତ୍ରୀଲୋକଙ୍କର । ତାଙ୍କ ଭିତରୁ କିଏ ଘରସଂସାର କରନ୍ତି, କିଏ ଚାକିରି କରନ୍ତି, କିଏ ଗୀତ ଗାଆନ୍ତି, ମୁଁ ଲେଖେ ଏତିକି, ଯା ଛଡ଼ା ତ ବେଶୀ ଫରକ କିଛି ମୁଁ ଦେଖୁନି ।

ସେମାନେ କହନ୍ତି– ଆପଣ ବହୁତ ବେଶୀ ବିନୟୀ । ଲେଖିବା ଅର୍ଥ ହିଁ ତ ତା'ର ଅନ୍ତରାଳରେ ଅନେକକିଛି ରହିଛି । କେଉଁଠାରୁ ପ୍ରେରଣା ପାଇଲେ ? କେଉଁ ଯନ୍ତ୍ରଣାରେ ଉଦ୍‌ବୁଦ୍ଧ ହେଲେ ? କେବେ କାହାର ପ୍ରଭାବ ପଡ଼ିଛି ଆପଣଙ୍କ ଉପରେ ? ଇତ୍ୟାଦି ଇତ୍ୟାଦି ।

ଉତ୍ତର ଦେବାକୁ ଭାରି ହଇରାଣରେ ପଡ଼ନ୍ତି ?

ଏସବୁ କ'ଣ କହିବା କଥା ?

ନା କହିବା ଭଳି କଥା ?

ତେବେକେ ବକ୍‌ବକ୍ କରି ମାରନ୍ତି ସେମାନେ ।

ହେଇଟି ସେଦିନ ଜଣେ ପତଳା ନିରୀହ ଚେହେରାର ଟୋକା କୌଣସି ଗୋଟାଏ ପତ୍ରିକା ତରଫରୁ ଆସି ନୟାନ୍ତ କରିପକାଇଥିଲା ଅନାମିକାଙ୍କୁ ।

କଥା ଅବଶ୍ୟ ସେହି ଏକାପ୍ରକାରର, ଭାଷା ମଧ୍ୟ ଏକା— ଆମ କାଗଜରେ ଅନେକ ସାହିତ୍ୟିକଙ୍କର ସ୍ମୃତି କଥା ଛପା ହୋଇଗଲାଣି, ଅଥଚ ଆପଣଙ୍କର ଆମେ ପାଇଲୁନି ଏପର୍ଯ୍ୟନ୍ତ—

ଏଇଟା ଯେ ମନଗଢ଼ା କଥା ସେଇଟା ବୁଝିବାକୁ କାହାରି ବିଳମ୍ବ ହୁଏନି ।

ଅନାମିକାଙ୍କ ମୁହଁକୁ ଆସୁଥିଲା— ପାଇନ ନା ନେଇନ ? କିନ୍ତୁ ମୁହଁକୁ ଆସିବା କଥାକୁ ମୁହଁ ଭିତରେ ଅଟକାଇ ରଖି ନ ପାରିଲେ ଆଉ ସଭ୍ୟତା କେଉଁଥିପାଇଁ ରହିଛି ? ସେଥିପାଇଁ ଖାଲି କହିଲେ, 'ଓ !'

ଉଚ୍ଛ୍ୱସିତ କଣ୍ଠରେ ପିଲାଟି କହିଲା— ଠିକଣାଟା ତ ଜଣା ନ ଥିଲା ! ଓଃ ! ଆପଣଙ୍କ ଠିକଣାଟା ପାଇବାକୁ କ'ଣ କମ୍ ହଇରାଣ ହୋଇଛି ? ବହୁତ କଷ୍ଟରେ—

ଏଥରକ ମଧ୍ୟ ଅନାମିକା କହିପାରିଥାନ୍ତେ, ଆଶ୍ଚର୍ଯ୍ୟ ତ ! ଅଥଚ ବଜାରରେ ଅତି କମ୍‌ରେ ମୋର ଶହେଟି ବହି ବିକ୍ରି ହେଉଛି, ଅତଏବ ସେଗୁଡ଼ିକର ପ୍ରକାଶକ ଅଛନ୍ତି ଏବଂ ପ୍ରକାଶକଙ୍କ ଘରେ ନିଶ୍ଚେ ମୋର ଠିକଣା ଅଛି । ତା'ଛଡ଼ା ବଜାରରେ ବିକ୍ରି ହେଉଥିବା ପତ୍ର ପତ୍ରିକାରେ ତ ମୋର କଲମର ଯା ଆସ ରହିଛି । ସେଠି ମଧ୍ୟ ଟିକିଏ ଖବର ନେଇଥିଲେ ଠିକଣାଟା ମିଳି ଯାଇଥାନ୍ତା ! ବେଶୀ ଖଟିବାକୁ ମଧ୍ୟ ପଡ଼ି ନ ଥାନ୍ତା, ଯେହେତୁ ଟେଲିଫୋନ୍ ନାମକ ଗୋଟିଏ ଯନ୍ତ୍ର ମଣିଷର ଖଟଣିକୁ କମାଇବା ପାଇଁ ସଦା ପ୍ରସ୍ତୁତ ରହିଛି ।

କିନ୍ତୁ କହି ଲାଭ କ'ଣ ହେବ ? ବିଚରା ସଜେଇ ଏକାଠି କରି ଗୋଟିଏ ଉପଯୁକ୍ତ କୈଫିୟତ୍ ଦେଖାଇ ଆମ ସଙ୍ଗେ କଥା କହିବାକୁ ଆସିଛି, ସେହି ଆବେଗ ଉପରେ ବରଫ ପାଣି ପକାଇଦେଇ କ'ଣ ହେବ !

ତା'ଠାରୁ ବରଂ ଭାରି କ୍ଷୁବ୍ଧ କଣ୍ଠରେ କହିବା ଭଲ— ଆରେ ! ସେଇୟା ନା କ'ଣ ! ତା'ହେଲେ ତ ଭାରି କଷ୍ଟ ହୋଇଥିବ ତମକୁ ?

ଏଥର ସେପକ୍ଷର ଭଦ୍ରତା ଦେଖାଇବାର ପାଳା— ନା, ନା, କଷ୍ଟ ଆଉ କ'ଣ ? ଶେଷକୁ ଯେତେବେଳେ ଦେଖା ହୋଇଗଲା, ସେତେବେଳେ ଆଉ

କଷ୍ଟର କଥା ଉଠୁନି । ଏଇଲେ କହନ୍ତୁ କେଉଁ ସଂଖ୍ୟାରୁ ଆରମ୍ଭ କରିବେ ? ଆଗାମୀ ସଂଖ୍ୟାଠାରୁ ? ବିଜ୍ଞାପନ ଦେଇ ଦେଉଛି—

—ଆରେ ଆରେ, କି ହଇରାଣ ! କଥାଟା ଆଗ ଭଲକରି ଶୁଣେ—

—ଆଃ କହିଲି ପରା ଆମର 'ଜ୍ୟୋତିର୍ମୟ ସ୍ୱଦେଶ'ର ସ୍ମୃତିଚାରଣ ସିରିଜ୍‌ରେ ।

—ସେଇଟା କ'ଣ ଗୋଟାଏ ସିରିଜ୍ ?

—ହଁ, ସେଇୟା ତ ! ଦେଖି ନାହାନ୍ତି ? ସେଇଟା ତ ପ୍ରାୟ ଦୁଇ କି ଅଢ଼େଇବର୍ଷ ହେଲା ଚାଲିଲାଣି । ଆମର ଯେତେକ "ଶ୍ରେଷ୍ଠ ସାହିତ୍ୟିକମାନଙ୍କଠାରୁ ଆରମ୍ଭ କରି...... ମାନେ ଜଣକ ପରେ ଜଣକୁ ଧରି ଧରି—"

ଠିକ୍‌ଭାବରେ କଥାଟାକୁ ସାରି ନ ପାରି ବୋଧହୁଏ ପିଲାଟି ହଠାତ୍ ତୁନି ହୋଇଗଲା ।

ଅନାମିକାଙ୍କର ମନେହେଲା ସେ ବୋଧହୁଏ କହିବାକୁ ଯାଉଥିଲା— ଗୋଟାଏ ପଟୁ ସାଫ୍ କରିଛି, ଅଥବା ଜଣକ ପରେ ଜଣକୁ ଧରି ହରିକାଠରେ ପକାଇଛି ଆଉ କୋପ ବସାଇଛି । ଖାଲି ସେଇ ଭଦ୍ରତାର ଦାୟରେ ପଡ଼ି କହିପାରିଲା ନାହିଁ । ଯେଉଁ ଦାୟରେ କି ଜିଭ ଅଗକୁ ଆସିଯାଇଥିବା କଥାକୁ ପୁଣି ଫେରାଇ ନେଇ ଅଟକାଇ ରଖିବାକୁ ପଡ଼େ ।

ତେବେକେ ଅସମାପ୍ତ କଥାରହିଁ ଉତ୍ତର ଦିଅନ୍ତି ଅନାମିକା— ଯେତେସେବୁ ଶ୍ରେଷ୍ଠମାନଙ୍କର ? ହେଲେ ତା' ଭିତରେ ମତେ କାହିଁକି ?

—ଏ କ'ଣ କହୁଛନ୍ତି ! ଆପଣଙ୍କର ନ ହେଲେ ସିରିଜ୍ ସମ୍ପୂର୍ଣ୍ଣ ହେବନି ! ନବୀନ ପ୍ରବୀଣଙ୍କୁ ମିଶାଇ ପ୍ରାୟ ଅଶୀ ଜଣଙ୍କର ସ୍ମୃତିଚାରଣ ହୋଇଗଲାଣି—

ହଠାତ୍ ତା'ର ସ୍ମୃତିଚାରଣ ଶବ୍ଦଟା ଗୋଚାରଣ ପରି ଲାଗିଲା ଅନାମିକାଙ୍କୁ । ହୁଏତ ସେହି 'ଅଶୀ' ଶବ୍ଦଟାର ପ୍ରତିକ୍ରିୟା ହେତୁ ।

ଅନାମିକା ପୁଲକିତ ହେବା କଥା ।

ବଙ୍ଗଳା ଦେଶରେ ଯେ ଏତେଜଣ 'ଶ୍ରେଷ୍ଠ' ସାହିତ୍ୟିକ ଅଛନ୍ତି ଏ ଖବରଟି ପୁଲକର ନିଶ୍ଚୟ । ତେବେ ସେ ପୁଲକିତ ହେଲେ କି ନାହିଁ ଜଣାଗଲା ନାହିଁ । ବରଂ ଯେମିତି ବିପନ୍ନଭାବରେ ହିଁ କହିଲେ— ତା'ହେଲେ ଆଉ କ'ଣ, ଅନେକଜଣ ତ ହୋଇଗଲେଣି—

—ସେକଥା କହିଲେ ତ ଚଳିବନି, ଆପଣଙ୍କରଟା ଦରକାର ।

—କିନ୍ତୁ ମୁଁ ତ ନିଜକୁ ଜମା ଆପଣମାନଙ୍କର ସେହି ଶ୍ରେଷ୍ଠ-ଟେଷ୍ଠ ବୋଲି ଭାବୁନି—

—"ଆପଣ ନ ଭାବନ୍ତୁ, ଲୋକେ ଭାବୁଛନ୍ତି ।" ପିଲାଟିର କଣ୍ଠ ଉଦ୍ଦୀପ୍ତ ଆଉ ଲୋକେ ଜାଣିବାକୁ ଚାହୁଁଛନ୍ତି କିଭଳି ବିକଶିତ ହେଲା ଆପଣଙ୍କର ଏ ପ୍ରତିଭା । ଶୈଶବ, ବାଲ୍ୟ, ଯୌବନ ସବୁ କିଛି ଭିତର ଦେଇ କିପରି—

—"କିନ୍ତୁ ମୁଁ ତ କିଛିହେଲେ ଦେଖିପାରୁନି—" ଅନାମିକାଙ୍କ ଗଳାରେ ହତାଶା—ରେଳଗାଡ଼ିରେ ଚଢ଼ି ଝରକା ବାଟେ ମୁହଁ ବଢ଼ାଇ ଛାଡ଼ି ଆସିଥିବା ରାସ୍ତାଟାକୁ ଦେଖିଲେ ଯେମିତି ହଳେ ରେଳଲାଇନ୍ ଛଡ଼ା । ଆଉ ବିଶେଷ କିଛି ଆଖିରେ ପଡ଼େ ନାହିଁ, ମୋର ମଧ୍ୟ ପ୍ରାୟ ସେଇୟା । ଠିକ୍ ଗୋଟାଏ ପଡ଼ିଥିବା ଲାଇନ୍ ଉପରେ ଚାଲି ଆସିବାଭଳି ଏକଦା ଜନ୍ମ ହୋଇଛି, ଦିନେ ନା ଦିନେ ମରିବାଟା ନିଶ୍ଚିତ, ଏ ଦୁଇଟି ଜଙ୍କସନ୍ ଷ୍ଟେସନ୍‌ର ମଝିରେ ଥିବା ସେ ରାସ୍ତାଟି । ମଝି ମଝିରେ କେତୋଟି ଷ୍ଟେସନ୍‌ରେ କେଉଁଠି ଅଟକିଛି, ବିଶ୍ରାମ ନେଇଛି, କେତେବେଳେ ଧାଇଁଛି ।

ଆପଣମାନଙ୍କ ସଙ୍ଗେ କଥାରେ କିଏ ପାରିବ ? କଥାରେ ହିଁ ତ ହରାଇ ଦେଉଛନ୍ତି । କିନ୍ତୁ ମୁଁ ସେସବୁ କଥାରେ ଭୁଲିବିନି । ମୁଁ ଏଡିଟରଙ୍କୁ କଥା ଦେଇଆସିଛି ଆପଣ ବିଜ୍ଞାପନ ଦିଅନ୍ତୁ, ମୁଁ ତାଙ୍କ ସଙ୍ଗେ ସବୁ ବ୍ୟବସ୍ଥା ଠିକ୍ କରି ଦେଇଛି ।

—ତମେ ତ ମୋର ଠିକଣାଟା ହିଁ ଜାଣି ନ ଥିଲ, ପ୍ରତ୍ୟକ୍ଷରେ କେବେ ଦେଖି ନାହଁ, ଏଭଳି କଥା ଦେଲ ଯେ ?

ଏକ ଅଲୌକିକ ହସ ହସିଲା ପିଲାଟା । ତା'ପରେ କହିଲା, ନିଜ ଉପରେ ଆସ୍ଥା ରହିଥିବା ଦରକାର । ଯାଉ, କେବେ ଦେବେ କହିଲେ ?

—କେବେ କ'ଣ ? ଆଦୌ ଦେବିନି ।

—ତା' କହିଲେ କିଏ ଛାଡୁଛି ? ମୂଳରେ ସେମିତି ସବୁ ଇଏ— ମାନେ ସମସ୍ତେ ଏ କଥା ହିଁ କହନ୍ତି— ମୋର ସ୍ମୃତି ଭିତରେ ଆଉ ଲେଖିବା ପରି କ'ଣ ଅଛି ? ତା'ପରେ ? ଦେଖୁଛନ୍ତି ତ ଗୋଟିଏ ଗୋଟିଏ ଲେଖାକୁ ? ସମସ୍ତଙ୍କ ଭିତରେ ଦିନେ ନା ଦିନେ "ନିର୍ଝରର ସ୍ୱପ୍ନଭଙ୍ଗ" ଘଟିଛି, ତା'ରି ଇତିହାସ—

—ହେଲେ ବାପା ମୋର ସେମିତି କିଛି ଘଟିନି ।

—ତା'କ'ଣ ସମ୍ଭବ ? ସେଇଟା ଯେ ହେବାକୁ ହିଁ ପଡ଼ିବ । ଆପଣଙ୍କର ବିନୟ ବହୁତ ବେଶୀ ସେଇଥିପାଇଁ ଲୁଚାଉଛନ୍ତି । କିନ୍ତୁ ଆମମାନଙ୍କୁ ପାରିବେନି ଆପଣମାନେ । ଲେଖା ଆରମ୍ଭ କରିଦିଅନ୍ତୁ ।

— କି ହଇରାଣ ! ସତରେ କହୁଛି ଲେଖିବା ପରି କିଛି ନାହିଁ । ମଧ୍ୟବିତ୍ତ ବଙ୍ଗାଳୀ ଘରର ଝିଅ, ସାତ-ଆଠଜଣ ଭାଇଭଉଣୀଙ୍କ ଭିତରୁ ଜଣେ, ଖାଇବାକୁ-ପିନ୍ଧିବାକୁ ପାଇଛି, ଯେଉଁଠି ଜନ୍ମ ହୋଇଥିଲି ସେଇଠି ଅଛି, ଆଶା କରୁଛି ସେହିଠାରେ ହିଁ ମରିବି, ବାସ୍ ଏଇତକ ତ; ୟା'ଭିତରେ ଲେଖିବାର କ'ଣ ଅଛି ?

— ବାଃ, ସବୁ ହୋଇଗଲା ? ମଝିର ଏ ବିପୁଳ ସାହିତ୍ୟ-କୃତି ?

— ଦେଖ, ସେଇଟା ମଧ୍ୟ କ'ଣ କହିବି ଗୋଟାଏ ଘଟଣାଚକ୍ର ମାତ୍ର । ଥରେ ସଉକ ହେଲା ଲେଖିବି ! ଲେଖିଲି, ଛପା ହେଲା । ଆଉ ସେତେବେଳେ ଦିନକାଳ ଭଲଥିଲା ସ୍ତ୍ରୀଲୋକମାନଙ୍କର ଲେଖାକୁ ସମ୍ପାଦକମାନେ ଭଲ ନ ଲାଗିଲେ ମଧ୍ୟ ଛପାଉଥିଲେ, ପୁଣି ଅନୁରୋଧ କରୁଥିଲେ । ସେହି ଅନୁରୋଧର ପତ୍ରରେ ପୁଣି ନବୀନ ଉତ୍ସାହରେ ଲେଖା ହୁଏ, ପୁଣି ଛପା ହୁଏ, ପୁଣି— ମାନେ ଆଉ କ'ଣ ଯାହା କହିଲି 'ଘଟଣାଚକ୍ରର ପୁନରାବୃତ୍ତିରୁ ହିଁ ତମମାନଙ୍କର ଏହି 'ବିପୁଳ-କୃତି' ନା କ'ଣ କହିଲ— ସେଇଟା ଘଟିଯାଇଛି ।

— ତା' ଅର୍ଥ ଆପଣ କହିବାକୁ ଚାହୁଁଛନ୍ତି ଯେ କୌଣସି ପ୍ରେରଣା ନ ପାଇ ଆପଣ—

— କହିବାକୁ ଚାହୁଁଛି କ'ଣ, କହୁଛି ତ ! ପାଠକ-ପାଠିକା ଏବଂ ସମ୍ପାଦକ ଆଉ ପ୍ରକାଶକ, ଏମାନେ ହିଁ ମିଳିମିଶି ମତେ ଲେଖିକା କରି ଦେଇଛନ୍ତି । ତା' ଛଡ଼ା ତ କାହିଁ—

— ଠିକ୍ ଅଛି, ସେଇଟାକୁ ଯଦି ଆପଣ ଆଡ଼େଇ ଦେବାକୁ ଚାହୁଁଛନ୍ତି, ସେତେବେଳେ ଆପଣଙ୍କ ଜୀବନର ବିଶେଷ ବିଶେଷ କିଛି ସ୍ମୃତିର କଥା ହିଁ ଲେଖନ୍ତୁ । ଜୀବନ-ସଂଗ୍ରାମର କଠିନ ଅଭିଜ୍ଞତା, ଅଥବା—'

— କିନ୍ତୁ ଆରମ୍ଭରେ କହିଲି ପରା 'ବିଶେଷ' ବୋଲି କିଛି ନାହିଁ । ଜୀବନ-ସଂଗ୍ରାମ ମଧ୍ୟ କାହିଁ ? ଜୀବନରେ କେବେହେଲେ ପାଇସ୍-ହୋଟେଲ୍‌ରେ ଖାଇନି, କେବେ ଗାମୁଛା ଧରି ବିକ୍ରୀ କରିବାକୁ ବୁଲିନି, କେବେ ଘରବାଲାର ତାଡ଼ନାରେ ଫୁଟ୍‌ପାଥିରେ ଆସି ଠିଆ ହୋଇନି, ରାଜନୀତି କରିନି, ଜେଲ୍‌କୁ ଯାଇନି, ଏମିତି କି ଗ୍ରାମ୍ୟ ବଙ୍ଗଳାର ଅଫୁରନ୍ତ ପ୍ରାଣପ୍ରାଚୁର୍ଯ୍ୟ ଭିତରେ ଉଲ୍ଲାସ କରି ବୁଲିବା ସୁଯୋଗ ମଧ୍ୟ ଘଟିନି । କଲିକତା ସହରରେ ଚାରିକାନ୍ଥ ଭିତରେ ଜୀବନ କଟୁଛି, ବିଶେଷ ସ୍ମୃତି କାହିଁ ?

ଟୋକାଟା ତେବେକେ ଦବିଲା ନାହିଁ । କହିଲା— ନ ଥିଲେ ସୃଷ୍ଟି କରନ୍ତୁ । କଲମର ଯାଦୁରେ କ'ଣ ନ ହୁଏ ?

· "ବନେଇ ଚୁନେଇ ଲେଖିବି ?" ହସିଦେଲେ ଅନାମିକା ।

ପିଲାଟା ହସିଲାନି ବରଂ ମୁହଁଟାକୁ ହାଣ୍ଡି କରି କହିଲା– ବନେଇ ଚୁନେଇ କାହିଁକି, ଆପଣଙ୍କ ଅନୁଭୂତିର ରଙ୍ଗରେ ରଙ୍ଗିନ କରି ଲେଖିବେ । ତୁଚ୍ଛ ଘଟଣାକୁ ହିଁ ସେହି ରଙ୍ଗିନ୍ ଆଲୋକରେ ଆଲୋକିତ କରି– ମାନେ ସମସ୍ତେ ଯେଉଁ କର୍ମଟି କରୁଛନ୍ତି !" ପିଲାଟା ହଠାତ୍ ମୁହଁଟାକୁ ଟିକିଏ ବଙ୍କାଇଦେଲା, କହିଲା– ଢରିକୁ ସୁନା କହିଲେ ସୁନା ! ଯେ ଯାହା ଲେଖୁଛନ୍ତି, ସେଥିର କେତେ ସତ ଆଉ କେତେଭାଗ ମିଛ କଥାର ଖେଳ, ସେଇଟା ତ ଆମେ ଜାଣିବାକୁ ବାକି ନାହିଁ–

ହଠାତ୍ ଅନାମିକା ଟିକିଏ କଡ଼ା ଗଳାରେ କହିଲେ– ଯଦି ତା ନାହିଁ, ତା'ହେଲେ ଏଥିରେ ଦରକାର କ'ଣ ?

–ବାଃ ମୁଁ କ'ଣ କହୁଛି ସମସ୍ତେ ବନେଇ ଚୁନେଇ ଲେଖୁଛନ୍ତି ? କହୁଛି– ଆପଣମାନଙ୍କର କଲମ ଗୁଣରେ, ସାଧାରଣ ଘଟଣା ମଧ୍ୟ ଅସାମାନ୍ୟ ହୋଇଯାଏ । ସାଧାରଣ ଜୀବନ ମଧ୍ୟ ସାଧାରଣୋତ୍ତର ମନେହୁଏ ।

–ମୋର ଲେଖା ଭିତରେ କେମିତି ଗୁଣ ଥିବ ଏ ବିଶ୍ୱାସ ମୋର ନାହିଁ । ଅନୁଭୂତିର ରଙ୍ଗ-ଫଙ୍ଗରେ– ନାଃ ଏକଥା ମୋ ଦ୍ୱାରା ହେବନି ।

–ତା'ର ଅର୍ଥ ଲେଖା ଦେବେନି ସେଇୟା କହୁ ନାହାନ୍ତି ?

–ଦେବନି କହିନି ତ, କହିଲି ପାରିବିନି ।

–ତା ମାନେ ସେଇୟା । କିନ୍ତୁ ମତେ ଆପଣ ଫେରାଇ ପାରିବେନି । ତା'ହେଲେ ମୁଁ ମୁହଁ ଦେଖାଇ ପାରିବିନି । ଯାହାହେଉ ପଛକେ କିଛି ନ ନେଇ ଛାଡ଼ିବିନି । ଆପଣଙ୍କର ଶ୍ରେଷ୍ଠ ନାୟକ-ନାୟିକାଙ୍କ ଚରିତ୍ର କାହାକୁ ଦେଖି ଲେଖିଛନ୍ତି ସେ କଥାଟା ହିଁ ଅନ୍ତତଃ ଲେଖନ୍ତୁ । ସେଇ 'ଆତ୍ମକଥା'ର ସିରିଜରେ ଭର୍ତ୍ତି କରା ହୋଇଯିବ ।

କହିବା ଭିତରେ ବେଶ୍ ଟିକିଏ ଆତ୍ମାଭିମାନର ଭାବ ତା' ଗଳାରେ ଫୁଟିଉଠିଲା ।

ଅନାମିକା ଆଉଥରେ ହସିଦେଲେ । କହିଲେ– କିନ୍ତୁ କାହାକୁ ଦେଖି ଲେଖିଛି ଏ କଥାଟା କିଏ କହିଲା ?

ତର୍କର ସୁରରେ ପିଲାଟି କହିଲା– ନ ଦେଖିଲେ ଲେଖିହେବ ?

–କି ଆଶ୍ଚର୍ଯ୍ୟ ! ଗଳ୍ପ-ଉପନ୍ୟାସମାନେ ତ କାଳ୍ପନିକ !

–ସେଇଟା ବାଜେ କଥା । ସବୁ ଭଲ ଭଲ ଲେଖକମାନଙ୍କର ଶ୍ରେଷ୍ଠ ଚରିତ୍ରଗୁଡ଼ିକ ଲୋକଙ୍କୁ ଦେଖି ଲେଖାଯାଇଛି । ଶରତଚନ୍ଦ୍ର, ବିଭୂତିଭୂଷଣ, ତାରାଶଙ୍କର, ବନଫୁଲ ଏମାନଙ୍କୁ ଦେଖନ୍ତୁ । ଆପଣ ଯଦି କହନ୍ତି– କିଛି ନ ଦେଖି ଲେଖିଛନ୍ତି–

ତାକୁ ଦେଖି ମନେହେଲା ଯେମିତି ଅନାମିକା ତାକୁ ଠକାଇବାକୁ ଚେଷ୍ଟା କରୁଛନ୍ତି । ଅନାମିକା ହସିଲେ, କହିଲେ— କଥାଟା ଠିକ୍ ତା ନୁହେଁ । ଦେଖିବାକୁ ତ ହେବ ନିଶ୍ଚେ । ଦେଖିବା ଜଗତରୁ ହିଁ ସୃଷ୍ଟି ହୋଇଛି ଲେଖାର ଜଗତ ! ମୁଁ ଖାଲି ଏହି କଥାଟା କହୁଛି— ମୁଁ ଅନ୍ତତଃ କୌଣସି ବିଶେଷ ଜଣଙ୍କୁ ଦେଖି, ଠିକ୍ ତାଙ୍କୁ ଆଙ୍କିଦେଇ ପାରେନି । ଅଥବା ସେଇଟା ଆସେନି ମୋ ହାତରେ । ଅନେକଙ୍କୁ ଦେଖି ଦେଖି ଜଣଙ୍କୁ ଆଙ୍କେ, ଅନେକଙ୍କ 'କଥା' ଆହରଣ କରି ଜଣକର ମୁହଁରେ କଥା ଫୁଟାଏ, ମୋର ପଦ୍ଧତି ହେଉଛି ଏଇୟା ! ସେଥିପାଇଁ ହୁଏତ ଅନେକେ ଭାବିବସନ୍ତି— ମୋର ବିଷୟରେ ଲେଖା ହୋଇଛି । ତୁମେମାନେ ମଧ୍ୟ ଖୋଜିବାକୁ ଲାଗିଯାଅ— ଦେଖିବା କାହା ନେଇ ଲେଖା ହୋଇଛି । ଅନାମିକା ଟିକିଏ ଅଟକିଲେ, ତା'ପରେ କହିଲେ— କୌଣସି ଜଣେ ମଣିଷକୁ ଠିକ୍ ରୂପେ ରଖି ଗଳ୍ପ ଲେଖାଯାଏ କି ନାହିଁ ସେ କଥା ଜାଣେନି ମୁଁ । ଶ୍ରୀକାନ୍ତ କ'ଣ ପ୍ରକୃତ ? କିନ୍ତୁ ସେ କଥା ଥାଉ, ଅନ୍ୟର କଥା ମୁଁ କହିପାରିବିନି, ନିଜର କଥା ହିଁ କହୁଛି— ମୁଁ ସମସ୍ତଙ୍କୁ ନେଇ ଲେଖେ ଅଥବା କାହାକୁ ନେଇ ଲେଖେନି !

ପିଲାଟି ଉତ୍ତେଜିତ ହୋଇଗଲା । ଟେବୁଲ୍ ଉପରେ ବିଧାଟାଏ କଷି କହିଲା, ତେବେ କ'ଣ ଆପଣ କହିବାକୁ ଚାହାନ୍ତି ଆପଣଙ୍କର କ'ଣ ଯେ ସେ ବହିଟା ହଁ , 'ଏକାକୀ' ବହିଟାର ନାୟିକା ଭିତରେ ଆପଣଙ୍କ ନିଜର ଜୀବନର ଛାପ ଆଦୌ ପଡ଼ି ନାହିଁ ?

ଅନାମିକା ଈଷତ୍ ଚମକି ପଡ଼ିଲେ, ଅବାକ୍ ଗଳାରେ ପଚାରିଲେ— ଏକାକୀ ? ସେ ବହିଟାର ନାୟିକା ତ ଜଣେ ଗାୟିକା !

— ସେଥିରେ କ'ଣ ଅଛି ? ନ ହେଲେ ଏବେ ଜଣେ ଲେଖିକା ହେଲେ ଆପଣ ।

ଚଉକିରୁ ଉଠି ଠିଆ ହୋଇପଡ଼ିଲେ ଅନାମିକା, ଅଳ୍ପ ହସି କହିଲେ, ତା'ହେଲେ ଆଉ ଚିନ୍ତା କ'ଣ ? ଆତ୍ମଜୀବନୀ ତ ଲେଖିଦେଇ ସାରିଛି । ଇଚ୍ଛାହେଲେ ସେଇଟାକୁ ତମ କାଗଜରେ ଛପାଇ ଦେଇପାରିବ ।

— ସେଇଟା ? ମାନେ ସେ ଛାପା ହୋଇଥିବା ବହିଟା ?

— ତାଛଡ଼ା ଆଉ ଉପାୟ କ'ଣ ଅଛି ? ଗୋଟିଏ ଲୋକର ତ ଗୋଟିଏ ବୋଲି ଜୀବନ । ଅତଏବ ଆତ୍ମଜୀବନୀ ଦୁଇଟା କି ଦଶଟା ହୋଇପାରିବନି ।

— "ଏ କଥାଟା ଆପଣ ରାଗିଯାଇ କହୁଛନ୍ତି ?" ଲାଗିଜୋଡ଼ ପିଲାଟି ଧୈର୍ଯ୍ୟ ସହିତ କହିଲା — ହୋଇପାରେ ଆପଣଙ୍କ ଅଜଣାରେ ହିଁ ସେହି କଥାଟା ବାହାରିଆସିଛି । ଲେଖକମାନଙ୍କର ଏମିତି ହୁଏ ।

—ଏମିତି ହୁଏ ? କହୁଛ ? ଅନାମିକା ଯେପରି କାଠଗଡ଼ାରୁ ଓହ୍ଲାଇବା ଭଙ୍ଗୀରେ ନିଃଶ୍ୱାସ ଛାଡ଼ି ବଞ୍ଚିଯିବା ଭଙ୍ଗୀରେ କହିଲେ— ତା'ହେଲେ ତ ରକ୍ଷା ପାଇଗଲି ।

ଆପଣ ଥଟ୍ଟା କରୁଛନ୍ତି ?

—"ଆରେ ଥଟ୍ଟା କାହିଁକି କରିବି ? ଶାନ୍ତି ପାଇଲି ସେଥିପାଇଁ କହୁଛି । ହେଲେ ଆଉ ତ ବସିପାରୁନି, ଟିକେ କାମ ଅଛି ।"

କିନ୍ତୁ ସେହି ଇଙ୍ଗିତ ଟିକକରେ ହିଁ କ'ଣ କାମ ହୁଏ ? ପାଗଳ !

ଶେଷକୁ ପ୍ରତିଶ୍ରୁତି ନ ନେଇ ସେଇ ସଂପାଦକ-ପ୍ରେରିତ ପିଲାଟି କ'ଣ ଛାଡ଼ିବ ?

ଶେଷକୁ ରଫା ହେଲା— 'କାହିଁକି ସ୍ମୃତିକଥା ଲେଖିଲିନି' ?

ଅନାମିକାଙ୍କୁ ଲେଖାଟା ଲେଖିବାକୁ ପଡ଼ିଥିଲା । 'ଜ୍ୟୋତିର୍ମୟ ସ୍ୱଦେଶ'ର ସେହି ସ୍ମୃତିଚାରଣ ସିରିଜରେ ସେମାନେ ଲେଖାଟାକୁ ଛପାଇ ଦେଇଥିଲେ ।

କିନ୍ତୁ ଲେଖାଟା ଲେଖିବା କ'ଣ ଭାରି ସହଜ ହୋଇଥିଲା ଅନାମିକାଙ୍କ ପକ୍ଷରେ ?

କାହିଁକି ଲେଖିଲିନି ?

ଅଶୀ ଜଣ ନବୀନ ଓ ପ୍ରବୀଣ ଲେଖକ-ଲେଖିକା ଯାହା କଲେ, ତା' ମୁଁ କାହିଁକି କଲିନି, ଏଇଟା ଲେଖିବା ଏତେ ସହଜ ନୁହେଁ । କିନ୍ତୁ ଅନାମିକା କେଉଁ ସ୍ମୃତିର ସମୁଦ୍ରରେ ବୁଡ଼ିବେ ? କେଉଁ ସ୍ମୃତିର ସୌରଭକୁ ଆଘ୍ରାଣ କରିବେ ? ଅନାମିକା କ'ଣ ତାଙ୍କର ସେହି ଘଷା ପଇସା ପରି ଶୈଶବଟାକୁ ଟୋକିଧରି କହିବେ— ଦେଖ ଦେଖ— କି ଅକିଞ୍ଚିତ୍କର ! ଏଇଥିପାଇଁ ମୁଁ ଲେଖିଲିନି !

ତା' ହୁଏ ନାହିଁ । ତେଣୁ 'କାହିଁକି ଲେଖିଲିନି' କହିବାକୁ ଯାଇ ଅନେକ କଥା ଲେଖିବାକୁ ପଡ଼େ ।

ଅଥଚ ସତରେ ଲେଖିଲେ ନାହିଁ ବା କାହିଁକି ? କ'ଣ ଲେଖାଯାଇ ପାରି ନଥାନ୍ତା ? ବକୁଳର ଜୀବନଟାକୁ ହିଁ କ'ଣ ସଜଡ଼ା ସଜଡ଼ି କରି ଲେଖାଯାଇ ପାରି ନ ଥାନ୍ତା ?

'ନିର୍ଝରର ସ୍ୱପ୍ନଭଙ୍ଗ' ପରି ସହସା ପ୍ରବଳ ଗୋଟାଏ କିଛି ଘଟି ନ ଥିଲେ ମଧ କେଉଁଠି କ'ଣ ପଥରର ଫାଟ ଦେଇ ଝରଣାର ଜଳ ଆସି ଅଜାଡ଼ି ହୋଇପଡ଼ିନି ?

ପଡ଼ିଛି ନିଶ୍ଚୟ । ତା'ର କଳଧ୍ୱନି ଶୁଭିଛି । ହୁଏତ ସେହିଥିରୁ ହିଁ ଦିବ୍ୟ ଗୋଟିଏ 'ସ୍ମୃତିଚାରଣ' ହୋଇପାରିଥାନ୍ତା ।

କିନ୍ତୁ ନିଜ ସମ୍ପର୍କରେ ଭାରି କୁଣ୍ଠା ରହିଛି ଅନାମିକାଙ୍କର । ନିଜ ସମ୍ପର୍କରେ ମୂଲ୍ୟବୋଧର ବହୁତ ଅଭାବ । ଏକବାରେ ଅନ୍ତରର ଅନ୍ତଃସ୍ଥଳରେ ସେହି 'ବକୁଳ' ନାଆଁର ତୁଚ୍ଛ ଝିଅଟା ଛଡ଼ା ଆଉ କାହାରିକି ଦେଖି ପାରୁ ନ ଥିଲେ ।

ନିନ୍ଦା-ଖ୍ୟାତି ପ୍ରଶଂସା-ଅପ୍ରଶଂସାର ମାଳାରେ ଘୋଡ଼ାଇ ହୋଇଯାଇଥିବା ଅନାମିକା ଦେବୀ ସେହି ବକୁଳଟାକୁ ଖାଲି ଆଶ୍ରୟ ଦେଇ ରଖିଛନ୍ତି । ଆବୃତ କରି ରଖିଛନ୍ତି ତା'ର ତୁଚ୍ଛତାକୁ ।

ସେଥିପାଇଁ ଅନୁରୋଧ— ଉପରୋଧର ଛାୟା ଦେଖିଲାମାତ୍ରେ ଅଟକାଇବାକୁ ଚେଷ୍ଟା କରନ୍ତି । କିନ୍ତୁ କାହିଁକି ଏ ଅନୁରୋଧ-ଉପରୋଧ ? କାହିଁକି ଏହି ଅଶୀ ଜଣ ପରେ ଆହୁରି ଅଶୀ ଜଣଙ୍କ ପାଇଁ ଧାଁ ଧପଡ଼ ଲାଗିଛି ?

କେଉଁଠି କ'ଣ ଶ୍ରଦ୍ଧା ଅଛି ? ଅଛି ଆଗ୍ରହ, ସ୍ନେହ, ସମୀହ ?

ଯଦି ଥାଏ, ତେବେ କାହିଁକି ବା ଥରକୁ ଥର ମନେହୁଏ, ସେହି ସିରିଜ୍ ଆଉ ସେ ଫିଚର, ସାକ୍ଷାତକାର ଆଉ ସମାଚାର, ସ୍ୱାକ୍ଷର ସଂଗ୍ରହ ଆଉ ଅଭିମତ— ଏ ସବୁର କି ମୂଲ୍ୟ ଅଛି ? ବ୍ୟବସାୟିକ ମୂଲ୍ୟ ଛଡ଼ା ?

ଏ ଯୁଗରେ ପ୍ରତିଭା ପ୍ରତି ସେହି ମୋହ କାହିଁ ? ଜ୍ୟେଷ୍ଠଜନଙ୍କ ପ୍ରତି ଶ୍ରଦ୍ଧା କାହିଁ ? ପଣ୍ଡିତଲୋକଙ୍କ କଥା ପ୍ରତି ଆସ୍ଥା କାହିଁ ? ଏ ଯୁଗ ଆତ୍ମପ୍ରେମୀ ।

ସେଇ ଯେଉଁ ରୋଗିଣା କଳା ପିଲାଟା, ଯେ ଲାଗିଜୋଡ଼ ପରି ଭୂମିକା ନେଇ ଏତେବେଳହେଲା ବକର ବକର କରେଇଲା, ସେ କ'ଣ ସତରେ ଏହି ସାକ୍ଷାତକାରର ମାଧ୍ୟମରେ ଅନାମିକା ଦେବୀ ନାମର ଲେଖିକାଟିକୁ ବୁଝିବାକୁ ଚେଷ୍ଟା କରିଥିଲା ? ତାଙ୍କର ବକ୍ତବ୍ୟ ଭିତରେ ଥିବା ସୁରଟିକୁ ଶୁଣିବାକୁ ଚାହିଁଥିଲା ? ଅନ୍ତତଃ କୌତୂହଳର ଦୃଷ୍ଟିରେ ଚାହିଁଥିଲା ?— ପାଗଳ ନା ଆଡ଼ପାଗଳ !

ଯାହା କରିବାକୁ ଆସିଛି ତା ନିଷ୍ଠେ କରିବି, ଏହା ଛଡ଼ା ଆଉ କୌଣସି ମନୋଭାବ ତା'ର ନ ଥିଲା । ଆଉ ସେମାନଙ୍କର ସେହି 'ଜ୍ୟୋତିର୍ମୟ ସ୍ୱଦେଶ'ର ପୃଷ୍ଠାରେ ଯେଉଁମାନଙ୍କ ନାଁ ସଜାଇ ରଖିଛନ୍ତି, ଆଉ ରଖିବାକୁ ଚାହିଁଛନ୍ତି, ସେମାନଙ୍କୁ ହିଁ ଯେ ଧନ୍ୟ କରିଛୁ, ଏଭଳି ଏକ ଆତ୍ମସନ୍ତୁଷ୍ଟଭାବ ଥିଲା ତା' ଭିତରେ । ଥିଲା, ଅଛି, ରହିଥିବ ।

ବିଶେଷତଃ ଲେଖିକାମାନଙ୍କ କଥାରେ 'ଜାତିରେ ମିଶାଉଛୁ' ଭାବଟି ବିଦ୍ୟମାନ ଅଛି ନିଶ୍ଚୟ ।

ନ ଥିବ ବା କାହିଁକି ? ଯୁଗଯୁଗାନ୍ତରର ସଙ୍କୋଚ କ'ଣ ଯିବା ଭଳି ?

ପିଲାଟା ଚାଲିଯିବା ପରେ ଅନାମିକା ଆସି ଟେବୁଲ କଡ଼ରେ ବସିଲେ । ଅନେକଦିନ ହେଲା ଗୋଟିଏ ଉପନ୍ୟାସର ପ୍ଲଟ୍ ମନ ଭିତରେ ଯାଆଆସ କରୁଥିଲା, ତା'ର ମୂଳ ବାନ୍ଧିବା ପରି ସେଦିନ ଲେଖିଥିଲେ ଦୁଇଟି ପୃଷ୍ଠା, ତାକୁ ହିଁ ଓଲଟାଇ ଦେଖିବାକୁ ଇଚ୍ଛା ହେଲା । ମନେହେଉଛି ଆଜି କେଉଁଠାକୁ ଯିବାକଥା ନାହିଁ, ଲେଖାଟାକୁ କିଛିଦୂର ଆଗେଇ ନେଇଯିବେ ।

ଖାତାଟାକୁ ଟାଣିନେଇ ଆଖି ବୁଲାଇଲେ— 'ଯେଉଁ ଜୀବନର କେଉଁଠାରେ ହେଲେ କିଛି ଆଶା ନାହିଁ, ନାହିଁ କୌଣସି ଆଲୋକ, ଆଶା, ରଙ୍ଗ, ସେ ଜୀବନଟାକୁ ମଧ୍ୟ ବଞ୍ଚାଇ ରଖିବା ପାଇଁ ଏହି ଆପ୍ରାଣ ପ୍ରୟାସ କାହିଁକି ଚାଲିଛି ? ପୃଥିବୀରେ ଆହୁରି କିଛିଦିନ ବଞ୍ଚି ରହିବା ପାଇଁ କାହିଁକି ଏତେ ଟଣାଟଣି ?...... ଡାକ୍ତର ଚାଲିଯିବା ପରେ ବିଛଣା ଧାରରେ ଥିବା ଝରକା ବାଟେ ଗଡ଼ି ଆସୁଥିବା ଦିପହରର ଆକାଶ ଆଡ଼କୁ ଚାହିଁ ପ୍ରୌଢ଼ ଶିବେଶ୍ୱର ଖାସ୍ତଗୀର ଗୋଟାଏ ଗଭୀର ନିଃଶ୍ୱାସ ପକାଇଲେ, ତା'ହେଲେ କ'ଣ ମଣିଷର ସବୁଠାରୁ ବଡ଼ ପ୍ରେମାସ୍ପଦ ହେଉଛି ଏ ପୃଥିବୀଟା ? ସମସ୍ତ ସ୍ଥାନର ସମସ୍ତ ଆଶ୍ରୟ ଭାଙ୍ଗି ଚୂର୍ଣ୍ଣ ହୋଇଗଲେ ମଧ୍ୟ, ଜୀବନର ସବୁ ଆକର୍ଷଣ ଧୂସର ହୋଇଗଲେ ମଧ୍ୟ, ଏହି ପୃଥିବୀଟା ହିଁ ତା'ର ଅନନ୍ତ ଆକର୍ଷଣର ପସରା ସଜାଇ ଦେଇ କହେ— କେହି ନ ଥାନ୍ତୁ, ମୁଁ ତ ଅଛି ! ଆଉ ତୁମେ ମଧ୍ୟ ଅଛ । ମୁଁ ଆଉ ତମେ । ଏହି ଟିକକହିଁ କ'ଣ କମ୍ ? ଏ ଟିକକ ହିଁ ତ ସବୁ ? ତମେ ଆଉ ମୁଁ ଭିତରେ ହିଁ ତ ଅଛି ସମସ୍ତ ସମ୍ପୂର୍ଣ୍ଣତା, ସବୁ କିଛି ସ୍ୱାଦ ।

ହୁଏତ ସେଇୟା ! ତା'ନହେଲେ ମୁଁ ବା କାହିଁକି ଏବେ ମଧ୍ୟ ଡାକ୍ତରଙ୍କୁ ଡାକୁଛି ? ଓଷଧ ଖାଉଛି, ସାବଧାନତା ସହ ସବୁ ବିଧି ପାଳନ କରୁଛି ? ସେ କ'ଣ ଖାଲି ମୋର ଅନେକ ପଇସା ଅଛି ବୋଲି ? ଅପରିସୀମ ଏହି ଅର୍ଥ ନ ଥିଲେ କ'ଣ ଆଉ ମୁଁ ବଞ୍ଚିବାର ଚେଷ୍ଟା—

ଆଉ ଲେଖା ହୋଇନି ।

ଟେଲିଫୋନ୍‌ଟା ଡାକିଉଠିଲା ।

ଯେମିତି ସବୁବେଳେ ଡାକେ— ଚିନ୍ତାର ଗଭୀରତାରୁ ଚୁଟି ମୁଠାକ ଧରି ଟାଣିଆଣି ଖୋଲା ଅଗଣାରେ କଚାଡ଼ି ପକାଇଦିଏ ଫୋନ୍‌ର ଶବ୍ଦ ।

ତେବେକେ ଭାରି ଶାନ୍ତ ଗଳାରେ ପଚାରିବାକୁ ପଡ଼େ— ଆପଣ କିଏ କହୁଛନ୍ତି ? ହଁ, ମୁଁ ଅନାମିକା ଦେବୀ କହୁଛି । କ'ଣ କହିଲେ ? ନାଁ ? ଝିଅର ? ଇସ୍ ! ଛି, ଛି, ଏକାବେଳେ ଭୁଲିଯାଇଛି । ନାନାପ୍ରକାର କାମରେ ଏମିତି

ହଇରାଣ ହେଉଛି— ଲାଜରେ, କୁଣ୍ଠାରେ ମରିଯାଆନ୍ତି ଯେମିତି ଅନାମିକା— ଆପଣ ଯଦି ଦୟାକରି କାଲି ସକାଳେ ଥରେ— କାଲି ନାଁଦିଆ ଉତ୍ସବ ? ଓହୋ ! ତାରିଖଟାକୁ ଡାଏରୀରେ ଲେଖି ରଖିବାକୁ କହିଥିଲେ ? ହଁ, ଏବେ ସବୁ ମନେପଡୁଛି । ମାନେ ଲେଖିରଖିଛି ମଧ୍ୟ, ଖୋଲି ଦେଖିନି ! ଆଚ୍ଛା ଆପଣ ଆଜି ସନ୍ଧ୍ୟାବେଳକୁ ଆଉ ଥରେ କଷ୍ଟ କରି ନ ହେଲେ ଆପଣଙ୍କର ଫୋନ୍ ନମ୍ବରଟା...... ଘରୁ କହୁ ନାହାନ୍ତି ? ଆଚ୍ଛା, ଆପଣ ନିଜେ ତା'ହେଲେ...... ?

ଟେଲିଫୋନ୍‌ଟାକୁ ରଖିଦେଇ ଗୋଟାଏ ହତାଶ ନିଃଶ୍ୱାସ ପକାଇଲେ ଅନାମିକା । ଯେପରି ପ୍ରତିଶ୍ରୁତି ଦେଇ ମହାଜନଙ୍କ ଋଣଶୋଧ କରି ପାରିଲେନି । ଅନ୍ତତଃ ତାଙ୍କ ସ୍ୱରରେ ଫୁଟିଉଠୁଛି ସେହି କୁଣ୍ଠା । ନ ଫୁଟାଇ ମଧ୍ୟ ଉପାୟ ନାହିଁ । ସୌଜନ୍ୟ ଉପରେ ହିଁ ତ ଜଗତ ତିଷ୍ଠି ରହିଛି !

ସତରେ ଭୁଲି ଯାଇଥିଲେ, ଏବେ ମନେପଡ଼ିଲା— ଭଦ୍ରଲୋକ ତାଙ୍କର ନବଜାତ କନ୍ୟାର ନାମକରଣ ପାଇଁ ଆବେଦନ ଜଣାଇ ଆବେଗ-ମୁଗ୍ଧ କଣ୍ଠରେ କହିଥିଲେ— ଆଉ ତା' ସହିତ ଆଶୀର୍ବାଦ କରିବେ, ଯେମିତି ଆପଣଙ୍କ ପରି ହୋଇପାରିବ ।

ଏମିତି କଥାକୁ ଭୁଲିଗଲେ ଅନାମିକା ?

ଖରାପ, ଭାରି ଖରାପ ! ଅଥଚ ସତରେ ଲେଖି ରଖିଥିଲେ । ଭାଗ୍ୟକୁ ଲେଖି ରଖିଥିଲେ ! ଖୋଲି ଦେଖିଲେ— ଆହୁରି ଅନେକ ପ୍ରତିଶ୍ରୁତି ଦିଆ ହୋଇଛି । ଖାଲି ଅଦେଖା ଭଦ୍ରଲୋକଙ୍କ ଝିଅର ନାଁ ଦେବା ହିଁ ନୁହେଁ, ତା'ଛଡ଼ା ସାହିର ସରସ୍ୱତୀ ପୂଜାର ସ୍ମାରକ ପତ୍ରିକା ପାଇଁ ଶୁଭେଚ୍ଛା, 'ସବୁଜ ସମାରୋହ' କ୍ଲବ୍‌ର ରଜତ ଜୟନ୍ତୀ ପତ୍ରିକା ପାଇଁ ଛୋଟଗଳ୍ପ, 'ଭାରତୀୟ ଚର୍ମଶିଳ୍ପ ପ୍ରତିଷ୍ଠାନ'ର କର୍ମୀବୃନ୍ଦଙ୍କ ରିକ୍ରିଏସନ୍ କ୍ଲବ୍‌ର ବାର୍ଷିକ ଉତ୍ସବର ସ୍ମାରକ ପତ୍ରିକା ପାଇଁ ଚର୍ମଶିଳ୍ପ ଉପରେ ଯାହାହେଉ କିଛି ଲେଖା ଟିକିଏ । 'ନିଭାନନୀ ବାଳିକା ବିଦ୍ୟାଳୟ'ର ଚାଳିଶି ବର୍ଷ ପୂର୍ତ୍ତି ଉପଲକ୍ଷ୍ୟରେ ସମୟୋପଯୋଗୀ ପ୍ରବନ୍ଧଟିଏ ।.... ପ୍ରଧାନ ଶିକ୍ଷୟିତ୍ରୀଙ୍କ ଚେହେରାଟି ମନେପଡ଼ିଗଲା ଅନାମିକାଙ୍କର । ଗୋଲ-ଗାଲ କଳା-କଳା ଚେହେରା, କଳାଆଖି ଦୁଇଟିର ଗଢ଼ଣ ମଧ୍ୟ ଗୋଲ, ସେଇ ଚକ୍ଷୁ ଦୁଇଟିକୁ ବିସ୍ଫାରିତ କରି ଚାପା ଗଳାରେ ଭଦ୍ରମହିଳା କହିଥିଲେ— ଆପଣ କହୁଛନ୍ତି ପୁଅଗୁଡ଼ିକୁ ନେଇ ଯେତେବେଳେ ଗଣ୍ଡଗୋଳ ହେଉଛି, ହେଲେ ଝିଅଙ୍କ ସ୍କୁଲରେ ଶାନ୍ତି ଅଛି ? ଭୁଲ୍— ଭୁଲ୍ ଅନାମିକା ଦେବୀ, ଏଇଟା ଆପଣଙ୍କର ସମ୍ପୂର୍ଣ୍ଣ ଭୁଲ୍ ଧାରଣା । ପ୍ରାଇମେରୀ ସେକ୍‌ସେନ୍ ବାଦ୍ ଦେଲେ, ସାଢ଼େ ଚାରିଶହ ଝିଅଙ୍କୁ ଧରି ଘର କରୁଛି, ଆପଣଙ୍କୁ କହିବି କ'ଣ, ଯେମିତି ସାଢ଼େ ଚାରିଶହଟି ଫଣା-ଉଠାଇଥିବା ତମ୍ପ ! ପଦେ କଥା କହିବାକୁ ଯିବ ତ ଏକାବେଳେ ଫଁ !

...... କିପରି ଯେ ନିଜର ମାନଟିକକ ବଞ୍ଚାଇ କୌଣସି ପ୍ରକାରେ ସ୍କୁଲଟାକୁ ଚଳେଇ ଦିନ କଟୁଛି ତା' ମୁଁ ନିଜେ ହିଁ ଜାଣିଛି ! ଯାଗି ଭିତରେ ଥାଇ ପୁଣି ସବୁ କରିବାକୁ ହେଉଛି । ଝିଅମାନଙ୍କର ଅନୁରୋଧ ଏ ଚାଳିଶି ପୂର୍ତ୍ତି ଉପଲକ୍ଷ୍ୟରେ କିଛି ଗୋଟାଏ ଉତ୍ସବ ହେଉ । ମାନେ ନାଚ, ଗୀତ, ଅଭିନୟ, କମିକ୍, ଅଥଚ ଆଜିକାଲି ଝିଅଙ୍କ ସ୍କୁଲରେ ଫଙ୍କସନ୍ କରିବା ଯେ କି ପ୍ରବ୍ଲେମ୍ ! ଝିଅମାନେ ସବୁକଥା ଜାଣନ୍ତି, ବୁଝି ମଧ୍ୟ ବୁଝୁ ନାହାନ୍ତି । ଗତଥରର ମାନେ ଏଇ ଗତ ପୂଜା ସମୟରେ ଝିଅମାନେ ଗୋଟାଏ 'ସୋସିଅଲ୍' କଲେ, ଜାଣିପାରି ସାହିର ପୁଅମାନେ ସେ କି ଗୋଳମାଳ ! କହିଲେ କ'ଣ ବା ଆମମାନଙ୍କୁ ଦେଖିବାକୁ ଦେବେ ।...... ବୁଝିଲେ ଅବସ୍ଥାଟା......

......ସେମାନେ ତ ଆଉ ଚଗଲା ପିଲା ହେଇକରି ନାହାନ୍ତି, ପୂରା ଗୁଣ୍ଡା ହୋଇଯାଇଛନ୍ତି, ତାଙ୍କୁ ତ ବୁଝେଇ ହେବନି । ଶେଷକୁ ସେମାନଙ୍କ ଦଳପତିକୁ ଆଡୁଆଳକୁ ଡାକି ହାତଯୋଡ଼ି କହିବାକୁ ହେଲା ଯେ, ବାପା, ତମମାନଙ୍କର କଥା ରଖିଲେ କ'ଣ ଆଉ ଝିଅମାନଙ୍କର ଅଭିଭାବକମାନେ ଆମ ସ୍କୁଲକୁ ରଖିବେ ? ହୁଏତ ଆଇନ ଅଦାଲତ କରିବେ, ହୁଏତ ଆମମାନଙ୍କର ଏତେଦିନର ସ୍କୁଲଟା ଉଠିଯିବ । ଏପଟେ ଭଲ ସ୍କୁଲ କହିବାକୁ ଗଲେ ଏହି ଗୋଟିକ ତ ସ୍କୁଲ ?

...... ତମମାନଙ୍କର ଭଉଣୀମାନେ, ଝିଆରୀ, ଭାଣିଜୀମାନେ ତ ପଢ଼ିବାକୁ ଆସନ୍ତି...... ଇତ୍ୟାଦି ଅନେକକଥା କହିବାରୁ କି ଭାଗ୍ୟ ଯେ ବୁଝିଗଲେ । କଥା ମଧ୍ୟ ଦେଲେ– ଠିକ୍ ଅଛି । କିନ୍ତୁ କହନ୍ତୁ, ଏ ରିସ୍କ୍ ନେବା କ'ଣ ଉଚିତ ହୋଇଥାନ୍ତା ? ଝିଅମାନେ ତ ଶୁଣିବେନି । ଆପଣଙ୍କୁ କ'ଣ କହିବି, ମନେହେଉଛି ବେଶୀ ଭାଗ ଝିଅ ଚାହୁଁଛନ୍ତି ଯେ, ଭଲକରି ଗୋଳମାଳଟେ ହେଉ, ହୋ ହା ହୋଇ କିଛି ଘଟଣା ଘଟିଯାଉ । ସେଇ ଗୁଣ୍ଡା ଟୋକାଗୁଡ଼ାକ ସଙ୍ଗେ ମୁହାଁମୁହିଁ ଗୋଟାଏ ବଚସା ଲାଗିଯାଉ ! ଏ କି ସତ୍ୟାନାଶିଆ ବୁଦ୍ଧି କହିଲେ ? ସେଇଥିପାଇଁ କହୁଛି, ଝିଅମାନଙ୍କର ଯେଉଁଥିରେ ଟିକିଏ ଶୁଭବୁଦ୍ଧି ଜାଗ୍ରତ ହେବ ସେହିପରି ଗୋଟିଏ ସୁନ୍ଦର ଲେଖା ହୋଇଥିବା ପ୍ରବନ୍ଧ ଆମମାନଙ୍କର ସୋଭେନିଅର୍ ପାଇଁ ଆପଣଙ୍କୁ ଦେବାକୁ ପଡ଼ିବ ।

ଅନାମିକା ଦେବୀ ବୋଧହୁଏ କହିଥିଲେ– ଆପଣମାନେ ସବୁବେଳେ ଏତେ ଚେଷ୍ଟା କରୁଛନ୍ତି, ସାମାନ୍ୟ ପ୍ରବନ୍ଧ ଦ୍ୱାରା କ'ଣ ତା'ଠାରୁ ବେଶୀ କିଛି ହୋଇପାରିବ ?

ମହିଳା, ଆବେଗ-କଂପିତ ଗଳାରେ ଖୁବ୍ ଦୃଢ଼ତା ସହିତ କହିଥିଲେ, "ହେଲେ ଆପଣଙ୍କ କଥାରେ ହିଁ ହେବ । ଆପଣଙ୍କୁ ପୁଅଝିଅମାନେ ଏତେ ସ୍ନେହ କରୁଛନ୍ତି–"

ଅନାମିକା କ'ଣ ସେତେବେଳେ ମନେ ମନେ ଟିକିଏ ହସିଥିଲେ ? ଭାବିଥିଲେ କି "ଜ୍ଞାନ-ଚୈତନ୍ୟ" ଦେବାକୁ ଚେଷ୍ଟା କରେ ନାହିଁ ବୋଲି ହୁଏତ ଟିକିଏ ଭଲପାଆନ୍ତି । ସେ ଚେଷ୍ଟା ଆରମ୍ଭ କଲେ—

କିନ୍ତୁ ସେ ହସଟା ତ ପ୍ରକାଶ୍ୟରେ କରାଯାଇ ପାରିବନି ।

ସାହିତ୍ୟିକର ଦାୟିତ୍ୱ କୁଆଡ଼େ ବହୁତ ଗଭୀର ! ସମାଜର ପଢ଼ିବା-ଉଠିବାର ଅଦୃଶ୍ୟ ସୂତ୍ରଟି କୁଆଡ଼େ ତାଙ୍କରି ହାତରେ । ତେବେ ଖାଲି ନିଭାନନୀ ବାଳିକା ବିଦ୍ୟାଳୟର ପ୍ରଧାନ-ଶିକ୍ଷିକା ନୁହନ୍ତି, ଏ ଧ୍ୱନି ତ ସବୁଠାରେ ଶୁଣାଯାଉଛି । ଅଥଚ ଏତେ କଥା ପରେ ମଧ୍ୟ ଅନାମିକା କ'ଣ କଲେ ନା ଗୁରୁଦାୟିତ୍ୱର କଣିକା ଟିକକ ପାଳନ କରିବା କଥା ଏକାବେଳେ ଭୁଲିଗଲେ ?

ଦେଖିଲେ ସେମାନଙ୍କର ଚାଳିଶି-ପୂର୍ତ୍ତିର ଉତ୍ସବ ହେବାକୁ ମାତ୍ର ଷୋହଳଦିନ ବାକି । ତେଣୁ ଆଜି ଦେଇଦେଲେ ଭଲ ହୁଅନ୍ତା । ଛାପିବାକୁ ସେମାନଙ୍କୁ ତ ପୁଣି ସମୟ ମିଳିବା ଦରକାର ।

ବାକି ସବୁଗୁଡ଼ିକ ହୁଏତ ଆଜି କିମ୍ବା କାଲି ମାଗିବେ । କେମିତି ଯେ ଭୁଲିଯାଇ ବସିଯାଇଛନ୍ତି ସେ ?

ତା'ପରେ ପୁଣି ଚାହିଁ ଦେଖିଲେ— ଟେବୁଲ୍ ଉପରେ ବେଶ୍ କେତେଗୁଡ଼ାଏ ଚିଠି ଜମିଗଲାଣି, ଉତ୍ତର ଦେବା ଉଚିତ ।

ଉପନ୍ୟାସର ପ୍ଲଟ୍‌ଟାକୁ ବାଧହୋଇ ଘୁଞ୍ଚାଇଦେଲେ ଅନାମିକା । ହୁଏତ ଆହୁରି ଅନେକ ଦିନ ପର୍ଯ୍ୟନ୍ତ ଏମିତି ରଖିବାକୁ ପଡ଼ିବ । ଏଗୁଡ଼ିକ ସରୁ ସରୁ ଆହୁରି କିଛି କିଛି ଆସି ଜମିବ ତ !

ଅଥଚ ଅହରହ ଗୋଟିଏ ଅଭିଯୋଗ ଶୁଣାଯାଉଛି— ଆଜିକାଲିର କବି-ସାହିତ୍ୟିକମାନଙ୍କର ବିରୋଧରେ କେହି ଆଉ ମନନଶୀଳ ଲେଖା ଲେଖୁନାହାନ୍ତି । ସବୁଗୁଡ଼ାକ କୁଆଡ଼େ ଟଙ୍କା ପାଇଁ କୌଣସିମତେ ସାରିଦେଲା ପରି, ଆଗକାଳର ଲେଖକମାନେ ଲେଖୁଥିଲେ ମନ ପ୍ରାଣ ଦେଇ, ସମଗ୍ର ଚେତନା ଦେଇ, ଆଉ ଏ ଯୁଗର ଲେଖକମାନେ ଲେଖନ୍ତି ଖାଲି ଆଙ୍ଗୁଠି ଅଗରେ ।...... ହଁ ଏମିତି ଧରଣର ଗୋଟାଏ କଥା ସେଦିନ କୌଣସି ଗୋଟାଏ କଲେଜର ସାହିତ୍ୟ ଆଲୋଚନା ସଭାରେ ପ୍ରଧାନ ଅତିଥି ଭାବରେ ଯୋଗ ଦେଇ ବସି ବସି ଶୁଣିବାକୁ ପଡ଼ିଥିଲା ଅନାମିକା ଦେବୀଙ୍କୁ— ଛାତ୍ରସଭାର ସଦସ୍ୟମାନଙ୍କର ଆବେଗ-ଉତ୍ତପ୍ତ ଅଭିଯୋଗ ଭାଷଣ !

ନତମସ୍ତକରେ ଦୋଷ ସ୍ୱୀକାର କରିବାକୁ ପଡ଼ିଥିଲା, ନ ହେଲେ କ'ଣ କହିଥାନ୍ତେ ଆଉ କେଉଁ ଯୁଗରେ ଏ ଯୁଗ ପରି 'ସାହିତ୍ୟ'କୁ ସମସ୍ତେ ରେଜାକରି ଖାଉଛନ୍ତି ?

ସମାଜର ଆପାଦମସ୍ତକକୁ ଚାହିଁ ଦେଖ, ଆଜି ସାହିତ୍ୟିକ ହିଁ ସମସ୍ତଙ୍କର ହତିଆର । ଆଉ ସେମାନଙ୍କ ପାଇଁ ହାତରେ କେତେରକମର ଜାଲ ବିସ୍ତାର କରି ରଖାଯାଇଛି ଟଙ୍କାର ଥୋପ, ସମ୍ମାନର ଥୋପ, ପୁରସ୍କାରର ଥୋପ, କ୍ଷମତାର ଥୋପ ବିଞ୍ଚାଯାଇଛି ସମାଜ-ସରୋବରର ପ୍ରତି ଘାଟରେ । ତା'ଛଡ଼ା ଏହି ଅନୁରୋଧର ବନ୍ୟା !

ତା'ହେଲେ କେଉଁ ନିରୋଳା ନିଶ୍ଚିନ୍ତତାରେ ବସି ରଚିତ ହେବ ମନନଶୀଳ ସାହିତ୍ୟ ? ଖାଲି ନୂଆମାନେ ହିଁ ଭରସା । ଯେଉଁମାନଙ୍କୁ ଭଙ୍ଗେଇ ଖାଇବାକୁ ଏବେ ମଧ୍ୟ ସହସ୍ରହାତ ପ୍ରସାରିତ ହୋଇ ନାହିଁ, କିନ୍ତୁ ତା' ମଧ୍ୟ ଆଉ କେତେଦିନ ପାଇଁ ? ଯେମିତି ଥରେ ସୁଯୋଗ-ସନ୍ଧାନୀମାନଙ୍କ ଆଖିରେ ପଡ଼ିଯିବ, ତାଙ୍କର କଲମ ବଳିଷ୍ଠ, ତାଙ୍କ ଭିତରେ ରହିଛି ସମ୍ଭାବନା— ତତ୍‌କ୍ଷଣାତ୍ ତ ହୋଇଯିବ ତାଙ୍କର ସମ୍ଭାବନାର ପରିସମାପ୍ତି । ତାଙ୍କର ସେହି ବଳିଷ୍ଠ କଲମକୁ କେଉଁ କେଉଁ କାର୍ଯ୍ୟରେ ଲଗାଯିବ, ସେଇଟାହିଁ ହେବ ଚିନ୍ତନୀୟ ବସ୍ତୁ ।

ଯଦି ଆଜି— କାଲି, ପଅରିଦିନ— ତା'ପରଦିନ, ତା'ପରଦିନ ଖାଲି ଏଇ ଲେଖାଟା ଲେଖି ପାରିଥାନ୍ତି ! ଜୀବନର ସବୁ ମୂଲ୍ୟ ହଜାଇଦେଇ ସୁଦ୍ଧା, ବଞ୍ଚି ରହିବାର ଚେଷ୍ଟା ଯାହାର ଅବ୍ୟାହତ, ସେହି ବ୍ୟାଧିଗ୍ରସ୍ତ ପ୍ରୌଢ଼ ଶିବେଶ୍ୱର ଖାସ୍ତଗୀରର କାହାଣୀଟା !

ଗୋଟାଏ ନିଃଶ୍ୱାସ ପକାଇ ''ନିଭାନନୀ ବାଳିକା ବିଦ୍ୟାଳୟ''ର ବାଳିକାମାନଙ୍କ ଜ୍ଞାନଦାନର ପରିକଳ୍ପନାଟା ତିଆରି କରୁ କରୁ, କେତେଟା ନାଁ ଲେଖି ରଖିଲେ ଖଣ୍ଡେ ଛୋଟ କାଗଜରେ । ଶୁଣିବାକୁ ମଧୁର ଅଥଚ ଅସାଧାରଣ, କେହି କେବେ ଝିଅର ସେମିତି ନାଁ ରଖିନାହାନ୍ତି, ଏଭଳି ଦୁରୂହ, ମହାଭାରତର ଅପ୍ରଚଳିତ ଅଧ୍ୟାୟରୁ, ଅଜଣା କେଉଁ ନାୟିକାର, ସେହିପରି କେତୋଟି !

ହୁଏତ କିଛିହେଲେ ରଖିବେନି, ନିଜେ ନିଜର ପସନ୍ଦରେ ରଖିବେ, ତେବେକେ ଅନାମିକାଙ୍କ କର୍ତ୍ତବ୍ୟଟା ତ ପାଳନ କରାହେଲା !

କିନ୍ତୁ କଲମକୁ ରଖିଦେଇ କାହିଁକି ଭାବିବାକୁ ବସିଲେ ଅନାମିକା ? କାହାର କଥା ? ସେ ଝିଅଟାର କଥା କି ?

ଯାହାର କଥା ଘରେ ଆଉ କେହି ଉଚ୍ଚାରଣ କରୁ ନାହାନ୍ତି । ନା, ସେଇ ଘରୁ ପଳାଇଥିବା ଝିଅଟା ନାଁ ଘରେ ଆଉ ଉଚ୍ଚାରିତ ହେଉନି । ତାକୁ ଖୋଜି ପାଇବା ପାଇଁ ଭିତରେ ଭିତରେ ଯେଉଁ ଆପ୍ରାଣ ଚେଷ୍ଟା ଚାଲିଥିଲା ତା' ମଧ୍ୟ ବନ୍ଦ ହୋଇଯାଇଛି । ଘରେ ଯେମିତି ଗୋଟାଏ କଳା ପର୍ଦ୍ଦା ପଡ଼ିଯାଇଛି ସେ

ନାଁଟା ଉପରେ । ସେ ପ୍ରାଣଚଞ୍ଚଳ ବେପରୁଆ ଦୁଃସାହସୀ ଝିଅଟାର ମୃତ୍ୟୁ ହୋଇଯାଇଛି ।

ଅଥଚ– ଅନାମିକା ଗୋଟିଏ ଗଭୀର ନିଃଶ୍ୱାସ ପକାଇଲେ, ଅଥଚ ତାକୁ ଯଦି ଅନ୍ତତଃ ତା'ର ମା' ବୁଝି ପାରିଥାନ୍ତା ! ପାରିନି । ସାନଟି ବେଳୁ ଯେ ଅଭିଭାବକମାନଙ୍କ ଇଚ୍ଛାର ଛାଞ୍ଚରେ ଢଳେଇ ନ ହୋଇ ନିଜର ଗଢ଼ଣରେ ଗଢ଼ି ଉଠିଥିଲା, ସେହି ଅପରାଧରେ ହିଁ ତିରସ୍କୃତ ହୋଇଛି ! ତା' ନିକଟରେ 'ସତ୍ୟ'ର ଯେଉଁ ମୂର୍ତ୍ତିଟିଏ ରହିଛି, ସେ ମୂର୍ତ୍ତିଟା ଆଡ଼କୁ କେହି ଚାହିଁ ଦେଖି ନାହାନ୍ତି, ସେଇଟାକୁ ଉଚ୍ଛୃଙ୍ଖଳତା ବୋଲି ଗଣ୍ୟ କରିଛନ୍ତି ।

ଅଥଚ ଅନାମିକା ?

ଘରେ ଅଛନ୍ତି ଆହୁରି କେତେ ପୁଅଝିଅ, ତେବେକେ ତାଙ୍କର ନାରୀଚିତ୍ତର ସହଜାତ ବାତ୍ସଲ୍ୟର ବ୍ୟାକୁଳତାଟିକକ ସେହି ଉଦ୍ଧତ ଅବିନୟୀ ବେପରୁଆ ଝିଅଟାକୁ ଘେରି କେବଳ ଆବର୍ତ୍ତିତ ହେଉଛି ।

## ॥ ୨୦ ॥

– ତମ ପିଉସୀଙ୍କ ମୁଣ୍ଡ ଉପରେ ବୋଝହୋଇ ଆଉ କେତେଦିନ ରହିଥିବି ?

ସତ୍ୟବାନ କହିଲା । ଟିକିଏ ବଦଳାଇ ଶମ୍ପା ଯାହାକୁ ଡାକୁଥିଲା– 'ଜାମ୍ବବାନ' ।

ଥର୍ମାମିଟରଟାକୁ ଝାଡ଼ୁ ଝାଡ଼ୁ ଅକାତର କଣ୍ଠରେ ଶମ୍ପା କହିଲା–

କ'ଣ କରିବି କହ, ହାତପାଖରେ ଯେପର୍ଯ୍ୟନ୍ତ ତମର କୋଉ ମାଉସୀ-ପିଉସୀଙ୍କ କାନ୍ଧକୁ ପାଇ ନାହିଁ, ସେତେବେଳେ ଉପାୟ କ'ଣ ଅଛି ?

ମୋର ମାଉସୀ-ପିଉସୀ ? ସେମାନେ କାନ୍ଧ ପତେଇବେ ?...... ହସିଲା ସତ୍ୟବାନ, କହିଲା– ଏ ଭଦ୍ରମହିଳାଙ୍କ ପରି ମୂର୍ଖ ବୋକା ମହିଳା ଆଉ ଦୁନିଆରେ ଅଛନ୍ତି କି ?

"ଅଛନ୍ତି । ଆଉ ଜଣେ ଅଛନ୍ତି ।" ଗମ୍ଭୀର ଭାବରେ କହିଲା ଶମ୍ପା, ଜଣେ ଜାମ୍ବବାନ୍‌ର ବୋଝକୁ କାନ୍ଧରେ ବୋହିବାକୁ ସେ ଭାରି ଆଗ୍ରହୀ ।

– ସତରେ ଶମ୍ପା......

– ଆଚ୍ଛା, ସବୁ ସୌଜନ୍ୟ ପରେ ହେବ, ଏଇଲେ ଟେମ୍ପେରେଚର୍‌ଟା ନେବି ।

– ନା ।

—ନା ? ନା ମାନେ ?

—ନା ମାନେ, ସ୍ପଷ୍ଟ ପରିଷ୍କାର ନା । ଜର ଫର ଛାଡ଼ିଗଲାଣି । ତେବେକେ ଏ କଦର୍ଯ୍ୟ ଜିନିଷଟାକୁ ଧରି ଆସି ମତେ ହଇରାଣ କରୁଛ କାହିଁକି ଶୁଣେ ?

—ଆଶ୍ଚର୍ଯ୍ୟ ! ତମ ଭଳି ଏମିତି ନିର୍ଲଜ୍ଜ ମଣିଷ ତ ଦେଖିନି । ଦୁଇ ଦୁଇଥର ପରା ଜର ଲେଉଟିଲାଣି ।

—ଦି ଧର ଲେଉଟିଲାଣି ବୋଲି କ'ଣ ସବୁଥର ଲେଉଟିବ ? ମତେ ବେଶ୍ ଭଲ ଲାଗୁଛି । କାଲି ମୁଁ ଚାଲିଯିବି ।

ଶମ୍ପା ଭାରି ଗମ୍ଭୀର ଭାବରେ କହିଲା— ବେଶ୍ ଭଲକଥା, ହେଲେ ବସାଘର ଦେଖି ଦେଇଛ ତ ?

—ବସାଘର ? ବାଃ ! କେତେବେଳେ ଦେଖିଲି ଯେ ?

—ତା'ହେଲେ କାଲି ଚାଲିଯାଉଛ—

—କି ଆଶ୍ଚର୍ଯ୍ୟ ! ମୋ ଘରଟା କ'ଣ ନାଇଁ ? ଏ ମାସର ପୂରା ଭଡ଼ାଟା ଦିଆ ହୋଇଛି ।

—ଓଃ ତା'ହେଲେ ତ ଭଲ । "ଭାରି ଆଶ୍ୱସ୍ତ ହେଲାପରି ସ୍ୱରରେ କହିଲା ଶମ୍ପା, ଲୋକମାନେ ଥିଲାବେଳେ ସ୍ତ୍ରୀଲୋକ ରହିବାକୁ ଆପତ୍ତି କରିବନି ତ ତମର ମ୍ୟାନେଜର ?

—"ସ୍ତ୍ରୀଲୋକ ?" ସତ୍ୟବାନ ଆକାଶରୁ ସତେ କି ଖସିପଡ଼ିଲା, କହିଲା— ତମେ ମଧ ଯିବନା କ'ଣ ?

ଶମ୍ପା ଯେମିତି ଆହୁରି ଉଚ୍ଚ ଆକାଶରୁ ପଡ଼ିଲା— ଏ ମା' ! ଯିବିନି ତ କୁ'ଠି ରହିବି ?

ସତ୍ୟବାନ ବିପନ୍ନ ବିବ୍ରତ ହେଲା । ସେଥିପାଇଁ ସମ୍ଭାଳିଯିବା ଭଳି ଗଳାରେ କହିଲା— ଆହା, ଏଇଲେ କେତେଟାଦିନ ଏଠି ତ ରହିପାରିବ, ତା'ପରେ—

ଜୋରଦେଇ କହିଲା ଶମ୍ପା— ଓଃ, ସେଇ ଆଶାରେ ମୁଁ ବସିଥିବି ? ତା'ହେଲେ ତ ଗଲା । ତମ ଭରସାରେ ବସିଥିଲେ ରାଧା ମଧ ନାଚିବେନି କି ସାତମହଣ ତେଲ ମଧ ପୋଡ଼ିବନି ।

—ମୋ ଉପରେ ଯଦି ତମର ଏତେ ଅବିଶ୍ୱାସ, ସେତେବେଳେ ଆଉ ମତେ ଜଳାଉଛ କାହିଁକି ? ତମେ ଚାଲିଗଲ କେଉଁଠାକୁ" । କହିଲା ସତ୍ୟବାନ ।

—ସେଇଟା ତ ନିଶ୍ଚୟ । ତା'ହେଲେ ତ ତମେ ଉଦ୍ଧାର ପାଇଯିବ । କିନ୍ତୁ ସେମିତି ଉଦ୍ଧାର ପାଇବାର ଆଶା ଛାଡ଼ । କୁମ୍ଭୀର କାମୁଡ଼ି ଧରିଲେ ବାଘ ମଧ୍ୟ ଛଡ଼େଇ ନେଇପାରିବନି, ବୁଝିଲ ?

'— ବାଃ, ନିଜ ପ୍ରତି କି ଅସୀମ ଶ୍ରଦ୍ଧା !' କହିଲା ସତ୍ୟବାନ ।

ଶମ୍ପା ଗମ୍ଭୀରଭାବରେ କହିଲା— ନିଶ୍ଚୟ ! ଶ୍ରଦ୍ଧା ଅଛି ବୋଲି ତ ସତ୍ୟଭାଷଣ କରୁଛି ! ସେ କଥା ଥାଉ— "ଏଇଲେ ଏଇଟାକୁ ଧର—" ଯନ୍ତ୍ରଟାକୁ ଶମ୍ପା ବଢ଼ାଇଦେଲା ସତ୍ୟବାନ ଆଡ଼କୁ ।

ଆଉ ପ୍ରତିବାଦ କରିବାକୁ ଭରସା ପାଇଲାନି ସତ୍ୟବାନ । ହାତ ବଢ଼ାଇ ଥର୍ମାମିଟରଟାକୁ ନେଇ ଜର ଦେଖି ଫେରସ୍ତ ଦେଲା ।

ସେଇଟାକୁ ଆଲୁଅରେ ଦେଖି, ଜ୍ୱରର ପାରାର ଅବସ୍ଥାନ ଲକ୍ଷ୍ୟ କରି ଖୁସୀ ହୋଇ ଶମ୍ପା କହିଲା— "ଯାହାହେଉ ବାବା, ଏଥରଟା ମୋର ମାନ ରଖିଲ—"

—"ମାନ ରଖିଲି !" ବୋଧହୁଏ କଥାଟାକୁ ବୁଝିବାକୁ ଡେରି ଲାଗିଲା ସତ୍ୟବାନର । ବୋଧହୁଏ ସେଇଥିପାଇଁ ଭ୍ରୂକୁଞ୍ଚିତ କରି ସତ୍ୟବାନ କହିଲା— ମାନ ରଖିଲିର ଅର୍ଥ ?

—ନା, ଏ ଲୋକଟାକୁ ଦେଖୁଛି ସାରା ଜୀବନଟା ଲାଗିଲେ ମଧ୍ୟ ପାରିବିନି । କହୁଛି କ'ଣକି ଜରରେ ସଢ଼ିଥିଲେ କ'ଣ ମୋ ମୁହଁ ରହିଥାନ୍ତା ? ସେଇ ଟିକକ ପାଇଁ ତମକୁ ଧନ୍ୟବାଦ ଜଣାଇବାକୁ ପଡୁଛି ।

—ବାଃ । ତମମାନଙ୍କର ମୁହଁରକ୍ଷା ପାଇଁ କେବଳ ମୋର ବଞ୍ଚି ରହିବାରେ ସାର୍ଥକତା ଅଛି ?

—ତା'ନୁହେଁ ତ ଆଉ କ'ଣ ? ଯାପରେ ଯେତେଥର ଇଚ୍ଛା ମର, କିଛି ଆପତ୍ତି ନାହିଁ ! ଖାଲି ଏଥରଟା ଯେ କଟାଇଦେଲ ସେତିକିରେ ମୋ ମୁଣ୍ଡଟା କିଣିନେଲ ।

—ଯାପରେ ଯେତେଥର ଇଚ୍ଛା ମରିପାରିବି ?

—ଅନାୟାସରେ ।

—ଓଃ କି ସାଂଘାତିକ ଝିଅ ! ଏବେ ଭାବୁଛି ତମ ସଙ୍ଗେ ବାନ୍ଧି ହୋଇ ଭାରି ଭୁଲ୍‌ଟାଏ କରିଛି ।

—ସେକଥା ଆଉ କହିବାକୁ ଅଛି ?...... ଭାରି ସହାନୁଭୂତିର ସ୍ୱରରେ କହିଲା ଶମ୍ପା— ଶହେଥର ଭୁଲ୍ କରିଛ । ତମ ପାଇଁ ମୋର ଦୁଃଖ ହେଉଛି ।

— ଓଃ ଏକାବେଳେ ଦୟାର ଅବତାର ! କିନ୍ତୁ ସତ କହିଦେଉଛି ଆଉ ଏମିତି ପିଉସୀଙ୍କ କାନ୍ଧରେ ବୋଝ ହୋଇ ପଡ଼ିରହିବା ସମ୍ଭବ ନୁହେଁ । ଏ କି କଥା ! ମୁଁ ଗୋଟାଏ ବୁଢ଼ା ମରଦ, ଟିକିଏ ଜ୍ୱରର ବାହାନା କରି କାମଦାମ ଛାଡ଼ି ଜଣେ ଅପରିଚିତା ମହିଳାଙ୍କ ଘରେ ବୋଝ ହୋଇ ପଡ଼ିରହିଛି । ଭାବିଲାକ୍ଷଣି ରାଗ ଆସୁଛି ।

— ରାଗ ଲାଗିବା ଭଲ । ମୋର ଆଈ କହନ୍ତି— ରାଗ ହିଁ ପୁରୁଷର ଲକ୍ଷଣ ! ଯା'ହେଉ ଜାଣିଲି ଜଣେ ପୁରୁଷ ସହିତ ବାନ୍ଧି ହୋଇଛି । ହେଲେ ବାହାଘରଟା କେବେ ହେବ ?

— ବାହାଘର !!

— ହଁ, ବାହାଘର । ଯାହାକୁ ଶୁଦ୍ଧ ଭାଷାରେ କହନ୍ତି "ବିବାହ" । ମତେ ସେଇଟା ଗୋଟାଏ ପ୍ରହସନ ବୋଲି ମନେହେଲେ ମଧ୍ୟ ସେ ପ୍ରହସନଟା ନ ହେଲେ ଶାନ୍ତି ନାହିଁ ।

ତା' ମୁହଁକୁ ଟିକିଏ ଚାହିଁରହି ସତ୍ୟବାନ କହିଲା— ଏବେ ମଧ୍ୟ ଭାବିବାର ସମୟ ଅଛି ଶମ୍ପା, ଝୁଙ୍କ ଧରି ଗୋଟାଏ କାମ କରିଦେଇ ଶେଷକୁ ପସ୍ତେଇବ ।

ସତ୍ୟବାନ ସଭ୍ୟ-ଭବ୍ୟ କଥା କହେନି, ସେ ସେହିପରି କହେ— ଛାଡ଼ିଦିଅ ବାପା, ମୁଁ ରକ୍ଷା ପାଇବି, ତମେ ମଧ୍ୟ ରକ୍ଷା ପାଇବ ।

ଶମ୍ପା ଥର୍ମାମିଟରଟାକୁ ଏପଟକୁ ସେପଟକୁ କରି କହିଲା— ତମେ ରକ୍ଷା ପାଇପାର, ହେଲେ ମୋ କଥା କହୁଛ କାହିଁକି ?

— ତମର ଦୁର୍ଗତିର କଥା ଭାବି କହୁଛି । ତମ କପାଳରେ ଯେ କ'ଣ ଅଛି ?

— ଯାହା ଅଛି, ତା' ତ ଠିକ୍ ହୋଇଯାଇଛି । ଏକାବେଳେ ଗୋଟାଏ ଜାମ୍ବବାନ୍ । ତା' ମଧ୍ୟ ମୋର ଏମିତି କପାଳ, ତାକୁ ମଧ୍ୟ କାଳେ ହଜେଇଦେବି ହଜେଇଦେବି ଭାବି ମରିବାକୁ ପଡୁଛି ।

ସତ୍ୟବାନ ଟିକିଏ କଡ଼ାଗଳାରେ କହିଲା— ସେଇ ମରିବାଟାକୁ ମନା କରାହେଉଛି ।

— ପରାମର୍ଶ ପାଇଁ ଧନ୍ୟବାଦ ।

ହତାଶ ଗଳାରେ ସତ୍ୟବାନ କହିଲା— ଯାହା କଲେ ମଧ୍ୟ ଯଦି ତମର ସୁମତିକୁ ଫେରାଇ ନ ପାରିବି ତ ଉପାୟ ନାହିଁ । ଦୁର୍ଗତି ନାଚୁଛି ତମ କପାଳରେ । ଆପାତତଃ ପ୍ରଥମରୁ କହିଦେଇଛି, ମନେ ଅଛି ?

—ଅଛି ।

—ତା'ହେଲେ ଆଉ କ'ଣ କରାଯିବ ? ଦିଅ, କୋଉଠି କ'ଣ ଜଳଖିଆ ଅଛି, ଭାରି ଭୋକ କଲାଣି ।

ସାଙ୍ଗେ ସାଙ୍ଗେ ବୁଲିପଡ଼ି ଶମ୍ପା ବାହାରିଯାଇ ସିଡ଼ିରେ ଚଢ଼ିଲା, କହୁଥିଲା— ପିଉସୀ ଜର ଛାଡ଼ିଯିବା ସାଙ୍ଗେ ସାଙ୍ଗେ କୁମ୍ଭକର୍ଣ୍ଣଟା ଖାଇବି ଖାଇବି ହେଉଛି—

ପାରୁଲ୍ ଚିଠିଟିଏ ଲେଖୁଥିଲା, ଭାଙ୍ଗିକରି ରଖିଦେଇ ଅନ୍ୟମନସ୍କ ଗଳାରେ କହିଲା— କିଏ କ'ଣ କହୁଛି...... ?

—ସେ ହତଭାଗାଟା ମ— ଆରେ କାହା ପାଖକୁ ଚିଠି ଲେଖୁଥିଲ ?

ପାରୁଲ୍ ଅନ୍ୟମନସ୍କତାର ରାଜ୍ୟରୁ ଓହ୍ଲାଇଆସି ହାଲୁକା ଗଳାରେ କହିଲା— ଯାହାକୁ ଲେଖିଲେ ବି, ତତେ କାହିଁକି କହିବାକୁ ଯିବି ?

—'ଆହା, ତମେ ତ ଆଉ ଇଏ......' ଶମ୍ପା ଟିକିଏ ରହିଯାଇ ଫଟ୍‌କିନା କହି ପକାଇଲା— ସେମିତି କାହାପାଖକୁ ଲେଖୁନ ତ ?

—ଲେଖୁନି ବୋଲି କିଏ କହିଲା ତତେ ?

—ଆହା !...... ଶମ୍ପା ହସିଦେଇ କହିଲା— ସେକଥା କହିହେବନି ବାପା, ତମେ ତ ପୁଣି କବି ମଣିଷ, ତା'ଛଡ଼ା ବୟସ ହେଲେ ମଧ୍ୟ ବୁଢ଼ୀ ହୋଇ ଯାଇ ନାହଁ—

—ତା'ହେଲେ ?...... ପାରୁଲ୍ ହସିଦେଇ କହିଲା— ତୁ କାହିଁକି ଦୁମ୍‌ଦାମ୍ କରି ପାହାଚରେ ଚଢ଼ି ଆସିଲୁ, ତା' କ'ଣ ଏ କଥାଟା କହିବା ପାଇଁ ?

ମା' ଙ୍କ ପରି ଜିଭ କାମୁଡ଼ି ଶମ୍ପା କହିଲା— ଏକାବେଳେ ଭୁଲିଯାଇଛି । ସେ କହୁଥିଲେ ଭାରି ଭୋକ କରୁଛି—

—ହେଇଟି ଦେଖିଲୁ ! ଆଉ ସେ କଥା ତୁ ଭୁଲିଯାଇ ପିଉସୀର ଚିଠିର ରହସ୍ୟ ଭେଦ କରିବାକୁ ବସିଗଲୁ ? ଚାଲେ, ଚାଲେ ।

ତରବର ହୋଇ କଲମ ରଖି ଉଠିପଡ଼ିଲା ପାରୁଲ୍ ।

ପାରୁଲ୍‌ର ଆତ୍ମମଗ୍ନ ନିସ୍ତରଙ୍ଗ ଜୀବନରେ ଏ ଝିଅଟି ଗୋଟିଏ ଉତ୍ପାତ ଭଳି, ଏ ପୁଅ-ଝିଅ ଦୁଇଟାଯାକ ଗୋଟିଏ ଭାର ଭଳି, ତେବେକେ ପାରୁଲ୍‌କୁ କାହିଁକି ବିରକ୍ତ ଲାଗୁନି ?

ପାରୁଲ୍‌ର ପିଲାମାନେ ଦେଖିଲେ କ'ଣ କହନ୍ତେ ?

—"ସେ କହୁଛନ୍ତି କାଲି ଚାଲିଯିବେ......" ପଛେ ପଛେ ଆସୁ ଆସୁ ଶର୍ମା କହିଲା— କହୁଛନ୍ତି ତମ ପିଉସୀଙ୍କ କାନ୍ଧରେ ବୋଝ ହୋଇ ଆଉ କେତେଦିନ ରହିବି ! ଆଚ୍ଛା ପିଉସୀ, ଏଇଲେ ତାଙ୍କୁ ଏକା ଛାଡ଼ିଦେଇ ହେବ ?

—ପାଗଳ !...... ପାରୁଲ୍ ଉଡ଼ାଇଦେବା ସ୍ୱରରେ କହିଲା— ମୁଣ୍ଡ ଖରାପ ହେଲାଣି !

—ତା'ହେଲେ ? ତମେ ଏତେ ବୁଦ୍ଧିମତୀ, ତମେ ମଧ୍ୟ ଯେତେବେଳେ କହୁଛ—

—ମୁଁ ଯିବାକୁ ଦେଲେ ତ ?

—ରକ୍ଷା ପାଇଲି ବାପା !...... ଶର୍ମା ପିଲାଙ୍କ ପରି ପୁଣି କହିଲା, ହେଲେ ପିଉସୀ କହିବନି, ଚିଠିଟା ତମର ଭାଇ ଫାଇ ପାଖକୁ ଲେଖୁନ ତ ?

ପାରୁଲ୍ ସହସା ଗମ୍ଭୀର ଗଳାରେ କହିଲା— ମତେ ତୁ ସେଭଳି ବିଶ୍ୱାସଘାତକ ଭାବୁଛୁ ?

ଫଟ୍‌କିନା ଲିଭିଗଲା ଶର୍ମା ! ଆସ୍ତେ କହିଲା, ନା ତା' ନୁହେଁ, ସେମାନେ ମଧ୍ୟ ତ ଭାବୁଥିବେ ନିଶ୍ଚେ, ସେ କଥା ଭାବି ତମେ ଯଦି—

—ନାଃ, ମୁଁ ସେସବୁ ଭାବିବା ଫାବିବା କଥା ଆଡ଼କୁ ଯାଏନି । ନିଜେ ଯାହା ଭାବେ, ସେଇୟା କରେ ।

—ଇସ୍ ପିଉସୀ ! ତମ ପରି ମନର ଜୋର୍ ଯଦି ମୋର ଥାଆନ୍ତା ।

ପାରୁଲ୍ ଟୋଷ୍ଟ୍ ଗରମ କରୁ କରୁ କହିଲା— ତୋ'ର ମନର ବଳ ତ ମୋ'ଠାରୁ ବେଶୀ ।

ଶର୍ମା ଟିକିଏ ତୁନିରହି ନିଷ୍ପ୍ରଭ ଗଳାରେ କହିଲା— ଆଗ ସେଇୟା ଭାବୁଥିଲି, କିନ୍ତୁ ଦେଖୁଛି—

—କ'ଣ ଦେଖୁଛୁ ?

—ଦେଖୁଛି, ମନ ଗୋଳାଇଘାଣ୍ଟି ହେବା କଥାଟାକୁ ଏକାବେଳେ ଉଡ଼ାଇ ଦେଇହେବନି, ପିଉସୀ ପାଇଁ ଥରେ ଥରେ ଏତେ ବ୍ୟସ୍ତ ଲାଗୁଛି, ସେତେବେଳେ ନିଜକୁ ଲାଗୁଛି ଭୀରୁ ସ୍ୱାର୍ଥପର ।

—ମଣିଷ ମାତ୍ରେ ସ୍ୱାର୍ଥପର ଲୋ ଶର୍ମା, କିଏ ବୁଝିସୁଝି, କିଏ କିଛି ନ ବୁଝି ସ୍ୱାର୍ଥପର ହୁଅନ୍ତି । ହେଇଟି ଲୋକେ ସ୍ୱାର୍ଥତ୍ୟାଗୀ କହିବାକୁ ସନ୍ନ୍ୟାସୀମାନଙ୍କର ଉଦାହରଣ ଦିଅନ୍ତି, ସ୍ୱାର୍ଥତ୍ୟାଗୀ ସନ୍ନ୍ୟାସୀ କ'ଣ ପ୍ରକୃତରେ ସେହିପରି ? ମୋର ତ ମନେହୁଏ ସେମାନେ ହିଁ ସବୁଠୁ ଅଧିକ ସ୍ୱାର୍ଥପର—

—ହେତ୍ !

—ହେତ୍ କ'ଣ, ସତରେ ! ଅନ୍ୟର ମୁହଁକୁ ନ ଚାହିଁ, ନିଜକୁ ଯାହା ଭଲ ଲାଗୁଛି, ସେ କଥା କରିବା ହିଁ ସ୍ୱାର୍ଥପରତା ! କୃଚ୍ଛ୍ରସାଧନରେ ତାଙ୍କର ସୁଖ ଅଛି, ତେଣୁ କୃଚ୍ଛ୍ରସାଧନ କରନ୍ତି ସେ । ସଂସାର ବନ୍ଧନରୁ ପଳାଇ ପ୍ରାଣକୁ ବଞ୍ଚାଇବାରେ ତାଙ୍କର ସୁଖ ଅଛି, ତେଣୁ ପଳାଉଛନ୍ତି । ଏଥିରେ ନିଃସ୍ୱାର୍ଥତା କେଉଁଠି ଅଛି ?

—ମରିଗଲି ! ତମେ ଯେ ମତେ ବସେଇ ରଖିଦେଲ !

—ଆଖି ଖୋଲି ଯଦି ପୃଥିବୀକୁ ଚାହିଁବୁ, ଦେଖିବୁ ପ୍ରତିମୁହୂର୍ତ୍ତରେ ବସିଯିବାକୁ ପଡ଼ିବ ।

—ସେଇୟା ତ ଦେଖୁଛି !..... ଅନ୍ୟମନସ୍କ ପରି ଶମ୍ପା କହିଲା, ଆଚ୍ଛା ପିଉସୀ, ମୁଁ ତମକୁ କ'ଣ କହିବାକୁ ଆସିଥିଲିଟି ?

ପାରୁଲ୍ ହସି ପକାଇଲା— ଯାହା କହିବାକୁ ଆସିଥିଲୁ ତା ତ ଏ ପ୍ଲେଟ୍‌ରେ ସଜା ହେଉଛି ।

—ଓହୋ ହୋ ! ଦିଅ ଦିଅ । ହାୟରେ, ଏତେବେଳକୁ ଘରଦ୍ୱାର ସବୁ ଖାଇଯିବଣି ! ଦିଅ ।

—ମୁଁ ଯାଉଛି ଚାଲେ ।

—ତମେ ? ତା'ହେଲେ ତ ତାଙ୍କୁ ଆହୁରି ବେଶୀ ଲାଜ ଲାଗିବ ।

ପାରୁଲ୍ ମୃଦୁ ହସି କହିଲା— କାହିଁକି ଲାଜ କାହିଁକି ଯେ ? ମା', ପିଉସୀମାନେ ଖାଇବାକୁ ଦିଅନ୍ତି ନାହିଁ ?

—ପିଉସୀ !...... ଶମ୍ପାର ସ୍ୱରଟା ବୁଜିହୋଇ ଆସିଲା, ସେ ଆସ୍ତେ ଆସ୍ତେ କହିଲା— ତମେ ଭଉଣୀମାନେ, ତମମାନଙ୍କର ଭାଇମାନେ ଏକାବେଳକେ ଦୁଇ ପ୍ରକାରର ।

—ସମସ୍ତେ କ'ଣ ସମାନ ହୁଅନ୍ତି ? ତୁ ତୋର ଭାଇଭଉଣୀଙ୍କ ଭଳି ହୋଇଛୁ ?

—ତା' ନୁହେଁ ସତ ! ତେବେ...... ଶମ୍ପା ଟିକିଏ ରହିଯାଇ କହିଲା, ଆଚ୍ଛା ପିଉସୀ, ଲୋକମାନଙ୍କର ଯଦି ପୁଅଝିଅ ହଜିଯାଆନ୍ତି, ସେମାନେ ତ ଫେରେ କାଗଜ ଫାଗଜରେ ବିଜ୍ଞାପନ ଦିଅନ୍ତି ?

ପାରୁଲ୍ ତା ମୁହଁ ଆଡ଼କୁ ଟିକିଏ ଚାହିଁ ତା'ପରେ ହାଲୁକା ଗଳାରେ କହିଲା— ହଁ, ଦେଖେ ତ ଦେଉଛନ୍ତି ।

ଶମ୍ପାର ଗଳାଟା ଯେମିତି ଆହୁରି ଭାରୀ ଭାରୀ ଜଣାଗଲା— ଆଉ ଯଦି ରାଗି କଳିକରି ଯଦି ଚାଲିଯାଏ, ତା'ହେଲେ ଏକଥା ମଧ୍ୟ ତ ଲେଖନ୍ତି, ଅମୁକ ତୁ କୋଉଠି ଅଛୁ ଜଣାଇବୁ, ଆମେ ଅନୁତପ୍ତ ।

ପାରୁଲ ହସି ପକାଇଲା, କହିଲା— ସେଇଟା ପୁଅକୁ କହନ୍ତି, ଝିଅକୁ ନାହିଁ ।

—ଓଃ ! କିନ୍ତୁ କାହିଁକି କହିଲ ? ମା'-ବାପାଙ୍କ ସ୍ନେହଟା ମଧ୍ୟ କ'ଣ ଦୁଇ ଜଣଙ୍କ ପାଇଁ ଦୁଇ ପ୍ରକାର ?

—ହୁଏତ ସେଇୟା...... ପାରୁଲ୍ ଆଉଥରେ ଅନ୍ୟମନସ୍କ ହେଇ କହିଲା, ହୁଏତ ତା' ନୁହେଁ । କିନ୍ତୁ ଝିଅ ହଜିଯାଇଛି ଖବରଟା ଘୋଷଣା କଲେ ଲୋକଲଜ୍ଜା ଅଛି ଯେ ! ଝିଅମାନଙ୍କର ହଜିଯିବାର ଗୋଟିଏ ଅର୍ଥ ହିଁ ଅଛି— ଥାଉ ସେସବୁ କଥା । ପିଲାଟାକୁ ଭୋକ କରୁଥିଲା—

ଜଳଖିଆ ଥାଳିଟା ଧରି ପାରୁଲ୍ ହାଲୁକା ପାଦରେ ତଳକୁ ଓହ୍ଲାଇଗଲା ।

ଶମ୍ପା ମଧ୍ୟ ଓହ୍ଲାଇଲା । ଆସ୍ତେ ଆସ୍ତେ । ଶମ୍ପାର ଏ ଭଙ୍ଗୀଟା ଏକାବେଳେକେ ଅପରିଚିତ ।

× × × × ×

ଏକାବେଳେ ଗଙ୍ଗାନଦୀର ତୀରକୁ ଲାଗି ଭଙ୍ଗା ଶିବମନ୍ଦିରଟିଏ ତା'ର ବିଦୀର୍ଣ୍ଣ ଶରୀର ଓ ଝୁଙ୍କି ପଡ଼ିଥିବା ମସ୍ତକ ଧରି କାଳର ସ୍ୱାକ୍ଷରକୁ ବହନ କରି ଠିଆ ହୋଇ ରହିଛି । କେତେକାଳ ହେଲା ରହିଛି କିଏ ଜାଣିଛି । ସ୍ଥାନୀୟ ଅତି ବୃଦ୍ଧ ବ୍ୟକ୍ତିମାନେ ମଧ୍ୟ କହନ୍ତି ପିଲାଟିଦିନରୁ ସେମାନେ ମନ୍ଦିରର ଏହି ଚେହେରା ଦେଖିଆସୁଛନ୍ତି, ଏମିତି ପରିତ୍ୟକ୍ତ ଆଉ ଅଶ୍ୱତ୍ଥ ଗଛ ଉଠିଯାଇଥିବା ଚେହେରା !

ଏପଟକୁ ସାଧାରଣତଃ କେହି ବେଶୀ ଆସନ୍ତି ନାହିଁ । କାରଣ ଏ ଧରଣର ପରିତ୍ୟକ୍ତ ମନ୍ଦିରର ଆଖପାଖରେ ସାପ ରହିବାର ପ୍ରବଳ ସମ୍ଭାବନା ରହିଛି । ଅବଶ୍ୟ ଦୁଷ୍ଟ ପିଲାମାନେ ସାପ ଭୟ କି ବାଘ ଭୟକୁ ଟିକିଏ ହେଲେ ଖାତିର୍ କରନ୍ତି ନାହିଁ, କିନ୍ତୁ ଆଖପାଖରେ ସେଭଳି ଆକର୍ଷଣୀୟ କିଛି କୋଳି ପୋଳି ଗଛ ନାହିଁ, ଯାହା ସେମାନଙ୍କୁ ଟାଣି ଆଣିପାରନ୍ତା । ଅତଏବ ସ୍ଥାନଟି ନିର୍ଜନ ।

ସେମାନେ ଖରାବେଳଠାରୁ ଟିକିଏ ନିର୍ଜନ ଜାଗା ଖୋଜି ଖୋଜି ପ୍ରାୟ ହତାଶ ହୋଇ ପଡୁଥିଲାବେଳେ ଏ ସ୍ଥାନଟି ଆବିଷ୍କାର କରି ପକାଇ ଉତ୍‌ଫୁଲ୍ଲ ହୋଇଗଲେ । କହିଲେ— ଯା'ହେଉ ମିଳିଗଲା ।

ମନ୍ଦିରର ପଛପଟର ଅଗଣାଟା ପ୍ରାୟ ଗଙ୍ଗା ଉପରେ ଝୁଲନ୍ତ ଅବସ୍ଥାରେ ବିଦ୍ୟମାନ । ସିମେଣ୍ଟ ଛାଡ଼ିଯାଇଥିବା, ଗୋଡ଼ି ବାହାରି ପଡ଼ିଥିବା ଅଗଣାର ମଝିରେ

ମଝିରେ କିଛି କିଛି ଅଂଶରେ ପୁରୁଣା ପାଲିସ୍‌ର କେତେକ ଚିହ୍ନ ଯେପରି ଯିବି ଯିବି କହି ମଧ୍ୟ ଠିଆହୋଇ ରହିଯାଇଛି । ସେମିତି ଖଣ୍ଡିଏ ଜାଗାକୁ ରୁମାଲରେ ଝାଡ଼ିଦେଇ ବସିପଡ଼ିଲେ ସେମାନେ ।

ଶମ୍ପା ଆଉ ସତ୍ୟବାନ ।

ଗତାୟମାନ ଅପରାହ୍ନରେ ଗଙ୍ଗାର ଶୋଭା ଅପୂର୍ବ, ତା'ପରେ ଏ ସ୍ଥାନଟା ତ ପ୍ରାୟ ଗଙ୍ଗା ଉପରେ ରହିଛି । ଶମ୍ପା ବିଗଳିତ କଣ୍ଠରେ କହିଲା– "ମାର୍ଭେଲସ୍ !" ତା'ପରେ ଦମ୍ ନେଇ କହିଲା– ଏତେବେଳ ହେଲା ଜାଗା ନ ପାଇ ରାଗରେ ହାଡ଼ ଜଳିଯାଉଥିଲା ସତ, ଏବେ ଦେଖୁଛି ଭଲ ହେଇଛି ।

–"ଅବଶ୍ୟ ତମ ହାଡ଼ଟା ଟିକିଏ ସହଜରେ ଜଳେ !" କହି ହସିଦେଲା ସତ୍ୟବାନ ।

ଏ କଥା ଶୁଣି ଦପ୍‌କିନା ଜଳିଉଠିଲା ଶମ୍ପା– ସହଜରେ ମାନେ ? ଚାଳିଶି ମିନିଟ୍ ହେଲା ବସିପଡ଼ିବା ପାଇଁ ଉପଯୁକ୍ତ ଜାଗା ଟିକିଏ ଖୋଜି ମରୁ ନ ଥିଲି ? ପାଉଥିଲି ? ଓଃ ପୃଥିବୀରେ ଏତେ ଲୋକ କାହିଁକି ହୋଇଛନ୍ତି କହିଲ ? ଅସହ୍ୟ !

–"ଚମତ୍କାର ପୃଥିବୀରେ ତମ ଛଡ଼ା ଆଉ ଲୋକ ରହିବେନି ?" କହିଲା ସତ୍ୟବାନ ।

ତା'ଠାରୁ ବେଶୀ ସଜଡ଼ାସଜଡ଼ି କରି ଉଚ୍ଚସ୍ତରର ଭାଷା ବ୍ୟବହାର କରି କଥା କହିବାର କ୍ଷମତା ତା'ର ନାହିଁ ବୋଲି ଏତିକି କହିଲା । ଶମ୍ପାର ବାନ୍ଧବୀମାନଙ୍କର ଭାଇମାନେ ଏତିକି ପ୍ରସଙ୍ଗ ଉପରେ ନିର୍ଭର କରି ଅନେକ କାଇଦାର ଭାଷା ଆମଦାନୀ କରି ପୂରାପୂରି ସଭାଟାକୁ ଜମେଇ ଦେଇ ପାରିଥାନ୍ତେ । ଯାହା ଦେଖି ଦେଖି ଶୁଣି ଶୁଣି ଶମ୍ପା ଏତେ ବଡ଼ଟିଏ ହୋଇଛି । କିନ୍ତୁ ଅନେକ ପ୍ରେମରେ ପଡ଼ିଲା ପରେ ଆପାତତଃ ଶମ୍ପା ଏମିତି ଏକ ପ୍ରେମ ଭିତରେ ପଡ଼ିଯାଇଛି ଯେ ପ୍ରେମର ନାୟକ ଗୋଟାଏ କାରଖାନାର କୁଲି କହିଲେ ଚଳେ । ତେଣୁ ସେ କେବଳ କଥା କହିପାରେ । କଥା ରଚନା କରିପାରେ ନାହିଁ । ସେଥିପାଇଁ ସେ ଖାଲି କହିଲା– ବାଃ ଚମତ୍କାର ! ତମ ଛଡ଼ା ଆଉ କେହି ନ ଥିବେ ପୃଥିବୀରେ !

ନିଜସ୍ୱ ଭଙ୍ଗୀରେ ଶମ୍ପା କହିଲା– ନ ଥିବେ କାହିଁକି, ସମ୍ଭବ ଅନୁସାରେ ଥିବେ । ଏଭଳି ନାରକୀୟ ରୂପରେ କାହିଁକି ରହିବେ ଏତେ ବେଶୀ ଲୋକ ? ଏତେ ଲୋକ ରହିବାଟା ଏକପ୍ରକାର ଅଶ୍ଳୀଳତା ।

— ଅଶ୍ଳୀଳତା !

— ତା'ଛଡ଼ା ଆଉ କ'ଣ ! ଦୁଇଜଣ ମଣିଷ ଦି'ଦଣ୍ଡ ପାଇଁ ଶାନ୍ତିରେ ଟିକିଏ ବସିବାକୁ ଚାହିଁଲେ ଘରର କିଳୁଣୀ ବନ୍ଦ କରିବା ଛଡ଼ା ଗତି ନାହିଁ, ଏଇଟା ଅଶ୍ଳୀଳତା ଛଡ଼ା ଆଉ କ'ଣ ? ବୀଭତ୍ସ, କୁଶ୍ରୀ, ଅଶ୍ଳୀଳ !

— ଅନ୍ୟମାନେ ମଧ୍ୟ ଆମମାନଙ୍କୁ ଦେଖି ଏହି ଏକା କଥା ଭାବୁଥିବେ !

— "ଖାଲି ଭାବନ୍ତି ନାହିଁ, କହନ୍ତି ମଧ୍ୟ—" କ୍ଷମା ବିରକ୍ତ ତିକ୍ତ ହସ ସହିତ କହିଲା— ଶୁଣିଲନି ସେତେବେଳେ ? ସେ ବୁଢ଼ୀ ଦିଇଟା କ'ଣ କହିଲେ ? ଓଃ, ନିହାତି ମୋ ମୁହଁଟାକୁ ତମେ ଚିପିଧରିଲ ବୋଲି ଉଚିତ ଜବାବ ଦେଇପାରିଲିନି । ନ ହେଲେ ଶିକ୍ଷା ଦେଇ ଦେଇଥାନ୍ତି ।

— ଆହା ! ବୁଢ଼ୀ ଦି'ଜଣ ନିଶ୍ଚେ ତମ ଜେଜେମା'ଙ୍କ ବୟସର ହୋଇଥିବେ !

— ହୋଇଥାଇ ପାରନ୍ତି । ତା'ବୋଲି ଯାହା ଇଚ୍ଛା ତା' କହିବାର କୌଣସି ଅଧିକାର ସେମାନଙ୍କର ନାହିଁ । ଆଗରୁ ଜନ୍ମ ହୋଇଛନ୍ତି ବୋଲି କ'ଣ ମୁଣ୍ଡଟାକୁ କିଣି ଦେଇଛନ୍ତି ନା କ'ଣ ? କହୁଛନ୍ତି କ'ଣ ନା, 'କି ପାପ ? କି ପାପ ! ଗଙ୍ଗାତୀରରେ ବସି ଟିକିଏ ଜପ କରିବାର ସାଧ ମଧ୍ୟ ନାହିଁ । ସବୁଠି ଟୋକାଟୋକୀଙ୍କ କୀର୍ତ୍ତନ ଚାଲିଛି ! ଏ ଦୁଇଟା ପୁଣି କୋଉ ଚୁଲୀରୁ ଆସି ଜୁଟିଗଲେ ?

— ସବୁକଥା ତମେ ଶୁଣି ପାରିଥିଲ ?

— ଶୁଣି ପାରିବିନି ଅର୍ଥ ? ଆମମାନଙ୍କୁ ନ ଶୁଭିଲା ଭଳି କ'ଣ କହିଥିଲେ ? ବରଂ କାନକୁ ଯେମିତି ଭଲକରି ଶୁଭିବ, ସେହି ଚେଷ୍ଟା ଥିଲା ସେମାନଙ୍କର ।

— ମୁଁ ଏତେ ସବୁକଥା ଶୁଣିପାରିନି ।

— ତମ କଥା ଛାଡ଼ । ମୁଣ୍ଡରେ ଦହି ବୋଲି କିଛି ରହିଥିଲେ ତ ?

— ଏଇ ଟିକକ ପାଇଁ ଦହିର କିଛି ଦରକାର ହୁଏ ନା କ'ଣ ?

— ହୁଏନି ତ ଆଉ କ'ଣ ! ଦହି କମ୍ ଥିଲେ ଶ୍ରବଣଶକ୍ତି କମ୍ ହୁଏ, ବୁଝିଲ ?

— "ବୁଝିଲି ।" ସତ୍ୟବାନ ହସିଦେଇ କହିଲା— କିନ୍ତୁ ପରେ ଆଉ ଜଣେ ବୁଢ଼ୀଙ୍କର ମନ୍ତବ୍ୟ ବୋଧହୁଏ ଶୁଣି ପାରି ନାହିଁ ! ଶୁଣିଥିଲେ ନିଶ୍ଚିତ ଭାବରେ ତା'ର ବେକ ଦଣ୍ଡାକୁ କାମୁଡ଼ି ପକାଇଥାନ୍ତା ।

— ଆରେ ! ସତେ ନା କ'ଣ ?

କ୍ଷମା ପ୍ରାୟ ଠେଙ୍ଗା ଭଳି ସିଧା ହୋଇଗଲା— କଥାଟା ଶୁଣେ ?

— ଶୁଣିଲେ ରାଗିଯିବ ।

— ରାଗିଲେ ରାଗିବି, କହିଲ, ଶୁଣିବି—

— କଥାଟା ମୋ ପକ୍ଷରେ ଭାରି ଆନନ୍ଦର ନୁହେଁ ।

ଶମ୍ପାର ପ୍ରକୃତିରେ ଧୈର୍ଯ୍ୟର ଚିହ୍ନ ନ ଥିଲା, ସେଥିପାଇଁ ଶମ୍ପା ରାଗିଗଲା— ତମ ପକ୍ଷରେ ଆହ୍ଲାଦର ନ ହେଲେ ମୋ ପକ୍ଷରେ ମଧ କିଛି ଆହ୍ଲାଦର ନୁହେଁ । ତେଣୁ ଶୁଣିବି ।

— ଶୁଣି ଲାଭ କିଛି ନାହିଁ । ସେପଟ ଘାଟର ପାହାଚ କୋଣରେ ଯେ ଜଣେ ବୁଢ଼ୀ ସିନ୍ଦୂର ଫିନ୍ଦୂର ପିନ୍ଧି ବସିଥିଲେ, ଆମେ ସେ ଜାଗାକୁ ଚାହିଁ ଦେଇ ଦେଇ ଆସିଲାକ୍ଷଣି କହିଲେ— ''ଆହା ମରିଗଲି ଲୋ ମା', ଝିଅର ପସନ୍ଦକୁ ଜୁହାର । ଗୋଟାଏ କାପ୍ରୀ ଟୋକାକୁ ଜୁଟେଇ—'' ସତ୍ୟବାନ ହସି ଦେଇ କହିଲା— ଶେଷକଥା ଆଉ ଶୁଣି ପାରିଲିନି ।

ଶମ୍ପା କଡ଼ା ଗଳାରେ କହିଲା— ସେ ବୁଢ଼ୀକୁ ପୁଣି ତମେ '' ବସିଥିଲେ କହିଥିଲେ'' କହି ମାନ୍ୟ ଦେଇ କଥା କହୁଛ ? ବୁଢ଼ୀଟା ବୋଲି କହିପାରୁନ ?

— କହି ଲାଭ କ'ଣ ? ତାଙ୍କ କାନକୁ ତ ଶୁଭିବନି ?

— ''ନ ଶୁଭୁ—'' ଶମ୍ପା ହାତ ପାଖରୁ ଗୋଟାଏ ଘାସବୁଦା ଉପୁଡାଇ ନେଇ ସେଇଟାକୁ ଟିକି ଟିକି କରୁ କରୁ କହିଲା— ବୁଢ଼ୀଗୁଡ଼ାକ ମୋର ଦି'ଆଖିର ବିଷ । ଟିକିଏ ସଭ୍ୟ ଭାବରେ କଥା କହି ଜାଣନ୍ତି ନାହିଁ । କାହିଁକି 'ଝିଅ' କହିଲେ କ'ଣ ହୁଅନ୍ତା ? ନ ହେଲେ 'ପୁଅ' କହିଲେ ? ତା' ନାଇଁ— ଟୋକାଟୋକୀ ! ଶୁଣିଲେ ମୁଣ୍ଡରେ ନିଆଁ ଲାଗିଯାଉଛି ।

ଆମେ ମଧ ସେମାନଙ୍କୁ ବୁଢ଼ୀ ବୋଲି କହିଛେ । କାହିଁକି ମହିଳା କହିଲେ କ'ଣ ହୁଅନ୍ତା ?

— ଯାଉନି...... ମହିଳା କହିବା ? ସେ ଭଳି ଅସଭ୍ୟମାନଙ୍କୁ ମୁଁ ବୁଢ଼ୀ କହିବି ।

— ସେମାନେ ମଧ ତମକୁ ଟୋକୀ କହିବେ । କହିବେ— ଟୋକୀ ଗୋଟାଏ କାପ୍ରୀ ଟୋକାକୁ ଜୁଟାଇ— ।

— ଥାଉ, ଥାଉ, ଥାଉ । ବାଦାମ ଖାଇଲ ।

ଭ୍ୟାନିଟି ବେଗ୍‌ରୁ ବାଦାମ ପୁଡ଼ିଆଟାଏ ବାହାର କରିପକାଇଲା ଶମ୍ପା । ସତ୍ୟବାନ ହାତରେ କେତେଟା ଦେଇ ନିଜେ ଗୋଟିଏ ଛଡ଼ାଉ ଛଡ଼ାଉ ବିରକ୍ତ ଗଳାରେ

କହିଲା— ଯେତେବେଳେ କିଣିଲି ହାତରେ ଧରି ହେଉ ନ ଥିଲା, ଆଉ ଜାଗା ଖୋଜୁ ଖୋଜୁ ଏକାବେଳେ ଥଣ୍ଡା ହୋଇଗଲା ।

ଅତଏବ ଜଣାପଡ଼ିଲା ଏତେବେଳ ହେଲା ମନ ପାଇଲା ଭଳି ଜାଗା ଖୋଜି ବୁଲିବାର ମତଲବଟା କ'ଣ ଥିଲା । କେବଳ ଏ ବାଦାମ ପୁଡ଼ିଆଟାର ସଦ୍‌ବ୍ୟବହାର କରିବା ! ଯଦିଚ ସତ୍ୟବାନ କହିଥିଲା— ହେଉ ! ପିଉସୀଙ୍କ ପାଖରୁ ପେଟଟାକୁ ପୂରାଇ ବାହାରିଲେ, ପୁଣି ଏଇଲେ ଚୀନାବାଦାମ କ'ଣ ?

—କ'ଣ ତା' ତମେ ବୁଝିପାରିବନି ବୁଦ୍ଧୁ ! ବାଦାମ ଛଡ଼ାଇ ଛଡ଼ାଇ ଖାଇବା ଆଉ ଚୋପା ଛଡ଼ାଇ ଛଡ଼ାଇ ଫିଙ୍ଗିବା ଭିତରେ ହିଁ ତ ସବୁ ରହିଛି । ସେଇଟା ହିଁ ପ୍ରେମର ମାଧ୍ୟମ !

—"ହେଇଥିବ !" ସତ୍ୟବାନ ହସିପକାଇ କହିଲା— ତମେ ଅନେକଥର ପ୍ରେମରେ ପଡ଼ିଛ, ତମେ ହିଁ ଭଲରୂପେ ଜାଣିଥିବ ।

—ତା' ସତ ! ତମେ ଯେ ଏକାବେଳେ 'ର' ମାଲ । ବିଚରା ।

ଆଉ କେତୋଟି ବାଦାମ ତା' ଆଡ଼କୁ ବଢ଼ାଇଦେଇ ଶମ୍ପା କହିଲା— ଆଚ୍ଛା ଏଥର ତମ କଥା କହ । ସକାଳଠୁ ତ ଶୁଣାଉଛ ଗୋଟେ କଥା ଅଛି—

—କଥାଟା ଅବଶ୍ୟ ନୂଆ କିଛି ନୁହେଁ, ଯାହା ପ୍ରଥମ ଦିନଠୁ କହୁଛି । କାଲି ମୁଁ ଚାଲିଯିବି—

ଶମ୍ପା ଗମ୍ଭୀର କଣ୍ଠରେ କହିଲା— ବେଶ୍ । ତା'ପରେ ?

—ତା'ପରେ ଆଉ କ'ଣ ? ଯେମିତି କାମଦାମ କରୁଥିଲି ।

—ଭଲ, ଭାରି ଭଲ । ତା'ହେଲେ ଏକାକୀ ଯିବା ସଙ୍କଳ୍ପ ହିଁ ସ୍ଥିର ତ ?

—ତା'ଛଡ଼ା ଯେ ଆଉ କ'ଣ ହୋଇପାରିବ ବୁଝିପାରୁନି ତ ?

—ତମେ କେବେହେଲେ କିଛି ବୁଝିପାରିବନି । ଯାହା ଜାଣୁଛି, ଚିରକାଳ ସବୁକିଛି ମତେ ବୁଝିବାକୁ ପଡ଼ିବ । ଯେମିତି ମୋ କପାଳ ଲିଖନ ! ନିଜ ହାତରେ ତ ନିଜେ ବିଷ ଖାଇ ମରିଛି ।

—"ଶମ୍ପା !" ଗଭୀର ଗଳାରେ ସତ୍ୟବାନ କହିଲା— ଏଇ କଥାଟା ଯାହା କହିଲ, ସେଇଟା ଠିକ୍ କଥା । ସବୁବେଳେ ମୁଁ ଏ କଥାଟାକୁ ହିଁ ଭାବୁଛି । କ'ଣ ଗୋଟାଏ ଝୁଙ୍କ ଧରି ମୋ ସଙ୍ଗେ ଘର କରିବା ତମ ପକ୍ଷରେ ବିଷ ଖାଇଲା ପରି !

ହାତରେ ଧରିଥିବା ବାଦାମ ଚୋପାଗୁଡ଼ାକୁ ଗଙ୍ଗାକୁ ଫୋପାଡ଼ି ଦେଇ ଗଭୀରତର ଗମ୍ଭୀର ଗଳାରେ ଶମ୍ପା କହିଲା— ଉପାୟ କ'ଣ ଅଛି ! ଅବସ୍ଥାଟା ତ ଏଭଳି । ସେ ଚୋପାଗୁଡ଼ାକୁ ଆଉ ଗୋଟାଇ ଆଣିପାରିବ ?

'ସେଇଟା ତ ତୁଳନା ମାତ୍ର ।'

'କେଉଁଟା କ'ଣ ସେ ବୋଧ ଥିଲେ ତ ?' ଯାଉ ସେ କଥା, ଯାହା କରିବାର ମୁଁ ନିଜେ କରିବି । ନିଜର ବ୍ୟବସ୍ଥା ନିଜକୁ ହିଁ କରିନେବାକୁ ପଡ଼ିବ । ବେଶ୍, ଏଇଲେ ମୁଁ ତମ ସଙ୍ଗେ ଯିବିନି, ତମେ ଯାଇ ଦେଖ ତମର ସେ ମହାମୂଲ୍ୟ ଚାକିରିଟା ଅଛି କି ନାହିଁ । ତା'ପରେ ଦେଖାଯିବ, ମୋର ବି.ଏ. ପାସ୍‌ର ଡିଗ୍ରୀଟାକୁ କୌଣସି କାର୍ଯ୍ୟରେ ଲଗା ଯାଇପାରିବ କି ନାହିଁ । କିନ୍ତୁ ସେଇଟା ପରର କଥା । ଏଇଲେ କଲିକତାକୁ ଯାଇ ଗୋଟିଏ କାମ କରିବାକୁ ପଡ଼ିବ ତମକୁ । ମୁଁ ଗୋଟିଏ ଚିଠି ଲେଖି ରଖିଥିବି, ସେଇଟାକୁ ନେଇ ପିଉସୀର ହାତରେ ଦେଇଆସିବ –

– ବାଃ ତମେ ଯେ କହିଥିଲ ତମ ଘରର ଛାଇକୁ ସୁଦ୍ଧା ଯେମିତି ମୁଁ କେବେ ନ ମାଡ଼େ ।

– ସେ ଆଦେଶ ଏବେ ମଧ୍ୟ ବଳବତ୍ତର ରହିଛି । ଘର ବାହାରେ କେଉଁଠି ଦେଖାକରି...... ମାନେ ପ୍ରାୟ ସବୁବେଳେ ତ ପିଉସୀକୁ ବାହାରକୁ ଯିବାକୁ ପଡ଼େ, ସେହିପରି କେଉଁଠି –

ସତ୍ୟବାନ ନିଜ ହାତର ଚୋପାଗୁଡ଼ିକୁ ଫୋପାଡ଼ିଦେଇ, ଫୁ କରି ଉଡ଼ାଇ ଦେଇ କହିଲା – ବାଃ ସେଇଟା କେମିତି ସମ୍ଭବ ହେବ ? ସେ ବି ମତେ କେବେ ଦେଖି ନାହାନ୍ତି, ମୁଁ ମଧ୍ୟ କେବେ ତାଙ୍କୁ ଦେଖିନି, ଚିହ୍ନିବି କେମିତି ?

– "ସେ ତମକୁ ଦେଖି ନାହାନ୍ତି କେବେ ଏ କଥାଟା ଠିକ୍ ।" ପ୍ରବଳ ଭାବରେ ମୁଣ୍ଡ ହଲାଇଲା ଶର୍ମା, କହିଲା – ତମେ ଏମିତି କିଛି ଗୋଟାଏ ଦ୍ରଷ୍ଟବ୍ୟ ବସ୍ତୁ ନୁହଁ ଯେ ଦେଶସାରା ଲୋକ ତମକୁ ଚାହିଁ ବସିଥିବେ । ହେଲେ ମୋର ପିଉସୀ । ଦିନରାତି ସବୁବେଳେ ଖବରକାଗଜରେ ତାଙ୍କର ଫଟୋ ବାହାରୁଛି । ତମେ କ'ଣ କେବେ ଦେଖି ନାହଁ ?

ଧୀରେ ଧୀରେ ଅପରାହ୍ନ ସରି ଆସୁଥିଲା, ଗଙ୍ଗାର ଆରପାରିରେ ଛାଇ ଓହ୍ଲାଇ ଆସୁଛି, ସତ୍ୟବାନ ସେହି ଆଡ଼କୁ ଚାହିଁ ଆସ୍ତେ ଆସ୍ତେ କହିଲା, ଜାଣିଛ ତ ମୁଁ ନୀରସ କୁଲିମଜୁରିଆ ଲୋକ, ସାହିତ୍ୟ-ଫାହିତ୍ୟର ଖବର କ'ଣ ଜାଣିବି ? କମ୍ ବୟସରେ ଟିକିଏ କ'ଣ ପଢ଼ିଥିଲି, ତା'ପରେ ଆଉ କ'ଣ ? ଉଚ୍ଚଶିକ୍ଷାର ଉଚ୍ଚ ଆଶାରେ ଜଳାଞ୍ଜଳି ଦେଇ ପେଟର ଧନ୍ଦାରେ ଘୂରୁଛି । ତେବେ ହଁ, ଏବେ ଆକାଶଟା ଆଡ଼କୁ ଚାହିଁ କେତେକାଳ ଆଗରୁ ପଢ଼ିଥିବା ଗୋଟିଏ ପଦ୍ୟ ମନେ ପଡୁଥିଲା "– ମେଘ ପରେ ମେଘ ଜମିଛି ରଙ୍ଗ ପରେ ରଙ୍ଗ, ମନ୍ଦିରରେ

କଂସାର ଘଣ୍ଟା ବାଜିଲା ଢଂ ଢଂ ।'' ଚାହିଁ ଦେଖ ଠିକ୍ ସେଭଳି କି ନୁହେଁ ? ଚାରିଆଡ଼େ ସବୁ ମନ୍ଦିରରେ ଆରତି ଆରମ୍ଭ ହୋଇଯାଇଛି, ଘଣ୍ଟା ଝାଞ୍ଜ ବାଜୁଛି, ଆଉ ରଙ୍ଗ ଫଙ୍ଗ ତ— ତମେ ବେଶୀ ଭଲ ବୁଝିବ ।

ଅଳ୍ପ ହସି କଥା ସାରିଲା ସତ୍ୟବାନ ।

ଶମ୍ପା ମଧ୍ୟ ତା' କଥା ଶୁଣି ଚାହିଁ ଦେଖିଲା, ତା' ମୁହଁଟା ସେହି ସରି ଆସୁଥିବା ଆଲୁଅରେ ଝକ୍ ଝକ୍ ଦେଖାଗଲା । ସେହି ଝକ୍‌ଝକ୍ ଦିଶୁଥିବା ମୁହଁଟା ସତ୍ୟବାନ ଆଡ଼କୁ ଫେରାଇ ଶମ୍ପା କହିଲା— ତମେ ମଧ୍ୟ କିଛି କମ୍ ବୁଝୁନ । ସରନ୍ତି ସମୟର ଆକାଶକୁ ଦେଖି ଯେତେବେଳେ ରବୀନ୍ଦ୍ରନାଥଙ୍କ କବିତା ତମର ମନେ ପଡ଼ିଯାଉଛି ! ଏହି ଆକାଶକୁ ପୁଣି ସେ ଏକ ସମୟରେ ଚିତା ସହିତ ମଧ୍ୟ ତୁଳନା କରିଛନ୍ତି— ସେଇ ଯେଉଁଠି ଜଳେ ସନ୍ଧ୍ୟାର କୂଳେ ଦିନର ଚିତା ! ପଢ଼ିଛ ?

—କେଜାଣି ମନେ ପଡୁନି ।

—ନ ପଡୁ, ପରେ ତମକୁ ସବୁ ପଢ଼ାଇବି ! ରବୀନ୍ଦ୍ରନାଥ ନ ପଢ଼ିଲେ— ଆଚ୍ଛା ପରକଥା ପରେ ହେବ, ଏବେ ତମେ ମୋର ଜେଜେବାପାଙ୍କର ସେ ଘରଟା ବାହାରେ କେଉଁଠି ଜେଜେଙ୍କ ଝିଅ ସଙ୍ଗେ କଥା ହେବ ! କେବେ ଚିଠିଟି ଦେଇ କହିବ— ଶମ୍ପା କହିଛି, ଆପଣ ଯେ ତା'ର ଖବର ପାଇଲେ, ଏ କଥା ଯେମିତି କାହାକୁ କହିବେ ଦେବନି !

—ଠିକ୍ ଅଛି । କିନ୍ତୁ ସେ ଯଦି ପଚାରିବେ— ତମେ କିଏ ? ସେତେବେଳେ ?

—ସେତେବେଳେ ?

ଶମ୍ପା ହସିଦେଇ କହିଲା— ସେତେବେଳେ କହିବ, ମୁଁ ଜାମ୍ବବାନ । ତା'ହେଲେ ପରିଚୟ ପାଇଯିବେ ।

—ତା'ହେଲେ ଏଇ ନାଁରେ ତମେ ମୋର ପରିଚୟ ଦେଇଛ ?

—ଆଉ କ'ଣ ? ଯାହାର ଯାହା ପରିଚୟ ! ପିଉସୀ ଅବଶ୍ୟ ଶୁଣି କହିଥିଲା— ତୋ ଭାଗ୍ୟରେ ଗୋଟାଏ ଜାମ୍ବବାନ ଛଡ଼ା ଆଉ କିଛି ଜୁଟିଲା ନାହିଁ ? ହେଲେ ମୁଁ କହିଲି 'ଜାମ୍ବବାନ'ର କାନ୍ଧଟା ଭାରି ଟାଣ, ସେଥିପାଇଁ ପର୍ବତର ଚୂଡ଼ାଟା ତା' ଉପରେ ଲଦି ଦେବାକୁ ସୁବିଧା ହେବ ମନେହେଲା ।

—ଭଲ କହିଛ । ଏଇଲେ ଦେଖିବି ତମର ଆଦେଶ ପାଳନ କରିପାରୁଛି କି ନାହିଁ ।

—ପାରିବନି ମାନେ ? ପାରିବାକୁ ହିଁ ପଡ଼ିବ ।

—ଆହା, ବୁଝୁନ, ସେମାନେ ହେଲେ ହାଇ ସର୍କଲର ମଣିଷ, ଘର ବାହାରେ ମାନେ ତମର ଇୟେ ମିଟିଂ ଫିଟିଂରେ ତ ? ସେଠାରେ ମତେ ତାଙ୍କ ପାଖ ପର୍ଯ୍ୟନ୍ତ ନେବେକି ? ହୁଏତ କହିଲେ ବାହାରୁ ତଡ଼ିଦେବେ ।

—ମରିଯାଉନି ଯାହା ! ତଡ଼ିଦେଲେ ତମେ କ'ଣ ସେମିତି ସଖେଦରେ ଫେରିଆସିବ ? ବସି ବସି କୌଶଳ କରି ଯେମିତି ହେଲେ କାର୍ଯ୍ୟ ଉଦ୍ଧାର କରିବାକୁ ହେବ, ଏଇଟା ହେଉଛି ମହାଭାରତର ଶିକ୍ଷା ।

—ଠିକ୍ ଅଛି । ଦେଖ...... ଏକାବେଳେ ଅନ୍ଧାର ହୋଇଗଲା ।

—ହୋଇଗଲେ କ'ଣ ହେଲା ?

—ଆଉ ଏଠି ବସି ରହିବା ଉଚିତ ନୁହେଁ, ସାପଫାପ ଆସିପାରନ୍ତି ।

—"ତା'ହେଲେ ଉଠ—" ଶମ୍ପା ଝଙ୍କାର ଦେଇ କହି ପକାଇଲା, ମୋ କପାଳ ଏମିତି ଯେ ଏ ଲକ୍ଷ୍ମୀଛଡ଼ା ଲୋକଟା ସାଙ୍ଗରେ ମୁଁ ପ୍ରେମରେ ପଡ଼ିଛି ! ଏମିତି ଗଙ୍ଗାତୀର, ଏଭଳି ନିର୍ଜନ ଜାଗା, ଏଭଳି ପ୍ରାକୃତିକ ସୌନ୍ଦର୍ଯ୍ୟ, ଆଉ ତମେ କ'ଣ କଲନା ସାପର ଚିନ୍ତା କରି ବସିଲ ?

—କ'ଣ କରିବି କହ ? ସେଇଟାହିଁ ଚିନ୍ତାକୁ ଆସିଗଲା ଯେ ?

—ରାବିଶ୍ ! ଯଦି ବା ବାଦାମଭଜାର ଲୋଭ ଦେଖାଇ ଭୁଲାଇ ନେଇ ଆସିଲି, ତା'ପରେ କ'ଣ ନା ବୃଥା !

ଅନ୍ଧକାର ଗଭୀର ହୋଇ ଆସୁଥିଲା, ପରସ୍ପରର ମୁହଁ ଦିଶୁ ନ ଥିଲା । ସତ୍ୟବାନର ଗଳାଟା କେବଳ ଅନ୍ଧକାର ଭିତରେ ଗାଢ଼ ହୋଇ ଶୁଭିଲା, ମୋ ସଙ୍ଗେ ଯଦି ବାହାହୁଅ ଶମ୍ପା ତମର ଗୋଟା ଭବିଷ୍ୟତ୍‌ଟା ସେଇୟା ହେବ, ବୃଥା ହେବ । ସେଇଟା ଦିବ୍ୟଚକ୍ଷୁରେ ଦେଖିପାରୁଛି । ସେଥିପାଇଁ ତମକୁ ଖାଲି ଖୋସାମତ କରିଚାଲିଛି, ତମେ ଚାଲିଯାଅ । ମୋ ପରି ହତଭାଗ୍ୟ ସଙ୍ଗେ ନିଜର ଅଦୃଷ୍ଟକୁ ବାନ୍ଧନି ।

ଉଠି ଠିଆ ହୋଇପଡ଼ି ତୀକ୍ଷ୍ଣ ଗଳାରେ ଶମ୍ପା କହିଲା, ଦେଖ ଆଉଥରଟିଏ ଯଦି ତମେ ସେ କଥା ଉଚ୍ଚାରଣ କରିଛ, ଠେଲି ଦେଇ ସେ ପାଣିରେ ପକାଇଦେବି । ରକ୍ଷା କରିବାକୁ କେହି ଆସିବେନି । ଯାହା ଶୁଣିଲାକ୍ଷଣି ମୁଣ୍ଡ ଭିତରେ ନିଆଁ ଜଳିଯାଉଛି ଖାଲି ସେହି କଥା କହୁଛ ? ପିଉସୀକୁ ଯେଉଁ ଚିଠିଟା ଦେବି, ତା'ର ଉତ୍ତର ଆସିଲା ପର୍ଯ୍ୟନ୍ତ ଅପେକ୍ଷା କରିବି, ତା'ପରେ ସିଧା ଯାଇ ପହଞ୍ଚିବି ତମର ମେସ୍‌ରେ, ୟା ହେଉଛି ମୋର ଶେଷ କଥା ! ରେଜିଷ୍ଟ୍ରୀଟା ଥରେ ହୋଇଗଲେ ରକ୍ଷା, ତା'ପରେ ଦେଖିବ ମୁଁ ତମର କି ଦୁର୍ଗତି ନ କରୁଛି !

ସତ୍ୟବାନ ହଠାତ୍ ଟିକିଏ ବୁଲି ଠିଆହୋଇ ତା' କାନ୍ଧ ଉପରେ ଗୋଟାଏ ହାତ ରଖି କହିଲା– ଜାଣିଛ ମୋର କ'ଣ ମନେହେଉଛି ? ଏତେ ସୁଖ ବୋଧହୁଏ ମୋ କପାଳରେ ସହିବନି । ମନେହେଉଛି ଏଇଟା ବୋଧହୁଏ ଶେଷ, ଆଉ ବୋଧହୁଏ କେବେ ଆମେ ଦୁଇଜଣ ଏକାଠି ବସି କଥା ହୋଇପାରିବା ନାହିଁ ।

ବେପରୁଆ ଶର୍ମାର ସାହସୀ ଛାତିଟା ମଧ୍ୟ ହଠାତ୍ ଯେମିତି ଥରିଗଲା, ତା'ର ମଧ୍ୟ ମନେହେଲା ସତରେ ବୋଧହୁଏ ସେଇୟା । କିନ୍ତୁ ମୁହଁରେ ହାରିବା ପିଲା ନୁହେଁ ସେ, କହିଲା– ହାତମୁଠା ଢିଲା କରି ଖସି ପଳାଇବାକୁ ଆଉ ଯାହା ଇଚ୍ଛା ତାହା କହନି ।

ମୋର କିଛି ଯାଏ ଆସେନି । ମୁଁ ପିଉସୀକୁ ହୁକୁମ୍ କରୁଛି– ଅବିଳମ୍ବରେ ଆମ ପାଇଁ ଗୋଟାଏ ଛୋଟ ଫ୍ଲାଟ୍ ଠିକ୍ କରି ରଖିବାକୁ, ମୋ ପାଇଁ ଗୋଟାଏ ଚାକିରି ଯୋଗାଡ଼ କରି ରଖିବାକୁ, ଆଉ ମୋର ବାହାଘରର ସାକ୍ଷୀ ହେବାକୁ । ବାସ୍ !

ସତ୍ୟବାନ ହସିଦେଇ କହିଲା– ସାକ୍ଷୀ ହେବାଟା ଏବେ ହେଲା । କିନ୍ତୁ ଘର ଫ୍ଲାଟ୍ ? ସେ ଦିଇଟା ତ ଗଛର ଫଳ ନୁହେଁ ଯେ ଛିଣ୍ଡେଇ ଆଣି ତମ ହାତକୁ ବଢ଼ାଇ ଦେବେ ?

–ଗଛର ଫଳ ନୁହେଁ ବୋଲି ତ ପିଉସୀକୁ ଭାର ଦେଉଛି । ଗଛର ଫଳ ହେଲେ ତ ଯେକୌଣସି ବନ୍ଧୁବାନ୍ଧବଙ୍କୁ କହି ପାରିଥାନ୍ତି ।

–ବେଶ୍ ବାପା ! ତମ କଥା ତମେ ବୁଝିବ ! ମତେ ଯାହା ଆଦେଶ ହୋଇଛି ମୁଁ କରିବି !

–ଠିକ୍ ଅଛି, ଆସ ମା' ଗଙ୍ଗାଙ୍କୁ ନମସ୍କାର କର ।

ହାତ ଯୋଡ଼ିଲା ଶର୍ମା । ବାଧ୍ୟ ହୋଇ ସତ୍ୟବାନ ମଧ୍ୟ ଯୋଡ଼ିଲା ହାତ ।

ତା'ପରେ ସେହି ଭଗ୍ନଦଶାଗ୍ରସ୍ତ ମନ୍ଦିର ଚତ୍ୱରରୁ ଓହ୍ଲାଇ ଆସିଲେ ଦୁଇଜଣଯାକ, କିଛି ସମୟ ପାଇଁ ଯେମିତି ଅଖଣ୍ଡ ନିସ୍ତବ୍ଧତା ଭିତରେ ହଜିଗଲେ ସେମାନେ । ଖାଲି ସେମାନଙ୍କ ପାଦର ଚାପରେ ଗୁଣ୍ଡ ହୋଇଯାଉଥିବା ଶୁଖିଲା ପତ୍ରଗୁଡ଼ିକର ମୃଦୁ ଆର୍ତ୍ତନାଦ ଶୁଣାଯାଉଥିଲା ।

ହଠାତ୍ ସତ୍ୟବାନ କହିଲା– ମୋର ଧାରଣା ନ ଥିଲା ତମେ ଏସବୁ ମାନୁଛ !

ଶର୍ମା ଯେମିତି ଚାଲିଯାଇଥିଲା ଅନ୍ୟ ଜଗତର କେଉଁଠାକୁ, ତା କଥାରେ ଚମକିପଡ଼ି କହିଲା– କ'ଣ ସବୁ ?

—ଏଇ ମା' ଗଙ୍ଗା ଫଙ୍ଗା, ନମସ୍କାର ହେଉିକା—

—"ମୋର ମଧ୍ୟ କ'ଣ ଧାରଣା ଥିଲା ନା ?" ଶର୍ମା କେମିତି ପ୍ରକାର ଗୋଟାଏ ହସ ହସି କହିଲା— ନିଜଠୁ ବଳି ଅଚିହ୍ନା କେହି ନାହାନ୍ତି ।

କିଛି ସମୟ କଟିଲା ନିସ୍ତବ୍ଧତାରେ, ଆସ୍ତେ ଆସ୍ତେ ଚାଲୁଥାନ୍ତି ସେମାନେ, ହଠାତ୍ ଶର୍ମା କହିଲା— ବାହା ହେବା ପରେ ଆଉଥରେ ଏଠାକୁ ଆସିବା ଆମେ । ଏଇ ପିଉସୀଙ୍କ ପାଖକୁ ।

କୌଣସି ଉତ୍ତର ଦେଲା ନାହିଁ ସତ୍ୟବାନ । ସତକୁସତ ବାହାଘରଟା ଯେ ହେବ ଏମିତି କଥା ନିଶ୍ଚିତ ଭାବରେ ଯେମିତି ଭାବିପାରୁନି ସେ । ଆଗକୁ ଚାହିଁଲେ କେମିତି ସବୁ ଅସ୍ପଷ୍ଟ ଦିଶୁଛି । ଏ ସୁନ୍ଦରୀ ସୁକୁମାରୀ ବିଦୁଷୀ ଆଧୁନିକା ଝିଅଟି ଯେ କି ଏବେ ତା' ପାଖରେ ପାଖରେ ଚାଲିଛି, ସତରେ କ'ଣ ସେ ସବୁବେଳେ ତା' ପାଖରେ ପାଖରେ ରହିଥିବ ? ପାଦରେ ପାଦ ମିଳାଇ ଏକାସଙ୍ଗେ ଚାଲିବ ?

ଭାବିବାକୁ ଗଲାକ୍ଷଣି ଗୋଟାଏ ଭୟାନକ ଅବିଶ୍ୱାସ୍ୟ ଅବାସ୍ତବତାର ଅନ୍ଧକାରରେ ଭାବନାଟା ଚଳେଇଯାଏ ।

କିନ୍ତୁ ଆହୁରି ଏକ ଅନ୍ଧକାର ଗହ୍ୱର ଯେ ଅପେକ୍ଷା କରୁଥିଲା ସତ୍ୟବାନ ନାମକ ପୁଅଟି ପାଇଁ, ସେ କଥା କ'ଣ ପିଲାଟା ଜାଣିଥିଲା ?

କଲିକତାକୁ ଫେରିଲା ପରେ ସେ ଦେଖିଲା— ଅନେକଦିନଠାରୁ ଯେଉଁ ନିଆଁ ଭିତରେ ଭିତରେ କୁହୁଳୁଥିଲା, ସେ ନିଆଁ ଜଳିଲାଣି । କାରଖାନାରେ ଲକ୍‌ଆଉଟ୍ ହୋଇଛି, ମାଲିକପକ୍ଷ ଅନମନୀୟ । ତେଣେ ୟୁନିୟନ୍‌ର ପଣ୍ଡାମାନେ ମଧ୍ୟ ଆହୁରି ଅଧିକ ଅନମନୀୟ, ଅତଏବ ଆକାଶ ଫଟା ଚିତ୍କାର କରି ଗଳାକୁ ଫଟାଇ ଚାଲିଛନ୍ତି କାରଖାନାକୁ ଘେରିଦେଇ ସକାଳେ, ସନ୍ଧ୍ୟାରେ, ଦି'ପହରରେ ।

ସେହି ଗୋଟିଏ ଧ୍ୱନି— ଚଳିବ ନାହିଁ, ଚଳିବ ନାହିଁ ।

ସତ୍ୟବାନ ଦେଖିଲା ତାକୁ ଦେଖି ତା'ର ସହକର୍ମୀମାନେ ମୁହଁ ମୋଡ଼ିଲେ । ଖାଲି ତା'ର ସାଙ୍ଗ କନ୍ହେଇ ପାଲ କହିଲା— ଚାନ୍ଦୁ, ଏତେଦିନହେଲା କୁ'ଠି ଛପି ଯାଇଥିଲୁ ?

ଶୁଖିଲା ଗଳାରେ ସତ୍ୟବାନ କହିଲା— ଛପିବି କାହିଁକି ? ଦେହ ଖରାପ ଥିଲା ।

—ଦେହ ଖରାପ ! ଆରେ ଲାଲାରେ ! ଚୁ ଚୁ ! ଆଉ ଆମେ ସବୁ ଏଠି ସୁଖର ସମୁଦ୍ରରେ ଭାସୁଥିଲୁ !

— ବହୁତ ଗୋଳମାଳ ଦେଖୁଛି ।

— ଆହୁରି କେତେ ଦେଖିବୁ ବାପ !

ଏମିତି କିଛି ଅଲଣା କଥା ହେଲାପରେ ଭାବିଚାଲିଲା ସତ୍ୟବାନ ଦାସ, କେମିତି ବଙ୍ଗଳା ସାହିତ୍ୟର ସେହି ବିଖ୍ୟାତ ଲେଖିକା ଅନାମିକା ଦେବୀଙ୍କ ସହିତ ଦେଖା କରିହେବ ।

ମନଟା ବିଷଣ୍ଣ ଲାଗୁଛି । କହ୍ନେଇର ଗଳାରେ ଯେମିତି ଆଗର ସେ ଅନ୍ତରଙ୍ଗତାର ସୁର ଶୁଣିଲାନି ସତ୍ୟବାନ । ଏ ଦୀର୍ଘ ଅନୁପସ୍ଥିତି ମଝିରେ ତା' ଜାଗାଟା ଯେମିତି ହଜିଯାଇଛି । ଆଶ୍ଚର୍ଯ୍ୟ ! ତା'ହେଲେ କ'ଣ ଏଭଳି ହୁଏ ? ହୃଦୟଭୂମିର ଦଖଲରେ ଥିବା ସତ୍ତ୍ୱଟିକକ ବଞ୍ଚାଇ ରଖିବାକୁ ମଧ୍ୟ ନିୟମିତ ଖଜଣା ଦେଇ ଚାଲିବାକୁ ପଡ଼େ । ତା'ହେଲେ ଅନାମିକା ଦେବୀଙ୍କ ସେହି ଝିଆରୀଟିର ହୃଦୟଠାରୁ— କିନ୍ତୁ ସତ୍ୟବାନ ପରି ଏଭଳି ଜଣେ ତୁଚ୍ଛ ଅକିଞ୍ଚିତକର ହତଭାଗ୍ୟ ପାଇଁ କ'ଣ ସତରେ ସେହି ଅଲୌକିକ ଆଶ୍ଚର୍ଯ୍ୟ ହୃଦୟରେ ଜମିର ବନ୍ଦୋବସ୍ତ ହୋଇଛି ?

'ରକ୍ତ ବଦଳରେ ରକ୍ତ ଦରକାର ।
ହତ୍ୟା ବଦଳରେ ହତ୍ୟା !
ଜୁଲୁମବାଜି ବନ୍ଦକର—
ଧ୍ୱଂସ ହୁଅ, ଧ୍ୱଂସ ହୁଅ ।'

ଗାଡ଼ିଟା ମୋଡ଼ ବୁଲିଲାକ୍ଷଣି ହଠାତ୍ ଯେମିତି ସମୁଦ୍ର ଗର୍ଜିଉଠିଲା । ଗାଡ଼ି ଅଟକିଗଲା ।

ରାସ୍ତାର ଗୋଟାଏ ପାଖରୁ ଅନ୍ୟପାଖକୁ ଯାଉଛନ୍ତି ସେମାନେ, ଥରଟେ ଦମ୍ ନ ନେଉଣୁ ପୁଣି ଗର୍ଜି ଉଠୁଛନ୍ତି ।

ଗାଡ଼ି ବାଧ୍ୟ ହୋଇ ଅଟକି ରହିଲା । କାରଣ ଯା ଭିତରେ ଆଗରେ ମଟରଗାଡ଼ିର ସାମନାରେ ଗୋଟାଏ ବିରାଟ ଲାଇନ୍ ହୋଇଗଲାଣି । ଯେତେସମୟ ପର୍ଯ୍ୟନ୍ତ ଶୋଭାଯାତ୍ରାର ଅଜଗର ଦେହ ରାସ୍ତା ଧାରରେ ମିଳେଇ ନ ଯିବ, ସେତେସମୟ ପର୍ଯ୍ୟନ୍ତ ଅପେକ୍ଷା କରିବା ଛଡ଼ା ଉପାୟ ନାହିଁ ।

ଜ୍ୟେଷ୍ଠ ମାସର ଅପରାହ୍ଣ । ଦିନଟାଯାକ ଆକାଶ ଅଗ୍ନିବୃଷ୍ଟି କରିଛି, ପୃଥିବୀ ଏବେମଧ୍ୟ ସେହି ଦାହର ଜ୍ୱାଳା ଭିତରକୁ ନେଇ ତପ୍ତ ନିଃଶ୍ୱାସ ଛାଡୁଛି । ଆକାଶ ହଠାତ୍ ଗୁମ୍‌ଗୁମ୍ ହୋଇଯାଇଛି । ଗାଡ଼ି ଭିତରେ ନିଶ୍ଚୟ ନିଃଶ୍ୱାସ ବନ୍ଦ ହେଲାପରି ଲାଗୁଛି । ନିରୁପାୟ ହୋଇ ଚାହିଁ ରହିଛନ୍ତି ଅନାମିକା ସେହି ଦୀର୍ଘ ଅଜଗର ଦେହଟା ଆଡ଼େ ।

ଗାଡ଼ିର ଖୋଲା ଝରକା ବାଟେ ପବନ ବଦଳରେ ଭୂଇଁରୁ ଉଠି ଆସୁଥିବା ଗୋଟାଏ ଚପା ଉତ୍ତାପ ଆସୁଛି । ଯେତେସମୟ ମଟର ଅଟକି ରହିବ, ଏ ଅବସ୍ଥା ରହିବ । ଉତ୍ତାପ ବଢୁଥିବ ।

ଗାଡ଼ିକୁ ପଛେଇ ନେଇ ଅନ୍ୟ ରାସ୍ତା ବାଟେ ଯିବା କଥା ଏବେ ଆଉ ସମ୍ଭବ ନୁହେଁ । ଅତି କମ୍‌ରେ ପଛପଟେ ତିରିଶିଟା ଖଣ୍ଡେ ମଟର ତାଳ ଖଜୁରି ପରି ଗୋଟାକ ପଛକୁ ଗୋଟାଏ ଲାଗି ଲାଗି ଠିଆ ହୋଇଛନ୍ତି । ଟ୍ୟାକ୍ସି, ପ୍ରାଇଭେଟ୍ କାର୍, ଲରୀ, ରିକ୍ସା, ଠେଲାଗାଡ଼ି । ତେବେକେ ବସ୍ ଟ୍ରାମ୍ ନାହିଁ, ରକ୍ଷା ।

ଏ ଅଭିଜ୍ଞତା ନୂଆ ନୁହେଁ ।

ଘରୁ ଟିକିଏ ଦୂରକୁ ଯିବାକୁ ହେଲେ ପ୍ରତିଦିନ ରାସ୍ତାରେ ଥରେ ଦୁଇଥର ଏଭଳି ଅଜଗରର ମୁହଁରେ ନିଶ୍ଚେ ପଡ଼ିବାକୁ ପଡ଼ିବ । ଅଟକିବାକୁ ପଡ଼ିବ । ସେମାନଙ୍କ ରାସ୍ତାକୁ ତ ଅବାରିତ ରଖିବାକୁ ହିଁ ପଡ଼ିବ, ସେମାନେ ତ ଆଉ ଅନ୍ୟମାନଙ୍କୁ ରାସ୍ତା ଛାଡ଼ି ଦେଇ ରହି ଯିବେନି ।

'ଲାଲ ଖୁନ୍' ଜିନିଷଟା କ'ଣ ତା' ଜାଣନ୍ତି ନାହିଁ ଅନାମିକା । ଆଜିକାଲିର ଅନେକ କିଛି ସେ ଜାଣନ୍ତି ନାହିଁ । ଜାଣନ୍ତି 'ଖୁନ୍' ଶବ୍ଦଟା ହିଁ ଭୟଙ୍କର ଗୋଟାଏ ଲାଲ୍‌ରଙ୍ଗର ଇଙ୍ଗିତ ବହନ କରୁଛି ।

କେଉଁ ଖୁନ୍‌ର ବଦଳରେ ଏହି ଲାଲ୍‌ଖୁନ୍‌ର ଘୋଷଣା, ଧରାପଡୁନି, କାରଣ ସେମାନଙ୍କ ବାକି କଥାଗୁଡ଼ାକ ଦ୍ରୁତ ଆଉ ଅସ୍ପଷ୍ଟ । ଗର୍ଜୁଥିବା ସମୁଦ୍ରର ଢେଉରୁ ଜଳର ଯେଉଁ ବଳୟ ରେଖା ଶ୍ରବଣଯନ୍ତ୍ର ଉପରେ ଅଜାଡ଼ି ହୋଇ ପଡୁଛି ତା' ହେଉଛି– 'ରକ୍ତ ଦରକାର' ଆଉ 'ଧ୍ୱଂସ ହୁଅ ।'

କିନ୍ତୁ କିଏ କେଉଁଠି ଧ୍ୱଂସ ହେବା ଅଭିଶାପରେ ଜର୍ଜରିତ ହେଉଛି ତା' ଶୁଣିବା ଧୈର୍ଯ୍ୟ ନାହିଁ କାହାର । ସତରେ ଯଦି କିଏ ରାତାରାତି ଧ୍ୱଂସ ହୋଇଯାଏ ଆଗାମୀ ସକାଳର କାଗଜରେ ତ ଦେଖାଯିବ । ଏବେ କିଏ କାହାର ଗନ୍ତବ୍ୟସ୍ଥାନକୁ ଯାଇ ପାରୁନାହାନ୍ତି, ସେଇଟା ହିଁ ହେଉଛି ସବୁଠାରୁ ବଡ଼ କଥା ।

ଆଉ ବୋଧହୁଏ ଏହି ତିରିଶି-ଚାଳିଶିଟା ଗାଡ଼ି ଭିତରେ ଅନାମିକା ଦେବୀଙ୍କ ଗାଡ଼ିଟା ଅଟକି ରହିଯିବାଟା ହେଉଛି ସବୁଠାରୁ ଭୟାନକ କଥା ।

ସାଢ଼େ ଛଅଟାରେ ସଭା ଆରମ୍ଭ ହେବା କଥା, ଅଥଚ ଏଇଠି ସାଢ଼େ ଛଅଟା ବାଜିଗଲା । ଏବେ ମଧ ନିର୍ଧାର୍ଯ୍ୟରେ ଚାରୋଟି ମାଇଲ ଯିବାକୁ ହେବ । ଗୋଟାଏ କଥା ତ ସତ ଯେଉଁ ଭଦ୍ରଲୋକ ତାଙ୍କର ଗାଡ଼ିଟିକୁ ସେମାନଙ୍କ

ଜୟନ୍ତୀ ଉତ୍ସବ ପାଇଁ ଦୁଇଘଣ୍ଟା ପାଇଁ ଉତ୍ସର୍ଗ କରିଛନ୍ତି, ସେ ହିଁ ଗାଡ଼ି ପଠାଇବାକୁ ଡେରି କରିଦେଇଛନ୍ତି, ତା'ପରେ ପୁଣି ଯେଉଁ ପିଲା ଦୁଇଟି ସଭାନେତ୍ରୀଙ୍କୁ ସାଙ୍ଗରେ ଧରି ନେଇଯିବେ ବୋଲି ଆସିଥିଲେ, ତାଙ୍କ ଭିତରୁ ଜଣକର ମୁଣ୍ଡ ଘୂରି ଯାଇଥିଲା ବୋଲି ରାସ୍ତାରେ ଓହ୍ଲାଇ କୋକାକୋଲା ପିଇ ଆସିବାକୁ ଡେରି ହୋଇଯାଇଥିଲା । ଭାବିଥିଲା ମେକ୍ ଅପ୍ କରି ଦେବ, ହଠାତ୍ ଏ ବିପତ୍ତି ।

ଯମ ଜାଣନ୍ତି ପ୍ରଧାନ କର୍ମକର୍ତ୍ତା ନେପାଳ ଭାଇ ଏଇଲେ କ'ଣ କରୁଛନ୍ତି । ଏତେବେଳକୁ ତ ସଭାନେତ୍ରୀଙ୍କୁ ସାଙ୍ଗରେ ନେଇ ପହଞ୍ଚିଯିବାର କଥା ଥିଲା । ସେ କ'ଣ କରୁଥିବେ ? ନିଶ୍ଚେ ମୁଣ୍ଡର ବାଳକୁ ଛିଣ୍ଡାଉଥିବେ ।

ଚିଫ୍ ଗେଷ୍ଟ କହିଥିଲେ ଠିକ୍ ସମୟରେ ସଭା ଆରମ୍ଭ କରିବାକୁ ପଡ଼ିବ । ଆଉ ତାଙ୍କର ଭାଷଣଟି କେବଳ ଦେଇସାରି ତାଙ୍କୁ ଚାଲିଯିବାକୁ ପଡ଼ିବ । କାରଣ ମାତ୍ର ପଞ୍ଚତିରିଶ ମିନିଟ୍ ସମୟ ସେ ଏହି 'ସବୁଜ ସଭା ସଂଘ'କୁ ଦେଇପାରିବେ, ତା'ପରେ ଦୁଇ ଦୁଇଟା ସଭା ରହିଛି ତାଙ୍କର !

ପୌରପ୍ରଧାନଙ୍କୁ ପ୍ରଧାନ ଅତିଥି କରିବାକୁ ଚାହିଁଲେ ଯା ଛଡ଼ା ଆଉ କ'ଣ ହେବ ? ସମସ୍ତେ ତାଙ୍କୁ ଚାହାନ୍ତି ।

ଅବଶ୍ୟ କାହିଁକି ଯେ ଚାହାନ୍ତି, ସେ ନିଜେ ଭଲରୂପେ ଜାଣନ୍ତି । କିନ୍ତୁ ସେ କଥା ତ ପ୍ରକାଶ କରିହେବନି । ପ୍ରଧାନଙ୍କୁ ଯେ 'ସେ' ବୋଲି ହିଁ ଚାହାନ୍ତି, ଏ କଥାଟା ଶୁଣିବାକୁ ବି ଭଲ, କହିବାକୁ ମଧ୍ୟ ଭଲ । ବିନୟରେ ଭାଙ୍ଗିପଡ଼ି ସେ କହିବେ, ମୋ ଭଳି ଅଯୋଗ୍ୟକୁ କାହିଁକି କହିଲେ ? ମୁଁ କବି ନୁହେଁ, ସାହିତ୍ୟିକ ନୁହେଁ—

ହାବଡ଼ା ନବୀନନଗର ସବୁଜ ଶୋଭାଗାର— ପାଠାଗାରର ଫଙ୍କସନ୍...... ପାଠାଗାରର ବୟସ ମଧ୍ୟ ନିହାତି କମ୍ ନୁହେଁ । କିନ୍ତୁ ସେମାନଙ୍କର ନିଜସ୍ୱ ଘରଟିଏ ନାହିଁ, ଖଣ୍ଡେ ଜମି ମାଗଣାରେ ପାଇଗଲେ ଘରଟିଏ ହୋଇଯିବ । ସେହି ଅଭାବର ବେଦନାକୁ ପୋଛି ପକାଇବାକୁ ଯତ୍ନବାନ ହେଉଛନ୍ତି ପାଠାଗାରର କର୍ମୀମାନେ । ସେହି ଯତ୍ନର ପ୍ରଧାନ ସୋପାନ ହେଉଛି ପୌରପ୍ରଧାନଙ୍କର ଗଳାରେ ପୁଷ୍ପମାଲ୍ୟ ଅର୍ପଣ ।

ସେହି ପୌରପ୍ରଧାନ ତ ନିଶ୍ଚେ ଆସି ଯାଇଥିବେ । ଲାଗୁଛି କେହି କେହି ଆର୍ଟିଷ୍ଟମାନେ ମଧ୍ୟ ଆସିଯାଇଥିବେ । କାରଣ ସେମାନଙ୍କର ମଧ୍ୟ ଦି'ଚାରିଜାଗାରେ ବହିନା ଥିବ । ଦେଖିବାକୁ ପଡ଼ିବ ମାସଟା କ'ଣ ?

ପାଞ୍ଜିରେ ଜ୍ୟୋଷ୍ଠ ମାସ ହେଲେ ମଧ୍ୟ ପ୍ରକୃତ କ୍ୟାଲେଣ୍ଡର୍‌ରେ ତ ମେ ମାସ । ତା' ମାନେ ରବୀନ୍ଦ୍ର-ଜୟନ୍ତୀର ମାସ । ପୁଣି ସେପଟେ ଦେଶୀୟ

ହିସାବର ସୁବିଧାରେ ନଜରୁଲ-ଜୟନ୍ତୀଟା ମଧ ମିଳୁଛି । ଦିଇଟା ବଡ଼ ବଡ଼ କରଣୀୟ ଫଙ୍କସନ୍ ଯଦି ଗୋଟିଏ ଆୟୋଜନ ଭିତରେ ସମ୍ଭାଳି ହୋଇଯିବ, କ'ଣ କମ୍ ସୁବିଧା ?

ଉଦ୍ୟୋକ୍ତାମାନେ ସେହି ସୁବିଧାଟାକୁ ଝାମ୍ପି ନେଉଛନ୍ତି । ରବୀନ୍ଦ୍ରସଙ୍ଗୀତ ଗାୟକ ଆଉ ନଜରୁଲ ସଙ୍ଗୀତ ଗାୟକ, ଦୁଇଟି ଦଳକୁ ହିଁ ଯୋଗାଡ଼ କରିଦେଇ ଗୋଟିଏ ଗୁହାଳରେ ପୂରାଇ ଦେଇ କର୍ତ୍ତବ୍ୟ ପାଳନର ମହତ୍ ଆନନ୍ଦ ଅନୁଭବ କରୁଛନ୍ତି ।

ଦିହେଁ ପାଖାପାଖି ତାରିଖ ପାଇଁ ଢେର୍ ସୁବିଧା କରି ଦେଇଛନ୍ତି । ଗାୟକ ଦଳ ଦୁଇଟା ଲାଗିଲେ ମଧ, ହଲ୍, ପେଣ୍ଡାଲ, ସଭାପତି, ପ୍ରଧାନ-ଅତିଥି, ଫୁଲଦାନୀ, ଧୂପଦାନୀ, ମାଇକ୍ ମଞ୍ଚସଜ୍ଜା ଏଗୁଡ଼ାକ ତ ଦୁଇଥର ଲାଗିବନି ? କମ୍ ସୁବିଧା ?

କିନ୍ତୁ ଏ କି ଅସୁବିଧାରେ ପକାଇଲେ ସେ ଶୋଭାଯାତ୍ରାକାରୀମାନେ ?

ପିଲା ଦୁଇଟା ଗାଡ଼ି ଭିତରେ ବସି ଗୋଡ଼ ହାତ ଛାଟୁଛନ୍ତି ।

ଝାଳେଇ ଯାଉ ଯାଉ ଅନାମିକା କହିଲେ— କୌଣସି ପ୍ରକାର ଅନ୍ୟ ପଟ ଦେଇ ବାହାରିଯାଇ ପାରିବାନି ?

—ପାଗଳ ହେଲେ ! ଆଗକୁ ପଛକୁ ଚାହିଁ ଦେଖନ୍ତୁ ତ !

—କିନ୍ତୁ ତମେ ତ କହିଥିଲ ମାତ୍ର ଦୁଇଘଣ୍ଟା ପାଇଁ ହଲ୍‌ଟାକୁ ଭଡ଼ା ନେଇଥିଲ । ସାଢ଼େ ଆଠଟା ଭିତରେ ସାରିଦେବାକୁ ପଡ଼ିବ, ପରେ ସେଠି ଅନ୍ୟ ଫଙ୍କସନ୍ ହେବ । ହଲ୍‌ଟାକୁ ଛାଡ଼ିଦେବାକୁ ପଡ଼ିବ ।

—ତା' ତ ପଡ଼ିବ । ଡେରି କଲେ ଧକ୍କା ଦେଇ ବାହାର କରିଦେବେ ।

—"ଆରେ ! କ'ଣ ଯେ କହୁଛ !......" ସେ କଷ୍ଟ ଭିତରେ ମଧ ହସିପକାଇଲେ ଅନାମିକା ।

ପିଲା ଦୁଇଟା ଉଦାର କଣ୍ଠରେ କହିଲେ— ଆପଣ ଜାଣନ୍ତି ନାହିଁ ସାର୍...... ସତରେ ମାଉସୀ ! ସେମାନେ ଏଭଳି ଲୋକ ! ସମୟ ହୋଇଗଲାକ୍ଷଣି ଫଟ୍‌କିନା ଆଲୁଅ ପଙ୍ଖା ବନ୍ଦ କରିଦେବେ ।

—ତାହେଲେ ତ ଦେଖୁଛି ଆଜି ତମ ଅନୁଷ୍ଠାନ ଜମା ହୋଇପାରିବ ନାହିଁ । ଏଇଠି ତ ସାତଟା ପନ୍ଦର ବାଜିଗଲାଣି । ଏମାନଙ୍କ ଦଳ ତ ଦେଖୁଛି ଅସରନ୍ତି । ଆସ୍ତେ ଆସ୍ତେ ଚାଲି ଚାଲି ଆସୁଛନ୍ତି । ସେମାନେ ଯିବେ, ତା'ପରେ ସାମନାରେ ସେହି ଗାଡ଼ିଗୁଡ଼ାକ ଯିବ, ତା'ପରେ ଅଛି ଆହୁରି ତିନି-ଚାରିମାଇଲ—

—ସବୁ ଭାବୁଛୁ ମାଉସୀ, ମୁଣ୍ଡ ଭିତରେ ନିଆଁ ଜଳୁଛି । ଓଃ, ଆମେ ଯଦି ଠିକ୍ ୟା ଆଗରୁ ପାର ହୋଇଯାଇଥାନ୍ତେ ! ପୁଳିନବାବୁ ହିଁ ଏମିତି ବୁଡ଼ାଇଲେ ।

—ପୁଳିନବାବୁ !

—'ଚିହ୍ନିବେନି ।......' ଜଣେ ପିଲା ଯେମିତି କାଠରେ କାଠ ପିଟି କଥା କହୁଛି— ଆମମାନଙ୍କର ସାଧାରଣ ସଂପାଦକଙ୍କ ଶଳା । ଗାଡ଼ିଟା ଦେବେ କହିଥିଲେ, ସେଥିପାଇଁ ଆଉ ଟାକ୍ସି ଫାକ୍ସି କରାହେଲାନି । ଏକାବେଳେ ଲାଷ୍ଟ ମୋମେଣ୍ଟରେ ଦେଲେ । ତେଣେ ମେୟର ଆସି ବସିଛନ୍ତି—

ଅଳ୍ପ ହସି ଅନାମିକା କହିଲେ— ସେ କ'ଣ ଆଉ ସଭାନେତ୍ରୀଙ୍କ ପାଇଁ କହିଦେଇଥିବେ ? ଏତେବେଳକୁ ଭାଷଣ ସାରିଦେଇ ଚାଲିଯିବେଣି ।

—ସେଇଆ ସମ୍ଭବ । ତାଙ୍କର ତ ଆଉ ଆପଣମାନଙ୍କ ପରି ଅଶେଷ ସମୟ— ମାନେ ଇଏ, ତାଙ୍କର ତ ଅନେକ କା—

ଅନାମିକା ରୁମାଲ ବାହାର କରି କପାଳ ପୋଛି କହିଲେ— ତା' ତ ନିଶ୍ଚୟ ।

ପିଲାଟା କହିଲା ତେବେ ଆଉ କ'ଣ, ଆପଣଙ୍କ ଦ୍ୱାରା ଗୋଟାଏ ପ୍ରସ୍ତାବ ତାଙ୍କ ପାଖରେ ଉପସ୍ଥାପିତ କରିବାର କଥା ଥିଲା ତ—

—ଓଃ ସେଇୟା ନା କ'ଣ ? କି ପ୍ରସ୍ତାବ ?

—ଆଉ କ'ଣ, ଜମି ଫମି କଥା, ଯାଇ ଶୁଣିବେ । ସେଥିପାଇଁ ଭାବୁଛି ଆପଣଙ୍କୁ ନେଇଯାଇ ନ ପାରିଲେ, ନେପାଳ ଭାଇ ଆମମାନଙ୍କର ଚମଡ଼ା ଛଡ଼େଇ ଦେବେ !

ଅନାମିକା ସେହି ମଧୁର ଭାଷାର ଆଘାତରେ ପ୍ରାୟ ଚମକିପଡ଼ି କହିଲେ— ତମମାନଙ୍କର କି ଦୋଷ ?

ସେମାନଙ୍କ ଭିତରୁ ଦ୍ୱିତୀୟ ପିଲାଟି ଉଦାସ ଗଳାରେ କହିଲା, ସେକଥା ଆଉ କିଏ ବୁଝିବେ କହିଲେ ? କହିବେ ତମକୁ ତିନିଟା ବେଳୁ ପଠାଇଲିଣି—

—ତିନିଟାବେଳୁ ? କ'ଣ କହୁଛ ?

ସେମାନେ ପରସ୍ପରର ମୁହଁକୁ ଚାହିଁ କହିଲେ— କଥାଟା ହେଉଛି, ସେ ଆମକୁ ପଠାଇଥିଲେ ପୁଳିନବାବୁଙ୍କ ଘରକୁ, ପୁଳିନବାବୁ ସାଢ଼େ ପାଞ୍ଚଟାବେଳେ ଗାଡ଼ିଟା ଦେଲେ ତା'ପରେ ପୁଣି ଗରମରେ ମୁଣ୍ଡ ଘୂରିବାରୁ ଏ ପୁଣି ସରବତ ଖାଇବାକୁ ଓହ୍ଲାଇଲେ । ଆଉ ଆପଣଙ୍କ ଘରଟି ମଧ୍ୟ କମ୍ ଦୂରରେ ନୁହେଁ ।

ଅନାମିକା ଆଉ କଥା କହିଲେନି, ଅଳ୍ପ ହସିଲେ । କାହାଠାରୁ ଦୂରରେ ଆଉ କାହାର ପାଖରେ ହେବା ଉଚିତ ଥିଲା, ସେ ପ୍ରଶ୍ନ ପଚାରିଲେନି ।

ଅବଶେଷରେ କେତେବେଳେ ଗୋଟାଏ ରାସ୍ତାଟା ସଫା ହେଲା, ଆଗର ମଟରଟା ଚାଲିଲା, ଅନାମିକାଙ୍କ ମଟର ଚାଲିଲା ନବୀନନଗର ଆଡ଼େ ।

ସେମାନେ ଯେତେବେଳେ ସଭାନେତ୍ରୀଙ୍କୁ ନେଇ ପହଞ୍ଚିଲେ– ସେତେବେଳକୁ ସମାପ୍ତି-ସଙ୍ଗୀତ ଗାନ କରାଯାଉଥିଲା । ସଭାନେତ୍ରୀଙ୍କ ଆଡ଼କୁ ଆଉ କେହି ବିଶେଷ ଦୃଷ୍ଟିପାତ କଲେ ନାହିଁ । ସଂପାଦକ ମହାଶୟ ମୁହଁ ଗମ୍ଭୀର କରି ହଲ୍‌ର ପଛପଟ ଦୁଆର ବାଟେ ତାଙ୍କୁ ନେଇ ସିଧା ପହଞ୍ଚିଲେ ମଞ୍ଚରେ । ଘୋଷଣା କଲେ ଅନିବାର୍ଯ୍ୟ କାରଣ ହେତୁ ସଭାନେତ୍ରୀ ଠିକ୍ ସମୟରେ ଆସି ପହଞ୍ଚି ପାରିଲେନି । ଏଇଲେ ଆସି ପହଞ୍ଚିଲେ ।

ସେହି ଅନିବାର୍ଯ୍ୟତା ଯେ କାହା ପକ୍ଷରୁ, ସେ କଥା ଆଉ କୁହାଗଲା ନାହିଁ । ଗୀତ ଚାଲିଲା ।

ହଲ୍‌ର ମାଲିକ ଖାଲି ତନାଘନା କରୁଥାନ୍ତି । ସଭାନେତ୍ରୀଙ୍କ ଭାଷଣ ହେବାକୁ ଆଉ ସମୟ ନାହିଁ, ତେବେକେ ସେ ଯେ ପ୍ରକୃତରେ ସେ, ସେଇ ଟିକକ ଜଣାଇବା ପାଇଁ ମାଇକ୍‌ର ଆଗରେ ଆସି ଠିଆହେବାକୁ ପଡ଼ିଲା ।

ତା'ଆଗରୁ ଅନାମିକା ପ୍ରଶ୍ନ କଲେ, ଖାଲି ଟିକିଏ କଥା କହିବା ପାଇଁ କହିଲେ– ପ୍ରଧାନ ଅତିଥି ଆସିଥିଲେ ?

ଅପ୍ରସ୍ତୁତ ମୁହଁରେ ସଂପାଦକ କହିଲେ– ନା ଜରୁରି କାମରେ ଅଟକିଗଲେ– ଫୋନ୍ କରି ଜଣାଇଦେଲେ ।

ହଲ୍ ଛାଡ଼ିଦେବାକୁ ହେଲେ ମଧ୍ୟ ରକ୍ଷା ପାଇଲେନି ଅନାମିକା । ଲାଇବ୍ରେରୀ ଘରକୁ ଯାଇ ବସିବାକୁ ପଡ଼ିଲା ତାଙ୍କୁ । ଚାହା ଆଉ ସନ୍ଦେଶ ନ ଖୁଆଇ ତ ଆଉ ଛାଡ଼ିବେନି । ତା'ଛଡ଼ା ଲାଇବ୍ରେରୀର ଜନ୍ମପତ୍ରିକା ଦେଖାଇବାଠାରୁ ଆରମ୍ଭ କରି ତା'ର ଏଇ ତେଇଶି ବର୍ଷର ଜୀବନର ଇତିହାସ ସବୁ ମଧ୍ୟ ଶୁଣାଇବା ଦରକାର । ଅନାମିକାଙ୍କ ସହିତ ପୌରପ୍ରଧାନଙ୍କର ପରିଚୟ ଅଛି, ସେ ଯଦି–

ଅର୍ଥାତ୍ ଏତେ ପେଟ୍ରୋଲ୍ ଖର୍ଚ୍ଚ କରି ଆଣି କୌଣସି କାର୍ଯ୍ୟରେ ଲଗାଇ ନ ପାରିଲେ......

ରାସ୍ତାରେ କେମିତି ବିଘ୍ନ ଘଟିଲା ସେ କଥା ପଡ଼ିଲା–

ସ୍ଥାନୀୟ ଜଣେ ଭଦ୍ରଲୋକ ଉଦାତ୍ତ କଣ୍ଠରେ କହିଲେ– ସେମାନଙ୍କର ଦୋଷ କ'ଣ କହିଲେ ? ସେମାନଙ୍କ ଆଗରେ ଆଶା ନାହିଁ, ଭରସା ନାହିଁ, ଭବିଷ୍ୟତ୍ ନାହିଁ । ବେକାରୀ ଯନ୍ତ୍ରଣାରେ ସବୁବେଳେ ସେମାନଙ୍କ ମୁଣ୍ଡକୁ ରକ୍ତ ଚଢ଼ି ରହିଛି ।

ଜାଣନ୍ତି, ଆମ ଦେଶରେ ଆଜି ଶିକ୍ଷିତ ବେକାରଙ୍କ ସଂଖ୍ୟା କେତେ ? ଗୋଟାଏ ହେଲେ ଚାକିରି ନାହିଁ ।

ସାଧାରଣତଃ ଏ ଧରଣର କଥାରେ ତର୍କ କରନ୍ତି ନାହିଁ ଅନାମିକା, ତର୍କ କରିବାଟା ସୁନ୍ଦର ହେବନି, ଏ କଥାର ପ୍ରତିବାଦ କରିବା ଅର୍ଥ ହିଁ ହେଉଛି ତ ସହାନୁଭୂତିହୀନତା, ଅମାନବିକତା, କିନ୍ତୁ ଆଜି ବଡ଼ କଷ୍ଟ ପାଇଛନ୍ତି, ବୃଥା କଷ୍ଟ, ସେଥିପାଇଁ ହଠାତ୍ କହି ପକାଇଲେ— କାହାର ଯେ କେତେବେଳେ ରକ୍ତ ଚଢ଼ିଯାଏ ସେଥିର ହିସାବ କ'ଣ ରଖା ଯାଉଛି ? ଚାକିରି ନାହିଁ ବୋଲି କ'ଣ କିଛି କରିବାର ନାହିଁ ?

—"କ'ଣ କରିବେ ?" ସେ ପ୍ରାୟ କ୍ରୁଦ୍ଧ କଣ୍ଠରେ କହିଲେ— ବ୍ୟବସାୟ ? ମୂଳଧନ ଦେବ କିଏ ?

ଅନାମିକା ତର୍କ ଆରମ୍ଭ କଲେ, କାରଣ ଭଦ୍ରଲୋକଙ୍କ ଭଙ୍ଗୀ ଦେଖି ଭାବିପାରିବ, ଏହି ବିପୁଳସଂଖ୍ୟକ ବେକାରଙ୍କ ପାଇଁ ଅନାମିକା ମଧ ବୋଧହୁଏ ଅନେକାଂଶରେ ଦାୟୀ ! ଅନାମିକା କହିଲେ— କେହି କାହାକୁ କିଛି ଦିଅନ୍ତି ନାହିଁ ବୁଝିଲ ? ସେ ପ୍ରତ୍ୟାଶାଟା କରିବା ହିଁ ଅନ୍ୟାୟ । ନିଜ ଜୀବନର ମୂଳଧନକୁ ନିଜକୁ ସଂଗ୍ରହ କରିବାକୁ ପଡ଼େ ।

'— ପଡ଼େ କହିଲେ ହୋଇଯିବ ?'...... ପ୍ରାୟ ଖତାଇ ହେଲାପରି ଭଦ୍ରଲୋକ କହିଲେ— ଗୋଟାଏ ଯୁକ୍ତି-ଗ୍ରାହ୍ୟ କଥା କହନ୍ତୁ ।

ଗମ୍ଭୀର ଗଳାରେ କହିଲେ ଅନାମିକା— ମୋ ନିକଟରେ କେବଳ ଗୋଟିଏ ଯୁକ୍ତିଗ୍ରାହ୍ୟ କଥା ଅଛି । ଆମର ଏ ବଙ୍ଗଳାରେ ଅବଙ୍ଗାଳୀ ଦେଶରୁ ଲକ୍ଷ ଲକ୍ଷ ବେକାର ଆସି ହାଜର ହୁଅନ୍ତି, ବର୍ଷକୁ କୋଟି କୋଟି ଟଙ୍କା ଉପାର୍ଜନ କରନ୍ତି, ସେମାନେ ସମସ୍ତେ ନିଜ ଦେଶରୁ ଗଦା ଗଦା ମୂଳଧନ ନେଇଆସନ୍ତି, ଏ ବିଶ୍ୱାସ ମୋର ନାହିଁ । ଅଥଚ ସେମାନେ ଯେ ଏ ଟଙ୍କାଟା ଲୁଟି ନିଅନ୍ତି ଏ କଥାଟା ଅସ୍ୱୀକାର କରିପାରିବେ ନାହିଁ । ଏ ବଙ୍ଗଳାରୁ ହିଁ ଲୁଟି ନିଅନ୍ତି । ଏଇଟା କେମିତି ହୁଏ ?

ଗୋଟିଏ ମୁହୂର୍ତ୍ତ ତୁନି ହୋଇ ରହନ୍ତି ଭଦ୍ରଲୋକ, ତା'ପରେ ଆଉଥରେ ପୂର୍ଣ୍ଣୋଦ୍ୟମରେ କହନ୍ତି— ସେମାନଙ୍କ କଥା ବାଦ୍ ଦିଅନ୍ତୁ । ସେମାନେ ଗୋଟାଏ ଓଳି ଛତୁଆ ଖାଇ, ଓଳିଏ ଟିକିଏ ଲଙ୍କା-ଆଚାର ଦେଇ ଅଟାର ରୁଟି ଖାଇ ଦିନ କଟାଇ 'ବ୍ୟବସାୟ, ବ୍ୟବସାୟ' କରି ବୁଲିପାରନ୍ତି । ଆମମାନଙ୍କ ଘରର ପିଲାମାନେ ତ ଆଉ ତା' କରି ପାରିବେନି !

— କିନ୍ତୁ କାହିଁକି ପାରିବେନି ?

ତୀବ୍ରକଣ୍ଠରେ କହିଲେ ଭଦ୍ରଲୋକ— ଏକଥା ପୁଣି ମୁଁ ଆଉ କ'ଣ କହିବି କହନ୍ତୁ ? ବଙ୍ଗାଳୀଙ୍କ କଲ୍‌ଚର୍ ଅଲଗା, ରୁଚି ଅଲଗା, ଶିକ୍ଷାଦୀକ୍ଷା ଅଲଗା—

—'ତା'ହେଲେ ଆଉ କ'ଣ କରାଯିବ ?......' ହସିଲେ ଅନାମିକା । ଠିକ୍ ଏତିକିବେଳେ ପିଲାଟିଏ ଆସି କହିଲା, ଜଣେ ଲୋକ ଆପଣଙ୍କୁ ଖୋଜୁଛନ୍ତି ।

—"ମତେ ?......" ଅନାମିକା ଚମକିପଡ଼ିଲେ । ପଚାରିଲେ, କେମିତିକା ଲୋକ— ମାନେ, ଆଉ କ'ଣ, ଏମିତି । ଭାରି କଳା, ଟିକିଏ ଇ......ଏ କ୍ଲାସ୍‌ର ଲୋକ !

ଭାରି କଳା ! ଟିକିଏ ଇ......ଏ କ୍ଲାସ୍‌ର ଲୋକ ! ମୁହୂର୍ତ୍ତକରେ ଅନାମିକା ଆକାଶ-ପାତାଳ ଭାବିଦେଲେ । କହିଲେ— କ'ଣ କହୁଛନ୍ତି ?

— କହୁଛନ୍ତି ଆପଣଙ୍କ ସଙ୍ଗେ ଥରଟେ ଦେଖା କରିବେ—

— କିଛି କାରଣ କହୁ ନାହାନ୍ତି ?

— କହିଛନ୍ତି, କହିଛନ୍ତି ଆପଣଙ୍କୁ କାହାର ଗୋଟିଏ ଚିଠି ଦେବାକୁ ଆସିଛନ୍ତି ।

କି ଚିଠି ? କାହାର ଚିଠି ? ସମସ୍ତ ମନଟା ଆନ୍ଦୋଳିତ ହୋଇଗଲା । ଆସ୍ତେ କହିଲେ— ଏଠିକୁ ନେଇଆସ ।

ଘର ଭିତରେ ଗୋଟିଏ ମୃଦୁ ଗୁଞ୍ଜନ ଶୁଭିଲା ।— ଏଠାକୁ କାହିଁକିରେ ବାପା ? କିଏ କ'ଣ ମତଲବରେ ଖୋଜୁଛି ? ଦିନକାଳ ଖରାପ । ଖୋଜିଲେ ତାଙ୍କ ନିଜଘରକୁ ଯାଇ ଖୋଜୁ, ହଠାତ୍ ଏଭଳି ଜାଗାରେ ?

ଅଥଚ ସଭାନେତ୍ରୀଙ୍କୁ ମୁହଁ ଫିଟାଇ କୁହାଯାଇ ପାରିବନି— ଆପଣ ବାହାରକୁ ଯାଇ ଦେଖୁ ନାହାନ୍ତି ? ତେଣୁ ସମସ୍ତେ ଟିକିଏ ଠିକ୍ ରୂପେ ସଜାଡ଼ି ହୋଇ ବସିଲେ ।

ଲୋକଟା ଆସି ଠିଆହେଲା ଦୁଆର ପାଖରେ, ବୋଧହୁଏ ସମସ୍ତଙ୍କ ଉଦ୍ଦେଶ୍ୟରେ ନମସ୍କାରଟିଏ କରି, ତା'ପରେ ଭାରି ସାବଧାନତା ପୂର୍ଣ୍ଣ ଗଳାରେ କହିଲା— ଆପଣଙ୍କୁ ଦେବା ପାଇଁ ଗୋଟାଏ ଚିଠି ଥିଲା—

ଅନାମିକା ଥରଟିଏ ତା'ର ଆପାଦମସ୍ତକରେ ଆଖି ବୁଲାଇ ଆଣିଲେ, ସଙ୍ଗେ ସଙ୍ଗେ କିଏ ଯେପରି କହିଲା— ଏ ହେଉଛି ସେ ।

ନା, କୌଣସିଦିନ ତାକୁ ଅନାମିକା ଆଖିରେ ଦେଖି ନାହାନ୍ତି, ତେବେକେ ଯେପରି ଚିହ୍ନା ଭଳି ଲାଗିଲା । ଚଉକିରୁ ଉଠି ଟିକିଏ ଆଗେଇଆସି କହିଲେ— ଚିଠିଟା କିଏ ଦେଇଛି ?

—"ପଢ଼ିଲେ ବୁଝିପାରିବେ ।......" ପ୍ୟାଣ୍ଟର ପକେଟ୍‌ରୁ ଟାଣି ବାହାର କରି ବଢ଼ାଇ ଧରିଲା ଲୋକଟା । ମୁହଁ ବନ୍ଦ ଥିବା ଲଫାପାଟିଏ ।

କିନ୍ତୁ ଲଫାଫା ଉପରେ ଲେଖା ହୋଇଥିବା ଅକ୍ଷରଗୁଡ଼ାକ ଉପରେ ଭାସିଉଠିଲା ଝକ୍‌ମକ୍ ଦିଶୁଥିବା ମୁହଁଟିଏ !

ଅନାମିକା ଆସ୍ତେ କହିଲେ— ସେ କୁ'ଠି ଅଛି ?

—ସବୁ ଲେଖା ହୋଇଛି ।

—ଆଚ୍ଛା ତମେ ଟିକିଏ ଠିଆ ହୁଅ, ଚାଲି ଯିବ ନାହିଁ ।

ଫେରି ଠିଆହେଲେ ଅନାମିକା । କର୍ମକର୍ତ୍ତାମାନଙ୍କୁ କହିଲେ— ଦେଖନ୍ତୁ ଟିକିଏ ଜରୁରି ଦରକାର ହେତୁ ମତେ ଏଇଲେ ଯିବାକୁ ପଡ଼ିବ, ଦୟାକରି ଯଦି ଗାଡ଼ିଟା—

—ସେ କ'ଣ ! ଆପଣ ତ ଚା' ଫା କିଛି ଖାଇଲେନି ?

—ଥାଉ । ଇଚ୍ଛା ହେଉନି । ଗାଡ଼ିଟା ଟିକିଏ—

ଟିକିଏ ! ତା' ମାନେ ଶୀଘ୍ର । କିନ୍ତୁ ସେଇଟା କେମିତି ହେବ ? ପୁଲିନବାବୁଙ୍କର ଗାଡ଼ିଟା ତ ଆଉ ଠିଆ ହୋଇ ରହିନି, ସେ ତ ସଭାନେତ୍ରୀଙ୍କୁ ପହଞ୍ଚାଇ ଦେଇ ପୁଲିନବାବୁଙ୍କ ପାଖରେ ପହଞ୍ଚିଗଲାଣି ।

ଅତଏବ ? ଅତଏବ ଟ୍ୟାକ୍ସି । ଅତଏବ ଅନେକ ସମୟ ଅପେକ୍ଷା କରିବା ଛଡ଼ା ଉପାୟ ନାହିଁ । ଚିଠିଟି ହାତ ଭିତରେ ଜଳନ୍ତା ନିଆଁ ଭଳି ଜଳୁଛି । କିନ୍ତୁ ଏଠି କେମିତି ଖୋଲିବେ ? ଏ ଚିଠି କ'ଣ ଏଠି ଖୋଲି ପଢ଼ିବା କଥା ?

ଯେଉଁ ଭଦ୍ରଲୋକ ତର୍କ ଆରମ୍ଭ କରିଥିଲେ ସେ ହତାଶ ହୋଇ ଚାଲିଗଲେ ଏବଂ ବାହାରକୁ ଚାଲିଯାଇ ବୁଢ଼ା ଦାଦାକୁ କହିଲେ— ବୁଝିଲେ ବୁଢ଼ାଭାଇ ଏତେ ବଡ଼ ଗୋଟିଏ ସମସ୍ୟାକୁ ଏ ଏକାବେଳେ ପଦେ କଥାରେ ନାସ ଶୁଙ୍ଘି ଦେଲାପରି ଶୁଙ୍ଘି ଦେବାକୁ ଚାହାନ୍ତି , ଯେମିତିକି ବେକାର ସମସ୍ୟାଟା ଗୋଟାଏ ସମସ୍ୟା ହିଁ ନୁହେଁ ।

—କହିବେନି କାହିଁକି ଭାଇ ? ବଡ଼ଲୋକଙ୍କର ଝିଅ, ବାହା-ଫାହା ହେଇ ନାହାନ୍ତି, ବାପାଙ୍କ ଅଟ୍ଟାଳିକାରେ ଅଛନ୍ତି । ନିଜେ କଲମ ଚଳେଇ ମୋଟା ମୋଟା ଅଙ୍କର ଟଙ୍କା ପାଇଯାଉଛନ୍ତି, ବେକାରତ୍ୱର ଜ୍ୱାଳାଟା ଯେ କ'ଣ, ବୁଝିବେ କୁଆଡୁ ?

—ହେଲେ ସେ ନିଗ୍ରୋ ପ୍ୟାଟର୍ଣ୍ଣର ଟୋକାଟା କିଏ କହିଲ ? ଚିଠିଟା ମଧ୍ୟ କାହାର ? ଦେଖିଲ ନା ହାତରେ ଚିଠିଟାକୁ ଧରିଲାକ୍ଷଣି ମୁହଁଟା କେମିତି ହୋଇଗଲା ?

—ଦେଖିଲି, ଅଥଚ ଲଫାଫା ଖୋଲି ଚିଠିଟା ଦେଖିଲେନି, ସେକଥା ଲକ୍ଷ୍ୟ କଲ ?

—ଲକ୍ଷ୍ୟ କରିଛି ସବୁ । ତା'ମାନେ ଆଗରୁ ଜଣାଥିଲା ଚିଠିଟା ନିଶ୍ଚେ ଆସିବ, ଆଉ କି ଚିଠି ଆସିବ ?

—କିଛି କଥା ଅଛି ବୁଝିଲ ? ଚିଠିଟା ଦେଖିଲାକ୍ଷଣି ଯିବାପାଇଁ କେମିତି ଉଚ୍ଛନ୍ନ ହେଲେ ଦେଖିଲ ? କୁହାହେଲା ଜରୁରି ଦରକାର ! ଆରେ ବାବା ଚିଠିଟାକୁ ତମେ ଖୋଲିଲନି, ଲୋକଟାକୁ କିଛି କହିଲନି ଅଥଚ ଜାଣି ପକାଇଲ ଜରୁରି ଦରକାର, ସାଙ୍ଗେ ସାଙ୍ଗେ ଯିବାକୁ ହେବ ।

—କହିଲି ପରା, ଜାଣିଥିବା କଥା । କିଏ ଜାଣିଛି କୋଉ ପାର୍ଟିର କଥା କି ନାହିଁ ? ଭିତରେ କିଏ ଯେ କ'ଣ କରନ୍ତି, ଜାଣିବାର ତ ଉପାୟ ନାହିଁ ?

ଟୋକାଟାର ଚେହେରା ଜମା ଭଦ୍ରଲୋକ ଭଳି ନୁହେଁ ।

ଯାଉ, ଏଇଲେ ସିଧା ନେଇ ପହଞ୍ଚାଇ ଦିଅ ।

ସାଙ୍ଗରେ କିଏ ଯିବ ?

ସ୍ୱପନ ଆଣିଛି, ସ୍ୱପନ ହିଁ ଯିବ ।

ଟୋକାଟାକୁ ତ ଠିଆ ହେବାକୁ କହିଲେ, ଯେତେଦୂର ଜଣାଯାଉଛି ତାକୁ ମଧ୍ୟ ସାଙ୍ଗରେ ନେବେ ।

ତା'ହେଲେ ତ ହଇରାଣର କଥା ! ସ୍ୱପନର ସାଙ୍ଗରେ ଯିବାଟା କ'ଣ ଠିକ୍ ହେବ ? କେଜାଣି କୋଉ ପାର୍ଟି ଫାର୍ଟିର—

ଯେତେବେଳ ପର୍ଯ୍ୟନ୍ତ ଟ୍ୟାକ୍ସି ନ ଆସୁଛି, ଗୋପନ ବୈଠକ ଚାଲିଥାଏ ଏବଂ ନିଶ୍ଚିତ ବିଶ୍ୱାସରେ ଘୋଷଣା କରାହୁଏ, ମହିଳାଟିର ଉପର ଆବରଣ ଯାହା ଥିଲେ ମଧ୍ୟ କୌଣସି ଗୋଟିଏ ପାର୍ଟି ସହିତ ଯୋଗାଯୋଗ ନିଶ୍ଚୟ ଅଛି ।

ସନ୍ଦେହଟା ନିଶ୍ଚିତ ବିଶ୍ୱାସରେ ପରିଣତ ହେଲା ଯେତେବେଳେ ଅନାମିକା ଦେବୀ କହିଲେ— ଗାଡ଼ିଟା ଯେତେବେଳେ ଘରର ଗାଡ଼ି ନୁହେଁ, ଟ୍ୟାକ୍ସି, ସେତେବେଳେ ଏ ପିଲାମାନେ କଷ୍ଟ ପଡ଼ି ଏତେ ଦୂରକୁ ଯିବେ କାହିଁକି ? ଫେରିବାକୁ ଅସୁବିଧା ହେବ । ଏ ପିଲାଟି ମୋର ଚିହ୍ନା ପିଲା, ସେଇପଟକୁ ଯିବ, ଯା ସଙ୍ଗେ ବରଂ—

ଏମାନେ ପରସ୍ପର ଆଡ଼କୁ ଚାହିଁ ଅର୍ଥପୂର୍ଣ୍ଣ ହସ ହସିଲେ, ତା'ପରେ ସବିନୟରେ କହିଲେ— ସେଇଟା କ'ଣ ଠିକ୍ ହେବ ? ଆମେ ଆଣିଲୁ—'

—ସେଥିରୁ କ'ଣ ହେଲା ? ମୁଁ ନିଜେ ତ କହୁଛି, ଚିନ୍ତାର କିଛି ନାହିଁ ।

ଟ୍ୟାକ୍ସିରେ ଚଢ଼ିଲେ ଅନାମିକା । ନିଗ୍ରୋ ପରି ଦେଖିବାକୁ ହୋଇଥିବା ପିଲାଟା ଆଡ଼କୁ ଚାହିଁ ଡାକିଲେ— ତମେ ଚଢ଼ ।

ଗାଡ଼ିରେ ଷ୍ଟାର୍ଟ ଦେବା ପରେ ସେମାନେ କହିଲେ— ରହନ୍ତୁ, ଟିକିଏ ରହନ୍ତୁ, ଆପଣଙ୍କର ଇୟେଟା— ପକେଟ୍‌ରେ ହାତ ଦେଲେ ସେମାନେ ।

ଅନାମିକା କହିଲେ— ଠିକ୍ ଅଛି, ଠିକ୍ ଅଛି ।

ସେମାନେ ପକେଟ୍‌ରେ ଥିବା ହାତଟାକୁ ପକେଟ୍‌ରୁ କାଢ଼ି ନେଇ କହିଲେ— ନା, ନା ଏ କ'ଣ ! ଆପଣ ନିଜେ କାହିଁକି—

ଗାଡ଼ି ଚାଲିବାର ଶବ୍ଦରେ ମିଳାଇଗଲା ସେମାନଙ୍କ କଥା ।

ଟିକିଏ ସମୟ ଗଲାପରେ ଅନାମିକା କହିଲେ— ତମ ନାଁ ସତ୍ୟବାନ ।

ସତ୍ୟବାନ ମୁଣ୍ଡ ତଳକୁ କରି କହିଲା— ହଁ ।

—ତା ସଙ୍ଗେ କୋଉଠି ଦେଖାହେଲା ?

—ସେ ତ ଅନେକ କଥା—

—ଅଳ୍ପ କଥାରେ ବୁଝେଇଦିଅ ତ.....

ହଠାତ୍ ମୁଣ୍ଡଟାକୁ ସିଧା କରି ବସିଲା ସତ୍ୟବାନ । ସ୍ପଷ୍ଟ ଗଳାରେ କହିଲା— ରାଗି ଘରୁ ପଳାଇ ଯାଇ ଚନ୍ଦନନଗରରେ ମଝିଆ ପିଉସୀଙ୍କ ଘର—

—"ଚନ୍ଦନ ନଗର ! ମଝିଆ ପିଉସୀ ଘର ?......" ଅନାମିକା ପ୍ରାୟ ଆର୍ତ୍ତସ୍ୱରରେ କହିଲେ— ସେଇଠି ଅଛି ଶମ୍ପା ?

—ଆଜ୍ଞା ହଁ । ମୁଁ ମଧ୍ୟ ଥିଲି । ଫେରିଆସିବାର ଉପାୟ ନ ଥିଲା, ଦେହ ବହୁତ ଖରାପ ହୋଇଯାଇଥିଲା ।

ଧୀରେ ଧୀରେ ଶମ୍ପାର ଖବର ଜଣାପଡ଼ିଲା ।

ହଠାତ୍ ପାରୁଲ ନାନୀ ଉପରେ ଭୀଷଣ ଅଭିମାନ ହେଲା ଅନାମିକାଙ୍କର । ବକୁଳ ଯେ କେତେ କଷ୍ଟ ପାଉଥିଲା, ସେ କଥା କ'ଣ ବୁଝିବା ଉଚିତ ନ ଥିଲା ତାର ? ମନର ଅଗୋଚର କିଛି ନାହିଁ, ସ୍ୱୟଂବରା ଶମ୍ପାର ପସନ୍ଦକୁ ଜମା ପ୍ରଶଂସା କରିପାରୁ ନ ଥିଲେ ଅନାମିକା । ତେବେକେ ମନ ଭିତରେ ଗୋଟାଏ ପ୍ରତ୍ୟୟ ଥିଲା ଶମ୍ପା ସଂପର୍କରେ । ସେଥିପାଇଁ ତା' ଲାଗି ମମତା ସହିତ ହିଁ କଥା କହୁଥିଲେ ।

—"କ'ଣ ଲେଖିଛି ସେ ଜାଣିଛ ?...... ପଚାରିଲେ ।

—ନା, ଏମିତି ବନ୍ଦ ଲଫାଫା ତ ଦେଇଛନ୍ତି ।

ଦେଇଛନ୍ତି !...... ଟିକିଏ ହସ ଲାଗିଲା ଅନାମିକାଙ୍କୁ ।

ଏହିପରି ସମୀହ ନେଇ କ'ଣ ଏମାନେ ଘର କରିବେ ? ବାଦଶାହାଜାଦୀ ଆଉ ନିଗ୍ରୋ କ୍ରୀତଦାସ ପରି ?

ଯଥେଷ୍ଟ ରାତି ହୋଇଯାଇଥିଲା, ଫାଙ୍କା ରାସ୍ତାରେ ଗାଡ଼ିଟା ଚାଲୁଥିଲା, ହଠାତ୍ ପୁଣି ସେତେବେଳ ପରି ଅଟକିବାକୁ ପଡ଼ିଲା । ପୁଣି ଶୋଭାଯାତ୍ରା !

ନା, ଏଇଲେ ଆଉ ରକ୍ତ ବଦଳରେ ରକ୍ତ ଚାହୁଁ ନାହାନ୍ତି ଶୋଭାଯାତ୍ରାକାରୀମାନେ । ଆଲୋକର ରଶ୍ମିରେ ଆଖି ଝଲସାଇ ଦେଇ ବ୍ୟାଗ୍‌ପାଇପ୍ ବଜାଇ ଚାଲିଛନ୍ତି । ବର ବାହାହେବାକୁ ଯାଉଛି ।

ଅନାମିକାଙ୍କ ମୁହଁରେ ଟିକିଏ ହସ ଫୁଟିଉଠିଲା ! ଆଜିର ଯାତ୍ରାଟା ମନ୍ଦ ନୁହେଁ । ଯିବା ସମୟରେ ଖୁନ୍ ବଦଳରେ ଲାଲ୍ ଖୁନ୍, ଫେରିବାବେଳେ ବାଜା ବାଦ୍ୟ-ଆଲୋକ ବତି ! ତେବେ ଦୁଇଟାଯାକ ରାସ୍ତାକୁ ଅଟକାଉଛନ୍ତି । ଏହି ହେଉଛି କଲିକତାର ଚରିତ୍ର । କଲିକତା ଗୋଟିଏ ଆଖିରେ ହସେ, ଗୋଟିଏ ଆଖିରେ କାନ୍ଦେ । ଏକ ହାତରେ ଛୁରୀ ଧାରୁଆ କରେ, ଅନ୍ୟ ହାତରେ ବଂଶୀ ବଜାଏ ।

ଘରର ପାଖାପାଖି ହେବା ଆଗରୁ ସତ୍ୟବାନ କହିଲା— ମୁଁ ଓହ୍ଲାଇ ଯାଉଛି ।

—ହେଲେ ଚିଠିଟା ତ ମୁଁ ଏ ପର୍ଯ୍ୟନ୍ତ ପଢ଼ିନି । ପଢ଼ି ଦେଖେ କ'ଣ ଯଦି ଉତ୍ତର ଦେବାର ଥିବ !

—ନା, ନା, ଆପଣ ଚିଠିରେ ହିଁ ଜବାବ ଲେଖିବେ । ମୁଁ ତ ଏଇଲେ ଯାଉନି ।

ଏଥର ଅନାମିକା ସିଧାସଳଖ ପଚାରିଲେ— ତମମାନଙ୍କର ବାହାଘରଟା ହେଇଗଲାଣି ? ମୁଣ୍ଡ ତଳକୁ କରି ସେ କହିଲା, ନା ।

—ତା'ହେଲେ ଏତେଦିନହେଲା ଏମିତି ଏକାଠି ବୁଲୁଛ ଯେ ?...... ଅନାମିକାଙ୍କ କଣ୍ଠ କଠୋର ହୋଇଛି ।

ଆସାମୀ ମୁହଁ ଟେକି କିଞ୍ଚିତ ଉଚ୍ଛ୍ୱସିତ ହୋଇ କହିଲା— ସେ ଜଣେ ଆଶ୍ଚର୍ଯ୍ୟ ମଣିଷ ! ଅଦ୍ଭୁତରକମର ଭଲ । ଏଭଳି ଉଚ୍ଚସ୍ତରର ମଣିଷ ମୁଁ ଜୀବନରେ ଦେଖିନି । କୋଉଠି ବା ଦେଖିବି ! ଗାଉଁଲୀଘରର ପୁଅ, କୁଲି ମଜୁରିଆ କାମ କରେ । ଅବଶ୍ୟ ତାଙ୍କ ମୁହଁରୁ ଆପଣଙ୍କ କଥା ଶୁଣିଛି, ମାନେ ଶମ୍ପାଦେବୀଙ୍କ ମୁହଁରୁ ।

ଅନାମିକା ହସି ପକାଇଲେ— ଯାଉ, ମୁଁ ତମର ମଝିଆପିଉସୀକୁ ହିଂସା କରିବିନି ତେବେ ମୋ ମତରେ ଚଞ୍ଚଳ ବାହା ହୋଇଯିବାଟା ଉଚିତ—

—ସେ ମଧ୍ୟ ସେଇଆ କହୁଛନ୍ତି— ମାନେ, ଶମ୍ପାଦେବୀ । ମୁଁ ମନା କରି କରି— "— କାହିଁକି ? ତମର ମନ ସ୍ଥିର ନାହିଁ ?"

ସତ୍ୟବାନ ମଳିନ ମୁହଁରେ କହିଲା— ସତ କହିଛନ୍ତି । ମତେ ଡର ଲାଗୁଛି । ସତରେ ତ ମୁଁ ଯୋଗ୍ୟ ନୁହେଁ ।

—ନିଜର ଯୋଗ୍ୟତାର ବିଚାର ସବୁବେଳେ ନିଜେ କରିହେବନି ବୁଝିଲ ? ଅନିବାର୍ଯ୍ୟକୁ ମାନି ନେବାକୁ ହିଁ ପଡ଼ିବ । ଝିଅଟା ଯେତେବେଳେ ଘରୁ ଚାଲିଯାଇ ତମରି ବେକ ଧରି ଝୁଲିପଡ଼ିଲା, ତମର ଆଉ କିଛି କରିବାର ନାହିଁ ? ହେଲେ ଟିକିଏ ବସି ତା'ପରେ ଯିବନି ?

—ଓ, ନା ନା । ଆପଣଙ୍କର ସେହି ଘର ପାଖକୁ ଯିବାକୁ ନିଷେଧ ଅଛି ।

ସେ ଓହ୍ଲାଇ ପଡ଼ିଲା । ତରବରରେ ଆଗେଇଗଲା ।

ଆଉ ଟିକିଏ ଗଲାପରେ ଓହ୍ଲାଇଲେ ଅନାମିକା, ଭଡ଼ା ଦେଇଦେଲେ । ଆସ୍ତେ ଆସ୍ତେ ଘର ଭିତରେ ପଶିଲେ, ତିନିତାଲାକୁ ଚଢ଼ିଲେ ।

ନିଜେ ନିଜେ ସେ ଆଶ୍ଚର୍ଯ୍ୟ ହୋଇଯାଇଛନ୍ତି । ଏହି ପ୍ରକାର ଗୋଟାଏ ପିଲାକୁ ପାଖରେ ବସାଇ ଗପ କରି ଆସିଲେ, ଆଗେ କେବେହେଲେ ଏମିତି ଘଟଣା ଘଟି ନ ଥିଲା । ଅଥଚ ବିତୃଷ୍ଣା ହୋଇନି । ତା'ଛଡ଼ା କେମିତି ଟିକିଏ ସ୍ନେହ-ମମତା ଅନୁଭବ କରୁଥିଲେ ସେ । ଆହା ବିଚରା, ଡରିଯିବା ସ୍ୱାଭାବିକ ।

କିନ୍ତୁ ଶମ୍ପାର ଏ ଖିଆଲ ମଧ୍ୟ କ'ଣ ତିଷ୍ଠି ରହିବ ? ପୁଣି ନୂଆ ହୃଦୟ ଖୋଜିବାକୁ ଯିବନି ତ ଶମ୍ପା ?

ଚିଠିଟିକୁ ହାତରୁ ବେଗ୍ ଭିତରେ ପୂରାଇ ଦେଇଥିଲେ ଅନାମିକା, ତେବେ଼କେ ଯେପରି ହାତଟାରେ କାହାର ସ୍ପର୍ଶ ଲାଗି ରହିଛି । ଭିତରେ ଖାଲି ଉଛୁଳୁଛି । ହେଲେ ମଧ୍ୟ ଶାନ୍ତ ମୂର୍ତ୍ତିରେ ଅଭିନୟ କରି ଚାଲିଛନ୍ତି ସେ । ସାରାଜୀବନ ଧରି ଯାହା ଆୟତ୍ତ କରିଛନ୍ତି ।

ଏତେବେଳ ହେଲା କ'ଣ ଚିଠିଟା ପଢ଼ିଦେଇ ପାରି ନ ଥାନ୍ତେ ? ରାସ୍ତାରେ କ'ଣ ଆଲୁଅ ନ ଥିଲା ? କିନ୍ତୁ ପଢ଼ି ନାହାନ୍ତି । ଏତେବେଳ ହେଲା ସମ୍ବରଣ କରିଛନ୍ତି ନିଜକୁ ।

କାରଣ ଚଟ୍‌ କିନା ସେହି ପରମ ପ୍ରାପ୍ତିଟିକୁ ସାରିଦେବାର ଇଚ୍ଛା ନ ଥିଲା । ଧୀରେ ସୁସ୍ଥେ ନିଜ ଘରେ ବସି ଆସ୍ତେ ସେ ଆବରଣକୁ ଉନ୍ମୋଚନ କରିବେ,

ଆସ୍ତେ ଆସ୍ତେ ଉପଭୋଗ କରିବେ । ସେଥିପାଇଁ ଚିଠିରେ କ'ଣ ଲେଖା ହୋଇଥିବ, ସେ ଅନୁମାନ ସୁଦ୍ଧା କରି ନାହାନ୍ତି !

କ'ଣ ଥାଇପାରେ ?

ହୁଏତ ଡାକରେ ଆସିବା ଚିଠି ହେଲେ ଏ ଧୈର୍ଯ୍ୟ ରଖି ପାରି ନ ଥାନ୍ତେ । ଡର ଲାଗିଥାନ୍ତା କେଉଁଠି କାଳେ ବିପଦ ଭିତରେ ଝିଅଟା ପଡ଼ିଯାଇନି ତ ?

କିନ୍ତୁ ଧୈର୍ଯ୍ୟ ଧରି ପାରୁଛନ୍ତି, କାରଣ ଚିଠିଟା ଆସିଛି ଏକ ଭରସାର ହାତ ଧରି ।

× × × × ×

ଅକ୍ଷରଗୁଡ଼ାକ ଯେମିତି ପୁରୁଣା ବନ୍ଧୁର ମୁହଁର ଆକୃତି ଧରି ହସରେ ଝଲସିଉଠିଲା ।

ପିଉସୀ,

ଗୋଟାଏ ଘର ଅଭାବ ଯୋଗୁ ବାହା ହୋଇପାରୁନି, କହିଲ ଏମିତି ପରମ ଦୁଃଖୀ ତିନିଜଗତରେ ଆଉ କିଏ ଅଛି ? ଯାଉ ସେ କଥା, ଏଇଲେ ଅଗତିର ଗତି ତମକୁ ହିଁ ଜଣାଉଛି, ଚଟ୍‌ପଟ୍ ଗୋଟାଏ କିଛି ବ୍ୟବସ୍ଥା କରି ଦିଅ । ଆଉ ଶୁଣ, ଚାକିରିଟିଏ ମୋର ଭାରି ଶୀଘ୍ର ଦରକାର । ମାନେ ଆସନ୍ତା ମାସଠାରୁ ହିଁ ଜଏନ୍ କରିବାକୁ ଚାହେଁ । ସବୁ ତ ଜାଣିଛ, ତାଛଡ଼ା ଦେଖିଲେ ହିଁ ବାକିଟା ବୁଝିପାରିବ (ମାନେ ପତ୍ରବାହକ ହିଁ ସେ ଅବତାର) । ଚଳେଇ ପାରିବେନି କହି ରେଜିଷ୍ଟ୍ରୀ ଅଫିସ୍‌ର ଛାୟା ସୁଦ୍ଧା ମାଡ଼ିବାକୁ ଯିବାକୁ ରାଜି ହେଉ ନାହାନ୍ତି । ଏଥର ବୁଝିଲ ମୋ ଜ୍ୱାଳା !

ବୁଝିଦେଇ ଚଟ୍‌ପଟ୍ କରି ସେହି ଦୁଇଟା ଠିକ୍ କରି ପକାଇ ମତେ ଖବର ଦେବ । ନ ହେଲେ ମୋ ମୁହଁ ଦେଖିବନି ।

ଏପର୍ଯ୍ୟନ୍ତ ମଝିଆପିଉସୀଙ୍କ ଘରେ ରହିଛି, ବୁଝିଲନା କେମିତି ବୀରାଙ୍ଗନା ? ବାପ ଉପରେ ତେଜ ଦେଖାଇ ବାପଙ୍କ ଭଉଣୀଙ୍କ ଘରେ ଯାଇ ରହିଲି । ପୁଣି ଏକା ନୁହେଁ, ସବାନ୍ଧବେ । ପିଉସୀ ତାଙ୍କୁ ଖୁଆଇ ଶୁଆଇ ଡାକ୍ତର ଦେଖାଇ ଔଷଧ-ପଥ୍ୟ ଦେଇ ପୁଣି ଚରିବାକୁ ଛାଡ଼ି ଦେଇଛନ୍ତି, କିନ୍ତୁ ଛାଡ଼ିଥିବା ଗୋରୁ କାଳେ ହଜିଯିବ ଏହି ଡରରେ ମରୁଛି । ଶୀଘ୍ର ଗୁହାଳରେ ପୂରାଇଦେବା ଦରକାର । ସେଥିପାଇଁ ଆଗ ସେହି ଗୁହାଳଟା ଦେଖ, ବୁଝିଲ ? ଅବଶ୍ୟ ସଙ୍ଗେ ସଙ୍ଗେ ଚାକିରିଟା ମଧ୍ୟ । ନିଜର ସ୍ୱାର୍ଥପାଇଁ ହିଁ କର ବାପା, ନଚେତ୍ ଯେତେଦିନ ପର୍ଯ୍ୟନ୍ତ ନ ଜୁଟିବ ତମ ମୁଣ୍ଡରେ ହିଁ ଲଦି ହେବି । ଶାଖାମୃଗ ପରି ଏ ଶାଖାରୁ ସେ ଶାଖା, ଏ ପିଉସୀ ମୁଣ୍ଡରୁ ଯାଇ ସେ ପିଉସୀ ମୁଣ୍ଡରେ ।

ତମେ ଅବଶ୍ୟ କିଛି କହିବନି, ତେବେ କହିପାରିଥାନ୍ତ ଘର ଛାଡ଼ି ଚାଲିଯିବାବେଳକୁ ତ ଥରଟେ କହିକରି ସୁଦ୍ଧା ଗଲୁନି, ଆଉ ବୁଢ଼ି ରହିଛୁ ତ ରହିଥିବୁ, ଏଇଲେ କେଉଁ ଲାଜରେ ଏଡ଼େ ଜୋର୍ କରିବାକୁ ଆସିଲୁ ? ଅନ୍ୟ କେହି ହେଲେ ନିଶ୍ଚେ କହିଥାନ୍ତା ।

କିନ୍ତୁ ଅନ୍ୟ କେହି ହେଲେ କ'ଣ ଦାବି କରିବାକୁ ଯାଇଥାନ୍ତି ? ତମେ ବୋଲି ସେଇଥିପାଇଁ । ଆଚ୍ଛା ପିଉସୀ, ମଝିଆପିଉସୀ ଆଉ ତମେ– ଜେଜେଙ୍କର ଏ ଦୁଇଟି ଝିଅ ପାଳିତା କନ୍ୟା-ଫନ୍ୟା ନୁହନ୍ତି ତ ? ଗୋଟିଆ ଗୋଟେଇ ନୁହଁନ୍ତି ତ ? ନ ହେଲେ ଧମନୀରେ ରାଜରକ୍ତର ଚିହ୍ନ କାହିଁକି ଦେଖୁନି ? ଦେଖାହେଲେ ଅନେକ ଗପ କରିବା । ଏବେ ଦେଖାର ଯୋଗାଡ଼ଟା ଯେମିତି ହେବ ସେଥିର ଉଦ୍ୟମ ଶୀଘ୍ର କରିବ । ବସାଘରଟାରେ ଟିକିଏ ବାରଣ୍ଡା ଯେମିତି ରହିଥାଏ ଦେଖିବ, ଆଉ ପାରିବ ତ ଦୁଇଟା ବେତ ମୋଡ଼ା କିଣି ରଖିବ ।...... କ'ଣ ? ଭାବୁଛ ତ, ଆହା ଯୋଗାଡ଼ କରିଛନ୍ତି ତ ଗୋଟାଏ ନିଧି ! ଚଷା, କୁଲି, ତା'ପାଇଁ ପୁଣି ବେତ-ମୋଡ଼ାର ଚିନ୍ତା ! କ'ଣ କରିବି କହ ? ମୋ କପାଳ ଯେମିତି ! ତା'ଛଡ଼ା ତ ଆଉ କେହି ମିଳିଲେ ନାହିଁ । ତେବେ ତୁନି ତୁନି କହୁଛି ପିଉସୀ, ମାଲଟା ଖାଣ୍ଟି । ନିର୍ଭେଜାଲ ।...... ତମର ଭାଇ ଭାଉଜଙ୍କ ଖବର କ'ଣ ? ଏଥର ତା'ହେଲେ କଲମ ରଖୁଛି ।

ଆଉଥରେ କଥା ଦୁଇଟା ମନେ ପକାଇ ଦେଉଛି ।

ସ୍ନେହ ଦେବ ।

ଇତି

ସେହି ଦୁଷ୍ଟ ଝିଅଟା

ଅନାମିକାଙ୍କର ମନେହେଲା ଅନେକଦିନର ଅନାବୃଷ୍ଟି ପରେ ବଡ଼ ସୁନ୍ଦର ଭଲ ଗୋଟାଏ ଅସରା ବର୍ଷା ହୋଇଗଲା ।

ଅନାମିକା ଓହ୍ଲାଇ ଆସିଲେ । ଆନନ୍ଦରେ ମନଟା ପୂରି ଯାଇଛି । କି ଆନନ୍ଦ, କି ମୁକ୍ତି !

ଅବଶ୍ୟ ଏମିତି ଦୁଇଟା କାମର ଭାର ଦେଇ ଦେଇଛି ଯାହା ଗନ୍ଧମାଦନ ପରି । ତେବେକେ ଭାରି ହାଲୁକା ଲାଗୁଛି । କିନ୍ତୁ ଏବେ କ'ଣ କରିବା କଥା ? ସାନ-ଭଉଣୀ ଆଉ ସାନଭାଉଜଙ୍କୁ ଜଣାଇବେନି ? ଆହା, ତା' କ'ଣ ଉଚିତ ? ବିଚରାର କି ଅବସ୍ଥା ହୋଇଛି ! ତା' ଛଡ଼ା ସାନଭାଇନାଙ୍କୁ କଥା ଦେଇଛନ୍ତି । ଖବର ଆସିଲାକ୍ଷଣି ଜଣେଇବି !

କଥା ଦେବା କଥା ଅଲଗା ।

ତେବେ ଶର୍ମାର ବାପା-ମା' ବେଶୀ ଖରାପ ଅବସ୍ଥାରେ ନାହାନ୍ତି । ଯଦିଚ ଖରାପରେ ଥିଲାପରି ଛଳନା କରୁଛନ୍ତି । ଅସଲରେ ଅନେକଦିନ ତଳୁ ସେମାନେ ଝିଅର ଖବର ପାଇଲେଣି । ପାରୁଲ୍‌ର ପୁଅ ମୋହନଲାଲ ତା'ର ମାମୁଁ ଘରେ ଜଣାଇ ଦେଇଥିଲା ।

ମାମୁଁମାନଙ୍କ ସଙ୍ଗେ ସାତଜନ୍ମ ହେଲା ଦେଖାଶୁଣା ନାହିଁ । ତା'ହେଲେ ବି କ'ଣହେଲା ? ଏଭଳି ଇମାର୍ଜେନ୍ସି କେସ୍‌ରେ ସେ ସବୁ ମାନ-ଅଭିମାନ ମନେରଖିବା ଚଳିବ ନାହିଁ । ଅବଶ୍ୟ ମାମୁଁ ଘରେ ଖବର ଦେବାର ଉଦ୍ଦେଶ୍ୟଟା ଠିକ୍ ମାମୁଁଙ୍କ ଦୁଶ୍ଚିନ୍ତା ଦୂର କରିବା ପାଇଁ ନୁହେଁ, ଭାବିଥିଲା ଖବର ପାଇଲାକ୍ଷଣି ମାମୁଁ ଝିଅର କାନ ଧରି ଘରକୁ ନେଇ ଆସିବେ ଆଉ ସେ ଅସଭ୍ୟ ମାଙ୍କଡ଼ଟାକୁ ପୁଲିସ୍‌ରେ ଧରାଇ ଦେବେ ।

ବୁଦ୍ଧିମାନ ମାମୁ ସେ ଦିଗକୁ ଯାଇ ନାହାନ୍ତି । ପାରୁଲ୍ ପାଖରେ ଅଛି । ୟାପରେ ଆଉ କ'ଣ ଅଛି ? କିନ୍ତୁ ଅନାମିକା ତା' ଜାଣି ନ ଥିଲେ ।

ସେଥିପାଇଁ ଅନାମିକା ଭାବୁ ଭାବୁ ଓହ୍ଲାଇଲେ, କେମିତି ଉଠାଇବେ କଥାଟା ? ସେମାନେ ଯଦି କହିବେ, କାଇଁ ଚିଠିଟା ଦେଖାଇଲ !

ତଳକୁ ଆସିଲେ । ଖାଇବା ଘର ଆଗରେ ଠିଆ ହୋଇଥିଲେ ସାନଭାଉଜ । ଅନାମିକାକୁ ଦେଖିଲାକ୍ଷଣି କହିଲେ— ଆସିଲାକ୍ଷଣି ଉପରକୁ ଉଠିଗଲ, ଗୋଟାଏ କଥା ଥିଲା କହିବାକୁ—

ଚମକିପଡ଼ିଲେ ଅନାମିକା । କଥାଟା କ'ଣ ? କି କଥା କହିବା ପାଇଁ ସେ ଏମିତି ଜଗି ଠିଆ ହୋଇଛନ୍ତି ? ସତ୍ୟବାନକୁ କେହି ଦେଖିଲେ ନା କ'ଣ ? ଅନାମିକା ସଙ୍ଗେ ଗୋଟିଏ ଗାଡ଼ିରେ ଆସିବାଟା ? ହୁଏତ ସେଇୟା ।

ତା' ଅର୍ଥ ବର୍ତ୍ତମାନ ସେ ନଣନ୍ଦଙ୍କୁ ନେଇ କାଠଗଡ଼ାରେ ପୂରାଇବେ । ଅନାମିକା ଶାନ୍ତ ହସ ହସି କହିଲେ— କ'ଣ କହ ?

ଭାଉଜ କହିଲେ— ଆଚ୍ଛା ଏଇଲେ ଥାଉ, ଆଗ ଖାଇଦିଅ ।

ଭାଉଜଙ୍କ କଣ୍ଠସ୍ୱରରେ ଯେପରି ଟିକିଏ କରୁଣା ଫୁଟିଛି । ଯେମିତି ଯାହା କହିବେ ତା ଖୁଆଇ ପିଆଇ କହିବେ ।

ଅର୍ଥାତ୍ ବକ୍ତବ୍ୟଟା ଅନ୍ୟ ଧରଣର । କିମ୍ବା ଫାଶୀ ଦେବେ, ତେଣୁ ତା' ଆଗରୁ—

—ଖାଇବା କଥା କ'ଣ ? କ'ଣ ହୋଇଛି ? ହଠାତ୍ କ'ଣ ହେଲା...... ଅନାମିକା ଠିଆ ହୋଇପଡ଼ି ପଚାରିଲେ ।

ଅଥଚ ଏକାବେଳେ ନ ଥିବା କଥା ନୁହେଁ । ଅଶୀ ବର୍ଷ ବୟସ ହୋଇଥିଲା ସନତ କକେଇଙ୍କୁ । କିନ୍ତୁ ସେଇଟା କ'ଣ ସାନ୍ତ୍ୱନାର ଶେଷ କଥା ? ବୟସ ହୋଇଥିଲା ଅତଏବ ପୃଥିବୀର କ୍ଷତିର ହିସାବ ଖାତାରେ ଆଉ ତାଙ୍କର ନାଁ ଲେଖା ହେବନି ? ତାଙ୍କର ଚାଲିଯିବା ପଥକୁ ଉଦାସୀନ ହୋଇ ଚାହିଁ ରହିଥିବ ପୃଥିବୀ ?

ପୃଥିବୀର ହିସାବରେ ସେଇୟା ! ସେଥିପାଇଁ ଅନାମିକାଙ୍କ କାନ ଭିତରେ ଗୋଟାଏ ଘର୍ଘର ଶବ୍ଦ ଯେପରି କହି ଚାଲିଛି— ଅବଶ୍ୟ ଦୁଃଖର କିଛି ନାହିଁ । ବୟସ ହୋଇଥିଲା !

ବୟସ ହୋଇଥିଲା ? ଅତଏବ ତାଙ୍କର ଆଉ ପୃଥିବୀ ନିକଟରେ କିଛି ପାଉଣା ନାହିଁ । ତାଙ୍କ ପାଇଁ ଯଦି କେଉଁଠି କାହା ହୃଦୟରେ ହାହାକାର ଉଠିବ, ସେଇଟା ହେବ ହାସ୍ୟକର ଆତିଶଯ୍ୟ ।

ସୁନା ପୁରୁଣା ହୋଇଗଲେ ତା'ର ମୂଲ୍ୟ କମି ଯାଏ ନାହିଁ, ଅଥଚ ସ୍ନେହର ପାତ୍ର ପୁରୁଣା ହୋଇଗଲେ ତାଙ୍କ ମୂଲ୍ୟ କମିଯାଏ । କାରଣ ସେ ଆଉ ପ୍ରୟୋଜନରେ ଲାଗୁ ନାହାନ୍ତି । ବିଚାର କରି ଦେଖ 'ଶୋକ'ର ମୂଳକଥା ହେଲା ପ୍ରୟୋଜନୀୟ ବସ୍ତୁକୁ ହରାଇବା । ଯେ ଯେତେ ପ୍ରୟୋଜନୀୟ ତାଙ୍କରି ପାଇଁ ସେତେ ଶୋକ । ଯେ ପୃଥିବୀର କୌଣସି ପ୍ରୟୋଜନରେ ଲାଗୁ ନାହିଁ, ତାକୁ ଅମ୍ଳାନ ଚିତ୍ତରେ ବିଦାୟ ଦେଇ କହ, ବୟସ ହୋଇଥିଲା ! 'କହ, ମଣିଷ ତ ଚିରଦିନର ନୁହେଁ !' ଆଉ ଯଦି କିଛି ସୌଜନ୍ୟର ଆବରଣ ଦେବାକୁ ଚାହଁ ତ କହ, ମୃତ୍ୟୁ ଅବଶ୍ୟ, ମୃତ୍ୟୁ ଅବଧାରିତ, ମୃତ୍ୟୁ ଅନିବାର୍ଯ୍ୟ ! ମୃତ୍ୟୁ ପରି ସତ୍ୟ ଆଉ କ'ଣ ଅଛି ? ଅତଏବ ଯାହା ଭିତରେ ଋଣର ବୋଝ, ଯାହାର ଚିତ୍ତରେ ମୂଲ୍ୟ ହ୍ରାସର ପ୍ରଶ୍ନ ନାହିଁ, ତାକୁ ସମସ୍ତଙ୍କ ସଙ୍ଗେ ଗଳା ମିଳାଇ କହିବାକୁ ପଡ଼ିବ, ତା'ତ ସତ !

ସେ ଆଉ କହିବା ସୁନ୍ଦର ହେବନି, ଠିକ୍ ଏ ମୁହୂର୍ତ୍ତରେ ଖାଇବା ଥାଳି ପାଖରେ ବସିବା କଷ୍ଟକର ହେବ ମତେ ।

ତା'ଛଡ଼ା ଅନାମିକା ଜାଣିଛନ୍ତି, ସେହି ଅକ୍ଷମତା ଟିକକ ପ୍ରକାଶ କରିବା ସଙ୍ଗେ ସଙ୍ଗେ ମୁଠା ମୁଠା ସାନ୍ତ୍ୱନାର ବାଣୀ ଆସି ହୃଦୟର ଗଭୀରତର ଅନୁଭୂତିଟି ଉପରେ ହାତୁଡ଼ି ବସାଇବେ । ତା' ସଙ୍ଗେ ଆହୁରି ଥରେ ଲୋକେ ସ୍ମରଣ କରାଇଦେବେ ଯାହା ପାଇଁ ତମର ଏ ଅକ୍ଷମତା, ତା'ର ବୟସ ହୋଇଯାଇଥିଲା ।

ଯାଠାରୁ ବରଂ ଖାଇବା ଥାଳି ଆଗରେ ଯାଇ ନିଃଶବ୍ଦରେ ବସିବା ଅନେକ ଭଲ । ନୀରବରେ ଯେତେ ସମ୍ଭବ ଗଳାବାଟେ ଠେଲିଦେବା ଅନେକ ଭଲ । କିନ୍ତୁ ସେଥିରେ ମଧ୍ୟ କ'ଣ ପୂରା ମୁକ୍ତି ମିଳେ ?

ଅନାମିକାଙ୍କୁ ଯେଉଁମାନେ ଭଲ ପାଆନ୍ତି, ଅନାମିକାଙ୍କ ପାଇଁ ଯାହାର ଦରଦ ମମତା ରହିଛି, ସେମାନେ କ'ଣ ବ୍ୟସ୍ତ ହୋଇ କହିବେନି– ଏ କ'ଣ ହେଲା ? କାହିଁ ଗୁଣ୍ଡାଏ ହେଲେ ତ ଖାଇଲ ନାହିଁ ? ଦିନଟାଯାକ– ବାହାରେ ତ ତମେ କୁ'ଠି କିଛି ଖାଅନି, ଛି, ଛି, ଇସ୍ ସବୁ ଯେ ପଡ଼ିରହିଲା । ସେଇଥିପାଇଁ କହୁଥିଲି, ଖିଆପିଆ ପରେ ଶୁଣିବ । ତମେ ବି ବ୍ୟସ୍ତ ହେଲ ମୁଁ ବି କହିଦେଲି । ମୋରି ଭୁଲ୍ ହୋଇଛି, ପରେ କହିଲେ ହୋଇଥାନ୍ତା ? ଆଚ୍ଛା, ଅନ୍ତତଃ ଦୁଧତକ ପିଇଦିଅ ।

ଅନାମିକାଙ୍କୁ ଏମିତି ମାୟାମମତା ଦେଖାଇବାର ସୁଯୋଗ ତାଙ୍କ ଘର କେବେ ପାଏ ? ଭାଗ୍ୟକ୍ରମେ ପୁଣି ଅନାମିକାଙ୍କ ସ୍ୱାସ୍ଥ୍ୟଟା ଚମତ୍କାର, ତେଣୁ ସେ ଦିଗରୁ ସୁବିଧା ନାହିଁ । ଅଥଚ ଯେଉଁମାନେ ଭଲ ପାଆନ୍ତି ସେମାନଙ୍କର ଇଚ୍ଛାହୁଏ କେବେ ଦିପଦ ମମତାର କଥା କହନ୍ତେ, ସେଥିପାଇଁ ସାନଭାଉଜ, ଯେଉଁ ସାନଭାଉଜଙ୍କର ଚିଡ଼ିଉଠିବା ଛଡ଼ା କଥା କହିବାର ଅଭ୍ୟାସ ନାହିଁ, ସେ ମଧ୍ୟ ନରମ ଗଳାରେ କହନ୍ତି– ଏ ଖବର ଶୁଣି ତମ ମନଟା ଯେ ଖରାପ ହୋଇଯିବ ସେକଥା ଜାଣିଥିଲି, ସତରେ ନିଜର କକେଇଙ୍କ ଭଳି ଭଲପାଆନ୍ତି ତମକୁ, ଆଉ ତମେ ମଧ୍ୟ ସେହିଭଳି ଭକ୍ତିଶ୍ରଦ୍ଧା କରୁଥିଲ, କିନ୍ତୁ ଦୁଃଖ କରିବାର ତ କିଛି ନାହିଁ । ମଣିଷକୁ ତ ଦିନେ ନିଶ୍ଚେ ଯିବାକୁ ପଡ଼ିବ ।'

ଅନାମିକାଙ୍କୁ ଜ୍ଞାନ ଦେଉଛନ୍ତି ସାନଭାଉଜ । ବୟସରେ ଅନାମିକାଙ୍କଠାରୁ ସାନ ହେଲେ ମଧ୍ୟ ବଡ଼ଭାଇର ସ୍ତ୍ରୀ ହିସାବରେ ସଂପର୍କଟା ମର୍ଯ୍ୟାଦାପୂର୍ଣ୍ଣ । ଏକ ନିଃଶ୍ୱାସରେ ଦୁଧତକ ପିଇଦେଇ ଉଠିପଡ଼ିଲେ ଅନାମିକା । ତା'ପରେ ମୁହୂର୍ତ୍ତେ ଠିଆ ହୋଇଯାଇ କହିଲେ– ହଁ, ତମକୁହିଁ ଗୋଟାଏ ଖବର ଦେବାର ଥିଲା, ସୁଖବର । ଆଜି ଶମ୍ପାର ଗୋଟିଏ ଚିଠି ପାଇଛି । ସେ ଚନ୍ଦନନଗରରେ ମଝିଆ ନାନୀ ପାଖରେ ଅଛି ।

ଚନ୍ଦନନଗରରେ ମଝିଆନାନୀ ଘରେ ଶମ୍ପା ରହିଛି, ଏ ଖବରଟା ସାନଭାଉଜଙ୍କ ପାଖରେ ନୂଆ ନୁହେଁ, ଆକସ୍ମିକ ମଧ୍ୟ ନୁହେଁ ତେବେବି ସେଇଟା ଦେଖାଇବା ଦରକାର । ପରିସ୍ଥିତି ଯେତେବେଳେ ସେହିପରି ସଜା ହୋଇଛି । ସେଥିପାଇଁ ସାନଭାଉଜଙ୍କୁ ଚମକି ଯିବାକୁ ପଡ଼ିଲା । କହିବାକୁ ପଡ଼ିଲା– ତା ମାନେ ? ପାରୁଲ୍ ପାଖରେ ଆଉ ଆମେ ମଲାପରି ପଡ଼ି ରହିଛୁ । ତମର ସାନଭାଇନା ତ ଲୁଚେଇ ଲୁଚେଇ ପୃଥିବୀକୁ ଓଲଟାଉଛନ୍ତି ।

ଅନାମିକା ଖାଲି କହିଲେ– ସେଇୟା ତ ।

ଯେଉଁ ଖବରଟିର ପ୍ରତ୍ୟାଶାରେ ଦିନରାତିର ସମସ୍ତ ମୁହୂର୍ତ୍ତଗୁଡ଼ିକ ଉତ୍କଣ୍ଠ ହୋଇ ରହିଥିଲା, ଯେଉଁ ଖବରଟି ପାଇଁ ସମସ୍ତ ମନଟା ଯେମିତି ଉଚ୍ଛୁଳିଉଠିବାର ଅପେକ୍ଷାରେ ଉଦ୍‌ବେଳିତ ହୋଇଥିଲା ସେହି ଖବରଟା କ'ଣ ଗୋଟାଏ ବ୍ୟର୍ଥ ଲଗ୍ନରେ ହିଁ ଆସି ପହଞ୍ଚିଲା !

ଆଉ ଏମିତି ହାସ୍ୟକର ଭାବରେ ତା'ର ପରିସମାପ୍ତି ଘଟିଲା ! ଏତେ ଉଦ୍‌ବେଗ, ଏତେ ଉତ୍କଣ୍ଠା, ଏତେ ଦୁଶ୍ଚିନ୍ତା ପରେ ଏଇୟା ! ବାପ ଉପରେ ରାଗି ପିଉସୀ ଘରେ ଯାଇ ବସିଛନ୍ତି ଝିଅ ! କି ଲଜ୍ଜା ! କି ଲଜ୍ଜା ! ସତରେ ସେହି ଖବରଟା ଦେବାରୁ ଅନାମିକାଙ୍କୁ ଯେମିତି ଲାଜ ଲାଗିଲା । ଯାଠାରୁ ଅନେକ ଭଲ ହୋଇଥାନ୍ତା ଶମ୍ପା ଯଦି ଗୋଟାଏ ବିପଦ ଭିତରେ ପଡ଼ି ଅନେକ କଷ୍ଟ ପାଇବାର ଖବର ଜଣାଇଥାନ୍ତା ।

ପାପ କେବେ ମନର ଅଗୋଚରରେ ନ ଥାଏ । ସତରେ ଅନାମିକାଙ୍କର ମନେହେଉଥିଲା ଶମ୍ପା ଯେପରି କେଉଁଠାରେ ବିପଦରେ ପଡ଼ି ଗୋଟାଏ ହେଲେ ଚିଠି ଦେଲା ନାହିଁ ଅଥବା ଶମ୍ପା ସଗୌରବରେ ଖବର ପଠାଇ ପାରିଲାନି— ପିଉସୀ ବାହାଘରଟା ସାରିଦେଇଛି । ଏବେ ଜଣାଇଲି, ତମମାନଙ୍କୁ ସେହି ଶୁଭଖବରଟି ଜଣାଇବା ଉଚିତ ବୋଲି ଭାବିଲି । ତମକୁ ଜଣାଇଦେଲେ ସମସ୍ତେ ଜାଣିବେ ।

ତା' ନୁହେଁ, ଏଭଳି ଦୀନ-ହୀନ ଖବରଟିଏ ପଠାଇଛି ଯେ, ସେଇଟାକୁ ପରିବେଷଣ କରିବାକୁ ଲାଜ ଲାଗିଲା ଅନାମିକାଙ୍କୁ ।

ତେବେକେ ଠିକ୍ ସେହି ମୁହୂର୍ତ୍ତରେ ଯଦି ସେ ଖବର ସଙ୍ଗେ ଆଉ ଗୋଟିଏ ହିମଶୀତଳ ଖବର ଆସି ନ ଥାନ୍ତା ! ଏଇଲେ କାହା କଥା ଭାବିବେ ଅନାମିକା ? ଯାହାଙ୍କ ପାଖରେ ରହିଛି ଆକଣ୍ଠ ଋଣର ବୋଝ ଅଥଚ ଜୀବନରେ କେବେହେଲେ ଶୁଝାଯାଇ ପାରି ନାହିଁ, ଅଥବା ଯାହା ଶୁଝାଯାଇ ପାରିବ ନାହିଁ, ଖାଲି ଆପଣାର ମନ ଭିତରେ ନିମଗ୍ନ ହୋଇ ତାଙ୍କ କଥାକୁ ମଥା ଆନତ କରି ସ୍ମରଣ କରାଯାଇପାରିବ ? ନା ଏଇ ଯୋଉ ଝିଅଟି ଦୁଇହାତ ବଢ଼ାଇ ଧାଇଁ ଆସିବାକୁ ଚାହୁଁଛି ଏକ ଗଭୀର ନିଶ୍ଚିନ୍ତତାରେ, ତା' କଥା ?

ଶମ୍ପା ଜାଣିଛି, ସେ ଯେତେ ଦୋଷ କରୁ ପଛକେ, ଯେତେ ଉତ୍ପାତ କରୁ, ଅନାମିକାଙ୍କ ହୃଦୟ-କୋଟରରେ ତା'ର ଅକ୍ଷୟ ସିଂହାସନ ପଡ଼ିଛି ।

ସାନଭାଉଜ ବର୍ତ୍ତମାନ ନିଜ କ୍ଷେତ୍ରକୁ ଓହ୍ଲାଇଲେ, କିନ୍ତୁ ଏକଥା ମଧ୍ୟ କହୁଛନ୍ତି, ଲୁଚାଇ ଆମ ପାଖକୁ ଖବରଟା ଦେବା କ'ଣ ମଝିଆନାନୀଙ୍କର ଉଚିତ ନ ଥିଲା ? ଆମେ କେମିତି ଦିନ କାଟୁଥିଲୁ ସେ କଥା କ'ଣ ସେ ଜାଣୁ ନ ଥିଲେ ?

ଠିଆ ହେବାକୁ ଆଉ ଇଚ୍ଛା ଲାଗୁ ନ ଥିଲା ଅନାମିକାଙ୍କୁ । ଇଚ୍ଛା ହେଉଥିଲା ଏହି ଆଲୋକ ଆଉ ଶବ୍ଦର ଜଗତରୁ ଘୁଞ୍ଚିଯାଇ ଟିକିଏ ଅନ୍ଧକାର ଭିତରେ ଆଶ୍ରୟ ନେବାକୁ, କିନ୍ତୁ ସେ ଇଚ୍ଛା କିପରି ପୂରଣ ହେବ ? ନିଜେ ହିଁ ତ ଖାଲ କାଟି କୁମ୍ଭୀରକୁ ଆଣିଛନ୍ତି ।

ଅନାମିକା କ'ଣ ବୁଝିପାରି ନାହାନ୍ତି ଶମ୍ପାର ଖବରଟା ଦେବା ସଙ୍ଗେ ଏହି ଶବ୍ଦର କୁମ୍ଭୀରଟା ତାଙ୍କୁ ଗ୍ରାସ କରିବାକୁ ଆସିବ ? ସହଜରେ ତା'ଠାରୁ ରକ୍ଷା ପାଇ ଚାଲିଯାଇ ପାରିବେନି ?

ନିଶ୍ଚେ ବୁଝିଥିଲେ, ହୁଏତ ସେଥିପାଇଁ ଟିକିଏ ଦ୍ୱିଧା କରିଥିଲେ । ଭାବିଥିଲେ ଆପାତତଃ ଭୁଲିଯିବାର ଛଳନା କଲେ ହୁଅନ୍ତାନି ? ଯଦି ଆଗାମୀ କାଲି ସକାଳେ କହିବେ— 'ଦେଖ ଘରକୁ ଆସୁ-ନ ଆସୁଣୁ ସେ ଖବରଟା ପାଇ ଏକାବେଳେ ଭୁଲିଗଲି ଶମ୍ପାର ଚିଠି କଥା !' ତା'ହେଲେ ?

କିନ୍ତୁ ତା'ହେଲେ କ'ଣ ଆହୁରି ବେଶୀ ଶବ୍ଦର କବଳରେ ପଡ଼ିବାକୁ ହେଇ ନ ଥାନ୍ତା ? କାହାର ମୂଲ୍ୟ ଅନାମିକାଙ୍କ ନିକଟରେ ବେଶୀ ତାରି ହିସାବ କରା ହୋଇ ନ ଥାନ୍ତା ? ଯେ ହଜିଗଲା, ନା ଯେ ହଜିଯାଇ ଫେରିଆସିଲା ?

ଭବିଷ୍ୟତର ସେହି ଶବ୍ଦ ଦଳର ଡରରେ ଅନାମିକା ଦ୍ୱିଧା କରି ମଧ୍ୟ ସାଙ୍ଗେ ସାଙ୍ଗେ ଖାଲଟା କାଟିଲେ । ତା'ଛଡ଼ା ମମତାବୋଧ କ'ଣ କିଛି କାମ କରିନି ? ଖବରଟା ପାଇଲେ ମଣିଷଟା ଠିଆହେବ, ଏକଥା କ'ଣ ମନେ ହୋଇନି ?

କିନ୍ତୁ ବଞ୍ଚିଗଲେ କ'ଣ ମଣିଷ ବର୍ତ୍ତିଯିବ ? ଅନ୍ୟର ଉଚିତ ଅନୁଚିତର ହିସାବ ନେବାକୁ ବସିବନି ?

ଅନାମିକା ପ୍ରାଣହୀନ ଗଳାରେ କହିଲେ— ହଁ ଉଚିତ । ବୋଧହୁଏ ଶମ୍ପାଟା ଜୋର୍‌ରେ ମନା କରିଦେଇଛି ।

—ବାଃ, ଭଲକଥା କହିଲ ତ—

କ୍ଷଣକ ପୂର୍ବେ ସାନଭାଉଜଙ୍କର ଯେଉଁ ମମତାବୋଧ ଟିକକ ଥିଲା ତା'ର ଆଉ ଚିହ୍ନ ନାହିଁ । ସେ ଏକାବେଳେ କ୍ରୁଦ୍ଧ ଏବଂ କ୍ଷୁବ୍ଧ ଗଳାରେ କହିଲେ, ତମର ଜଣେ ଜଣେ ଭଉଣୀଙ୍କୁ ଏକ ଅନ୍ୟ ବିଧାତା ଗଢ଼ିଥିଲେ ବାପା ! ଶମ୍ପା ଯଦି ମନା ବି କରିଥିବ, କରିଥିବ ତ, ଯୋଉ ଝିଅ ବାପ ଉପରେ ତେଜ ଦେଖାଇ ଘରକୁ ଛାଡ଼େ, ସେ କ'ଣ ଆଉ ଖବର ଦେବାକୁ ବାରଣ କରନ୍ତିନି ? କିନ୍ତୁ ସେଇଟା ଗୋଟାଏ କର୍ତ୍ତବ୍ୟର କଥା ହେଲା ?

ହେଲାନି, ସେଇଟା ମନେ ମନେ ସ୍ୱୀକାର ନ କରି ରହିପାରନ୍ତି ନାହିଁ ଅନାମିକା ? ପାରୁଲ୍ ନାନୀ ଉପରେ ଭୀଷଣ ଅଭିମାନ ହେତୁ ତାଙ୍କ ମନଟା ମଧ୍ୟ କଠିନ

ହୋଇଯାଇଥିଲା । ତେବେକେ ସ୍ୱୀକାର କରିବାରେ ଗୋଟାଏ ଦାୟିତ୍ୱ ରହିଛି, ସେଇଟା ଯେମିତି କଷ୍ଟ ମିଳାଇ ନିନ୍ଦା କଲା ଭଳି ମନେହେଲା ଅନାମିକାଙ୍କର । ସେଥିପାଇଁ ଧୀରେ କହିଲେ– ଝିଅଟା ତ ବହୁତ ବେଶୀ ଜିଦ୍‌ଖୋର୍ ନା ?

ଏତେବେଳକୁ ନିଜସ୍ୱ ଭଙ୍ଗୀରେ ଛିଟିକିଉଠିଲେ ସାନଭାଉଜ, କହିଲେ, କହିଲେ ତ ତମେ ରାଗିଯିବ, ବାହାରେ ତମ ନାଁର ଖ୍ୟାତି କେମିତି, କେତେ ମାନ୍ୟ-ସମ୍ଭ୍ରମ ତମର ବୁଦ୍ଧି ବିଷୟରେ କହିବା ଆମ ମୂର୍ଖମାନଙ୍କ ପକ୍ଷରେ ଶୋଭା ପାଉନି, ତେବେକେ ନ କହି ରହିପାରୁନି– ପିଉସୀଠାରୁ ମୁହଁ ପାଇ ଝିଅ ମୋର ଏମିତି ଅବାଧ ହୋଇଛି !!

ଏ ଅଭିଯୋଗ ଆଜି ନୂଆ ନୁହେଁ, ସୁଯୋଗ ପାଇଲାକ୍ଷଣି ଏମିତି କଥା କହୁଥାନ୍ତି ଭାଉଜ, ଚିରକାଳ କହି ଆସିଛନ୍ତି, ଆଜି ତ ଗୋଟାଏ ମୋକ୍ଷମ ସୁଯୋଗ ପାଇଛନ୍ତି ତେଣୁ ତୁନି ହୋଇ ରହିବା ଛଡ଼ା ଆଉ କିଛି କରିବାର ନାହିଁ, ସ୍ୱନାମଧନ୍ୟ ମାନ୍ୟଗଣ୍ୟ ଅନାମିକା ଦେବୀଙ୍କର ।

ଭାଉଜ ପୁଣି ଆରମ୍ଭ କଲେ– ଏଇଲେ ତ ପୁଣି ସାହସଟା ଆହୁରି ବଢ଼ିଗଲା । ଯୋଉ ପିଉସୀଙ୍କୁ ସେ ଜନ୍ମରେ ନିଜ ଆଖିରେ ଦେଖିନି, ପୁଣି ତାଙ୍କରି ସୁହାଗ ଜୁଟିଗଲା । ଭିତରେ ଭିତରେ ଚିଠି ଦିଆନିଆ ଚାଲୁଥିଲା ନିଶ୍ଚୟ, ନ ହେଲେ...... ନ ହେଲେ ଝିଅର ଏତେ ଦୁଃସାହସ ଆସିଲା କୁଆଡୁ ? ଆଉ ଚଟ୍‌କିନା ସେଠିକୁ ଚାଲିଗଲା କାହିଁକି ? ଯାଉ ତମମାନଙ୍କୁ ଆଉ ଦୋଷ କ'ଣ ଦେବି ? ସବୁ ମୋରି କପାଳ ! ନିଜ ଝିଅକୁ କେବେ ନିଜର କରି ପାରିଲିନି । ସେଥିପାଇଁ ନିଜ ଇଚ୍ଛା ଅନୁସାରେ ଗଢ଼ି ପାରିଲିନି ।

ହଠାତ୍ ଧୈର୍ଯ୍ୟଚ୍ୟୁତି ଘଟିଗଲା ଅନାମିକାଙ୍କର । ଯାହା ଅନାମିକାଙ୍କର ପ୍ରକୃତିବିରୁଦ୍ଧ ସେଇୟା ହୋଇଗଲା । ହଠାତ୍ ଅନାମିକା କହିଦେଲେ– ଝିଅକୁ ନିଜର କରି ପାଇ, ନିଜର ଇଚ୍ଛା ଅନୁସାରେ ଗଢ଼ିବାର ନମୁନା ମଧ ତ ଦେଖୁଛି–

କଥାଟା କହିଦେଇ ନିଜକୁ ନିଜେ ଧିକ୍କାର ଦେଲେ ଅନାମିକା, ଛି, ଛି, ସେ ଏମିତି କ'ଣ କରି ବସିଲେ ? ଏହି ହଠାତ୍ ଅଧୈର୍ଯ୍ୟ ହୋଇ ପଡ଼ିବା ମନ୍ତବ୍ୟଟି ପାଇଁ ଭବିଷ୍ୟତ୍‌ରେ କେତେ ଧୈର୍ଯ୍ୟଶକ୍ତି ସଂଗ୍ରହ କରିବାକୁ ପଡ଼ିବ । ସାନଭାଉଜ କ'ଣ ଏକଥା ଅପୂର୍ବ ଆଉ ଅଳକାର କାନରେ ନ ପକାଇ ଛାଡ଼ିବେ ? ତା'ପରେ ? ଆଉକିଛି ନୁହେଁ, କେହି ମାରିବେନି ଅନାମିକାଙ୍କୁ, କିନ୍ତୁ ସେହି ଶବ୍ଦ ! ଶହ ଶହ ଶବ୍ଦର ତୀର ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ଅନାମିକାଙ୍କୁ ।

ଯଦିଚ ନିଜେ ସାନଭାଉଜ ଦିନରାତି ଏ କଥା କହୁଥାନ୍ତି– ତାଙ୍କ ପୁତୁରାବୋହୂ ଅଳକା ଯେ ଫେସନ ଦେଖାଇବାକୁ ଯାଇ ଝିଅର ପରକାଳକୁ ସଫା କରି

ଦେଉଛି, ଏକଥା କାରଣରେ ଅକାରଣରେ କହନ୍ତି । ଆଉ ହୁଏତ ଅକାରଣରେ ନୁହେଁ । ଅଳକାର ସେହି ଝିଅ, ଯାହାର ଡାକ ନାଁ ଅନେକ ରହିଛି, ଭଲ ନାଁ ସତ୍ୟଭାମା, ସେହି ଝିଅଟା ସଂପର୍କରେ ଅନେକରକମ କଥା ଆସି ବାଜିଛି କାନରେ । ପ୍ରବୋଧଚନ୍ଦ୍ରଙ୍କ ଏହି ପବିତ୍ର କୁଳରେ ଏହି କୁଳକନ୍ୟାଟି ଦ୍ୱାରା କୁଆଡ଼େ ବେଶ୍ କିଛି କାଳି ଲେପିତ ହେଲାଣି, ତେବେ ମା', ବାପ ତା'ର ସହାୟ, ଭିତରେ ଭିତରେ ସେ କାଳି ପୋଛି ଦିଆଯାଇଛି । ଆଧୁନିକ ସଭ୍ୟତା ତ ଅସତର୍କତାର ଅଭିଶାପ ବହନ କରି ବୁଲିବାକୁ ବାଧ କରାଏନି !

ତେବେ ଇଦାନୀଂ ଯାହା କରାଉଛି ଅଳକା ଝିଅ ଦ୍ୱାରା, ସେଇଟା ପ୍ରବୋଧର କୁଳରେ କଳଙ୍କ ଲେପନ କଲେ ମଧ୍ୟ ଅଳକା ଗୌରବ ସହ ପ୍ରକାଶ କରୁଛି । କିଛିଦିନ ଏୟାର ହୋଷ୍ଟେସ୍‌ର ଚାକିରି କରି ଅନେକ ତେଜ ଦେଖାଇ ଏବେ ସତ୍ୟଭାମା ଆଉ ଏକ ଝଲମଲ ହେଉଥିବା ଦ୍ୱାରକୁ ଚିହ୍ନି ପ୍ରବେଶ କରିଛି । ଚିହ୍ନାଇଛି ତା'ର ଏକ ଦୂରସଂପର୍କର ମାଉସୀର ଝିଅ, କିନ୍ତୁ ଏଇଲେ କୁଆଡ଼େ ସତ୍ୟଭାମା ତାକୁ ଡେଇଁ ଅନେକ ଦୂରକୁ ଆଗେଇଯାଇଛି ।

ସତ୍ୟଭାମା କୁଆଡ଼େ 'କ୍ୟାବାରେ' ନାଚୁଛି ହୋଟେଲ୍‌ମାନଙ୍କରେ । ଅଳକା ନିଜେ ସଗର୍ବରେ କହିବୁଲେ— ଗୋଟାଏ ଜାଗାରେ ବନ୍ଧା ଚାକିରିରେ କୁଆଡ଼େ ଲୋକେ ତିଷ୍ଠିବାକୁ ଦିଅନ୍ତି ନାହିଁ, ନାନା ହୋଟେଲ୍‌ରୁ ଡକାଡକି କରି ଟାଣି ନେଇଯାଆନ୍ତି । ଗୁଣ ଥିଲେ ହିଁ ଗୁଣଗ୍ରାହୀମାନେ ସେଥିରେ ସନ୍ଧାନ ପାଆନ୍ତି ଏକଥାଟା ମଧ୍ୟ ଯେମିତି ସ୍ୱାଭାବିକ, ଗୁଣୀକୁ ଟଣାଟଣି କରିବା ମଧ୍ୟ ସେହିପରି ସ୍ୱାଭାବିକ । ଅତଏବ ଧରିନିଆଯାଇପାରେ ଅଳକା ଏସବୁ ମନରୁ ଗଢ଼ି କହେନି ।

ଅବଶ୍ୟ ପ୍ରଥମେ ଯେତେବେଳେ ସତ୍ୟଭାମାର ଏୟାର ହୋଷ୍ଟେସ୍ ଚାକିରିର ଖବରଟା ପ୍ରବୋଧଚନ୍ଦ୍ରଙ୍କ ଭିଟାର ସଂସାରଭୂମିରେ ଆସି କଚାଡ଼ିହୋଇ ପଡ଼ିଥିଲା, ସେତେବେଳେ ବିରାଟ ଏକ ଧୂମକୁଣ୍ଡଳୀ ଜାଗ୍ରତ ହୋଇ ଅନେକ ଆଲୋଡ଼ନ ସୃଷ୍ଟି କରିଥିଲା ।

ଅନାମିକା ସୁଦ୍ଧା ଅଳକାକୁ ଡାକି ପଚାରି ନ ପାରି ରହି ପାରି ନ ଥିଲେ,— କଥାଟା କ'ଣ ସତ ଅଳକା ?

ଅନାମିକା ଆଶ୍ଚର୍ଯ୍ୟ ହୋଇ ନ ଥିଲେ, ଆଶ୍ଚର୍ଯ୍ୟ ହେଲା ଅଳକା । କହିଲା— ସତ ନ ହେବାର କ'ଣ ଅଛି ପିଉସୀନାନୀ ? ଝିଅମାନେ ତ ଆଜିକାଲି କେତେ ଧରଣର ଚାକିରି କରନ୍ତି । ଆଉ ଇଏ ତ ବିଶେଷତଃ ଝିଅମାନଙ୍କର ଚାକିରି ।

ତା'ର ସେହି ବିସ୍ମୟଟା ହିଁ ଯେ ତା'ର ବଳ, ତାହା ବୁଝିପାରି ଅନାମିକା ଆଉ କଥା ବଢ଼ାଇ ନ ଥିଲେ । ଖାଲି କଥାର ସୂତାର ମୁହଁ ଘୂରାଇବାକୁ

ହିଁ ବୋଧହୁଏ କହିଥିଲେ, ତା' ସତ ତେବେ କଷ୍ଟକର ଚାକିରି । ଖାଇବା ଟାଇମ୍‌ର ଠିକ୍ ନାହିଁ । ହୁଏତ ନାଇଟ୍ ଡ୍ୟୁଟି, ଫ୍ୟୁଟି ଦେବାକୁ ପଡ଼ିବ—

—"ସେଇଟା ତ ହବ ନିଶ୍ଚେ ।" ଅଳକା ମୁହଁଟିକୁ ମାଜି ଚିକ୍କଣ କରି ଉତ୍ତର ଦେଇଛି— କଣ୍ଟ୍ରାକ୍ଟରେ ତ ସେହି କଥାହିଁ ଅଛି । କିନ୍ତୁ ସେ ସମସ୍ୟା ତ ଜଗତର ସବୁଠାରୁ ଅଧିକ ପବିତ୍ର ପେସା ନର୍ସମାନଙ୍କର ମଧ୍ୟ ଅଛି ।

ଅନାମିକା ଆଉ କଥା କହିନାହାନ୍ତି, କିନ୍ତୁ କଥା କହିଥିଲେ ଅନାମିକାର ସାନଭାଇନା । ଅଳକାକୁ ଡାକି ନୁହେଁ, ଅପୂର୍ବକୁ ଡାକି କହିଥିଲେ । ନିଜକୁ ବଂଶମର୍ଯ୍ୟାଦାର ଧାରାବାହିକ ହିସାବରେ ଧରିନେଇ ପ୍ରବୋଧଚନ୍ଦ୍ରଙ୍କ ପରିତ୍ୟକ୍ତ ମଶାଲଟିକୁ ଟେକି ଧରି ତୀବ୍ର ପ୍ରଶ୍ନ ପଚାରିଥିଲେ— ଘରେ ଏ ସବୁ କ'ଣ ହେଉଛି ଅପୂର୍ବ ? ତମେମାନେ କ'ଣ ଭାବିଛ ଛାତି ଉପରେ ବସି ଦାଢ଼ି ଉପୁଡ଼ାଇବ ? ଘରେ ବସି ଯାହା ଇଚ୍ଛା ତା କରିବ ?

ଭାରି ଶାନ୍ତ ଗଳାରେ ଅପୂର୍ବ କହିଥିଲା— ହଠାତ୍ କ'ଣ ପାଇଁ ଏମିତି ଉତ୍ତେଜିତ ହେଉଛ ସାନକକେଇ, ମୁଁ ବୁଝିପାରୁନି ତ !

ସାନକକେଇ ଆହୁରି ଅଧିକ ଉତ୍ତେଜିତ ହେଲେ, ଏଥିରେ ଆଶ୍ଚର୍ଯ୍ୟ ହେବା କଥା ନୁହେଁ । ସେ କହିଲେ, ନ ଜାଣିଲା ପରି କହନା ଅପୂର୍ବ ! ଝିଅକୁ ଏଥର ହୋଷ୍ଟେସ୍ ଚାକିରି କରିବାକୁ ପଠାଇଛୁ, ଏ କଥା କ'ଣ 'ଅସ୍ୱୀକାର କରିବୁ ?

—କାହିଁକି ? ଅସ୍ୱୀକାର କରିବାକୁ ଯିବି କାହିଁକି ? ଅପୂର୍ବ କହିଥିଲା— ଝିଅକୁ ତ ମୁଁ ଚୋରି କି ଡକାଏତି କରିବାକୁ ପଠାଇନି ! ଚାକିରି କରିବାକୁ ପଠାଇଛି, ସେଥିରେ ଆପତ୍ତି କଲେ—

ସାନ କକେଇ ପୁତୁରାର କଥା ସରିବାକୁ ଦେଲେ ନାହିଁ, ପ୍ରବୋଧଚନ୍ଦ୍ରଙ୍କ ଉତ୍ତରାଧିକାରୀର କଣ୍ଠରେ କହିଥିଲେ— ମୁଁ କହିବି ଚୋରି କରିବାକୁ କେବଳ ପଠାଇଛୁ । ତମେମାନେ— ତମେ ଦି'ଜଣ ସ୍ୱାମୀ ସ୍ତ୍ରୀ ମିଶି ନିଃଶବ୍ଦରେ ବସି ସିନ୍ଧି କାଟି କାଟି ଏ ବଂଶର ମାନସମ୍ଭ୍ରମ ସଭ୍ୟତା, ଭବ୍ୟତା ସବୁ କିଛି ଚୋରି କରିଛ ଏ ଝିଅଟିକୁ ଧରି ।

— ଏ ବାପା ! ସାନ କକେଇ, ତମେ ଯେ ଭାରି ଜଟିଳ ଉପମା-ଫୁପମା ଦେଉଛ ଦେଖୁଛି ! ତା'ହେଲେ କହିବାକୁ ପଡ଼ିବ, ଡକେଇତିର ଭାରଟା ତମେ ବୋଧହୁଏ ତମ ନିଜର ଝିଅକୁ ଦେଇଛ ?

ସେତେବେଳେ ଶର୍ମା ଚାଲିଯାଇ ନ ଥିଲା । ହେଲେ ଉଡୁଥିଲା ତ ? ଆକାଶରେ ଉଡ଼ନ୍ତା ସେହି ଚେହେରାଟା ସମସ୍ତଙ୍କ ଆଖିରେ ପଡ଼ିଥିଲା ।

ତଥାପି ସାନକକେଇ କହିଥିଲେ— ବାପ-କକେଇଙ୍କୁ ଅପଦସ୍ଥ କରିବା ଭିତରେ କୌଣସି ସଭ୍ୟତା ନାହିଁ ଅପୂର୍ବ !...... ପ୍ରବୋଧଚନ୍ଦ୍ରଙ୍କର ସାନପୁଅ କହିଲେ । ଯୌବନ ସମୟରେ ଯାହାଙ୍କର ନିଜର ସେହି କଥାରେ ହିଁ ଆମୋଦ ରହିଥିଲା ବରାବର ।

କିନ୍ତୁ ଯୌବନ ସମୟ ତ ଚିରକାଳର ନୁହେଁ, କେବେ କେଉଁ ଫାଙ୍କରେ ଯୌବନସମୟ ନିଜର ଔଦ୍ଧତ୍ୟ ଆଉ ଉନ୍ନାସିକତା ଅହମିକା ଆଉ ଆତ୍ମବୋଧ, ପ୍ରତିବାଦ ଆଉ ପରବାୟ ନ ଥିବାର ପୋର୍ଟଫୋଲିଓଟିକୁ ଫେରସ୍ତ ନେଇ ନିଃଶବ୍ଦରେ ଚାଲିଗଲାଣି । ହୃତସର୍ବସ୍ୱ ପ୍ରୌଢ଼ତ୍ୱ ସେତେବେଳେ ଆପଣାର ଅତିଥିକୁ ଭୁଲିଯାଇ ଯୌବନର ଦୋଷତକ ଖୋଜି ବୁଲେ, କ୍ରୁଦ୍ଧ ହୁଏ ଯୌବନର ଔଦ୍ଧତ୍ୟ ଦେଖି ।

ଅପୂର୍ବର ସାନକକେଇ ରାଗିଗଲେ, କହିଲେ— ମୋର ଝିଅକୁ ମୁଁ ଆଉ ପ୍ରଶଂସା କରି ବୁଲୁନି, ଆଉ ପ୍ରଶ୍ରୟ ଦେଉନି ତାକୁ । ତା'ଛଡ଼ା ଘର ଭିତରେ ନାଚୁ, ଡେଉଁ, ଯାହା କରୁ, ବାହାରେ ବଂଶର ପ୍ରେଷ୍ଟିଜ୍‌ର କଥା ରହିଛି ।

—ଝିଅମାନେ ଚାକିରି କଲେ ବଂଶର ପ୍ରେଷ୍ଟିଜ୍ ଚାଲିଯାଏ, ଏ କଥା ଏ ଯୁଗରେ ବଡ଼ ହାସ୍ୟକର ସାନକକେଇ !

—ଚାକିରି କରିବାଟା ଯେ ଦୋଷ ସେ କଥା ତ ମୁଁ ତତେ କହିନି, ସେ ଚାକିରିଟା ଭଦ୍ରଲୋକଙ୍କ ଝିଅମାନଙ୍କ ପକ୍ଷରେ ଉପଯୁକ୍ତ ନୁହେଁ, ସେ କଥାଟା କହୁଛି ।

ଆଖପାଖରେ କେଉଁଠି ଅଳକା ଥିଲା, ସେ ଆସି ଅତି ଧୀରେ କହିଲା— ଏକଥା ଏଠି ଯାହା କହିଲେ କହିଲେ, ବାହାରେ କହିବେନି କକେଇ ! ବରଂ ଅନୁସନ୍ଧାନ କରି ଦେଖିବେ, ଯୋଉସବୁ ଝିଅ ସେଠାରେ ଅଛନ୍ତି, ସେମାନେ କି ପ୍ରକାର ଘରୁ ଆସିଛନ୍ତି ।

ସାନକକେଇ ଥରେ ଦିଗ ହଜେଇ ଦେଇଥିବା ପରି ଚାରିଆଡ଼କୁ ଚାହିଁ ବୋକା ପରି କହିଲେ— ସେମାନେ ବଙ୍ଗାଳୀ ନୁହଁନ୍ତି ।

କହିବା ବାହୁଲ୍ୟ ଏଥର ନ ହସି ରହିପାରିଲାନି ଅଳକା, କହିଥିଲା— ବାଃ ! ତା'ହେଲେ ଆପଣଙ୍କ ମତରେ ଯେଉଁମାନେ ବଙ୍ଗାଳୀ ନୁହଁନ୍ତି, ସେମାନେ ଭଦ୍ରଲୋକ ନୁହଁନ୍ତି ?

—"ସେକଥା ନୁହେଁ— " ସାନକକେଇ ତୀବ୍ର କଣ୍ଠରେ କହିଲେ— ତମେ ତ ସବୁ କାଳେ ଅଖାଡୁଆ ତର୍କ କରିବ, ସେମାନଙ୍କ ସମାଜରେ ଯାହା ଚଳେ ଆମ ସମାଜରେ ତା' ଚଳେନି । ବଙ୍ଗାଳୀଙ୍କର ଗୋଟାଏ ଅଲଗା କଲ୍‌ଚର୍ ଅଛି—

—ସେହି ଥିବାର ଆନନ୍ଦରେ ଆମେ ମରିକରି ରହିଛୁ କକେଇ, କେଉଁକାଳୁ ମରି ଭୂତ ହୋଇଯାଇଥିବା କଲଚର୍‌ର ଶବସାଧନା କରୁଛୁ ! ମୁଁ ସେ ସବୁ ମାନେ ନାହିଁ । ମୁଁ ବିଶ୍ୱାସ କରେ ଯୁଗ ସଙ୍ଗେ ପାଦ ପକାଇ ଚାଲିବାକୁ ପଡ଼ିବ ।

କିନ୍ତୁ ପରେ ଏହି ଅପୂର୍ବ ହିଁ ତା'ର ସାନକକେଇଙ୍କ ଝିଅ ହଜିଯିବାର ଘଟନାରେ ବ୍ୟଙ୍ଗହସ ନ ହସି ଉଦ୍‌ବିଗ୍ନର ଭୂମିକା ନେଇଥିଲା କାହିଁକି ? ଉଦ୍ୟୋଗୀ ହୋଇ ପିଉସୀକୁ ଢେରା କରିବାକୁ ଯାଇଥିଲା କାହିଁକି, ତା'ର ଠିକଣାର ସନ୍ଧାନରେ ?

କାରଣ ଅଛି, ଗୂଢ଼ କାରଣ ।

ଯୁଗ ସଙ୍ଗେ ପାଦ ପକାଇ ଚାଲିବାକୁ ଯାଇ ହଠାତ୍ ପାଦ ଖସିଯିବାରୁ ଅପୂର୍ବର ଝିଅ ସତ୍ୟଭାମା ସେତେବେଳେ ପୁଣି କେତେଦିନ ପାଇଁ 'ମାମୁଁଘର'କୁ ବୁଲିବାକୁ ଯାଇଛି । ବ୍ୟଙ୍ଗହସର ପ୍ରତିକ୍ରିୟାଟା ଯଦି ସହସା ସେହି 'ମାମୁଁଘର' ଠିକଣାଟାକୁ ଆବିଷ୍କାର କରି ଦେବ !

କିନ୍ତୁ ଝିଅ ଯଦି ସ୍ୱାସ୍ଥ୍ୟ-ଶକ୍ତି ଉଦ୍ଧାର କରି ମାମୁଁଘରୁ ଫେରିଆସି ପୁଣି ପରବାୟ ନ ଥିବାର ଭୂମିକା ନିଏ, ତେବେ ଅପୂର୍ବର ପୁଣି ଯୁଗ ସଙ୍ଗେ ତାଳ ପକାଇ ଚାଲିବା ଛଡ଼ା ଆଉ ଉପାୟ କ'ଣ ଅଛି ? ଏହି ନୂତନ ପାଲା ବଦଳର ପାଲାରେ ଅପୂର୍ବର ଝିଅ 'କ୍ୟାବାରେ' ନାଚରେ ଓସ୍ତାଦ ହୋଇଯାଇଛି, କଥାଛଳରେ ଲୋକଙ୍କୁ ଶୁଣାଇ ଅପୂର୍ବ କହୁଥାଏ— ଝିଅର କଥା ତା' ମା' ଯାହା ଭଲ ବୁଝୁଛି କରୁଛି, ମୁଁ ତା ଭିତରେ ପଶେନି, ଆଜିକାଲିର ସମାଜରେ କ'ଣ ଚଳୁଛି ଆଉ କ'ଣ ନ ଚଳୁଛି ସେକଥା ତା'ର ମା' ଭଲ ବୁଝୁଛି ।

ଅତଏବ ଅନ୍ୟମାନେ ମଧ୍ୟ ଭଲ ବୁଝି ଚୁପ୍ ହୋଇଯାଇଛନ୍ତି । ବହୁତଦିନ ତଳୁ ଅପୂର୍ବର ମା'ଙ୍କର ପୁଅ-ବୋହୂଙ୍କ ସହିତ ବାକ୍ୟାଳାପ ବନ୍ଦ । ଝିଅମାନେ ଆସନ୍ତି ମା'ଙ୍କ ଘରେ ମିଟିଂ କରନ୍ତି, ଚାଲିଯାଆନ୍ତି । ଅଳକା କହେ— ଶାପଟା ମୋ ଭାଗ୍ୟରେ ବର ପାଲଟିଛି ! ନ ହେଲେ ସେ ଚାରିଟା ନଣନ୍ଦଙ୍କ ଜଞ୍ଜାଳ ସମ୍ଭାଳିବାକୁ ପଡ଼ିଥାନ୍ତା ବାର ମାସ !

ସେ କଥାଟା ଅପୂର୍ବ ମଧ୍ୟ ସ୍ୱୀକାର କରୁଛି ।

ସତ୍ୟଭାମାର ଏହି ନୃତ୍ୟ ତ ଖାଲି ଭୂତର ନୃତ୍ୟ ନୁହେଁ । ସେଥିରୁ ଭଲ ପଇସା ଆସୁଛି । ତା'ହେଲେ ? ଏଇଟା ମଧ୍ୟ ଗୋଟାଏ ଚାକିରି । ବଜାର ତ ନିଆଁ, ଘରର ଖର୍ଚ୍ଚ ଯଥେଷ୍ଟ ବଢ଼ିଯାଇଛି, ଜଣକର ଉପାର୍ଜନରେ ସମ୍ଭାଳି ହେଉ ନାହିଁ । ଝିଅ ଆଉ ପୁଅ ଯେତେବେଳେ ସମାଜରେ ସମାନ ବୋଲି

ସ୍ୱୀକୃତ, ସେତେବେଳେ ବାପାଙ୍କ ଘରକୁ ଅଚଳ ଅବସ୍ଥାରୁ ସଚଳ କରିବାର ଦାୟିତ୍ୱ ଝିଅ ବହନ କଲେ ଲାଜ କ'ଣ ? କିନ୍ତୁ ପ୍ରବୋଧଚନ୍ଦ୍ର ତ ଲାଜରେ ଲାଲ୍ ହୋଇଯାଇ ଅନ୍ତରୀକ୍ଷରୁ ବଜ୍ର ନିକ୍ଷେପ କଲେ କେବେ ? ଯେଉଁଥିରେ ତା'ର କଳଙ୍କ ସହିତ ଭିଟାଟା ଚୂନା ହୋଇଯାଇଥାନ୍ତା ?

କିନ୍ତୁ ପାଖାପାଖି ଲୋକଙ୍କୁ ଲାଜ ଲାଗେ । ସେଥିପାଇଁ ଅନାମିକା ତାଙ୍କର ସାନଭାଉଜଙ୍କ ଆକ୍ଷେପ ଶୁଣି କହି ପକାଇଛନ୍ତି– ଝିଅକୁ ନିଜର ଇଚ୍ଛା ଅନୁସାରେ ମଣିଷ କରି ଗଢ଼ିବାର ନମୁନା ତ ଦେଖିଲି ।

କହିଦେଇ ବୁଝିଲେ ଭାରି ଅସତର୍କତା ହୋଇଗଲା । ଏହି ଅସତର୍କତା ସାନଭାଉଜଙ୍କୁ ଶତ୍ରୁଶିବିରକୁ ଟାଣି ନେଇଯାଇପାରେ । କିନ୍ତୁ କ'ଣ ଆଉ କରାଯିବ ! ହାତର ଢେଲା ଆଉ ମୁହଁର କଥା ଗୋଟାଏ ଜିନିଷ, ଯା ତ ଚିରକାଳର କଥା ।

ସାନଭାଉଜ ଅବଶ୍ୟ ଫଁ କିନା ବାହାରିଲେ, କହିଲେ ସମସ୍ତେ ସମାନ ନୁହନ୍ତି ବୁଝିଲ ନଣନ୍ଦ ?...... ରାଗିଗଲାବେଳେ ସବୁସମୟରେ ସେ 'ନଣନ୍ଦ' କଥାଟା ବ୍ୟବହାର କରୁଥିଲେ । କହିଲେ– ଅଳକା ସହିତ ପୁଣି ତୁଳନା କରନି । ହେଲେ ଦେଖାଇ ପାରିଲିନି, ସେଇଟା ମୋର ଦୁର୍ଭାଗ୍ୟ !

ସେହି ରାଗର ମୁହାଁମୁହିଁ ହୋଇ କେତେବେଳ ପର୍ଯ୍ୟନ୍ତ ଆଉ ଠିଆହୋଇ ଯୁଦ୍ଧ କରିବେ ଅନାମିକା ?

କହିଲେ, 'ଆଚ୍ଛା, ଖବରଟା ସାନଭାଇନାଙ୍କୁ ଦେଇଦେବ–

ଚାଲିଯିବା ପାଇଁ ପାଦ ବଢ଼ାଇଲେ ।

ସାନଭାଉଜ ପଚାରିଲେ– ଚିଠିଟା କାହିଁ ?

ଅନାମିକା କହିଲେ– ଚିଠିଟା ! ସେଇଟା ତ ମୋ ଘରେ ଅଛି ।

–"ଆଚ୍ଛା ତମେ ଯାଅ, ତମକୁ ଆଉ ଓହ୍ଲାଇବାକୁ ପଡ଼ିବନି– ମୁଁ ଯାଇ ନେଇଆସୁଛି !"...... କହିଲେ ସାନଭାଉଜ ।

ଅନାମିକା ପ୍ରମାଦ ଗଣିଲେ । କହିଲେ– ଆଉ କହନି, ସେଇଟା ହେଇଛି ଜଣେ ପାଗଳର ଚିଠି ପରି ! ମୋଟକଥା, ସେ କଥାଟା ହିଁ ଜଣାଇଛି ।

ଅର୍ଥାତ୍ ତମେ ଧରିନିଅ ଚିଠିଟାକୁ ସେ ଆଉ ଦେଖାଇବେନି ।

ମୁହଁ କଳା କରି ସାନଭାଉଜ କହିଲେ– ଓଃ ! ହେଲେ ଚିଠିଟା ତମେ ପାଇଲ କେତେବେଳେ ? ମୁଁ ତ ସେ ଖରାବେଳର ଡାକ ଆସିଲା ପରେ ମଧ ଲେଟର୍-ବାକ୍ସଟାକୁ ଦେଖି ଆସିଛି– ପ୍ରସୂନର ଚିଠି ଆସିଛି କି ନାହିଁ ।

— ଓଃ । ଡାକରେ ତ ଆସିନି । ଜଣେ ଲୋକ ଆଣି ହାତରେ ଦେଇଗଲା ।

— ଲୋକ ? କି ପ୍ରକାର ଲୋକ ?...... ଭାଉଜଙ୍କ କଣ୍ଠରେ ଆର୍ତ୍ତନାଦ ଶୁଭିଲା ଅନାମିକା ମିଛ କହିଲେନି, କହିଲେ— କଜ୍ଜଳ-କଳା ଲୋକଟିଏ —

'— କଜ୍ଜଳ-କଳା !' ଅତଏବ ନିଶ୍ଚିନ୍ତ ହୋଇପାର ।

ପୁଣି କ'ଣ ଭାବି ପାହାଚଧାଡ଼ିର ମୁହଁକୁ ଠିଆହୋଇ ପଚାରିଲେ ଅନାମିକା — ସାନଭାଇନା କ'ଣ କାଲି ଚନ୍ଦନନଗରକୁ ଯିବେ ?

— ଚନ୍ଦନ ନଗରକୁ ? ତମର ସାନଭାଇନା ?

ସାନଭାଉଜ ତୀକ୍ଷ୍ଣ ହୋଇଗଲେ "— ପ୍ରାଣ ଥାଉ ଥାଉ ନୁହେଁ । ଆଉ ଯଦିବା ହଠାତ୍ ବୁଦ୍ଧିଭ୍ରଂଶ ହୋଇଯାଇପାରେ, ମୁଁ ଘରେ ଚାବି ଦେଇ ଅଟକାଇ ରଖିଦେବି ।

ଅନାମିକାଙ୍କୁ ଆଡ଼େଇ ଦେଇ ତାଙ୍କ ପାଖବାଟେ ସାନଭାଉଜ ଆଗ ତରବରରେ ପାହାଚ ଚଢ଼ି ଚାଲିଗଲେ ।

ଅନାମିକା ଆସ୍ତେ ଆସ୍ତେ ପାହାଚଗୁଡ଼ାକ ଚଢ଼ିବାକୁ ଲାଗିଲେ । ତିନି ମହଲାକୁ ଚଢ଼ିବାକୁ ପଡ଼ିବ ।

ଘରକୁ ଆସି ପୁଣି ହାତରେ ଧରିଲେ ଚିଠିଟାକୁ, କିନ୍ତୁ ପଢ଼ିଲେ ନାହିଁ । ଭାବିବାକୁ ଲାଗିଲେ — ସନତକକେଇଙ୍କ ଘରକୁ ଥରଟିଏ ଯିବାର ଦରକାର ଆଉ ଏବେ ଅଛି କି ନାହିଁ ।

ଶୁଣିଲାକ୍ଷଣି ଭାବିଥିଲେ, ସେଇଲେ ଖବର ଆସିଛି, ଦଉଡ଼ିଗଲେ ଶେଷଯାତ୍ରା ସମୟରେ ମଧ୍ୟ ଦେଖିହେବ, କିନ୍ତୁ ନା । ସାନଭାଉଜ କହି ଉଠିଥିଲେ ସେ କ'ଣ ! ଏବେ ଯାଇ କ'ଣ କରିବ ? ସେ ତ କାଲି ସକାଳେ ମରିଯାଇଛନ୍ତି ।

କହିଲେ...... ଆଚ୍ଛା ଖବରଟା...... ଗତକାଲି ସକାଳେ ସନତକକେଇ ମରିଯାଇଛନ୍ତି । ଏହି ସହରରେ ହିଁ ଗୋଟିଏ ଜାଗାରେ । ଅଥଚ ଅନାମିକା ଯଥାନିୟମରେ ଖାଇଛନ୍ତି, ଶୋଇଛନ୍ତି । ସେହି ସାହିର ପାଖ ରାସ୍ତା ଦେଇ ହିଁ ମଟରରେ ବସି ଯାଇଛନ୍ତି 'ରବୀନ୍ଦ୍ର ନଜରୁଲ' ସନ୍ଧ୍ୟା ପାଳନ କରିବାକୁ ।

ହଠାତ୍ ପୁଣି ଅନେକ ଦିନ ଆଗର ସେଇ ଗୋଟିଏ ଦିନର କଥା ମନେପଡ଼ିଲା । ମଣିଷ କ'ଣ କରିପାରେ ଆଉ କ'ଣ କରି ନ ପାରେ ! ସେଦିନ ମଧ୍ୟ ତ ସଭା କରିଥିଲେ ଅନାମିକା, ଯେଉଁଦିନ ନିର୍ମଳର ଖବରଟା ପାଇଥିଲେ ସଭା ମଣ୍ଡପରେ ଠିଆହୋଇ ।

ସତ୍ୟଦ୍ରଷ୍ଟା କବି କହି ଯାଇଛନ୍ତି– ଜାଣେ ଠିକ୍ ଏମିତି ବାଜିବ ବଇଁଶୀ ଏଇ ନାଟେ, କଟିବ ଗୋ ଦିନ ଯେମିତି ଆଜିର ଦିନଟି କଟୁଛି–

ପରମ ସତ୍ୟ ! ସେଥିରେ ଆଉ ସନ୍ଦେହ କ'ଣ ! ତେବେବେ ସେହି 'ଦିନ କଟାଇବାର' ଅନ୍ତରାଳରେ କେଉଁଠି ଗୋଟାଏ କ'ଣ ଟିକିଏ ସୁର କଟିଯାଏ ନାହିଁ ?

ଗଭୀର ନିଃଶ୍ୱାସଟିଏ ବାହାରି ଆସିଲା ମୃଦୁ ଭାବରେ ।

କାଲି ସକାଳେ ! ଆଉ ଏବେ ଆଜି ରାତି !

ତା'ର ଅର୍ଥ ଆକାଶ-ପାତାଳ କେଉଁଠି ହେଲେ କେଣସି ସ୍ଥାନରେ ଚିତାର ଧୂଆଁ ଟିକକ ମଧ ନାହିଁ । ତେବେ ଆଉ ଧାଁଧପଡ଼ କରି ଲାଭ କ'ଣ ?

କିନ୍ତୁ ଆଗାମୀ କାଲି ? ଅଥବା ତା'ପରଦିନ ? କେଉଁଥିପାଇଁ ? ନୀରୁ ଭାଇନାକୁ ଶୋକରେ ସାନ୍ତ୍ୱନା ଦେବାକୁ ? ନା ଅଭିଯୋଗ ଜଣାଇବାକୁ ଯିବେ ? ଅନାମିକାଙ୍କୁ କାହିଁକି ଖବର ଦିଆହେଲାନି ? ଅନାମିକା ପାଗଳ ନୁହନ୍ତି ଯେ ଏହି ଧୃଷ୍ଟତା ଟିକକ କରିବାକୁ ଯିବେ ? ନ ଗଲେ କ'ଣ ହେବ ? ପରେ କେତେବେଳେ ଦିନେ ଦେଖାହେଲେ ନୀରୁ ଭାଇନା ଯଦି କହିବେ– କ'ଣ ? ତମେ ତ କକେଇଙ୍କୁ ଭାରି ଭଲ ପାଉଥିଲ, ସ୍ନେହ କରୁଥିଲ, କାଇଁ ମରିଯିବା ଖବର ଶୁଣି ମଧ ତ ଥରେଟେ ଆସିଲନି !'

ଏହି ଆକ୍ରମଣଟିକକ ହାତରୁ ରକ୍ଷା ପାଇବା ପାଇଁ ?

ଦୂର୍ !

ଆଗରୁ ମାନେ ଅନେକଦିନ ଆଗରୁ ହୋଇଥିଲେ ହୁଏତ ଏହା କରିଥାନ୍ତେ ଅନାମିକା । ନିଜକୁ ତ୍ରୁଟିଶୂନ୍ୟ କରିବାର ଗୋଟାଏ ପିଲାଳିଆ ମୋହ ଥିଲା ସେତେବେଳେ । ତ୍ରୁଟିଶୂନ୍ୟ କରିବା ପାଇଁ ପ୍ରାଣପାତ କରିଛନ୍ତି, ଇଚ୍ଛା ବିରୋଧରେ ଲଢ଼ିଛନ୍ତି, ନିଜ ସମ୍ପର୍କରେ ବିସ୍ମୃତ ହୋଇ ରହିଛନ୍ତି ।

ସେହି ପିଲାଳିଆ ମୋହଟା ଆଉ ନାହିଁ ।

ସେ ବ୍ୟର୍ଥ ଚେଷ୍ଟାଟା ଯେ ଖାଲି ନିଜ ଭିତରେ ହିଁ କ୍ଷୟକୁ ଡାକିଆଣେ, ସେ କଥା ଧରା ପଡ଼ିଯାଇଛି । ଅତଏବ ନୀରୁ ଭାଇନାଙ୍କ ସଙ୍ଗେ ସୌଜନ୍ୟ କରିବାକୁ ନ ଗଲେ ମଧ ଚଳିବ ।

ତେବେ ?

ତେବେ ଚନ୍ଦନନଗରକୁ ଚାଲିଯିବାଟା ହୋଇପାରିବ ।

ବହୁଦିନ ହେଲା ଅଦେଖା ସାନମଝିଆ ନାନୀ ପାଖରେ ଯାଇ ଠିଆହୋଇ ପାରିବେ । ଅନାମିକା ଗୋଟାଏ ଆଗ୍ରହ ଅନୁଭବ କଲେ । ଡାଏରୀ ବହିର ପୃଷ୍ଠା ଖୋଲି ଦେଖିଲେ ଆଗାମୀ କାଲି ଏବଂ ପଅରଦିନ ଓ ତା'ପରଦିନ, ଏ ଦୁଇ ତିନି ଦିନ ଭିତରେ କେଉଁଠି କେଉଁ କେଉଁ ଫାନ୍ଦରେ ପଡ଼ିଯାଇଛନ୍ତି କି ନାହିଁ ।

ଦେଖିଲେ ପଡ଼ି ନାହାନ୍ତି । ସ୍ୱସ୍ତିର ନିଃଶ୍ୱାସ ପକାଇଲେ ।

ହେଲେ ଘରେ କିଭଳି କହିବେ କଥାଟାକୁ ?

'କହିବିନି' ଭାବିବାକୁ ସୁଦ୍ଧା ଲାଜ ଲାଗୁଛି, କହି ବୋଲି ଯିବି ଭାବିବାକୁ ମଧ୍ୟ ଖରାପ ଲାଗୁଛି । ଶମ୍ପାର ବାପା ମା' ସ୍ଥିର ହୋଇ ବସି ରହିଲେ । ଆଉ ପୀଉସୀ ଧାଇଁଲା— ଏଇଟା ଝିଅଟାକୁ ଉତ୍ସାହ ଦେଇ ନଷ୍ଟ କରିବାର ଆଉ ଗୋଟିଏ ବଡ଼ ଦୃଷ୍ଟାନ୍ତ ହୋଇ ରହିବ ।

ଥାଉ ! କ'ଣ କରାଯିବ ?

ଠିକ୍ ଏ ମୁହୂର୍ତ୍ତରେ କୁଆଡ଼େ ଟିକିଏ ଚାଲିଯିବା ପାଇଁ ମଧ୍ୟ ମନଟା ବ୍ୟାକୁଳ ହୋଇଗଲାଣି ।

ଘରର ଆଲୁଅ ଲିଭାଇ ଦେଇ ଶୋଇପଡ଼ିଲେ ଅନାମିକା । ଆଉ ହଠାତ୍ ମନେହେଲା, ସାନଭାଉଜ ସାଙ୍ଗରେ ବୃଥା କଥାର ସେହି ସୁରର ତାର ଯେପରି ଛିଣ୍ଡାଛିଣ୍ଡି ହୋଇ ଝୁଲି ପଡ଼ିଗଲା । ଅନାମିକା ଗୋଟିଏ ମଧୁର ଗଭୀର ସୁରର ଆସ୍ୱାଦନରୁ ବଞ୍ଚିତ ହେଲେ !

ଶୋକର ମଧ୍ୟ ଏକ ସ୍ୱାଦ ଅଛି । ଗମ୍ଭୀର ପବିତ୍ର ।

ପବିତ୍ର ମାଧୁର୍ଯ୍ୟମୟ ଗଭୀର— ଗମ୍ଭୀର ସେହି ଆସ୍ୱାଦନର ଅନୁଭୂତିଟି ଖଣ୍ଡ ଖଣ୍ଡ ହୋଇ ଝଡ଼ିପଡ଼ିଲା । ସେଗୁଡ଼ିକୁ ଗୋଟାଇ ନେଇ ଆଉ ସମ୍ପୂର୍ଣ୍ଣତା ଦେଇ ହେବନି । ଆଉ ଫେରି ପାଇବେନି ସେହି ପ୍ରଥମ ମୁହୂର୍ତ୍ତର ସ୍ୱଚ୍ଛତା । ଯାହା ମଧ୍ୟ ଗୋଟାଏ ବଡ଼ ହଜେଇବା ନିଶ୍ଚୟ ।

ପାରିବାରିକ ଜୀବନରେ ଏଭଳି କେତେଟା କଥା ଅଛି ଯେଉଁଗୁଡ଼ିକ ନିତାନ୍ତ ଅନିଚ୍ଛା ଥିଲେ ମଧ୍ୟ କରିବାକୁ ପଡ଼େ । ଉପାୟ ନାହିଁ । ନ କଲେ ପାରିବାରିକ ଆଇନ ଲଙ୍ଘନ କରାଯାଏ । ନିଜର ଗତିବିଧିର ନିଖୁଣ ହିସାବ ପରିବାରର ଅନ୍ୟାନ୍ୟ ଲୋକଙ୍କ ପାଖରେ ଦାଖଲ କରିବାଟା ତା'ରି ମଧ୍ୟରୁ ଗୋଟିଏ । ତମର ହଠାତ୍ ଇଚ୍ଛା ହେଲେ କେଉଁଠିକି ଚାଲିଯିବ, ସେ କ୍ଷମତା ତମର ନାହିଁ, ମନ ଉପରେ ଲଦା ହୋଇ ରହିଛି ସେହି ଆଇନର ଭାରଟା ।

ଚାଲିଯିବାଟା ହିଁ ତ ଶେଷକଥା ନୁହେଁ ? ଆଉ ପୁଣି ଫେରିଆସିବା ବୋଲି ଗୋଟାଏ କଥା ଅଛି । ଫେରିଆସିବା ପରେ ପରିଜନମାନେ ଜଣେ ଜଣେ ହୋଇ ପଚାରିବେନି– କି ଆଶ୍ଚର୍ଯ୍ୟ ! ନ କହି ଚାଲିଗଲ ? କୁ'ଠାକୁ ଗଲ କାହାକୁ ଜଣାଇ ଗଲନି ?

ପାରିବାରିକ ଶାସ୍ତ୍ରରେ ଏଇଟା ଭାରି ଗର୍ହିତ ଅପରାଧ । ଯେପରି ଅନ୍ୟମାନଙ୍କୁ ଅପମାନ କରିବା ହେଲା । ଯେପରି ଇଚ୍ଛା କରି ସ୍ୱେଚ୍ଛାଚାରିତାର ଦୃଷ୍ଟାନ୍ତ ଦେଖାଇଲ ।

ଅତଏବ ନିତାନ୍ତ ଅନିଚ୍ଛା ସତ୍ତ୍ୱେ ଛୋଟ ସୁଟ୍‌କେସ୍‌ଟାକୁ ସଜାଡ଼ି ରଖି ତଳକୁ ଓହ୍ଲାଇବାକୁ ପଡ଼ିଲା ଅନାମିକାଙ୍କୁ ।

ଚାକରଟାକୁ ଡାକି ପଚାରିଲେ– ସାନ ମା' କେଉଁଠି ଅଛନ୍ତି ?

–ସାନ ମା' ? ସେ ତ ଏଇଲେ ପୂଜା କରୁଛନ୍ତି ।

ଶୁଣି ବିସ୍ମିତ ହେଲେ ଅନାମିକା, ସାନଭାଉଜର ଏମିତି ଉନ୍ନତି ହେଲା କେବଠାରୁ ? ସେ ତ ଜାଣି ନ ଥିଲେ ? ଯାଉ, କେତେ କ'ଣ ଏ ସଂସାରରେ ଘଟୁଛି, ସେ ଆଉ କେତେବା ଜାଣିଛନ୍ତି ? ଏ ଗୋଟାଏ ଅଦ୍ଭୁତ ଜୀବନ ତାଙ୍କର, 'ଘରର ନୁହନ୍ତି କି ଘାଟର ନୁହନ୍ତି !! ଏ ଘରେ ଅଛନ୍ତି, କିନ୍ତୁ ଯା ସହିତ ଯେପରି ସମାନ ଯୋଗସୂତ୍ର ରହି ନାହିଁ । ଯେହେତୁ ଯଥାରୀତି ଯଥାସମୟରେ ଅନ୍ୟ ଘରେ ଯାଇ ପ୍ରତିଷ୍ଠିତ ହୋଇ ନାହାନ୍ତି ସେହେତୁ ଅନାମିକା ଯେପରି ଏକ ଅଧିକା ହୋଇଯାଇଥିବା ଜିନିଷ ଭଳି ଏଠାରେ ଲଦି ହୋଇ ବସିଛନ୍ତି ! ଆଜନ୍ମର ସ୍ଥାନ, ତେବେକେ ଜନ୍ମଗତ ଅଧିକାରଟା କେତେବେଳେ ଯେ ଚାଲିଯାଏ ! ଝିଅମାନଙ୍କ ଜୀବନରେ ଏ ଗୋଟାଏ ଭୟଙ୍କର କୌତୁକ !

ଆଚ୍ଛା, ଘରର କେଉଁ ପୁଅ ଯଦି ଅବିବାହିତ ରହେ, ଏଭଳି ତ ଅନେକେ ରହନ୍ତି, ସେମାନେ ମଧ କ'ଣ କେନ୍ଦ୍ରଚ୍ୟୁତ ହୋଇ 'ଅଧିକା'ରେ ପରିଣତ ହୁଅନ୍ତି ? ଭାବି ଭାବି ପୁଣି ଦୋତାଲାକୁ ଚାଲିଆସିଲେ ଅନାମିକା । ସାନଭାଇନାଙ୍କ ଘର ଆଗରେ ଠିଆହୋଇ ଡାକିଲେ– ସାନଭାଇନା । ସାନଭାଇନା କିଛି ଉତ୍ତର ଦେଲେ ନାହିଁ, ତାହା କପଡ଼କୁ ଶୋଷୁ ଶୋଷୁ ବାହାରି ଆସି ଠିଆହେଲେ । କୁଞ୍ଚିତ ଭ୍ରୂ । ଅପ୍ରସନ୍ନ ମୁହଁ ।

ସେ ପ୍ରଶ୍ନ କରିବା ପର୍ଯ୍ୟନ୍ତ ଅପେକ୍ଷା କଲେ ନାହିଁ ଅନାମିକା, କହିଲେ– "ଶୁଣିଲି ସାନଭାଉଜ ପୂଜାଘରେ ଅଛନ୍ତି, ତାଙ୍କୁ ଗୋଟାଏ କଥା କହିବାର ଥିଲା, ତମେ କହିଦେବ, ଆଜି ଯେମିତି ମୋର, ମାନେ– ଆଜି, କାଲି ପଅରିଦିନ, ଏ ଦି'ତିନି ଦିନ ମୋ ପାଇଁ ରାନ୍ଧିବାକୁ ଦେବେନି । ମୁଁ ଟିକିଏ ଯାଉଛି– " କହିଦେଇ ମନେହେଲା କଥାଟା ବହୁତ ଅସଜଡ଼ା ଭାବରେ କୁହାଗଲା ।

ସାନଭାଇନା ଚାହା କପ୍‌କୁ ଶେଷ କରି କହିଲେ— ତିନିଦିନ ପାଇଁ ! ସଭାଟା କୁ'ଠି ହେଉଛି ?

ସାନଭାଇନା କ'ଣ ବୁଝିପାରି ନାହାନ୍ତି, ଅନାମିକା କେଉଁଠାକୁ ଯାଉଛନ୍ତି ! ଅନାମିକାଙ୍କର ମନେହେଲା ବୁଝିପାରି ମଧ୍ୟ ସାନଭାଇନା ଯେମିତି ଜାଣି ଜାଣି ପ୍ରସଙ୍ଗଟାକୁ ଅନ୍ୟଦିଗକୁ ନେଇଗଲେ ।

ଅନାମିକାଙ୍କର ଭୁଲ୍ ହେଲା ।

ମୂଳରୁ ହିଁ ସ୍ପଷ୍ଟ ପରିଷ୍କାର ଗଳାରେ କହିଥିଲେ ଭଲ ହୋଇଥାନ୍ତା, ସାନଭାଇନା, ମୁଁ ତିନିଦିନ ପାଇଁ ସାନମଝିଆ ନାନୀ ପାଖକୁ ଚନ୍ଦନନଗରକୁ ବୁଲିବାକୁ ଯାଉଛି ।

ଏଥର କହିଲେ— ନା, ସଭାଫଭା ତ ନାହିଁ, ନାନୀ ପାଖକୁ ଯାଉଛି ଟିକିଏ ବୁଲି ଆସିବାକୁ ।

—''ନାନୀ ପାଖକୁ ? ମାନେ ଚନ୍ଦନନଗର ?......'' ତିକ୍ତଗଳାରେ ସାନଭାଇନା କହିଲେ— ଆଶା କରୁଛି ଗେହ୍ଲା କରି ଆଉ କାହାକୁ ନେଇ ଆସିବୁନି ?

—ନେଇଆସିବି ? କାହାକୁ ?...... ଅନାମିକା ମଧ୍ୟ ଏଥର ପେଞ୍ଚ କଲେ, କହିଲେ, ନେଇଆସିବା କଥା କ'ଣ କହୁଛ ?

—କ'ଣ କହୁଛି, ଏକାବେଳେ ବୁଝିପାରିଲୁନି ଏଇଟା ଆଶ୍ଚର୍ଯ୍ୟ କଥା ! ଗତକାଲି ତୁ ଜଣାଇଛୁ ଯେ ତୋର ସେ ଅଣ୍ଡିରାଚଣ୍ଡୀ ଝିଆରୀ ଚନ୍ଦନନଗରରେ ଆଉ ଜଣେ ଆଶ୍ରୟଦାତ୍ରୀ ପାଖକୁ ଯାଇ ଆଶ୍ରୟ ନେଇଛନ୍ତି । ଆଉ ଆଜି ଜଣାପଡୁଛି ତୁ ସେଠାକୁ ଧାଇଁଛୁ—

ଅନାମିକା ଅଳ୍ପ ହସି କହିଲେ— ହୁଏତ ଖାଲି ଖାଲିରେ ଧାଇଁ ଯାଉଛି । ମନଟା ଭଲ ଲାଗୁ ନ ଥିଲା, ତେବେ ହୁଏତ ଅଜାଣତରେ ତାକୁ ହିଁ ଦେଖିବାକୁ ଧାଉଁଛି । ଭାଇନା କୋଉ ସାହସରେ ତାକୁ ଆଣିବା କଥା ଭାବିବି ? କାହାଘରକୁ ନେଇ ଆସିବି ଗୋଟାଏ ଅଖାଡୁ, ଦୁଷ୍ଟ ବୁଦ୍ଧିହୀନ ଝିଅକୁ ?

ସାନଭାଇନାଙ୍କ ଗଳାରେ କ'ଣ ଆଗର ଚାହା ରହିଯାଇଥିଲା ? ସେଥିପାଇଁ ହଠାତ୍ ଏମିତି କାଶିଉଠିଲେ ? କାଶୁ କାଶୁ ଅନେକ ସମୟ ଚାଲିଗଲା । ତା'ପରେ କହିଲେ— ତୁ ସେ କଥା କହିପାରିବୁନି, ଏ ଘର ଉପରେ ବେଶ୍ କିଛି ଅଧିକାର ତତେ ବାପା ଦେଇ ଯାଇଛନ୍ତି ।

ଅନାମିକା ସେହିପରି ହସି କହିଲେ— ମୁଁ ତ ସେ ଅଦ୍ଭୁତ ବାଜେ କଥାଟାକୁ ବାପାଙ୍କ ପିଲାଳିଆ ଢଙ୍ଗ ଛଡ଼ା ଆଉ କିଛି ଭାବୁନି ସାନଭାଇନା ! ନିହାତି

ତମରିମାନଙ୍କ ଗୋତ୍ରରେ ରହିଗଲି, ସେଥିପାଇଁ ତମମାନଙ୍କର ଘରେ ରହି ଯାଇଛି । ଯାଉ ସେକଥା, ମୁଁ ତା'ହେଲେ ଯାଉଛି ।

ସାନଭାଇନା ଏଥର ଭାଇନା ପରି କଥାଟିଏ କହିଲେ– ଏକୁଟିଆ ଯାଉଛୁ ନା କ'ଣ ?

ଯଦିଚ ଏକୁଟିଆ ବୁଲିବାର ଅଭ୍ୟାସ ଅନାମିକାଙ୍କର ଆଦୌ ନ ଥିଲା, ସଭାସମିତି କଥାରେ ଏଠାକୁ-ସେଠାକୁ ସବୁବେଳେ ଯାଉଥିଲେ, ସେମାନେ ତ ନିହାତି ଗଳବସ୍ତ୍ର ହୋଇ ନେଇଯାଆନ୍ତି ତାଙ୍କୁ । ଠିକ୍ ଉଇଲ୍ କରିବା ଆଗରୁ ବାପା ଯେ ସାମାନ୍ୟ ଟିକିଏ ଚିନ୍ତା କରି ନାହାନ୍ତି, ତା'ନୁହେଁ । ଅନାମିକା ହାଲୁକା ଭାବରେ ଉତ୍ତର ଦେଲେ– ଏଠୁ ତ ସେଇଠିକି ଯିବି, ସକାଳ ଗାଡ଼ି, ଏଥିରେ ଆଉ ଏକୁଟିଆ କ'ଣ ?

ସାନଭାଇନା ଆଉକିଛି କହିଲେନି, ଘର ଭିତରେ ପଶିଗଲେ । ଆଉ ଭାଇନାଙ୍କର ଢିଲା ଗେଞ୍ଜି ପିନ୍ଧା ପିଠିଟା ଦେଖି ହଠାତ୍ ଅନାମିକାଙ୍କ ମନଟା କିପରି ମାୟାରେ ଭରିଗଲା । ସାନଭାଇନା କେଡ଼େ ଶୁଖିଗଲେଣି ! ପିଠି ହାଡ଼ଟା ଗେଞ୍ଜି ଭିତରେ ଉଚ୍ଚା ହୋଇ ଦିଶୁଛି । ବିଚରା ! ମୁହଁରେ ତେଜ ଦେଖାଇ ମାନ ରଖୁଛନ୍ତି, ଭିତରେ ଭିତରେ ଚଷ୍ଟୁ ଭଳି ପୋଡ଼ି ଯାଉଛନ୍ତି !

ରାଗ, ଦୁଃଖ, ଅପମାନ, ଲଜ୍ଜା, ଦୁଶ୍ଚିନ୍ତା, ଝିଅ ପ୍ରତି ଅଭିମାନ– ଏ ସବୁଗୁଡ଼ାକର ଭାର ଆଉ ଜ୍ୱାଳା ନିଜ ଭିତରେ ହିଁ ବହନ କରି ଚାଲିଛନ୍ତି ସେ । ଟିକିଏ ଅନ୍ତରଙ୍ଗ ଗଳାରେ କ'ଣ ପଦଟିଏ ଭଲ କଥା କହିବାକୁ ଇଚ୍ଛା ହେଲା, ହେଲେ କ'ଣ ବା କହିବେ ?

ସାନଭାଇନା ଯଦି ଅନ୍ୟପ୍ରକାର ରାଗ ଦେଖାଇ କହିଥାନ୍ତେ– ଯାଉଛୁ ଯଦି ତ ସେ ପାଜୀ ଝିଅଟାର ଚୁଟି ଧରି ଟାଣି ନେଇ ଚାଲିଆସେ– ତା'ହେଲେ ହୁଏତ ସେ ଅନ୍ତରଙ୍ଗ ହେବାର ସୁବିଧାଟା ହୋଇଥାନ୍ତା ।

କିନ୍ତୁ 'ଯଦି' ଆଉ 'ହୁଏତ' ଗୁଡ଼ାକ ଚିରକାଳ 'ଚିତ୍ତଚାଞ୍ଚଲ୍ୟ'ର କାରଣ ହେବା ଛଡ଼ା ଆଉ କୌଣସି କାମରେ ଲାଗେନି ।

ନିଜ ମନରେ ଭାବନା କରିବାକୁ ରେଳଗାଡ଼ିର ସିଟ୍‌ଟା ଆଦର୍ଶ, ଗାଡ଼ିଏ ଲୋକଙ୍କ ଭିତରେ ମଧ୍ୟ ତମେ ଦିବ୍ୟ ନିଶ୍ଚିନ୍ତ ମନରେ ଏକାକୀ ରହିପାର । ତମର ମୁହଁ ଦେଖି କେହି ମନର ଭାବ ପଢ଼ିବାକୁ ଚେଷ୍ଟା କରିବେନି ।

ସେଥିପାଇଁ ଅନାମିକା ଦେବୀ ଏବେ ଭାବୁଛନ୍ତି– ପାରୁଲ୍ ନାନୀ ସହିତ ଏବେ ଦେଖାହେବା ଅବସ୍ଥାଟା କେମିତି ହେବ ? ଦେଖିଲାକ୍ଷଣି ସେ କ'ଣ

ଉଚ୍ଛ୍ୱସିତ ହୋଇ ଧାଇଁଆସିବ ? ନା ଶାନ୍ତ-ଗମ୍ଭୀର ଅଭ୍ୟର୍ଥନା ଦ୍ୱାରା ଜମିଯାଇଥିବା ଅଭିମାନ ପ୍ରକାଶ କରିବ ?

ତା'ହେଲେ ଅନାମିକା ନିଜେ ଯାଇ କ'ଣ ଗହଳ କରିବେ ? – ଓ ମଝିଆନାନୀ, କେତେଦିନ ପରେ ଦେଖିଲି ତତେ ?...... ନା ସେକଥାରେ ପୁଣି ଓଲଟା ଚାପ ପଡ଼ିପାରେ, ମଝିଆନାନୀ ହୁଏତ ଫଟ୍‌କିନା ଉତ୍ତର ଦେଇଦେବ – ଚେହେରା ଭୁଲିବାର ଉପାୟ ଅଛି ? କାଗଜପତ୍ରରେ ତ ମଝିରେ ମଝିରେ 'ଚେହେରା' ଦେଖିବାକୁ ମିଳୁଛି !

ଅବଶ୍ୟ କାଗଜପତ୍ରରେ ଛପା ହୋଇଥିବା 'ଚେହେରା' ବିଷୟରେ କିଛି ହାସ୍ୟପରିହାସ କରିହେବ । କିନ୍ତୁ ମନର ଚେହେରାଟା ଯେପରି ତା'ର ଅନୁକୂଳ ନୁହେଁ । ଯେପରି ସେହି ମନଟା ଖାଲି 'ମଝିଆନାନୀ' ବୋଲି ଡାକି ତୁନି ହୋଇଯିବାକୁ ଚାହେଁ, ଆଉ କୌଣସି କଥା ନୁହେଁ ।

କିନ୍ତୁ ଏ ତ ଗଲା ମଝିଆନାନୀର କଥା ।

ଆଉ ସେ ଝିଅଟା ?

ତାକୁ କ'ଣ କହିବେ ? ସେ କ'ଣ କହିବ ? ସେ ନିଶ୍ଚେ ଧାଇଁଆସି କୁଣ୍ଢାଇ ପକାଇ ଚିପି ଧରି ଦେହରେ ନାକ ଘଷି ଉଚ୍ଛ୍ୱସିତ ହୋଇଯିବ ?

ହାବଡ଼ାରୁ ଚନ୍ଦନନଗର, ଇଲେକ୍‌ଟ୍ରିକ୍ ଟ୍ରେନ୍‌ର କଥା, ତେବେକେ ଯେପରି ଲାଗୁଛି ରାସ୍ତାଟା ସରିବାକୁ ଚାହୁଁନି । ସେଇ ଝିଅଟାର ପ୍ରଥମ ଆବେଗର ଝଡ଼ଟାକୁ କଳ୍ପନା କରୁ କରୁ ଧୈର୍ଯ୍ୟ କମି ଆସୁଛି !

କିନ୍ତୁ ଗତକାଲିଠାରୁ ଅନାମିକା ପାଇଁ ବୋଧହୁଏ ଭାଗ୍ୟର ହାତରେ ଚାପୁଡ଼ା ଖାଇବା ହିଁ ଲେଖାଥିଲା ।

ସେଇଥିପାଇଁ ସେ ଝଡ଼ଟା ଆସି ଅଜାଡ଼ି ହୋଇପଡ଼ିଲା ।

ପାରୁଲ୍ ନାନୀ ତାକୁ ଦେଖି ଥମକି ଠିଆ ହୋଇପଡ଼ିଲା । ଆସ୍ତେ କହିଲା – ତୁ ?

ତା'ପରେ ଆହୁରି ଆସ୍ତେ ଆସ୍ତେ କହିଲା – ତୁ ଏଇଲେ ଆସିଲୁ !

ହଠାତ୍ ଭୟଙ୍କର ଏକ ଭୟରେ ଛାତିଟା ହିମ ହୋଇଗଲା ଅନାମିକାଙ୍କର । ମନେହେଲା ଗତକାଲି ପରି ଆଜି ମଧ ବୋଧହୁଏ ଏକ ଦାରୁଣ ସମ୍ବାଦ ତାଙ୍କ ପାଇଁ ଅପେକ୍ଷା କରୁଛି ।

ଅନାମିକା କ'ଣ ପାହାଚଟା ଉପରେ ହିଁ ବସିପଡ଼ିବେ ?

ମୁହଁକୁ ଦେଖି ପାରୁଲ୍ ବୋଧହୁଏ ମନର କଥାଟା ବୁଝିଲା । ସେଥିପାଇଁ ଆସ୍ତେ ଆସ୍ତେ କହିଲା– ଡରନା, ତେବେ ଖବରଟା ଭାରି ଖରାପ । ସେ ପୁଅଟା, ସବୁକଥା ତ ଜାଣିଛୁ, କେତେଦିନ ହେଲା ଚାଲି ଯାଇଥିଲା, ସକାଳେ ହଠାତ୍ କିଏ ଗୋଟାଏ ଲୋକ ଆସି ଖବର ଦେଲା–

ଟିକିଏ ଅଟକିଲା ପାରୁଲ୍, ତା'ପରେ କହିଲା– ସେ ପୁଅଟି ବୋଧହୁଏ କାହା ସହିତ କି ଗୋଳମାଳ କରିଥିଲା, ବୋମା ଫୋମା ମାରିଛନ୍ତି କୁଆଡ଼େ, ବଞ୍ଚିଛି କି ନାହିଁ, ଏମିତି ଅବସ୍ଥା ପିଲାଟାର ଶୁଣିଲାକ୍ଷଣି ଝିଅଟା ଏମିତି ଚାଲିଗଲା, ଭଲରୂପେ କଥାଟା ବୁଝିପାରିଲିନି ।

ନିଃଶ୍ୱାସ ଛାଡ଼ି ଅନାମିକା କହିଲେ– ସେ ଲୋକଟା ଚିହ୍ନା ନା ଅଚିହ୍ନା ?

–ଚିହ୍ନା ହେଲା କେମିତି ? ଏକପ୍ରକାର ଅଚିହ୍ନା କହିଲେ ଚଳେ ।

–କି ଆଶ୍ଚର୍ଯ୍ୟ ! କାଲି ମୋ ସହିତ ପିଲାଟାର ଦେଖା ହୋଇଛି, ଆଗ ଖବରଟା ଆଦୌ ସତ ନ ହୋଇପାରେ, କୋଉ ଖରାପ ଲୋକ କୋଉ ମତଲବରେ ।

–ସେ କଥା କହିଥିଲି । କାନରେ ପୂରାଇଲାନି । ପାଗଳ ଭଳି ଧାଇଁ ପଳାଇଗଲା ତା' ସଙ୍ଗେ । ଆଉ ତୁ ମଧ୍ୟ ଏତେଦିନ ପରେ ଆଜି ଆସିଲୁ ବକୁଳ ?

ବକୁଳ ନିଃଶ୍ୱାସ ପକାଇଲା ।

ବକୁଳର ମନେହେଲା କେଉଁଠି ଯେପରି ଗୋଟାଏ ବାକ୍ସ ଥିଲା, ସେଇ ଭର୍ତ୍ତିହୋଇ ରହିଥିବା ବାକ୍ସଟା ହଠାତ୍ ଖାଲି ହୋଇଗଲା ।

କି ବାକ୍ସ ସେ ? କ'ଣ ଭର୍ତ୍ତି ହୋଇ ରହିଥିଲା ସେଥିରେ ?

ଗଲେ, ବସିବୁ ଚାଲେ । ପାରୁଲ କହିଲା । ତା'ପରେ ପ୍ରାଥମିକ– ଅଭ୍ୟର୍ଥନାର ପର୍ବ ମଧ୍ୟ ସାରିଦେଲା । କିନ୍ତୁ ଏତେଦିନ ପରେ ଦୁଇଟି ଭଲପାଉଥିବାର ପ୍ରାଣ ଏକ ହୋଇ ମଧ୍ୟ କେଉଁଠି ଯେପରି ବିଚ୍ଛିନ୍ନ ହୋଇ ରହିଲେ । ସୁରଟା କଟି ଯାଇଛି । ମଝିରେ ଯେପରି ଗୋଟାଏ ମୂକ କାନ୍ଥ ରହିଛି ।

ପାଗଳୀ ଝିଅଟା ବକୁଳର ଅନେକ କଷ୍ଟର ଦୁର୍ଲ୍ଲଭ ଆୟୋଜନ ଟିକକକୁ ବ୍ୟର୍ଥ କରିଦେଇ ଚାଲିଯାଇଛି । କିନ୍ତୁ କୁଆଡ଼େ ଗଲା ? କେଉଁଠି ତାକୁ ଖୋଜିବେ ?

ଯେଉଁ ଲୋକଟି ଖବର ଦେବାକୁ ଆସିଥିଲା, ସେ ଯଦି ଖାଣ୍ଟି ଲୋକ ହୋଇଥିବ ତ ଖୋଜିବାକୁ ଜାଗା ମିଳିବ । ଲୋକଟି ଯାଣ୍ଡେଲୀ ପାଖରେ ଏକ ଅଖ୍ୟାତନାମା ଡାକ୍ତରଖାନା ନାଁ କହିଛି । ଆଉ ଲୋକଟି ଖାଣ୍ଟି ନ ହୋଇଥିଲେ ତ ଆଉ କିଛି କଥା କହିବାକୁ ନାହିଁ । ଯେଉଁ ଝିଅଟି 'ହଜିଯିବି' ପ୍ରତିଜ୍ଞା

କରି ଘରୁ ବାହାରି ଆସିଥିଲା ତେବେକେ ହଜିଯାଇ ପାରି ନ ଥିଲା, ତା'ର ଦୁଷ୍ଟ ନକ୍ଷତ୍ର ଏଥର ସେ ଯୋଗାଯୋଗଟା ଘଟାଇଦେଲା । ଅସଂଖ୍ୟ ଲୋକଙ୍କ ଏହି ଭିଡ଼ରେ ଭର୍ତ୍ତି ହୋଇଥିବା ପୃଥିବୀର କୌଣସି ଜାଗାରେ ହଜିଗଲା ସେ ।

ଅନେକ ସମୟ ପରେ ଗଙ୍ଗା ତୀରକୁ ଲାଗି ରହିଥିବା ସେ ବାରଣ୍ଡାଟା ଉପରେ ଦୁହେଁଯାକ ବସିଲେ । ଆଉ ଏତେକ୍ଷଣ ପରେ ଶମ୍ପାର କଥା ଛଡ଼ା ଆଉ ଗୋଟିଏ କଥା କହିଲା ବକୁଳ— ପାରୁଲ୍ ନାନୀ, ତୁ ଯେ କାହିଁକି ଦିନକ ପାଇଁ ସୁଦ୍ଧା ଏଠୁ ଘୁଞ୍ଚିବାକୁ ଚାହୁଁନୁ ସେକଥା ବୁଝିପାରୁଛି ।

—ବୁଝିପାରୁଛୁ ?...... ମଝିଆନାନୀ ହସିଲା— କାମର ସମୁଦ୍ରରେ ତୁ ବୁଡ଼ି ରହି ନୟାନ୍ତ ହେଉଛୁ, ଆଉ ମୁଁ ଅକାର୍ଯ୍ୟର ଅବସରରେ ଗଙ୍ଗାତୀରରେ ବସି ବସି ଢେଉ ଗଣୁଛି !

—ତତେ ଦେଖି ମୋର ହିଂସା ହେଉଛି ପାରୁଲ୍ ନାନୀ ! ମନେ ହେଉଛି ତୋ'ପରି ଜୀବନ ପାଇଥାନ୍ତି ଯଦି ?

ପାରୁଲ୍‌ର ଅଭ୍ୟସ୍ତ କୌତୁକପ୍ରିୟତା ଜାଗିଉଠିଲା । ପାରୁଲ୍ କହିଲା— ଆରେ ସର୍ବନାଶ ! ବଙ୍ଗଳା ତା'ହେଲେ ଜଣେ ଦୁର୍ଦ୍ଦାନ୍ତ ଲେଖିକାକୁ ହରାଇ ନ ଥାନ୍ତା ?

—ସେଥିରେ କିଛି କ୍ଷତି ନ ଥିଲା ।

—ଲାଭ-କ୍ଷତିର ହିସାବ କ'ଣ ସବୁବେଳେ ନିଜ ପାଖରେ ଥାଏ ? ପାରୁଲ୍ କହିଲା ଝିଅଟା କ'ଣ ବୁଝିଲା, ସେ ଏମିତି ପାଗଳ ପରି ଧାଇଁ ଚାଲିଯିବା ଯୋଗୁ କେଉଁଠି କ'ଣ ଲୋକସାନ ହେଲା ?

ଅର୍ଥାତ୍ ବୁଲିବାଲି କଥାଟା ଆଉଥରେ ସେହି ଝିଅଟା ବିଷୟକୁ ଚାଲିଆସିଲା ।

—ଅଦ୍ଭୁତ ଝିଅ !...... ପାରୁଲ୍ ପୁଣି କହିଲା— ଦୁର୍ଲଭ ଝିଅ । ତାକୁ ତା'ର ବାପ-ମା' ବୁଝି ପାରିଲେନି । ଅବଶ୍ୟ ନ ପାରିବା ହିଁ ସ୍ୱାଭାବିକ । ସାଧାରଣତଃ ଯେଉଁ ମାଲମସଲାରେ ଆମର ଏ ସଂସାରୀ ମଣିଷଗୁଡ଼ାକ ତିଆରି ହୁଅନ୍ତି, ତା' ଭିତରେ ସେ ମାଲମସଲାର ଚିହ୍ନ ନାହିଁ । ଯାହା ଅଛି ସେଇଟା ସଂସାରୀ ଲୋକମାନଙ୍କର ଅଚିହ୍ନା !

—'ତୋ ଭିତରେ ମଧ୍ୟ ତ ସେମିତି ଓଲଟା ପାଲଟା ମାଲମସଲା—' ଆସ୍ତେ ହସିଲା ବକୁଳ, କହିଲା— ପାରୁଲ୍ ନାନୀ, ତତେ ମଧ୍ୟ ସେଥିପାଇଁ କେହି କେବେ ବୁଝିପାରିଲେନି ।

—ମୋ କଥା ଛାଡ଼ି ଦେ, ମୁଁ ନିଜେ ହିଁ ନିଜକୁ ବୋହିଛି ।

—ମୋହନ ଆଉ ଶୋଭନର ଖବର କ'ଣ ନାନୀ ?

—ଭଲ, ଖୁବ୍ ଭଲ । ପ୍ରାୟ ସବୁବେଳେ ପଦୋନ୍ନତିର ଖବର ଦିଅନ୍ତି, ପୁରୁଣା ଗାଡ଼ି ବିକିଦେଇ ନୂଆ ଗାଡ଼ି କିଣିଛନ୍ତି ସେ ଖବର ମଧ୍ୟ ଜଣାଉଛନ୍ତି ।

ବକୁଳ ଟିକିଏ ଚାହିଁ ରହି କହିଲା, ଆଚ୍ଛା ପାରୁଲ୍ ନାନୀ, ପୃଥିବୀରେ ପ୍ରକୃତ 'ଆପଣାଲୋକ' ବୋଲି ତା'ହେଲେ କିଛି ହେଲେ ନାହିଁ ନା ?

—'ଥିବନି କାହିଁକି ?—' ପାରୁଲ୍ କୌଣସିମତେ କହିଲା— ତେବେ ତାକୁ ସମ୍ପର୍କର ସୀମା ଭିତରେ ଖୋଜିବାକୁ ଯିବା ବିଡ଼ମ୍ବନା । ଦୈବକ୍ରମେ ଯଦି ଜୁଟିଗଲା ତ ଗଲା !

—ଭାବିଥିଲି ଦୁଇ ତିନିଦିନ ରହିବି । ବକୁଳ କହିଲା, ହେଲେ ମୋ ଭାଗ୍ୟରେ ଏତେ ସୁଖ ସହିଲେ ସିନା ହେବ !

ପାରୁଲ୍ ପାଟି କଲା ନାହିଁ, କହିଲା— ସେଇୟା ଦେଖୁଛି । କାଲିଠାରୁ କେତେଥର ଯେ ମୁଁ କଲିକତାକୁ ଚାଲିଯାଇଛି ! କେତେ ଶହ ଥର ! ଆଉ ସେ ଡାକ୍ତରଖାନାଟାକୁ ଖୋଜି ବୁଲିଛି ଠିକଣା ନାହିଁ । କିନ୍ତୁ ପ୍ରକୃତରେ କିଛି କରିବାର କ୍ଷମତା ନାହିଁ, ତୁ ଆସିଲୁ, ତୋ ସଙ୍ଗେ ଯାଇହୁଅନ୍ତା ।

—ତୁ ଯିବୁ ?

—ଭାବୁଥିଲି । ପିଲାଟା ଏତେଦିନ ରହିଥିଲା, ଦେହ ଖରାପରେ ଭୋଗିଲା, ମାୟା ହୋଇଯାଇଛି— ତୁନି ହୋଇଗଲା ପାରୁଲ୍ ।

ଆହୁରି କିଛିସମୟ ଚାଲିଲା କଥାବାର୍ତ୍ତା । ଆସିଥିବା ଲୋକଟା ସତ କହିଛି କି ନାହିଁ, ସେକଥା ନେଇ ଏଭଳି କେତେ ଜୁଆଚୋରୀ ଘଟୁଛି ସହରରେ ।

ତେବେବି ଶମ୍ପା ଭଳି ଝିଅଟାକୁ ତ ହଜିଯିବାକୁ ଦିଆଯାଇପାରେନା ।

ଅନେକସମୟ ପରେ ବକୁଳ କହିଲା— ସେଇକ୍ଷଣି ଯଦି ତା ସହିତ ଚାଲି ଯାଇଥାନ୍ତୁ ?

—ପରେ ଶହେଥର ସେକଥା ଭାବିଲି, କିନ୍ତୁ ଘଟଣାଟା ଏତେ ଆକସ୍ମିକ ଭାବରେ ଘଟିଗଲା ଯେ ! କିଏ ଡାକୁଛି ବୋଲି ତଳକୁ ସେ ଓହ୍ଲାଇଲା, ତା'ପରେ ଦୁଇମିନିଟ୍ ପରେ ତ ଊର୍ଦ୍ଧ୍ୱଶ୍ୱାସରେ ଉପରକୁ ଉଠିଆସି କହିଲା, ମଝିଆ ପିଉସୀ, ସତ୍ୟବାନକୁ ବୋମା ମାରିଛନ୍ତି, ବୋଧହୁଏ ମରିଯାଇଛନ୍ତି, ମୁଁ ଯାଉଛି ।

ଯାଉଛୁ ? କୁଆଡ଼େ ଯାଉଛୁ ? କିଏ କହିଲା ?— ଏ ସବୁ ପ୍ରଶ୍ନର ଉତ୍ତର ସୁଦ୍ଧା ଦେଲାନି; ଯେମିତି ଅବସ୍ଥାରେ ଥିଲା ସେମିତି ଓହ୍ଲାଇଗଲା । ତା' ସାଙ୍ଗେ

ସାଙ୍ଗେ ଓହ୍ଲାଇଲି, ଦେଖିଲି ଲୋକଟାକୁ, କଲକାରଖାନାର ଲୋକ ପରି, ସଜାଡ଼ି କଥା କହିବା ସୁଦ୍ଧା ଜାଣେନି । ଯାହା କହିଲା — ତା'ର ମର୍ମାର୍ଥ ହେଉଛି ଏଇୟା ।...... ଟିକିଏ ଜେରା କରିଥାନ୍ତି, ସେ ସମୟ ପାଇଲିନି । ପୋଡ଼ାମୁହାଁ ଝିଅ କହିଲା, ପଚାରିବାକୁ ଅନେକ ସମୟ ପାଇବ ପିଉସୀ, ଏବେବି ସୁଦ୍ଧା ଏକାବେଳେ ଯଦି ମରିଯାଇ ନ ଥାଏ ତ ଗଲେ ଦେଖିପାରିବି ! କହି ଲୋକଟା ଯେଉଁ ସାଇକେଲରିକ୍ସାରେ ବସି ଆସିଥିଲା, ସେଇଟାରେ ହିଁ ଚଢ଼ି ବସିଲା । ସେଇ ଲୋକଟା ପାଖରେ । ମୋ ଆଖି ଆଗରେ ଘଡ଼ ଘଡ଼ ହୋଇ ଚାଲିଗଲା ରିକ୍ସାଟା !

ପାରୁଲ୍ ଅଳ୍ପ ହସି କହିଲା— ତମମାନଙ୍କର ତ ଜାଣିବା କଥା, ସମାଜତତ୍ତ୍ୱ ଆଉ ମନସ୍ତତ୍ତ୍ୱ, ଯାକୁ ଧରି ଯେଉଁମାନଙ୍କର କାମ ଚାଲିଛି ସେମାନଙ୍କର ଜାଣିବା କଥା । ତେବେ ମୁଁ ଗୋଟାଏ ବେକାର ମଣିଷ, ଗଙ୍ଗାର ଢେଉ ଗଣି ଗଣି ଯାହା ଟିକିଏ ଚିନ୍ତା କରି ଶିଖିଛି, ସେଥିରେ କ'ଣ ମନେ ହୁଏ ଜାଣିଛୁ ? ସବୁତତ୍ତ୍ୱର ମୂଳ କଥା ହେଉଛି ଅସୁବିଧାରେ ପଡ଼ିବା ଭୟ । ସେହି ଭୟଟାକୁ ସେମାନେ ଜୟ କରି ଦେଇଛନ୍ତି ।

ବକୁଳ ଧୀରେ କହିଲା— ଅସୁବିଧାରେ ପଡ଼ିବାର ଭୟ......

—ତା' ନୁହେଁ ତ କ'ଣ କହ ? ମୁଁ କହୁଛି 'ଅସୁବିଧା'ର, ତୁ ଏବେ ନ ହେଲା କହିବୁ ବିପଦର । ହେଲେ ସେ ବିପଦ ଜିନିଷଟା ବା କ'ଣ ? 'ଅସୁବିଧା' ଛଡ଼ା ଆଉ କିଛି ? ଆମର ଅଭ୍ୟସ୍ତ ଜୀବନର, ଆମର ଅଭ୍ୟସ୍ତ ଦୈନନ୍ଦିନ ଜୀବନ-ଯାତ୍ରାର କେଉଁଠି ଟିକିଏ ଘୁଣ ଲାଗିଲାମାତ୍ରେ ଆମେ କହୁ 'କି ବିପଦ' । ରୋଗଶୋକ ମଧ୍ୟ ଯେତେ ବିପଜ୍ଜନକ, ପୁଅର ଚାକିରି ମିଳିବାଟା ମଧ୍ୟ ସେତିକି । ଜୋଇଁଘର ସଙ୍ଗେ ମନାନ୍ତର, ପଡ଼ୋଶୀ ସଙ୍ଗେ ମତାନ୍ତର, ସରକାରୀ ଜିନିଷ ହଜିବା, ଦାମିକା ଜିନିଷ ହଜିବା, ବଜାର ଦର ବେଶୀ ହେବା, ପୁରୁଣା ଚାକର ଚାଲିଯିବା, ସବୁ ଆମ ପାଖରେ 'ବିପଦ' । ତା ମାନେ ଏ ସବୁଯାକରେ ଆମମାନଙ୍କର ଅସୁବିଧା ଘଟେ । ମୋର ମୋହନର ସ୍ତ୍ରୀ ତା' 'ଚାକର'ର ସାମାନ୍ୟ ଦେହ ଖରାପ ହେଲାକ୍ଷଣି କହେ, ''କି ସର୍ବନାଶ ! ଏ କି ବିପଦ !'' କହି 'ସାରିଡନ' ଖାଇ ଶୋଇପଡ଼େ ।

ଦୁଇଜଣଯାକ ହସିପକାଇଲେ ।

ତା'ପରେ ପାରୁଲ ପୁଣି କହିଲା, ଏ ସବୁ ଦେଖି ଶୁଣି ଅର୍ଥାତ୍ ଏତେକାଳ ଧରି ମାନବଚରିତ୍ର ଆଉ ସମାଜଚିତ୍ର ଅନୁଧାବନ କରି ବୁଝି ଦେଇଛି, ସବୁ ଭୟର ମୂଳକଥା ସେହି ବିପଦର ଭୟ । ହେଇଟି ମୁଁ କାଲିଠାରୁ କେତେ ଶହଥର ସେ ଦେଖି ନ ଥିବା ଡାକ୍ତରଖାନାଟାର ଆଖପାଖରେ ଘୂରି ବୁଲିଛି,

କାହିଁ 'କପାଳରେ ଯାହା ଥିବ' କହି ବାହାରି ପଡ଼ିପାରିଲି ନାହିଁ । ଡର ଲାଗିଲା– କେଜାଣି ବାପା, କେତେପ୍ରକାର ବିପଦରେ ପଡ଼ିଯାଇପାରେ ! ଆଜିକାଲିର ଝିଅମାନେ ସେ ଡର ଡରନ୍ତି ନାହିଁ । ସେମାନେ ଖାଲି ଭାବିନିଅନ୍ତି ଏଇଟା ମତେ କରିବାକୁ ପଡ଼ିବ, ଆଉ ତା' କରିବା ପାଇଁ ଯାହା କରିବା କଥା ସବୁ କରିବାକୁ ପଡ଼ିବ । ଅସୁବିଧାରେ ପଡ଼ିବ, ବିପଦ ହେବ, ଏ ଚିନ୍ତା କରନ୍ତି ନାହିଁ ସେମାନେ ।

ଗଙ୍ଗାନଦୀର ବେଶ୍ ସୁନ୍ଦର ପବନ ବହୁଛି, ଦେହଟା ଶୀତେଇ ଯାଉଛି, ତେବେକେ କଥା କହୁଥାଏ ସେ ।

ଅନ୍ୟମନସ୍କ ଗଳାରେ ବକୁଳ କହିଲା, ଆହୁରି ଗୋଟାଏ ବଡ଼ ଜିନିଷକୁ ସେମାନେ ଭୟ କରନ୍ତି ନାହିଁ, ସେଇଟା ହେଉଛି ଲୋକନିନ୍ଦାର ଭୟ । 'ଲୋକେ କ'ଣ ଭାବିବେ' ତା' ନେଇ ଏ ଯୁଗ ମୁଣ୍ଡ ଘୂରାଏନି । ଯାହା ଆମ ଯୁଗରେ ସର୍ବପ୍ରଧାନ ଚିନ୍ତାର କଥା ଥିଲା ।

ପାରୁଲ୍ ଟିକିଏ ହସିଲା, ହଁ ସତକଥା । ମୋର ଜଣେ ସଂପର୍କରେ ଆଈଶାଶୁ ଥିଲେ, ବୁଢ଼ୀ କଥା କଥାକେ ଢଗ ମେଲୁଥାନ୍ତି, କହୁଥାନ୍ତି– ଯାହାକୁ ଛିଃ କହିଲା, ତା'ର କ'ଣ ରହିଲା ? କହୁଥିଲେ– ଲୋକଭୟ ନାହିଁ ଯାହାର,ବଡ଼ ବିଷମ ଢଙ୍ଗ ତାହାର ।

–ଆମମାନଙ୍କର କାଳ ଆମକୁ ସେହି 'ନାନାବାୟା'ର ଭୂତଟାକୁ ଦେଖାଇ ଦେଖାଇ ଜବଦ୍ କରି ରଖିଥିଲା ।...... ନିଃଶ୍ୱାସ ପକାଇ ବକୁଳ କହିଲା, ଅଥଚ ଏ ଝିଅଟା ଯୁ'ଦିନ ଚାଲିଆସିଲା, କେତେ ସହଜରେ ଚାଲିଆସିଲା । ବାପା କହିଲା, ମୋ ଘରେ ଏସବୁ ଚଳିବନି । ଝିଅ କହିଲା, ଠିକ୍ ଅଛି, ତା'ହେଲେ ମୁଁ ନିଜେ ଚାଲିଲି ତମ ଘରୁ ।' ବାସ୍, ହେଇଗଲା ! ମିନିଟ୍‌ଟିଏ ମଧ ଭାବିଲାନି, ଏ ଆଶ୍ରୟ ଛାଡ଼ି ଦେଇଯାଉଛି, କୋଉଠି ଯାଇ ଠିଆ ହେବି ? ଥରଟିଏ ମଧ ଭାବିଲା ନାହିଁ, ମୋର ଏ ଚାଲିଯିବାଟାକୁ ଲୋକେ କି ଆଖିରେ ଦେଖିବେ । ଝିଅଟେ, ଦୈବ-ଦୁର୍ବିପାକରେ ପଡ଼ି ମଧ ଯଦି ଗୋଟିଏ ରାତି କେବଳ ବାହାରେ ରହିଥାନ୍ତା, ତା'ର ଜାତି ଯାଇଥାନ୍ତା– ୟା ତ ଥିଲା ହେଇଟି ସେଦିନର କଥା !

–ଯେ ଉଲଗ୍ନ, ତା'ର ଆଉ ଦୁଷ୍ଟଙ୍କର ଭୟ କ'ଣ ଅଛି ?– ପାରୁଲ୍ କହିଲା– ଯେଉଁମାନେ ଜାତି କଥାଟାକୁ ହିଁ ମାନନ୍ତି ନାହିଁ, ସେମାନଙ୍କର ଆଉ ଜାତି ଯିବାର ଡର କ'ଣ ? ଏମାନେ ଦେଖୁଛନ୍ତି ସୁବିଧାବାଦୀମାନେ ଧୁନି ଜାଳି ଜାଳି ଧୂଆଁର ପାହାଡ଼ ସୃଷ୍ଟିକରି କହୁଛନ୍ତି– ଏ ହେଉଛି ଅଲଂଘ୍ୟ ହିମାଳୟ ! ବାସ୍ 'ଅଲଂଘ୍ୟ' ? ଏ ଯୁଗ ସେ ପାହାଡ଼କୁ ଧକ୍କା ଦେଇ ଦେଖିଲା, ଦେଖିଲା ପଥର ନୁହେଁ, ଧୂଆଁ ! ଅତି ସହଜରେ ସେ ପାରି ହୋଇଗଲା ।

— ହଁ ଝିଅଟା ମଧ୍ୟ ସେଥିପାଇଁ ମିଥ୍ୟା ପାହାଡ଼ଟାକୁ କଣା କରି ପଳାଇଗଲା । ଯେଉଁ ମୁହୂର୍ତ୍ତରେ ଜାଣିଲା— ବାପାଙ୍କ ଘରେ ମୋର ଯାହା ପଛକେ ଥାଉ, ମର୍ଯ୍ୟାଦା ନାହିଁ, ସେହି ମୁହୂର୍ତ୍ତରେ ହିଁ ଠିକ୍ କରି ପକାଇଲା, ଅତଏବ ଏ ସ୍ଥାନଟିକୁ ତ୍ୟାଗ କରିବାକୁ ପଡ଼ିବ । ଏମିତି ମନର ଜୋର୍ ଆମମାନଙ୍କର କେଉଁଦିନ ଥିଲା ? କେତେ ଅସମ୍ମାନର ଇତିହାସ, କେତେ ଅମର୍ଯ୍ୟାଦାର ଗ୍ଲାନି ବହନ କରି ଆଶ୍ରୟଟାକୁ ବଞ୍ଚାଇ ରଖିଛି । ଏବେ ମଧ୍ୟ ରଖୁଛି— ଏବେ ମଧ୍ୟ ସ୍ଥିର ବିଶ୍ୱାସ ରାଜେନ୍ଦ୍ରଲାଲ ଷ୍ଟ୍ରୀଟ୍‌ର ସେଇ ଇଟାର ପଞ୍ଜୁରିଟି ଭିତରେ ହିଁ ବୋଧହୁଏ ରହିଛି ମୋର ମର୍ଯ୍ୟାଦା, ମୋର ସମ୍ମାନ । ତାରି ସୀମାରୁ ବାହାରି ଆସିଲା ମାତ୍ରେ ଲୋକେ ମୋ ଆଡ଼କୁ କୌତୂହଳର ଦୃଷ୍ଟିରେ ଚାହିଁବେ । ସେହି ପଞ୍ଜୁରିଟିର ଲୁହା ବାଡ଼ ଗୁଡ଼ାକରେ କଳଙ୍କ ଲାଗି ଗଲାଣି, ତେବେବେ ତାହାକୁହିଁ ଚିପି ଧରି ବସି ରହିଛି ମୁଁ ।

ପାରୁଲ୍ କହିଲା— ଯାହାର ଯେମିତି ମନର ଗଢ଼ଣ । ତୁ ଯଦି ସାହସ କରି ବାହାରି ଆସି ପାରିଥାନ୍ତୁ, ଦେଖିଥାନ୍ତୁ ସେଇଟାକୁ ହିଁ ଲୋକେ ମାନି ନେଇଥାନ୍ତେ ।

— ସେଇ କଥା ହିଁ ତ ପଡ଼ିଛି, ସାହସ କାହିଁ ?

ପାରୁଲ୍ ଟିକିଏ ହସି ପକାଇଲା— ତୁ ଜଣେ ଏଡ଼େ ବଡ଼ ଲେଖିକା, ତେବେବେ ତୋଠାରୁ ମୋର ସାହସ ଅନେକ ବେଶୀ । ହେଇଟି ଦେଖେ, ଏକା ରହିଯାଇଛି । ଆତ୍ମୀୟଲୋକଙ୍କ ନିନ୍ଦାକୁ ଭୟ କରୁନି; ପୁଅମାନଙ୍କ ରାଗକୁ ଭୟ କରୁନି, ଚୋର ଭୟ, ଭୂତ ଭୟ କିଛି କରୁନି !

— ସେହିପରି ସମସ୍ତଙ୍କଠାରୁ ବିଚ୍ଛିନ୍ନ ହୋଇ ପଡ଼ିରହିଛୁ ! ସମସ୍ତେ ତତେ ତ୍ୟାଗ କରିଦେଇଛନ୍ତି...... ଅଳ୍ପ ହସି ବକୁଳ କହିଲା ।

ପାରୁଲ୍ ମଧ୍ୟ ଆଉଥରେ ହସିଲା । କହିଲା— ଯେଉଁମାନେ ଅତି ସହଜରେ ମତେ ତ୍ୟାଗ କରିପାରନ୍ତି, ସେମାନଙ୍କ ସଙ୍ଗେ ବିଚ୍ଛେଦ ହେବାରେ କ୍ଷତିଟା କୋଉଠି ହେଲା କହିଲୁ ? ଯାହା ନାହିଁ, ତାକୁ ହରାଇବାରେ କ୍ଷତି କ'ଣ ? ସବୁ ତ ଶୂନ୍ୟର ଉପରେ !

— ତୋର ହିସାବଟା ହିଁ କ'ଣ ସମ୍ପୂର୍ଣ୍ଣ ଠିକ୍ ନାନୀ ? ସେ ପକ୍ଷର ମଧ୍ୟ ଏଭଳି ଗୋଟାଏ ହିସାବ ଥାଇପାରେ । ବକୁଳ କହିଲା— ସିଧାସଳଖ ଭାବରେ ତୋର ପୁଅମାନଙ୍କ କଥାହିଁ ଧର । ସେମାନେ ମଧ୍ୟ ତ ଭାବିପାରନ୍ତି, ମା' ଭିତରେ ଯଦି ସ୍ନେହ ଥାଆନ୍ତା, ମା' କ'ଣ ଆମମାନଙ୍କୁ ତ୍ୟାଗ କରି ପାରିଥାନ୍ତା ?

— କଥାଟା ଅତି ସୂକ୍ଷ୍ମ ବକୁଳ, କଥାଟାକୁ ବୁଝାଇବାଟା କଷ୍ଟ । ଖାଲି ଅନୁଭବରେ ହିଁ ଧରାପଡ଼େ । ତୁ ତ ପୁଣି ସେ ରସରେ ଗୋବିନ୍ଦଦାସ ! (ବାବାଜିଟିଏ) !

ଜଗତର ଯେଉଁ ଦୁଇଟି ଶ୍ରେଷ୍ଠ ରସ, ତା' କବଳରୁ ମଜାରେ ଆଡ଼େଇ ହୋଇ କାଳ୍ପନିକ ମଣିଷମାନଙ୍କର ଦାମ୍ପତ୍ୟଜୀବନ ଆଉ ମାତୃସ୍ନେହ ଦେଇ କଲମକୁ ପକାଉଛୁ । ମୁଁ ସେମାନଙ୍କୁ ମୁକ୍ତି ଦେଇଛି । ସେମାନେ କହୁଛନ୍ତି ମା' ଆମକୁ ତ୍ୟାଗ କରି ଦେଇଛନ୍ତି...... । ମୁଁ ଯଦି ସେମାନଙ୍କୁ ଜାବୁଡ଼ି ଧରିଥାନ୍ତି ସେମାନେ କହନ୍ତେ– "ଆରେ ବାପା, ଇଏ ଯେ ଅକ୍ଟୋପାସ୍‌ର ବନ୍ଧନ ।" ତା'ହେଲେ କହିଲୁ ମା' ଭିତରେ ଯଦି ପ୍ରକୃତ ସ୍ନେହ ଥାଏ, ତେବେ ସେ କ'ଣ କରିବ ? ନିଜର ସୁନାମ-ଦୁର୍ନାମ ଦେଖିବ ? ନା ସନ୍ତାନକୁ ସେହି ଅକ୍ଟୋପାସ୍‌ର ବନ୍ଧନରୁ ମୁକ୍ତ କରିବ ?

– ତୁ କ'ଣ ଭାବୁଛୁ ସମସ୍ତେ ଏ ବନ୍ଧନଟା କଥା ହିଁ ଭାବୁଛନ୍ତି ?

– ତୁ କ'ଣ ଭାବୁଛୁ ?

– କେଜାଣି ।

– ଆରେ ବାପା, ସେଇଟା ହିଁ ଯେ ସ୍ୱାଭାବିକ ।

ପାରୁଲ୍ କହିଲା ଚଢ଼େଇ ଛୁଆଟା ଯେତେବେଳେ ଡିମ୍ବ ଭିତରୁ ବାହାରି ଆକାଶରେ ଉଡ଼ିବାକୁ ଯାଏ, ସେତେବେଳେ ସେ କ'ଣ, 'ଆହା ଏତେଦିନ ହେଲା ମୁଁ ଯାରି ଭିତରେ ଥିଲି । ଭାବି ସେ ଡିମ୍ବଖୋଳଟିକୁ ପିଠିରେ ଧରି ଉଡ଼ିବାକୁ ଯାଏ ? ଯଦି ବାଧ୍ୟହୋଇ ତାକୁ ସେଇଟା କରିବାକୁ ପଡ଼ିବ ଉଡ଼ିବା ଆକାଶଟା ତା'ର ଛୋଟ ହୋଇଯିବନି ?

– ତା'ହେଲେ ଆଉ ଦୁଃଖ କରିବାର କ'ଣ ଅଛି ?

– କିଛି ନାହିଁ । ଏଇଟା କେବଳ ଆଲୋଚନା । ଆଉ ଏଇଟା କେବଳ ଆଜିର କଥା ନୁହେଁ ବକୁଳ, ଚିରଦିନ କଥା 'ମୁଁ କେଉଁଠି ପାଇବି ତାକୁ, ମୋର ମନର ମଣିଷ ଯିଏରେ !' ସେ ନିଧି କାହିଁ ?

– 'ମନର ମଣିଷ'– ସେଇଟା ହେଉଛି ସୁନାର ପଥୁରୀ ଗିନା, ବୁଝିଲୁ ନାନୀ ? ସେଇଟାକୁ କେହି ପାଆନ୍ତି ନାହିଁ– ବକୁଳ କହିଲା– ତେବେକେ ଗୋବିନ୍ଦ ଭୋଗ ନ ପାଇଲେ ଖୁଦକୁଣ୍ଡାରେ ହିଁ ଚଳାଇବାକୁ ପଡ଼ିବ ।

– ଚଳାନ୍ତୁ । ଯେଉଁମାନଙ୍କୁ ଚଳାଇବାକୁ ହିଁ ପଡ଼ିବ ସେମାନେ ସେଇୟା କରନ୍ତୁ । ପାରୁଲ୍ କହିଲା– ଯେ ରାସ୍ତାକଡ଼ରେ ବସିପଡ଼ିଛି, ତା' ସହିତ ରାସ୍ତାରେ ଚାଲୁଥିବା ଲୋକମାନଙ୍କର ପଟିବନି, ସେ କେବଳ ବସି ବସି ହିଁ ଦେଖିବ ଚାଲୁ ଚାଲୁ ତା'ରି ପାଇଁ କିଏ ବସିପଡୁଛି କି ନାହିଁ ।

ପବନ ଜୋର୍‌ରେ ବହୁଥିଲା, ପରସ୍ପରର କଥା ଆଉ ଶୁଣାଯାଉ ନ ଥିଲା ।

ରଡ଼ି ଛାଡ଼ି ଛାଡ଼ି ଗପ କରିବାଟା ହାସ୍ୟକର, ସେ ଚେଷ୍ଟା କଲା ନାହିଁ ବକୁଳ । ଶୀତ ବି କରୁଥିଲା, ଦେହରେ କାନିଟାକୁ ଟାଣିଦେଇ ତୁନିହୋଇ ବସି ଦେଖିବାକୁ ଲାଗିଲା ବତାସିଆ ପବନ ଭିତରେ ଗଙ୍ଗାନଦୀର ଦୃଶ୍ୟ ।

କିନ୍ତୁ ଝଡ଼ର ମୁହାଁମୁହିଁ ହୋଇ ବସିରହିଥିବି କହିଲେ କ'ଣ ଆଉ ସତରେ ବସି ରହିହେବ ?

କେତେକ୍ଷଣ ପରେ ପାରୁଲ୍ କହିଲା— ଘରକୁ ଚାଲେ ।

ପାରୁଲ୍‌ର ଘରର ଅନାଡ଼ମ୍ବର ସାଜସଜ୍ଜା ବକୁଳର ଆଖିକୁ ଧନ୍ୟ କରିଦେଲା । କେତେ ଅଳ୍ପ ଜିନିଷପତ୍ରରେ ପାରୁଲ୍‌ର ଚଳିଯାଏ ।

ରାଜେନ୍ଦ୍ରଲାଲ ଷ୍ଟ୍ରୀଟ୍‌ର ଘରଟା କଥା ମନେପଡ଼ିଲା ବକୁଳର । ପ୍ରୟୋଜନର ଅତିରିକ୍ତ ବସ୍ତୁର ଭାରରେ ଭାରାକ୍ରାନ୍ତ ସେହି ଘରଟା ଯେମିତି କୁଶ୍ରୀତାର ନମୁନାକୁ ଦେଖାଇ ପର୍ବତ ଭଳି ବସି ରହିଛି । ତାକୁ ହାଲୁକା କରିପାରିବ, ଏଭଳି ସାଧ ଆଉ କାହାର ନାହିଁ । ଅଳକାର ସାଧ ଥିଲା, ଅଳକା ସେ ସାଧକୁ କାମରେ ଲଗାଇଛି । ତା' ଅଂଶର ଯେତେକ 'ଆବୁରୁଜୁବୁରୁ' ଜିନିଷକୁ ଶାଶୁଙ୍କ ଘରକୁ ଚାଲାଣ କରିଦେଇ ନିଜର ଅଂଶଟିକୁ ସଜାସଜି କରି ସୁଖରେ ଦିନ କଟାଉଛି ଅଳକା ।

ଆଉ ଅଳକାର ଶାଶୁ ?

ସେ ଏହି ପୁରୁଣା ଘରର ଯେଉଁଠି ଯାହା ଥିଲା, ସେ ସବୁକୁ ଛାତି ପତାଇ ନେଇ ଆସି ନିଜ ଘର ଭିତରେ ପୂରାଇ ରଖିଛନ୍ତି । ଶ୍ରୀହୀନ ସେହି ସବୁ ଜିନିଷପତ୍ର କେବଳ ବଡ଼ ଗୃହିଣୀଙ୍କର ମୂଢ଼ତାର ସାକ୍ଷ୍ୟ ବହନ କରିଛନ୍ତି । ସେ କୋଠରିଟାରେ ଯେ କ'ଣ ଅଛି ଆଉ କ'ଣ ନାହିଁ !

ଅବଶ୍ୟ ବକୁଳ ଦୈବାତ୍ କେବେ ଗୋଟା ଘରଟାରେ ଓ ଅଗଣାରେ ପାଦ ପକାଇବାକୁ ସମୟ ପାଏ, ତେବେକେ ଯେଉଁଦିନ ପାଏ, ସେଦିନ ବଡ଼ଭାଉଜଙ୍କ ଘରେ ପଶିଲେ ତା'ର ନିଃଶ୍ୱାସ ରୁଦ୍ଧ ହୋଇଯାଏ ।

ବକୁଳ ଜାଣେନି ଘରେ ଯେତେକ ଦିଆସିଲି ବାକ୍ସ ଖାଲି ହୁଏ, ସେଗୁଡ଼ିକ କେଉଁ ମନ୍ତ୍ରରେ ବଡ଼-ଭାଉଜଙ୍କ ଘରେ ଯାଇ ପଶନ୍ତି । ଆଉ ବଡ଼ଭାଉଜଙ୍କର କୋଉ କାମରେ ବା ଲାଗନ୍ତି ?

ଇହକାଳ ପାଇଁ ତାର ଛିଣ୍ଡିଯାଇଥିବା ସାରା ଘରଟାଯାକର ଇଲେକ୍ଟ୍ରିକ୍ ବଲ୍‌ବ ତାଙ୍କର କୋଉକାମରେ ଲାଗନ୍ତି ସେ କଥା ମଧ୍ୟ ବକୁଳ ଜାଣେନି । ଘରଟାଯାକର

ସମସ୍ତଙ୍କର କୋତରା ହୋଇଯାଇଥିବା ଶାଢ଼ୀର ଧଡ଼ି, ଯେତେକେ ଖାଲି ହୋଇଯାଇଥିବା ଟିଣ, ଜାର୍, ଶିଶି, ବୋତଲ !

ବୈଧବ୍ୟ ପରଠାରୁ ଯେପରି ବଡ଼ଭାଉଜଙ୍କର ଏଇଯେତେକ ସବୁ ଅଦରକାରୀ ଜଞ୍ଜାଳ ଏକାଠି କରିବାର ପ୍ରବୃତ୍ତି ବଢ଼ିଯାଇଛି ଚାରିଗୁଣ । କେବଳ ଗୋଟିଏମାତ୍ର ତକିଆରେ ତାଙ୍କର ଚଳିଯାଏ, ଅଥଚ ପଟାଖଟର ମୁଣ୍ଡ ପାଖରେ ଡଜନେ ଖଣ୍ଡେ ଭଲ-ମନ୍ଦ ଛୋଟ-ବଡ଼ ତକିଆ ସେ ଠୁଳ କରିଥାନ୍ତି । ତାଙ୍କର ଏ ଗୋଟାଇ ବୁଲିବାକୁ ଦେଖି କିଏ ହସିଲେ ଭାରି ବିରକ୍ତ ହୋଇ କହନ୍ତି— ରଖିବିନି ତ କ'ଣ ।

ସବୁ ଫିଙ୍ଗି ଫୋପାଡ଼ି ଭସେଇଦେବି ? ଥରେ ଗଲେ ମୋ ପାଇଁ ଆଉ କିଏ କରିଦେବାକୁ ଆସିବ ? ଜିନିଷଟାଏ ଦରକାର ପଡ଼ିଲେ କ'ଣ କିଏ ଆସି ଯୋଗାଇଦେବ ?

ବଡ଼ଭାଉଜଙ୍କ ପୁଅ ମା' ସମ୍ପର୍କରେ ଏମିତି ଉଦାସୀନ ବୋଲି କ'ଣ ଏମିତି ଦୁଶ୍ଚିନ୍ତା ରହିଛି ତାଙ୍କର ?

କିନ୍ତୁ ପାରୁଲ୍‌ର ପୁଅମାନେ ? ସେମାନେ ମଧ୍ୟ କ'ଣ ମା' ସମ୍ପର୍କରେ ଏତେ ସଚେତନ ? ଅଥଚ ପାରୁଲ୍ ସେମାନଙ୍କ ପାଖରୁ କେବେହେଲେ କୌଣସି କଥାର ପ୍ରତ୍ୟାଶା ରଖି ନାହିଁ । ପାରୁଲ୍ ଯେମିତି ସବୁଥିରେ ସ୍ୱୟଂସମ୍ପୂର୍ଣ୍ଣ । ମନେହୁଏ 'ଦରକାର' ନାମକ ବସ୍ତୁଟାକୁ ପାରୁଲ ନିଜ ଜୀବନରୁ ନିର୍ବାସନ କରିଦେଇଛି ! ସେଇଥିପାଇଁ ରିକ୍ତତାରେ ସୁନ୍ଦର ହୋଇଯାଇଛି ପାରୁଲ୍ ଘରଟା । ଯେମିତି ସୁନ୍ଦର ପାରୁଲ୍‌ର ନିରାଭରଣ ହାତ ଦୁଇଟା !

ପାରୁଲ୍‌ର ଘରେ ବାହୁଲ୍ୟ ଭିତରେ କାନ୍ଥରେ ରବୀନ୍ଦ୍ରନାଥଙ୍କର ଗୋଟାଏ ବେଶ୍ ବଡ଼ ମାପର ଚିତ୍ର ରହିଛି । ବାକି ସବୁ କାନ୍ଥଗୁଡ଼ାକ ସାଦା ଶୂନ୍ୟ । ପାରୁଲ୍‌ର ଘରଟାକୁ ଦେଖି ବକୁଳକୁ ଅବାକ୍ ଲାଗୁଛି । ଭଲ ଲାଗୁଛି । ହସିଦେଇ ସେ କହିଲା— ତୋ'ର ଦ୍ୱାର ଦେଖି ମୋର ହିଂସା ହେଉଛି ନାନୀ ।

—ମୋ ଘର ଦେଖି ତୋର ହିଂସା ହେଉଛି ?

—ହେଉଛି ।

—ତା'ହେଲେ ହିଂସା କର । ତେବେ ଅତି ବଡ଼ ମୂର୍ଖର ମଧ୍ୟ ୟା ହୁଅନ୍ତାନି ।

—ମୂର୍ଖର ହୁଏତ ହୁଅନ୍ତା ନାହିଁ । କିନ୍ତୁ ନିଜକୁ ତ ମୁଁ ମୂର୍ଖ ବୋଲି ଭାବୁନି ।

ପାରୁଲ୍ କହିଲା— ଅନେକଦିନ ହେଲା କାହାର କିଛି ଖବର ଜାଣିନି, ତୁ କହିଲୁ, ମୋର ଅଜ୍ଞାତସାରରେ କ'ଣ କ'ଣ ଘଟିଛି ଆମ ଘରେ ?

ହସିପକାଇ ବକୁଳ କହିଲା– ଯାହେଉ ଭଲଲୋକଙ୍କୁ ପଚାରିଛୁ । ମୋର ଜ୍ଞାତସାରର ପରିଧି ବହୁତ ଅଳ୍ପ, ନାନୀ, ମୁଁ ଘର ଭିତରେ ଥାଇ ମଧ୍ୟ ଘରର କିଛି ଜାଣେନି ।

–ପ୍ରସୂନ ତ ଫେରି ନାହିଁ ?

–ସେଇଟା ଗୋଟାଏ ଦୁଃଖର ଇତିହାସ । ଶୁଣିଥିଲି ଚିଠିର ସଂଖ୍ୟା କମି କମି କେବଳ ଶୂନ୍ୟ ସଂଖ୍ୟାରେ ପହଞ୍ଚିଲାଣି ।

–ସାନଭାଇନାଙ୍କ କଥା ଭାବିଲେ ବହୁତ ମନ ଖରାପ ହେଉଛି । ସେ 'ଯେମିତି' ଥିଲେ ନା ! ନିଜ ପୁଅଝିଅଙ୍କଠୁ ମଧ୍ୟ ଯନ୍ତ୍ରଣା ପାଇଲେ ।

–ସେ ସବୁ କଥା ଥାଉ ପାରୁଲ୍ ନାନୀ, ତୋରି କଥା କହ

–ମୋର ? ମୋର ପୁଣି କଥା କ'ଣ କିଲୋ ? 'କଥା'କୁ ତ ଜୀବନରୁ ନିର୍ବାସନ କରି ଦେଇ ବସିଛି । ଆଉ ସମାଜ-ସଂସାର ଆଡ଼କୁ ଚାହିଁ ଦେଖୁଛି ।

–କ'ଣଟା ଦେଖୁଛୁ ?

–ଦେଖୁଛି ତା'ର ବଜ୍ରବନ୍ଧନରୁ କେମିତି ଗଣ୍ଠି କାଟି ପଳାଇ ଆସିଛି ।

–ଭାଗ୍ୟକୁ ସେ 'ଅକବି ଲୋକଟା' ତୋ' ପାଇଁ ଏମିତି ଘରଟିଏ ତିଆରି କରି ରଖିଦେଇ ଯାଇଛନ୍ତି, ସେଇଥିପାଇଁ ନା ତୋ'ର ଏତେ କବିତ୍ୱ ବାହାରୁଛି ? ପାରୁଲ ଅକପଟରେ କହିଲା– ତା' ସତ । ଖାଲି ଏଇଟା ପାଇଁ ଏବେ ଲୋକଟାର ପ୍ରେମରେ ପଡ଼ିବାକୁ ଆରମ୍ଭ କରିଛି ।...... ତା'ପରେ ପାରୁଲ୍ କହିଲା– ଏଥର ତା'ହେଲେ ପଚାରେ, ବକୁଳର କାହାଣୀ କଥା କ'ଣ ହେଲା ?

–ମୁଁ ବି ତ ସେଇୟା ଭାବୁଛି, କ'ଣ ହେଲା !...... ବକୁଳ କହିଲା ।

ତା'ପରେ ଆସ୍ତେ କହିଲା– ଆଉ ଲେଖିବା କ'ଣ ହେବ ? ନିର୍ମଳ ତ ପଢ଼ିବନି । ଦୁଇଜଣଯାକ ଚୁପ୍ ହୋଇଗଲେ ।

ହୁଏତ ଅନେକଦିନ ଆଗେ ହଜିଯାଇଥିବା ନିର୍ମଳ, ସେ ପୁଅଟିର ମୁହଁକୁ ମନେ ପକାଇବାକୁ ଚେଷ୍ଟା କଲେ ।

ଅନେକ ସମୟ ପରେ ପାରୁଲ୍ କହିଲା, ନିର୍ମଳର ସ୍ତ୍ରୀ କୋଉଠି ଅଛି ?

–ଠିକ୍ ଜାଣେନି, ବୋଧହୁଏ ତା' ପୁଅ ଯେଉଁଠି ଚାକିରି କରୁଛି, ସେଠି । ବକୁଳ କ'ଣ କୋଉଦିନ କୋଉ କାରଣରୁ କେବେ କାହା ଆଗରେ ନିର୍ମଳର ନାଁକୁ ଉଚ୍ଚାରଣ କରିଛି ? କାହିଁ ମନେପଡୁନି । ଆଜି ହିଁ ହଠାତ୍ କହି ପକାଇଲା, ଲେଖି ବା କ'ଣ ହେବ ? ନିର୍ମଳ ତ ପଢ଼ିବନି ।

ଏହି ସ୍ୱୀକାରୋକ୍ତି କ'ଣ ବକୁଳର ନିଜ କାନକୁ ବି ଅଦ୍ଭୁତ ଲାଗିଲା ନାହିଁ ? ବକୁଳ ନିଜେ କ'ଣ ଆଶ୍ଚର୍ଯ୍ୟ ହୋଇଗଲାନି ? ବକୁଳ କ'ଣ କେବେ ଭାବିଛି...... ଲେଖି ବା କ'ଣ ହେବ ? ନିର୍ମଳ ତ ପଢ଼ିବନି ?

ଭାବିନି, ସେହି ଭାବନା ଟିକ୍କକ ଭାବିବାକୁ ଯେଉଁ ଏକାନ୍ତ ଗଭୀର ନିଭୃତିର ପ୍ରୟୋଜନ ତାହା କୌଣସିଦିନ ବକୁଳର ଜୀବନରେ ମିଳି ନାହିଁ । ବକୁଳ ହେଉଛି ହାଟର ମଣିଷ, କାରଣ ବକୁଳ ସ୍ୱେଚ୍ଛାରେ ହାଟ ଭିତରକୁ ଓହ୍ଲାଇଥିଲା, ସେଠୁ ଆଉ କେବେହେଲେ ଛୁଟି ମିଳିଲା ନାହିଁ ତାକୁ । ସେଥିପାଇଁ ସେ ନିଜେ କେବେହେଲେ ଜାଣିପାରିନି ଅନେକ ଗଭୀରତାରେ ଆଜି ମଧ ଏକଦାର ସେହି ଛଦ୍ମବେଶହୀନ ବକୁଳ ଉଦାସୀନ ମନରେ ବସି ଭାବେ, ସେ କଥା ଲେଖିଲେ କ'ଣ ହେବ ? ନିର୍ମଳ ତ ପଢ଼ିବନି ।

ଆଜି ଏହି ନିତାନ୍ତ ନିର୍ଜନ ପରିବେଶ, ଏ ଗଙ୍ଗାତୀରର ବାରଣ୍ଡାରେ ବତାସିଆ ପବନ ଆଉ ଆବାଲ୍ୟର ସଙ୍ଗିନୀ ସାନମଝିଆ ନାନୀ ସହିତ ମୁହାଁମୁହିଁ ହୋଇ ବସି ରହିବା— ସବୁ ମିଶି ଯେପରି ସେଇ କୁଣ୍ଠିତ ସଙ୍କୁଚିତ ଲାଜକୁଳୀ ବକୁଳକୁ ଟାଣିନେଇ ଆସିଲେ ତା'ର ଅବଚେତନର ଗଭୀର ସ୍ତରରୁ ।

ହୁଏତ ଖାଲି ଏହି ଟିକକ ବି ନୁହେଁ । ଗୋଟାଏ ବିରାଟ ବଡ଼ ଧକ୍କା ଦେଇ ଦେଇ ଯାଇଛି ସେ ଝିଅଟାର ଗଡ଼ ଗଡ଼ ହୋଇ ଚାଲି ଯାଉଥିବା ଗାଡ଼ିର ଚକଟା । ସେ ଝିଅଟା ବକୁଳକୁ ଧିକ୍କାର କରିଛି, ଧିକ୍କାର କରିଛି ବକୁଳର କାଳକୁ । ସେହି କାଳ ମୁଣ୍ଡ ତଳକୁ କରି କହିବାକୁ ବାଧ ହେଲା— ତମ ପାଖରେ ଆମେ ହାରିଯାଇଛୁ । ଜୀବନରେ ସବୁଠାରୁ ବଡ଼ ଆମେ କରିଥିଲୁ ନିନ୍ଦାର ଭୟକୁ, ତମେମାନେ ସେହି ଜିନିଷଟାକୁ ଜୟ କରିଛ । ତୁମେମାନେ ବୁଝିଛ ଭଲପାଇବାଠାରୁ ବଡ଼ କିଛି ନାହିଁ, ତମେମାନେ ଜାଣିନେଇଛ ନିଜ ଜୀବନକୁ ନିଜେ ଆହରଣ କରି ନେବାକୁ ପଡ଼େ, ସେଇଟାକୁ କେହି କାହାକୁ ନିଜ ହାତରେ ଟେକି ତୋଳି ଦିଅନ୍ତି ନାହିଁ । ସେହି ଜୀବନକୁ ଆହରଣ କରିନେବାକୁ ତମେମାନେ ତମର ରଥକୁ ଘିଡ଼ି ଘିଡ଼ି କରି ଟାଣି ନେଇଯାଇ ପାରିବ କଣ୍ଟାବଣ ଉପର ଦେଇ !

ବକୁଳର ଛଦ୍ମବେଶଟା ଅନେକ ପାଇଛି, ଅନେକ ପାଉଛି, ହୁଏତ ଆହୁରି ଅନେକ ପାଇବ । ସେଠାରେ କେତେ ଉଜ୍ଜ୍ୱଳତା, କେତେ ସମାରୋହ, କିନ୍ତୁ ଛଦ୍ମବେଶ ଯେତେବେଳେ ବକୁଳ ଖୋଲି ରଖିଦିଏ, କି ନିଃସ୍ୱ, କି ଦୀନ, କି ଦୁଃଖୀ ଦିଶେ ସେ !

କିନ୍ତୁ ଖାଲି କ'ଣ ଏକୁଟିଆ ବକୁଳ ? କେତେଜଣଙ୍କ ଜୀବନରେ ଭିତର ବାହାର ସମାନ ଉଜ୍ଜ୍ୱଳ ?

ଅନେକକ୍ଷଣ ପରେ ବକୁଳ କହିଲା ।

ପାରୁଲ୍ ସହିତ ସନତ କକେଇଙ୍କର ସେମିତି କିଛି ଯୋଗାଯୋଗ ନ ଥିଲା । ପାରୁଲ୍ ତ ଅନେକ ଆଗରୁ ବିଭା ହୋଇ ଶାଶୁଘରକୁ ଚାଲିଯାଇଥିଲା ।

ସନତ କକେଇଙ୍କର ଜଣେ ବିଶେଷ ବନ୍ଧୁ ମହାସମାରୋହରେ ଖଣ୍ଡିଏ ପତ୍ରିକା ପ୍ରକାଶ କଲେ, ସେହି ପତ୍ରିକା ସୂତ୍ରରେ ହିଁ ବକୁଳ ପାଇଥିଲା ଏକ ବିଶାଳ ବଟଛାୟା ବକୁଳ କ'ଣ ତା' ଆଗରୁ କୌଣସି ଦିନ ଜାଣିଥିଲା ଜଗତରେ ଛାୟା ଅଛି ? ବକୁଳ ଜାଣିଥିଲା ଜଗତରେ ଖାଲି ପ୍ରଖର ରୌଦ୍ର ରହିଛି । ବକୁଳ କ'ଣ ଜାଣିଥିଲା ଜଗତରେ ଆଲୁଅ ଅଛି ? ଆକାଶ ଅଛି ? ସେସବୁ ଜାଣିବାର ଅଧିକାର ମୁକ୍ତକେଶୀଙ୍କ ମାତୃଭକ୍ତ ପୁତ୍ର ପ୍ରବୋଧଚନ୍ଦ୍ରଙ୍କର ସଂସାର-ଭୁକ୍ତଙ୍କର ନ ଥିଲା ।

ସନତ ନାଆଁର ସେ ମଣିଷଟି ପ୍ରବୋଧଚନ୍ଦ୍ରଙ୍କ ଅଚଳାୟତନର ସୀମାରୁ ବକୁଳକୁ ଆକାଶ ତଳକୁ ନେଇ ଯାଇଥିଲେ, ନେଇ ଯାଇଥିଲେ ଅନ୍ୟ ଏକ ଜଗତକୁ । ସନତ୍ କକେଇଙ୍କ ସାହାଯ୍ୟ ନ ପାଇଥିଲେ ହୁଏତ ବକୁଳର ଜୀବନର ଇତିହାସ ଅନ୍ୟ ପ୍ରକାର ହୋଇଥାନ୍ତା ।

ପାରୁଲ୍ ଜାଣିଛି, ତେବେକେ ହୁଏତ ସବୁଯାକ ଜାଣିନି । ସେଥିପାଇଁ ପାରୁଲ୍ କହିଲା– ଏ ମା ! ମନେ ନ ଥିବ କାହିଁକି ? ବାପାଙ୍କର ସେ କ'ଣ ସମ୍ପର୍କୀୟ ଭାଇ ନା ? ଅନ୍ୟ ଜାତିର ଝିଅ ବିଭା ହୋଇ ଏକଘରିଆ ହୋଇଥିଲେ ? ତାଙ୍କର ସେହି 'ବନ୍ଧୁର' କାଗଜରେ ତ ତୋର ପ୍ରଥମ ଲେଖା ବାହାରିଥିଲା ? ବାପା ତାଙ୍କୁ ଦି ଆଖିରେ ଦେଖି ପାରୁ ଥିଲେ । ସେଇୟା ନା ବକୁଳ ?

–ହଁ, ସଂସାରକୁ ଯେଉଁମାନେ ଟିକିଏ ଉଦାରତା ନେଇଆସିବେ, କେହି ତାଙ୍କୁ ଦେଖିପାରନ୍ତି ନାହିଁ...... ପାରୁଲ୍ ଟିକିଏ ହସିଲା– ଆଜି ଜଣେ ପୁରୁଣା ଲୋକକୁ ଦେଖି ତୋର ବୋଧହୁଏ ଯେତେକ ପୁରୁଣା ଲୋକଙ୍କ କଥା ମନେ ପଡୁଛି ?

ବକୁଳ ଠିକ୍ ସେ କଥାଟାର ଉତ୍ତର ନ ଦେଇ ଆସ୍ତେ କହିଲା– ସନତକକେଇ ମରିଗଲେ ।

ମରିଗଲେ !...... ପାରୁଲ୍ ହଠାତ୍ ଫଟ୍‌କିନା ଗୋଟାଏ ଅସମାନ କଥା କହିଦେଲା !

କହିଲା– ଏ ମା ! ଏତେଦିନପର୍ଯ୍ୟନ୍ତ ବଞ୍ଚିଥିଲେ ନା କ'ଣ ?

ତା'ପରେ ବୋଧହୁଏ ବକୁଳର ମୁହଁଟାକୁ ଦେଖିପାରି କହିଲା— କାହାରି କିଛି ଖବର ତ ଜାଣିପାରେନି, ରଖୁନି ମଧ୍ୟ । ଅନେକ ଦିନର ମଣିଷ ତ, ସେଇଥିପାଇଁ ଭାବିଥିଲି— ବକୁଳ ଶାନ୍ତଗଳାରେ କହିଲା— ହଁ, ଅନେକ ଅନେକଦିନର ମଣିଷ ।

—ଥିଲେ କୋଉଠି ?

—କଲିକତାରେ । ଶେଷ ଜୀବନରେ ନୀରୁ ଭାଇନା ପାଖରେ ଥିଲେ । ଦିଲ୍ଲୀରେ ଥିଲେ ।

ନୀରୁଭାଇନା ରିଟାଏର୍ କରି କଲିକତାକୁ ଆସିଲାରୁ— କଲିକତା ହିଁ ଚାଲିଆସିଥିଲେ । ଦେଖିବାକୁ ଗଲାରୁ କହିଥିଲେ— ନୀରୁର ଘରର ମାଲପତ୍ରଗୁଡ଼ାକ ଭିତରେ ତ ମୁଁ ଗୋଟାଏ, ମତେ ନେଇଆସିବା ଛଡ଼ା ସେମାନଙ୍କର ଆଉ ଗତି କ'ଣ ଥିଲା ?

ପାରୁଲ୍ ଟିକିଏ ତୁନିହୋଇ ରହି କହିଲା— ନୀରୁଭାଇନା ପୁତୁରା ବୋଲି ଯେ ସନତକକେଇଙ୍କୁ ସେମାନଙ୍କ ଘରର ମାଲପତ୍ରରେ ସାମିଲ ହୋଇଯିବାକୁ ପଡ଼ିଥିଲା, ସେକଥା ଭାବ୍‌ନା ବକୁଳ ! ନୀରୁଭାଇନା ତାଙ୍କର ନିଜର ପୁଅ ହୋଇଥିଲେ ମଧ୍ୟ କିଛି ଫରକ ହୋଇ ନ ଥାନ୍ତା । ଭାରି ଅବହେଳା ଭିତରେ ରହିବାକୁ ପଡ଼ିଛି, ବୋଧହୁଏ, ନା ଲୋ ?

ବକୁଳ ପ୍ରାୟ ହସିଦେଇ କହିଲା— ଉହୁଁ, ମୋଟେ ନୁହେଁ । ଆଦର-ଯତ୍ନର ସମାରୋହଟା ଦେଖିବା କଥା । ନୀରୁଭାଇନାର ସ୍ତ୍ରୀ କୋଳର ଛୁଆ ଭଳି ଶାସନ କରି ଦୁଧ ପିଆଇଛି, ଔଷଧ ଖୁଆଇଛି, ନୀରୁଭାଇନା ସହରର ବଛା ବଛା ଡାକ୍ତରମାନଙ୍କୁ ଆଣି ଠୁଳ କରି ଦେଇଛନ୍ତି ।

—କ'ଣ ସନତକକେଇଙ୍କର ବୋଧହୁଏ ଅନେକ ଟଙ୍କା ଥିଲା ?

ମୁରୁକି ହସି ପଚାରିଲା ପାରୁଲ୍ ।

ବକୁଳ ଏଥର ଗଳା ଖୋଲି ହସିଉଠିଲା— ନାଃ, ତୁ ଦେଖୁଛି ଆଗ ଭଳି ଠିକ୍ କୁଟିଳ ହୋଇ ରହିଛୁ । ଗଙ୍ଗାର ଏ ପବିତ୍ର ପବନ ତୋର କୌଣସି ପରିମାର୍ଜନା କରିପାରି ନାହିଁ । ଠିକ୍ ଆଗ ପରି କାର୍ଯ୍ୟ ପଛରେ କାରଣଟା ଚଟ୍ କିନା ଆବିଷ୍କାର କରିଦେଇ ପାରୁଛୁ ।

ତା'ପରେ ପୁଣି ଗମ୍ଭୀର ହୋଇଗଲା ସେ । ପାରୁଲ୍‌ର ମୁହଁର ସକୌତୁକ ରେଖା ଆଡ଼କୁ ଚାହିଁ କହିଲା— ବୋଧହୁଏ ଅନେକ ଟଙ୍କା ଥିଲା, ମଝି ମଝିରେ ଯାଇଛି ତ କେବେ ଦିନେ କହିଥିଲେ, ବରାବର ଭାବୁଥିଲି, ସାରାଜୀବନ ବ୍ୟୟଠାରୁ ଆୟଟା ବେଶୀ ହୋଇଯିବାର ଯେଉଁ ଭାରଟା ଜମିଯାଇଛି, ମରିବା ଆଗରୁ

ସେଇଟା କୌଣସି ମିଶନ ଫିଶନକୁ ଦେଇ ଯିବି, କିନ୍ତୁ ଏଇଲେ ଦେଖୁଛି ସେଇଟା ଏକାବେଳେ ପାପକର୍ମ ହେବ । ଅତଏବ ବରାବରର ଇଚ୍ଛାଟାକୁ ବାତିଲ କରୁଛି । ତୋର କ'ଣ ମନେ ହେଉଛି, ଏଇଟା ହିଁ ଠିକ୍ ହେଲା ନା ?

କହିଲି– ଆପଣଙ୍କୁ ମୁଁ ଠିକ୍-ଭୁଲ୍ ବୁଝାଇବି ?

ସନତକକେଇ କହିଲେ– ତା' କହିଲେ କେମିତି ହେବ ? ଶିଶୁମାନଙ୍କର ତ ଉଚିତ ବଡ଼ମାନଙ୍କଠୁ ବୁଦ୍ଧି ନେବା, ଆଉ ମୋର ଏଇଲେ ଦ୍ୱିତୀୟ ଶୈଶବ ଚାଲିଛି ।

କହିଥିଲି, ଅବଶ୍ୟ ହସି କହିଥିଲି– ବୋଧହୁଏ ଏଇଟା ହିଁ ଠିକ୍, କାହାର ଆଶାଭଙ୍ଗର ଅଭିଶାପ ଲାଗିବନି ।...... କିନ୍ତୁ ଭାରି ଦୁଃଖ ଲାଗିଥିଲା ସେଦିନ । ଅନେକ ସମାରୋହର ଆଢୁଆଳରେ ହଠାତ୍ ଯେତେବେଳେ ଭିତରର ନିତାନ୍ତ ଦୈନ୍ୟଟା ଧରା ପଡ଼ିଯାଏ, ଦେଖିଲେ କି କରୁଣ ଲାଗେ ! ଖାଲି ଅନେକ ଟଙ୍କା ଥିଲେ କିଛି ହେବନିଲୋ ପାରୁଲ୍ ନାନୀ, ଗଦି ବଜାୟ ରଖିବାକୁ ବହୁତ ଖଟିବାକୁ ପଡ଼େ । ସେ ଦୁଇଜଣଙ୍କ ଛଳନାରେ ଗଢ଼ା ସେହି ଉଚ୍ଚ ଆସନଟିକୁ ବଜାୟ ରଖିବାକୁ କମ୍ ଖଟିବାକୁ ପଡ଼ିଛି ବୁଢ଼ା ମଣିଷଟାକୁ ! ସେ ଘରେ ଯାଇ ବସିଲାମାତ୍ରେ କ'ଣ ମନେ ହେଉଥିଲା ଜାଣିଛୁ, ଯେମିତି ଷ୍ଟେଜ୍‌ରେ ଗୋଟାଏ ନାଟକ ଅଭିନୟ ହେଉଛି, ସନତକକେଇ ମଧ୍ୟ ତା ଭିତରେ ଜଣେ ଭୂମିକାଭିନେତା ।

ପାରୁଲ୍ କହିଲା– ଏବେ ମଧ୍ୟ ତୁ ଏସବୁ ନାଟକ-ଫାଟକ ଦେଖିଲେ ତତେ ଆଶ୍ଚର୍ଯ୍ୟ ଲାଗୁଛି, ଏଇଟା ହିଁ ଯେ ଭୀଷଣ ଆଶ୍ଚର୍ଯ୍ୟ କଥା !...... ମୋହନ-ଶୋଭନ ମଝି ମଝିରେ ଓଳିଏ ଦି'ଓଳି ପାଇଁ ବୁଲି ଆସନ୍ତି ସ୍ତ୍ରୀ ଓ ପିଲାଙ୍କୁ ନେଇ, ଦେଖିଲେ ତତେ ନିଶ୍ଚେ ଖୁବ୍ ଆଶ୍ଚର୍ଯ୍ୟ ଲାଗନ୍ତା । ଅଭିନୟର ଉତ୍କର୍ଷ ମଧ୍ୟ ତ ଗୋଟାଏ ଦେଖିବାର ଜିନିଷ !

–ତା'ହେଲେ ଆଉ କହିବାର କ'ଣ ଅଛି ? ବକୁଳ କହିଲା– ଏମିତି ତା'ହେଲେ ହୁଏ ?

–ବ୍ୟତିକ୍ରମ ମଧ୍ୟ ହୁଏ ସତ, ନ ହେଲେ ଇହଲୋକର ସଂସାର ଚାଲିଛି କିଁ ମୋହରେ ? ତେବେ ତୋର ନିଜର ଜୀବନରେ ହିଁ କ'ଣ ତୁ ଦର୍ଶକର ଭୂମିରେ ରହିପାରିଛୁ ? ଠିକ୍ ରୂପେ ଜାଣିନି, ପରଲୋକଗତ ପ୍ରବୋଧଚନ୍ଦ୍ରଙ୍କ ସଂସାର ଭିତରେ ତତେ ଯେଉଁମାନେ ଦେଖୁଛନ୍ତି, ଦେଖିବାର ଆଖି ଥିଲେ ସେମାନେ ମଧ୍ୟ ହୁଏତ ସେଇୟା କହିବେ ।

ବକୁଳ ନିଃଶ୍ୱାସ ଛାଡ଼ି କହିଲା– ହୁଏତ ତା' ନୁହେଁ, ହୁଏତ ସେଇୟା । କେତେଜଣ ଆଉ ତୋ ଭଳି ମଞ୍ଚରୁ ଚାଲି ଆସି ଦର୍ଶକଙ୍କ ଚଉକିରେ ବସି ରହିବାକୁ ଜାଣନ୍ତି କହିଲୁ ?

–କହିଲୁ ହୁଏତ ଭୁଲ୍ ନୁହେଁ...... ମୃଦୁ ହସି ପାରୁଲ୍ କହିଲା– ସେଇ ଚଉକିର ଟିକଟଟା କାଟିବାକୁ ତ ଦାମ୍ ଦେବାକୁ ହୁଏ ବହୁତ ! କହିବାକୁ ଗଲେ ସର୍ବସ୍ୱାନ୍ତ ହୋଇଯାଇ କିଣିବାକୁ ପଡ଼େ ।

ବକୁଳ ଟିକିଏ ତୁନିହୋଇ ରହି କହିଲା– ତୋ'ର ଆଉ ମୋର ମନର ଗଢ଼ଣ ସବୁଦିନେ ଅଲଗା ପାରୁଲ୍ । ମୋର ହେଉଛି ସବୁକିଛି ସଙ୍ଗେ ମାନିଯାଇ ଚଳିବା, ଆଉ ତୋର କୌଣସିଦିନ କୌଣସି ଅପସନ୍ଦ ସଙ୍ଗେ ମିଳାମିଶା କରିବାଟା ଅସମ୍ଭବ ।

ବହୁତ ଦିନ ପରେ ପିଲାବେଳ ପରି ପ୍ରାୟ ରାତି ପୁହାଇ ଦେଇ ଗପ କଲେ ବକୁଳ ଆଉ ପାରୁଲ ।

ଯେତେବେଳେ ଛୋଟ ଥିଲେ, ଯେତେବେଳେ ମନ ଭିତରେ କୌଣସି ବକ୍ତବ୍ୟ ତିଆରି ହୋଇ ନ ଥିଲା, ସେତେବେଳେ ମଧ୍ୟ ସେମାନେ ଦୁଇଭଉଣୀ ଏଭଳି ଗପ କରିଛନ୍ତି ଅନେକ ରାତି ପର୍ଯ୍ୟନ୍ତ, ବାପାଙ୍କ ନିଦ ଭାଙ୍ଗିଯିବା ଭୟରେ ଫିସ୍ ଫିସ୍ କରି ଗପ କରିଛନ୍ତି ।

ମା-ବାପାଙ୍କ ଘର ପାଖକୁ ହିଁ ତ ଥିଲା ସେ ଦୁଇଭଉଣୀଙ୍କ ଛାଉଣୀ । ସରୁ ଫାଳଟିଏ ପରି ସେ ଘରଟାରେ ଏବେ ଘରଯାକର ଯେତେସବୁ ଫାଲ୍‌ତୁ ଜିନିଷ ରହୁଛି । କୋଉ କୋଉଦିନ ବକୁଳ ସେ ପଟର ଘରକୁ ଗଲାବେଳେ ଦେଖିପାରେ, ଏଇଲେ ଘରଟାକୁ ଆଉ ଚିହ୍ନି ହେଉ ନାହିଁ । ଅବଶ୍ୟ ସେତେବେଳେ ଯେ ଏକବାରେ ସେ ଦୁଇଭଉଣୀଙ୍କର ହୋଇ ଘରଟା ଥିଲା ତା ନୁହେଁ, ସେ ଘରେ କାନ୍ଥକୁ ଲାଗି ଧାଡ଼ି ଧାଡ଼ି କରି ଟ୍ରଙ୍କ୍ ରଖାଯାଇଥିଲା । ଜାଲି ଆଲମାରି ଥିଲା, ପାଣି ସୋରେଇ ରହୁଥାଏ । ବକୁଳ-ପାରୁଲ୍ ପାଇଁ ଖଟ କି ଚଉକି ନ ଥିଲା, ରାତିରେ ଭୂଇଁ ଉପରେ ବିଛଣା ବିଛାଇ ଦି'ଜଣ ଶୋଉଥିଲେ । ତେବେବି ଘରଟାକୁ ଘର ବୋଲି ଚିହ୍ନା ଯାଇପାରୁଥିଲା, ଏବେ ଆଉ ଚିହ୍ନି ହେଉ ନାହିଁ ।

ଯେତେବେଳେ ଚିହ୍ନି ହେଉଥିଲା ସେତେବେଳେ ଦୁଇଟି ତରୁଣୀ ଝିଅର ଅପ୍ରୟୋଜନୀୟ, ଅବାନ୍ତର, ଅର୍ଥହୀନ କଥାରେ ଯେପରି ମୁଖର ହୋଇଉଠୁଥିଲା । ରାତି ନ ହେଲେ ତ ପାରୁଲ୍‌ର କବିତାଖାତା ଉଦ୍‌ଘାଟିତ ହୋଇପାରୁ ନ ଥାଏ । ସେତେବେଳେ ବକୁଳର ଖାତା ଥିଲା ମାନସଲୋକରେ ।

ତା'ପରେ ଯେତେବେଳେ ବିଭା ହୋଇଯାଇଥିବା ପାରୁଲ୍ ମଝିରେ ମଝିରେ ଆସିଛି ରାତିକୁ ଭୋର କରି ଗପିଛି । ସେତେବେଳେ ବକୁଳର ଖାତା ଆସ୍ତେ ଆସ୍ତେ ଆଲୋକର ମୁହଁ ଦେଖୁଛି ।

ଆଉ ପାରୁଲ୍‌ର ଖାତା ଆଲୋକର ମୁହଁ ଦେଖିବାର କଳ୍ପନା ତ୍ୟାଗ କରି ଆସ୍ତେ ଆସ୍ତେ ଅନ୍ଧକାର ଭିତରେ ତଳେଇ ଯାଉଛି । ସନ୍ଦେହୀ ଏପଟେ ଏକାବେଳକେ ଏକପତ୍ନୀଗତ ପ୍ରାଣ ସ୍ୱାମୀ ଅମଳବାବୁଙ୍କ ପୁଞ୍ଜୀଭୂତ ଆକ୍ରୋଶ ଯେ ସେହି ଖାତାଟା ଉପରେ ହିଁ ରହିଛି, ସେଇଟା ବୁଝିଦେଇ ଉଦାସୀନର ହସ ହସି ଖାତାଟାକୁ ବାକ୍ସର ତଳେ ପୂରାଇ ଦେଇଥିଲା ପାରୁଲ୍ ।

ବକୁଳ କହୁଥିଲା – ଇସ୍ ! ଏଠିକୁ ବି ନେଇକରି ଆସିନୁ ? ମୁଁ ତ ଦେଖିଥାନ୍ତି !

ପାରୁଲ୍ କହୁଥିଲା – ଧେତ୍ ! ଆଉ ଲେଖୁନି । କେତେଗୁଡ଼ାଏ ବାଜେ କଥା ଲେଖି କ'ଣ ହେବ ?

ସେଇଟା ପାରୁଲ୍‌ର ବିନୟ ଥିଲା । ଲେଖିବାଟାକୁ ସେ ଛାଡ଼ିପାରି ନାହିଁ । ଖାଲି ତାକୁ ଏକବାରେ ଗଭୀର ଅନ୍ତରାଳର ବସ୍ତୁ କରି ରଖିଥିଲା । ଏବେ ସୁଦ୍ଧା କ'ଣ ସେ ଲେଖୁନି ମଝିରେ ମଝିରେ ? ବକୁଳ କହିଲା – ପାରୁଲ୍ ନାନୀ ତୁ ଲକ୍ଷ୍ମୀ ଝିଅଟା, ବାହାର କରୁନୁ, ଦେଖିବି ଏଇ ଅନିର୍ବଚନୀୟ ନିରୋଳାରେ ଏତେଦିନ ଧରି ତୁ କ'ଣ ଲେଖୁଛୁ ?

ପାରୁଲ୍ ହସିଦେଲା, ଉଠିଲା, କିନ୍ତୁ ଆଲୁଅ ଜଳାଇବାକୁ ଯାଇ ଦେଖିଲା କେତେବେଳେ ଲାଇଟ୍ ଫିଉଜ୍ ହୋଇଯାଇଛି ।

– ଦେଖିଲୁ ତ ?...... ପିଲାଙ୍କ ପରି ହସି ପକାଇଲା ପାରୁଲ୍ – ମୋ ଜୀବନର ଏବଂ କବିତାର ଏଇଟା ହେଉଛି ପ୍ରତୀକ ! ଲାଇଟ୍ ଫିଉଜ୍ !

ବକୁଳ ହସିଲାନି, ଟିକିଏ ଚୁପ୍ ହୋଇ ରହି କହିଲା – ଭୋର୍‌ର ଗାଡ଼ିରେ ଯିବାର କଥା । ଅନେକ ଆଗରୁ ଉଠି ସଜଡ଼ା-ସଜଡ଼ି କରିବା କଥା ତୋ'ର ଅଛି, ଅନ୍ଧାର ହୋଇଥିଲେ –

ପାରୁଲ୍‌ର ଗଳାର ସେହି ହସର ଧ୍ୱନିଟା ଲିଭିଗଲା, ପାରୁଲ୍ କହିଲା – ନା ଲୋ, ମୁଁ ଆଉ ଯିବିନି ।

– ଯିବୁନି ?

– ନାଃ । ଭାବି ଦେଖିଲି ମୋର ଏହି ଯିବାଟାର କୌଣସି ଅର୍ଥ ନାହିଁ । ତୋ ସାଙ୍ଗରେ ବୁଲି ବୁଲି ଖାଲି ବାଧା ସୃଷ୍ଟି କରିବି । ତା'ଛଡ଼ା...... ଟିକିଏ

କ୍ଷୁଦ୍ର ହସ ହସି କହିଲା— ସେଇଟା ଅବଶ୍ୟ ମୋର ଇଚ୍ଛାର ଫସଲ ବୁଝିଲୁ । ତେବେକେ ଭାବୁଛି ଝିଅଟା ଯଦି କୌଣସି ଘଟଣାର ଚାପରେ ଆଜିକାଲି ଭିତରେ ଏଠାକୁ ଫେରିଆସିବ ?

କଥାଟା ଅଲୌକିକ ନୁହେଁ ।

ବକୁଳ କହିଲା— ତେବେ ଶୋଇପଡ଼ । ମୁଁ ଗଲାବେଳେ ତତେ ଉଠାଇ କହିଦେଇ ଯିବି ।

ଦୁଇଜଣଯାକ ଆଉଥରେ ହସି ପକାଇଲେ ।

ଜାଣନ୍ତି ନିଦ କାହାରି ହେବନି ।

## ।। ୨୧ ।।

ବକୁଳ ଯେତେବେଳେ ଘର ଆଗରେ ଗାଡ଼ିରୁ ଓହ୍ଲାଇଲା, ସେତେବେଳେ ଆକସ୍ମିକ ଭାବରେ ହିଁ ସାନଭାଇନା ସଙ୍ଗେ ଦେଖା ହୋଇଗଲା । ଦ୍ୱାର ପାଖରେ ଠିଆ ହୋଇଥିଲେ ସେ ଗୋଟେ ଢଳ ଢଳ ଢିଲା ଗେଞ୍ଜି ଆଉ ଅଧମଇଳା ଧୋତି ପିନ୍ଧି । ଗେଞ୍ଜିର ବେକର ଫାଙ୍କ ବାଟେ ପଇତାଟା ଟିକିଏ ଦିଶୁଛି ।

ସାନଭାଇନାକୁ ଦେଖିଲେ ଘରର ରାନ୍ଧୁଣିଆ ବୋଲି ମନେହେଉଛି । ସାନଭାଇନାକୁ ଦେଖି ପୁଣି ମନ କ'ଣ ହେଲା ବକୁଳର । ପିଲାଦିନେ ସବୁ ଭାଇଙ୍କ ଭିତରେ ସାନଭାଇନାଟା ସବୁଠାରୁ ବେଶୀ ସୌଖୀନ୍ ଥିଲା ।

କହିବାକୁ ଯାଉଥିଲା— କ'ଣ ଭାଇନା, ଏଠି କାହିଁକି ଠିଆହେଇଛ ଯେ ?

ତା' ଆଗରୁ ଭାଇନା କହିପକାଇଲେ— କ'ଣ, ତୁ ଆଜି ଫେରିଆସିଲୁ ?

ବକୁଳ ଦେଖିପାରିଲା— ଭାଇନା ଗାଡ଼ି ଭିତରକୁ ଅନୁସନ୍ଧାନୀ ଦୃଷ୍ଟି ନିକ୍ଷେପ କଲେ । ହୁଏତ ବକୁଳର ଆଖିର ଭ୍ରମ, ହୁଏତ ବକୁଳର ମନର କଳ୍ପନା, ତେବେକେ ବକୁଳର ମନେହେଲା, ସେହି ସନ୍ଧାନୀ ଦୃଷ୍ଟିର ଅନ୍ତରାଳରେ ଗୋଟିଏ ପ୍ରତ୍ୟାଶାର ପ୍ରଦୀପ ଜଳି ଉଠିଥିଲ, ସେଇଟା ଲିଭିଗଲା ।

ମିଟର ଦେଖି ଭଡ଼ା ତୁଟାଇ ଦେଇ ଫେରି ଚାହିଁ ବକୁଳ କହିଲା— ଚାଲିଆସିଲି ।

ତା'ପରେ ଆଉ ପ୍ରଶ୍ନ ପଚାରିବେନି ସାନଭାଇନା, ଜାଣିବା କଥା । ହୁଏତ ଅନ୍ୟଦିନ ହୋଇଥିଲେ ବକୁଳ ମଧ୍ୟ ଆଉ କଥା କହି ନ ଥାନ୍ତା, ଆଜି କେଜାଣି କାହିଁକି ନିଜ ପଟୁ ହିଁ କହିଲା— ଝିଅଟା ସହିତ ଦେଖା ହେଲା ନାହିଁ ।

ଅସତର୍କରେ ହିଁ ବୋଧହୁଏ ସାନଭାଇନାଙ୍କ ମୁହଁରୁ ପ୍ରାୟ ଆର୍ତ୍ତନାଦ ପରି ବାହାରି ଆସିଲା — ଦେଖା ହେଲାନି ?

— ନାଃ କାଲି ସକାଳେ ଚାଲିଯାଇଛି ।

ସାନଭାଇନା ଟିକିଏ ତୁନିହୋଇ ରହି କହିଲେ — ଗଲେ କୁଆଡ଼େ ?

— ପାରୁଲ୍ ନାନୀ ତ କହିଲା, କଲିକତାକୁ ଫେରିଆସିଛି । ଟିକିଏ ଗୋଳମାଳିଆ କଥା ଅଛି ।

ବକୁଳ କହିଲା, କାରଣ ଭାବିଲା କହିବାଟା ଉଚିତ ।

ସାନଭାଇନା ଧିକ୍କାର ଦେବା ଗଳାରେ କହିଲେ — ଭଲ ! ଏ ଯୁଗର ପୁଅଝିଅମାନେ ତ ଗୋଳମାଳ କରିବାଟାକୁ ବାହାଦୂରି ବୋଲି ଭାବନ୍ତି ।

ନିର୍ମଳର ପୁଅର ଏଡ଼େ ଟିକିଏ ପୁଅ ଯାହା କରିଛି ନା — ଆଚ୍ଛା ସେକଥା ପରେ ଶୁଣିବୁ । ଏବେ ଘର ଭିତରକୁ ଯା ।

''ନିର୍ମଳର ପୁଅର ଏଡ଼େ ଟିକିଏ ପୁଅ ଯାହା କରିଛି —''

ଏଇଟା ପୁଣି କେଉଁ ଭାଷା ?

ସେହି କେତେଟା ଶବ୍ଦର ଅର୍ଥ ଆବିଷ୍କାର କରିପାରିଲା ନାହିଁ ବକୁଳ । ଅବାକ୍ ହୋଇ ସାନଭାଇନାଙ୍କ ମୁହଁକୁ ନୁହେଁ ନିର୍ମଳର ଘରଟା ଆଡ଼କୁ ଚାହିଁଲା । ଯେମିତି ଘରଟାର ସେଇ ଜୀର୍ଣ୍ଣ କାନ୍ଥଟା ଦେହରେ ଅର୍ଥଟା ଲେଖାହୋଇ ରହିଛି ।

ସେହି ଘରଟାରୁ ନିର୍ମଳ ନାଆଁର ଅସ୍ତିତ୍ୱଟା କେତେ...... କେତେଦିନ ଆଗରୁ ପୋଛି ହୋଇ ଯାଇଥିଲା, ଘରଟା ଆଡ଼କୁ ଚାହିଁ ଦେଖିବାର କଥା ଆଉ ମନେ ପଡ଼ିନି ଏତେଦିନହେଲା ।

ନିର୍ମଳ ବଦଳି ଚାକିରି କରୁଥିଲା, ଛୁଟିହେଲେ ଘରକୁ ଆସୁଥାଏ, ସେ ଘଟଣା କେବେର ? ତା'ପରଠାରୁ ବକୁଳ ଖବର ଜାଣୁଥାଏ ଭାଉଜମାନଙ୍କର କଳକାକଳୀରୁ । କାନରେ ବାଜିଛି ମା'-ବାପ ମରିଯିବା ପରେ ନିର୍ମଳ ଆଉ କଲିକତାକୁ ଆସୁନି । ଛୁଟି ହେଲେ ବରଂ ଅନ୍ୟ କେଉଁ ଜାଗାକୁ ଯାଏ । ନିର୍ମଳର ଘର ଚାବି ବନ୍ଦ ହୋଇ ରହିଥାଏ ।

ଆଉ ବାକି ସାରା ଘରଗୁଡ଼ାକ ?

ସେଇଟା କୁଆଡ଼େ ନିର୍ମଳର ପ୍ରବଳ ପ୍ରତାପୀ ଦେଠେଇଙ୍କର ଦଖଲରେ ଥିଲା । ସେତେବେଳେ ସେ ଘରଗୁଡ଼ାକର ଦଖଲଦାର ଥିଲେ ଦେଠେଇଙ୍କ ଭାଇଙ୍କ ପୁଅ ଦି'ଜଣ । ଦେଠେଇ ଯେତେବେଳେ ନିଃସନ୍ତାନ, ସେତେବେଳେ ତାଙ୍କ ପୁତୁରାମାନେ

ତାଙ୍କର ଉତ୍ତରାଧିକାରୀ ହେବେ ତାହାହିଁ ସ୍ୱାଭାବିକ । ଶେଷ ବୟସରେ ତାଙ୍କୁ ଦେଖିବା ପାଇଁ ମଧ୍ୟ ତ ଲୋକ ଦରକାର ।

ସେହି ନିଃସନ୍ତାନ ଭଦ୍ରମହିଳା, ଶ୍ୱଶୁରକୁଳର ଯେଉଁମାନଙ୍କ ପାଇଁ ଜୀବନଯାପନ କଲେ ଯାଆ, ଦେଢ଼ଶ୍ୱଶୁର, ଦିଅରର ପୁଅ, ଦିଅରର ଝିଅ ଇତ୍ୟାଦି, ସେମାନେ କ'ଣ ତାଙ୍କୁ ଦେଖିଲେ ? ଯାଆ ଦିଅର ତାଙ୍କ ଆଗରୁ ଆରାମରେ ମରିଯାଇ କର୍ତ୍ତବ୍ୟକୁ ଆଡ଼େଇଦେଲେ । ଆଉ ଦିଅରର ପୁଅ ପୁତୁରା, ପୁତୁରାବୋହୂ ବମ୍ବାକୁ ଯାଇ ମଜାରେ ଦିନ କଟାଇଲେ । ତାହେଲେ ସେ ପିତୃକୁଳର ଶରଣ ନେବେନି ତ ଆଉ କ'ଣ କରିବେ ?

ପୁତୁରାର ନ ହେଲେ ଚାକିରି ଅଛି, କ'ଣ କରିବ ପରର ଦାସତ୍ୱ, କିନ୍ତୁ ସେହି ବୋହୂ କ'ଣ ରହିପାରି ନ ଥାନ୍ତା ପିଲାଙ୍କୁ ଧରି କଲିକତାରେ ? କଲିକତାରେ କ'ଣ ପୁଅଝିଅଙ୍କୁ ପଢ଼ାଇବା ଭଳି ସ୍କୁଲ ନାହିଁ ? ସେଥିପାଇଁ 'ନାନାସ୍ଥାନୀ' ବାପ ଶେଷକୁ ପିଲାଙ୍କୁ ବୋଡ଼ିଂରେ, ହଷ୍ଟେଲରେ ରଖି ମଣିଷ କରୁଛି । ତା ତ ନୁହେଁ, 'ସ୍ୱାମୀ-ସ୍ତ୍ରୀ' କେହି କାହାକୁ ଛାଡ଼ି ରହିପାରୁ ନାହାନ୍ତି ।

ଯେତେବେଳେ ସଂସାରରେ ସମସ୍ତେ ଆପଣା ସ୍ୱାର୍ଥଟି ଦେଖୁଛନ୍ତି, ଦେଠେଇ ମଧ୍ୟ କାହିଁକି ନ ଦେଖିବେ ? ସେ ମଧ୍ୟ ଦେଖିଛନ୍ତି । ନିଜ ଭାଇର ପୁଅମାନଙ୍କୁ ଆଣି ପ୍ରତିଷ୍ଠିତ କରିଛନ୍ତି ଏବଂ ଖବର ଛିଟିକି ପଡ଼ି ପଡ଼ି ବକୁଳର କାନରେ ଆସି ପଡ଼ିଛି, ତା' ସହିତ ଯା ମଧ୍ୟ ଆସିଛି— ରଜା ବିନା ରାଜ୍ୟ ନଷ୍ଟ ! କି ଘର ଥିଲା କ'ଣ ହେଲା ! କୋଉଠୁ ଉଡ଼ିଆସି ମାଡ଼ିବସି ସେ ଦେଠେଇର ପୁତୁରା ଦିଇଟା ଘରକୁ ନରକକୁଣ୍ଡ କରିଦେଲେ ଗୋ ! କରିବେନି କାହିଁକି, ନିଜ ପିତୃପୁରୁଷର ଭିଅ ତ ନୁହେଁ ଯେ ମନକୁ ଖରାପ ଲାଗିବ ? ସେଥିପାଇଁ ଗୋଟା ଘରଟାର ପ୍ରତି ଖୋପରେ ଭଡ଼ାଟିଆ ରଖି ଦେଇଛନ୍ତି । ଏଠି ଟିଣର ବାଡ଼, ସେଠି କାନ୍‌ଭିସ୍ ପର୍ଦ୍ଦାର ଆଢୁଆଳ, ଆଉଗୋଟେ ଜାଗାରେ ପଲସ୍ତରାହୀନ ଇଟା କାନ୍ଥର ଆବରଣ ହୋଇଛି । ଏମିତିକି ଗେଟ୍ ପାଖରେ ଚାକରମାନଙ୍କ ଘରଟାରେ ସୁଦ୍ଧା ପାନର ଦୋକାନୀକୁ ବସେଇଛନ୍ତି ।

ଅତଏବ 'ନରକକୁଣ୍ଡ' କହିବାଟା ଅତିଶୟ୍ୟ ନୁହେଁ । ତେବେ ? କିଏ ଚାହିଁବାକୁ ଯିବ ନରକକୁଣ୍ଡ ଆଡ଼କୁ ? ବକୁଳହେରିକାଙ୍କ ତିନିତାଲାର ସିଡ଼ିରୁ ଓହ୍ଲାଇଲାବେଳକୁ ମଝିରେ ଥିବା ଓସାରିଆ ଜାଗାଟାରୁ ଯେଉଁ ବାରଣ୍ଡାଟିକକ ଯେପରି ଆକସ୍ମିକ ଭାବରେ ବାହାରି ପଡ଼ିଛି, ସେଠୁ ମଧ୍ୟ ଖାଲି ସେମାନଙ୍କ ଘରର ସେ କୋଣପଟଟା ଦିଶେ । ଯେଉଁ ପଟଟା ତାଲା ବନ୍ଦ ହୋଇ ରହିଥାଏ ।

ତା'ପରେ ତ ହଠାତ୍ ଦିନେ ଖବର ଆସିଲା— ସେହି ଅଂଶର ମାଲିକ ଅନ୍ୟତ୍ର ଚାଲିଯାଇଛି ଛୁଟି ପାଇ । ଆଉ କୋଉଦିନ ଆସି ସେହି ତାଲାର ଚାବି ଖୋଲିବ ଏ ଆଶା ଆଉ ନାହିଁ ।

ନିର୍ମଳର ସ୍ତ୍ରୀ ହୁଏତ କ୍ୱଚିତ୍ କେବେ ଆସିଛି, ତା'ପରେ ନିଜ ପୁଅ ପାଖକୁ ଯାଇ କେଉଁଠି ଗୋଟାଏ ରହିଛି । ସେ ପୁଅଟା ଯେ ଏତେବଡ଼ ହୋଇଯାଇଛି, ଯା'ର ପୁଅ ଗୋଟାଏ ଗୋଳମାଳ ସୃଷ୍ଟି କରିଦେଇପାରେ, ଏଇଟା ବୁଝିବାକୁ ସମୟ ଲାଗିଲା ବକୁଳକୁ ।

ତା'ପରେ ଆସ୍ତେ ଆସ୍ତେ ମନେପଡ଼ିଲା— ଅସମ୍ଭବ ବା ହେବ କାହିଁକି ? ଦିନ ମାସ ବର୍ଷ ଗଡ଼ିଯାଉଛି ନିର୍ଭୁଲ ନିୟମରେ ।

ଆମେ ଯଦି କାହାକୁ ଭୁଲିଯାଉ, ଭୁଲି ଯାଇଥାଉ, ସେଇଟା କ'ଣ ପ୍ରକୃତ ଭୁଲିଯିବା ? କିନ୍ତୁ ସେ ଏଡ଼େ ଟିକିଟେ, କେଡ଼େ ଟିକିଟାଏ ? କେଉଁଠି ଯାଇ ଗୋଳମାଳ କଲା । ଏ ଭଙ୍ଗା ଜୀର୍ଣ୍ଣ କାନ୍ଥଟାର ସେପାଖର ଚାବି ବନ୍ଦ ଥିବା ଘରଗୁଡ଼ିକର ଚାବି ଖୋଲା ହୋଇଛି କି ? ରାସ୍ତାରୁ ଖାଲି ଆଗପଟର ସେ ପାନ ଦୋକାନଟା ଆଉ ଦୋତାଲା ବାରଣ୍ଡାର ରେଲିଂର ଆଉ ଝରକାର କାର୍ନିସ୍‌ରେ ଭଡ଼ାଟିଆମାନଙ୍କର ଝୁଲାଯାଇଥିବା ଲୁଗାପଟା, ଜାମା, ଗାମୁଛା ଲୁଙ୍ଗି ଶେଯ ଶତରଞ୍ଜି ବ୍ୟତୀତ ଆଉକିଛି ଦିଶେନି ।

ତେବେକେ ବୋକାଙ୍କ ଭଳି ସେହି ଘରଟାଆଡ଼କୁ ହିଁ ଚାହିଁଲା ବକୁଳ । ଯେମିତି ସାନଭାଇନା କହିଥିବା ସେ ଶବ୍ଦଗୁଡ଼ାକର ପାଠୋଦ୍ଧାର ହେବ ସେଠାକାର ସବୁ କାନ୍ଥମାନଙ୍କରୁ !

ସାନଭାଇନା ଯେ ବକୁଳକୁ ଘର ଭିତରକୁ ଯିବାକୁ କହିଲେ ସେକଥା ଭୁଲିଯାଇ ବକୁଳ ଆସ୍ତେ ପଚାରିଲା— କେତେ ବଡ଼ ପିଲା ?

—ଆରେ ! କେଡ଼େ ବଡ଼ ଆଉ ହେବ ? ବାର-ତେର ବର୍ଷ ହେବ ! ନିଜେ ବି ତ ଯେମିତି ବହୁତ ଚଞ୍ଚଳ ବିଭା ହୋଇଥିଲା, ପୁଅକୁ ବି ସେମିତି ଅତି ଚଞ୍ଚଳ ବିଭା କରିଦେଇଥିଲା । ଦେଇଥିଲା, ଭଲ କରିଥିଲା, ଜୀବନର କାର୍ଯ୍ୟ-କର୍ତ୍ତବ୍ୟ ସବୁ ସାରିଦେଇ ଯାଇଛି । ମୋର ଖାଲି କିଛି ହେଲାନି । ଯାଉ ସେ କଥା ପରେ ଶୁଣିବୁ—

ସାନଭାଇନାଙ୍କର କଥାଗୁଡ଼ିକରେ ଯେମିତି ଗୋଟାଏ କ୍ଷୁବ୍ଧ ଆକ୍ଷେପର ସୁର ରହିଛି । ଯେମିତି ନିର୍ମଳ ନାଆଁର ସେ ଚଲାକ ଚତୁର ଲୋକଟା ବକୁଳର ସାନଭାଇନାଠୁ ଜିତି ଯାଇଛି ।

ବକୁଳର ଚିନ୍ତା ଭିତରେ ଏଇଲେ ଆଉ ସେ ବୟସର ଅଙ୍କଟା ପଶିପାରିଲା ନାହିଁ । ତା'ର ଖାଲି ମନେହେଲା ଜୀବନର କାର୍ଯ୍ୟ-କର୍ତ୍ତବ୍ୟ କହିଲେ କ'ଣ ଖାଲି ପୁଅଝିଅଙ୍କୁ ବାହା ଦେବା ? ସାନଭାଇନା ସେଇଟା କରିପାରିନି ବୋଲି କ୍ଷୁବ୍ଧ ହେଉଛି ?

ପୁଣି ଥରେ ନିର୍ଦ୍ଦେଶ ଦେଲା ସାନଭାଇନା — ପରେ ଶୁଣିବୁ ।

କ'ଣ ସେ ଗୋଳମାଳିଆ କଥାଟା ? ଯାହା ଏଡ଼େ ସାନ ପିଲାଟି ଦ୍ୱାରା ସଂଘଟିତ ହୋଇପାରିଲା ?

ରାସ୍ତାରେ ଠିଆହୋଇ ଆଉ ପ୍ରଶ୍ନ ପଚାରିହେବ ନାହିଁ । ତେବେବି ବକୁଳ ଆଉ ଗୋଟିଏ କଥା କହିଲା । କହିଲା — ତମେ ଏତିକିବେଳେ ଏମିତି ରାସ୍ତା କଡ଼ରେ କାହିଁକି ଠିଆ ହୋଇଛ ?

ସାନଭାଇନା ଯେମିତି ଆତ୍ମଧିକ୍କାରର ଗଳାରେ କହିଲେ — ଆମର ପୁଣି ଏମିତି ସେମିତି ! ଠିଆ ହେଇଛି ଘର ଭିତରେ ଛଟପଟ ଲାଗିଲା ବୋଲି ।

— ତମର — ବକୁଳ ତୁନି ହୋଇଗଲା । ହଠାତ୍ ତା'ର ମନେପଡ଼ିଲା — ଶୀଘ୍ର ରିଟାୟାର୍ ହେବା କଥା ଥିଲା ସାନଭାଇନାଙ୍କର, ବୋଧହୁଏ ସେ ଘଟଣାଟା ହିଁ ଘଟିଛି । ସେଥିପାଇଁ ତମର ଅଫିସ୍ ଟାଇମ୍ ହେଇଯାଉନି ?' କହିବାକୁ ଯାଇ ତୁନି ପଡ଼ିଲା ସେ ।

ଭିତରେ ପଶିଗଲାକ୍ଷଣି ଆହୁରି ଏକ ପରମ ଲଜ୍ଜାର ମୁହାଁମୁହିଁ ହୋଇ ଠିଆ ହେବାକୁ ପଡ଼ିଲା ବକୁଳକୁ । ବକୁଳ ସତରେ ଏକଥାଟା ଭାବି ନ ଥିଲା । ତାକୁ ଦେଖିଲାମାତ୍ରେ ସାନଭାଉଜ କହିଲେ, ଆଦରର ଝିଆରୀକୁ ତିନିତାଲା ଉପରକୁ ନେଇଯାଅ ବାବା, ତମ ଭାଇନା ଦେଖିଲେ ରାଗିଯାଇ ନିଆଁବାଣ ହୋଇଯିବେ । ସହଜେ ତ ନାନାଘଟଣା ଯୋଗୁ କ୍ଷିପ୍ତ ହୋଇଯାଇଛନ୍ତି ।

ତା'ମାନେ ଏମାନେ ଧରି ନେଇଥିଲେ ଯେ ବକୁଳ ଖବର ପାଇ ଶମ୍ପାକୁ ଆଣିବାକୁ ହିଁ ଧାଇଁଯାଇଛି ଏବଂ ଏକଥା ମଧ୍ୟ ଧରିନେଇଥିଲେ, ଆମେ ଯେତେ ମନା କଲେ ମଧ୍ୟ ସେ ଯାହା କରିବାକୁ ଯାଉଛି ନିଶ୍ଚୟ କରିବ ।

ସାନଭାଇନାଙ୍କୁ ଦୟା ଲାଗୁଥିଲା । କିନ୍ତୁ ଏବେ ଯେପରି ସେ କଥାଟା ଆଦୌ ହେଲା ନାହିଁ । ବକୁଳ ନିଜସ୍ୱ ସ୍ଥିରତାର ଖୋଳପା ଭିତରେ ପଶିଯାଇ କହିଲା — ଗାଡ଼ିରୁ ଓହ୍ଲାଇଲାକ୍ଷଣି ସାନଭାଇନା ମଧ୍ୟ ଏଭଳି କ'ଣ ଗୋଟାଏ ପ୍ରଶ୍ନ ପଚାରିଲେ, ମୁଁ ତା'ର ଅର୍ଥ ବୁଝିପାରିନି, ତମର କଥାର ଅର୍ଥ ମଧ୍ୟ ବୁଝିପାରୁନି । ମୁଁ ଶମ୍ପାକୁ ନେଇ ଆସିଛି ଏମିତି ଗୋଟାଏ ଧାରଣା କିପରି ହେଲା ତମମାନଙ୍କର ?

ସାନଭାଉଜ ଏହି ପରିଷ୍କାର ଧାରୁଆ କଥାଟାର ଉତ୍ତରଦିଗକୁ ଗଲେ ନାହିଁ, କେମିତି ଗୋଟାଏ ଶେତା ହୋଇ ଯାଇଥିବା ମୁହଁରେ କହିଲେ— ଆସିନି ?

ସେହିପରି ସ୍ଥିରଗଳାରେ ବକୁଳ କହିଲା— ଆସିବା କଥାଟା ହିଁ ଯେ କାହିଁକି ଉଠୁଛି ତା ବୁଝିପାରୁନି, ତା'ଛଡ଼ା ତମେମାନେ ତ ଏକାବେଳେ ମନା କରି ଦେଇଥିଲ ?

ହଠାତ୍ ଗୋଟାଏ ଘଟଣା ଘଟିଲା । ଅପ୍ରତ୍ୟାଶିତ ଏବଂ ଅଭୂତପୂର୍ବ ମଧ୍ୟ । ସାନଭାଉଜଙ୍କୁ କେବେ ସେ ହଠାତ୍ କାନ୍ଦିପକାଇବାର ଦେଖିଛି ?

ଅନ୍ତତଃ ବକୁଳ କେବେ ଦେଖିନି ଏଇଟା ନିଶ୍ଚିତ । ହଠାତ୍ କାନ୍ଦି ପକାଇବା ବିକୃତ ଗଳାରେ ସାନଭାଉଜ କହିଲେ, ସେଇ ମନା କରିଦେବାଟା ଏତେ ବଡ଼ ହେଇଗଲା ତମ ପାଖରେ ?

ବକୁଳ ସ୍ତବ୍ଧ ହୋଇଗଲା ।

ନିଜକୁ ହଠାତ୍ ଭାରି ଛୋଟ ବୋଲି ମନେହେଲା ବକୁଳର । ବକୁଳ ବରାବର ଯାହାକୁ (ଅସ୍ୱୀକାର କରିବାର ଉପାୟ ନାହିଁ) ମନେ ମନେ ପ୍ରାୟ ଅବଜ୍ଞା ହିଁ କରିଆସିଛି । ସେ ଯେମିତି ସହସା ବକୁଳଠାରୁ ଅନେକ ଉଚ୍ଚ ଆସନ ଉପରକୁ ଉଠିଗଲା ।

ସାନଭାଉଜଙ୍କ ଅତି ପାଖକୁ ଘୁଞ୍ଚିଯିବାକୁ ଇଚ୍ଛା ହେଲା ବକୁଳର । ଇଚ୍ଛା ହେଲା ତାଙ୍କ ଦେହରେ ଗୋଟାଏ ହାତ ରଖନ୍ତା, ମମତାର ସ୍ୱରରେ କହନ୍ତା— ସେଇଟା ମୁଁ ମନଦୁଃଖରେ କହିଥିଲି ସାନଭାଉଜ, ତା' ସହିତ ଦେଖା ହୋଇଥିଲେ ହୁଏତ ନେଇ ନ ଆସି ଛାଡ଼ି ନ ଥାନ୍ତି, କିନ୍ତୁ ମୋଟେ ଦେଖା ହେଲାନି ।

ହେଲେ ଅନଭ୍ୟାସ ହେତୁ ବକୁଳ ପାରିଲାନି ।

ସେହି ଅନ୍ତରଙ୍ଗତାର ସୁରକୁ ଅନେକଦିନ ତଳୁ ବକୁଳ ହଜାଇ ଦେଇଛି । ଅଥବା କୋଉଦିନ ହେଲେ ନ ଥିଲା ।

ହୁଏତ ସେଇୟା । କେବେହେଲେ ନ ଥିଲା । ପିଲାଦିନରୁ ଅଦ୍ଭୁତ ଏକ ନିଃସଙ୍ଗତାର ଦୁର୍ଗରେ ବାସ କରୁଥିଲା ବକୁଳ । ସେଠାରୁ ବାହାରି ଆସିବାର କ୍ଷମତା ନ ଥିଲା ତା'ର, କାହା ସଙ୍ଗେ ଅନ୍ତରଙ୍ଗ ହେବାର କ୍ଷମତା ନାହିଁ । ସେ ଦୁର୍ଗର ଗୋଟିଏ ମାତ୍ର ଦ୍ୱାର ଅଛି, ସେ ଦ୍ୱାରର ଚାବି ତ ଅନ୍ୟଲୋକ ହାତରେ !

ଅଥଚ ଲୋକେ କେତେ ସହଜରେ ଅନ୍ତରଙ୍ଗ ହୋଇପାରନ୍ତି । ଏ ସାନଭାଉଜର କଥାରେ ହିଁ ସେ ଦେଖିଛି, ଥରେ ଯେତେବେଳେ ତାଙ୍କର କଥାବାର୍ତ୍ତା ନ ଥିଲା ବଡ଼ଭାଉଜ ସହିତ, ସେତିକିବେଳେ ହଠାତ୍ ଦିନେ ସାନଭାଉଜର ବାପା ମରିଯିବାର

ଖବର ଆସିଲା, ବକୁଳ କାଠ ପାଲଟି ଠିଆହୋଇଥିଲା ସାନଭାଉଜଙ୍କ ପାଖରେ, ଦେଖିଲା ଭାଉଜ କି ସହଜରେ ସାନଯାଆକୁ ଉଠାଇ ଧରି ପ୍ରାୟ ଛାତି ଉପରକୁ ଟାଣିନେଇ ପୃଥିବୀର ନିୟମତତ୍ତ୍ୱ ବୁଝାଇବାକୁ ଆରମ୍ଭ କଲେ । ବୁଝାଇଲେ ପୃଥିବୀରେ ବାପ-ମା' ଚିରଦିନ ପାଇଁ ରହନ୍ତି ନାହିଁ ।

ଯେମିତି ଆଉ ସମସ୍ତେ ଚିରଦିନର !

ପରବର୍ତ୍ତୀ ଦୃଶ୍ୟରେ ଦେଖାଗଲା ବଡ଼ଭାଉଜ ସାନଭାଉଜଙ୍କୁ ଜୋର୍ କରି ଉଠାଇ, ସରବତ ପିଆଉଛନ୍ତି । ହବିଷ୍ୟ ସମୟରେ ନିଶାର ଜିନିଷ ଖାଇବା କଥା ନୁହେଁ ଏ କଥା ମାନିଲେ ମଧ୍ୟ ଚା' ଖାଇବାକୁ ବିଧାନ ଦେଉଛନ୍ତି ! ଏବଂ ସାନଯାଆର ଚତୁର୍ଥୀର ଯୋଗାଡ଼ କରି ଦେବାକୁ ଅଣ୍ଟାରେ କାନି ଭିଡ଼ି ଲାଗି ପଡ଼ିଛନ୍ତି ।

ଦେଖି ଦେଖି ବକୁଳ ଆଁ କରି ଦେଇଥିଲା ।

କିନ୍ତୁ ସେହି ନ ପାରିବାଟା ଯେ ଗୋଟାଏ ବଡ଼ ଧରଣର ଅକ୍ଷମତା, ଏଇଟା କେବେହେଲେ ମନେହୋଇନି ବକୁଳର । ଆଜି ହଠାତ୍ ବକୁଳ ଜାଣିପାରିଲା ଯେ ଗୋଟାଏ ଖୁବ୍ ବିରାଟ ଅକ୍ଷମତା ତା'ର ଅଛି । ତେବେକେ ବକୁଳ ଯାହା କରିପାରିବ ସେଇୟା କଲା । ଗଳାଟାକୁ ନରମ କରି ଧୀରେ କହିଲା— ମନା କରିଥିଲେ କହିବାଟା ବାଜେ କଥା ଭାଉଜ, ତା' ସହିତ ମୋର ଜମା ଦେଖା ହେଇନି ।

ଦେଖା ହେଇନି ?

ସାନଭାଇନା ଯୋଉ ପ୍ରଶ୍ନ ପଚାରିଥିଲେ, ତାହାହିଁ ପଚାରିଲେ ଭାଉଜ । ତେବେକେ ସ୍ୱରରେ ପାର୍ଥକ୍ୟ ରହିଥିଲା ।

କେମିତି ଯେପରି ଅବାକ୍ ଆଉ ହତାଶ ଗଳାରେ ପ୍ରଶ୍ନଟା ପଚାରିଥିଲେ ସାନଭାଇନା । ସାନଭାଉଜର କଣ୍ଠସ୍ୱରରେ ଅବିଶ୍ୱାସର ତାଚିଟା ରହିଛି ।

ସହସା କାନ୍ଦିଉଠିବା ଗଳାରେ ଏ ଉତ୍ତପ୍ତ ହେବାଟା ବହୁତ ଅସମାନ ଜଣାଗଲା, ଆଉ ମଣିଷଟାକୁ ଆହୁରି ଅଧିକ ବିଚରା ବୋଲି ମନେହେଲା ।

ବକୁଳ ଆସ୍ତେ କହିଲା— ସତରେ ଦେଖା ହେଇନି ସାନଭାଉଜ ! ମୁଁ ଗଲାକ୍ଷଣି ମଝିଆନାନୀ କହିଲା— ତୁ ଆଜି ଆସିଲୁ ବକୁଳ ? ଗତକାଲି ମଧ୍ୟ ଯଦି ଆସିଥାନ୍ତୁ ଝିଅଟା ସହିତ ଦେଖା ହୋଇଥାନ୍ତା ।

—ଏତେଦିନହେଲା ତ ଥିଲା......

ପ୍ରଶ୍ନ ନା କଥା ? ଯେଉଁଟାକୁ ଅବରୁଦ୍ଧ ଗଳାରେ ଉଚ୍ଚାରଣ କଲା ଶମ୍ପାର ମା' ?

ଏତେଦିନହେଲା ତ ସେଠି ଥିଲା, ସେ ଖବର ତା'ହେଲେ ଶମ୍ପାର ମାଆଁକୁ ଜଣା ଥିଲା । ଖାଲି କୌଣସିମତେ ନଇଁବିନି ଏହି ନୀତିରେ ତୁନିହୋଇ ରହିଥିଲା । ହୁଏତ ବା ଗୋଟାଏ ନିରାପଦ ଆଶ୍ରୟରେ ଅଛି ଜାଣି ନିଶ୍ଚିନ୍ତ ହୋଇ ରହିଥିଲା, କିନ୍ତୁ ଭିତରେ ଭିତରେ ମନଟା ଭାଙ୍ଗି ପଡୁଥିଲା ।

ଶାନ୍ତ ବାଧ୍ୟ ବିନୀତ ସନ୍ତାନର ବିଚ୍ଛେଦବ୍ୟଥା ମାତୃହୃଦୟକୁ ଯେତେ କାତର କରେ, ତା'ଠାରୁ ଅନେକ ବେଶୀ କାତର କରିଦିଏ ଅବାଧ୍ୟ ଅସାଧ୍ୟ ସନ୍ତାନର ବିଚ୍ଛେଦବ୍ୟଥା । ସେହି ଅବାଧ୍ୟ ସନ୍ତାନର ସ୍ମୃତିମନ୍ଥନ କରିବାରେ ଯେଉଁ ଦୁଃସହ ବୋଝ ଜମିଯାଏ ସେ ବୋଝ ତ ଆପଣା ଅପରାଧର ବୋଝ ।

ଅବାଧ୍ୟ ସନ୍ତାନକୁ ଯେ ନିଷ୍ଠୁର ଶାସନ ନ କରି ଉପାୟ ନ ଥାଏ, କଟୁ କଥା ନ କହି ରହିବାର ଉପାୟ ନ ଥାଏ, ଦୁର୍ବ୍ୟବହାର ନ କରି ରହିହୁଏନା, ସେଗୁଡ଼ିକର ସ୍ମୃତି ତୀକ୍ଷ୍ଣଧାର ଅସ୍ତ୍ର ପରି ପ୍ରତିମୁହୂର୍ତ୍ତରେ ହିଁ ତା କ୍ଷତବିକ୍ଷତ କରିଥାଏ ସେ ହୃଦୟକୁ ।

ସମସ୍ତ ନିଷ୍ଠୁର ଶାସନ ଶତଗୁଣ ହୋଇ ଫେରିଆସେ ପୁଣି ନିଜ ପାଖକୁ !

ଶମ୍ପାର ମା'ର ଭିତରେ ଚୂନା ହୋଇଯାଇଥିବା ଏ ମନଟା ଟାଣ ହୋଇ ରହିବାର ସାଧନା କରି ଆହୁରି ଚୂନା ହୋଇଯାଇଥିଲା, ସେଥିପାଇଁ ବୋଧହୁଏ ମନେ ମନେ ଏକାନ୍ତଭାବେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଥିଲା, ବକୁଳ ସେମାନଙ୍କର ମନା ନ ମାନି ଝିଅଟାକୁ ନେଇ ଫେରିଆସିବ ।

ବକୁଳର କଥା ସେହି ଲକ୍ଷ୍ମୀଛଡ଼ା ଝିଅଟା ଅଗ୍ରାହ୍ୟ କରିଦେଇ ପାରିବନି ।

ବକୁଳର କଥା ଶୁଣି ପ୍ରତ୍ୟାଶାର ସେ ପାତ୍ରଟି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ବିଛୁହୋଇ ପଡ଼ିଲା । ଶମ୍ପାର ଅହଙ୍କାରୀ ମା' ତା'ର ଚିରଦିନର ଅହଙ୍କାରଟାକୁ ମଧ୍ୟ ସେଥିପାଇଁ ଆଉ ଧରି ରଖିପାରିଲାନି ।

ସେହି ଗୁଣ୍ଡ ହୋଇଯାଇଥିବା ଅହଙ୍କାର ଆଉ ଗୁଣ୍ଡ ହୋଇଯାଇଥିବା ପ୍ରତ୍ୟାଶାର ପାତ୍ରକୁ ଦୁଇଟିଯାକକୁ ଦେଖିଲା ବକୁଳ । ନିଃଶ୍ୱାସ ପକାଇ ବକୁଳ କହିଲା, ମୋର ଭାଗ୍ୟ ! ଏତେଦିନହେଲା ତ ଥିଲା । କାଲି ମୁଁ ଗଲି, ଆଉ କାଲି ଶୁଣିଲି ! ଚିନ୍ତାର କଥା ହେଉଛି— କୁଆଡ଼େ ଯାଇଥିବ ଜଣାପଡୁନି—

ତା'ପରେ ବକୁଳ ଧୀରେ ଧୀରେ ସାବଧାନରେ ପାରୁଲ୍ ପାଖରୁ ଶୁଣିଥିବା ଘଟଣାଟି କହିଲା ।

ସାନଭାଉଜଙ୍କର ଲୁହ ଶୁଖିଯାଇଥିଲା, ପଥର ପରି ବସିରହି ସବୁଶୁଣି କହିଲା— ବୁଝିପାରୁଛି ବକୁଳ, ଏ ସବୁ ଆମର ଶାପର ଫଳ । ସବୁ ଜାଣିମଧ୍ୟ ଆମେ— ତାକୁ ଆଉ ଫେରିପାଇବୁନି ବକୁଳ । ତାକୁ ନିଶ୍ଚେ କୋଉ ବଦମାସ୍ ଭୁଲ୍ ବୁଝାଇ ନେଇଯାଇଛି । ଠିକ୍ ହେଇଛି, ଉଚିତ ଶାସ୍ତି ହେଇଛି ମତେ । ସବୁଦିନେ ତମ ଉପରେ ହିଂସାରେ ରାଗ ରଖି ତାକୁ ମୁଁ ମା'ର ପ୍ରାଣଟାକୁ ବୁଝିବାକୁ ଦେଇ ନ ଥିଲି, ଆଉ ମଧ୍ୟ ତାକୁ ବି ବୁଝିବାକୁ ଚେଷ୍ଟା କରିନି—

ବକୁଳ ଚମକିପଡ଼ି ଚାହିଁଲା । ଏହି ସ୍ପଷ୍ଟ ସ୍ୱୀକାରୋକ୍ତି ସମ୍ମୁଖରେ ବକୁଳ ଆଉ ଥରେ ମୁଣ୍ଡ ନୁଆଁଇଲା । ଏ ସତ୍ୟ ବକୁଳର ଅବୋଧ ନ ଥିଲା, କିନ୍ତୁ ଏ ମଣିଷଟାର ମଧ୍ୟ ଯେ ସେ ବୋଧ ଥିଲା, ସେ କଥା ତ ସେ କେବେହେଲେ ବିଶ୍ୱାସ କରି ନାହିଁ । ଭାବିଛି ନିତାନ୍ତ ଅବଚେତନ ଅବସ୍ଥାରେ ଏକଥା ସେ କରିଚାଲିଛି ।

ଅଥବା ହୁଏତ ତାହାହିଁ ସତ୍ୟ ।

ଖାଲି ଆଜି ଝିଅଟାକୁ ସତରେ ହଜାଇ ଦେଇ ତା'ର ବୋଧର ଦ୍ୱାର ଖୋଲିଗଲା । ଆଘାତ ହିଁ ତ ରୁଦ୍ଧ ଚୈତନ୍ୟକୁ ଆଘାତ କରି ଜାଗ୍ରତ କରେ ।

ବକୁଳ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲା ନାହିଁ, ସେ ନିଜେ ମଧ୍ୟ ତ ଏହି ହାହାକାରର ଭାଗୀଦାର । ଖାଲି ନରମ ଗଳାରେ କହିଲା— ସାନଭାଇନା ସଙ୍ଗେ ପରାମର୍ଶ କରି ଦେଖିବି କ'ଣ କରାଯିବ । ହେଲେ ନିର୍ମଳ ଭାଇନାର ଘରେ କ'ଣ ଗୋଟାଏ ହୋଇଛି ବୋଲି ଭାଇନା କହୁଥିଲେ ?

ସାନଭାଉଜ କପାଳରେ ହାତ ମାରି କହିଲେ— ସେ ମଧ୍ୟ ତ ଗୋଟାଏ କାଣ୍ଡ ! ବାର, ତେର ବର୍ଷର ପିଲାଟା, କୁଆଡ଼େ ବୋମା ତିଆରି କରିବାକୁ ଯାଇ ହାତ-ଗୋଡ଼ ଉଡ଼ାଇ ଡାକ୍ତରଖାନାକୁ ଯାଇଛି !

ବୋମା ତିଆରି କରିବାକୁ ଯାଉଥିଲା ?...... ଅବାକ୍ ହୋଇ ଚାହିଁଲା ବକୁଳ ।

ପିଲାଟା ନିର୍ମଳର ବଂଶଧର ନା ?

ସେ ଯାଇଥିଲା ବୋମା ତିଆରି କରିବାକୁ ?

ସାନ ଭାଉଜ କହିଲେ— ସେଇୟା ତ ଖବର ମିଳିଛି ! କୁସଙ୍ଗରେ ପଡ଼ିଲେ ଯାହା ହୁଏ ! କୋଉଠି କୋଉ ବସ୍ତି ଭିତରେ ଆଉ କୋଉ ଆଡ୍ଡାରେ ଏ ସବୁ ଚାଲିଥିଲା, ପାଖଲୋକେ ମଧ୍ୟ ଜାଣି ନ ଥିଲେ । ହଠାତ୍ ବୋମା ଫୁଟି......

ସେମାନେ କେଉଁଠି ରହିଛନ୍ତି ?...... ଯନ୍ତ୍ର ପରି ଉଚ୍ଚାରଣ କଲା ବକୁଳ ।

ଏ ମା' ! ନିର୍ମଳବାବୁଙ୍କ ସ୍ତ୍ରୀ ତ ଏଇଠି କେତେଦିନ ହେଲା ଆସି ରହିଲାଣି । ହଁ, ଦେଢ଼ବର୍ଷ ଖଣ୍ଡେ ହେବଣି । ପୁଅ ତ ବଦଳି ଜ୍ୱାଳାରେ ଘାଟଘାଟରେ ପାଣି ପିଇ ବୁଲୁଛି, ବାପର ଚାକିରିଟା ତ ପାଇଛି, କମ୍ପାନୀ 'ଦୟାଧର୍ମ କରି ଦେଇଛି । ନାତିଟାର ପାଠପଢ଼ା ହୋଇପାରୁନି ବୋଲି ବୁଢ଼ୀମା' ତାକୁ ନେଇଆସି ଏଇ ପଚା ଘର ଭିତରେ ରହୁଥିଲା । ସ୍କୁଲରେ ମଧ୍ୟ ଭର୍ତ୍ତି କରି ଦେଇଥିଲା, ହେଲେ ସ୍ତ୍ରୀଲୋକ ଘରେ ବସି କେମିତି ଜାଣିବ ଗୁଣଧର ନାତି ସ୍କୁଲକୁ ଯାଉନି, ଦରମାଟଙ୍କା ନେଇ ପାର୍ଟିର ଚାନ୍ଦା ଦେଉଛି, ଆଉ ନିଜର ଧ୍ୱଂସର ପଥ ପରିଷ୍କାର କରୁଛି—

କିନ୍ତୁ ସାନଭାଉଜର ଏସବୁ କଥା କ'ଣ ଆଉ ବକୁଳର ମୁଣ୍ଡରେ ପଶୁଥିଲା ? ବକୁଳର ମୁଣ୍ଡ ଭିତରେ ଯେମିତି ଗୋଟାଏ ଇଞ୍ଜିନ ଚାଲିବାକୁ ଆରମ୍ଭ ହୋଇଥିଲା । ଭାଉଜର ସେ ପ୍ରଥମ କଥାଟା ଶୁଣିଲା ପରଠାରୁ ।

ନିର୍ମଳବାବୁର ସ୍ତ୍ରୀ ତ ଅନେକଦିନହେଲା ଏଠି ରହିଲାଣି !

ଅଥଚ ବକୁଳ ସେ ଖବର ରଖିନି ।

ବକୁଳ ତାକୁ ଦେଖିବାକୁ ଯାଇନି ।

ମାଧୁରୀ କ'ଣ ଜାଣିଛି ଯେ ଏକଥା ବକୁଳକୁ କେହି କହି ନାହାନ୍ତି ? କେହି ଖବର ଦେଇ ନାହାନ୍ତି ? ନା, ଏକଥା ବିଶ୍ୱାସଯୋଗ୍ୟ ନୁହେଁ । ନିର୍ମଳର ସ୍ତ୍ରୀ ଜାଣୁଛି, ଜାଣି ନିଶ୍ଚିନ୍ତ ହୋଇ ରହିଛି, ବକୁଳ ନାଆଁର ସେ ଝିଅଟା 'ଅନାମିକା ଦେବୀ' ହୋଇଯାଇଛି । ଯଶ, ଖ୍ୟାତି ଆଉ ଅର୍ଥର ଅହଙ୍କାରରେ 'ବକୁଳ'କୁ ସେ ଜୀର୍ଣ୍ଣ ବସ୍ତ୍ର ପରିତ୍ୟାଗ କରିଛି ।

ହୁଏତ ଟିକିଏ ଦାର୍ଶନିକ ହସ ହସିଛି ନିର୍ମଳର ସ୍ତ୍ରୀ ।

କିନ୍ତୁ ଏଇଲେ କେଉଁ କାମଟା କରିବ ବକୁଳ ?

ଅପରାଧୀର ମୁହଁ ଧରି ହୁଏତ ସେହି ଦାର୍ଶନିକ ହସ ଆଗରେ ଯାଇ ଠିଆହୋଇ କହିବ— ବିଶ୍ୱାସ କର ମୁଁ ଜାଣି ନ ଥିଲି, ମତେ କେହି କହି ନାହାନ୍ତି !

ନା ଶମ୍ପା ନାଆଁର ବିଦ୍ୟୁତ୍‌ଶିଖା ଟିକକ କୁଆଡ଼େ ହଜିଗଲା ତା'ର ଖବର ନେବାକୁ ଧାଇଁବ ?

ଆସ୍ତେ ଆସ୍ତେ ତିନିତାଲାର ନିଜର ଇଲାକାକୁ ଚାଲିଗଲା ବକୁଳ ।

ଟେବୁଲ ଉପରକୁ ଚାହିଁ ଦେଖିଲା, ଅନେକ ଚିଠି ଆସି ଜମିରହିଛି । ଯତ୍ନ କରି ପେପର-ୱେଟ୍‌ରେ ଚାପି ରଖିଦେଇଛି କିଏ । ହଠାତ୍ ଯେପରି ଆଶ୍ଚର୍ଯ୍ୟ ହୋଇଗଲା ବକୁଳ ।

ଭାବିଲା ମୁଁ ଏ ସଂସାରରୁ ଏସବୁ ସେବା-ଯତ୍ନ ପାଏ, କିନ୍ତୁ କୋଉଦିନ ତ ଭାବି ଦେଖିନି ଏଗୁଡ଼ାକ ପାଉଛି ! ଜନ୍ମସୂତ୍ରର ଅଧିକାରରେ ଏଗୁଡ଼ିକ ପ୍ରାପ୍ୟ ବୋଲି ଭାବିଛି କେବଳ, ଅଥବା କିଛି ଭାବିନି । ହୁଏତ ଭାବି ଦେଖିବା ଉଚିତ ଥିଲା, ହୁଏତ ସେମିତି ଦେଖିଥିଲେ ମୋର ପ୍ରକୃତି କିଛି ବଦଳିଥାନ୍ତା । ନିଜ ଚେହେରାଟାକୁ ସ୍ପଷ୍ଟ ଦେଖିପାରିଥାନ୍ତି ।

ବକୁଳ ଉଠି ଠିଆହେଲା ।

ଏପଟର ଝରକାଟା ଖୋଲି ଦେଖିଲା । କିନ୍ତୁ ଏ ଝରକାଟାରୁ ତ ଖାଲି ସେ ଘରର ପଛପଟର କାନ୍ଥଟି କେବଳ ଦେଖାଯାଏ । ଶିଉଳି ପଡ଼ି ଲୁଣିମରା, ବିବର୍ଣ୍ଣ ।

ଆମମାନଙ୍କର ମନଗୁଡ଼ାକ ମଧ କ୍ରମଶଃ ଏଭଳି ହୋଇଯାଏ, ଏଭଳି ଶିଉଳି ଜମିଯାଇ, ଲୁଣିମାରି ବିବର୍ଣ୍ଣ ହୋଇଯାଏ !

ସେହି ଭାବୀ ଚେହେରାଟା ଅନ୍ୟଲୋକର ଆଖିରେ ପଡ଼େ ନାହିଁ, କିନ୍ତୁ ସତରେ କ'ଣ ପଡ଼େ ନାହିଁ ?

## ॥ ୨୨ ॥

ମାଧୁରୀ କହିଲା— କ'ଣ ଯେ କହୁଛ ବକୁଳ ! ତମେ ଜାଣି ଜାଣି ମତେ ଭୁଲିଯାଇଛ, ଏକଥା ମୁଁ ଭାବିବି ? ମୁଁ ଜାଣିଛି ତମେ କେତେ ବ୍ୟସ୍ତ ମଣିଷ ।

ତା'ପରେ ହସି କହିଲା— ତମେ ଆମ ସ୍ତ୍ରୀଲୋକମାନଙ୍କର ଗୌରବ । କେତେ ନାଆଁଡ଼ାକ ତମର, ତମର କେତେ ଭକ୍ତ ! ତାଙ୍କ ଭିତରେ ମୁଁ ମଧ ଜଣେ ।

ବକୁଳ ତା'ର ଗୋଟାଏ ନିରାଭରଣ ହାତ ମୁଠାରେ ଚିପି ଧରି ତୁନିହୋଇ ବସିଥିଲା, ଆସ୍ତେ ଟିକିଏ ଚିପି ଦେଇ କହିଲା— ଅନେକଙ୍କ ଭିତରେ ଜଣେ ମାତ୍ର, ଏ କଥାଟା ତମ ସମ୍ପର୍କରେ କହିନି ।

ତୁନିହୋଇ ରହିଲା ମାଧୁରୀ ।

ଘରଟାକୁ ଚାହିଁ ଚାହିଁ ଦେଖିଲା ବକୁଳ । ଆଶ୍ଚର୍ଯ୍ୟ, ବକୁଳର ପିଲାଦିନେ ବକୁଳ ଏ ଘରଟାର ଯାହା ସାଜସଜା ଦେଖିଥିଲା, ଏବେ ମଧ ଅବିକଳ ସେଇୟା ରହିଛି । ସେହି ଗୋଟିଏ ପଟର କାନ୍ଥରେ ଦୁଇଟା ଖମ୍ବ ପରି ମେହେଗନି ପାଲିସ୍ ଷ୍ଟ୍ୟାଣ୍ଡ୍ ଉପରେ ଲମ୍ବା ଦର୍ପଣଟି ରହିଛି । ସେ ଘରେ ପଶିଲାକ୍ଷଣି ସାମନା କାନ୍ଥରେ ଉଚ୍ଚରେ ଗୋଟାଏ ହରିଣ ଶିଙ୍ଗର ବ୍ରାକେଟ୍ ଉପରେ ପିତ୍ତଳର

ଲକ୍ଷ୍ମୀମୂର୍ତ୍ତି, ଗୋଟା କାନ୍ଥଟାରେ ଗୁଡ଼ାଏ ଫଟୋ ଲାଗିଛି, ଦର୍ପଣ ଷ୍ଟ୍ୟାଣ୍ଡ ଭଳି ମୋଟା ବାଜୁ ଥିବା ଉଚ୍ଚ ପଲଙ୍କ, ତା'ର ସେପଟକୁ ମଥାକୁ ଟପିଯିବା ଭଳି ଉଚ୍ଚ ଆଲଣା, ତାରି ପାଖରେ ଗୋଟାଏ ସରୁ ସରୁ ଗୋଡ଼ ଥିବା ଛୋଟ ଟେବୁଲରେ ଦି'ଚାରିଟା ବହି, ଏପଟର କାନ୍ଥ ପାଖରେ ଲମ୍ବା ବେଞ୍ଚ ଉପରେ ଧାଡ଼ି ଧାଡ଼ି ଟ୍ରଙ୍କ, ବାକ୍ସ, ହାତବାକ୍ସ !

ଠିକ୍ ସବୁ ରହିଛି । ଖାଲି ସବୁଥିରେ ସମୟର ଧୂଳିରେ ବିବର୍ଣ୍ଣ ଧୂସର ଛାପ ପଡ଼ିଛି ।

ଦର୍ପଣ ଦେହରେ ଗୋଲ ଗୋଲ କଳା ଦାଗ, ଫଟୋଗୁଡ଼ାକ ମଳିନ, ହଳଦିଆ ପଡ଼ିଗଲାଣି, ଟ୍ରଙ୍କ୍-ବାକ୍ସର ଡାଙ୍କୁଣିଗୁଡ଼ିକ ଜୀର୍ଣ୍ଣ ହେଲାଣି ଆଉ କାନ୍ଥଗୁଡ଼ାକ ବାଲି ଝରିଯାଇ ସନ୍ତସନ୍ତିଆ, ଯେମିତି ଏକାବେଳେ ମୂକ ପାଲଟିଛନ୍ତି ।

ଆଲଣାଟାରେ ଖାଲି ଆଖିରେ ପଡ଼ିଲାଭଳି ପରିବର୍ତ୍ତନ ଦିଶୁଛି । ସେତେବେଳେ ଏଇ ଆଲଣାରେ କେତେବେଳେ ରହିଥାଏ ଓସାର ଓସାର ଧଡ଼ିର ହାତରେ କୁଞ୍ଚାଇ ଥିବା ଶାଢ଼ୀ, ଆଉ ଲମ୍ବା ଲମ୍ବା ସେମିଜି । ଏବେ ସେ ଆଲଣାରେ ଝୁଲୁଛି ଭଙ୍ଗା ହୋଇ ରହିଥିବା ଥାନୀ ଧୋତି, ଆଉ ଧଳା ନିର୍ମଳ ସାୟା ବ୍ଲାଉଜ୍ ।

ଏ ଘରଟା ନିର୍ମଳର ମା'ଙ୍କର ଘର ଥିଲା । ଘର ଭିତରେ ଏଇ କୋଠରିଟାରେ କେବଳ ବକୁଳର ଅବାରିତ ଅଧିକାର ଥିଲା । ନିର୍ମଳର ମା' ଉଲ୍ ବୁଣୁଥିଲେ । ବସି ବସି ଦେଖୁଥାଏ ବକୁଳ ଆଉ କହୁଥାଏ, ବାପା ! ଏମିତି ସରୁ ସରୁ କାଠି ଦୁଇଟାରେ ଏମିତି ସାନ ସାନ ଘର ଟେକି ବଡ଼ ଜିନିଷ ତିଆରି କରିବା ! ଦେଖିଲାକ୍ଷଣି ମୋର ମୁଣ୍ଡ ଝିମ୍ ଝିମ୍ ହୋଇଯାଉଛି ।

ନିର୍ମଳର ମା' ହସୁଥିଲେ । କହୁଥିଲେ ଦେଖିବୁ ନିଶା ଲାଗିଯିବ ।

—ତା'ହେଲେ ବାପା ଶିଖିବା ଦରକାର ନାହିଁ ମୋର ।

ନିର୍ମଳର ମା' କହୁଥିଲେ— ନ ଶିଖିଲେ ବାହାଘର ହେଇପାରିବନି ।

ମିଠା ହସ, ମିଠା କଥା, ମିଠା ମଣିଷଟା । ବଡ଼ ଯାଆର ଭୟରେ ସବୁବେଳେ ସନ୍ତ୍ରସ୍ତ, ସୁବିଧା ପାଇଲାକ୍ଷଣି ଏଇ କୋଠରିଟି ଭିତରେ ଯେପରି ଆତ୍ମଗୋପନ କରି ରହୁଥିଲେ ।

ମାଧୁରୀ ମଧ କ'ଣ ତିନିତାଲାର ଏ ଘରଟା ନିଜ ପାଇଁ ବାଛି ନେଇଛି ପୃଥିବୀଠାରୁ ଆତ୍ମଗୋପନ କରିବା ପାଇଁ ? କିନ୍ତୁ ଆଜିର ପୃଥିବୀ କ'ଣ କାହାକୁ ନିଜ ଭିତରେ ନିମଗ୍ନ ହୋଇ ରହିବାକୁ ଛାଡ଼ି ଦେଇଛି ? ଲୁଚି ରହିଥିବା ନିଜର

କୋଟରଟି ଯଦି କେଉଁଠାରେ ଥାଏ, ତା' ଉପରେ ଆଘାତ କରି କରି ଟାଣି ନ ନେଲା ପର୍ଯ୍ୟନ୍ତ ଛାଡ଼ିଦିଏ ?

ବକୁଳ ଯେପରି ଆଶ୍ଚର୍ଯ୍ୟ ହୋଇ ଘରର ଚେହେରାଟା ଦେଖୁଥିଲା । ବକୁଳ ହେରିକାଙ୍କ ଘରେ କୋଠରି, ବାରଣ୍ଡା ଝରକା-ଦୁଆର ଛଡ଼ା ଆଉ କେଉଁଠି କିଛି କ'ଣ ଅଛି ଯେଉଁଠି ବକୁଳର ମା'ର ହାତର ସ୍ପର୍ଶ ରହିଛି ?

ଧୀରେ କହିଲା, ଘରଟା ଭିତରେ କୋଉଠି କିଛି ଘୁଞ୍ଚାଇ ନାହଁ, ବଦଳେଇ ନାହଁ ? ସବୁ ଠିକ୍ ସେମିତି ରହିଛି ! କି ଆଶ୍ଚର୍ଯ୍ୟ ! ଟିକିଏ ବିଷଣ୍ଣ ହସ ହସି ମାଧୁରୀ କହିଲା— ଜିନିଷପତ୍ର ଘୁଞ୍ଚାଇ ଆଉ କି ନୂତନତ୍ୱ ଆଣିବି ବକୁଳ, ଜୀବନଟା ଯେତେବେଳେ ଅଚଳ ହୋଇ ରହିଗଲା ?

ମୁଣ୍ଡ ପୋତି ବସିଥିଲା ବକୁଳ । ଏଥର ସିଧା ହୋଇ ବସି କହିଲା— ଅଚଳ ହୋଇ କ'ଣ ରହିପାରୁଛ ? ଆଜିର ଯୁଗ ତ ଜୀବନର ମୂଳଚେର ଧରି ଝଙ୍କାଉଛି ।

—"ହଁ ତା' ସତ—" ମାଧୁରୀ କହିଲା— ଶୁଣୁଛ ତା'ହେଲେ ?

—ସାନଭାଇନା ମୁହଁରୁ ଶୁଣିଲି ।...... ବକୁଳ କହିଲା— ଶୁଣି ବିଶ୍ୱାସ କରିବାକୁ ଡର ଲାଗିଲା । ପିଲାଟାର ବୟସ ଗଣିବାକୁ ସବୁ ଗୋଳେଇ ହୋଇଗଲା ।

—ତମର କ'ଣ ? ମୋର ବି ସେଇଆ ଗୋଳେଇ ହୋଇଯାଉଛି । ମନେହେଉଛି, ସତେ କ'ଣ ତା'ର ବୟସ ତେର ବର୍ଷ !

ବକୁଳ ଟିକିଏ ଚୁପ୍ ରହି କହିଲା— ଏଇଲେ କେମିତି ଅଛି ?

—ଡାକ୍ତର ତ କହୁଚି ଭଲ ହେବାକୁ ଡେରି ଲାଗିବ, ଆଉ ଚିରକାଳ ପାଇଁ ଅକର୍ମଣ୍ୟ ହୋଇଗଲା । ଡାହାଣ ହାତଟା ଏକାବେଳେ ଉଡ଼ିଯାଇଛି ।...... ଗଳାଟା ବୁଜି ହୋଇଗଲା ବୋଲି ବୋଧହୁଏ ମାଧୁରୀ ତୁନି ହୋଇଗଲା ।

କୌଣସି କଥା କହିବାକୁ ନ ପାଇ ବୋଧହୁଏ ବକୁଳ କହିଲା— ଦେଖିବାକୁ ଯାଉଛ ?

ମାଧୁରୀ ଚାହୁଁଥିଲା ଝରକା ବାହାରକୁ, କହିଲା— ଦିନଟେ ଦେଖିବାକୁ ଦେଇଥିଲେ ପୁଲିସ ହେପାଜତରେ ଅଛି ତ ? ତା' ମା' ବାପ ମଧ୍ୟ ସେଇଆ । ଦିନକ ପାଇଁ ଆସି ଚାଲିଗଲେ । କହିଲେ, ଦେଖିବାକୁ ଯଦି ଅନୁମତି ଦେବେନି ! ଆଉ— କେମିତି ହସ ଟିକିଏ ହସି କହିଲା ମାଧୁରୀ, ଭଲ ହୋଇଗଲା ପରେ ଯାବତ୍‌ଜୀବନ ଜେଲ୍ ଖଟୁ, ଆମର ଏ ପ୍ରାର୍ଥନା !

ବକୁଳ ମାଧୁରୀର ମୁହଁ ଆଡ଼କୁ ଚାହିଁ ଦେଖିଲା ।

କିଏ ଯଦି ଏବେ ମାଧୁରୀକୁ ଦେଖି କହେ– ଏକଦା ସେ ସ୍ୱର୍ଣ୍ଣ-ଗୌରାଙ୍ଗୀ ସୁନ୍ଦରୀ ଥିଲା, ତା'ର ହସ ଦେଖିଲେ ମନେ ହେଉଥାଏ ମାଧୁରୀ ନାଆଁଟା ସାର୍ଥକ ହୋଇଛି, ତା'ହେଲେ ଲୋକେ ହସି ପକାଇବେ । ଏତେ ସଫା ବର୍ଣ୍ଣ ଯେ ଏମିତି କଳା ହୋଇଯାଇପାରେ ଆଖିରେ ନ ଦେଖିଲେ ବିଶ୍ୱାସ କରିବା କଷ୍ଟ । ପୋଡ଼ି ଯାଇଥିବା ପରି ସେ ପୋଡ଼ା ରଙ୍ଗର ମୁହଁ ଆଡ଼କୁ ଚାହିଁ ରହି ବସିଥିଲା ବକୁଳ । ମାଧୁରୀର ଆଗପଟର ବାଳରେ କଳା ରଙ୍ଗ ବଦଳରେ ଧଳା ରଙ୍ଗଟା ବେଶୀ ହୋଇଛି । ମାଧୁରୀର ଶୀର୍ଣ୍ଣ ଗାଲରେ ପେଶୀର ରେଖା ।

ଅଥଚ ବକୁଳ ପ୍ରାୟ ଠିକ୍ ସେହିପରି ରହିଛି ।

ବକୁଳର ନିଜର ମଝିଆନାନୀ କହି ଯାଇଛି– ରହିବନି କାହିଁକି ବାପା ! ଶଶୁର ଘର ଗଞ୍ଜଣା ପାଇବାକୁ ପଡ଼ିନି, ସଂସାର-ଜ୍ୱାଳା ସହିବାକୁ ପଡ଼ିନି, ଆମଭଳି ଦି'ବର୍ଷ ଛଡ଼ାରେ ଅନ୍ତୁଡ଼ିଶାଳରେ ପଶିବାକୁ ପଡ଼ିନି, ଯେମିତି ଟୋକୀ ଝିଅ ଥିଲା ଠିକ୍ ସେମିତି ରହି ଯାଇଛି । ନ ହେଲେ ଖାଲି ବକୁଳ ହିଁ ମା'ଙ୍କ ପେଟ ଭିତରେ ନୀରସ ଥିଲା ।

ତା'ମାନେ ବକୁଳର ମା'ର ପେଟର ସରସ ଚେହେରାର ସନ୍ତାନମାନଙ୍କର ସେହି ସବୁ ଜ୍ୱାଳାରେ ବଦଳି ଯାଇଛି ।

କିନ୍ତୁ ମାଧୁରୀ ? ମାଧୁରୀର ତ ସେ ସବୁ କିଛି ନ ଥିଲା ।

ମାଧୁରୀ ବର ସହିତ ପ୍ରତ୍ୟେକ ବସାଘରେ ରହିଛି, ବୁଲିଛି, ଶଶୁରଘର ଗଞ୍ଜଣା କାହାକୁ କହନ୍ତି ବୋଲି ଜାଣିନି, ମାଧୁରୀ ସେ କୋଉକାଳେ ଦି'ଥର ଅନ୍ତୁଡ଼ିଶାଳରେ ପଶିଥିଲା, ଆଉ ଯାଇନି, ତା'ହେଲେ ?

ମଝିରେ ମଝିରେ ଛୁଟି ହେଲେ ଯେତେବେଳେ ନିର୍ମଳ ଆସୁଥାଏ, ସେତେବେଳେ ମାଧୁରୀ କିପରି ଦିଶୁଥିଲା ଆଜି ମନେ ପକାଇବାକୁ ଚେଷ୍ଟା କଲା ବକୁଳ ।

କିନ୍ତୁ ସେତେବେଳେ କ'ଣ ମାଧୁରୀ ଆଡ଼େ ଆଖି ଥିଲା ବକୁଳର ?

ତେବେକେ ମନେ ପକାଇଲା– ସେହି ସ୍ୱର୍ଣ୍ଣଚମ୍ପା ରଙ୍ଗଟା ହିଁ ମନେପଡ଼ିଲା, ଅଥଚ ଏଇଲେ ରଙ୍ଗ ଜଳିଯାଇଥିବା ମାଧୁରୀ ବକୁଳଠାରୁ ବିବର୍ଣ୍ଣ ଦିଶୁଛି ।

ବକୁଳ ମନେ ମନେ କହିଲା– ମୁଁ ତମ ପାଖରେ ମୁଣ୍ଡ ନୁଆଁଉଛି । ତମର ଭଲପାଇବାରେ ସର୍ବସ୍ୱ ସମର୍ପଣ ଥିଲା ।

ସେହି କ୍ଷୁଦ୍ର ହସ ଲାଗିଥିବା ମଳିନ ମୁହଁଟା ଆଡ଼କୁ ଚାହିଁ ରହି ବକୁଳ କହିଲା– ମା' ମଧ ଏ କଥା କହିଲା ?

—ମା' ତ ବେଶୀଥର କହିଲା । ତା' ସହିତ ମତେ ମଧ୍ୟ ଅନେକ କଥା କହିଲା...... ଶୀର୍ଣ୍ଣ ମୁହଁରେ ମାଧୁରୀ ଆଉଥରେ ହସି କହିଲା— ହଁ କହିପାରିଲା । ବିଶ୍ୱାସ କରି ମୋ ପାଖରେ ପୁଅକୁ ରଖି ଦେଇଥିଲା—

ଆଉ ଟିକିଏ ନୀରବ ରହିଲା ପରେ କହିଲା— ଭଗବାନଙ୍କ ସହସ୍ରନାମ ଭିତରେ 'ଦର୍ପହାରୀ' ନାମଟା ହିଁ ପ୍ରଧାନ ନାମ ବୁଝିଲ ବକୁଳ ! ମୋ ମନ ଭିତରେ ଦର୍ପ ନିଶ୍ଚେ ରହିଥିଲା । ଦର୍ପ କରି ଭାବିଥିଲି, ଲାଞ୍ଛଖିଆ ବାପା ଆଉ ଲୋଭୀ ମା' ପାଖରେ ଥାଇ ପୁଅଟା ଖରାପ ହୋଇଯିବ । ସେମାନଙ୍କ ପ୍ରଭାବରୁ ମୁକ୍ତ କରି ନିଜ ପାଖରେ ନେଇ ରଖିବି । ଧାରଣା ନ ଥିଲା ସଂସାରରେ ଆହୁରି କେତେ ମନ୍ଦପ୍ରଭାବ ରହିଛି ।

କିନ୍ତୁ ଶେଷର କେତେପଦ କଥା କ'ଣ ଚମକି ପଡ଼ିଥିବା ବକୁଳର କାନରେ ପଶିଥିଲା ? ''ଲାଞ୍ଛଖିଆ ବାପା'' ଏ ଶବ୍ଦଟିକକ କେବଳ ଯେମିତି ବକୁଳର ଅନୁଭୂତିକୁ ଝାପ୍‌ସା କରି ଦେଇଥିଲା । 'ଲାଞ୍ଛଖିଆ' ! ନିର୍ମଳର ପୁଅ 'ଲାଞ୍ଛଖିଆ' !

ବକୁଳ ଟିକିଏ ପରେ କହିଲା— ତମର ସାନପୁଅ ?

—ସାନ ? ସେ ତ ଅନେକଦିନରୁ ନିଜକୁ ସମସ୍ତଙ୍କ ପ୍ରଭାବରୁ ମୁକ୍ତକରି ସ୍ୱାଧୀନତା ସୁଖର ସ୍ୱାଦ ଚାଖୁଛି । ମୟୂରଭଞ୍ଜରେ ଚାକିରି କରୁଛି, ସେଇଠି ବାହା ସାହା ହେଇଛି, ଆସୁନି—

ମାଧୁରୀର ପୁଅମାନେ ଏମିତି ଓଲଟା ପାଲଟା ହେଲେ କାହିଁକି ?

ମନେ ମନେ ପ୍ରଶ୍ନ କରୁଥିଲା ବକୁଳ । ତେବେକେ ମାଧୁରୀ ଉତ୍ତରଟା ଦେଲା । କହିଲା— ଆମମାନଙ୍କର ଅକ୍ଷମତା କେବଳ ଦାୟୀ । ପିଲାମାନଙ୍କୁ ଠିକ୍‌ରୂପେ ବୁଝିପାରି ନ ଥିଲୁ । ଲେଖାପଢ଼ା ଶିଖାଇବାଟା ହିଁ ମଣିଷ କରିବାର ଏକମାତ୍ର ଉପାୟ ବୋଲି ଭାବିଛୁ । ସେହି ଭାବନାଟା ଯେ ଠିକ୍ ନୁହେଁ ସେ କଥା ଯେତେବେଳେ ବୁଝିପାରିଲି ସେତେବେଳେ ଆଉ ଚାରା ନ ଥିଲା । ତମର ନିର୍ମଳଭାଇନା ମଣିଷଟି ଥିଲେ ବହୁତ ବେଶୀ ଭଲମଣିଷ, ଆଉ ମୁଁ ?...... ମାଧୁରୀ ଆଉଥରେ ଟିକିଏ ବ୍ୟଙ୍ଗବୋଳା କ୍ଷୁଦ୍ର ହସ ହସିଲା— ମୁଁ ଏକାବେଳେ ଜଣେ ଖାଣ୍ଟି ହିନ୍ଦୁନାରୀ । ପତିଙ୍କ ଛଡ଼ା ଚିନ୍ତା କିଛି ନ ଥିଲା । ଅତଏବ— ଆଖିକାନ ବନ୍ଦ କରି ଖାଲି ତୁନି ହୋଇଗଲା ସେ ।

ବକୁଳ କିନ୍ତୁ ସେହି ଜୀବନରେ ବିଧ୍ୱସ୍ତ ମୁହଁଟା ମଧ୍ୟରୁ ସୁଦ୍ଧା ଏକ ଆଶ୍ଚର୍ଯ୍ୟ ଉଜ୍ଜ୍ୱଳ ଆଲୋକର ଆଭାସ ଦେଖିପାରିଲା । ବକୁଳର ମନେହେଲା 'ବିଧ୍ୱସ୍ତ', କିନ୍ତୁ ବ୍ୟର୍ଥ ନୁହେଁ ।

ମାଧୁରୀ ତା'ପରେ କହିଲା— କିନ୍ତୁ ସେସବୁ ତ ସାଧାରଣ ଘଟଣା, ଜଗତର ଜଣା କଥା । ଏ ତେର ବର୍ଷର ପିଲାଟା କେବଳ ମତେ ମୂକ କରି ଦେଇଛି । ଆଜିକାଲି ବଡ଼ ବଡ଼ କଥା କହୁଥିଲା । ଦେଠେଇଙ୍କର ସେ ଯେଉଁ ପୁତୁରାମାନେ ଅଛନ୍ତି ଗୋଟା ଘରଟାକୁ ମାଡ଼ି ବସିଛନ୍ତି, ତାଙ୍କରି ଭିତରୁ କାହାର ଜଣକର ପୁଅ ସହିତ ଭାରି ସାଙ୍ଗ ହୋଇଥିଲା । ଦୁଇଜଣ ବଡ଼ ବଡ଼ କଥାବାର୍ତ୍ତା କହୁଥିଲେ, ଶୁଣୁଥିଲି । ପିଲାଙ୍କ ମୁହଁରେ ବଡ଼ଙ୍କ ଭଳି କଥା ଶୁଣି ହସ ଲାଗୁଥିଲା । କହୁଥିଲା...... ଏ ବୁର୍ଜୁଆ-ସମାଜର ମୃତ୍ୟୁର ଦିନ ଆସୁଛି, ସେମାନେ ନିଜେ ହିଁ ନିଜର ଚିତା ତିଆରି କରିଛନ୍ତି ।''

......କହୁଥିଲା...... 'ବିପ୍ଳବ ଆସୁଛି, ତାକୁ ରୋକିବାର କ୍ଷମତା ଅତି ବଡ଼ ଶାସକର ମଧ ନାହିଁ ।'

ଆହୁରି କେତେ କ'ଣ କହୁଥିଲେ ସେ ଦି'ଭାଇ ସେମାନଙ୍କ ପିଣ୍ଡାରେ ବସି । 'ଆଖିରେ ଅନ୍ଧପୁଟୁଳି ବାନ୍ଧି ବସି ରହିଗଲେ ଟାଣ ଖରାକୁ ଅସ୍ୱୀକାର କରିହେବନି, ଖରା ତା'ର ନିଜର କାମ କର, ଚମଡ଼ାକୁ ପୋଡ଼ିଦିଏ ।'

ଦେଠେଇଙ୍କ ପୁତୁରାର ପୁଅଟା ତ କେତେ ବଡ଼, ତେବେକେ ବୁବୁନ୍ ଯେମିତି ତା'ରି ସହିତ ସମାନ ହୋଇ ଏହିପରି ଆଡ୍ଡା ମାରୁଥିଲା । ମୁଁ ଭାବୁଥିଲି ବୁବୁନ୍ ସେହି ଶୁଣିଥିବା କଥାଗୁଡ଼ାକୁ ଦୋହରାଉଛି, ହସ ଲାଗୁଥାଏ ମତେ ! କହୁଥିଲି— ବୁବୁନ୍, ବୁର୍ଜୁଆ ତିଆରି ହୁଅନ୍ତି ଜାଣିଛୁ ? କହୁଥିଲି— ବୁବୁନୁ, ଦେଶରେ ବିପ୍ଳବର ରକ୍ତଗଙ୍ଗା ବୁହାଇବାର ଭାରଟା ତା'ହେଲେ ତୁମେମାନେ ହିଁ ନେଇଛ ? ତୁ ଆଉ ତୋ'ର ପଲଟୁ ଭାଇନା ?

......ସେ ମୋର ଥଟ୍ଟା ଶୁଣି ଲାଜ କରୁ ନ ଥିଲା, କେମିତି ଗୋଟାଏ ଅବଜ୍ଞା ଭରା ଦୃଷ୍ଟିରେ ଚାହୁଁଥିଲା । କ୍ରମେ କ୍ରମେ ସେହି ଦୃଷ୍ଟିରେ ଫୁଟିଉଠିବାର ଦେଖିଲି ଅବଜ୍ଞା, ଘୃଣା ବିଦ୍ୱେଷ ଆଉ ନିଷ୍ଠୁରତା । ତେବେକେ ସେତେବେଳେ ମଧ ମୁଁ ସେଥିରେ ଗୁରୁତ୍ୱ ବୁଝିପାରିଲିନି ବକୁଳ । ବରଂ ମଝି ମଝିରେ କହିଛି— ସେ ପଲଟୁଭାଇନା ସଙ୍ଗେ ବେଶୀ ମିଶନା ! ସେ କ'ଣ ତୋ ବୟସର ହେଇଛି ? ରାଜ୍ୟର ଯେତେସବୁ ଜଟିଳ କଥା ତୋ ମୁଣ୍ଡରେ ପୂରାଉଛି ସେ ।

କ୍ରମଶଃ ଦେଖିଲି— ସେମାନଙ୍କର ସେହି ଆଡ୍ଡା— ଆଲୋଚନା କମିଗଲା । ପଲଟୁକୁ ତ ଆଉ ଘରେ ଦେଖିପାରିଲିନି । ବୁବୁନ୍ ମଧ ଠିକ୍ ସମୟରେ ସ୍କୁଲକୁ ଗଲା, ଅବଶ୍ୟ ସ୍କୁଲରୁ ଫେରିବାକୁ ତା'ର ବହୁତ ଡେରି ହେଲା, ରାଗିଲେ ମୁଁ ସେ କହୁଥିଲା 'କାମ ଥିଲା ।' ଯଦି ରାଗିଯାଇ କହୁଥିଲି— ତୁ ଏଡ଼େ ଟିକିଏ ପିଲା, ତୋ'ର ପୁଣି ଆଉ କାମ କ'ଣ ?

ଅବଜ୍ଞା ଦୃଷ୍ଟିରେ ଚାହିଁ ସେ କହୁଥିଲା– ବୁଝିବା କ୍ଷମତା ନାହିଁ ଖାଲି ସୁଶ୍ରୀଳ ସୁବୋଧ ପିଲାମାନଙ୍କୁ ଖୁଆଇ ପିଆଇ ମୋଟା କରିବା ହିଁ ଜାଣିଛ !

ତେବେକେ ତମକୁ କ'ଣ କହିବି ବକୁଳ, ଧାରଣା କରିପାରିନି, ବୁବୁନୁ ସ୍କୁଲକୁ ଯାଏନି, ସ୍କୁଲ ଦରମାଟା ନେଇ ପାର୍ଟିକୁ ଚାନ୍ଦା ଦିଏ, ବୋମା ତିଆରିରେ ଯୋଗ ଦିଏ, ବରଂ ଭାବିଥିଲି ପଲଟୁ ପ୍ରଭାବରୁ ସେ ମୁକ୍ତ ହୋଇଛି ବୋଲି । କିଏ ଭାବିଥିଲା ପଲଟୁ ତାକୁ ଗ୍ରାସ କରି ଦେଇଥିଲା !

ମାଧୁରୀ ନୀରବ ହେଲା, ନିରାଭରଣ ହାତଟାକୁ ଟେକି କପାଳରେ ଉଡ଼ି ବସିଥିବା ଗୋଟାଏ ମାଛିକୁ ତଡ଼ିଲା ।

ତା'ପରେ ଆସ୍ତେ କହିଲା– ଖାଲି ମୋର ବୁବୁନ୍ ନୁହେଁ ବକୁଳ, ସାରା ଦେଶ ଧରି ହଜାର ହଜାର ବୁବୁନ୍ ଏହିପରି ପ୍ରତିଦିନ ଗ୍ରାସିତ ହେଉଛନ୍ତି । କିନ୍ତୁ ଯାର ମୂଳରେ ହୁଏତ ଆହୁରି ଗଭୀର କାରଣ ରହିଛି । ଆଜିକାଲିର ପୁଅଝିଅଙ୍କର ସବୁଠାରୁ ବଡ଼ ଯନ୍ତ୍ରଣା ହେଲା ସେମାନେ ଶ୍ରଦ୍ଧା କଲାଭଳି ଲୋକ ପାଉ ନାହାନ୍ତି । ସେମାନଙ୍କ ମନକୁ ବୁଝିପାରିବେ, ଏଭଳି ବାପ-ମା' ପାଉନାହାନ୍ତି । ସେମାନଙ୍କୁ ଭଲ ପାଇବାର ବନ୍ଧନରେ ବାନ୍ଧିଦେଇପାରେ, ଏମିତି ସ୍ନେହର ଦେଖା ପାଉନାହାନ୍ତି । ଆମେ ଆମର ନିଜ ମନ ଅନୁସାରେ ଭଲପାଇବାକୁ ଜାଣିଛୁ, କିନ୍ତୁ ସେମାନଙ୍କ ମନ ଅନୁସାରେ ନୁହେଁ । ହୁଏତ ପୂର୍ବର ଯୁଗ ଏତିକିରେ ସନ୍ତୁଷ୍ଟ ରହୁଥିଲା, ଏ ଯୁଗର ମନ, ସ୍ୱଭାବ, ଦୃଷ୍ଟିଭଙ୍ଗୀ ଅଲଗା, କାରଣ ଯେଉଁଥିପାଇଁ ହେଉ ପଛକେ ଏମାନଙ୍କର ଆଖି କାନ ବହୁତ ଚଞ୍ଚଳ ଖୋଲିଯାଇଛି । ଏମାନେ ସେଥିପାଇଁ ଲୋଭକୁ ଲୋଭ ବୋଲି ବୁଝିବାକୁ ଶିଖିଛନ୍ତି, ଦୁର୍ନୀତିକୁ ଦୁର୍ନୀତି ବୋଲି ଚିହ୍ନି ଶିଖିଛନ୍ତି ।

ସେଇଥିପାଇଁ ସବୁଠାରୁ ନିକଟତମ ଲୋକଙ୍କ ଉପରେ ହିଁ ଏମାନଙ୍କର ସବୁଠାରୁ ବେଶୀ ଘୃଣା ରହିଛି ।

–"ତମେ ତ ଭାରି ଭାବୁଛ......" ଆସ୍ତେ କହିଲା ବକୁଳ ।

ମାଧୁରୀ ବୋଧହୁଏ ଏତେସମୟ ହେଲା ଏକ ଆବେଗରେ ହିଁ ଏତେଗୁଡ଼ିଏ କଥା କହି ଚାଲିଥିଲା, ହଠାତ୍ ଲଜ୍ଜିତ ହୋଇଗଲା । ଲାଜୁଆ ହସ ହସି କହିଲା, ଏତେଦିନ ହେଲା ଏତେ କଥା ସବୁ କିଛି ଭାବିନି ବକୁଳ । ଯେଉଁଦିନ ବୁବୁନ୍‌ର ବୋମା ତିଆରି କରିବାର ଖବର ପାଇଲି, ଖବର ପାଇଲି ସେ ଚିରଦିନ ପାଇଁ ଅକର୍ମଣ୍ୟ ହୋଇଯାଇଛି, ସେତିକିବେଳୁ ଭାବିବାକୁ ଶିଖୁଛି । ଭାବୁ ଭାବୁ ଯେମିତି ଆସ୍ତେ ଆସ୍ତେ ଆଖି ଖୋଲିଯାଉଛି । ବୁଝିପାରୁଛି– ସେମାନଙ୍କ ଭିତରର ଭଲପାଇ

ନ ପାରିବାର ଭାର, ଶ୍ରଦ୍ଧା ନ କରିପାରିବାର ଭାର, ଆଖି ଖୋଲି ଯାଇଥିବା ମନର ଜ୍ୱାଳାର ଭାର, ତାଙ୍କ ଭିତରେ ସବୁକିଛିକୁ ଧ୍ୱଂସ କରିବାର ନିଆଁ ଜଳାଇଛି । ନ ହେଲେ ଏତ୍କେ ଟିକିଏ ଗୋଟାଏ ପୁଅ ଭିତରେ ଏତେ ଘୃଣା, ଅବଜ୍ଞା କୁଆଡୁ ଆସୁଛି ? ଯୋଉଦିନ ଦେଖିବାକୁ ଯାଇଥିଲି, କ'ଣ କହିଲା ଜାଣିଛ ? କହିଲା— କ'ଣ ଦେଖିବାକୁ ଆସିଲ ? ଯେମିତି କର୍ମ ସେମିତି ଫଳ ? ଭାବ, ତେବେକେ ଜାଣି ରଖିଥାଅ ଯେଉଁ ହାତଟା ପୂରା ରହିଛି, ସେଇ ହାତରେ ହିଁ ପୁଣି ସେଇ କାମ କରିବି, ତମେ ଦେଖିବ ।

ସେତିକିବେଳୁ ମୁଁ ଭାବିଚାଲିଛି ବକୁଳ, ଆଉ ଭାବୁଛି ଆମମାନଙ୍କର ବୁଦ୍ଧିହୀନତା, ଆମମାନଙ୍କର ଅନ୍ଧତ୍ୱ, ଆଉ ଆମମାନଙ୍କର ଆପାତ-ଜୀବନ ପ୍ରତି ଲୋଭ କେବଳ ଆମମାନଙ୍କୁ ଏ ଭଙ୍ଗୁର ପଥରେ ଠେଲି ନେଇଯାଉଛି ।

ମାଧୁରୀ ଆଉଥରେ ଟିକିଏ ଲାଜୁଆ ହସ ହସିଲା, କହିଲା— ଦେଖ, ଚୁପ୍ ରହିବି ଭାବି ମଧ ଆଉଥରେ ବଡ଼ ବଡ଼ କଥା କହି ଚାଲିଛି । ଅସଲ କଥା, ଏଭଳି ଜଣେ ବିରାଟ ଲେଖିକାକୁ ଦେଖିଲାମାତ୍ରେ ଜିଭ ଖୋଲି ଯାଉଛି । ସତରେ ବକୁଳ, କଥା କହିପାରିବା ସୁଯୋଗ ମିଳିବା ମଧ ଗୋଟାଏ ବଡ଼ ଲାଭ, ଯେତେଦିନ ଯାଉଛି ସେତେ ଜାଣୁଛି ମୁଁ, ଅନେକଦିନ ପରେ ତମ ସଙ୍ଗେ କଥାବାର୍ତ୍ତା ହେଇ ଯେମିତି ରକ୍ଷା ପାଇଗଲି ମୁଁ ।

ବକୁଳର ବାରମ୍ବାର ଇଚ୍ଛା ହେଉଥିଲା ଥରଟେ ପଚାରନ୍ତା— ନିର୍ମଳ ଭାଇନାଙ୍କର କ'ଣ ହେଇଥିଲା ?

କିନ୍ତୁ କୌଣସିମତେ ସେ ନାଁ ଟାକୁ ଉଚ୍ଚାରଣ କରିପାରିଲାନି ସେ ।

ଯେମିତି ସେହି ଉଚ୍ଚାରଣ ସଙ୍ଗେ ସଙ୍ଗେ ଗୋଟିଏ ପବିତ୍ର ବସ୍ତୁର ଶୁଚିତା ନଷ୍ଟ ହୋଇଯିବ, ଯେମିତି ଗୋଟିଏ ଗଭୀର ଗଭୀରତାଭରା ସଙ୍ଗୀତ ହାଲୁକା ହୋଇଯିବ ।

ମାଧୁରୀ କହିଲା— ଏତେବେଳ ହେଲା ଖାଲି ନିଜର କଥା ବଖାଣିବସିଲି, ତମ କଥା ଟିକିଏ କହିଲ ଶୁଣିବି ।

ମୋ କଥା ପୁଣି କ'ଣ ? ବକୁଳ ଟିକିଏ ହସି କହିଲା, ମୋର ତ ଆଉ ପୁଅ-ବୋହୂ ନାତି-ନାତୁଣୀ ନାହାନ୍ତି ଯେ ସେମାନଙ୍କୁ ନେଇ କିଛି କଥା ଜମି ରହିଛି ।

ତମର ତ ଶତଶତ ପୁଅଝିଅ, ସେମାନଙ୍କର ସୁଖଦୁଃଖ ଭଙ୍ଗାଗଢ଼ାର ସଂସାରକୁ ନେଇ ତମେ ସବୁବେଳେ ବ୍ୟସ୍ତ ବାବା !

—ହଁ, ତା' ସତ ।

—'ଏତେ ଅଦ୍ଭୁତ ଭଲ ଲେଖୁଛ କେମିତି କହିଲ ବକୁଳ ?' ମାଧୁରୀ ହସିଲା, ମୁଁ ତ ଭାବିପାରୁନି କେମିତି ଏଭଳି ଠିକ୍ ମନର କଥାଟିକୁ ବୁଝିପାରୁଛ । ତମର ଲେଖାର ଏମିତି ଗୁଣ ଯେମିତି ପ୍ରତ୍ୟେକଟି ମଣିଷର ଜୀବନ ସଙ୍ଗେ ଚିନ୍ତାର ସଙ୍ଗେ ମିଶିଯାଉଛି । ପଢ଼ିଲେ ମନେହୁଏ ଯେପରି ମୋର କଥା ଭାବି ହିଁ ଲେଖୁଛ । ଏତେ ପ୍ଲଟ୍ କୋଉଠାରୁ ପାଉଛ ଯେ, ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି !

ଏ କଥାର ଉତ୍ତର କ'ଣ ? ବକୁଳ ତୁନି ହୋଇ ରହିଲା ।

କିପରି ବୁଝାଇବ ଲେଖା ଭିତରେ ପ୍ଲଟ୍‌ଟାହିଁ ସର୍ବାପେକ୍ଷା ଗୌଣ । ସେଇଟା ଭିତରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତେବେବେ କେହି ଯଦି କହେ 'ଭଲ ଲାଗୁଛି' ସାଙ୍ଗେ ସାଙ୍ଗେ ଗୋଟାଏ ଚରିତାର୍ଥତାର ସ୍ୱାଦ ନ ମିଳି ରହି ପାରେନି । ବକୁଳ ଏକଥା ଅନେକଥର ଶୁଣିଛି । ସବୁବେଳେ ଶୁଣେ, ତେବେବେ ନୂଆ କରି ଗୋଟାଏ ସାର୍ଥକତାର ସୁଖ ପାଇଲା । ଆସ୍ତେ ପଚାରିଲା— ପଢ଼ୁଛ ?

—ଏ ବାପା ! ପଢ଼ିବିନି ? ସେଇୟାକୁ ଧରି ତ ବଞ୍ଚି ରହିଛି । ମଝିରେ ମଝିରେ ସେଇୟା ମନେହୁଏ, ଯଦି ବହି ଜିନିଷଟା ନ ଥାଆନ୍ତା, କେମିତି ଦିନଗୁଡ଼ାକ କଟାଇଥାନ୍ତି ? ଏହି ସାମାନ୍ୟ କଥାଟିକକ ଭିତରୁ ହିଁ ଧରାପଡ଼ିଲା ଗୋଟିଏ ଶୂନ୍ୟ ହୃଦୟର ଦୁଃସହତା ।

ନିଜ ଉପରେ ଧିକ୍କାର ଜନ୍ମିଲା ବକୁଳର । ବକୁଳର ଏତେ ପାଖରେ ରହି ଏଭଳି ଦୁଃସହ ଶୂନ୍ୟତାର ବୋଝ ନେଇ ପଡ଼ି ରହିଛି ମାଧୁରୀ, ଅଥଚ ବକୁଳ କେବେହେଲେ ତା'ର ସନ୍ଧାନ ନେଇ ନାହିଁ । ଆଦର କରି ନିଜର ଦି'ଖଣ୍ଡ ବହି ଧରି ଆସି କହିନି— ମାଧୁରୀ, ତମେ ଗପ ବହି ପଢ଼ିବାକୁ ଭଲପାଅ—

ତେବେବେ ବର୍ତ୍ତମାନର ସମସ୍ୟାଟା ସେହି ଶୂନ୍ୟତା ଠାରୁ ଅନେକ ବେଶୀ ବାସ୍ତବ । ବୁବୁନ୍‌ର କଥା କ'ଣ ଭାବୁଛି ମାଧୁରୀ ତାହା ହିଁ ପଚାରିବାକୁ ଯାଉଥିଲା ବକୁଳ, ଘରୁ ସେମାନଙ୍କର ଚାକରାଣୀ ଆସିଲା ଡାକିବାକୁ, ପିଉସୀ ମା', ଆପଣଙ୍କୁ ଜଣେ ସ୍ତ୍ରୀଲୋକ ଆସି ଖୋଜୁଛନ୍ତି ।

ବକୁଳ ବିରକ୍ତ ଗଳାରେ କହିଲା, ଆଶ୍ଚର୍ଯ୍ୟ ! ଟିକିଏ ଆସିଛି, ଯାଗି ଭିତରେ— କ'ଣ ନାଁ ? କେଉଁଠାରୁ ଆସିଛନ୍ତି ?

ଚାକରାଣୀ ସୁବାସିନୀ କହିଲା— କେଜାଣି ବାପା, କ'ଣ ଗୋଟାଏ କହିଲେ ।

## ॥ ୨୩ ॥

ବାହାରୁ ଗଲାକ୍ଷଣି ସାମନାର ଘରଟି ହେଉଛି ବାହାରର ବସିବା ଲୋକଙ୍କ ଘର । ବକୁଳ ସେପଟ ଘରୁ ଚାଲିଆସି ଘରେ ପାଦ ଦେଲାମାତ୍ରେ କେତେକ ସେକେଣ୍ଡ୍ ପ୍ରାୟ ଅଭିଭୂତ ଭଳି ଚାହିଁ ରହିଲା ।

ବକୁଳର ଅଭିଭୂତ ଅବସ୍ଥା ଭିତରେ ହିଁ ଜଳପାଇଗୁଡ଼ିର ନମିତା ନମିତ ତ ହୋଇ ପ୍ରଣାମ କରି ଉଠି ଠିଆହୋଇ ଟିକିଏ ହସି କହିଲା— ପୁଣି ଆପଣଙ୍କ ପାଖକୁ ଆସିଲି—

ତଳକୁ ନଇଁ ପ୍ରଣାମ କଲାବେଳେ ନମିତା ବହୁତ ଅପ୍ରସ୍ତୁତ ପରି ଦିଶୁଥିଲା । କାରଣ ପିନ୍ଧିଥିବା ସାଟିନ୍ ଶାଢ଼ୀଟାକୁ ନମିତା ସବୁ ଜାଗାରେ ପିନ୍ ମାରି ଏଭଳି ଦେହରେ ଗୁଡ଼ାଇଛି ଯେ କୌଣସିଠାରେ ଭାଙ୍ଗ ରଖି ନାହିଁ । ନଇଁବା ପରେ ଉଠି ଠିଆହେଲାକ୍ଷଣି ନମିତାର କର୍ଣ୍ଣାଭରଣର ଝୁମୁକାଟା ଏମିତି ଦୋହଲି ଉଠିଲା ଯେ ଗୋଟା ଘରଟାର କାନ୍ଥରେ ଯେପରି ତା'ର ଦ୍ୟୁତି ଝଲସିଗଲା । ସେହି ଝାଡ଼ବତୀ ପରି ଗହଣାଟାର ଦୋଦୁଲ୍ୟମାନ ପଥରଗୁଡ଼ିକ ନକଲ ବୋଲି ହିଁ ବୋଧହୁଏ ଏମିତି ଝକମକ କରୁଥିଲା ।

ଅନେକବେଶୀ ବେକ କଟାଯାଇଥିବା ବ୍ଲାଉଜର ଉପରର ବିସ୍ତୃତ ଇଲାକା ଅଧିକାର କରି ଯେଉଁ କଣ୍ଠାଭରଣଟିକୁ ନମିତା ପିନ୍ଧିଥିଲା ତା'ର ଦ୍ୟୁତିରେ ମଧ ଆଖି ଝଲସିଗଲା । ନମିତାର ମୁଣ୍ଡ ଉପରେ ଦକ୍ଷିଣ-ଭାରତ ମନ୍ଦିରର 'ଗୋପୁରମ୍' ସଦୃଶ ଖୋଷାଟାଏ ଥିଲା । ନମିତାର ଉଗ୍ରଭାବରେ ପେଇଣ୍ଟ୍ କରିଥିବା ମୁହଁରେ ଏକ ଭାବଲେଶଶୂନ୍ୟ ଭାବ ଥିଲା । ଆଉ ତା'ର ଲମ୍ବା ଛୁଞ୍ଚଭଳି ମୁନିଆ ନଖଗୁଡ଼ାକ ଅଦ୍ଭୁତ ଚକ୍ ଚକ୍ ଗୋଟାଏ ରଙ୍ଗରେ ଏନାମେଲ୍ କରାଯାଇଥିଲା ।

ହଠାତ୍ ଗୋଟାଏ ବାଜେ ପ୍ରଶ୍ନ ମନକୁ ଆସିଲା ବକୁଳର । ଜଳପାଇଗୁଡ଼ି ଛାଡ଼ିଦେଲା ପରଠାରୁ କ'ଣ ନଖ ବଢ଼ାଇବାକୁ ଆରମ୍ଭ କରିଥିଲା ନମିତା ? ନ ହେଲେ ଏତେ ବଡ଼ ବଡ଼ ହେଲା କେମିତି ? ନାନାପ୍ରକାରର ନକଲି ନଖ ଯେ ବଜାରରେ କିଣିବାକୁ ମିଳେ, ଏକଥାଟା ବକୁଳ ଜାଣି ନ ଥିଲା । ଚିରକାଳ ଅଲକ୍ଷିତ ଗୋଟିଏ ଜଗତର ରହସ୍ୟ-ଯବନିକା ଉନ୍ମୋଚନ କରିବାର ଚେଷ୍ଟାରେ ବିଭ୍ରାନ୍ତ ହୋଇ ଘୂରି ବୁଲିଛି ବକୁଳ । ଲକ୍ଷିତ ଜଗତର ହାଟରେ ଯେ କେତେ କ'ଣ ରହସ୍ୟର ବିକାକିଣା ଚାଲୁଛି, ସେ ସନ୍ଧାନ ରଖିନି ସେ ।

ନମିତା କହିଲା– ଅନେକଦିନ ହେଲା ଭାବୁଛି, ହେଇପାରିଲାନି । କିଛିଟା ସାହସର ଅଭାବରୁ ମଧ୍ୟ ହୋଇପାରିଲାନି ।

ନମିତାର ଯାହାକିଛି ଅଚଳ ଭାବ ଥିଲା ଏଇଲେ ବୋଧହୁଏ ଖାଲି ତା'ର ପୋଷାକରେ ହିଁ ଯାଇ ଆଶ୍ରୟ ନେଇଥିଲା, କଥାବାର୍ତ୍ତାର ସ୍ୱରରେ ଲେଶମାତ୍ର ଚିହ୍ନ ନାହିଁ ।

ଚମକୃତ ନ ହୋଇ ରହି ପାରିଲାନି ବକୁଳ । ତେଣୁ ଟିକିଏ ଚମତ୍କାର ହସ ହସି କହିଲା– କାହିଁକି, ସାହସ ଅଭାବରୁ କାହିଁକି ?

'– ଅଭାବ ହେବାଟା ହିଁ ତ ଉଚିତ.....' ହାତର ବ୍ୟାଗ୍‌ଟିକୁ ହଲାଇ ହଲାଇ ନମିତା କହିଲା ।

–ବସ, ଠିଆହୋଇ ରହିଲ କାହିଁକି ?...... ତା'ପରେ ବକୁଳ କହିଲା– ଉଚିତ କାହିଁକି ? ଏଇଟା ତ ତମର ଚିହ୍ନା ଜାଗା ? ମୁଁ ମଧ୍ୟ ଅପରିଚିତ ନୁହେଁ ।

ନମିତା ବସିଲା, ତା'ପରେ ତା'ର କଜ୍ଜଳଟଣା ଆଖିଟାକୁ ଟିକିଏ ଉଠାଇ କହିଲା– ସେ କଥା ସତ । ଆପଣ ମୋର ଚିହ୍ନା, କିନ୍ତୁ ମୁଁ କ'ଣ ଆପଣଙ୍କର ଚିହ୍ନା ? ମତେ କ'ଣ ଆପଣଙ୍କର ଆଉ ଜଳପାଇଗୁଡ଼ିର ନମିତା ବୋଲି ମନେ ହେଉଚି ?

ହସି ପକାଇଲା ବକୁଳ– ତା' ଅବଶ୍ୟ ଠିକ୍ ଚିହ୍ନିହେଉନି ।

–ମୁଁ ଏହାହିଁ ଚାହିଁଥିଲି– ବେଶ୍ ଦୃଢ଼ ଆଉ ଆଶ୍ୱସ୍ତ ଗଳାରେ କହି ପକାଇଲା ନମିତା– ଚାହିଁଥିଲି ମୋର ସେ ଦୀନହୀନ ପରିଚୟକୁ ପୋଛି ପକାଇବାକୁ । ସେଇଥିପାଇଁ ମୋ ନିଜ ପାଖରୁ 'ଅତୀତ'ଟାକୁ ପୋଛି ପକାଇଛି ।

ବକୁଳ ତା'ର ମୁହଁ ଆଡ଼କୁ ସ୍ଥିର ଦୃଷ୍ଟିରେ ଚାହିଁଲା ଟିକିଏ । ରଙ୍ଗ ଲଗାଇବାର ପ୍ରାଣହୀନ ଧଳାଳିଆ ବର୍ଣ୍ଣ ତଳେ ଏକ ଉତ୍ତପ୍ତ ରକ୍ତୋଚ୍ଛ୍ୱାସ ଯେପରି ଠେଲି ବାହାରିବାକୁ ଚାହୁଁଛି । ତା' ଅର୍ଥ ପୋଛି ପକାଇବାର ନିଶ୍ଚିନ୍ତତା ଟିକକ ହେଉଚି ନିହାତି ଆତ୍ମସନ୍ତୁଷ୍ଟତା । ଏ ମସକା ଖୋଳଟାର ଟିକିଏ ଆଙ୍ଗୁଠି ବାଡ଼େଇ ଦେଖିବାକୁ ଗଲାମାତ୍ରେ ହୁଏତ କଜ୍ଜଳର ଗୌରବ ବିଧ୍ୱସ୍ତ ହୋଇଯିବ ।

ଆଙ୍ଗୁଠି ବଜାଇ ଦେଖିବା ଦିଗକୁ ଗଲା ନାହିଁ ବକୁଳ । ସେହି ପୋଲା ଖୋଳଟା ଟାଣ ବୋଲି ମାନିନେବା ଭଙ୍ଗୀରେ କହିଲା– ଭଲହେଲା । ଦିଇଟା ଜୀବନର ଭାର ବୋହିବା ବଡ଼ କଷ୍ଟ । ଗୋଟିଏକୁ କାଢ଼ି ଫୋପାଡ଼ି ଦେଇପାରିଲେ ବାକି ଭାରଟା ସହଜ ହୋଇଯିବ ।

—"ଆପଣ ଠିକ୍ କହିଛନ୍ତି—" ନମିତା ଯେପରି ଉଚ୍ଛ୍ୱସିତ ଗଳାରେ କହିଲା, ମୁଁ ମଧ୍ୟ ଠିକ୍ ସେଇୟା ଭାବିଥିଲି । ଏବେ ମଧ୍ୟ ଭାବୁଛି ।

କୌତୁକଭରା କଣ୍ଠରେ ବକୁଳ କହିବାକୁ ଯାଉଥିଲା— "ମହାଜନମାନେ ଗୋଟିଏ ପଦ୍ଧତିରେ କେବଳ ଭାବନ୍ତି—" କିନ୍ତୁ ତୁନି ହୋଇଗଲା । ଏ ଝିଅଟା ସହିତ ଏ କୌତୁକ ହିଁ କୌତୁକକର ହେବ ।

ବକୁଳ ଭାରି ସାଦାସିଧା ଗଳାରେ ପଚାରିଲା— ଏବେ କେଉଁଠି ଅଛ ?

—"ଭାରି ଖରାପ ଜାଗାରେ—" କାନ୍ଥ ଆଡ଼କୁ ଚାହିଁ କହିଲା ନମିତା— ସେକଥା ଆପଣଙ୍କୁ କୁହାଯାଇ ପାରିବ ନାହିଁ ।

ଏଥର ବକୁଳ ଟିକିଏ କଠିନ ହେଲା । କହିଲା— ରହିବା ଜାଗାଟା ଖରାପ ହେଲେ ମଧ୍ୟ ତମକୁ ଦେଖିଲେ ତ ଲାଗୁଛି ଖରାପ ନୁହେଁ, ତମେ ବେଶ୍ ଭଲରେ ହିଁ ରହିଛ ।

—"ହଁ, ଭଲ ଭଲ ଜାମା-ଲୁଗା ଗହଣା-ଫହଣା ପିନ୍ଧିଛି......" ନମିତା ହଠାତ୍ ବଣୁଆ ଜନ୍ତୁ ଭଳି କହିଲା— ଏଇଟା ସଙ୍କଳ୍ପ କରିଛି, ଯଦି ଓହ୍ଲାଇଯିବାକୁ ପଡ଼େ, ତାହେଲେ ଶେଷପର୍ଯ୍ୟନ୍ତ ଓହ୍ଲାଇ ଦେଖିବି, ପାତାଳଠାରୁ ଯଦି ରସାତଳକୁ ମଧ୍ୟ ଯିବାକୁ ପଡ଼େ, ତା'ହେଲେ ତା' ମଧ୍ୟ ଯିବି । ବକୁଳର ମନେହେଲା, ହେଲା ଏବେ ନଖତଳ ଜଳପାଇଗୁଡ଼ି ଛାଡ଼ିଲା ପରଠାରୁ ନଖ ରଖିବା ଆରମ୍ଭ କରିଛି ନମିତା, କିନ୍ତୁ କଥାଗୁଡ଼ାକ ମଧ୍ୟ କ'ଣ ସେ ଛାଡ଼ିବା ପରଠାରୁ ଶିଖିବାକୁ ଆରମ୍ଭ କରିଛି ? ନା ବହୁତଦିନ ଧରି ଶିଖି ଶିଖି ପୁଞ୍ଜି କରି ରଖୁଥିଲା ?

ବକୁଳ ଆଉ ଟିକିଏ କଠିନ ଓ ନିର୍ଲିପ୍ତ ଗଳାରେ କହିଲା— ନିଜର ଜୀବନ ନେଇ ନିଜସ୍ୱ ସଙ୍କଳ୍ପର ଅଧିକାର ସମସ୍ତଙ୍କର ରହିଛି, କିନ୍ତୁ ମୋ ପାଖକୁ ଆସିଛ ବୋଲି ତମକୁ ମୁଁ ପଚାରୁଛି ନମିତା— ତମେ କ'ଣ ଓହ୍ଲାଇଯିବାର ସଙ୍କଳ୍ପ ଧରି ତମର 'ଦୀନହୀନ' ପରିଚୟର ଆଶ୍ରୟରୁ ବାହାରି ଚାଲି ଆସିଥିଲ ?

ହଠାତ୍ ଯେମିତି ଥରିଉଠିଲା ନମିତା । ତା'ପରେ ଧୀରେ କହିଲା— ଜାଣିନି । ଏବେମଧ୍ୟ ଠିକ୍‌ରୂପେ ବୁଝିପାରୁନି । ମୁଁ ଖାଲି ସେମାନ ସମସ୍ତଙ୍କୁ ଦେଖାଇବାକୁ ଚାହେଁ, କେବଳ ଦୁଇମୁଠା ଖାଇବାକୁ ଓ ପିନ୍ଧିବାକୁ ଦେବା ବଦଳରେ ଯାହାର ମୁଣ୍ଡଟାକୁ କିଣି ରଖିଥିଲ ବୋଲି ଭାବିଥିଲ, ସେ ଏତେ ମୂଲ୍ୟହୀନ ନୁହେଁ ।...... ଆଉ— ଆଉ ମୋର ସେ ସ୍ୱାମୀକୁ ମଧ୍ୟ ଦେଖାଇବାକୁ ଚାହେଁ, ଉଚିତ ଟେକ୍ସ...... ଖଜଣା ନ ଦେଇ ସମ୍ପତ୍ତିକୁ ଚିରକାଳ ନିଜ ଅଧିକାରରେ ରଖି ହେବନି । ସମ୍ପତ୍ତି ହାତରୁ ଚାଲିଯିବ ।

ସେହି ପ୍ରଗଳ୍ଭ କଥାର ଉତ୍ତର ବକୁଳ ଦେବକି ନାହିଁ ଭାବି ସୁଦ୍ଧା କହି ପକାଇଲା, ଦେଖୁଛି ତମେ ତ ଏ କେତେଦିନ ଭିତରେ ଅନେକ କଥା ଶିଖିଦେଇ ପାରିଛ ।

ସଜାଡ଼ି ହୋଇ ବସିଲା ନମିତା । ହାତବ୍ୟାଗ୍‌ର ମୁହଁଟାକୁ ଟିକିଏ ଖୋଲିଲା, ଗୋଟିଏ ଛୋଟ ରୁମାଲ ବାହାର କରି ମୁହଁଟାକୁ ଟିକିଏ ପୋଛିଦେଇ ବେଶ୍ ଦୃଢ଼ଗଳାରେ କହିଲା— ଏ କେତେଦିନରେ ? ମୋଟେ ତା' ନୁହେଁ, ଅନେକ ଅନେକ ଦିନ ହେଲା ଏସବୁ ଭାବନା ଭାବିଛି, ଏସବୁ କଥା ଶିଖିଛି, ତେବେକେ ସେ ଚେଷ୍ଟା ମଧ୍ୟ କରିଥିଲି ଯେ ଗୋଟାଏ ନିର୍ଦ୍ଦିଷ୍ଟ ସୀମା ଭିତରେ ବନ୍ଦୀ ହୋଇଛି, ରହିଛି, ସେଇଠି ଯେମିତି ରହିପାରିବି । କିନ୍ତୁ ହଠାତ୍ ଦିନେ ଆଖି ଖୋଲିଗଲା । ମନେହେଲା— ଏହି ଭଲ ରହିବାର ଅର୍ଥଟା କ'ଣ ? ଏ ସତ୍ ଜୀବନର ମୂଲ୍ୟ କ'ଣ ? ଜଣେ ଲକ୍ଷ୍ମୀମନ୍ତ ବୋହୂକୁ ସେମାନେ ମୂଲ୍ୟ ଦିଅନ୍ତି ? 'ମୁଁ' ମଣିଷଟାକୁ କିଏ ମୂଲ୍ୟ ଦେଉଛି ? ସେତିକିବେଳେ ଠିକ୍ କଲି ନିଜର ମୂଲ୍ୟ କେତେ ବୁଝିବାକୁ ବାହାରିବି । ଡର ଥିଲା, ଲେଖାପଢ଼ା ଶିଖିନି, ସହାୟ— ସମ୍ବଳ କେହି ନାହାନ୍ତି, ଏ ଅଚିହ୍ନା ପୃଥିବୀରେ କେଉଁଠି ହଜିଯିବି । ହଠାତ୍ ଦିନେ ସେ ଭୟ ମଧ୍ୟ ଦୂର ହୋଇଗଲା । ମୋର ବାପଘରର ଆତ୍ମୀୟମାନେ ଯେତେବେଳେ ମତେ ପୁଣି ଜଳପାଇଗୁଡ଼ିକୁ ଠେଲି ଦେବାକୁ ଚେଷ୍ଟା କଲେ, ସେତିକିବେଳେ ହଠାତ୍ ମନେହେଲା କୋଉମାନଙ୍କ ପାଖରୁ ହଜିଯିବାର ଭୟ କରୁଛି ? ବାହାର ଜଗତରେ ସ୍ତ୍ରୀଲୋକଙ୍କର ଦୁଇଟି ଭୟ ଥାଏ । ଗୋଟିଏ ହେଉଛି, ଯାହା ସବୁ ମଣିଷଙ୍କର ଥାଏ, ପ୍ରାଣଭୟ । ସେ ଭୟଟା ମୋ ଭଳି ସ୍ତ୍ରୀଲୋକ ପକ୍ଷରେ ବେଶୀ କିଛି ନୁହେଁ । ଆଉ ଗୋଟିଏ ଭୟ— ଦୁର୍ଗତିରେ ପଡ଼ିବାର ଭୟ । ହେଲେ ମନରେ ଯଦି ସଙ୍କଳ୍ପ କରିଦେବି ଯେକୌଣସି ଦୁର୍ଗତି ଆସୁ, ଲଢ଼ି ଦେଖିବି, ତା'ହେଲେ ଭୟ ଆଉ କ'ଣ ରହିଲା ? ତା'ପରେ ତ ଦେଖୁଛନ୍ତି ।

—ତା' ତ ଦେଖୁଛି ।...... ନମିତାର ପ୍ରାୟ ଫାଟି ପଡ଼ିବା ମୁହଁଟା ଆଡ଼କୁ ଚାହିଁ ଏକ ଆକ୍ଷେପର ଅନୁଭୂତିରେ କିପରି ବିଷଣ୍ଣ ହୋଇଗଲା ବକୁଳ । ସେହିପରି ବିଷଣ୍ଣ ଗଳାରେ ହିଁ କହିଲା— ଆତ୍ମୀୟ-ସ୍ୱଜନଙ୍କ ପାଖ ଛାଡ଼ିଦେବା ଛଡ଼ା ଆଉ ଏକ ହଜାଇଦେବାର କଥା ଅଛି ନମିତା, ସେଇଟା ହେଉଛି ନିଜ ପାଖରୁ ନିଜକୁ ହଜାଇଦେବା—

ଆଉଥରେ ପୁଣି ଯେପରି ଥରିଉଠିଲା ନମିତା । ତା'ପରେ କହିଲା— ମୁଁ ଜଣେ ମୂର୍ଖ ସ୍ତ୍ରୀଲୋକ, ଏତେ କଥା ବୁଝିନି । ମୁଁ ଖାଲି ଦେଖାଇବାକୁ ଚାହେଁ ଯେ ମୁଁ ଏକାବେଳେ ଫୋପାଡ଼ିଦେବା ଭଳି ଜିନିଷ ନ ଥିଲି ।

ଆଉ କଥାକୁ ବଢ଼ାଇଲା ନାହିଁ ବକୁଳ । ସାଦାସିଧା ଗଳାରେ କହିଲା– ସେ ଯାହାହେଉ, ଆଜି ହଠାତ୍ ଚାଲିଆସିଲ ଯେ ? ଏପଟକୁ କୁଆଡ଼େ ଆସିଥିଲ ନା କ'ଣ ?

–"ନା, ଆପଣଙ୍କ ପାଖକୁ ହିଁ ଆସିଥିଲି ।" ଈଷତ୍ କ୍ଷୁବ୍ଧ ଗଳାରେ ନମିତା କହିଲା– ଆପଣ ମତେ ମଣିଷ ବୋଲି ନ ଗଣିଲେ ମଧ୍ୟ ମୁଁ ଆପଣଙ୍କୁ ଶ୍ରଦ୍ଧା ଭକ୍ତି କରେ । ସେଥିପାଇଁ ଜୀବନରେ ଗୋଟାଏ ନୂଆ କାମରେ ଯିବା ଆଗରୁ ଆପଣଙ୍କୁ–

ଲଜ୍ଜିତ କଣ୍ଠରେ ବକୁଳ ଚରବର ହୋଇ କହିଲା– ଏକଥା କାହିଁକି କହୁଛ ନମିତା ? 'ମଣିଷ' ବୋଲି ଗଣ୍ୟ କରୁନି, ଏଇଟା କିପରି କଥା ? କୋଉ ନୂଆ କାମରେ ଯୋଗ ଦେଉଛ ଶୁଣେ ?

ପୁଣି ଥରେ କାନ୍ଥ ଆଡ଼କୁ ଚାହିଁ ନମିତା କହିଲା– କାଲିଠାରୁ ମୋର ସିନେମାର ସୁଟିଂ ଆରମ୍ଭ ହେବ, ମାନେ ଗୋଟାଏ କଣ୍ଟ୍ରାକ୍ଟ ହୋଇଛି । ନାୟିକାର ରୋଲ ଦେଇଛନ୍ତି ।

–"ଶୁଣି ଖୁସୀ ହେଲି–" ବକୁଳ କହିଲା– ଗୋଟାଏ କର୍ମଜୀବନ ପାଇଛ, ଏଇଟା ମଙ୍ଗଳର କଥା ।

–ମଙ୍ଗଳର କଥା ?

–ହଁ ନିଶ୍ଚୟ । ହୁଏତ ଯାରି ଭିତରୁ ହିଁ ତମର ଭିତରର ଶିଳ୍ପି-ସତ୍ତା ଆବିଷ୍କୃତ ହେବ ।

–"କହୁଛନ୍ତି ଆପଣ ?" ନମିତା ଯେପରି ଉତ୍ସୁକ ଗଳାରେ କହିଲା– ଆପଣଙ୍କର କ'ଣ ମନେହେଉଛି ମୋ ଭିତରେ କିଛି ଅଛି ?

ମନେ ମନେ ବକୁଳ କହିଲା– ଏଇଲେ ତ ତା ମନେ ହେଉନି ! ତମେ ଶିଳ୍ପକୁ ଭଲପାଇ ଏଠିକୁ ଆସୁନ ଝିଅ, ଆସୁଛ ନିଜର ମୂଲ୍ୟକୁ ପରଖିବାକୁ । ତେବେକେ କୁହାଯାଇପାରିବନି, କାହା ଭିତରେ କ'ଣ ଅଛି ?...... କିନ୍ତୁ ମୁହଁରେ ବକୁଳ କହିଲା– ସମସ୍ତଙ୍କ ଭିତରେ କିଛି ନା କିଛି ଥାଏ ନମିତା । ପରିବେଶରେ ତାହାର ବିକାଶ ହୁଏ । ହୁଏତ ତମେ ଜଣେ ନାମଜାଦା ଆର୍ଟିଷ୍ଟ ହେବ ଭବିଷ୍ୟତ୍‌ରେ । ବହୁତ ଭାଗ୍ୟ ବୋଲି କହିବାକୁ ପଡ଼ିବ ଯେ ଏତେଶୀଘ୍ର ପଥ ପାଇଯାଇଛ । ସହଜରେ ପ୍ରଥମରୁ ନାୟିକାର ରୋଲ କେହି ପାଆନ୍ତି ନାହିଁ ।

କ୍ଷଣଟିଏ ପାଇଁ ବକୁଳର ଆଖି ଆଡ଼କୁ ସ୍ଥିର ଆଖିରେ ଚାହିଁରହିଲା ନମିତା । ତା'ପରେ ଧୀରେ ଧୀରେ କହିଲା– ମତେ ଦେଖି କ'ଣ ଆପଣଙ୍କର ମନେହେଉଛି ବହୁତ ସହଜରେ ପାଇଛି ?

ଏଥର ବୋଧହୁଏ ବକୁଳ ନିଜେ ଥରିଗଲା । ଜଳପାଇଗୁଡ଼ିର ନମିତା ଯେ ଏଭଳି ଗୋଟିଏ ପ୍ରଶ୍ନ ପଚାରିବସିବ, ସେ ଧାରଣା ଯେପରି ବକୁଳର ନ ଥିଲା । ବକୁଳ ଆସ୍ତେ କହିଲା— ସେ କଥା ହୁଏତ ମନେ ହେଉନି । ତେବେକେ ଈଶ୍ବରଙ୍କ ପାଖରେ ପ୍ରାର୍ଥନା କରିବି ତମର ଶିଳ୍ପୀ-ଜୀବନଟାହିଁ ବଡ଼ ହୋଇଯାଉ । ତୀର୍ଥ ଯାତ୍ରାର ପଥରେ ମଧ୍ଯ ତ କେତେ କଣ୍ଟା-ଝୁଣ୍ଟା ରହିଥାଏ, ରହିଥାଏ କେତେ କାଦୁଅ ଆଉ ଧୂଳି ।

ନମିତାର କଜ୍ଜଳର ଗୌରବ ବୋଧହୁଏ ହଠାତ୍ ଧୂଳିସାତ୍ ହେଲା । ନମିତା ବୋଧହୁଏ ସେକଥାକୁ ଗୋପନ କରିବାକୁ ତରବରରେ ଉଠି ପଡ଼ି ନଇଁ ଯାଇ ବକୁଳର ପାଦଧୂଳି ନେଇ କହିଲା— ଆପଣଙ୍କ ଆଶୀର୍ବାଦ ସାର୍ଥକ ହେଉ । ଯାଏଁ ।

—"ଆରେ ସେ କି କଥା !......" ବାୟୁମଣ୍ଡଳଟାକୁ ହାଲୁକା କରିଦେବାକୁ ବକୁଳ ହାଲୁକା ଗଳାରେ କହିଲା— ଏବେ କ'ଣ ଚାଲିଯିବ ? ଟିକିଏ ମିଠା ନ ଖାଇ ଚାଲିଯିବ ନା କ'ଣ ? ଏତେଦିନପରେ ଆସିଲ !

—ନାଃ, ଆଜି ଯାଉଛି...... କହି ନମିତା ତରତର ହୋଇ ଘର ବାହାରେ ଯାଇ ଠିଆ ହେଲା, କିନ୍ତୁ ତା'ପରେ ପରେ ଗୋଟାଏ ଆଶ୍ଚର୍ଯ୍ୟ କଥା କଲା । ସାରା ଶରୀରରେ ଏକ ବିଶେଷ ଭଙ୍ଗୀରେ ଢେଉ ତୋଳି ଶରୀରକୁ ବଙ୍କାଇ ଦେଇ ଦୂରରେ ଠିଆହୋଇ ନମିତା କହିଲା— ଦିନେ ଜଳପାଇଗୁଡ଼ିକର ନମିତା ଆପଣଙ୍କୁ ତା ଜୀବନକୁ ନେଇ ଗପ -ଲେଖିବାକୁ କହିଥିଲା, ସେଇୟା ନା ? ତା' ଲେଖିବା ଆଉ ଦରକାର ନାହିଁ । ଜଳପାଇଗୁଡ଼ିର ନମିତା ମରିଯାଇଛି । ତା'ର ନୂଆ ଜନ୍ମର ନାଆଁଟା ଆପଣଙ୍କୁ କୁହା ହୋଇପାରିନି— ନାଁ ହେଉଛି 'ରୂପଛନ୍ଦା' । ବୁଝିଲେ ? ରୂପଛନ୍ଦା ! ହୁଏତ ଭବିଷ୍ୟତ୍‌ରେ ତା' 'କଥା'କୁ ନେଇ ଲେଖିବା ପାଇଁ ଝମାଝମ ହେବେ ଲୋକେ, ସାକ୍ଷାତକାର ପାଇଁ ଘରେ ଭିଡ଼ ଜମିଯିବ !...... ଆଚ୍ଛା ଯାଉଛି । ସିନେମାଟା ରିଲିଜ୍ ହେଲେ ଆପଣଙ୍କୁ ନିମନ୍ତ୍ରଣ କାର୍ଡ ଦେଇଯିବି ।

ଏହି ଆକସ୍ମିକ ଆଘାତଟାକୁ ଦେଇ ଦ୍ରୁତଗତିରେ ନମିତା ଯାଇ କାର୍‌ରେ ଚଢ଼ିଲା । ରାସ୍ତାକଡ଼ର ସେ ବିରାଟ ଗାଡ଼ିଟା ଯେ ନମିତାର, ନିର୍ମଳଘରୁ ଆସିଲାବେଳକୁ ସେକଥା ଆଦୌ ସ୍ଵପ୍ନରେ ସୁଦ୍ଧା ଭାବି ନ ଥିଲା ବକୁଳ । ଏଇଲେ ଦ୍ଵାରମୁହଁରେ ଠିଆହୋଇ ଦେଖିଲା । ଦେଖିଲା— ଉର୍ଦ୍ଦି ପିନ୍ଧା ଡ୍ରାଇଭର ଦ୍ଵାର ଖୋଲି ଠିଆ ହେଲା, ନମିତା ଚଢ଼ିଲା ।

ଟିକିଏ ସମୟ ପର୍ଯ୍ୟନ୍ତ ଠିଆ ହୋଇ ରହିଲା ବକୁଳ । ବକୁଳର ଛାତି ଭିତରୁ ଗୋଟାଏ ନିଃଶ୍ବାସ ବାହାରିଆସିଲା । ଅନେକଦିନ ତଳେ ପଢ଼ିଥିବା ଗୋଟାଏ

ପ୍ରବନ୍ଧ କଥା ମନେପଡ଼ିଲା ବକୁଳର । ବାଜେ ପ୍ରବନ୍ଧ, ଲେଖକ ମଧ୍ୟ ଅଖ୍ୟାତ ଏବଂ ଭାଷା ମଧ୍ୟ ତୀବ୍ର ଥିଲା ବୋଲି ମନେହେଉନି, କିନ୍ତୁ ତାଙ୍କର ଯୁକ୍ତିଟା ଥିଲା ଅଦ୍ଭୁତ ।

ଲେଖକଙ୍କର ବକ୍ତବ୍ୟ ଥିଲା– ଇହ ପୃଥିବୀରେ ଆମ ପ୍ରତିଷ୍ଠାର ମୂଲ୍ୟ ଦେବାକୁ କିଏ ବା ଆତ୍ମ-ବିକ୍ରୟ ନ କରୁଛି ? ଅର୍ଥ ଉପାର୍ଜନର ଏକମାତ୍ର ଉପାୟ ତ ନିଜକୁ ବିକ୍ରି କରିବା । କିଏ ବୁଦ୍ଧି ବିକ୍ରି କରୁଛି, କିଏ ଅଧୀତ ବିଦ୍ୟା ବିକ୍ରି କରୁଛି, କିଏ ଚିନ୍ତାକଳ୍ପନା, ସ୍ୱପ୍ନ-ସାଧନା ଇତ୍ୟାଦି ବିକ୍ରି କରୁଛି, କିଏ ବା କେବଳ କାୟିକ ଶ୍ରମଟାକୁ ହିଁ ବିକ୍ରି କରୁଛି । ତା'ହେଲେ ସ୍ତ୍ରୀଲୋକମାନଙ୍କ କ୍ଷେତ୍ରରେ ବା ଶରୀର-ବିକ୍ରିକୁ ଏଭଳି 'ମହାପାତକ' ବୋଲି ଚିହ୍ନିତ କରାଯାଇଛି କାହିଁକି ? ଅନେକ ସ୍ଥଳରେ ତ ତା'ର ଏକମାତ୍ର ସମ୍ବଳ ହେଉଛି କେବଳ ଏ ଦେହଟି ।

ଲେଖକଙ୍କ ଯୁକ୍ତିଟା ସମର୍ଥନଯୋଗ୍ୟ ଏଭଳି କଥା ଭାବିଲାନି ବକୁଳ ଖାଲି ହଠାତ୍ ସେଇଟା ମନେ ପଡ଼ିଗଲା ତା'ର ।

କିନ୍ତୁ ଏ କଥା ମଧ୍ୟ ତା' ଆଗରେ ଜୋର୍‌ଗଳାରେ କହିପାରିଲାନି– ନମିତା ତମର ଏ 'ରୂପଛନ୍ଦା' ହେବାର କିଛି ଦରକାର ନ ଥିଲା । ଜଗତରେ ବହୁ ଅଖ୍ୟାତ ଅବଜ୍ଞାତ ଅବହେଳିତ ମଣିଷ ଅଛନ୍ତି, ଚିରକାଳ ରହିଥିବେ ମଧ୍ୟ, ସେଇ ଜଲପାଇଗୁଡ଼ିର 'ନମିତା ବୋହୂ' ହୋଇ ରହିବାଟା ହିଁ ତମପକ୍ଷରେ ଉଚିତ ଥିଲା । ସେଥିରେ ସଭ୍ୟତା ବଞ୍ଚି ରହିଥାନ୍ତା, ସମାଜର ଶୃଙ୍ଖଳା, ଆଉ ତମର ଧର୍ମ ।'

କେତେବେଳେ ପଛରେ ଆସି ସାନଭାଉଜ ଠିଆହୋଇଥିଲେ ଜାଣିପାରି ନ ଥିଲା ବକୁଳ । ଚମକିପଡ଼ିଲା ତାଙ୍କ କଥାରେ– ବକୁଳ ଝିଅଟା କିଏ ସେ ?

ବକୁଳ ପାଖକୁ ଯେଉଁମାନେ ଯିବାଆସିବା କରନ୍ତି ବା ଅନେକସମୟ ଧରି କଥାବାର୍ତ୍ତା କରନ୍ତି, ବସିଥାଆନ୍ତି, ଚା' ଖାଆନ୍ତି, ସେମାନଙ୍କ ସମ୍ପର୍କରେ ସାନଭାଉଜଙ୍କର କୌତୂହଳ ଏବଂ ଅଗ୍ରାହ୍ୟତା ସମ୍ମିଶ୍ରିତ ମନୋଭାବର ଖବର ବକୁଳର ଅଜ୍ଞାତ ନ ଥିଲା, ଅଲକ୍ଷ୍ୟ କୌଣସି ସ୍ଥାନରୁ ସେ ଏସବୁ ଦେଖନ୍ତି ଶୁଣନ୍ତି ଏବଂ ପ୍ରୟୋଜନ-ଅନୁସାରେ ଅବହେଳା ପ୍ରକାଶ କରନ୍ତି ମଧ୍ୟ, କିନ୍ତୁ ଏମିତି କେବେ କୌଣସି ଦିନ ଧରା ପଡ଼ି ନ ଥିଲେ, ନା, ଏହାକୁ ଧରା ପଡ଼ିବା କହିହେବ କେମିତି ? ବରଂ କୁହାଯାଇପାରେ 'ଧରା ଦେବା' । ହଠାତ୍ ନିଜକୁ କାହିଁକି ଧରା ଦେବାକୁ ସେ ଆସିଲେ ? କାରଣଟା ବୁଝି ପାରିଲାନି ବକୁଳ । ସେଥିପାଇଁ ଅବହେଳା ସହକାରେ କହିଲା– ସେ ଗୋଟାଏ ଝିଅ ଇଏ...... ଜଲପାଇଗୁଡ଼ିରେ......

— ସେ କ'ଣ ସେ ଲକ୍ଷ୍ମୀଛାଡ଼ିର କୌଣସି ଖବର ନେଇ ଆସିଥିଲା ?

ପୁଣି ଥରେ ଚମକିପଡ଼ିବାକୁ ହେଲା ବକୁଳକୁ ।

ବନ୍ଧ ଭାଙ୍ଗିଗଲେ ବୋଧହୁଏ ଏହିପରି ଘଟେ ।

ସେହି ବନ୍ଧ ଭଙ୍ଗା ମୂର୍ତ୍ତି ଆଡ଼କୁ ଚାହିଁ ମୁଣ୍ଡ ତଳକୁ କଲା ବକୁଳ । ନତମସ୍ତକ ସହିତ ସାମଞ୍ଜସ୍ୟ ରଖି ନିମ୍ନ ସ୍ୱରରେ କହିଲା— ନା ତ ! ଏମିତି ସ୍ତ୍ରୀଲୋକଟିଏ ସେ । ଜଳପାଇଗୁଡ଼ିରେ ପରିଚୟ ହୋଇଥିଲା —

— "ଓ ! ବହୁତ ବେଳ ତ କଥା ହେଉଥିଲା ନା, ମୁଁ ଭାବିଲି — " ସାନଭଭାଉଜ ଟିକିଏ ତୁନି ରହି ନିଜର ଦୁର୍ବଳତା ଟିକକକୁ ମୁହୂର୍ତ୍ତକରେ ଏଭଳି ହାଲୁକା ଭାବରେ କହିଲା ପରି କହିଲେ— ବଡ଼ଲୋକର ଝିଅ ? ବାଃବାଃ, କେତେ ସଜେଇ ହେଇଛି ?ଯେମିତି ନିମନ୍ତ୍ରଣ ଖାଇବାକୁ ଆସିଛି ! କ'ଣ ଏତେ କହୁଥିଲା ?

ଅଳ୍ପ ହସି ବକୁଳ କହିଲା— କ'ଣ କହୁଥିଲା ? ସେ ସିନେମାରେ ମିଶିବାକୁ ଯାଉଛି, ସେ ଖବରଟା ମତେ ଜଣେଇ ପ୍ରଣାମ କରିବାକୁ ଆସିଥିଲା ।

— ସିନେମାରେ ମିଶୁଛି ! ଭଲ ଘରର ଝିଅ ?

ହସି ପକାଇଲା ବକୁଳ— କ'ଣ ଯେ କହୁଛ ଭାଉଜ ? ଭଲଘରର ଝିଅ ହେବନି କାହିଁକି ? ଭାରି ଭଲଘରର ଝିଅ, ଭଲ ଘରର ବୋହୂ !

ସାନଭାଉଜ କହିଲେ— ସତରେ ! ଏଇଲେ ତ ଆଉ ଏଥିରେ ନିନ୍ଦା ନାହିଁ । ଆଗ ଭଳି ନୁହେଁ ।

ତା'ପରେ ହଠାତ୍ ଏକ ଦୀର୍ଘନିଃଶ୍ୱାସ ସହିତ କହିପକାଇଲେ— ଲକ୍ଷ୍ମୀଛାଡ଼ୀଟା ଯଦି ଏଭଳି ହେଲେ କିଛି କରିଥାନ୍ତା !

ସ୍ତବ୍ଧ ହୋଇଗଲା ବକୁଳ । ବକୁଳର ମନେ ପଡ଼ିଲାନି— ଏ କଥାର ବିରୋଧରେ ହଜାରେ ପ୍ରତିବାଦ କରିବାକୁ ଅଛି । ସେଇଥିପାଇଁ ଚୁପ୍ ହୋଇ ରହିବାକୁ ପଡ଼ିଲା ବକୁଳକୁ ।

ଶମ୍ପା ନାଆଁର ଝିଅଟା ହଜି ଯାଇ ଯେପରି ଏ ସଂସାରର ସମସ୍ତଙ୍କୁ ହରାଇ ଦେଇଯାଇଛି । ପରାଜିତର ମୂର୍ତ୍ତିରେ ସମସ୍ତେ ବସିଛନ୍ତି । ଯେତେବେଳେ ସେ ନିଜେ ତେଜ ଦେଖାଇ ଚାଲିଯାଇଥିଲା, ସେତେବେଳେ ଏମାନଙ୍କ ଭିତରେ ମଧ୍ୟ ଥିଲା ରାଗ ଅଭିମାନ, ତେଜ । କିନ୍ତୁ ଏଥର ପାଲା ଅଲଗା, ଏବେ ସେ ଏହି ଭୟଙ୍କର ପୃଥିବୀର କୌଣସିହେଲେ ଚକ୍ରାନ୍ତରେ ହଜିଯାଇଛି, କିଏ ଜାଣିଛି ଚିରକାଳ ପାଇଁ ପୋଛି ହୋଇଯିବ କି ନାହିଁ ଶମ୍ପା ନାଆଁଟା !

ଅଥଚ ଶମ୍ପାର ମା' ଆଉ ବାପା କିଛିଦିନ ଆଗରୁ ମଧ୍ୟ ଯଦି ସେମାନଙ୍କର ତେଜ ଅଭିମାନ ଅହଙ୍କାରକୁ ଅଳ୍ପ ଖର୍ବ କରିଥାନ୍ତେ, ହୁଏତ ସବୁ ଠିକ୍‌ଠାକ୍ ହୋଇଯାଇଥାନ୍ତା । ଶମ୍ପାର ମା'ର ଭିତରକାର ହାହାକାର ସେଥିପାଇଁ ଶୋକଠାରୁ ମଧ୍ୟ ତୀବ୍ର ହୋଇଛି । ଶୋକର ହାହାକାର ବାହାରେ ପ୍ରକାଶ କରାଯାଇପାରେ, ଅନୁତାପର ହାହାକାର ଖାଲି ଭିତରକୁ କଚାଡ଼ି କଚାଡ଼ି ମାରି ଗୁଣ୍ଡ କରିଦିଏ ।

ଶମ୍ପାର ମା' ବାପା ଯେତେବେଳେ ପାରୁଲ୍‌ର ପୁଅକୁ ଚିଠିରେ ଜାଣିଥିଲେ ଶମ୍ପା ପାରୁଲ୍ ପାଖରେ ଯାଇ ଆଡ୍ଡା ଜମେଇଛି, ସେତେବେଳେ ସେମାନେ କାହିଁକି ଧାଇଁଗଲେନି ? କାହିଁକି ଅଭିମାନିନୀ ଝିଅର ମାନ ଭଙ୍ଗାଇ କହିଲେନି, ରାଗି କଥା ପଦେ କହିଛି ବୋଲି, ସେଇଟା ତୋ' ପାଖରେ ଏତେ ବଡ଼ ହେଇଗଲା ?

ସେମାନେ ତା' କରିନାହାନ୍ତି । ନିଷ୍କର୍ମ ହୋଇ ବସି ରହି ସୁସ୍ଥ ସବଳ ଝିଅଟାକୁ ହଜିଯିବାକୁ ଦେଇଛନ୍ତି । ସେମାନଙ୍କର ବୟସ, ବୁଦ୍ଧି, ବିବେଚନା, ହିତାହିତ ଜ୍ଞାନ କିଛିହେଲେ କାମରେ ଲାଗିନି । ଅଳ୍ପବୟସୀ ଝିଅଟି ପାଖରୁ ପ୍ରତ୍ୟାଶା କରିଛନ୍ତି ସେହିସବୁ କଥାଗୁଡ଼ିକ— ବୁଦ୍ଧି, ବିବେଚନା, ହିତାହିତ ଜ୍ଞାନ !

ସାନଭାଉଜ ବକୁଳକୁ ତୁନି ହୋଇ ରହିଥିବା ଦେଖି ପୁଣି ନିଜେହିଁ କଥା କହିଲେ— ମନଟା ଖରାପ ହୋଇଥିଲେ ଯେତେପ୍ରକାରର ଏଣୁ ତେଣୁ ଚିନ୍ତା ଆସେ, ଏଇୟା ଆଉକ'ଣ ! ସେ ଝିଅଟା ଅଭିଆଡ଼ୀ ନା ବାହା ହେଇଛି ?

—ବାହା ହୋଇଛି ? ତାର ସ୍ୱାମୀ ସାଧୁ-ସନ୍ୟାସୀ ହୋଇଯାଇଛି, ସେହି ରାଗରେ ଘର ଛାଡ଼ି—

—ସାଧୁ ହୋଇଯାଇଛି ? ସେହି ରାଗରେ ? କି କଥା ! ଏତେ— ଏତେ ଅସାଧୁ ସ୍ୱାମୀଙ୍କୁ ଧରି ସ୍ତ୍ରୀଲୋକମାନେ ଘର କରୁଛନ୍ତି, ଆଉ—

ହସି ପକାଇ ବକୁଳ କହିଲା— ଆହା ସେ ତ ତେବେକେ ଘର କରୁଛନ୍ତି ! ସାଧୁ ସ୍ୱାମୀ ଯେ ସେଥିରେ ହିଁ ବାଧା ଦେଇଛନ୍ତି । ଅଥଚ ସ୍ତ୍ରୀଲୋକମାନେ ଜାଣନ୍ତି ଘର କରିବା ମିଳିଲେ ସ୍ତ୍ରୀଲୋକମାନଙ୍କ ତାହାହିଁ ଚରମ ପ୍ରାପ୍ୟ—

ସାନଭାଉଜ ମଧ୍ୟ ହସିଦେଇ କହିଲେ— ସମସ୍ତେ ଆଉ କ'ଣ ସେ କଥା ଭାବନ୍ତି ?

ଏଇଟା ଅବଶ୍ୟ ବକୁଳ ପ୍ରତି ତାଙ୍କର କଟାକ୍ଷପାତ ।

ବାୟୁମଣ୍ଡଳଟା ଯେ କିଞ୍ଚିତ ହାଲୁକା ହୋଇଗଲା, ଏଥିରେ ଯେପରି ସାନଭାଉଜ ପ୍ରତି ବକୁଳ କୃତଜ୍ଞ ହେଲା । ହସି ହସି କହିଲା— ହେଲେ ଯେଉଁ ସ୍ତ୍ରୀଲୋକର ଭାଗ୍ୟରେ ଘର-ବର ଜୁଟିବନି ତା'ର ଆଉ ଉପାୟ କ'ଣ ଅଛି ?

—ହଁ ସେଇଟା ଗୋଟେ ଗୋଲକଧନ୍ଦା...... ସାନଭାଉଜ କହିଲେ— ତମର ବାପ ଭାଇ ବାହା ଦେଲେନି, ନା ତମେ ବାହା ହେଲନି ଜାଣେନି । ମୁଁ ତ ସେତେବେଳେ ତମ ଭାଇନାଙ୍କ ଚାକିରିର ଚକରେ ବନ୍ଧା ହୋଇ ଦିଲ୍ଲୀ-ସିମଳା ଭିତରେ ଟଣାଓଟରା ହେଉଥିଲି—

ଏସବୁ କଥା, କେବେହେଲେ ବକୁଳର ସାନଭାଉଜ କହି ନ ଥିଲେ । ମଣିଷଟା ଅଦ୍ଭୁତ ଭାବରେ ବଦଳି ଯାଇଛନ୍ତି । ସ୍ୱଳ୍ପଭାଷିତ୍ୱର ଗୌରବ ନେଇ ଏ ସଂସାରରେ ବିରାଜିତ ଥିଲେ ସେ । ହଠାତ୍ ଯେପରି କଥା କହିବା ପାଇଁ ପିପାସାର୍ତ୍ତ ହୋଇଯାଇଛନ୍ତି ।

—ତା' ସତ ! କଥାର ସମାପ୍ତିରେଖା ଟାଣିଦେଲା ବକୁଳ ।

—"ଚାଲ, ଖାଇବ ଚାଲ— " କହିଲା ପରେ ବି ଠିଆହୋଇ ରହିଲା ଶମ୍ପାର ମା', କହିପକାଇଲା— ମୋର ପୋଡ଼ା ମୁହଁରେ କହିବା କଥା ନୁହେଁ, ତେବେକେ ତମେ ବୋଲି କେବଳ କହୁଛି— ସେପଟ ଘରର ଖବର ଜାଣିଛ ?

—ସେ ପଟ ଘର ?

—ସେପଟ ଘର ମାନେ ତମର ପୁରୁଣା ଘର ମ ! ତମର କକେଇ ଦଦେଇଙ୍କ ଘର !

—ଓଃ ! କ'ଣ ହେଇଛି ? କିଏ ମରି-ଫରି— " ବକୁଳ ଅଟକିଗଲା । ଠିକ୍ ଯେ କିଏ କିଏ ସେଠାରେ ଅଛନ୍ତି, ସେ କଥା ଭଲରୂପେ ଜାଣି ନ ଥିଲା ବକୁଳ । ଦଦେଇମାନେ ଓ କକେଇମାନେ ଏବଂ ତାଙ୍କ ପତ୍ନୀମାନେ ଯେ ଆଉ କେହି ନାହାନ୍ତି ସେ କଥା ଜାଣିଛି । ନା, ବୋଧହୁଏ ସାନଖୁଡ଼ୀ ଥିଲେ ଅନେକଦିନ ପର୍ଯ୍ୟନ୍ତ, ଆଉ ତ ପ୍ରାୟ ଯିବା ଆସିବା ନାହିଁ । ଅତଏବ ବକୁଳ ଅଟକିଗଲା ।

ସାନଭାଉଜ ମୁଣ୍ଡ ହଲାଇ କହିଲେ— ନା, ମରି-ଫରି ଯିବା କଥା ନୁହେଁ । ସେ ଘରର ଦେଠେଇଙ୍କ ନାତୁଣୀ ସାଇକେଲ୍‌ରେ 'ବିଶ୍ୱପରିଭ୍ରମଣ' ଦଳରେ ମିଶି ଚାଲିଯାଇଛି । ଛଅଟା ପୁଅ ଆଉ ସେମାନଙ୍କ ସଙ୍ଗେ କ'ଣ ନା ସେଇ ଗୋଟିଏ ଝିଅ । ଝିଅକୁ ଭାରି ଗେହ୍ଲା କରି ବଢ଼େଇଛନ୍ତି ଆଉ କ'ଣ ?

ସତରେ ଟିକିଏ ଆଶ୍ଚର୍ଯ୍ୟ ନ ହୋଇ ରହିପାରିଲାନି ବକୁଳ । ଦର୍ଜିପଡ଼ା ଗଳିର ସେମାନଙ୍କର ସେହି ନିକଟ-ଆତ୍ମୀୟମାନଙ୍କୁ କେବେହେଲେ ଭଲକରି ଚାହିଁ ଦେଖି ନ ଥିଲା ବକୁଳ । ଖାଲି ଏଇ ଟିକକ ଧାରଣା ଥିଲା ସେମାନେ ବଡ଼ ପୁରୁଣାକାଳିଆ । ସେମାନଙ୍କ ଗଳିକୁ ସହଜରେ ସୂର୍ଯ୍ୟ ଭେଦ କରି ଉଙ୍କି

ମାରି ପାରନ୍ତି ନାହିଁ । ତା'ର ଦଦେଇପୁଅ ଭାଇନାଙ୍କର ସ୍ତ୍ରୀଙ୍କର ଅନେକଦିନ ତଳର ଦେଖିଥିବା ଚେହେରାଟା ମନେପଡ଼ିଲା, ଲମ୍ବା ପଣତଟି ବେକ ତଳକୁ ରହିଥାଏ, ନରମ ନରମ କଥା, ବୟସରେ ସାନ ସାନ ଦିଅର ନଣନ୍ଦଙ୍କୁ ସୁଦ୍ଧା ସମ୍ମାନରେ ଡାକି କି ସମୀହ କରି କଥା କହୁଥିଲେ ସେ ! ଆଉ ମନେପଡ଼ିଲା ତାଙ୍କର ବାଁ ହାତଟା । ଅନ୍ତତଃ ଦେଢ଼ଡଜନ ଲୁହା ପିନ୍ଧିଥାନ୍ତି ହାତର ଶଙ୍ଖା-ଚୂଡ଼ି ସହିତ । କଥା ମଝିରେ କାହିଁକି କେଜାଣି, ଯେତେବେଳେ ସେତେବେଳେ ସେଇ ଲୁହା ପିନ୍ଧା ହାତଟାକୁ କପାଳରେ ଛୁଆଁଇ ଥାଆନ୍ତି ଆଉ ଦି'କାନରେ ହାତ ଦେଉଥାନ୍ତି ! ମନେ ହେଉଥାଏ ସବୁବେଳେ ଅପରାଧର ଭାରରେ ସେ ଭାରାକ୍ରାନ୍ତ !

କେତେଦିନ ତଳର କଥା ?...... ଝିଅଟା କଣ ତାଙ୍କରି ଝିଅ ?

ତେବେକେ ଏ ସମ୍ବାଦ ପାଇ ବକୁଳ କୌତୁକ ଅନୁଭବ କଲା । କହିଲା— ଭଲକଥା ତ ! ଗୋଟେ ଝିଅ ଆଉ ଗୋଟେ ପୁଅ ଥିଲେ ତ ବିପଦର ଆଶଙ୍କା ଥାଆନ୍ତା, ଏ ଛଅଜଣ ଜଣକୁ ପହରା ଦେବେ ।

—ପହରା ଦେବେ, ନା ସଦଳବଳ ଆହାର କରିବେ କିଏ ଜାଣିଛି ?...... ସାନଭାଉଜ କହିଲେ— ଯା ଭାବି ଆଶ୍ଚର୍ଯ୍ୟ ହେଉଛି, ତମର ସେପଟ ଘରେ ମଧ୍ୟ ଏତେ ପ୍ରଗତିର ପବନ ବହିଲା !

—ବାଃ ! କାଳ ବଦଳିବନି ? ଯୁଗ କ'ଣ ବସିଥିବ ?

—ତାଙ୍କ ଘରଟାକୁ ଦେଖିଲେ ତ ଲାଗୁଥାଏ ବୋଧହୁଏ ବସିଛି । ହଠାତ୍ ଏକାବେଳେ ଅନ୍ୟମନସ୍କ ଗଳାରେ ବକୁଳ କହିଲା— ହୁଏତ ଏମିତି ହୁଏ । ଘରେ ଦୁଆର ଝରକା ନ ଥିଲେ, ଦିନେ ଘରେ ଅଟକି ରହିଥିବା ପ୍ରାଣୀ କାନ୍ଥ ଭାଙ୍ଗି ବାହାରି ନିଃଶ୍ୱାସ ନେବାକୁ ଚାହେଁ ।

—ତା ବୋଲି ବାପା ଏତେ ବେଶୀ— " ସାନ ଭାଉଜ କହିଲେ— ଥାଉ, ମୁଁ କିଛି କହିବାଟା ଶୋଭା ପାଇବନି ।

ଭାଉଜର ସେ ଅପ୍ରସ୍ତୁତ ଭାବଟାକୁ ନ ଦେଖି ପାରିବାର ଛଳନା କରି ବକୁଳ କହିଲା— ତରବର ହୋଇ କରିବାକୁ ଗଲେ ଅତିବେଶୀ କରିବାକୁ ପଡ଼େ ସାନଭାଉଜ, ହଠାତ୍ ଯେତେବେଳେ ଖିଆଲ ହୁଏ— ଛିଃ ଛିଃ ବହୁତ ପଛରେ ରହିଯାଇଛି, ସେତେବେଳେ ମାତ୍ରାଜ୍ଞାନଟା ଜମା ରହେନି ।

—"ହେଲେ ହେଇଥିବ— " କହି ଶମ୍ପାର ମା' ନିଃଶ୍ୱାସ ପକାଏ । ହୁଏତ ଏ କଥାରେ ତା' ନିଜ ଝିଅର କଥା ହିଁ ମନକୁ ଚାଲିଆସେ ।

କିନ୍ତୁ ଏମିତି କ'ଣ ଦୁଆର ଝରକା ବନ୍ଦ କରି ରଖିଥିଲେ ସେମାନେ ? ସେଥିପାଇଁ ତାଙ୍କ ଝିଅ କାନ୍ଥ ଭାଙ୍ଗି ବାହାରିଗଲା ? ଆମେତ ଯାହା କରିଛୁ ତା'ରି ଭଲପାଇଁ କରିଛୁ ! ହେଲା ଆମେ ତାକୁ ବୁଝିପାରିଲୁନି, ସେ ବା ଆମମାନଙ୍କୁ କାହିଁକି ବୁଝିବ ?

ଅଦ୍ଭୁତ ଭାବରେ ଭାଙ୍ଗି ପଡ଼ିଛି ବୋଲି ଟିକିଏ ବୁଝିପାରୁଛି ଶମ୍ପାର ମା' । ଯଦି ପୂରାଟା ଥାଆନ୍ତା କ'ଣ ବୁଝିଥାନ୍ତା ? ନା ବୁଝିବାକୁ ଚାହିଁଥାନ୍ତା ?

ଏହି ଘରେ ହିଁ ଆଉ ଗୋଟିଏ ଅଂଶରେ ଗୋଟିଏ ନାଟକୀୟ ଦୃଶ୍ୟ ଚାଲିଥିଲା ସେତେବେଳେ ।

ଅଳକା ଘରକୁ ବାହାରକୁ ହେଉଥିଲା । ବାରମ୍ବାର ଝରକା ପାଖରେ ଆସି ଠିଆ ହେଉଥିଲା ଅଳକା, ତେବେକେ ତା' ମୁହଁର ରେଖାରେ ଗୋଟାଏ 'ଯୁଦ୍ଧଂ ଦେହି' ଭାବ ଫୁଟେଇ ରଖୁଥିଲା ଅଳକା ବିଶେଷ ଚେଷ୍ଟା କରି । କାରଣ କାଚଘେରା ବାରଣ୍ଡାରେ ଗୋଟିଏ କଡ଼ରେ କ୍ୟାନଭିସ୍ ଚଉକିରେ ବସିଥିବା ଅପୂର୍ବର ମୁହଁଆଡ଼କୁ ମଝି ମଝିରେ କଟାକ୍ଷପାତ କରୁଥିଲା ଅଳକା ।

ସେ ମୁହଁ କ୍ରମଶଃ କଠିନ କଠୋର ଆଉ କଳା ପଡ଼ିଆସୁଛି, ଆଉ ତାର ନିଆଁ ବାହାରୁଥିବା ଆଖି ଦୁଇଟା ଥରକୁଥର ବୁକ୍‌କେସ୍ ଉପରେ ରଖିଥିବା ଟାଇମ୍‌ପିସ୍‌ଟା ଉପରେ ଯାଇ ପଡୁଥିଲା ।

ଓଃ, ଲୋକଟା କି ଚଲାକ୍ ! ଭାବିଲା ଅଳକା, ସେତେବେଳୁ ଟେଲିଫୋନ୍‌ଟା ପାଖରେ ବସିରହିଛି, ମିନିଟକ ପାଇଁ ସୁଦ୍ଧା ଉଠୁନି । ଏତେବେଳ ଭିତରେ କ'ଣ ଥରଟେ ବାଥ୍‌ରୁମ୍ ଯିବାର ଦରକାର ପଡ଼ିନି ? ଅଳକା ତ ତା'ହେଲେ ସେହି ଟେଲିଫୋନ୍‌ଟା ସାହାଯ୍ୟରେ କଥାଟାକୁ ମ୍ୟାନେଜ୍ କରିଦେଇ ପାରିଥାନ୍ତା । କହି ଦେଇ ପାରିଥାନ୍ତା – କଥା ଦେଖିଲା, ଏଇଲେ ତମ ଝିଅ ଫୋନ୍ କଲା, ଫେରିବାକୁ ଟିକିଏ ଡେରି ହେବ, ବାପିଙ୍କୁ ଚିନ୍ତା କରିବାକୁ ମନା କରିଦେବ ।

ତା'ପରେ ହିଁ କଥାଟାକୁ ଲଘୁତର କରି ପକାଇବା ପାଇଁ ହସିଦେଇ ଲମ୍ବାଇ କହିଥାନ୍ତା – କଥାଟା ବୁଝିଲଟି ? 'ମା' ତମେ ଭାବିବନି' ନୁହେଁ, ବାପିଙ୍କୁ ଚିନ୍ତା କରିବାକୁ ମନା କରିଦେବ । ସେ ଜାଣିଛି ତା' ବାପି ସଞ୍ଜବେଳୁ ଘଣ୍ଟାକୁ ଚାହିଁବେ, ଆଉ ଝରକା ଆଡ଼କୁ ଚାହିଁବେ । ଆଉ ଜଗତରେ ଯେତେପ୍ରକାର ଦୁର୍ଘଟଣା ଘଟିପାରେ, ମନେ ମନେ ତାହା ହିସାବ କରିବେ ।...... ବିଚରା ମା' ମଧ୍ୟ ଯେ ଭାବି ଅସ୍ଥିର ହେବ, ସେ କଥା ଚିନ୍ତା ନାହିଁ ଝିଅର ।

ହଁ, ଏହିପରି କଥାର ଫୁଲଝରି ଝରାଇ ପରିସ୍ଥିତିକୁ ହାଲୁକା କରିଦେଇ ପାରିଥାନ୍ତା ଅଳକା, ବରାବର ଯେମିତି କରୁଥାଏ, ସେମିତି । କେତେ ଯେ ଏପର୍ଯ୍ୟନ୍ତ

'ମ୍ୟାନେଜ୍' କରିଆସିଛି ତା'ର ଠିକ୍ ଅଛି ? ଝିଅ ବଡ଼ହୋଇ ଉଠିବା ଆଗରୁ ହିଁ ଅଳକାର ଏସବୁ କଳାକୌଶଳ ଚଳି ଆସୁଛି ।

ସେ ଅପୂର୍ବବାବୁ ଲୋକଟି ବାହାର ଲୋକଙ୍କ ପାଖରେ ଯେତେ ପ୍ରଗତିଶୀଳ ବୋଲି ଛଳନା କରୁ ପଛକେ, ଆଉ ଉଦାରପନ୍ଥୀର ମୁଖା ପିନ୍ଧୁ ପଛକେ, ଭିତରେ କ'ଣ ତା' ଜାଣିବାକୁ ବାକି ନାହିଁ ଅଳକାର ! ମନୋଭାବ ହେଉଛି ସେହି ଆଦ୍ୟକାଳର ଭଳି ପଚା ଓ ପୁରୁଣା । ସ୍ତ୍ରୀଲୋକମାନେ ଟିକିଏ ସହଜ ସ୍ୱଚ୍ଛନ୍ଦ ଜୀବନ ପାଇବାକୁ ଚାହିଁଲେ ସେ କାଳର ସେଇ ସମାଜପତିମାନଙ୍କ ପରି ଆଖି କପାଳ ଉପରକୁ ଉଠିଯାଏ । ନିହାତି ମୁଁ ଭାରି ଟାଣୁଆ ହାତରେ କାତ ଧରି ବସିଛି, ସେଥିପାଇଁ ଆଧୁନିକ ଯୁଗ ଆଗରେ ମୁହଁଟା ଦେଖାଇପାରୁଛି ।

ତେବେକେ ଖାଲିରେ କ'ଣ ଜୋରଜୁଲମ ଚଳାଇ ପାରିବି । କେତେ ରକମରେ ଯେ ମ୍ୟାନେଜ୍ କରିବାକୁ ପଡ଼େ । ସଜାଇ, ଗଢ଼ି, ସଜାଡ଼ି କଥା କହି, ରାତିକୁ ଦିନ ଆଉ ଦିନକୁ ରାତି କରି । ହେଇଟି, ଏହିକ୍ଷଣି ତ ସମ୍ଭାଳି ଦେଇଥାନ୍ତି, ଯଦି ଲୋକଟା ସେହି ଟେଲିଫୋନ୍ ଟେବୁଲଟାର ଦେହକୁ ଲାଗି ବସି ନ ଥାନ୍ତା ।

ଝିଅଟା ଉପରେ ମଧ ରାଗରେ ମଥା ଜଳିଯାଏ ଅଳକାର । ସବୁ ତ ଜାଣିଲା, ତା'ହେଲେ ଏତେ ଅତିବେଶୀ କାହିଁକି ? ଯାହା ରହିବ— ସହିବ ସେଇୟା ଭଲ । ବନ୍ଧୁମାନଙ୍କ ସାଙ୍ଗରେ ପିକ୍‌ନିକ୍‌କୁ ଯାଉଛୁ ଭଲ କରିଛୁ, ତା' ବୋଲି ରାତି ଏଗାରଟା ବାଜିଯିବ ଘରକୁ ଫେରିବୁନି ? ଏତେ ରାତି ପର୍ଯ୍ୟନ୍ତ କିଏ ପିକ୍‌ନିକ୍‌ର ପଡ଼ିଆରେ ରହେ ?...... ଅଳକା ଏ ସବୁ ଭାବୁଥାଏ, କିନ୍ତୁ ସଙ୍ଗେ ସଙ୍ଗେ ଝିଅପଟ ନେଇ ଯୁକ୍ତିକୁ ଟାଣୁଆ କରିବାକୁ ନିଜ ମନକୁ କହି ପକାଏ, 'ବାବା' ଜାଣିଛନ୍ତି, କିଛି ଦୁର୍ଘଟଣା ଘଟିଯାଇଛି କି ନାହିଁ ।

'ବାପା' ଅବଶ୍ୟ ହେଉଛନ୍ତି ସେହି ଅଲୌକିକ ଶକ୍ତିସମ୍ପନ୍ନ ଗୁରୁଦେବ । ଅଳକାର ପିତୃଗୃହର ସମ୍ପର୍କ ସୂତ୍ରରେ ଯେ କି ଅଳକାର ମଧ ଗୁରୁଦେବ । ଖାଲି ବା ଅଳକାର କାହିଁକି ? ସତ୍ୟଭାମାର ମଧ ।

ଉଦାର ପ୍ରଗତିବାନ ସେ 'ବାବା'ଙ୍କ ପରି ମଣିଷ ହେଉଛନ୍ତି ସୁନା ପରି । ସେମାନେ କେବେ ଅପବିତ୍ର ହେବେ ନାହିଁ । ତା'ଛଡ଼ା ଏକଥା ମଧ କହନ୍ତି— ଭଲ-ମନ୍ଦ, ଭୁଲ-ଠିକ୍ ଏ ସବୁର ବିଚାର କରିବାକୁ ତୁ କିଏସେ ? 'ମନ' ହେଉଛି ମହେଶ୍ୱର, ସେ ଯାହା ଚାହିଁବ ତାକୁ ତାହା କରିବାକୁ ଦେବାକୁ ପଡ଼ିବ, ଫଳାଫଳର ଚିନ୍ତା କରିବା ଆବଶ୍ୟକ ନାହିଁ । ସବୁ ଫଳାଫଳକୁ ଗୁରୁଙ୍କ ଚରଣରେ ସମର୍ପଣ କରି ନିଶ୍ଚିନ୍ତରେ ଦିନ କଟାଇଦେବୁ, ବାସ୍ ।

ଏଭଳି ଉଦାରପନ୍ଥୀ 'ବାବା'ଙ୍କ ଶିଷ୍ୟ-ଶିଷ୍ୟାଙ୍କ ସଂଖ୍ୟା ଯେ ଅଗଣିତ ହେବ, ସେଥିରେ ଆଉ ସନ୍ଦେହ ଅଛି କ'ଣ ? ଅଳକାର ପିତୃକୁଳ କି ମାତୃକୁଳର କେହି ଜଣେ ହୁଏତ ଆଜି ଶିଷ୍ୟତ୍ୱ ଦାବି କରି ପାରନ୍ତି, କିନ୍ତୁ ତା'ପରେ ତିନିକୁଳର କେହି ଆଉ ବାକି ନାହାନ୍ତି ।

ତେବେ ଅଳକାର ଏଭଳି ଭାଗ୍ୟ ଯେ ତରୁଣ ଝିଅଟାକୁ ମଧ୍ୟ 'ବାବା'ଙ୍କ ଚରଣରେ ସମର୍ପି ଦେଇ ପାରିଛି, କିନ୍ତୁ ଆଜି ପର୍ଯ୍ୟନ୍ତ ସ୍ୱାମୀଟିକୁ ନୁଆଁଇ ପାରିଲାନି । ଅଥଚ ଘରେ ବାହାରେ ସମସ୍ତେ କହନ୍ତି ଅଳକାର ଭାଗ୍ୟରେ ଯେମିତି ଅନୁଗତ ସ୍ୱାମୀ ମିଳିଛି, କେତୋଟି ସ୍ତ୍ରୀଲୋକଙ୍କ ଭାଗ୍ୟରେ ସେମିତି ଜୁଟିବ ?...... ଆଉ ଶାଶୁ, ନଣନ୍ଦହେରିକା ତ ଖୋଲାଖୋଲି 'ସ୍ତ୍ରୈଣ' ବୋଲି କହନ୍ତି ।

ହାୟ ! ସେମାନେ ଯଦି ଜାଣିପାରନ୍ତେ, କେବଳମାତ୍ର ଲୋକଚକ୍ଷୁରେ ସ୍ୱାମୀକୁ ଏମିତି ସ୍ତ୍ରୈଣ ରୂପରେ ଦେଖାଇବାକୁ କେତେ କାଠ ଛଣ ପୋଡ଼ିବାକୁ ହେବ ଅଳକାକୁ, କେତେ ଜୀବନୀଶକ୍ତି ଖର୍ଚ୍ଚ କରିବାକୁ ପଡ଼ିବ । ଗୁରୁଙ୍କ ବଳରେ ନିହାତି ବଳୀୟାନ୍ ବୋଲି ନା ଅଳକା ସବୁ ପାର କରି ଚାଲିଛି ।

ଏବେବି ସେଥିପାଇଁ ଅବସ୍ଥାକୁ ସେହି ହତଭାଗ୍ୟ ଝିଅର ଅନୁକୂଳରେ ଆଣିବାକୁ କହିଦେଲା— ବାବା ଜାଣିଛନ୍ତି, କୋଉ ଦୁର୍ଘଟଣା ଘଟିଛି କି ନାହିଁ—

ଅଗ୍ନିଗର୍ଭା ମଣିଷଟା ଏତେ ସମୟର ସ୍ତବ୍ଧତା ଭାଙ୍ଗି ଚପା ଗଳାରେ ଗର୍ଜି ଉଠିଲା— "ଦୁର୍ଘଟଣା ।"

ପ୍ରଶ୍ନ, ନା ମନ୍ତବ୍ୟ ? ସମର୍ଥନ ନା ପ୍ରତିବାଦ ? କିଏ ଜାଣିଛି !

ଅଳକାର ମନେହେଲା ବୋଧହୁଏ ଅବସ୍ଥାର ଚକାଟାକୁ ଚାପିଧରିପାରିଲା । ସେଥିପାଇଁ ସେମିତି ଉଦ୍‌ବିଗ୍ନ ଗଳାରେ କହିଲା— ସେଇୟା ଭାବୁଛି ! 'ବାଇକ୍‌ରେ' ତ ସମସ୍ତେ ଯାଇଛନ୍ତି । ଫେରିଲାବେଳେ ଅବା ଗାଡ଼ିଫାଡ଼ି ବିଗିଡ଼ିଗଲା, ନା ଆହୁରି କ'ଣ ଘଟିଲା— ଅଳକା ଗଳାର ସ୍ୱରକୁ ଆହୁରି ତଳକୁ ଖସାଇଦେଲା— ଛାତିଟା ଯାହା ହେଉଛି ! ଆଜିକାଲି ତ ରାତିଦିନ ସବୁବେଳେ ଆକ୍ସିଡେଣ୍ଟ ।

ଅଗ୍ନିଶିଖା ଆଉଥରେ ଝଲସିଉଠିଲା, କହିଲା— ତା' ଯଦି ହୋଇଥାଏ ତ କହିବି ତମମାନଙ୍କର ଭଗବାନ ମରି ଯାଇଛନ୍ତି । ଏତେବେଳ ହେଲା ତ ମୋ ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଥିଲି, ଯେମିତି ଆକ୍ସିଡେଣ୍ଟ ହିଁ ହେବ । ଏମିତି ହେଉ ଯେଉଁଥିରେ କି ତମର ସେ ଗେହ୍ଲା ନାତୁଣୀ ଝିଅର ପାଦ ଦୁଇଟା ସାରା ଜନ୍ମ ପାଇଁ ଛୋଟା ହୋଇଯାଆନ୍ତା !

ଅଳକା ଯେତେବେଳେ ଭାବୁଥିଲା ଅବସ୍ଥା ଆୟତ୍ତରେ ଆସିବାକୁ ଯାଉଛି, ସେତେବେଳେ କ'ଣ ହେଲା ନା ଏଭଳି କଥା ! ଏତେ ଅପମାନ ତ ଆଉ ବରଦାସ୍ତ କରି ହେବନି ?

ଯଥାରୀତି ଅଳକା ମଧ୍ୟ ଡେଇଁ ପଡ଼ିଲା । ଯଥାରୀତି ଝଙ୍କାର ଦେଇ କହିଲା, କ'ଣ କହିଲ ?

—ଯାହା କହିଛି ପୁଣି କହୁଛି । ପ୍ରାର୍ଥନା କରୁଛି ତମର ଝିଅ ଯେପରି ଗୋଡ଼ଭାଙ୍ଗି ଘରକୁ ଫେରିବ ।

ତୀବ୍ରରୁ ତୀବ୍ରତର ହେଲା ଅଳକା । — ସେଇଟିକକ ବା ଆଉ ରଖି ଯୋଡ଼ାଇ କହିଲ କାହିଁକି ? କହ ଯେ— ପ୍ରାର୍ଥନା କରୁଛି, ଘରକୁ ଆଉ ଯେମିତି ନ ଫେରୁ । ଯେମିତି ଗାଡ଼ି ତଳେ ପେଷି ହୋଇଯାଉ । ଆଶ୍ଚର୍ଯ୍ୟ ପ୍ରାଣ ସତେ ! ତମେ ପୁଣି ବାପ ?

—ସେଇୟା ତ, ସେଇଟାକୁ ହିଁ ତ ଅସ୍ୱୀକାର କରିବାର ଉପାୟ ଖୋଜି ପାଉନି । ଯଦି ପାଆନ୍ତି !

—ଓଃ ! ସତେ ! କହିବାକୁ ଲାଜ ଲାଗୁନି ? ଘରର ଆଉ ଗୋଟେ ଝିଅକୁ ମଧ୍ୟ ତ ଦେଖିଲି ! ଝିଅ ବାପର ନାକ ଆଗରେ ତେଜ ଦେଖାଇ ବାହାରିଗଲା ! ଆଉ ଘରକୁ ଫେରିଲାନି, ଅଥଚ କିଛି ନିନ୍ଦା ନାହିଁ । ଯେତେକ ଦୋଷ ଖାଲି ମୋରି ଝିଅର !

—ନିନ୍ଦା ନାହିଁ କିଏ କହିଲା ? ହେଇଟି ତମେ ତ ନିନ୍ଦା କରୁଛ । ତେବେ ତମେ ମଧ୍ୟ ଜାଣିଛ ଆଉ ମୁଁ ମଧ୍ୟ ଜାଣିଛି, ସେ ଝିଅ ପାତାଳର ପାହାଚରେ ପାଦ ଦେବନି ।

—ରହ ରହ ! ସ୍ତ୍ରୀଲୋକ ଏକୁଟିଆ ରାଜରାସ୍ତାରେ ଘୂରିବୁଲିଲେ କିଏ ତାକୁ ସ୍ୱର୍ଗର ପାହାଚକୁ ଉଠାଇ ଦେବାକୁ ଆସେ ? ମୁଁ କହୁଛି—

ଅଳକା ଯେ କ'ଣ କହନ୍ତା କିଏ ଜାଣିଛି, ଧଡ଼ପଡ଼ ହେଇ ସତ୍ୟଭାମା ଚାଲିଆସିଲା, କହି ପକାଇଲା— ବାପି, ଭାରି ରାଗି ଯାଇଛ ତ ? ଜାଣିଛି ରାଗିବ ! ବାପି, ସେମାନଙ୍କୁ ଏତେ କରି କହିଲି— ସାରାଦିନ ଏତେ କଥା ପରେ ପୁଣି ନାଇଟ୍ ଶୋ'ର ସିନେମା ଦେଖିବା ? ବାପି ମୋର ଘରେ ପଶିବାକୁ ଦେବେନି । ହେଲେ ଶୁଣିଲେନି ତ । ଝିଅଗୁଡ଼ାକ କି ପାଜି ଜାଣିଛ ? କହିଲେ— ଆମେ କ'ଣ ଗୋଟେ ଘରର ଝିଅ ନୋହୁ ? ଆମମାନଙ୍କର ବୋଧହୁଏ ମା-ବାପ ନାହାନ୍ତି ?...... ତେବେକେ ମୁଁ ଶିଳାକୁ ଧରି ବାନ୍ଧି ଟାଣି ଆଣି ସିନେମା

ସରିବା ଆଗରୁ ଚାଲି ଆସିଲି । ସମସ୍ତେ ଯାହା ଅଛା କଲେ !...... ଏ ବାପି, କଥା କହୁନ କାହିଁକି ଯେ ? ବାପି !

ବାପର ବେକକୁ ଧରି ଝୁଲିପଡ଼ିଲା ସତ୍ୟଭାମା— ମୁଁ ସାଙ୍ଗମାନଙ୍କ ପାଖରେ ମୁହଁ ତଳକୁ କରି ଆଗ ଆଗ ଚାଲିଆସିଲି, ତମେ ରାଗି କରି ଥିବ ବୋଲି, ଆଉ ତମେ ଯେ ହାଣ୍ଡି ଭଳି ମୁହଁ କରି— ହସ ହସ କହୁଛି, ଏଇ ବାପି ! ନ ହସିଲେ ମୁଁ ଭୋ ଭୋ କିନା କାନ୍ଦିବି—

ବାପିଙ୍କୁ ନରମ ନ କରିବା ପର୍ଯ୍ୟନ୍ତ ସେ ତୁନି ହେବନି, ଏକଥା ନିଶ୍ଚିତ ।

## ॥ ୨୪ ॥

ନମିତାର ଜୀବନରେ ନାଟକ ନ ଥିଲା, ନମିତା ଏକ ଦୀନହୀନ ପରିଚୟ ଭିତରେ ଅତି ସାଧାରଣ ଜୀବନ ବହନ କରୁଥିଲା, ପ୍ରାପ୍ତିର ଘର ଶୂନ୍ୟ ଥିଲା ନମିତାର ! ସେହି ନମିତାର ଭିତରୁ ପ୍ରତିବାଦ ଉଠିଲା, ଦିନକୁଦିନ ପ୍ରବଳ ହୋଇ ଉଠିଥିଲା ସେ ପ୍ରତିବାଦ, ସେଥିପାଇଁ ନମିତା ଆକସ୍ମିକ ଏକ ନାଟକୀୟତାରେ ବୁଲିପଡ଼ି ତା' ଜୀବନଟାକୁ ହିଁ ନାଟକ କରି ପକାଇଲା । କିନ୍ତୁ ଅନେକ ପ୍ରାପ୍ତିର ଗୌରବ ବହନ କରି ଆଲୋକୋଜ୍ଜ୍ୱଳ ମଞ୍ଚରେ ହିଁ ଯେଉଁମାନେ ବୁଲଚାଲ କରନ୍ତି, ତାଙ୍କରି ଭିତରେ ରହି ମଧ କାହିଁକି ପ୍ରତିବାଦ କରୁଛନ୍ତି ?

ପାରୁଲ୍‌ର ସାନପୁଅ ଶୋଭନର ସ୍ତ୍ରୀ ରେଖାର ସ୍ୱାମୀ ଓ ତା'ର ସମ୍ପତ୍ତିର ଟ୍ୟାକ୍ସ ଖଜଣା ଦେବାକୁ ଭୁଲିଯାଇନି ? ତେବେକେ ସେ ତା'ର ସମ୍ପତ୍ତିକୁ ହାତରେ ରଖିପାରିଲା ନାହିଁ । ଦଶ ବର୍ଷର ବିବାହିତ ଜୀବନଯାପନ ପରେ ରେଖା ହଠାତ୍ ଆବିଷ୍କାର କରିପକାଇଲା, 'ଏ ଛଳନାରେ ଭରା ଦାମ୍ପତ୍ୟଜୀବନ ବହନ କରିବାର କୌଣସି ଅର୍ଥ ନାହିଁ ।'

ଅଥଚ ଏପର୍ଯ୍ୟନ୍ତ ସମସ୍ତେ ଦେଖିଥିଲେ ଆଉ ଜାଣିଥିଲେ ସେମାନଙ୍କର ସେ ଜୀବନ ଏକାବେଳେ ପରିପୂର୍ଣ୍ଣ ଥିଲା । ସେଥିରେ ଫାଙ୍କ ଥିଲା କେଉଁଠି ବା ଛଳନା ବି ଥିଲା କେଉଁଠି ?

ଉପରବାଲା ମୁକ୍ତ ସଂସାର, ସୁଖୀ ପରିବାର, ବଶମ୍ବଦ ସ୍ୱାମୀ, ବିନୀତ ଭୃତ୍ୟ, ଅଗାଧ ପ୍ରାଚୁର୍ଯ୍ୟ, ଅବାଧ ସ୍ୱାଧୀନତା, ଚିତ୍ର ପରି ଘର, ସାହେବ ଘର ପରି ଡ୍ରଇଁ ରୁମ୍, ଫୁଲରେ ଭର୍ତ୍ତି ବଗିଚା, ଫୁଲ ପରି ପୁଅ ଝିଅ, ଅନୁରକ୍ତ ପ୍ରତିବେଶୀ, ପଦମର୍ଯ୍ୟାଦାରେ ସମୃଦ୍ଧ ସ୍ୱାମୀଙ୍କ ଅନୁଗତ ଅଧସ୍ତନମାନେ, ଏକ

କଥାରେ ଯେକୌଣସି ସ୍ତ୍ରୀଲୋକର ଈର୍ଷାସ୍ଥଳ ସେହି ଜୀବନରେ ମଣ୍ଡିତ ରେଖା ନାମର ମହିଳାଟି ତ ଏକାବେଳେ ପାଦପ୍ରଦୀପର ଆଗରେ ଏତେଦିନ ହେଲା ଝଲମଲ ମୂର୍ତ୍ତିରେ ବିରାଜ କରୁଥିଲା । ରେଖାର ଚାଲିବାରେ, କହିବାରେ, ଆଚାରରେ ଆଚରଣରେ ଦୃଷ୍ଟିର ଭଙ୍ଗିମାରେ, ଅଧରର ବଙ୍କିମ ରେଖାରେ ଉଚ୍ଛଳିତ ହୋଇଛି ସେହି ଝଲମଲ କରୁଥିବା ଦ୍ୟୁତି, ହଠାତ୍ ଏ କ'ଣ ?

କୁଆଡ଼େ ତା'ର ଜୀବନ-ଭାର ଦୁର୍ବହ ହୋଇଯାଇଛି । ଯେଉଁ ସ୍ୱାମୀଙ୍କ ସଙ୍ଗେ ତା'ର ଚିନ୍ତାରେ, ଭାବନାରେ, ଇଚ୍ଛାରେ, ବାସନାରେ, ରୁଚିରେ, ପସନ୍ଦରେ କେଉଁଠି ହେଲେ ମେଳ ନାହିଁ, ସେ ସ୍ୱାମୀ ସହିତ ଏକତ୍ର ବସବାସ ତା ପକ୍ଷରେ ଅସମ୍ଭବ ହୋଇଯାଇଛି !

ପୁଅର ପରାଜିତ ନିଷ୍ପୀଡ଼ିତ ମୁହଁ ଆଡ଼କୁ କିଛି ସମୟ ସ୍ଥିର ଚକ୍ଷୁରେ ଚାହିଁରହି ପାରୁଲ୍ ଆସ୍ତେ କହିଲା – ତୁ ଥଟ୍ଟା କରୁନୁ ତ ଶୋଭନ ?

– "ସେଇଟା ହେଇଥିଲେ ମୋ ପକ୍ଷରେ ଅବଶ୍ୟ ଭଲ ହୋଇଥାନ୍ତା," ଶୋଭନ ଆସ୍ତେ କହିଲା – କିନ୍ତୁ ହଠାତ୍ ତମ ସଙ୍ଗେ ଏମିତି ଥଟ୍ଟା କରିବାକୁ ଆସିବି କାହିଁକି କହିଲ ? ତମ ପାଖରେ ପୁଅକୁ ରଖିବାକୁ ଆସିଲି, ଝିଅଟାକୁ ଛାଡ଼ିଲାନି । ସେଇଟା ଏବେ ମାମୁଁ ଘରେ ବାପ ମରିଯାଇଥିବା ପରି ମଣିଷ ହେଉ !

ମନେ ମନେ କାନ୍ଦିପକାଇ ପାରୁଲ୍ କହିଲା – ତା' ମାନେ ତତେ ଦିଜଣଯାକଙ୍କୁ ଛାଡ଼ି ରହିବାକୁ ପଡ଼ିବ ?

– ତା'ଛଡ଼ା ଆଉ କ'ଣ ଉପାୟ ଅଛି ?

– ରହିପାରିବୁ ?...... ପାରୁଲ୍ ପ୍ରଶ୍ନଟା ପଚାରିଦେଲା ସତ, କିନ୍ତୁ ପଚାରିଦେଇ ଲଜ୍ଜିତ ହେଲା, ସତରେ, ସତରେ 'ନ ପାରିବା' ଶବ୍ଦଟାର କ'ଣ କୌଣସି ଅର୍ଥ ଅଛି ? ମଣିଷ କ'ଣ କରି ନ ପାରିବ ?

ଠିକ୍ ସେହି ପ୍ରଶ୍ନଟା ହିଁ ପଚାରିଲା ଶୋଭନ – ମା, ନ ପାରିବା ଶବ୍ଦଟାର କ'ଣ କିଛି ଅର୍ଥ ଅଛି ମା' ?

– "ତା' ସତ !" କିନ୍ତୁ ଈଷତ୍ ଦ୍ୱିଧାରେ ରହିଯାଇ ଅବଶେଷରେ ମନକୁ ଜୋର୍‌ଦେଇ ପାରୁଲ୍ କହିପକାଇଲା – ଶୋଭନ ତମମାନଙ୍କର ଛଡ଼ାଛଡ଼ିଟା କ'ଣ ତା'ହେଲେ ପକ୍କା ହୋଇଗଲା ?

ବେପରୁଆ ପାରୁଲ୍ 'ଡାଇଭୋର୍ସ' ଶବ୍ଦଟା ମୁହଁରେ ଅଟକିଗଲା । ସନ୍ତାନର ବିଧ୍ୱସ୍ତ ମୁହଁ ବଡ଼ ଗୋଳମାଳିଆ ଜିନିଷ ।

ଶୋଭନ ଅଦ୍ଭୁତ ହସ ଟିକିଏ ହସି କହିଲା— ପଦ୍ମା ? ନା କୋର୍ଟ ପର୍ଯ୍ୟନ୍ତ ଯାଇନି ଏ ପର୍ଯ୍ୟନ୍ତ । ଏଇଲେ କରିବାକୁ ଗଲେ ଅସୁବିଧା ଅଛି । ସେଥିରେ ବହୁତ ଗଣ୍ଡଗୋଳ । ସବୁ କଥା ତ ଜାଣିଛ । ଜଣକୁ 'ମହାପାପିଷ୍ଠ' ପ୍ରମାଣିତ କରି ନ ପାରିଲେ ସେ କାମଟି ସହଜରେ ହେବନି । ଏଇଟା ତା'ଠାରୁ ସୁବିଧାରେ ହେବ । ଧୀରେ ଧୀରେ ପାହାଚରେ ଓହ୍ଲାଇବା ପରି ଖାଲି ତିନି ବର୍ଷ ସେପାରେଟ୍ ରହିପାରିଲେ ଅନାୟାସରେ ବିଚ୍ଛେଦ ହୋଇଯିବ । କୋଟ୍ ଆପତ୍ତିର ରାସ୍ତା ପାଇବନି ।

ଯେତେବେଳ ପର୍ଯ୍ୟନ୍ତ ଶ୍ୱାସ ଅଛି, ସେତେବେଳ ପର୍ଯ୍ୟନ୍ତ ଆଶା ଅଛି ! ଯାହାହେଉ ପାରୁଲ୍ ମନେ ମନେ ଗୋଟାଏ ସ୍ୱସ୍ତିର ନିଃଶ୍ୱାସ ପକାଇଲା । ଭାବିଲା ହୁଏତ ଏହିପରି ଦୂରରେ ରହିବାର ଅବକାଶରେ ପରସ୍ପର ପରସ୍ପରର ଅଭାବ ଅନୁଭବ କରି ଭୁଲ୍ ବୁଝି ପାରିବେ, ହୁଏତ ନିତ୍ୟ ସାହଚର୍ଯ୍ୟର ବିତୃଷ୍ଣା ଧୋଇହୋଇ ପୋଛିହୋଇ ଯାଇ ନୂତନ ଆଗ୍ରହ ଅନୁଭବ କରିବେ ସେମାନେ । ହୁଏତ ଏଇ ପିଲା ଦୁଇଟି ଏକ ଦାରୁଣ ସମସ୍ୟା ଘଟାଇ ସେମାନଙ୍କ ସମସ୍ୟାକୁ ଲଘୁ କରି ଦେବେ ।

ପୁଅଟାକୁ ଛାଡ଼ି ରେଖା କ'ଣ ରହିପାରିବ ? ଯେଉଁ ରେଖା ବରାବର ସମସ୍ତ ପରିବେଶଟାକୁ ସବଳରେ ଚିପି ଧରି ନିଜର ବାସନା-ମୁଠା ଭିତରେ ରଖିବାକୁ ଚାହିଁଛି, ସେ ରେଖା କେବେହେଲେ ନିଜ ଛଡ଼ା ଆଉ କାହାକୁ ଦେଖି ପାରିନି ! ପୁଅ ପାଇଁ ମନ କ'ଣ ହେଲେ ସେ ପ୍ରବଳ ହୋଇଯିବ, ଆପଣାର ଅନୁକୂଳରେ ସ୍ରୋତଟାକୁ ବୁହାଇ ନେବ !

ଶୋଭନ ?

ସେ ହୁଏତ ସେତେବେଳେ କୃତାର୍ଥ ହୋଇ ଭାବିବ 'ରକ୍ଷା ପାଇଲି ବାପା' ! କେବଳ ଏଇ ଟିକକ ହିଁ ବର୍ତ୍ତମାନ ଆଶାର କଥା ଯେ ସବୁ ସମ୍ଭାବନା ମୂଳରେ ଏକାବେଳେ ହାଣ କୁରାଢ଼ି ବସି ଯାଇନି ।

ଶୋଭନର ପୁଅଟାକୁ ଗୋଟାଏ ଗପ ବହି ଦେଇ ଗଙ୍ଗାତୀରର ବାରଣ୍ଡାରେ ବସାଇ ରଖି ଆସିଛି, ସେଥିପାଇଁ କଥା କହିବାକୁ ଅସୁବିଧା ହେଉ ନାହିଁ ।

ପୁଅ ଆଗକୁ ଚା' କପ୍‌ଟାକୁ ଠେଲିଦେଇ ପାରୁଲ୍ କହିଲା— ହେଲେ ତମମାନଙ୍କର ଏ ମତ ଅମେଳଟା ହେଲା କେବେ ? ନିଜକୁ ତରଳାତରଳି କରି ଭଲ ସୁନ୍ଦର ଗୋଟାଏ ଛାଞ୍ଚରେ ଢଳେଇ କରି ଦେଇଥିଲୁ ତ ?

ପାରୁଲ୍ ଟିକିଏ ହାଲୁକା ହେଲା । ଇଚ୍ଛା କରି ହେଲା ।

ଶୋଭନ ମା'ର ମୁହଁ ଆଡ଼କୁ ଚାହିଁ କହିଲା— ତମକୁ ସେଇୟା ମନେ ହେଉଥିଲା ?

—ଖାଲି ମୋର କାହିଁକି ବାପା, ସମସ୍ତଙ୍କର ମନେ ହେଉଥିଲା ।

—ସମସ୍ତଙ୍କ କଥା ଥାଉ, ତମ ନିଜ କଥା ହିଁ କହ ।

—ହଁ, ମୋର ବା କାହିଁକି ମନେ ନ ହେବ ବାପା ? ଦେଖିକରି ତ ଆସିଥିଲି, 'ତତେ' କେତେକାଂଶରେ ଖୋଜି ପାଇ ନ ଥିଲି ।

ଶୋଭନ ଟିକିଏ ହସି କହିଲା, ଯେ ବସ୍ତୁଟିକୁ ତମ ପରି ସ୍ତ୍ରୀଲୋକ ମଧ୍ୟ ଖୋଜି ପାଇ ନ ଥିଲ, ସେହି ସୂକ୍ଷ୍ମ ସୁଗଭୀର ବସ୍ତୁଟି ତମର ବୋହୂ ଠିକ୍ ଖୋଜି ଖୋଜି ଆବିଷ୍କାର କରିପକାଇଲା ମା, ଆଉ ଆବିଷ୍କାର କଲାମାତ୍ରେ ଭୀଷଣ ରାଗିଗଲା ।...... ଚାହା ପିଇବାରେ ମନଦେଲା ଶୋଭନ ।

ପାରୁଲ୍ ଆସ୍ତେ କହିଲା— କିନ୍ତୁ ନିଜର ହୃଦୟର ଦ୍ୱନ୍ଦ୍ୱ ହିଁ ବଡ଼ ହୋଇଗଲା ତୋ' ପାଖରେ ? ପୁଅଝିଅ ଦିଇଟାର କଥା ଭାବିଲନି ?

ଆମକୁ ଏମିତି ବୋଲି କାହିଁକି ଭାବୁଛ ମା' ? ମୁଁ କ'ଣ ଚେଷ୍ଟା କରିବାରେ ତ୍ରୁଟି କରିଛି ?

—ହେଲା ଏବେ ସେମାନଙ୍କ ମା'ର ଦୋଷ । କିନ୍ତୁ ତୋ'ର ସେ କଥାଟା ମ୍ୟାନେଜ୍ କରିବାକୁ କୌଣସି ପ୍ରକାର ସାଧ ହେଲା ନାହିଁ ?

—"କୋଉଠି ହେଲା ଆଉ ?......" ଶୋଭନ କହିଲା— ସବୁ କିଛିର ତ ଗୋଟାଏ ସୀମା ଅଛି ଶେଷପର୍ଯ୍ୟନ୍ତ । 'ମ୍ୟାନେଜ୍' କରିବାର ବି ଅଛି ।

ତା'ହେଲେ ଜଣାପଡ଼ୁଛି, ତୁ ତୋ'ର କାମର ଜାଗାକୁ ଚାଲିଯାଉଛୁ, ବୋହୂ ରହିବ ବାପ ଘରେ, ଆଉ ପୁଅଟା ଏଇଠି ଝିଅଟା ସେଇଠି ରହିବେ । ଅର୍ଥାତ୍ ଭାଇଭଉଣୀଙ୍କର ଯେ ଗୋଟାଏ ସୁଖର ସଙ୍ଗଲାଭ ରହିଛି, ବିଚରାମାନେ ସେଥିରୁ ବି ବଞ୍ଚିତ ହେବେ । ତେବେବେଳେ ଝିଅଟା ମା'କୁ ପାଇବ, ପୁଅ ସେତିକି ବି ନୁହେଁ ।

ଟିକିଏ ହାଲୁକା ଗଳାରେ ଶୋଭନ କହିଲା— ସେମିତି ସେ ଯେ ବାପାଙ୍କ ମା'କୁ ପାଉଛି ।

'ତୁନି ହେଲୁ !' ପ୍ରାୟ ଧମକ ଦେଇ ପାରୁଲ୍ କହିଲା— ବାଜେ କଥା ରଖ । ବାପାର ଯେଉଁ ମା'କୁ ସେ ବିଚରା ଜନ୍ମ ହେଲାଠାରୁ ଆଖିରେ ଦେଖିନି କହିଲେ ଚଳେ, ତାକୁ ପାଇ ତ କୃତାର୍ଥ ହୋଇଯିବ ଏକାବେଳେ । ସତରେ ମୁଁ ତା'ର ମୁହଁ ଆଡ଼କୁ ଚାହିଁ ସୁଦ୍ଧା ପାରୁନି । ବୁଢ଼ା ବାପ ମା' ଦି'ଜଣ ସେମାନଙ୍କ ହୃଦୟ-ସମସ୍ୟାକୁ ଏତେ ଜଟିଳ କରି ପକାଇଲେ ଯେ, ଭାବି ଦେଖିଲେନି ପିଲାଗୁଡ଼ାକର ମୁହଁ ତଳକୁ ହୋଇଗଲା ! ଏତେଦିନର ଆନନ୍ଦ, ଆହ୍ଲାଦ, ଗୌରବର

ଜୀବନଠାରୁ ହଠାତ୍ ଯେପରି ତମେମାନେ ସେମାନଙ୍କୁ ଗୋଟାଏ ଦାରୁଣ ଲଜ୍ଜାର, ଦୁଃଖର, ଅପମାନର ଜୀବନ ଭିତରକୁ ଗଡ଼ାଇଦେଲ । ଏ ପୃଥିବୀରେ ସେମାନଙ୍କ ପରିଚୟପତ୍ରଟା କେତେ ମଳିନ ବିବର୍ଣ୍ଣ ହୋଇଗଲା, ସେ ଖବର ରଖିଛ ? ସେମାନେ ଜୀବନରେ କେବେ ତାଙ୍କ ମା' ବାପକୁ କ୍ଷମା କରିପାରିବେ ?

—ପାରିଲେ ତ ଆଶ୍ଚର୍ଯ୍ୟ ହେବି । ପାରିବେନି ।

—ସେଇ ଗ୍ଳାନିର ବୋଝ ସେମାନଙ୍କର ଜୀବନକୁ ଭାରୀ କରି ଦେବନି ?

ସାଧାରଣତଃ ପାରୁଲ୍ କେବେ ଉତ୍ତେଜିତ ହୁଏ ନାହିଁ, କିନ୍ତୁ ଏଇଲେ ପାରୁଲ୍ ମଧ୍ୟ ଉତ୍ତେଜିତ ହେଲା ।

ଶୋଭନ ବିଧ୍ୱସ୍ତ ଗଳାରେ କହିଲା— ଜାଣିଛି ଭାରୀ କରିଦେବ । ଅସହନୀୟ କରିଦେବ । କିନ୍ତୁ ମୁଁ କ'ଣ କରିବି କହ ? ସବୁ ଯୁକ୍ତି ଯେ କହିନି ତା' ତ ନୁହେଁ ।

—ହେଲେ ତମମାନଙ୍କ ବିରୋଧଟା କେଉଁଠି ଘଟିଲା ? କେବେ କୋଉ ଦିନ କୋଉ ସୂତ୍ରରେ ? ଯେମିତି ଜିନିଷଟାକୁ ହାଲୁକା କରି ଦେଖାଇ ଦେଇ ପୁଅର ମନର ଭାରଟାକୁ ଲଘୁ କରିଦେବାକୁ ଚାହେଁ ପାରୁଲ୍ । ଯେମିତି ଦୁଇଟା ଅବୋଧ ପୁଅଝିଅ କଳିଝଗଡ଼ା କରି ନିଜର କ୍ଷତି ଡାକି ଆଣୁଛନ୍ତି, ପାରୁଲ୍ ସେମାନଙ୍କୁ ସମ୍ଭାଳି ଦେବ ।

ଶୋଭନ ହୁଏତ ମା'ର ଏ ମନୋଭାବଟା ବୁଝିଲା, ହୁଏତ ବା ବୁଝିଲାନି, ଭାବିଲା ମା' କଥାଟାର ଗୁରୁତ୍ୱ ଜାଣିପାରୁ ନାହାନ୍ତି ।

ସେଇଥିପାଇଁ ଶୋଭନ ମା' ଆଡ଼କୁ ସିଧାସଳଖ ଚାହିଁ ସ୍ପଷ୍ଟ ଗଳାରେ କହିଲା, ବିରୋଧ ? ସବୁଠାରେ । ବରାବର ଚିରକାଳ ପାଇଁ । ତେବେକେ ସବୁବେଳେ ଚେଷ୍ଟା କରି ଆସିଛି । କିନ୍ତୁ ଶେଷକୁ ଚେଷ୍ଟାରେ ହାରିଗଲି । ସେ କହିଲା ମୁଁ କୁଆଡ଼େ କୌଣସିଦିନ ଚେଷ୍ଟା କରିନି ।

ଗଭୀର ଗାଢ଼ ନିଃଶ୍ୱାସଟିଏ ପକାଇଲା ପାରୁଲ୍ । ଝରକା ବାଟେ ଦୃଷ୍ଟି ପକାଇ ଦେଖିଲା— ଶୋଭନର ପୁଅଟା ଗପ ବହିଟିକୁ ମୋଡ଼ିଦେଇ ଗଙ୍ଗାଆଡ଼କୁ ଚାହିଁ ତୁନିହୋଇ ବସିଛି । ପାରୁଲ୍‌ର ହଠାତ୍ ମନେହେଲା, ୟାଠାରୁ ବଳି କରୁଣ ଦୃଶ୍ୟ ସେ ବୋଧହୁଏ ଜୀବନରେ ଆଉ କେବେ ଦେଖିନି ।

ପାରୁଲ୍ ନିଜ ପୁଅ ଆଡ଼କୁ ମୁହଁ ଫେରାଇ କହିଲା— ହାରିଗଲୁ ?

—ହଁ । ପାରିହେଲାନି ।

ଅନ୍ୟ ପ୍ରସଙ୍ଗକୁ ଆସିଲା, ପାରୁଲ୍ କହିଲା – ତୋ'ପୁଅ ତ କୃଷ୍ଣ-ବିଷ୍ଣୁ ବାପାମାନଙ୍କର ରୀତିରେ ବିଲାତି ସ୍କୁଲରେ ପଢୁଥିଲା, ଏଠି ତା'ର ଦଶା କ'ଣ ହେବ ?

– ଏଇଲେ ଯୋଉ ଦଶାରେ ସେ ପହଞ୍ଚିଛି ସେଥି ସହିତ ମ୍ୟାନେଜ୍ କରିବ । ବୁଢ଼ୀମା'ଙ୍କ ହାତର ବଡ଼ିପାଣି ଖାଇବ, ଆଉ ବଙ୍ଗାଳୀ ସ୍କୁଲରେ ପଢ଼ିବ ।

ଟିକିଏ କଠିନ ମୁହଁରେ କହିଲା ପାରୁଲ୍ – ତା' ଅର୍ଥ ଯୋଉକାଳକୁ ତମେମାନେ ସେକାଳିଆ ବୋଲି ନାକ ଟେକୁଥିଲ, ସେଇ କାଳଠାରୁ ପଦେ ହେଲେ ଆଗେଇ ନାହଁ । ତମେମାନେ ମଧ୍ୟ ସେ ଯୁଗ ଭଳି ପୁଅଝିଅଗୁଡ଼ାକୁ 'ନିଜର ଜିନିଷପତ୍ର' ଛଡ଼ା ଆଉ କିଛି ହେଲେ ଭାବୁନ ? ଅଥବା ତମମାନଙ୍କ ଖେଳଣା କଣ୍ଢେଇ । ସେକାଳରେ ମଧ୍ୟ ତ ଏଇୟା ଥିଲା ? ସେମାନଙ୍କ ମୁହଁକୁ କିଏ ଚାହୁଁଥାଏ ? ସେମାନେ ଯେମିତି ବାପମା'ଙ୍କର ସଉକ୍ ବା ଇଚ୍ଛା ପୂରଣ କରିବାରେ ଉପକରଣ ମାତ୍ର ।

......ନିଜ ନିଜର ସୁବିଧା ଅସୁବିଧା ଯୋଗୁହିଁ ସେମାନଙ୍କର ବ୍ୟବସ୍ଥା କରିବା କଥା, ନୁହେଁ ? କିନ୍ତୁ ଏ ଯୁଗରେ ତ ତମେମାନେ ଅନେକ ବଡ଼ ବଡ଼ କଥା କହିବାକୁ ଶିଖିଛ, ସେମାନଙ୍କ ପାଇଁ ଅନେକ ବ୍ୟବସ୍ଥା, ଅନେକ ଆୟୋଜନ କରୁଛ, ହେଲେ ଦୃଷ୍ଟିଭଙ୍ଗୀଟା କାହିଁ ବଦଳିଲାନି ତ ? ସନ୍ତାନ ପାଇଁ ଯେ ସ୍ୱାର୍ଥତ୍ୟାଗ କରିବା ଦରକାର, ଜିଦ୍ ଅହଙ୍କାର ତ୍ୟାଗ କରିବା ଦରକାର, ଏ କଥା ତ କାହିଁ ଏକାଳର ବାପ ମା' ତମେମାନେ ଭାବୁନ ? ତମମାନଙ୍କ ସୁବିଧାର ଅନୁପାତରେ ସେମାନଙ୍କର ଜୀବନର ଛକ କଟାଯାଉଛି । ଏତେଦିନ ହେଲା ତମେମାନେ ସେମାନଙ୍କୁ ପଦମର୍ଯ୍ୟାଦା ଆଉ ଐଶ୍ୱର୍ଯ୍ୟର ମାପକାଠିରେ ପକାଇ ଖାଇବା, ଶୋଇବା, ପଢ଼ିବା ଖେଳର ପ୍ରତିଟି କଥାରେ 'ସାହେବ' କରି ମଣିଷ କରୁଥିଲା । ହଠାତ୍ ଏବେ ତମମାନଙ୍କର ଇଚ୍ଛା...... ବାସନାର ଛାଞ୍ଚରେ ପକାଇ ତା'ପାଇଁ ଜେଜେମା'ଙ୍କ ହାତ ରନ୍ଧା ବଡ଼ିପାଣି ଆଉ ବସ୍ତାନି କାଖରେ ଧରି ପାଠଶାଳାକୁ ଯିବାର ବରାଦ୍ କରୁଛୁ, ପୁଣି ଯଦି ହଠାତ୍ ଖିଆଲ ହେଲା, ହୁଏତ ମୁଣ୍ଡ ଲଣ୍ଡା କରି କୋଉ ବ୍ରହ୍ମଚର୍ଯ୍ୟ ଆଶ୍ରମକୁ ପଠାଇଦେବୁ, ଅଥବା ଏକାବେଳେ ପଶାକୁ ଓଲଟାଇ ପକାଇ ମୁନିଆ ଜୋତା ଆଉ ଡ୍ରେନ୍ ପାଇପ୍ ପ୍ୟାଣ୍ଟ୍ ପିନ୍ଧାଇ ଆମେରିକାକୁ ଚାଲାଣ କରିବାକୁ ଚାହିଁବୁ ! ତା'ର ବି ଯେ ଗୋଟେ ମନ ବୋଲି ଅଛି, ଦେଖିବୁନି, ଆଉ ସେ ମନରେ ମା' ବାପାଙ୍କ ପାଇଁ କ'ଣ ସଞ୍ଚିତ ହେଉଛି ସେ କଥା ମଧ୍ୟ ଭାବି ଦେଖିବୁନି ?

ଶୋଭନ ଗଭୀର ନିଃଶ୍ୱାସଟିଏ ପକାଇଲା । କହିଲା – ଭାବନି ମା', ଏସବୁ କଥା ମୁଁ ଭାବିନି । ଅଥବା ରେଖାକୁ ବୁଝାଇବାକୁ ଚେଷ୍ଟା କରିନି । କିନ୍ତୁ

ଯାହା କହିଲେ ବି ଯଦି ନ ବୁଝିବ କ'ଣ କରିବି କହ ? ତା'ହେଲେ ପୁଅକୁ ମଧ୍ୟ ତା' ହାତକୁ ବଢ଼ାଇ ଦେଇ ଏକବାରେ ଦେବାଳିଆ ହୋଇଯିବାକୁ ପଡ଼ିବ ।

ପାରୁଲ୍‌ର ମନଟା ବେଦନାରେ ଟଣକି ଉଠିଲା । ଲଜ୍ଜା ହେଲା ନିଜର ବକ୍ତବ୍ୟ ପାଇଁ, ସତରେ ନିତାନ୍ତ ନିରୁପାୟ ହୋଇ ତ ମା' ପାଖକୁ ଧାଇଁଆସିଛି ବିଚରା । ଏଠି ତ ଅହମିକାକୁ ବଡ଼ କରି ଦେଖିନି । ଅତଏବ ପାରୁଲ୍ ପରିସ୍ଥିତିଟାକୁ ହାଲୁକା କରିବାକୁ ଚେଷ୍ଟା କଲା, କହିଲା— ହେଲେ ସେ ବୋହୂର ମଧ୍ୟ କାହିଁକି ଏମିତି ଅସହ୍ୟ ଜିଦ୍ କହିଲୁ ? ତୁ ଏ ବୁଢ଼ା ବୟସରେ ଆଉ କାହା ସ୍ତ୍ରୀର ପ୍ରେମ-ଫ୍ରେମରେ ପଡ଼ିଯାଇନୁ ତ ?

ଶୋଭନ ହଠାତ୍ ମୁଣ୍ଡ ତଳକୁ କଲା । ତା'ପରେ ଆସ୍ତେ କହିଲା, ଶ୍ରଦ୍ଧା ବୋଲି ମଧ୍ୟ ଗୋଟାଏ ବସ୍ତୁ ଥାଏ । ସେ ସେଇଟାକୁ ମଧ୍ୟ ବରଦାସ୍ତ କରିପାରୁନି ମା' ।

ନିର୍ନିମେଷ ଦୃଷ୍ଟିରେ ପାରୁଲ୍ ପୁଅର ମୁହଁ ଆଡ଼କୁ ଚାହିଁରହିଲା । ସେ ଯେମିତି ହଠାତ୍ ରହସ୍ୟର ମୂଳ ଦ୍ୱାରଟିକୁ ଖୋଜି ପାଇଗଲା । ତେବେ କଥାଟା କହି ପକାଇଲାନି । କହିଲା— ସେଇଟା କ'ଣ ଗୋଟାଏ ବିରୋଧର ବସ୍ତୁ ?

—ଖାଲି ସେଇଟା କେବଳ ନୁହେଁ କହିଲି ପରା, ପ୍ରତିପଦରେ ରୁଚିର ଅମେଳ, ଏ ଜୀବନ ତା'ର ଅସହ୍ୟ ହୋଇଯାଇଛି । ମୁଁ ସଙ୍କୀର୍ଣ୍ଣଚିତ୍ତ, ସେ ଉଦାର, ମୁଁ ଗ୍ରାମ୍ୟ, ସେ ଆଧୁନିକ । ମୁଁ ଭଗବାନଙ୍କଠାରେ ବିଶ୍ୱାସୀ, ତା' ମତରେ ସେଇଟା ଗୋଟାଏ କୁସଂସ୍କାର ।

× × × × ×

ତା'ପରଦିନ ରାତିରେ ପାରୁଲ୍ ତା' ଚିଠି କାଗଜର ପ୍ୟାଡ୍‌ଟା ନେଇ ବସିଲା ।

ଶୋଭନ ପୁଅକୁ ଛାଡ଼ିଦେଇ ଚାଲିଯାଇଛି, କାରଣ ତା'ର ଛୁଟି ନାହିଁ ।

ପିଲାଟା ପାରୁଲ୍‌ର ପଟାଖଟକୁ ଲାଗି ଆଉ ଗୋଟିଏ ସରୁ ଖଟ ଉପରେ ଶୋଇଛି । ମଶାରି ଭିତରୁ ଜଣାପଡୁନି ସେ ଶୋଇପଡ଼ିଛି ନା ଚେତା ଅଛି ।...... ଏବେ ଖୋଲା ଝରକା ବାଟେ ଗଙ୍ଗାନଦୀର ପବନ ଆସି ମଶାରିଟାକୁ ଦୋହଲାଉଛି, କିନ୍ତୁ ସବୁଦିନ ପବନ ବହିବନି, ଗୁଳୁଗୁଳିର ଦିନ ଆସିବ, ସେଦିନ ତା'ର କ'ଣ ହେବ ? ଜନ୍ମରୁ ଯାହାର ବିଜୁଳି ପଙ୍ଖାର ପବନ ଖାଇବା ଅଭ୍ୟାସ ଅଛି ! ପାରୁଲ୍‌ର ଏ ମଫସଲରେ ଥିବା ଘରଟିରେ ତ ସେ ଜିନିଷଟା ନାହିଁ !

ଖାଲି ସେ ଜିନିଷଟି କାହିଁକି, ଅନେକ ଅନେକ ଜିନିଷ ହିଁ ନାହିଁ ଯେଉଁଥିରେ ସେ ଅଭ୍ୟସ୍ତ । ପିଲାଟିର ମନଟା କ'ଣ ପ୍ରତି ମୁହୂର୍ତ୍ତରେ ବିଦ୍ରୋହୀ ହୋଇପଡ଼ିବନି ? ଅଥବା ବିଚରା ନିଜକୁ ହତଭାଗ୍ୟ ଭାବି ହୀନମ୍ମନ୍ୟତାର ଶିକାର ହୋଇ ପଡ଼ିବନି ?

—"ମୋର ମନେହେଉଛି ସେଇୟା ହେବ" ଲେଖିଲା ପାରୁଲ୍, 'ଏଭଳି ଚୁପ୍‌ଚାପ୍ ରହିଥିବା ପିଲାମାନେ ସେଇୟା ହୁଅନ୍ତି । ପୃଥିବୀର ପ୍ରାୟ ସବୁ ସମାଜରେ ଏମାନେ ଅଛନ୍ତି, ଏହି ହତଭାଗ୍ୟଙ୍କ ଦଳ, ଆମମାନଙ୍କ ସମାଜକୁ ମଧ୍ୟ ଆସିଗଲେ । ପ୍ରତିରୋଧର ଉପାୟ ନାହିଁ । ହେଲେ ବକୁଳ, ଆମେମାନେ କ'ଣ ସ୍ତ୍ରୀଲୋକମାନଙ୍କର ଏଇ ସ୍ୱାଧୀନତାର ହିଁ ସ୍ୱପ୍ନ ଦେଖିଥିଲେ ? ଆମେ, ଆମର ମା'-ଆଈ ହେରିକା ? ତୁ ତ ଗଳ୍ପ ଉପନ୍ୟାସ ଲେଖୁଛୁ, କେତେ ଜୀବନ ତିଆରି କରୁଛୁ, ମୋର ଅଭିଜ୍ଞତା ହେଉଛି ପ୍ରକୃତ ମଣିଷଙ୍କୁ ନେଇ, ସେଥିପାଇଁ ଆଜିକାଲି ଯେମିତି ଭାବି ଭାବି ବଳ ପାଉ ନାହିଁ । ଏ ଯୁଗ କ'ଣ ବ୍ୟକ୍ତି-ସ୍ୱାଧୀନତା ଆଉ ସ୍ତ୍ରୀଲୋକମାନଙ୍କର ଅଧିକାର ପ୍ରତିଷ୍ଠାର ବିନିମୟରେ ଏ ଦେଶରେ ମଧ୍ୟ ସେଇ ଗୋଟାଏ ହତଭାଗ୍ୟ ଜାତି ସୃଷ୍ଟି କଲା ? ପୃଥିବୀର ସମସ୍ତ ସଭ୍ୟ ଜାତିମାନେ ଯାହାକୁ ନେଇ ଦୁଶ୍ଚିନ୍ତା ଭୋଗୁଛନ୍ତି ! ଯେଉଁ ହତଭାଗ୍ୟମାନେ ପିଲାଦିନେ ବାଲ୍ୟ ସମୟରେ ଶିଶୁ ଅବସ୍ଥାରେ ସେମାନଙ୍କ ଜୀବନର ପରମ ଆଶ୍ରୟ ହଜାଇ ଦିଅନ୍ତି, ସେମାନେ ଭବିଷ୍ୟତରେ କ୍ଷମାହୀନ ନିଷ୍ଠୁରତାରେ କଠିନ ହୋଇଯିବେ, ଉଚ୍ଛୃଙ୍ଖଳ ହେବେ, ସ୍ୱେଚ୍ଛାଚାରୀ ହେବେ, ସମାଜଦ୍ରୋହୀ ହେବେ, ଅଥବା ଗୋଟାଏ ହୀନମ୍ମନ୍ୟତାରେ ଭୋଗି ଭୋଗି ଜୀବନର ଆନନ୍ଦ ହଜାଇବେ, ଉତ୍ସାହ ହରାଇବେ, ବିଶ୍ୱାସ ହରାଇବେ ।

ବିଶ୍ୱାସ ହରାଇଲା ଭଳି ଭୟଙ୍କର ଆଉ କ'ଣ ଅଛି କହ ? କେତେଟାଦିନ ଆଗରୁ ମଧ୍ୟ ଯୋଉ ପୁଅଟା ଜାଣି ନ ଥିଲା, ମୋର ଏ ରାଜପୁତ୍ରର ପୋଷ୍ଟଟା ଚୋରାବାଲି ଉପରେ ପ୍ରତିଷ୍ଠିତ, ମୋର ରାଜସୌଭାଗ୍ୟ ଆବୁହୁସେନ୍‌ର ରାଜ୍ୟ ପରି ଗୋଟାଏ ଫୁଙ୍କାରେ ନିଶ୍ଚିହ୍ନ ହୋଇଯିବ, ଆଜି ହଠାତ୍ ଏ ଅବସ୍ଥାରେ ପଡ଼ିଯାଇ ସେ ଯଦି ପୃଥିବୀ ଉପରେ ଆଉ ବିଶ୍ୱାସ ରଖି ପାରିବନି, ତାକୁ କେମିତି ଦୋଷ ଦେବି ? ଭଗବାନଙ୍କ ହାଣକୁରାଢ଼ି ମଧ୍ୟ ଅବସ୍ଥାରେ ଅସାମଞ୍ଜସ୍ୟ ସୃଷ୍ଟି କରେ, କିନ୍ତୁ ସେଥିରେ ଦୁଃଖ ଥାଏ, ବେଦନା ଥାଏ, ହୁଏତ ଏକପ୍ରକାର ଲଜ୍ଜା ମଧ୍ୟ ଥାଏ, କିନ୍ତୁ ଅପମାନ ନ ଥାଏ, ଗ୍ଲାନି ନ ଥାଏ ।

ସେ ଯେତେବେଳେ ଭାବିବାକୁ ଯିବ ତା'ର ଏ ଦୁର୍ଦ୍ଦଶା ପାଇଁ ଦାୟୀ କେବଳ ତା'ରି ବାପ ମା', ଯେଉଁମାନଙ୍କ ପାଖରେ ଏପର୍ଯ୍ୟନ୍ତ ନିତାନ୍ତ ନିଶ୍ଚିନ୍ତ ହୋଇ କଟାଇ ଆସୁଥିଲା ସେ, ସେତେବେଳେ ତା' ଭିତରଟା କି ଜ୍ୱାଳାରେ ଜଳିବ ଭାବିଲୁ ।

ତୋ'ର ମନେଅଛି ବକୁଳ, ଯେଉଁଦିନ ହିନ୍ଦୁ ବିବାହରେ ବିଚ୍ଛେଦର ଆଇନ୍ 'ପାସ୍' ହେଲା, ସେଦିନ ମୁଁ ଥଟ୍ଟା କରି ଆକ୍ଷେପ କରିଥିଲି, ଆହା ଆମ

ମା'ର ଅମଳରେ ଯଦି ଏଇଟା ହେଇଥାନ୍ତା, ତା'ହେଲେ ସେ ଭଦ୍ରମହିଳା ସାରାଜୀବନ ଧରି ଏମିତି ନିଆଁର ଘେର ଭିତରେ ପୋଡ଼ି ମରି ନ ଥାନ୍ତେ । ଥଟ୍ଟା, ତେବେକେ ଆକ୍ଷେପର କେଉଁଠାରେ ଟିକିଏ ସତ୍ୟ ମଧ୍ୟ କ'ଣ ନ ଥିଲା ? ଆଜି ମନେ ହେଉଛି ଆମର ମା'ଙ୍କ ଜୀବନରେ ସେଭଳି ସୁଯୋଗ ଆସିଥିଲେ ଆମମାନଙ୍କର କି ଦଶା ହୋଇଥାନ୍ତା ?

ଶୋଭନ ଚାଲିଯିବା ପରଠାରୁ ପିଲାଟାର ମୁହଁ ଆଡ଼କୁ ମୁଁ ଚାହିଁପାରୁନି । ଶୁଣିଥିଲି ସାନ ଭଉଣୀଟାକୁ ପ୍ରାଣପରି ଭଲ ପାଉଥିଲା, ସେଇଟାକୁ ତା'ଠାରୁ ବିଚ୍ଛିନ୍ନ କରି ଦେଇଛନ୍ତି, କି ନିଷ୍ଠୁରତା ! ନିଜର ପୁଅକୁ ଏକ ହୃଦୟହୀନ ପିଶାଚ ମନେହେଉଛି ମୋର ।

ଅଥଚ କାରଣଟା କ'ଣ ? ଖାଲି ଜିଦ୍, ଅହମିକା !

ଖାଲି ରୁଚିର ଅମେଳ, ଖାଲି ମନର ଅମେଳ । ଅର୍ଥାତ୍ ସହିସମ୍ଭାଳି ରହିବାରେ ଅକ୍ଷମତା । କିନ୍ତୁ ସେହି ମତ ନ ମିଶିବାର କାରଣଗୁଡ଼ାକ ଯଦି ଶୁଣିବୁ ମନେ ହେବ ସବୁଯାକ ଖାଲି ଥଟ୍ଟା ।

ଜଣେ ଚାହିଁଛି ଜୀବନଯାତ୍ରା ପ୍ରଣାଳୀଟା ସମ୍ପୂର୍ଣ୍ଣ ପାଶ୍ଚାତ୍ୟ-ଧର୍ମୀ ହେଉ, କିନ୍ତୁ ସେଥିରେ ଟିକିଏ ପ୍ରାଚ୍ୟର ଆଭାସ ମିଶା ହୋଇଥାଉ । ପୁଅଝିଅମାନେ ସାହେବ ହୁଅନ୍ତୁ ସେଥିରେ କ୍ଷତି ନାହିଁ, କିନ୍ତୁ ସେମାନେ ଯେ ପ୍ରକୃତରେ ଭାରତୀୟ, ସେ କଥାଟା ଯେମିତି ଭୁଲି ନ ଯାଆନ୍ତି ।

ଅତଏବ ପ୍ରଥମ ଜଣକ କହିଛି, ଖେଚେଡ଼ି ଚଳିବନି, ଯାହା ହେବ ତା' ଏକାପରି ହେବ, ଅପରଜଣକ କହିଛି, ଜନ୍ମସୂତ୍ରଟା ଆଡ଼େଇ ଦେଇ ପାରିବନି, ସେଇଟାତ ବଦଳିବାର ବସ୍ତୁ ନୁହେଁ ।

ଶେଷପର୍ଯ୍ୟନ୍ତ ବିରୋଧଟା ଯାଇ ପହଞ୍ଚିଛି ସଂଘର୍ଷରେ ।

ଗୋଟାଏ ଦିଗରୁ ଦେଖିଲେ ଦୋଷଟା ମୋର ପୁଅର ।

ଶତ୍ରୁକୁ ମୂଳରୁ ନାଶ କରିବାକୁ ହୁଏ । ପ୍ରଥମ ରାତିରେ ହିଁ ବିଲେଇଟାକୁ କାଟି ଦେବାକୁ ପଡ଼େ ।

ପ୍ରଥମେ ଆତ୍ମମହିମା ଅଥବା ଉଦାରତା ଦେଖାଇବାକୁ, ଅଥବା ନିତାନ୍ତ ମୋହାଚ୍ଛନ୍ନ ବଶ୍ୟତାରେ ବିଲେଇକୁ ତା' ଇଚ୍ଛା ଅନୁସାରେ ଖେଳିବାକୁ ଦେଇଛ ତମେ, ଏଇଲେ ସେ 'ପତ୍ରରେ ମୁହଁ ଲଗାଇଲା' ବୋଲି ଖଣ୍ଡା ବାହାର କରି ହାଣିବାକୁ ଚାହିଁଲେ ଚଳିବ କେମିତି ?

ଭଲପାଇବାର ବଶ୍ୟତା ହେଉଛି ଏକ ପ୍ରକାର, ଆଉ ନିରୁପାୟର ଭୂମିକାରେ ଅନ୍ଧ ଆତ୍ମସମର୍ପଣ ହେଉଛି ଆଉ ଏକ ପ୍ରକାର । ଏ ଯୁଗର ପୁରୁଷମାନେ ସେହି ବିଭେଦତାର ସୀମାରେଖା ନିର୍ଣ୍ଣୟ କରିବାକୁ ଅକ୍ଷମ ହୋଇ ତ ଜୀବନ ଭିତରକୁ ଅନିଷ୍ଟକୁ ଡାକି ଆଣୁଛନ୍ତି ।

ମନେହେଉଛି ସମାଜର ଚକଟା ହଠାତ୍ ଯେପରି ଆମୂଳ ଘୂରିଯାଇଛି । ଯେଉଁଠି ହଲିଲେ କାର୍ଯ୍ୟଟା ଠିକ୍ ହୋଇଥାନ୍ତା, ସେଠାରେ ଏହି ଏକାବେଳକେ ଓଲଟିଯିବାଟା ଆଖିରେ କେମିତି ଧକ୍କା ମାରୁଛି ।

ଜାଣେନି ମୋର ବଡ଼ପୁଅ ଘରେ ପୁଣି ଏହି ଢେଉ ଆସି ବାଜିବ କି ନାହିଁ । ସେଠାରେ ମଧ୍ୟ ତ ଦିହିଁଙ୍କ ଭିତରେ ପଡୁନି, ଆଉ ସେହି ପିଲାମାନଙ୍କୁ ନେଇ । ମୋହନର ମତରେ– ପୁଅଝିଅଙ୍କର ଦୋଷ ତ୍ରୁଟି ହେଲେ ବୁଝାଇ ଶିକ୍ଷା ଦେଇ ସଂଶୋଧନ କରିବା ଉଚିତ, ମୋହନର ସ୍ତ୍ରୀର ମତରେ ମାଡ଼ ଦେଇ ସିଧା କରିବା ହିଁ ହେଉଛି ଏକମାତ୍ର ଉପାୟ । ଏ ବିଷୟରେ ସେ ଆମର ଜେଜେମା, ବୁଢ଼ୀ ଜେଜେମା'ଙ୍କ ସହିତ ଏକମତ । ଅସଲରେ 'ଗ୍ରାମ୍ୟତା' ବସ୍ତୁଟା ଗୋଟାଏ ଚରିତ୍ରଗତ ବ୍ୟାପାର । ଏଇଟା ସହର ଜୀବନର ପରିବେଶ ପାଇଲେ ହିଁ ନିଶ୍ଚିହ୍ନ ହୋଇଯାଇ ନାହିଁ ।

ଅଥଚ, ପୁଣି ଦେଖୁଛି, ମୋହନ ପୁଅକୁ ଟିକିଏ କଡ଼ା କଥା କହି ଶାସନ କରିବାକୁ ଗଲେ, ତା ସ୍ତ୍ରୀର ପ୍ରାଣଟା ଏମିତି ଫାଟିଯାଏ ଯେ ସେହିକ୍ଷଣି ପୁଅକୁ ମୁଣ୍ଡ ଉପରକୁ ଟେକି ଦେଖେଇ ଦେଖେଇ ଆଦର କରିବାକୁ ବସିଯାଏ ସେ । ବାପ-ମା'ର ଏହି ଦ୍ୱନ୍ଦ୍ୱଯୁଦ୍ଧରେ, ସେମାନେ ବେଶ୍ ମଜା ଟିକିଏ ପାଆନ୍ତି । ପୁଣି କେତେବେଳେ ସେମାନଙ୍କର ଅନାଥ ଦଶା ଘଟେ ।

ପ୍ରତି ପଦରେ ବିରୋଧ । ଜଣକର ମତରେ ସେମାନଙ୍କ ଖାଇବା ନେଇ ଜୁଲୁମ କରିବା, ପୀଡ଼ନର ହିଁ ନାମାନ୍ତର, ଅନ୍ୟ ଜଣକ ମତରେ ଅହରହ ଜଗତର ଯାବତୀୟ ପୁଷ୍ଟିକର ଖାଦ୍ୟ ସେମାନଙ୍କର ଗୋଟିଏ କ୍ଷୁଦ୍ର ଉଦର-ଭାଣ୍ଡ ଭିତରକୁ ଚାଲାଣ କରିଦେବାବେଳେ ସବୁବେଳେ ଜୁଲୁମ କରିବା ହିଁ ହେଉଛି ମା'ର କର୍ତ୍ତବ୍ୟ ।

ଅନ୍ୟପଟେ ମୋହନର ଇଚ୍ଛା, ତା'ର ଅଧୀନମାନେ ଅଫିସରେ ହିଁ ବିରାଜ କରନ୍ତୁ । 'ବସ୍'ଙ୍କ ଘରକୁ ଆସି 'ବସ୍' ଗୃହିଣୀଙ୍କୁ ଭାଉଜ ବୋଲି ଡାକି ଚାକରପଣିଆ ନ କରନ୍ତୁ । ଅଥଚ ମୋହନର ସ୍ତ୍ରୀର ଇଚ୍ଛା ତା' ସ୍ୱାମୀର ଅଧୀନସ୍ଥ ସମସ୍ତେ ଆସି ତା' ପାଦତଳେ ପଡ଼ନ୍ତୁ । ଯେମିତି 'ବସ୍' ଗୃହିଣୀ ମରିବାକୁ କହିଲେ ମରିବେ, ବଞ୍ଚିବାକୁ କହିଲେ ବଞ୍ଚିବେ ।

ମୋହନର ମତରେ ଯାହା କରିବ ମାତ୍ରା ଦେଖି କରିବ । ବନ୍ୟାତ୍ରାଣ ତହବିଲ୍‌ରେ ବେଶୀ ଟଙ୍କା ଦେବାକୁ ଚାହଁ ତ ଦିଅ, ସ୍ଲୋଗାନ୍ ଦେଇ ରାସ୍ତାରେ ଓହ୍ଲାଇପଡ଼ିବାର ଅଥବା ଅଭିନୟ କରିବାକୁ ଷ୍ଟେଜ୍‌ରେ ଠିଆ ହେବାର ଦରକାର କ'ଣ ? ସ୍ତ୍ରୀର ମତରେ ସେଇଟାହିଁ ଜରୁରି ଦରକାର ।

ମୋହନ ଯଦି କହେ, ସ୍ତ୍ରୀ ରାତି ଦଶଟା ପର୍ଯ୍ୟନ୍ତ ବାହାରେ ଆଡ୍ଡା ଦେବାଟା ଅତି ବେଶୀ ହୋଇଯାଇଛି, ସ୍ତ୍ରୀ ତା'ପରଦିନ ଏଗାରଟାକୁ ଘରକୁ ଫେରିବ ତା'ର ମହିଳାସମିତିର କାମ ଥିଲା ବୋଲି ଆଳ କରି ।

ହେଲେ ବି ମୋହନର ସ୍ତ୍ରୀ କୁଆଡ଼େ ତା'ର ବନ୍ଦୀ-ଜୀବନକୁ ଧିକ୍କାର ଦିଏ !

ଏଇଟା ଖାଲି ମୋ ଘରର କଥା ନୁହେଁ, ପ୍ରାୟ ସବୁ ଘରର କଥା । ହୁଏତ କଳସୀ ଭିତରୁ ଦୈତ୍ୟକୁ ବାହାର କଲେ ଏହି ଦଶା ହିଁ ଘଟେ ।

ଅଥବା, ଦୈତ୍ୟଟା କୌଣସିମତେ ବାହାରିଥାନ୍ତା, ଏ ଯୁଗର ହତଭାଗ୍ୟମାନେ ସେଇଟାକୁ ହିଁ ଲୋକଚକ୍ଷୁରୁ ଆଢୁଆଳ କରିବା ପାଇଁ ଏକାବେଳେ ଅନୁଗତ ସ୍ୱାମୀର ଭୂମିକା ଅଭିନୟ କରି ଚାଲନ୍ତି, ଯେତେବେଳ ପର୍ଯ୍ୟନ୍ତ ଅଭିନୟଟା ଅସହ୍ୟ ହୋଇ ନ ଯାଇଛି ।

ଗୋଟିଏ ଯୁଗର ପ୍ରାୟଶ୍ଚିତ୍ତ ଆଉ ଗୋଟିଏ ଯୁଗ କରେ, ଏହାହିଁ ବୋଧହୁଏ ଇତିହାସର ନିୟମ । କିନ୍ତୁ ଇତିହାସଟା ଯେତେବେଳେ ପ୍ରିୟଜନଙ୍କ ଜୀବନରେ ଆବର୍ତ୍ତିତ ହୁଏ, ସେତେବେଳେ ନିର୍ଲିପ୍ତର ଭୂମିକାରେ ରହିବା କଷ୍ଟକର । ଭାବିଥିଲି ସେଥିରେ ଦକ୍ଷ ହୋଇଯାଇଛି । ଦେଖୁଛି ଧାରଣାଟା ମଜବୁତ୍ ନୁହେଁ ।

ସାନ ମଝିଆନାନୀର ଚିଠି ପାଇବା ମାତ୍ରେ କେବେହେଲେ ବକୁଳ ଠିଆହୋଇ ପଢୁ ନ ଥିଲା, କିନ୍ତୁ ଆଜି ପଢୁଥିଲା, ଲେଟର୍ ବାକ୍ସଠାରୁ ଟିକିଏ ଘୁଞ୍ଚି ଆସି ପଢୁଥିଲା । ଆଜି ତା'ର ମନେହେଲା ହୁଏତ ଗୋଟିଏ ଭଲ ଖବର ବହନ କରି ଚିଠିଟି ଆସିଛି । ହୁଏତ ଚିଠି ଖୋଲିଲାମାତ୍ରେ ଦେଖିବ– 'ପୋଡ଼ାମୁହାଁ ଝିଅଟା ହଠାତ୍ ଆସି ହାଜର ହୋଇଛିଲୋ ବକୁଳ ! ଦେଖି ପ୍ରାଣଟା ଥଣ୍ଡା ହୋଇଗଲା । ସେଥିପାଇଁ ସାଙ୍ଗେ ସାଙ୍ଗେ ଚିଠି ଲେଖିବାକୁ ବସିଗଲି ।

ଏହି ଧରଣର ଟିକିଏ ଆଶା ନେଇ ତରବରରେ ଆଖି ବୁଲାଇବାକୁ ଯାଇ ବକୁଳ ଯେମିତି ଭୂଇଁଟା ସଙ୍ଗେ ଅଟକିଗଲା । ଏ କି ଖବର ! ଏ କେଉଁ ଧରଣର କଥା !

ତଳମହଲାର ବସିବା ଘରଟାରେ ବସିପଡ଼ିଲା ବକୁଳ, ଚିଠିଟାକୁ ଆଉ ଥରେ ଓଲଟାଇ ଦେଇ ଆରମ୍ଭରୁ ପଢ଼ିବାକୁ ଆରମ୍ଭ କଲା, ପୁଣି କିଛିଟା ପଢ଼ି ମୁଦି ରଖିଲା ।

ମନେପଡ଼ିଲା ବିବାହ ବିଚ୍ଛେଦ ବିଲ୍ ଯେତେବେଳେ ପାସ୍ ହେଲା, ସେ କଥାଟା ମଝିଆନାନୀ ଲେଖିଥିଲା । ଲେଖିଥିଲା– "ଆମର ମା' ବଞ୍ଚି ଥାଉ ଥାଉ ଯଦି ଏ ଆଇନଟା ଚାଲୁ ହୋଇଥାନ୍ତାଲୋ ବକୁଳ ! ଭଦ୍ରମହିଳା ହୁଏତ–" କିନ୍ତୁ ପ୍ରୟୋଜନ ଯେଉଁଠାରେ ତୀବ୍ର, ଆଇନ୍‌ର ସୁବିଧା କ'ଣ ସେଠା ପର୍ଯ୍ୟନ୍ତ ପହଞ୍ଚେ ? ସେଇ 'ସୁଯୋଗ' ବସ୍ତୁଟା ତ ଅପବ୍ୟବହାରରେ ହିଁ ବେଶୀ ବ୍ୟବହାର ହୁଏ । ନ ହେଲେ ଶୋଭନର ସ୍ତ୍ରୀ–

ଭାବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା, ହଠାତ୍ ବାହାରେ ଏକାବେଳେ ଗୋଟାଏ ଗଣ୍ଡଗୋଳ ଶୁଣାଗଲା । ଅନେକ କଣ୍ଠସ୍ୱର ଏକାସଙ୍ଗେ କଳରବ କରି ହସୁଛନ୍ତି, ହୋ ହା ହେଉଛନ୍ତି, କାହାକୁ ଯେପରି ଡାକୁଛନ୍ତି ।

ପାଖର ଖୋଲାଦ୍ୱାର ବାଟେ ଚାହିଁ ଦେଖିଲା ବକୁଳ, ଗୋଟିଏ ଖୋଲା ଟ୍ରକ୍‌ରେ ଭର୍ତ୍ତି ହୋଇ ଦଳେ ପୁଅଝିଅ ଆସି ଏ ଘରର ସାମନାରେ ହିଁ ଗାଡ଼ିଟାକୁ ଅଟକାଇଛନ୍ତି । ସେମାନଙ୍କର ସମସ୍ତଙ୍କ ହାତରେ ଖଣ୍ଡେ ଲେଖାଏଁ ରଙ୍ଗିନ୍ ରୁମାଲ, ଉର୍ଦ୍ଧ୍ୱବାହୁ ହୋଇ ସେମାନେ ସେଇ ରୁମାଲ ଉଡ଼ାଇ ଫର୍ ଫର୍ କରି ହଲାଉଛନ୍ତି, ଆଉ ଗୋଟିଏ ଦୁର୍ବୋଧ ଶବ୍ଦର ଚିତ୍କାର କରି କାହାକୁ ଯେପରି ଡାକୁଛନ୍ତି ।

ସେମାନେ କିଏ ବକୁଳ ବୁଝି ପାରିଲାନି ।

ସେମାନଙ୍କର ସାଜସଜ୍ଜା ବା ଏମିତି ଅରୁଚିକର କାହିଁକି ? ପୁଅଗୁଡ଼ାକ ଟାଇଟ୍ ଟ୍ରାଉଜର ଉପରେ ଗୋଟାଏ ଲେଖାଏଁ ବହୁବର୍ଣ୍ଣ ରଞ୍ଜିତ କଲର୍ ଥିବା ଗେଞ୍ଜି ପିନ୍ଧିଛନ୍ତି, ସେଇଟା ମଧ ପୁଣି ଏମିତି ଟାଇଟ୍ ଯେ ଭାବି ଅବାକ୍ ଲାଗୁଛି ମୁଣ୍ଡ ଗଳାଇ ପିନ୍ଧି ଦେହଟାକୁ ଜାମାଟାର ପ୍ରତି ଖୋପରେ ନିଜକୁ ପୂରାଇଛନ୍ତି କେମିତି ! ଆଉ ଝିଅଗୁଡ଼ାକ ?

ବକୁଳର ଇଚ୍ଛା ହେଲା ଆଖି ଦୁଇଟା ବୁଜିପକାଇବାକୁ । କେତୋଟି ଇଞ୍ଚ କନାରେ ତିଆରି ଯେଉଁ ବ୍ଲାଉଜଗୁଡ଼ାକ ସେମାନେ ପିନ୍ଧିଛନ୍ତି, ସେଥିର ହାତ ଆଉ ବେକ ଏତେବେଶୀ କଟା ହୋଇଯାଇଛି ଯେ ମନରେ ପ୍ରଶ୍ନ ଦେଖା ଦେଉଛି ଏଇ କେତେଟା ଇଞ୍ଚ କନା କାହିଁକି ଖର୍ଚ୍ଚ କଲେ ? ଆଉ ଏମାନେ କ'ଣ ଏପର୍ଯ୍ୟନ୍ତ ଶାଢ଼ୀ ପିନ୍ଧିବାକୁ ଶିଖିନାହାନ୍ତି ? ତା' ନ ହେଲେ ଏମିତି ଅଦ୍ଭୁତ ରକମର ଶିଖିଲେ କାହିଁକି ? ଅଣ୍ଟାର ବନ୍ଧନ ଅଣ୍ଟାଠାରୁ ଖସିଯାଇ ବେଶ୍ କେତେଦୂର ଓହ୍ଲାଇପଡ଼ି ଭିତରର ସାୟାଟାକୁ ଦୃଶ୍ୟମାନ କରିଦେଇଛି, କାନିର ଯେଉଁ ସାମାନ୍ୟ କୋଣଟି କାନ୍ଧରେ ରହିଥିବା କଥା, ସେହି ଟିକକ କାନ୍ଧରୁ ଖସିଯାଇ ହାତ ଉପରେ ପଡ଼ିଛି, ମୁଣ୍ଡର ବାଳ ନୁଖୁରା, ହାତ ଲଣ୍ଡା, ଜଣେ

ଦି'ଜଣଙ୍କ କାନରେ ଏଡ଼େ ବଡ଼ ବଡ଼ ଝୁମୁକା ଝୁଲୁଛି ଯାହା ସେହି ଲଣ୍ଡା ହାତ ସଙ୍ଗେ ଅସୁନ୍ଦର ଦିଶୁଛି, ମାନୁ ନାହିଁ ।

ହାତ ଟେକି ରୁମାଲ ଉଡ଼ାଇବା ଆଉ ଉଲ୍ଲାସଭଙ୍ଗୀ ଫଳରେ ବୋଧହୁଏ ବେଶବାସ ଏଭଳି ଅସଂବୃତ, ମନେହେଉଛି ସେହି ସ୍ୱଳ୍ପାବୃତ ଦେହଟା ବୋଧହୁଏ ଏହିକ୍ଷଣି ପୂରା ଅନାବୃତ ହୋଇପଡ଼ିବ ।

ଆଉ ମଥାର କେଶଗୁଡ଼ିକ ? ଜୀବନରେ ତେଲ ତ ଦୂରର କଥା, ପାନିଆ ମଧ ବାଜିନି ଯେମିତି ।

ଏମାନେ କିଏ ?

ଏମାନଙ୍କ ଭଙ୍ଗୀ ବା ଏମିତି ଅଶ୍ଳୀଳ କାହିଁକି ? ଦେଖିଲେ ତ ଭଦ୍ରଘରର ପୁଅଝିଅ ବୋଲି ମନେହେଉଛନ୍ତି । ଭଦ୍ରଘରର ଝିଅପୁଅମାନେ ଏଭଳି କୁତ୍ସିତ ଅଙ୍ଗଭଙ୍ଗୀ ମାଧ୍ୟମରେ ଉଲ୍ଲାସ ପ୍ରକାଶ କରନ୍ତି ? ଆଉ ସେ ଚିତ୍କାର ! ଶିଆଳ ଡାକ ପରି ଗୋଟାଏ ବିଚିତ୍ର 'ହୁ' ଧ୍ୱନି କରି କରି ସାରା ରାସ୍ତାଟାକୁ ଯେପରି ମୁହୂର୍ତ୍ତକରେ ସଚକିତ କରିପକାଇଲେ ସେମାନେ ।

ହୁଏତ ଉଦ୍ଦେଶ୍ୟଟା ସେଇୟା ।

ସେମାନଙ୍କର ପାର୍ଶ୍ୱ ବଳୟରେ ଯେଉଁମାନେ ରହିଛନ୍ତି ସେମାନଙ୍କୁ ସଚକିତ କରିଦେବାକୁ, ସେମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ । ସେଇଟା ହିଁ ଲକ୍ଷଣୀୟ ହେବାର ପଦ୍ଧତି ତାଙ୍କର ।

ଏ ଧରଣର ଲଗାମ୍-ଛଡ଼ା ଉଲ୍ଲାସଧ୍ୱନି ଏକମାତ୍ର ଖେଳପଡ଼ିଆରେ ହିଁ ଦେଖାଯାଏ, ଏଭଳି ଉଲ୍ଲାସଭଙ୍ଗୀ ଦୁର୍ଗାପୂଜାର ବିସର୍ଜନ ସମୟରେ ହେଉଥିବା ଧୁବୁଚି ନାଚରେ ଦେଖାଯାଏ !

କିନ୍ତୁ ଏ ଘରର ଦୁଆରମୁହଁରେ ଏମାନେ ଅଟକିଛନ୍ତି କାହିଁକି ? କାହାକୁ ଡକାଡକି କରୁଛନ୍ତି ?

ସେମାନଙ୍କ ବେଶଭୂଷା, ଆଚରଣ-ଭଙ୍ଗୀରୁ କୌଣସି ରାଜନୈତିକ ପାର୍ଟିର ବୋଲି ମନେ ହେଉ ନାହିଁ, ନିହାତି ଗୋଟାଏ ଅଭବ୍ୟ ବେପରୁଆ ହୋ ହା କରୁଥିବା ଦଳ । ଦଳବାନ୍ଧି କେଉଁଠାକୁ ଯାଉଛନ୍ତି । ଏ ଘରର କାହାକୁ ଡାକିନେବାକୁ ଆସିଛନ୍ତି ବୋଧହୁଏ ।

କିନ୍ତୁ ଏ ଦଳ ସହିତ ଏ ଘରୁ ଯିବ କିଏ ? ତେବେ କ'ଣ—

ବେଶୀସମୟ ଭାବିବାକୁ ପଡ଼ିଲାନି, ଯାହାକୁ ଡକାଡକି କରୁଥିଲେ, ସେ ଓହ୍ଲାଇ ଆସିଲା ସାଜସଜ୍ଜା ସାରିଦେଇ । ଏ କୋଠରିଟା ଭିତର ଦେଇ ବାହାରିବ । ହାତର ବ୍ୟାଗ୍‌କୁ ବଲ୍ ପରି ଖେଳୁ ଖେଳୁ ପଶିଆସିଲା । ଆଉ—

ଏଠାରେ ବକୁଳକୁ ଦେଖି ଟିକିଏ ଥମକି ଯାଇ କହିପକାଇଲା— ଆପଣ ଏଠି ବସିଛନ୍ତି ଯେ ?

ଅପୂର୍ବର ଝିଅ ।

ବକୁଳ ପ୍ରାୟ ବିହ୍ୱଳ ହୋଇ ତା'ର ନାତୁଣୀ ଆଡ଼କୁ ଚାହିଁ ଦେଖିଲା । ଏଭଳି ବେଶରେ ସଜ୍ଜିତ ହୋଇ ସେ ଅସଭ୍ୟ ଟୋକାଗୁଡ଼ାକ ସହିତ ହୋ ହା କରିବାକୁ ଯାଉଛି ଅପୂର୍ବର ଝିଅ !

ଏ ଝିଅର ଅନେକ ଇତିହାସ ଅଛି, ଅନେକ ଘଟଣା ଜଣାଅଛି ବକୁଳକୁ । ତେବେକେ ଆଖି ଆଗରେ ତାକୁ ଦେଖି, ଆଉ ସେମାନଙ୍କର ସାଙ୍ଗମାନଙ୍କୁ ଦେଖି ବକୁଳ ଯେପରି ଗୋଟାଏ ଅଶୁଚି ସ୍ପର୍ଶର ଅନୁଭୂତିରେ ସଙ୍କୁଚିତ ହୋଇଗଲା ।

ବ୍ଲାଉଜର ବେକ ଏବଂ ପିଠିର କଟିଂ ଏତେ ତଳକୁ କରି ବ୍ଲାଉଜଟାକୁ ଦେହ ସହିତ କେମିତି ଅଟକାଇ ରଖିଛି ସତ୍ୟଭାମା ? ଲାହିର ଏତେ ତଳକୁ ଶାଢ଼ୀଟାକୁ ପିନ୍ଧିଛି କେମିତି ? ସେ ନଖଗୁଡ଼ାକ ଏତେ ଲମ୍ବା ହେଲା କେମିତି ? ସେ କ'ଣ ନିଜେ ବୁଝି ପକାଇଛି ତା'ର ଏ ଦେହଟା ଛଡ଼ା ଆଉକିଛି ସମ୍ବଳ ନାହିଁ, କୌଣସି ସମ୍ପଦ ନାହିଁ ? ସେଥିପାଇଁ ଏ ଦେହଟାକୁ ହିଁ—

କି ଅଶ୍ଳୀଳ ! କି ଅରୁଚିକର !

ତେବେକେ ତା' କଥାର ଉତ୍ତର ଦେବାକୁ ପଡ଼ିଲା, କାରଣ ସେ ଏ ଘରର । ସେ ଅପୂର୍ବର ଝିଅ ।

ବକୁଳ କହିଲା— ସେମାନେ କ'ଣ ତତେ ଡାକିବାକୁ ଆସିଛନ୍ତି ?

—"ହଁ, ଯେ......" ଏକ କୃତ୍ରିମ ଗଳାରେ, ଏ ଦେଶର ଭାଷାକୁ ଉଚ୍ଚାରଣ ନ କରିପାରୁଥିଲା ଭଳି ଉଚ୍ଚାରଣ କରି କହିପକାଇଲା ସତ୍ୟଭାମା, ଆମେମାନେ ପିକ୍‌ନିକ୍ କରି ଯାଉଛୁ ।

—ଏମାନେ ତୋ' ସାଙ୍ଗ ?

—ଆଉ କିଏ ?

—ପିକ୍‌ନିକ୍ ହଉଛି କୋଉଠି ?

—"କେଜାଣି......" ଅପୂର୍ବର ଝିଅ ତା'ର ଅଧଇଞ୍ଚ ପ୍ରମାଣ 'ଫଲସ୍ ନଖ' ବସାଇଥିବା ହାତ ଦୁଇଟାକୁ ଗୋଟାଏ ଅପୂର୍ବ କାଇଦାରେ ଓଲଟାଇ କହିଲା— ଯେଉଁଠି ମନ ଲାଗିବ । ଆଚ୍ଛା ଟା' ଟା !

ଏକ ଲୀଳାୟିତ ଛନ୍ଦରେ ଅଣ୍ଟା ହଲାଇ ଘର ଆଗର ପାହାଚ ଦୁଇଟାକୁ ଡେଇଁ ସେ ଓହ୍ଲାଇଗଲା ।

ସଙ୍ଗେ ସଙ୍ଗେ ସେ ଟ୍ରକ୍ ଭିତରେ ଗୋଟାଏ ପ୍ରଚଣ୍ଡ ଉଲ୍ଲାସରୋଳ ଯେପରି ଫାଟିପଡ଼ିଲା— ଆସିଯାଇଛି, ଆସିଯାଇଛି—

ମୁନିଆ ଦାଢ଼ିବାଲା ପୁଅପିଲା ଜଣେ ରୁମାଲଟିକୁ ହଠାତ୍ ହାତରୁ ଛାଡ଼ିଦେଇ ପବନରେ ଉଡ଼ାଇଦେଇ ସୁର ଦେଇ ଗାଇଉଠିଲା— ଆସିଗଲା ବିପିନ ସୁଧା, ବାତ ଔଷଧ ଆଉ ଖାଅନି !

କିନ୍ତୁ ବକୁଳ କାହିଁକି ଅପଲକ ଆଖିରେ ଚାହିଁରହିଛି ?

ମୁହଁଟାକୁ ଫେରାଇ ନେଇହେବ ଏ କଥା କ'ଣ ଭୁଲିଯାଇଛି ବକୁଳ ? ସେଥିପାଇଁ ଚାହିଁ ଚାହିଁ ଦେଖିଲା ବକୁଳ— ଟ୍ରକ୍ ଉପରୁ ଧପାସ୍କିନା ପୁଅଟିଏ ଡେଇଁ ଓହ୍ଲାଇପଡ଼ି ପ୍ରବୋଧଚନ୍ଦ୍ରଙ୍କ ପ୍ରପୌତ୍ରୀକୁ ଦୁଇ ହାତରେ ଧରି ଉଚ୍ଚକୁ ଟେକି ଧରିଲା, ଆଉ ଟ୍ରକ୍ ଉପରୁ ଦୁଇଟା ପୁଅ ନଇଁପଡ଼ି ବାଗେଇ ଟେକିନେଲେ ତାକୁ ।

ବିରାଟ ଗର୍ଜନ କରି ଗାଡ଼ିଟା ଛାଡ଼ିଦେଲା ।

ସମବେତ କଣ୍ଠରେ ଗୋଟାଏ ଇଂରାଜୀ ଗୀତର ଲାଇନ୍ ଶୁଭିଲା । ସୁର ଦେଲେ ସେମାନେ । ସେଇ ସୁରଟାକୁ ଅନେକକ୍ଷଣ ପର୍ଯ୍ୟନ୍ତ ଶୁଣିପାରିଲା ବକୁଳ ।

କିନ୍ତୁ ସେଇ ସୁରରେ କ'ଣ ଏକାବେଳେ ଆଚ୍ଛନ୍ନ ହୋଇଗଲା ବକୁଳ ? ସେଥିପାଇଁ ଅଚଳ ହୋଇ ବସିରହିଲା ?

ବକୁଳ ମା' ଏକଦା ବିଧାତାଙ୍କ ପାଖରେ ମୁଣ୍ଡ ପିଟି ଏହି ହତଭାଗ୍ୟ ଦେଶର ସ୍ତ୍ରୀଲୋକମାନଙ୍କ ବନ୍ଧନ-ଗ୍ରସ୍ତ ଜୀବନର ମୁକ୍ତି ଚାହିଁଥିଲେ । ତାଙ୍କର ମା' ମଧ୍ୟ, ସେହି ପ୍ରାର୍ଥନାର ବର କ'ଣ ଏହି ରୂପ ନେଇ ଦେଖା ଦେଇଛି ?

ସେମାନେ କ'ଣ ଏହି ମୁକ୍ତି ଚାହିଁଥିଲେ ?

ସେମାନଙ୍କ ଘରର ଝିଅର ଏହି ସ୍ୱଚ୍ଛନ୍ଦ ବିହାରର ବିଳାସ ଦେଖି ସେମାନେ ସ୍ୱର୍ଗରୁ ପୁଲକିତ ହେଉଛନ୍ତି ?

ଟିକିଏ ଆଗରୁ ମଧ୍ୟ ବକୁଳ ଭାବୁଥିଲା, ଏମାନେ କିଏ ? ଏମାନେ କେଉଁ ସମାଜରୁ ଆସିଛନ୍ତି ?

ବର୍ତ୍ତମାନ ବକୁଳ ନିଜ ପ୍ରଶ୍ନର ଉତ୍ତର ପାଇଗଲା । ସେମାନେ ସମସ୍ତେ ପ୍ରବୋଧଚନ୍ଦ୍ରଙ୍କ ସମାଜରୁ ହିଁ ବାହାରିଛନ୍ତି । ହୁଏତ ପ୍ରବୋଧଚନ୍ଦ୍ରଙ୍କ ଭାଇନା ସୁବୋଧଚନ୍ଦ୍ରଙ୍କ ଯେଉଁ ପ୍ରପୌତ୍ରୀ ସାଇକେଲ୍‌ରେ ଭାରତ ଭ୍ରମଣ କରିବାକୁ ବାହାରିଛି, ସେ ମଧ୍ୟ ଏମିତି ପ୍ରଗତିଶୀଳ, ସେ ମଧ୍ୟ ହୁଏତ ଧରିନେଇଛି ଅସଭ୍ୟତାଟା

ସଭ୍ୟତାର ଚରମ ସୀମା । ଧରିନେଇଛି ଉଚ୍ଛୃଙ୍ଖଳତା ହିଁ ମୁକ୍ତିର ସ୍ୱରୂପ, ଧରିନେଇଛି ସବୁ କିଛି ଭାଙ୍ଗିବା ହିଁ ହେଉଛି ପ୍ରଗତି ।

ସୁବର୍ଣ୍ଣଲତା ! ତମର କାନ୍ଦରେ ବ୍ୟତିବ୍ୟସ୍ତ ହୋଇଯାଇ କ୍ରୁର ବିଧାତା ତମ ପାଇଁ ଏକ କୁଟିଳ ବ୍ୟଙ୍ଗର ଉପଢ୍ୌକନ ପ୍ରସ୍ତୁତ କରିଥିଲେ ! ଅଥବା ଏକା ତମ ପାଇଁ ନୁହେଁ, ତମର ଦେଶ ପାଇଁ !

ଅନେକସମୟ ପରେ ବକୁଳ ତିନିତାଲାର ନିଜର ଘରଟିକୁ ଚଢ଼ିଗଲା, ଆଉ ସେତେବେଳେ ତା'ର ଆଚ୍ଛନ୍ନତା କଟିଯାଇ ସହଜ ଚିନ୍ତା ଫେରିଆସିଲା ।

ଏମାନେ ହିଁ କେବଳ ସମାଜର ସବୁ ନୁହଁନ୍ତି ।

ଏହି ପିକ୍‌ନିକ୍-ପାର୍ଟି ବାଲା ମାନେ ।

ପାରୁଲ୍‌ର ଚିଠିଟାକୁ ପୁଣି ଖୋଲି ତା'ରି ଉପରେ ନିଜର ଆଖିକୁ ଖୋଲି ଦେଲା ବକୁଳ ।

## ॥ ୨୫ ॥

କିନ୍ତୁ ଶମ୍ପା ନାଆଁର ସେ ହଜିଯାଇଥିବା ଝିଅଟି କ'ଣ ସତରେ ହଜିଗଲା ? ସମାଜ ପାଖରୁ, ପୃଥିବୀଠାରୁ, ଆଲୋକର ଜଗତରୁ ?

ହୁଏତ ଆଲୋକର ଜଗତ ସେହି ହିସାବ ହିଁ ଦେବ, କିନ୍ତୁ ଶମ୍ପାର ହିସାବ ତ ସବୁକାଳେ ସୃଷ୍ଟିଛଡ଼ା, ସେଥିପାଇଁ ତା' ମତରେ ସେ ଗୋଟିଏ ଉଜ୍ଜ୍ୱଳ ଆଲୋକର ଜଗତରେ ବାସ କରୁଛି ।

ଅନ୍ତତଃ ବର୍ତ୍ତମାନ ତା ମୁହଁରେ ଅନ୍ଧକାରର ଚିହ୍ନମାତ୍ର ନାହିଁ । ଯଦିଚ ପରିବେଶଟା ଦେଖିଲେ ତା'ର ବାପ ମା' ବା ପରିଚିତ ଜଗତ ହୁଏତ ମୂର୍ଚ୍ଛାହତ ହୋଇ ପଡ଼ି ଯାଇଥାନ୍ତେ ।

ମାଣିକତଲାରେ ଗୋଟାଏ ପୁରୁଣା ମାଟିଘରର ବାଉଁଶ ବାଉଁଶକଣି-ଘେରା ବାରଣ୍ଡାରେ ସେ ବସିଥିଲା ଗୋଟାଏ ପ୍ୟାକିଂ କାଠର ଟୁଲ୍‌ରେ, ତା' ସାମନାରେ ଗୋଟିଏ ଜୀର୍ଣ୍ଣ କ୍ୟାନ୍‌ଭିସ୍‌ର ଚଉକିରେ ବସିଛି ସତ୍ୟବାନ । ତାକୁ କୁହାଯାଇପାରେ ଶମ୍ପାର ଜୀବନର ଶନି ଅଥବା ରାହୁ ।

ସତ୍ୟବାନ ନିଜେ ମଧ୍ୟ ନିଜକୁ ସେହି ଆଖ୍ୟା ଦେଇଛି । ସବୁବେଳେ କହୁଛି – ମୁଁ ହିଁ ତମର ଶନି, ରାହୁ, କେତୁ । କି କୁକ୍ଷଣରେ ମୋ ସହିତ ତମର ପରିଚୟ ହୋଇଥିଲା ! ଏଇଲେ ମଧ୍ୟ ସେ କଥା କହୁଥିଲା ସତ୍ୟବାନ, ଆହୁରି ଜଣେ ବାରଣ୍ଡା ଉପରକୁ

ଚାଲିଆସିଲା ବାଉଁଶର ନିଶୁଣି ଚଢ଼ି । ସତ୍ୟବାନଠାରୁ ଅଳ୍ପ ବଡ଼ ବୋଲି ମନେ ହେଉଛି । ଚେହେରାଟା ନିତାନ୍ତ ''ହତଭାଗ୍ୟ ପରି, ଅଧମଇଳା ଗୋଟାଏ ପାଇଜାମା– ସାର୍ଟ ପିନ୍ଧିଛି, ତେଲ ଅଭାବରେ ବାଳଗୁଡ଼ିକ ରୁକ୍ଷ ଦିଶୁଛି ।

ଲୋକଟାର ହାତରେ ଦୁଇ ତିନିଟା ଠୁଙ୍ଗା ଅଛି । ସେଗୁଡ଼ାକୁ ରଖୁ ରଖୁ କହିଲା– ଓଃ ଏତେ ଡେରି ହୋଇଗଲା ! ରାସ୍ତାରେ ତ ସବୁବେଳେ ମେଳା ହେଲାପରି ଭିଡ଼ ।

ଶମ୍ପା କହିଲା– ଯା'ହେଉ ବାପା, ବଂଶୀଭାଇନା ତମେ ଆସି ଯାଇଛ, ମୁଁ ରକ୍ଷା ପାଇଗଲି । ଏ ଅକୃତଜ୍ଞ ଲୋକଟା ମତେ ଗଳାଧକ୍କା ଦେଇ ତଡ଼ି ଦେଉଥିଲା କହିଲେ ଚଳେ । ଆଉ ବେଶୀ ଡେରି କରିଥିଲେ ତମେ ହୁଏତ ମତେ ଆଉ ଦେଖି ପାରି ନ ଥାନ୍ତ ।

ବଂଶୀ ଗୋଟାଏ ଠୁଙ୍ଗା ଖୋଲି କମଳାଟିଏ ବାହାର କରି ଚୋପା ଛଡ଼ାଉ ଛଡ଼ାଉ କହିଲା– ହେଲେ ଏଭଳି ଦୁର୍ବ୍ୟବହାର କରିବାର କାରଣଟା କ'ଣ ଯେ ?

–ସେଇ ପୁରୁଣା କାରଣ । କି କୁକ୍ଷଣରେ ଦେଖା ହୋଇଥିଲା ! ଆଗ ତେବେକେ କହୁଥିଲେ ସେ ମୋର ଜୀବନର ଶନି, ଏଇଲେ ଓଲଟା ଗାଉଛନ୍ତି । କହୁଛନ୍ତି, ମୁଁ କୁଆଡ଼େ ହେଉଛି ତାଙ୍କ ଜୀବନର ଶନି । ମୋ ସଙ୍ଗେ ଦେଖାହେଲାଠୁ କୁଆଡ଼େ ତାଙ୍କର ସୁଖ ଯାଇଛି, ସ୍ୱସ୍ତି ଯାଇଛି, ଫୁର୍ତ୍ତି ଯାଇଛି, ଶେଷକୁ ପାଦ ଦୁଇଟା ମଧ୍ୟ ଗଲା ।

ବଂଶୀ ଛଡ଼ାଇଥିବା କମଳା କୋଳଗୁଡ଼ିକ କମଳା ଚୋପାରେ ରଖି ସତ୍ୟବାନ ଆଡ଼କୁ ବଢ଼ାଇଦେଇ କହିଲା– 'ନେ, ଖା ।......' ତା'ପରେ ଟିକିଏ ହସି କହିଲା, ଜାମ୍ବୋଟାର କ'ଣ ଧାରଣା ତୁ ହିଁ ଗୁଣ୍ଡା ଲଗାଇ ବୋମା ପକେଇ ତା'ର ପାଦ ଉଡ଼ାଇଦେଇଛୁ ?

–ତା'ନୁହେଁ, ତାଙ୍କର ଧାରଣା ମୋର ଗ୍ରହନକ୍ଷତ୍ର ହିଁ ଗୁଣ୍ଡା ହୋଇ ତାଙ୍କ ପଛେ ପଛେ ଧାଇଁ ତାଙ୍କୁ ଏମିତି ଶୁଆଇ ଦେଇଛି ।

–ଗ୍ରହନକ୍ଷତ୍ର ! ସେଇଟା ପୁଣି କି ବସ୍ତୁଲୋ ଶମ୍ପା ?

–ସେ ଗୋଟାଏ ଭୟଙ୍କର ବସ୍ତୁ ବଂଶୀଭାଇନା ! ଇହ ପୃଥିବୀରେ ଯାହା କିଛି ଘଟୁଛି, ସବୁଯାକ କୁଆଡ଼େ ସେମାନଙ୍କର ନିର୍ଦ୍ଦେଶରେ ଘଟୁଛି । ହିମାଳୟ ପର୍ବତଠାରୁ ତୃଣଖଣ୍ଡ ପର୍ଯ୍ୟନ୍ତ ସମସ୍ତେ ସେମାନଙ୍କର ଅଧୀନ ।

–''ତା'ହେଲେ ତ ଆଉ କିଛି କହିବାକୁ ନାହିଁ ।'' ବଂଶୀ କହିଲା– ନେ ଏବେ ଏ ମସଲାମସଲିଗୁଡ଼ାକ ନେଇ ଯା, ରାନ୍ଧି ପକା ।

— "ବଂଶୀଭାଇନା,......" ପ୍ରାୟ ଆର୍ତ୍ତନାଦ କରି ପକାଇଲା ସତ୍ୟବାନ— ତମେ ଏଙ୍କୁ ତାଙ୍କର ଘରେ ପହଞ୍ଚାଇ ଦେଇ ଆସିବ କି ନାହିଁ ?

— ମୁଁ ପହଞ୍ଚାଇଦେବି ? ସେ କ'ଣ ନାବାଳିକା କି ?

— ତା'ଠାରୁ ବି ଅଧମ । ଏମିତି ବୋକା ଭଳି କହନି ବଂଶୀଭାଇନା । ସେ ଯେମିତି ମୋ ମୁଣ୍ଡ ଉପରେ ପର୍ବତଭାର ହୋଇ ବସିଛି ।

— ଓଃ, ଦେଖିଲ ବଂଶୀଭାଇନା, ୟାକୁଇ କହନ୍ତି ଅକୃତଜ୍ଞ ପୃଥିବୀ !

ଶମ୍ପା ଠୁଙ୍ଗାଗୁଡ଼ିକ ଗୋଟାଇ ଦେଖୁ ଦେଖୁ କହେ, ଆଉଥରେ ପୁଣି କାହିଁକି ଗାଜର ନେଇ ଆସିଲ ବଂଶୀ ଭାଇନା ? ଏ ଗାଉଁଲୀଟା ତ ଗାଜରର ଝୋଳ ଖାଇବାକୁ ରାଜି ହେଉନି ।

ଉତ୍ତେଜିତ ଭାବରେ ସତ୍ୟବାନ କହିଲା— ଏମିତି ଚଳିଲେ ମୁଁ ଆଉ କିଛି ଖାଇବିନି ବଂଶୀଭାଇନା । ଏ ଜୀବନ ମୋର ଅସହ୍ୟ ହୋଇଗଲାଣି । ମତେ ତମେ ନିଶ୍ଚିନ୍ତରେ ମରିବାକୁ ଦିଅ ।

— ଶାନ୍ତିରେ ମରିବାକୁ ଦେବି ?

ଶମ୍ପା ସଜାଡ଼ି ହୋଇ ବସି ଗୋଡ଼ ହଲାଉ ହଲାଉ କହିଲା— ଦେଖୁଛ ବଂଶୀଭାଇନା, ବାବୁ କି ତୁଚ୍ଛ ଜିନିଷଟାକୁ ମାଗୁଛନ୍ତି ! ଶାନ୍ତିରେ ମରିବାକୁ ! ଭାରି ଶସ୍ତା ନା ? କହୁଛି ତମେ ମତେ ଶାନ୍ତିରେ ମରିବାକୁ ଦେଲ ?

— ମୁଁ ତମକୁ କହିଥିଲି ନା, ଗୋଇନ୍ଦା ଭଳି ମୋ ପଛରେ ବୁଲିଲେ ତମେ ନିଜେ ମରିବ, ମତେ ଅଶାନ୍ତିରେ ମାରିବ ?

ବଂଶୀ ହସିଉଠିଲା, କହିଲା— କିଏ କାହାକୁ କ'ଣ କହୁଛି କହିଲୁ ଛାମୋ । ଇହ ପୃଥିବୀରେ କିଏ କାହାକୁ କହିପୋଛି କ'ଣ କରାଇପାରିବ କହିଲୁ ? ଯା ମୁଣ୍ଡରେ ଯାହା ଲଦିହୁଏ, ଯେ ଯାହାର ମୁଣ୍ଡରେ ଚଢ଼େ । ଯେଉଁ ମହୀୟସୀ ପ୍ରେତିନୀଟି ତୋ ମୁଣ୍ଡରେ ଚଢ଼ିବସିଛି, ସେ ତତେ ତୁ ମଲାପରେ ମଧ୍ୟ କ'ଣ ଛାଡ଼ିବ ଭାବୁଛୁ ? ହୁଏତ ସାତଜନ୍ମ ପର୍ଯ୍ୟନ୍ତ ତୋ' ପଛରେ ଧାଇଁ ବୁଲିବ ।

— ବଂଶୀ ଭାଇନା, ମତେ ପ୍ରେତିନୀ କହିଲ ?

— ଆହା, ଲକ୍ଷ୍ୟ କରନ୍ତୁ ତା' ଆଗରୁ ଗୋଟାଏ ଉଚ୍ଚାଙ୍ଗର ବିଶେଷଣ ଯୋଡ଼ିଦେଇଛି ।

— ସେଇଟା ଆହୁରି ଅସୁନ୍ଦର !

ସତ୍ୟବାନ ଆଗର ଟୁଲ୍‌ଟା ଉପରେ ଗୋଟାଏ ବିଧା ବସାଇ କହିପକାଇଲା, ଯାହାର ସବୁଯାକ ଅସୁନ୍ଦର, ତା'ର କେଉଁଟାକୁ ଆଉ ଭଲ ବୋଲି କହିବ ? ହେଇଟି ତମେ ଯେ ଗୋଟାଏ ପ୍ରତିଷ୍ଠାପନ୍ନ ଘରର ଝିଅ, ତମର ଉଚ୍ଚବଂଶର ମୁହଁରେ ଚୂନ-କାଳି ଲିପି ବାପ-ମା'ର ମୁଣ୍ଡ ତଳକୁ କରିଦେଇ ଘର ଛାଡ଼ି ପଳାଇ ଆସି ମୋ ଭଳି ଜଣେ ଭିକମଗା ଲକ୍ଷ୍ମୀଛଡ଼ା ସାଙ୍ଗରେ ସାଙ୍ଗରେ ବୁଲୁଛ, ଯା ଭିତରେ କୋଉଟା ଭଲ କହିଲ ?

ଶମ୍ପା ତା'ର କଥା ମଝିରେ ବାଧା ଦେଇ ନ ଥିଲା, ଖାଲି କୌତୁକ-ମୁହଁରେ ଚାହିଁ ରହିଥିଲା । ଏବେ ହସିପକାଇ କହିଲା— ଦେଖୁଛ ବଂଶୀଭାଇନା, ମୋର ହାଓ୍ୱା ବାଜି ବାଜି ଜାମ୍ବୋବାବୁଙ୍କର ଭାଷାଜ୍ଞାନର କେତେ ଉନ୍ନତି ହୋଇଛି ? ଲକ୍ଷ୍ୟ କରିଛ ? 'ପ୍ରତିଷ୍ଠାପନ୍ନ', ଉଚ୍ଚବଂଶ, ଆଉ କ'ଣ ଗୋଟାଏ ତ ! ନାଃ, ମୋର କ୍ୟାପାସିଟି ସ୍ୱୀକାର କରିବାକୁ ହିଁ ପଡ଼ିବ ତମକୁ ବଂଶୀଭାଇନା ।

ସସ୍ନେହରେ ହସି ବଂଶୀ କହିଲା— ଟୋକାଟାକୁ ସବୁବେଳେ ଏତେ ଜଳାଉଛୁ କାହିଁକି କହିଲୁ ଶମ୍ପୁ ?

ସେଇଯା ! ସେଇଯା !...... ରାଗିଯାଇ ସତ୍ୟବାନ କହିଲା ତା' ନାଁ ହେଉଛି ତା'ର ସ୍ନେହ !

—"ଯାହାହେଉ, ଏତେଦିନରେ ତା'ହେଲେ ମୋର ସ୍ୱରୂପ ଚିହ୍ନିଲୁ ?" ଶମ୍ପା ଆହୁରି ଜୋର୍‌ରେ ଜୋର୍‌ରେ ପାଦ ହଲାଉ ହଲାଉ କହିଲା— ତା'ହେଲେ ଆଉ ବୃଥା ବିଦ୍ରୋହ କରିବାକୁ ଚେଷ୍ଟା କରନି ।

—'ଶମ୍ପା...... !' ହତାଶ ଗଳାରେ ସତ୍ୟବାନ କହିଲା— ସତରେ ମୁଁ ଶାନ୍ତିରେ ମରିବାକୁ ଚାହେଁ ।

—ଯେ ଯାହା ଚାହେଁ ତା' ଯଦି ପାଆନ୍ତା, ତା'ହେଲେ ତ ପୃଥିବୀ ସ୍ୱର୍ଗ ହୋଇଯାଆନ୍ତା ହେ ମହାଶୟ ! ମୁଁ ତ ଗୋଟିଏ ଚତୁଷ୍ପଦ ଜୀବ ଚାହିଁଥିଲି, ପାଇଥିଲି ମଧ୍ୟ, କପାଳ ଅନୁସାରେ ସେ ପୁଣି ସେହି ଦ୍ୱିପଦରେ ଠିଆହେଲା ! ଚାରିଟାରୁ ଦୁଇଟା ଗଲା । ତା'ହେଲେ ତ ବୁଝୁଛ କଥାଟା !

ବଂଶୀ ହସିଦେଇ କହିଲା— ସେମାନଙ୍କର ଏ ଝଗଡ଼ା ତ ସାରାଜୀବନରେ ବି ସରିବନି, ବସି ବସି ଝଗଡ଼ା କର, ମୁଁ ତୋର ବାସନ ମାଜିବା ପାଇଁ ପାଣି ଆଣି ଦେଉଛି— ବଂଶୀ ଚାଲିଗଲା ।

ପାଟି କରି ସତ୍ୟବାନ କହିଲା— କାହିଁକି ? ପାଣି ବି କାହିଁକି ସେ ବୋହି ଆଣିଦେବ ଯେ ? ବସ୍ତିର ସେହିସବୁ ସ୍ତ୍ରୀଲୋକମାନଙ୍କ ଭଳି ଟିଉବେଲ୍ ପାଖକୁ ଯାଇ କଳି ଲାଗି ଲାଗି ବାସନମଜାଟା ହେଉନି କାହିଁକି ?

ଶମ୍ପା ଅମ୍ଳାନ ଗଳାରେ କହିଲା— ସେଇ କଳି କରିବାଟା ତ ଶିଖିବାକୁ ସମୟ ପାଇଲିନି ! ତମ ସଙ୍ଗେ କଳି କରୁ କରୁ ତ—

ସତ୍ୟବାନ ତା' ଆଡ଼କୁ ଚାହିଁ ଗଭୀର ଗଳାରେ କହିଲା— ସତରେ କହୁଛି ଶମ୍ପା, ତମର ଏ ଆତ୍ମତ୍ୟାଗ— ନା ତା' ନୁହେଁ— ଏ ଆତ୍ମହତ୍ୟା, ମତେ ଯେମିତି ବାନ୍ଧିଦେଇ ପିଟୁଛି ।

ଶମ୍ପା ହଠାତ୍ ତାଳିମାରି କହିଲା— ସତରେ ! ଆହୁରି ଦୁଇଟା ବଢ଼ିଲା । 'ଆତ୍ମତ୍ୟାଗ' 'ଆତ୍ମହତ୍ୟା' !...... ନାଃ ଆଉ କିଛିଦିନ ଭିତରେ ତ ତମକୁ ଖଣ୍ଡେ ଅଭିଧାନ କରିପକାଇବି ! ବଂଶୀଭାଇନା, ଏ ବଂଶୀଭାଇନା, ଶୁଣିଯାଅ ।

ସତ୍ୟବାନ ଆଉ କଥା କହିଲାନି ।

ଟୁଲ୍‌ଟା ଉପରେ ହାତ ଏକାଠି କରି ମୁଣ୍ଡ ପୋତି ବସିରହିଲା ।

ଟିକିଏ ସମୟ ଚାହିଁରହିଲା ଶମ୍ପା । ଲୋକଟା ଦେଖିବାକୁ ଗୋଟାଏ ଧ୍ୱଂସସ୍ତୂପ ପରି ଦିଶୁଛି । ଶମ୍ପା କ'ଣ ବ୍ୟସ୍ତ ହେବ ? ସେ କ'ଣ କେବେ ତା' ହୋଇପାରେ ? ତାକୁ ଯେକୌଣସିମତେ ବଞ୍ଚାଇବାକୁ ପଡ଼ିବ । ତା'ଛଡ଼ା ଶମ୍ପାର ବଞ୍ଚିବାର ଉପାୟ କ'ଣ ଅଛି ? ତା'ର ଆବେଗକୁ ପ୍ରଶମିତ ହେବା ପାଇଁ ସମୟ ଦେବାକୁ ଶମ୍ପା ଚୁପ୍‌ଚାପ୍ ଚାହିଁ ରହିଲା ଆକାଶ ଆଡ଼କୁ । ଆଉ ହଠାତ୍ ଯେପରି ଗୋଟାଏ ଚିନ୍ତା ଦେଖାଦେବାରୁ ଯେମିତି ଗୋଟାଏ ଆଶ୍ଚର୍ଯ୍ୟ କୌତୁକର ସ୍ୱାଦ ପାଇଲା । ମାଟିଘରର ବାଉଁଶଘେରା ବାରଣ୍ଡାରେ ବସି ମଧ୍ୟ ଆକାଶର ରଙ୍ଗ ତ ସମାନ ପ୍ରକାର ନୀଳ ଲାଗୁଛି ।

ଭାବିବାକୁ ଯାଇ ପିଉସୀର ଘର ସାମନାର ସେହି ଛାତର ବାରଣ୍ଡାଟାରେ ଠିଆ ହୋଇପଡ଼ିଲା ଶମ୍ପା, ଯେଉଁଟାରେ କି ଅନେକ ଦିନ ହେଲା ଠିଆ ହୋଇ ନ ଥିଲା, ଯେଉଁଟାକୁ ସହଜରେ ନିଜ ପାଖକୁ ଆସିବାକୁ ଦିଏନି ସେ, ଆସିବାକୁ ଚାହିଁଲେ ପ୍ରାୟ ନିଜ ହାତରେ ଠେଲିଦେଇ ଘୁଞ୍ଚାଇ ଦେଇଛି ।

ଛାତ ଉପର ବାରଣ୍ଡାର ସାମନା ଆକାଶଟା ଠିକ୍ ଏମିତି ନୀଳ ! ସେହି ହାଲୁକା ନୀଳଟା ଆଡ଼କୁ ଚାହିଁ ରହୁ ରହୁ ଶମ୍ପା ଗୋଟାଏ ପ୍ରିୟ ପରିଚିତ କଣ୍ଠର ଡାକ ଶୁଣିପାରିଲା— ଶମ୍ପା ! ତୁ ? ଏତେଦିନ ହେଲା କୋଉଠି ଥିଲୁ ଯେ ? ଆମେ ତତେ ଖୋଜି ଖୋଜି—

ଶମ୍ପା ସେହି କଣ୍ଠର ଅଧିକାରିଣୀକୁ ଦୁଇହାତରେ କୁଣ୍ଢାଇପକାଇ କହିଲା— ମୁଁ ତ ହଜିଯାଇଥିଲି ପିଉସୀ !

ତା'ପରେ ପିଉସୀ ନିଜର ସୁନ୍ଦର ଝକ୍‌ଝକ୍ କରୁଥିବା ଘରଟା ଭିତରକୁ ଟାଣିନେଇ ଯାଇ ଚଉକି ଉପରେ ବସାଇଦେଇ କହିଲା— କହ ତୋ'ର ହଜିଯାଇଥିବାର ଗପ ! ହଜିଯାଇ କୋଉଠି ରହିଥିଲୁ ?

ହାତ ଦି'ଟାକୁ ଓଲଟାଇ ଶମ୍ପା କହିଲା— ହନଲୁଲୁ ବି ନୁହେଁ, କାମ୍‌ସ୍କାଟ୍‌କା ମଧ୍ୟ ନୁହେଁ, କେବଳ ନିଜ ଭିତରେ ହିଁ ହଜିମରିଥିଲି, ହଜିବସିଥିଲି । ସେଠୁ ଆଉ ମତେ ତମେମାନେ ଖୋଜି ଆଣି ପାରିଲନି ?

ପିଉସୀ କହିଲା ଆସ୍ତେ— ହେଲେ ତୋର ମା' ? ବାପା ?

ମୁଣ୍ଡ ତଳକୁ କରି ଶମ୍ପା କହିଲା— ପିଉସୀ, ତମେମାନେତ ସାବିତ୍ରୀଙ୍କ କାହାଣୀ କହ, ବେହୁଲାର କାହାଣୀ କହ, ସେମାନଙ୍କ ମା'-ବାପାଙ୍କ କଥା ତ କହନି !

— ତେବେକେ ତତେ ଏମିତି ପାଷାଣ ବୋଲି ଭାବିବାକୁ ଇଚ୍ଛା ହୁଏନାଲୋ ଶମ୍ପା !

ଶମ୍ପା ଆସ୍ତେ କହିଲା— ପିଉସୀ, ମୁଁ ସେମାନଙ୍କ ପାଖରେ ଆସି ଠିଆହେବି, ମୁଣ୍ଡ ନୁଆଁଇ ଆଶୀର୍ବାଦ ମାଗିବି । କହିବି— ବାପା, ସ୍ୱାମୀଙ୍କ ସଙ୍ଗରେ ଶତ ଶତ ଦୁଃଖ ବରଣ କରିବା, ୟା ତ ଏ ଦେଶର ହିଁ ଗଳ୍ପ ! ସାବିତ୍ରୀ, ଦମୟନ୍ତୀ, ଶୈବ୍ୟା, ସୀତା, ଦ୍ରୌପଦୀ, ଏମାନଙ୍କ ଗପ ତ ମୋ ପିଲାଦିନେ ତମେ ଶୁଣାଇଛ, ଏମାନଙ୍କ ବହି କିଣି ଦେଇଛ । ମୋର ଖାଲି ଚେହେରାଟା ଆଧୁନିକ, ମୋର କଥାବାର୍ତ୍ତା ଖାଲି ଏ ଯୁଗର, ମୋର ଗତିଭଙ୍ଗୀ ବର୍ତ୍ତମାନର, ଆଉ କ'ଣ ଭିନ୍ନ ଅଛି କହ ?

ପିଉସୀ ଧୀରେ ପଚାରିଲା— ବାହାଘରଟା କ'ଣ ସରିଗଲାଣି ଶମ୍ପା ?

ଶମ୍ପା ମୁହଁ ଉଠାଇ ହସି କହିଲା— ଅନୁଷ୍ଠାନ ଫନୁଷ୍ଠାନ କିଛି ଯେ ହେଇନି ସେ କଥା ତ ବୁଝି ପାରୁଥିବ ପିଉସୀ, ତେବେ ଗୋଟାଏ ଆଇନର ଲେଖାଲେଖି ହୋଇଛି । ସେଇଟା ନ କରି ଉପାୟ କ'ଣ କହ ? ଖାଲି ତମମାନଙ୍କର ସେ 'ବାହାଠାରୁ ବଡ଼' ଜିନିଷଟାର ଦାବି ତ ଏ ସଂସାରରେ ତିଷ୍ଠି ରହେନି । ସେହି ଲେଖାଲେଖିର କାଗଜ ଟିକକ ସାଙ୍ଗରେ ନ ଥିଲେ ସଂସାର କ'ଣ ତିଷ୍ଠି ରହିବାକୁ ଦେବ ? ଗୋଟାଏ ମାଟିଘରର ସୁଖ ଉପରେ ମଧ୍ୟ ପୁଲିସ୍‌କୁ ଛାଡ଼ିଦେବେ । ସେଥିପାଇଁ ଡାକ୍ତରଖାନାରେ ହିଁ ସେ କର୍ମଟି ସାରିଦେଇ ନିଜର ଅଧିକାର ବଳରେ ତାଙ୍କୁ ଡାକ୍ତରଖାନାରୁ ବାହାର କରି ଆଣି ସୁଖରେ ସ୍ୱଚ୍ଛନ୍ଦରେ ନିଶ୍ଚିନ୍ତରେ ଅଛି । ତେବେ ତମେ ଯାହା ପ୍ରଥମ ଥରହିଁ କହିଥିଲ— ହତଭାଗା । ହତଭାଗ୍ୟ ପ୍ରକୃତରେ । ଏବେ ମଧ୍ୟ କହୁଛି କ'ଣନା— ସେଇଟାର କିଛି ଅର୍ଥ ନାହିଁ ! ଜଣେ ପୂରା ମଣିଷ ସାଙ୍ଗରେ ଜଣେ ଅଧା ମଣିଷର— ଓ, ତମେ

ତ ପୁଣି ସବୁ କଥା ଜାଣିନ ଯେ, ତା'ର ବନ୍ଧୁଦଳର କେହି ଜଣେ ପରମ ବନ୍ଧୁ ଯେ ବୋମା ମାରି ତା'ର ପାଦ ଦୁଇଟାକୁ ଉଡ଼ାଇ ଦେଇଛି– ବାକି ଜୀବନଟା ଚକଲଗା ଗାଡ଼ିରେ ଚଢ଼ି ବୁଲିବାକୁ ପଡ଼ିବ ହତଭାଗାକୁ ।

ହଁ, ସେ ମଧ୍ୟ ସେଇ କଥା ହିଁ କହୁଛି– ଜଣେ ପୂରା ମଣିଷ ସହିତ ଜଣେ ଅଧା ମଣିଷର ବାହାଘର ଆଇନସିଦ୍ଧ ନୁହେଁ ।...... ତା'ଛଡ଼ା ମୁଁ ସେତେବେଳେ ପ୍ରାୟ ଜ୍ଞାନଶୂନ୍ୟ ରୋଗୀ ଥିଲି, ଅତଏବ ମତେ ଛାଡ଼ିଦେଇ ତମେ ପଳାଅ !

ଶମ୍ପା ପିଉସୀର ଦେହରେ ମୁଣ୍ଡ ରଖି ନିଜକୁ ଆଉଜାଇ ଦେଇ କହିଲା, ମୂର୍ଖଟା କହୁଛି କ'ଣ ନା, ତମର ଉପସ୍ଥିତି ମତେ ଅସହ୍ୟ ଲାଗୁଛି । ଭାଷାଟାକୁ ଭଲରୂପେ ଶିଖିପକାଇଛି ବୁଝିଲ ?...... କହୁଛି ମତେ ଶାନ୍ତିରେ ମରିବାକୁ ଦିଅ । କଥାଟା ଶୁଣ ! ମୋ ଭଳି ଜଣେ ଭାଗ୍ୟବତୀକୁ ହାତମୁଠାରେ ପାଇ ମଧ୍ୟ ନେଉ ନାହିଁ, କହୁଛି– "ବିଦାୟ ହୁଅ ! ଶାନ୍ତିରେ ମରିବାକୁ ଦିଅ !" ବୁଝୁଛ ତ ? ଖାଲି ହତଭାଗ୍ୟ ନୁହେଁ, ଏକାବେଳେ ଲକ୍ଷ୍ମୀଛଡ଼ା !

ତା'ପରେ ପିଉସୀ କଥା କହିଲା । କହିଲା– ସାନମଝିଆ ପିଉସୀକୁ ମଧ୍ୟ ତ ଗୋଟାଏ ଖବର ଦେଇପାରିଥାନ୍ତୁ !

ଅପରାଧୀ ପରି ଶମ୍ପା କହିଲା– ସତରେ ଭାରି ଉଚିତ ଥିଲା ! କ'ଣ କହିବି ପିଉସୀ, ମୁଣ୍ଡଟା ଆଉ ମୁଣ୍ଡ ବୋଲି ନ ଥିଲା । ବୋମା ତ ତା'ର ପାଦରେ ପଡ଼ିନି, ପଡ଼ିଥିଲା ମୋ ମୁଣ୍ଡରେ । ଜ୍ଞାନବୁଦ୍ଧି ନ ଥିଲା । ଉଦ୍‌ଭ୍ରାନ୍ତ ହୋଇ ଖାଲି ତାକୁ କେମିତି ବଞ୍ଚେଇ ପାରିବି ସେହି ଚିନ୍ତାରେ– ଭାଗ୍ୟକୁ ବଂଶୀଭାଇନାକୁ ପାଇଥିଲି, ସେଥିପାଇଁ ଏହା ସମ୍ଭବ ହୋଇଥିଲା ।

ପିଉସୀ ପଚାରିଲା– ବଂଶୀଭାଇନାଟି କିଏ ?

ଶମ୍ପା ଗଭୀର ଦୃଷ୍ଟିରେ ଚାହିଁଲା ପିଉସୀ ଆଡ଼କୁ, ଆସ୍ତେ କହିଲା– ବଂଶୀଭାଇନା କିଏ ବୋଲି ବୁଝାଇବା ସମ୍ଭବ ହେବନି ପିଉସୀ, କିଛି କହିହେବନି । ଦେଖିଲେ ବୁଝିବ । ତମେ ଗୋଟାଏ ନଜରରେ ବୁଝିପାରିବ ।...... ହଁ, ତାଙ୍କୁ ତ ଆଣିବାକୁ ହିଁ ପଡ଼ିବ ତମମାନଙ୍କ ପାଖକୁ ଯେଉଁଦିନ ଆଶୀର୍ବାଦ ନେବାକୁ ଆସିବି, ଏକା କ'ଣ ପାରିବି ?

ବଂଶୀଭାଇନା ତାଙ୍କୁ କହନ୍ତି– ତୋ'ର ପାଦ ଦୁଇଟା ଉଡ଼ାଇ ନ ଦେଇ ତୋ ସାଙ୍ଗମାନେ ଯଦି ତୋର ମୁଣ୍ଡଟା ଉଡ଼ାଇ ଦେଇଥାନ୍ତେ ତ, ଯଥାର୍ଥରେ ଭଲ ହୋଇଥାନ୍ତା । ମୁଣ୍ଡଟାରେ ତ ଗୋବର ଛଡ଼ା ଆଉ କିଛି ନାହିଁ, ସେଇଟା ଥିଲେ ବି କ'ଣ, ଗଲେ ବି କ'ଣ ? ବୁଝୁଛ ତ କି ମଜାର ଲୋକ !

ହି ହି ହୋଇ ହସି ପକାଇଲା ଶମ୍ପା ।

ସତ୍ୟବାନ ଚମକିପଡ଼ି ମୁଣ୍ଡ ଟେକି ଚାହିଁଲା, କହିଲା— କ'ଣ ହେଲା ? ଖାଲିରେ ଖାଲିରେ ହଠାତ୍ ହସି ପକାଇଲ ଯେ ?

ଶମ୍ପା ଶିଥିଳ-ଭଙ୍ଗୀ ତ୍ୟାଗ କରି ସିଧା ହୋଇ ବସି କହିଲା— ପାଗଳମାନେ ତ ସେଇୟା କରନ୍ତି । କିଏ ଖାଲି ଖାଲି ହସେ,. କିଏ ଖାଲି କାନ୍ଦେ !''

ସତ୍ୟବାନ ସେହି ଫାଳକ ଆକାଶ ଆଡ଼କୁ ଚାହିଁ ଶାନ୍ତ ଗଳାରେ କହେ— ଖାଲି ଖାଲି କେହି କାନ୍ଦୁନି ।

ତା' ଆଡ଼କୁ ଚାହିଁ ଶମ୍ପା କହିଲା— ବଂଶୀଭାଇନା ଭୁଲ୍ କହନ୍ତି । କହନ୍ତି, ପାଦଟା ବଦଳରେ ମୁଣ୍ଡଟା ଯାଇଥିଲେ କମ୍ ଲୋକସାନ ହୋଇଥାନ୍ତା, ଗୋବର ଛଡ଼ା ତ ଆଉ କିଛି ନାହିଁ । ଦେଖୁଛି ଗୋବର ଶୁଖିଯାଇ ସୁନ୍ଦର ଘଷି ହୋଇଯାଇଛି । କଥା କହିଲାମାତ୍ରେ କଥା ବୁଝିଦେଇପାରୁଛ । ତେବେ ମୁଁ ତ 'ଖାଲି ଖାଲି' ଛଡ଼ା କାରଣ ଆଉକିଛି ଦେଖୁନି ।

ସତ୍ୟବାନ ହତାଶ ଗଳାରେ କହିଲା— ଆଚ୍ଛା, ତମେ କ'ଣ ସହଜ କରି କଥା କହିଜାଣିନ ଜମା ? ନା କହିବନି ବୋଲି ପ୍ରତିଜ୍ଞା କରିଛ ?

ଶମ୍ପା ଅଳ୍ପ ହସି କହିଲା— ଜାଣିଛ ! ପିଉସୀ ମଧ୍ୟ ଠିକ୍ ଏ କଥା କହୁଥିଲା ! ମୁଁ ଉତ୍ତର ଦେଉଥିଲି— ଯଦି ଭାରି ସହଜ ଆଉ ସାଧାରଣ କଥା ଖାଲି କହୁଥାନ୍ତି, ତମକୁ ଭଲ ଲାଗୁଥାନ୍ତା ?'' ସେହି ଉତ୍ତରଟା ହିଁ ଆଜି ତମକୁ ମଧ୍ୟ ଦେଉଛି । ନା ନା ଉତ୍ତର ତ ନୁହେଁ, ପ୍ରଶ୍ନ । ଦିଅ ଏଇଲେ ପ୍ରଶ୍ନଟାର ଉତ୍ତର !

ସତ୍ୟବାନ ଆସ୍ତେ ମୁଣ୍ଡ ହଲାଇଲା । କହିଲା— ଦେଇ ପାରିବିନି ।

—ପାରିଲନି ତ ? ପିଉସୀ ପାରୁଥିଲା । କହୁଥିଲା, ଯାଃ, ପାଗଳ ହେଇଛୁ !

## ॥ ୨୬ ॥

ଖଣ୍ଡିଏ ଅନାମୀ ପତ୍ରିକାର ପୃଷ୍ଠା ଓଲଟାଇ ଦେଖୁଥିଲେ ଅନାମିକା ଦେବୀ । ଏ ପତ୍ରିକାଟିକୁ କେବେ ଦେଖି ନ ଥିଲେ ସେ, ନାଁ ମଧ୍ୟ ଶୁଣି ନ ଥିଲେ କେବେ ଏବଂ ପତ୍ରିକାର ଚେହେରା ଦେଖି ଅନ୍ତତଃ ଦେଖିପାରି ନ ଥିବା, ଶୁଣି ପାରି ନ ଥିବା ପାଇଁ ଅନୁଶୋଚନା ହେଉ ନ ଥିଲା । ଖାଲି ମନ ଦେଇ ଦେଖୁଥିଲେ ସେ । କାରଣ ଏଇଟିକୁ ଅନାମିକା ଦେବୀଙ୍କର ଜଣେ ହିତୈଷୀ ବନ୍ଧୁ ନିଜ ଖର୍ଚ୍ଚରେ କିଣି ପଠାଇଦେଇଛନ୍ତି ।

ହଠାତ୍ ଏମିତି ଗୋଟିଏ ଆଜେବାଜେ ପତ୍ରିକା ଯତ୍ନ କରି ପଠାଇ ଦେବାର ହେତୁ ପ୍ରଥମରେ ବୁଝିପାରି ନ ଥିଲେ ଅନାମିକା । ଯେଉଁ ଅଧ୍ୟାପକ ବନ୍ଧୁଟି ପଠାଇଛନ୍ତି ତାଙ୍କର ଯେ 'ସାହିତ୍ୟ-ରୋଗ' ଅଛି, ଏଭଳି ସନ୍ଦେହ କରିବାର କୌଣସି କାରଣ କେବେହେଲେ ଘଟିନି, ତେଣୁ ସେକଥା ଭାବିଲେନି— ବୋଧହୁଏ ତାଙ୍କର କୌଣସି ଲେଖା ଛପା ହୋଇଥିବ—

ତେବେ ?

ଯେଉଁ ପିଲାଟି ହାତରେ ପତ୍ରିକାଟି ପଠା ହୋଇଥିଲା, ଅନାମିକା ତାକୁ ପଚାରିଥିଲେ, କ'ଣ କହିଛନ୍ତି ନା କ'ଣ ? ବା କିଛି ଚିଠିପତ୍ର ଅଛି ?

ପିଲାଟି ବିନୟ ସହିତ କହିଲା— ନା ।...... ତା'ପରେ ଆଭୂମି ପ୍ରଣାମ କରି ବିଦାୟ ନେଲା ।

ବହିଟାକୁ ଖୋଲି ଅନାମିକା ଦେଖିଲେ— ବନ୍ଧୁଙ୍କର ଯାହା କହିବା କଥା ତାହା ବହି ଭିତରେ ହିଁ ଲେଖି ଦେଇଛନ୍ତି । ସୂଚୀପତ୍ରର ଉପରେ ନାଲି ପେନ୍‌ସିଲ୍‌ରେ ଲେଖା ହୋଇଛି— ତେଇଶି ପୃଷ୍ଠାର ଦ୍ୱିତୀୟ କଲମଟାକୁ ଲକ୍ଷ୍ୟ କରିବେ । କି ସ୍ପର୍ଦ୍ଧା ଦେଖନ୍ତୁ !

ଅନାମିକା ଟିକିଏ ହସି ପୃଷ୍ଠା ଓଲଟାଇଲେ ।

ଅନାମିକାଙ୍କର ଅନେକ ଭକ୍ତ ପାଠକ ଅଛନ୍ତି, ଅନେକ ହିତୈଷୀ ବନ୍ଧୁ ମଧ୍ୟ ଅଛନ୍ତି, ସେମାନେ ଏଭଳି କାମ ମଝିରେ ମଝିରେ କରିଥାନ୍ତି । ଅନାମିକାଙ୍କର ଲେଖା ସଂପର୍କରେ କେଉଁଠି କିଛି ସମାଲୋଚନା ଦେଖିଲାମାତ୍ରେ ସେମାନେ ହୁଏତ ଟେଲିଫୋନ୍ ଦ୍ୱାରା ଜଣାଇଦିଅନ୍ତି, ନ ହେଲେ ସେ କାଗଜଟିକୁ ହିଁ ପଠାଇଦିଅନ୍ତି । ଯଦି ଉକ୍ତ ସମାଲୋଚନା ଅନାମିକାର ଆଖିକୁ ଆଡ଼େଇ ଦିଏ ବା ସେ ସେମିତି କିଛି ଖିଆଲ କରନ୍ତି ନାହିଁ, ସେଥିପାଇଁ ଏ ପ୍ରକାର ବ୍ୟାକୁଳ ଚେଷ୍ଟା କରନ୍ତି ସେମାନେ ।

ଅବଶ୍ୟ ସବୁ ସମାଲୋଚନା ଯେ ସେମାନଙ୍କୁ ବ୍ୟାକୁଳ କରେ, ତା' ନୁହେଁ । ସମାଲୋଚନା ଭିତରେ ଅନାମିକା-ସାହିତ୍ୟକୁ ତଳକୁ କରିବା ଚେଷ୍ଟା ଅଥବା ବେଖାତିର କରିବାର ଚେଷ୍ଟା ଦେଖିଲାକ୍ଷଣି ସେମାନଙ୍କର ବନ୍ଧୁ-ହୃଦୟ ବ୍ୟାକୁଳ ହୋଇଯାଏ ।

ଦେଶର ବାହାରେ ଅବସ୍ଥିତ ବନ୍ଧୁମାନେ ମଧ୍ୟ ଅନେକ ସମୟରେ ଡାକଖର୍ଚ୍ଚ କରି ଏହି ମହତ୍ ବନ୍ଧୁକାର୍ଯ୍ୟ କରିଥାନ୍ତି । ମହତ ଇଚ୍ଛା ଯେ ସେଥିରେ ସନ୍ଦେହ ନାହିଁ, ଅନାମିକାଙ୍କୁ କିଏ କ'ଣ କହୁଛି, ତାଙ୍କର ରଚନା ସମ୍ପର୍କରେ କାହାର କି ଧାରଣା, ଏକଥା ଅନାମିକାଙ୍କର ନିଶ୍ଚେ ଜାଣିବା ଦରକାର । ନ ହେଲେ ଭୁଲ ସଂଶୋଧନର ଚେଷ୍ଟା ହେବ କେମିତି ?

ଅନାମିକାଙ୍କ ଦୃଷ୍ଟିଭଙ୍ଗୀ ଅବଶ୍ୟ (ବନ୍ଧୁକୃତ୍ୟ ସମ୍ପର୍କରେ) ଅଲଗା । ତାଙ୍କର କୌଣସି ବନ୍ଧୁଙ୍କର ସଂପର୍କରେ ବିରୂପ କୌଣସି ସମାଲୋଚନା ଦେଖିଲେ ସେ ଭଗବାନଙ୍କ ପାଖରେ ପ୍ରାର୍ଥନା କରନ୍ତି, ଆହା ତା' ଆଖିରେ ଯେପରି ନ ପଡୁ । ସଭାରେ ସେ ପ୍ରସଙ୍ଗ ପଡ଼ିଲେ ସିଧା ମିଥ୍ୟାଚାରର ଆଶ୍ରୟ ନେଇ କହନ୍ତି– 'କାହିଁ ଦେଖିନି ତ ! ପଢ଼ିନି ତ ! ପତ୍ରିକାଗୁଡ଼ାକ ଜାଣନ୍ତି, ଘରେ ପଶୁ ନ ପଶୁଣୁ ଘରର ବାହାରକୁ ବୁଲିବାକୁ ଚାଲିଯାଆନ୍ତି !'

ଯାଉ, ସମସ୍ତଙ୍କର ଦୃଷ୍ଟିଭଙ୍ଗୀ ତ ସମାନ ନୁହେଁ ।

ପତ୍ରିକାର ନାଁ ' ଭସ୍ମଲୋଚନ' ।

ନାଁଟାର ମୌଳିକତ୍ୱ ଅଛି ।

ଅନାମିକା ଦେଖିଲେ– ଜନୈକ ଛଦ୍ମନାମଧାରୀ ସମାଲୋଚକ ରୀତିମତ ଉଷ୍ମ ହୋଇ ଲେଖିଛନ୍ତି– ଯେଉଁମାନେ ତିରିଶି ଚାଳିଶି ବର୍ଷ ଧରି ବଙ୍ଗଳା-ସାହିତ୍ୟର ହାଟର ଭୂଇଁକୁ କାମୁଡ଼ି ପଡ଼ିରହିଛନ୍ତି, ପତ୍ରିକା-ସମ୍ପାଦକମାନଙ୍କର ଉଚିତ ସେମାନଙ୍କୁ ବୟକଟ୍ କରିବା । ସେମାନଙ୍କର ଏହି ଲୋଭ ଓ ନିର୍ଲଜ୍ଜତାର ପ୍ରଶ୍ରୟଦାତା ପତ୍ରିକା ସମ୍ପାଦକମାନଙ୍କ ନିକଟରେ ମୋର ନିବେଦନ, ତଥାକଥିତ ପ୍ରତିଷ୍ଠିତ ଲେଖକମାନଙ୍କର ନାମର ମୋହକୁ ତ୍ୟାଗ କରି ସେମାନେ ସାହିତ୍ୟ-ହାଟରେ ନୂଆ ମୁହଁମାନଙ୍କୁ ଡାକିଆଣନ୍ତୁ । ପ୍ରତିଷ୍ଠାର ଅହଙ୍କାରରେ ଏହି ନାଁ କରିଥିବା ଲେଖକମାନେ ଯେ କି ରାବିଶ୍ ପରିବେଷଣ କରୁଛନ୍ତି ତାହା ସମ୍ପାଦକମାନେ ଅନୁଧାବନ କରି ଦେଖିବାକୁ ଅନୁରୋଧ କରୁଛି ।

ହେଇଟି 'ବେଣୁମର୍ମର'ର ବର୍ତ୍ତମାନ ସଂଖ୍ୟାରେ ଶ୍ରୀମତୀ ଅନାମିକା ଦେବୀଙ୍କର ଗୋଟିଏ ଛୋଟ ଗଳ୍ପ ପ୍ରକାଶିତ ହୋଇଛି, ଏଇଟା କ'ଣ ହୋଇଛି ? ଏଇଟାର କିଛି କ'ଣ ମୁଣ୍ଡ ଗଣ୍ଡି ଅଛି ? କୌଣସି ଯୁକ୍ତି ଅଛି ? ନାୟକ କାହିଁକି ଏମିତି ଅଦ୍ଭୁତ ଆଚରଣ କରିବସିଲା– ସେଥିର କ'ଣ କିଛି ବ୍ୟାଖ୍ୟା କରାଯାଇଛି ? ଯାହା ଖୁସି ତାହା ଚଳାଇବାର ଅଧିକାର ଲାଭ କରିଦେଲେ କ'ଣ ସେହି ଅଧିକାରର ଅପବ୍ୟବହାର କରିବାକୁ ହୁଏ ? ଆଗ ଶ୍ରୀମତୀ ଅନାମିକାଙ୍କ ଲେଖାର ଯେଉଁ ସୂକ୍ଷ୍ମ ବିଶ୍ଳେଷଣ, ଯେଉଁ ମନନଶୀଳତା ଦେଖାଯାଉଥାଏ, ଆଜି ଆଉ ସେଥିର ଚିହ୍ନ ସୁଦ୍ଧା ଆଖିରେ ପଡୁନି ।

ଅସଲ କଥା– ତେଲ ସରିବା ଆଗରୁ ହିଁ ଆଲୁଅ ଲିଭାଇ ଦେବାର ଶିକ୍ଷା ଏମାନେ ଲାଭ କରି ନାହାନ୍ତି ।' ଅନାମିକା ଦେବୀ ପ୍ରମୁଖ ବର୍ତ୍ତମାନର କେତେଜଣ ପ୍ରତିଷ୍ଠିତ ଲେଖକଙ୍କର ନାଁ କହି ଭଦ୍ରଲୋକ କହିଛନ୍ତି– 'ଗୋଟାଏ ସମୟର ପାଠକ ଏମାନଙ୍କୁ

ଗ୍ରହଣ କରିଥିଲେ, ସେତେବେଳେ ଏମାନେ ଯଥେଷ୍ଟ ଯଶ-ଖ୍ୟାତି ଏବଂ ଅର୍ଥ ଅର୍ଜନ କରିଥିଲେ, ଆଜି ଏମାନଙ୍କର ଯଶ ନିର୍ବାପିତ, ଖ୍ୟାତି ବିଲୁପ୍ତ, ତେବେକେ ସେଇ ବସ୍ତୁଟିର ଲୋଭ ହିଁ ଏମାନଙ୍କୁ ଖୁଣ୍ଟି ଆଗୁଳି ପଡ଼ି ନ ରହି ଆସର ଛାଡ଼ି ବିଦାୟ ନେବାର ସଭ୍ୟତା ଶିଖାଉ ନାହିଁ । ଏମାନଙ୍କ ପାଇଁ ତରୁଣମାନଙ୍କ ପାଖରେ ସୁଯୋଗର ଦ୍ୱାର ବନ୍ଦ, ଦ୍ୱାରମୁହଁରେ ଏମାନଙ୍କର ଭିଡ଼ ଜମି ରହିଛି ।'

ଭାଷାଟି ଜ୍ୱାଳାମୟୀ, ସନ୍ଦେହ ନାହିଁ ।

ଆଉ ତାଜା ରକ୍ତ, ସନ୍ଦେହ ନାହିଁ ।

ଅନାମିକା ଟିକିଏ ହସି ପତ୍ରିକାଟିକୁ ରଖିଦେଇ ସେହି ଛଦ୍ମନାମଧାରୀ ସମାଲୋଚକର ଉଦ୍ଦେଶ୍ୟରେ ମନେ ମନେ କହିଲେ— 'ଆହେ ବାବୁ, ତିରିଶି ଚାଳିଶି ବର୍ଷ ଆଗରେ ସାହିତ୍ୟର ହାଟକୁ ଆସିଯାଇଥିବା ଏହି ସବୁ ଲେଖକଗୋଷ୍ଠୀ ଯେତେବେଳେ ହାଟର ଦ୍ୱାର ପାଖରେ ଆସି ଠିଆ ହୋଇଥିଲେ, ପୂର୍ବତନ ପ୍ରତିଷ୍ଠିତମାନେ କ'ଣ ବିବେକ-ତାଡ଼ିତ ହୋଇ ଅଥବା ସଭ୍ୟତା-ତାଡ଼ିତ ହୋଇ ଏମାନଙ୍କ ପାଇଁ ଆସନ ଛାଡ଼ିଦେଇ ବିଦାୟ ନେଇଥିଲେ ? କହିଥିଲେ କି— ଆସ ବସ, ହେଇଟି ନିଅ ମୋର ଛତ୍ରମୁକୁଟ, ଆଜିଠାରୁ ତମର ଦିନ ଆରମ୍ଭ ହେଲା ।

ଧୀରେ ଧୀରେ ହସଟା ମିଳାଇଗଲା । ଅନାମିକା ଭାବିଲେ— କିନ୍ତୁ ଅଭିଯୋଗଟାର ମୂଳରେ କ'ଣ ଭିତ୍ତି ନାହିଁ ? ସତରେ କ'ଣ ପ୍ରଥମ ଜୀବନ ପରି ସମୟ ଦେଇପାରୁଛନ୍ତି ସେ ? ସମୟର କଲ୍ୟାଣରୁ ହିଁ ଲେଖାର ମନନଶୀଳତା, ନିଖୁଣ ନିପୁଣତା, ସୂକ୍ଷ୍ମତା, ଚାରୁତା ସୃଷ୍ଟି ହୁଏ ? ଧାଉଁ ଧାଉଁ କ'ଣ ଶିଳ୍ପକର୍ମ ସୁନ୍ଦର ହୋଇ ଗଢ଼ାଯାଇପାରେ ?

ନିଜର ଆଜିକାଲିର ଲେଖାରେ ନିଜେ ହିଁ ତ ଲକ୍ଷ୍ୟ କରିଛନ୍ତି ଅନାମିକା ଯେ ସେଥିରେ ବହୁତ ବେଶୀ ଦ୍ରୁତ ଭଙ୍ଗୀର ଛାପ ରହିଛି । ଲେଖାଟାକୁ ହାତରୁ ଛାଡ଼ିଦେଲା ପରେ ଲାଗେ ହୁଏତ ଆଉ ଟିକିଏ ମାଜିବା-ଘଷିବା ଦରକାର ଥିଲା ।

କିନ୍ତୁ ସେହି ଦରକାରର ସମୟ କିଏ ଦେଉଛି ?

ଅଜସ୍ର ପତ୍ରପତ୍ରିକାରେ ଭରା ଏହି ଆସରରେ ପ୍ରାୟ ପ୍ରତିଦିନ ଜନ୍ମ ହେଉଛି ଆହୁରି ପତ୍ରିକା । ଏ ଯୁଗର ତରୁଣମାନଙ୍କର ପ୍ରଧାନ 'ହବି' ହେଉଛି ପତ୍ରିକା ପ୍ରକାଶ ।...... ଯେମିତି ସେମିତି କରି ପତ୍ରିକାଟିଏ ପ୍ରକାଶ କରିବାକୁ ହେବ । ଆଉ ଆଶ୍ଚର୍ଯ୍ୟ, ସମସ୍ତଙ୍କର ଦୃଷ୍ଟି ହିଁ ଯାଇ ସେହି ତୈଳ ସରିଯାଇଥିବା ହତଭାଗ୍ୟ ପ୍ରତିଷ୍ଠିତମାନଙ୍କ ଆଡ଼କୁ ରହୁଛି । ପ୍ରତ୍ୟାଶା ପୂରଣ ନ ହେଲେ ସେମାନେ ବ୍ୟଥିତ ହୁଅନ୍ତି, କ୍ଷୁବ୍ଧ ହୁଅନ୍ତି, ଅପମାନିତ ହୁଅନ୍ତି ।

ଅତଏବ 'ଯାହାହେଲେ କିଛି ଦିଅ' ।

ଏହି ଯାହାହେଉର ଦାବି ମେଣ୍ଢାଉ ମେଣ୍ଢାଉ କଲମ ମଧ ଚଲାକ ହୋଇଯିବାକୁ ଚାହେଁ । ଯାହାହେଲେ ଦେଇ ସାରିବାକୁ ଚାହେଁ । ଚାହିଁବାଟା ଅସଙ୍ଗତ ନୁହେଁ । ସମସ୍ତଙ୍କର ତ ପୁଣି ଗୋଟାଏ କ୍ଳାନ୍ତି ଅଛି !

ତା ଛଡ଼ା –

କଲମଟା ଟେବୁଲ୍‌ରେ ଠକ୍ ଠକ୍ କରୁ କରୁ ଭାବୁଥାଆନ୍ତି ଅନାମିକା, ଏ ଯୁଗରେ ଆମେମାନେ କି ବିରାଟ ଝଡ଼ ସହିତ ଧାଉଁ ନାହୁଁ ଆମମାନଙ୍କ କର୍ମରେ, ମର୍ମରେ, ଜୀବନରେ ? ଜୀବନଯାତ୍ରାରେ, ଆମମାନଙ୍କର ବିଶ୍ୱାସରେ ମୂଲ୍ୟବୋଧରେ, ରାଷ୍ଟ୍ରର ଚେତନାରେ, ସମାଜ ବ୍ୟବସ୍ଥାରେ, ଶିକ୍ଷାରେ, ସଂସ୍କାରରେ ଅହରହ କ'ଣ ଝଡ଼ର ଧକ୍କା ଲାଗୁ ନାହିଁ ? ପ୍ରତିମୁହୂର୍ତ୍ତରେ ଆମେମାନେ ଆଶାନ୍ୱିତ ହେଉଛୁ, ଆଉ ଆଶାହତ ହେଉଛୁ । ସୁନାର ମୂଲ୍ୟ ଦେଇ ସୁନା କିଣି ହାତରେ ଟେକି ଦେଖୁଛୁ ଜରି ! ଅଭିଭୂତ ଦୃଷ୍ଟି ମେଲାକରି ଦେବତାଙ୍କ ଆଡ଼କୁ ଚାହିଁ ଦେଖୁ ଦେଖୁ ହଠାତ୍ ଆଖିରେ ପଡୁଛି ଦେବତାଙ୍କ ପାଦ କାଦୁଅରେ ପୋତି ହୋଇଯାଇଛି ।

ଏହି ଆଖିଝଲସା ଝଡ଼ର ଧୂଳିରେ ମଝିରେ ମଝିରେ ଉତ୍‌କ୍ଷିପ୍ତ ବିଭ୍ରାନ୍ତ ମନ ନେଇ ଧାଉଁ ଧାଉଁ କେଉଁଠାରେ ବସି ରଚିତ ହେବ ଆଗକାଳର ଆଦର୍ଶର ମନନଶୀଳତା ?

ଏ ଯୁଗର ପାଠକ ମନ ମଧ ତ ଦ୍ରୁତଗାମୀ ।

ତେବେକେ ନିଜର ସପକ୍ଷର ଯୁକ୍ତିକୁ ଅମଳ ଦେବାକୁ ଚାହିଁଲେନି ଅନାମିକା । ବେଦନା ସହିତ ସ୍ୱୀକାର କଲେ ଆଗ ପରି ଲେଖା ଭିତରେ ମଧ ସେହି ଭଲପାଇବାର ମନଟିକୁ ଦେଇପାରୁ ନାହାନ୍ତି । ଯେଉଁ ଭଲପାଇବାର ମନଟି ଅନେକ ବାଧା, ଅନେକ ପ୍ରତିବନ୍ଧକ, ଅନେକ ଦୁଃଖ ପାର ହୋଇ ହୋ଼ଲ୍ଲ ବହନ କରି ନେଇ ଚାଲୁଥିଲା ତା'ର ଆତ୍ମପ୍ରକାଶର ସାଧନାକୁ । ତା'ହେଲେ କ'ଣ ସତରେ କଲମ ବନ୍ଦ କରିବାର ସମୟ ଆସିଯାଇଛି ? ବିଧାତାଙ୍କର ଅମୋଘ ନିର୍ଦ୍ଦେଶ ଆସୁଛି ଛଦ୍ମନାମଧାରୀର ଛଦ୍ମବେଶରେ ? ପିଲାଦିନେ ପିଲାମି ହେତୁ କଲମଟାକୁ ହାତରେ ଧରିଲେ ମଧ କେଉଁଠି କେଉଁ ଜାଗାରେ ବୋଧହୁଏ ଏକ ଅଙ୍ଗୀକାର ପାଳନର ଦାୟିତ୍ୱ ଥିଲା, ଥିଲା କ'ଣ ଗୋଟାଏ ବକ୍ତବ୍ୟ, ସେ ଅଙ୍ଗୀକାର କ'ଣ ପାଳନ କରିପାରିଛନ୍ତି ଅନାମିକା ? ପାଠକ ହୃଦୟକୁ ପଠାଇ ପାରିଛନ୍ତି ସେ ବକ୍ତବ୍ୟକୁ ?

ନା ସେଗୁଡ଼ାକ ପଡ଼ିରହିଛି ଭଣ୍ଡାରଘରର ତାଲାବନ୍ଦ ଭାରୀ ସିନ୍ଦୁକର ତଳଦେଶରେ, ଅନାମିକା ଖାଲି ବର୍ତ୍ତମାନର ପସରା ସଜାଇ ଜନପ୍ରିୟତାର ହାଟରେ କିଣାବିକାର ଝୁଡ଼ିକୁ ନିଃଶେଷିତ କରୁଛନ୍ତି ?

କିନ୍ତୁ ବକ୍ତବ୍ୟ କ'ଣ ଖାଲି ପୁଞ୍ଜିରେ ହିଁ ଥାଏ ?

ଦିନ ଦିନ ଧରି ଜମି ଯାଇ ସଞ୍ଚିତ ହୁଏ ନାହିଁ ?

ଆପାତର ପସରାରେ ତାହାକୁ ସଜା ଯାଇପାରେ ନା ?

ଯେତେବେଳେ ଶମ୍ପା ଥିଲା, ମଝିରେ ମଝିରେ କହୁଥିଲା, ତମେ ସେ ସବୁ ପିତାମହୀ ପ୍ରପିତାମହୀଙ୍କ ଗଳ୍ପ ରଖିଦେଇ ଆମମାନଙ୍କୁ ନେଇ ଗଳ୍ପ ଲେଖିଲ ? ଖାଲି ଆମମାନଙ୍କୁ ନେଇ । ଆମେମାନେ ଯେ କି ଏକବାରେ ଏ ମୁହୂର୍ତ୍ତରେ ପୃଥିବୀରେ ଚରିବୁଲୁଛୁ । ନିଜର ଚିନ୍ତା ଭାବନା ଧରି ଯାହାକୁ କୁହାଯାଏ 'ଉଦ୍‌ବେଳିତ' ହେଉଛୁ, ନିଜ ନିଜର ଭୟଙ୍କର ଭୟଙ୍କର ଜ୍ୱାଳା-ଯନ୍ତ୍ରଣାକୁ ଧରି ଛଟପଟ ହେଉଛୁ ।

ଅନାମିକା ସେତେବେଳେ ହସିଦେଇ କହିଥିଲେ— ଏ ବାବା ! ତମମାନଙ୍କୁ କ'ଣ ମୁଁ ଚିହ୍ନିଛି ?

ପାଦ ହଲାଇ ହଲାଇ ଶମ୍ପା କହିଥିଲା— ଚିହ୍ନିବାକୁ ପଡ଼ିବ । ଆଡ଼େଇ ଦେଲେ ଚଳିବନି ।

ଶମ୍ପାର କଥାଟା ମନେପଡ଼ିଲାକ୍ଷଣି ନିଃଶ୍ୱାସଟିଏ ବାହାରି ଆସିଲା ।

କାହିଁ କେତେଦିନ ହେଲା ଯେମିତି ଚାଲିଗଲାଣି ଶମ୍ପା ।

ଅନାମିକା କହିବାକୁ ସୁଯୋଗ ପାଇଲେନି— ତେବେ ଏ ଯୁଗର ପରମ ପ୍ରତୀକ ତତେ ନେଇ ହିଁ ହାତ ଖଡ଼ି କରିବି ଆସେ ।

ସେଦିନ ଗୋଟିଏ ଆଲୋଚନା ସଭାରେ ଆଧୁନିକ ସାହିତ୍ୟ ନେଇ ଆଲୋଚନା କରିବାକୁ ଯାଇ ଅପ୍ରାସଙ୍ଗିକ ଭାବରେ ହିଁ ଜଣେ ଉଦ୍ଧତ ତରୁଣ ସଭାନେତ୍ରୀଙ୍କୁ ଉଦ୍ଦେଶ୍ୟ କରି କହିଦେଲା— ଏବର ଯୁଗକୁ ନେଇ ଆପଣ ଲେଖିବାକୁ ଚେଷ୍ଟା କରିବେନି ମାଉସୀ । ସେଇଟା ଆପଣଙ୍କ ଇଲାକାର ନୁହେଁ । ଏ ଯୁଗର ପୁଅଝିଅମାନେ ହେଉଛନ୍ତି ବାରୁଦବସ୍ତା, ବୁଝିଲେ ? ସେମାନେ ଅସଭ୍ୟ, ଉଦ୍ଧତ, ଅଖାଡୁଆ, କିନ୍ତୁ ଭେଜାଲ ନୁହଁନ୍ତି । ସେମାନେ ସତ୍ ଏବଂ ଖାଣ୍ଟି ଅନାମିକା ଭାବିଥିଲେ, ଏହିଠାରୁ ହିଁ କ'ଣ ମୁଁ ଏ ଯୁଗକୁ ଚିହ୍ନିବା ଆରମ୍ଭ କରିବି ? ନା ସେହି ଅସଭ୍ୟତା, ଅଭବ୍ୟତା, ଔଦ୍ଧତ୍ୟ, ଅଖାଡୁଆ ମଧ୍ୟ ଗୋଟାଏ ଆଖି-ଝଲସା ଠକାମି ଜିନିଷ ? ଯେଉଁଥିରେ କି ସେମାନଙ୍କର ନିଜର ଆଖି ମଧ୍ୟ ଝଲସିଯାଉଛି ?

ପିଲାଟା ଆହୁରି କହିଲା— ଆପଣ ଜାଣନ୍ତି ଆମେ ଏ ଯୁଗର ପିଲାମାନେ କେଉଁ ଭାଷାରେ କଥା କହୁ ? ଆପଣମାନଙ୍କର ସେ ରଙ୍ଗିନ ପକ୍ଷୀର ସୁନା ପର ଖୋଷା ସୁସଭ୍ୟ ଭାଷାରେ ନୁହେଁ । ସ୍ରେପ୍ ପୋଷାକ ପାଲିସ୍ ନ ଥିବା ନଗ୍ନ ଭାଷା ବୁଝିଲେ ? ଆପଣଙ୍କର ଏ ବିଷୟରେ ଧାରଣା ଅଛି ? ଆମମାନଙ୍କ ଭିତରେ କେବେ ଯାଇ ବସିଛନ୍ତି ?

ସଭାନେତ୍ରୀ ହସି କହିଥିଲେ— ଲେଖକମାନଙ୍କର ଆଉ ଗୋଟାଏ ଆଖି ଥାଏ ଜାଣିଛ ତ ? ତେଣୁ ତମମାନଙ୍କ ଆଡ୍ଡାରେ ଯାଇ ନ ବସିଲେ ମଧ, ଧାରଣା ହୁଏତ ଅଛି । କିନ୍ତୁ ତମମାନଙ୍କର ସେ ପୋଷାକ ଖସିଯାଇଥିବା ଗୁଡ଼ାକ ନିଜ ହାତରେ ଲେଖିବାର କ୍ଷମତା ଅଛି ବୋଲି ମନେ ହୁଏନି ।

—'ତା'ହେଲେ ?......' ପିଲାଟା ବିଜୟଗର୍ବରେ କହିଥିଲା— ସେଇଥିପାଇଁ କେବଳ କହୁଛି— ସେଇଟା ଆପଣଙ୍କର ସୀମା ନୁହେଁ । ନ ବୁଝି ବାରୁଦରେ ହାତ ଦେବାକୁ ଯିବେନି ।

ଏମାନେ ହିଁ ସଭାନେତ୍ରୀଙ୍କୁ ଡାକି ନେଇଯାଇଥିଲେ, ଫୁଲ ମାଳଫାଳ ଦେଲେ । ଅତଏବ ହସିବାକୁ ହିଁ ପଡ଼ିଲା । ହସିବାକୁ ପଡ଼ିଲା 'ଅମୃତଂ ବାଳଭାଷିତଂ' ନୀତି ଧରି ।

ତେବେକେ ମନରେ ପ୍ରଶ୍ନ ଜାଗୁଛି ।

ଏମାନେ ହିଁ କ'ଣ ସବୁ ?

ଏମାନଙ୍କୁ ଧରି ହିଁ କ'ଣ ଯୁଗର ବିଚାର କରାଯିବ ?

ମଝି ମଝିରେ ଭାରି ରାଗ ହୁଏ ଶମ୍ପା ଉପରେ । ସେଦିନ ମଧ ହୋଇଥିଲା । ଶମ୍ପାଟା ଥିଲେ ଡାକି କହିପାରିଥାନ୍ତେ— ଆହେ ମା, ବାରୁଦ ବସ୍ତାର ତ ତମେ ଗୋଟିଏ ନମୁନା ? ଏଇଲେ କହିଲ ଦେଖିବା ଏ ବାରୁଦକୁ ତମେମାନେ ଆତ୍ମରକ୍ଷାର କାର୍ଯ୍ୟରେ ଲଗାଇବ ନା ଆତ୍ମଧ୍ୱଂସର କାର୍ଯ୍ୟରେ ଲଗାଇବ ?

କୋଉଠି ବସି କ'ଣ ଯେ କରୁଛି, କିଏ ଜାଣିଛି ?

ଭାବୁ ଭାବୁ ପୁଣି ନିଜ ଆଡ଼କୁ ଚାହିଁଲେ ଅନାମିକା— ନାଃ, ହୁଏତ ସତରେ ଏଥର କଲମକୁ ଛୁଟି ଦେବାର ସମୟ ଆସିଛି, ହୁଏତ ସତରେ ସେ ସରି ଆସିଲେଣି । ଭାବିଲେ— ନ ହେଲେ ଲେଖି ସେହି ଆନନ୍ଦବୋଧ କାହିଁକି ହେଉନି ?

କାହିଁକି ମନେହେଉଛି ରାଜମିସ୍ତ୍ରୀର ଇଟା ଉପରେ ଇଟା ସଜାଇଲା ପରି, ଏ କେବଳ ଶବ୍ଦ ଉପରେ ଶବ୍ଦ ଗୁନ୍ଥି ଚାଲିଛି ।

ଘରର ପୂର୍ବପଟ କାନ୍ଥରେ ଗୋଟାଏ ବୁକ୍‌କେସ୍‌ରେ ଅନାମିକାଙ୍କ ବହିର ଗୋଟିଏ ଲେଖାଏଁ 'କପି' ରଖା ଯାଇଥିଲା । ତା' ଶର୍ମାର ହିଁ ଚେଷ୍ଟାରେ । ଅବଶ୍ୟ ପ୍ରଥମ ଆଡ଼ର ବହିଗୁଡ଼ାକ ସବୁ ନାହିଁ । ଦେଖି ରାଗି ଯାଇଥିଲା ଶର୍ମା, କହିଥିଲା – ଏମିତି ହେଳା କାହିଁକି କରିଛ ? ଗୋଟିଏ ହେଲେ କପି ରଖିବା କଥା ତ !

ଅନାମିକା ହସି କହିଥିଲା – ତୁ ତ ସେତେବେଳେ ଜନ୍ମ ହୋଇ ନ ଥିଲୁ, ବୁଦ୍ଧି ଦେବାକୁ କେହି ନ ଥିଲେ ନା ।

ତେବେକେ ତା'ର ଚେଷ୍ଟାରେ ହିଁ ଅନେକ ରହିଛି । ସେଗୁଡ଼ିକ ଆଡ଼କୁ ଚାହିଁ ଦେଖିଲେ ଅନାମିକା, ଯା ମଧ୍ୟ ଓଜନ ହିସାବରେ କମ୍ ନୁହେଁ । କିନ୍ତୁ ଅନାମିକାଙ୍କର ହଠାତ୍ ମନେହେଲା, ସବୁଯାକ ବୃଥା କଥାର ମାଳ ଗୁନ୍ଥା ହୋଇଛି ! ଯେଉଁ ଅଙ୍ଗୀକାର କରିଥିଲେ, ତାହା ପାଳନ କରିନାହାନ୍ତି, କରିବାର କ୍ଷମତା ହୋଇ ନାହିଁ । ଯେଉଁକଥା କହିବାର ଥିଲା ତାହା କୁହାଯାଇନି ।

ଆଉଥରେ ଟିକିଏ ହସ ମାଡ଼ିଲା ।

ଯାହା ପାରିଛି, ଆଉ ଯାହା ପାରିନି, କିଛି ହେଲେ ତ ଠିଆ ହୋଇ ରହିବ ନାହିଁ । ଏ ଯୁଗ ଦ୍ରୁତଗତିର ଯୁଗ, ସେଥିପାଇଁ ମୁହୂର୍ତ୍ତକରେ ସବୁ ସଫା କରି ପକାଏ । ପରକ୍ଷଣରେ ଭୁଲିଯାଏ ।

ଅଧ୍ୟାପକ ସାହିତ୍ୟିକ ଅମଳେନ୍ଦୁ ଘଟକଙ୍କ କଥା ମନେପଡ଼ିଲା ।

କ୍ଲାସ୍‌ରେ ପଢ଼ାଉ ପଢ଼ାଉ ହାର୍ଟ-ଆଟାକ୍ ହୋଇ ମରିଗଲେ, କେତେଦିନର ବା କଥା ସେଇଟା ? ମୃତ୍ୟୁର ସଦ୍ୟ ଆଘାତ ପାଇଁ ମନେ ହୋଇଥିଲା, ଦେଶ କୌଣସି ଦିନ ଆଉ ଏ କ୍ଷତି ବୋଧହୁଏ ସମ୍ଭାଳି ପାରିବନି । ଦେଶଟା ଭାଙ୍ଗି ପଡ଼ିଥିଲା, ଦେଶର ମଣିଷମାନେ ଭାଙ୍ଗି ପଡ଼ିଥିଲେ ।

କେତେ ଫୁଲ, କେତେ ମାଳ, କେତେ ଶୋକସଭା ! କେତେ ଶୋକପ୍ରସ୍ତାବ ! ଆଶ୍ଚର୍ଯ୍ୟ ଏ ବର୍ଷକ ଭିତରେ ଯେମିତି ଦେଶ ଅମଳେନ୍ଦୁ ଘଟକର ନାଁଟାକୁ ସୁଦ୍ଧା ଭୁଲି ଯାଇଛି ।

ଆଉ ସ୍ମୃତିରକ୍ଷା କମିଟି ? ସେ ଯେପରି ନିଦଔଷଧ ଖାଇ ନିଦରେ ଶୋଇ ପଡ଼ିଛି ।

ଅଥଚ ନିଜର ସୃଷ୍ଟି ସଂପର୍କରେ କି ଗଭୀର ମୂଲ୍ୟବୋଧ ଥିଲା ଅମଳେନ୍ଦୁ ଘଟକଙ୍କର ! ଅମରତ୍ୱର ସ୍ୱପ୍ନ ଥିଲା ତାଙ୍କ ମନରେ ।

ଅମଳେନ୍ଦୁ ଘଟକଙ୍କୁ ଯଦି ଲୋକେ ମାତ୍ର ତିନିଶ ପଁଷଠୀ ଦିନ ଭିତରେ ଭୁଲି ଯାଇପାରିଲେ, ଅନାମିକାଙ୍କୁ ଦିଇଟା ଦିନ ମନେ ରଖିବା ଦାୟିତ୍ୱ ବା କାହାର ରହିବ ?

ଜଣେ ସହକର୍ମୀଙ୍କ ବିୟୋଗ ଗୋଟିଏ ବଡ଼ ଶିକ୍ଷା । ନିଜର ଭବିଷ୍ୟତ୍ ଦେଖିହେବ ସେଥିରୁ । ଅଭିଯୋଗର କିଛି ନାହିଁ, ଧୂଳିର ପ୍ରାପ୍ୟ ଖଜଣା ତ ଧୂଳିକୁହିଁ ଦେବାକୁ ପଡ଼େ ।

ସବୁକଥାର ମଝିରେ କେମିତି କେଜାଣି ଶମ୍ପାର କଥା ଚାଲିଆସେ ମନ ଭିତରକୁ, ସବୁ ଚିନ୍ତା ଭିତରେ ଭାସି ଉଠେ ଶମ୍ପାର ମୁହଁ ।

ଇଚ୍ଛା ହେଲା ଜୋର୍‌ରେ ଚିତ୍କାର କରି, ଶମ୍ପା ଯେଉଁଠି ଅଛି ଯେମିତି ତା କାନକୁ ଯାଇ ଶୁଭିବ, ସେମିତି ଜୋର୍‌ରେ ଚିତ୍କାର କରି କହନ୍ତି– ଶମ୍ପା ମୁଁ ତମମାନଙ୍କର ଯୁଗର ଆଉ କିଛି ଜାଣେ ବା ନ ଜାଣେ, ଜାଣି ପକାଇଛି ଯେ ତମର ଏ ଯୁଗ ବଡ଼ ନିଷ୍ଠୁର । ଏହି ପରିଚୟଟାହିଁ ବୋଧହୁଏ ତା'ର ସବୁଠାରୁ ସ୍ପଷ୍ଟ ପରିଚୟ ।

ଇଚ୍ଛା ହେଉଛି ତୁନି ହୋଇ ଟିକିଏ ବସି ରହିବାକୁ, କିନ୍ତୁ ସମୟ କାହିଁ ? ସେହି 'ଭସ୍ମଲୋଚନ'ଟାକୁ ଓଲଟାଇ ଟିକିଏ ଟିକିଏ ପଢୁଥାନ୍ତି ଅନାମିକା !

## ॥ ୨୭ ॥

ବକୁଳର ପ୍ରକୃତିରେ ପାରୁଲ୍ ପରି ନିଜ ଭିତରେ ବୁଡ଼ି, ଗଭୀରରେ ତଳେଇ ଯିବାରେ ଦୁଃଖ ନାହିଁ, ବକୁଳର ସେ ସମୟ ମଧ ନାହିଁ, ବକୁଳ ବର୍ତ୍ତମାନର ସ୍ରୋତର ଧକ୍କାରେ ଧାଇଁ ମଲା ସାରା ଜୀବନଟା !

ପାରୁଲ୍‌ର କଥା ଅଲଗା ।

ପାରୁଲ୍ ଚିରଦିନ ହିଁ ଆତ୍ମମଗ୍ନ । ଏବେ ତ ଆହୁରି ବେଶୀ ହୋଇଯାଇଛି । ପାରୁଲ୍‌ର ଆଖି ଆଗରେ ଗଙ୍ଗାର ଅସରନ୍ତି ତରଙ୍ଗ ରହିଛି । ପାରୁଲ୍‌ର ଜୀବନଟା ନିସ୍ତରଙ୍ଗ । ସେହି ନିସ୍ତରଙ୍ଗ ଜୀବନର ମଝିରେ ହଠାତ୍ ଗୋଟାଏ ବଡ଼ ଢେଲା ପଡ଼ିବା ପରି ତରଙ୍ଗ ଉଠାଇଥିଲା ଶମ୍ପା ନାଆଁର ଝିଅଟି, ପାରୁଲ୍‌ର ଯେ ଏବେସୁଦ୍ଧା କାହା ପାଇଁ କିଛି କରିବାର ଅଛି, ପାରୁଲ୍ ଯେ ଏବେ ମଧ କାହାର ପ୍ରୟୋଜନରେ ଲାଗିପାରେ ଏ ସ୍ୱାଦ ଆଣି ଚଖାଇଥିଲା ସେ, କିନ୍ତୁ ମଧ ତ କ୍ଷଣିକ ବୁଦ୍‌ବୁଦ ପରି ମିଳାଇଗଲା ।

ମତେ ଆଉ କାହାର କିଛି ଦରକାର ନାହିଁ । ଏମିତି ଶ୍ମଶାନର ଶାନ୍ତି ଧରି ପାରୁଲ୍ ସ୍ତବ୍ଧ ହୋଇ ବସିଥିଲା, ପୁଣି ଏକ ତରଙ୍ଗ ଆସିଲା ତାର ଜୀବନରେ ।

ପାରୁଲ୍‌ର ପୁଅ ନିଜ ପୁଅକୁ ରଖିଦେଇ ଗଲା ମା' ପାଖରେ । ତା'ର ସମାରୋହମୟ ଜୀବନରେ ମା'ର ପ୍ରୟୋଜନ ସରିଯାଇଥିଲା, କିନ୍ତୁ ବ୍ୟାଣ୍ଡବାଜା ବନ୍ଦ ହୋଇ ଯାଇଥିବା ବିଧ୍ୱସ୍ତ ଜୀବନରେ ପୁଣି ଦେଖାଦେଲା ସେ ପ୍ରୟୋଜନ !

ପାରୁଲ୍ କହିଥିଲା— ସେ କ'ଣ ଏକୁଟିଆ ଏ ବୁଢ଼ୀ ପାଖରେ ରହିପାରିବ ?

ପୁଅ କହିଥିଲା ପାରିବା ଅଭ୍ୟାସ କରିବାକୁ ହେବ । ତା ନ ହେଲେ ତ ହଷ୍ଟେଲର ଜୀବନ କଟାଇବାକୁ ପଡ଼ିବ । ସେଇଟା ମୁଁ ଚାହୁଁନି ।

ହଁ, ପାରୁଲ୍‌ର ପୁଅ ଏବେ ଆଉ ଚାହୁଁନି ପୁଅକୁ କନ୍‌ଭେଣ୍ଟରେ ରଖି 'ସଭ୍ୟ' ଭାବରେ ମଣିଷ କରିବାକୁ । ଅଥଚ କିଛିଦିନ ଆଗରୁ ମଧ୍ୟ ସେ ଦାବି ଥିଲା ତା'ର । ଆଉ ଟିକିଏ ବଡ଼ ହେଲାମାତ୍ରେ କେଉଁଠାକୁ ପଠାଇଦେବାର ବାସନା ଏବଂ ଚେଷ୍ଟା ଥିଲା । ହଠାତ୍ ମନଟା ଘୂରିଯାଇଛି ତା'ର । ସେ ଏବେ 'ପ୍ରାଚୀନ କାଳ'ର ଆଦର୍ଶ ଆଉ ସନାତନ ପଦ୍ଧତିରେ ପୁଅକୁ ମଣିଷ କରିବାକୁ ଚାହେଁ । ଅତଏବ ମା' ପାଖ ହିଁ ଶ୍ରେୟ । ପ୍ରଥମଦିନ ଏଇଥିପାଇଁ ପୁଅକୁ ଗାଳି ଦେଇଥିଲା ପାରୁଲ୍, କହିଥିଲା, ପୁଅ ଝିଅ କ'ଣ ତୋ ହାତର ବଲ୍ ହେଇଛନ୍ତିଯେ ନିଜର ଯେତେବେଳେ ଯାହା ମତିଗତି ହେବ, ସେତେବେଳେ ସେମାନଙ୍କ ଗତି ମଧ୍ୟ ସେଇଆ ହେବ ? ହେଇଟି କେତେଦିନ ଆଗରୁ ତ ତୁ ତାକୁ କହିଥିଲୁ— ତୁ ସାହେବ ହ ।' ଆଜି କହୁଛୁ, ତୁ ପୁରୁଣାକାଳିଆ ହ । ପିଲାଲୋକ, ଏ ଧକ୍କା ସମ୍ଭାଳି ପାରିବ ସେ ?

ପୁଅ କହିଥିଲା— ଜୀବନରେ ଆହୁରି ବଡ଼ ଧକ୍କା ଆସିପାରେ ମା', ଏଇଟା ଧର ସେହି ଧକ୍କା ସହିବାର କ୍ଷମତା ଅର୍ଜନର ପ୍ରସ୍ତୁତି ।

—ହେଲେ ମୋ ପାଖରେ ଯୋ ଛାଡୁଛୁ, ମତେ କ'ଣ ଭାରି ପୁରୁଣାକାଳିଆ ବୋଲି ତୋ'ର ମନେହୁଏ ? ମୁଁ ତ ଗୋଟାଏ ସର୍ବସଂସ୍କାରବର୍ଜିତ କଳାପାହାଡ଼ !

ପୁଅ ମା'ର ମୁହଁ ଆଡ଼କୁ ଚାହିଁ ଟିକିଏ ହସି କହିଥିଲା, ସେତେବେଳେ ତ ଖାଣ୍ଟି ! ନିର୍ଭେଜାଲ କଳାପାହାଡ଼ ! ଭେଜାଲ ଦେଖି ଦେଖି ହାଲିଆ ହୋଇଗଲିଣି ମା !

—ତା'ହେଲେ ପୁଅକୁ ଛାଡ଼ିଦେଇ ଯା । ତେବେ ଗ୍ୟାରେଣ୍ଟି ଦେଇପାରିବିନି ବାପା, ତୋର ପୁଅକୁ ତୋ ମନ ଭଳି ଗଢ଼ିପାରିବି କି ନାହିଁ । ତୁ ମତେ ଯାହା ଭାବୁଛୁ, ମୁଁ ସତରେ ତାହା କି ନୁହେଁ, ସେଥିରେ ମୋ ନିଜର ଘୋରତର ସନ୍ଦେହ ରହିଛି ।

—ତମର ଥିଲେ ଥାଉ, ମୋର ନାହିଁ— କହି ପୁଅ ଚାଲିଯାଇଥିଲା ।

ସାଧାରଣତଃ ପାରୁଲ୍‌ର କେବେ ଯାହା ହୁଏ ନାହିଁ, ତା' ହୋଇଥିଲା । ଆଖିକୁ ଲୁହ ଆସିଯାଇଥିଲା,. ପାରୁଲ୍‌ର !...... ମତେ କିଏ ବୁଝିପାରିଲା, ସେହି ବୁଝିବା ଭିତର ଦେଇ ସେ ବିଶ୍ୱାସ କଲା ମତେ, ଯାଠାରୁ ବଳି ଆହ୍ଲାଦର କଥା କ'ଣ ଅଛି ? ଆଉ ସେ ସ୍ୱୀକୃତି ଯଦି ଅପାଣାର ସନ୍ତାନ ପାଖରୁ ମଣିଷ ପାଇବ, ତା'ଠାରୁ ବଳି ମୂଲ୍ୟବାନ ବୋଧହୁଏ କିଛିହେଲେ ନାହିଁ ।

କୁଆଡ଼େ ସ୍ୱୟଂ ଭଗବାନ ସେହି ସ୍ୱୀକୃତିର କାଙ୍ଗାଳ, ସେ ମଧ ତାଙ୍କର ଗଠିତ ସନ୍ତାନମାନଙ୍କ ପାଖରେ ଭିକ୍ଷାପାତ୍ର ପତେଇଦେଇ କହିଛନ୍ତି,– ତୁ ମତେ ବୁଝ୍, ମତେ ଜାଣ୍ । ମୁଁ ଯେ କ'ଣ ତା' ଥରେ ଉପଲବ୍ଧି କର ।

ତା'ହେଲେ ? ମଣିଷ ତ କେଉଁ ଛାର ।

ହେଲେ ପୁଅର ଏହି ପୁଅଟିକୁ ନେଇ ହଇରାଣ ହେଉଛି ପାରୁଲ୍ । ପିଲାଟି ଏତେ ଗମ୍ଭୀର ହୋଇଯାଇଛି, ଯେମିତି କାଠ କି ପଥର ! କୌଣସି ହେଲେ ବାଟରେ ଟିକିଏ ପଶି ତା'ର ମନଟାକୁ ଛୁଇଁପାରିବ ବୁଝିପାରୁନି ପାରୁଲ୍ ।

ଗପ କହେ, ଢଗ ଶିଖାଇବାକୁ ଚେଷ୍ଟା କରେ, ନିଜର ପିଲାଦିନର କାହାଣୀ ଶୁଣାଇ, ତା'ରି ବାପାର ପିଲାଦିନର ଦୁଷ୍ଟାମି ଆଉ ଜିଦ୍-ଜିଗରର ବିଶଦ ବର୍ଣ୍ଣନା କରି ସେହି ଗାମ୍ଭୀର୍ଯ୍ୟର ପାଷାଣ-ପ୍ରାଚୀରରେ ଏତିକି ଟିକିଏ ହେଲେ ଫାଟ ସୃଷ୍ଟି କରି ଦେଇପାରୁନି ପାରୁଲ୍ ।

ଏକାବେଳେ ଯେ ନାତି ହସୁନି ତା' ନୁହେଁ, ହସ ଗପ ଶୁଣିଲେ ଟିକିଏ ହସେ । ସଦ୍ୟ ଶୋକଗ୍ରସ୍ତ ମଳିନଚିତ୍ତ ମଣିଷ, ଶିଶୁର ହସଖେଳ ଦେଖିଲେ ଯେମିତି ଟିକିଏ ପ୍ରାଣହୀନ ହସ ହସେ, ସେମିତି ହସ ! ଯେମିତି ପାରୁଲ ଯେ ତା'ପାଇଁ ଏତେ ଚେଷ୍ଟା କରୁଛି, ସେକଥା ବୁଝି ବିନ୍ଦୁଏ କୃତଜ୍ଞତାର କୁଣ୍ଠିତ ହସ ହସେ ସେ !

ପାରୁଲ୍ କହେ, ତୁ ଗୋଟାଏ ବୁଢ଼ା । ପୂରା ବୁଢ଼ା ! ତୋ'ର ଯେତେ ଭଲ ଆଉ ସୌଖୀନ ନାଁ ଥିଲେ ମଧ, ମୁଁ ତତେ 'ବୁଢ଼ା' ବୋଲି ଡାକିବି, ଏଇଟା ମୋର ପ୍ରତିଜ୍ଞା !

'ବୁଢ଼ା' ଟିକିଏ ବୁଢ଼ାଳିଆ ହସ ହସି କହେ, ସେଇୟା ଡାକୁନ ? ଭଲ ତ ।

ପାରୁଲ୍ ରାଗି କହେ, ଆଚ୍ଛା, ତୁ ଏମିତି ନିକିତିରେ ମପା ହସ ହସିବାକୁ କୋଉଠୁ ଶିଖିଲୁ କହିଲୁ ? ଆମର ପିଲାଦିନେ ଆମେମାନେ ଜୋର୍‌ରେ ଜୋର୍‌ରେ ହସୁଥିଲୁ, ସେଇଟା ଥିଲା ଗୋଟାଏ ମହାଦୋଷ, ତେଣୁ ହସିଲାକ୍ଷଣି ଧମକ

ଖାଉଥିଲୁ । ତେବେକେ ଆମେ ହସୁଥିଲୁ ଜୋର୍‌ରେ । ଆଉ ତୁ ବାପା କେମିତି ମାପି ମାପି ହସ ହସିବା ଅଭ୍ୟାସ କରିଛୁ !

ବୁଢ଼ା ସେ କଥାର ଉତ୍ତରରେ ଆହୁରି ଶୀର୍ଣ୍ଣ ହସ ହସି କହିଲା— ମୁଁ ତ ଭାରି ହସେ ।

ଯା ଭିତରେ କେଉଁ ଫାଟ ଦେଇ ପଶିବ ପାରୁଲ୍ ?

ଏଡ଼ିକି ଟିକିଏନାକୁ ପୁଅର ଆଶ୍ଚର୍ଯ୍ୟ ସଂଯମ !

ଏଭଳି ସାବଧାନରେ କଥା କହେ, ଯେମିତି ତା'ର ଅତୀତ ବୋଲି କିଛି ନାହିଁ, କିଛି ନ ଥିଲା । ସେ ଯେମିତି କେବଳ ମାତ୍ର ଏ ଚନ୍ଦନନଗରର ପାରୁଲ୍‌ର 'ବୁଢ଼ା' ।

ମା', ବାପା, ଭଉଣୀ, କି ନିଜର ହଜି ଯାଇଥିବା ଜୀବନର କୌଣସି କଥାର ଛନ୍ଦାଂଶ ମଧ୍ୟ ଅସତର୍କରେ କେବେହେଲେ ବୁଢ଼ାର ମୁହଁରୁ ବାହାରୁ ନ ଥିଲା ।

ବୁଢ଼ା ଯେମିତି ଭୂଇଁ କଣା କରି ଥାଏ ।

ହୁଏତ କେଉଁଦିନ ଅନ୍ୟମନସ୍କ ଥିବାରୁ ପାରୁଲ୍ କହିଦିଏ— ଏତିକିବେଳେ ତୁ କ'ଣ ଖାଉଥିଲୁ ? ଛୁଟି ଦିନ ଦିପହରେ ତୁ କ'ଣ କରୁଥିଲୁ ?

ଅତି ସହଜରେ ବୁଢ଼ା କହେ— ମନେ ନାହିଁ !

ପାରୁଲ୍ କହେ— ବୁଢ଼ା, ତୋ ବାପାଙ୍କ ଚିଠି ଆସିଛି । ତୋ'ର ଆଉ ମୋର ଗୋଟେ ଲଫାଫା ଭିତରେ, ଆଉ ଆମେ ମଧ୍ୟ ଦି'ଜଣଯାକ ଦିଇଟା ଚିଠି ଲେଖି ଲଫାଫାରେ ପୂରାଇ ପଠାଇଦେବା । ମୋରଟା ଲେଖୁଛି— ତୋରଟା ଲେଖ୍ ।

ଏହିପରି ସଜାଡ଼ି ଖୋଲି କହେ ।

ତେବେକେ ଅମ୍ଳାନ ମୁହଁରେ ବୁଢ଼ା କହେ— ତମେ ତ ସବୁ ଖବରତକ ଲେଖୁଛ— ଏ ମା' ! ମୁଁ ଲେଖୁଛି ମୋ ପୁଅକୁ, ଆଉ ତୁ ଲେଖିବୁ ତୋର ବାପାକୁ । ଦୁଇଟାଯାକ କ'ଣ ଏକା କଥା ? ଆ, ଆ, ଚିଠିଟା ଶୀଘ୍ର ପଢ଼ିଦେଇ ଉତ୍ତରଟା ଲେଖିଦେ ।

ଡାକ ଯିବା ସମୟ ଚାଲିଯିବ ।

ବୁଢ଼ା ଜମା ଆସେନି, ଚିଠି ଲେଖିବା ତ ଦୂରର କଥା, ପଢ଼େନି ସୁଦ୍ଧା । ହାତରେ ବି ଧରେନି । କହେ— ଏଇଲେ ଲେଖିବାକୁ ଇଚ୍ଛା ହେଉନି, ତମେ ପଠାଇ ଦିଅ ।...... କହେ— ଏବେ ଅଙ୍କ କରୁଛି, ପରେ ପଢ଼ିବି ।

ସ୍ତବ୍ଧ ହୋଇ ଚାହିଁ ରହିଥାଏ ପାରୁଲ୍ ।

ତା'ର ଆଗର ଚେହେରାଟା ମନେପଡ଼ିଯାଏ ପାରୁଲ୍‌ର । ପ୍ରଥମେ ପ୍ରଥମେ ଦିନେ ଦୁଇଦିନ ପାଇଁ ବାପ-ମା' ସହିତ ବୁଲିବାକୁ ଆସୁଥାଏ । 'ବାପି' 'ବାପି' କରି ଯାହା ଅଡ଼ି ବସୁଥାଏ !...... ବାପି, ମତେ ଏଇକ୍ଷଣି ବୁଲାଇବାକୁ ନିଅ । ବାପି, ମୁଁ ଏଇକ୍ଷଣି ଡଙ୍ଗା ଚଲାଇ ଗଙ୍ଗାରେ ଭାସିବି । ବାପି, ତମେ ଯେ କହୁଥିଲ ଗୋଟେ ତିନିକୋଣିଆ ଏରୋପ୍ଲେନ୍ କିଣିଦେବ, ଏଇକ୍ଷଣି ଦିଅ ।

ବାପି, ବାପି, ବାପି !

ବାପିର ଜୀବନକୁ ଅତିଷ୍ଠ କରି ପକାଉଥାଏ । ବେକ ଧରି ଝୁଲିପଡ଼ି, ପିଠି ଉପରେ ଡେଇଁପଡ଼ି ଚଢ଼ି ବସୁଥାଏ ।

ବାପି ଯଦି କହୁଥାଏ – ଏଇଲେ ଗଙ୍ଗାରେ ଜୁଆର ଆସିଛି, ଏଇଲେ କିଏ ଡଙ୍ଗା ଚଢ଼ନ୍ତି ନାହିଁ !...... ଅତି ସହଜରେ ବୁଢ଼ା କହୁଥାଏ – ମାରି ତମର ହାଡ଼ ଭାଙ୍ଗିଦେବି !

ତା'ର ମା'-ମଣି ସମ୍ପର୍କରେ ଟିକିଏ ସମ୍ମାନ ଭାବ ଥିଲା । ଏଭଳି କଥା ମା'କୁ କହିବାକୁ ସାହସ କରୁ ନ ଥାଏ । ମା' କହୁଥାଏ – ନିଜର ମାନ ନିଜେ ରଖିବା ଜାଣୁ ନାହାନ୍ତି, ସେଇଥିପାଇଁ ପୁଅର ଏତେ ସାହସ !

ତେବେକେ ମା'-ମଣି ଅନ୍ତ ପ୍ରାଣ ମଧ୍ୟ ଥିଲା ସେ ।

ଆଉ ସେ କୁନି ସାନ ଭଉଣୀଟା ପ୍ରତି ? ଆହା, ଏକାବେଳେକେ ଭଉଣୀ ଯେମିତି ନିଜର ପ୍ରାଣ ତା'ର, ଭଉଣୀର ବୋକାମି ଦେଖି ଆହ୍ଲାଦରେ ବିଗଳିତ ହୋଇଯାଉଥିଲା । ପାରୁଲ୍‌କୁ ଡାକି ଉଚ୍ଛ୍ୱସିତ ଭାବରେ ସେ ମତଗୁଡ଼ିକ ଜଣାଉଥିଲା, ସବୁ ମନେ ପଡ଼ିଯାଉଛି ପାରୁଲ୍‌ର ।

– ଜେଜେମା', ଜେଜେମା', ଲିଲିଫୁଲଟାର ବଡ଼ ହୋଇଯିବାକୁ କେମିତି ସଉକ୍ ଦେଖୁଛ ? ନିଜର ଜୋତା ନ ନେଇ ବାପିଙ୍କ ଜୋତା ପିନ୍ଧି ବୁଲୁଛି– ଉଚ୍ଛ୍ୱସିତ କଳକଣ୍ଠ । ଯାହା ଦି'ତିନିଦିନ ରହୁଥାଏ, ଗଙ୍ଗାତୀରର ଏହି ନିସ୍ତରଙ୍ଗ ଘରଟିକୁ ମୁଖର କରି ରଖୁଥିଲା ସେ ।

ସେହି ପିଲାଟା ତ !

ସେହି ଏକା ପିଲାଟା ଏ ଘରର ମଉନ କାନ୍ଥଗୁଡ଼ାକୁ ଯେମିତି ଡବଲ ଭାରୀ କରି ଦେଇଛି । କେହି ନାହାନ୍ତି, କଥା କହିବାକୁ କେହି ନାହାନ୍ତି, ସେ ଗୋଟାଏ ପ୍ରକାର ଶାନ୍ତ ସ୍ତବ୍ଧତା, କିନ୍ତୁ ଜଣେ ଅଛି, ଯାହାର ହଠାତ୍ ହଠାତ୍ ବଂଶୀ ପରି ବାଜି ଉଠିବାର କଥା, ଝରଣା ପରି କଳକଳ ହେବାର କଥା, ସେ

ଯଦି ନିଥର ହୋଇ ରହେ, ସେ ସ୍ତବ୍ଧତାରେ ଦମ୍ ଅଟକି ଆସେ । ନିଃଶ୍ୱାସ ରୁନ୍ଧି ହୋଇଯାଏ ।

ପୃଥିବୀର ତିକ୍ତ ଅଭିଜ୍ଞତାରେ ବୁଢ଼ା ହୋଇଯାଇଥିବା ଗୋଟିଏ ଶିଶୁର ଭାର ଯେ କେତେ ଗୁରୁଭାର, ସେଇଟା ଦିନରାତି ଅନୁଭବ କରୁଛି ପାରୁଲ୍ । ଆଉ ଅନୁଭବ କରିପାରୁଛି ସେହି ସ୍ତବ୍ଧତାର ଅନ୍ତରାଳରେ କି ଝଡ଼ ବହୁଛି ।

ଅଳ୍ପଦିନ ତଳେ ତ ଗୌରବର ଉଚ୍ଚ ରାଜାସନରେ ଥିଲା ସେ, ହଠାତ୍ ଓହ୍ଲାଇ ଆସିବାକୁ ପଡ଼ିଲା ରିକ୍ତ ନିଃସ୍ୱ ଏକ ଅଗୌରବର ରୁକ୍ଷ ଭୂମି ଉପରକୁ । ସେଠାରେ କେଉଁଠି କୋଉସ୍ଥାନରେ ହେଲେ ସ୍ନେହ ନାହିଁ, ମମତା ନାହିଁ, ତ୍ୟାଗ ନାହିଁ ।

ନା, ସେମାନଙ୍କ ପାଇଁ କେହି ତ୍ୟାଗସ୍ୱୀକାର କରିବାକୁ ରାଜି ନୁହଁନ୍ତି । ସେମାନେ ଚୂର୍ଣ୍ଣ ହୋଇଯାଆନ୍ତୁ, ସେମାନଙ୍କ ଉପରବାଲାମାନେ ଅଟଳ ରହିଥିବେ ନିଜର ହୃଦୟ ସମସ୍ୟା ନେଇ ।

ପାରୁଲ୍ ମନେ ମନେ କହିଲା— ସବୁ ଯୁଗର ହିଁ ବଳି ଅଛି, ତମେମାନେ ହେଉଛ ଏ ଯୁଗର ବଳି । ଆମମାନଙ୍କର ଅନ୍ଧକାର ଯୁଗରେ ଆମେ ଥିଲୁ ଅନ୍ଧ କୁସଂସ୍କାରର ବଳି, ଆଉ ଏ ଆଲୋକ ଯୁଗରେ ତୁମେମାନେ ହେଉଛ ସଭ୍ୟତାର ବଳି ।

ତେବେକେ ଚେଷ୍ଟା କଲା ପାରୁଲ୍ । ଡାକ ଦେଲା— ବୁଢ଼ା ଆ, ବୁଢ଼ୀର ମୁଣ୍ଡର ପାଚିଲାବାଳ ଉପୁଡ଼ାଇ ଦେଲୁ—

'ବୁଢ଼ା' ବହି ହାତରେ ଧରି ଆସି ଠିଆହେଲା । ସବୁବେଳେ ହାତରେ ବହି । ଗପ ବହି ନୁହେଁ, ପଢ଼ା ବହି ।

ସେହି ବହି-ଖାତା ହିଁ ଯେପରି ତା'ର ଆତ୍ମରକ୍ଷାର ଅସ୍ତ୍ର ।

ହୁଏତ ଖଣ୍ଡା ସାମନାରେ ଢାଲ । ଡାକିଲେ ସବୁବେଳେ ବହି ଧରି ଆସି ଠିଆହୁଏ । ଆସି କହିଲା— ତମର ତ ପାଚିଲା ବାଳ ନାଇଁ—

— ଅଛିରେ ଅଛି । ଭିତରେ ଅଛି, ଖୋଜି ଦେଖ୍ ।

ବୁଢ଼ା ନିର୍ଲିପ୍ତଭାବରେ କହିଲା, ତାକୁ ତ କେହି ଦେଖିପାରୁ ନାହାନ୍ତି ।

କହି ଚାଲିଗଲା ।

ପାରୁଲ ଡାକିଲା— ବୁଢ଼ା ଆସିଲୁ ଗୋଟାଏ ଫାଷ୍ଟକ୍ଲାସ୍ ଜଳଖିଆ କରୁଛି, ଚଟ୍‌ପଟ୍ ଚାଲି ଆ—

ଆରଘରେ ରହି ବୁଢ଼ା କହିଲା— ମତେ ଏବେ ଭୋକ କରୁନି ।

—ଆରେ ବାବା ! ତୁ ଆସିଲୁ, ଦେଖିଲାକ୍ଷଣି ଭୋକ କରିଯିବ । ଏମିତି ଜିନିଷ, ତୁ ତା' ନାଁ ଜମା ଶୁଣିନୁ—

ନିତାନ୍ତ ଅନିଚ୍ଛୁକ ମୂର୍ତ୍ତିରେ ଆସି ଠିଆହେଲା ପିଲାଟା

ପାରୁଲ୍ ଅତିରିକ୍ତ ଉତ୍ସାହ ଦେଖାଇ କହିଲା— କହିଲୁ, ଏଗୁଡ଼ାକ କ'ଣ ?

ନାତି ଭାବିବାକୁ ତିଳେ ଚେଷ୍ଟା ନ କରି ମୁଣ୍ଡ ହଲାଇ କହିଲା, ଜାଣିନି ।

—ଜାଣିବୁ କେମିତି ? ଏସବୁ ହେଲା ସେକାଳର ଜିନିଷ । ମୋ ଶାଶୁ ତିଆରି କରୁଥାନ୍ତି । ତୋର ବାପା କହୁଥାଏ— ଜେଜେମା', ସବୁଦିନ କାହିଁକି ବକୁଳ-ପିଠା କରୁନ ? ଅସଲରେ ଯାର ନାଁ ହେଉଛି ଗୋକୁଳ-ପିଠା, ବୁଝିଲୁ ? ତୋର ବାପା ବୁଝି ନ ପାରି କହୁଥିଲା 'ବକୁଳ-ପିଠା' ! ଏପଟେ ତା'ର ମାଉସୀର ନାଁ, ମାନେ ମୋର ଭଉଣୀର ନାଁ ତ ବକୁଳ ? ସେଥିପାଇଁ ତମମାନଙ୍କର ଯୋଉ ଜେଜେବାପା ଥିଲେ, ସେ କହୁଥିଲେ, 'ତା'ଠୁ ବରଂ କହୁନୁ କାହିଁକି 'ମାଉସୀ-ପିଠା' !

ହି ହି ହୋଇ ହସି ହସି ରସରୁ ବାହାର କରି ପ୍ଲେଟ୍‌ରେ ରଖି ବଢ଼ାଇ ଧରିଲା ପାରୁଲ୍ ।

କିନ୍ତୁ ପିଲାଟଃ ପାରୁଲ୍‌ର ଏତେ ଚେଷ୍ଟାକୃତ କୌତୁକର ଆୟୋଜନକୁ ବ୍ୟର୍ଥ କରିଦେଇ ନିସ୍ତେଜ ଗଳାରେ କହିଲା '— ପରେ ଖାଇବି ।'

ପାରୁଲ୍ ଆଉ କ'ଣ କରନ୍ତା ?

ଆଉ କ'ଣ କରିପାରନ୍ତା ?

ସ୍ୱଭାବର ବିରୋଧରେ ଯାଇ ତ ଚେଷ୍ଟା କରୁଛି । କିନ୍ତୁ ଜୀବନରେ ଚେଙ୍କା ଖାଇଥିବା ଗୋଟିଏ ଶିଶୁର ନିରୁତ୍ତାପ ନିର୍ଲିପ୍ତତାର ସ୍ପର୍ଶରେ ଚେଷ୍ଟାଟା ହାସ୍ୟକରଭାବରେ ବ୍ୟର୍ଥ ହୋଇ ନିଜ ପାଖକୁ ଫେରିଆସୁଛି ।

ସେତେବେଳେ ସେହି ସାନପିଲାଟି ପାଖରେ ନିଜର ବାଚାଳତା ପାଇଁ ଲାଜ ଲାଗୁଛି ପାରୁଲକୁ । ଲାଜ ଲାଗୁଛି କୃତ୍ରିମତା ପାଇଁ । ମନେ ହେଉଛି, ପାରୁଲ୍ ବୋଧହୁଏ ଏତେବେଳହେଲା ଭଣ୍ଡାମି କଲା !...... କିନ୍ତୁ ସେହି ପିଲାଟା କ'ଣ ତା'ର ଗଭୀର ବେଦନାର ଘରର ବନ୍ଦ ଦୁଆରଟା ଟିକିଏ ଖୋଲି ଧରିବ ଯେଉଁ ବାଟ ଦେଇ ପାରୁଲ୍ ଆସ୍ତେ ଆସ୍ତେ, ପଶିଯାଇ ପାରିବ ? ସେ ଘରେ ତୁନି ହୋଇ ବସି ରହି ତା'ର ମନର ବେଦନାର ଭାର ନେଇ ପାରିବ ପାରୁଲ୍ ।

ସେ ତା' କରିବନି । ଆଶ୍ଚର୍ଯ୍ୟ ପ୍ରକାର କଠିନ ହୋଇଯାଇଛି ପିଲାଟା ।

ଅଥବା ନିଜ ଭିତରର ସେହି ଗଭୀର କ୍ଷତଟାକୁ ଜଗତର କାହାକୁ ହିଁ ଦେଖାବାକୁ ଚାହେଁନା ସେ ।

ମନେ ମନେ ନିଜର ପୁଅକୁ ଉଦ୍ଦେଶ୍ୟ କରି ପାରୁଲ୍ କହିଲା— ତୁ ଭାବି ସନ୍ତୋଷ ପାଉଛୁ ଅନ୍ତତଃ ପୁଅଟାକୁ ତୁ ପାଇଛୁ । କିନ୍ତୁ ପରେ ବୁଝିବୁ ସେଇଟାକୁ ତୁ ଏକାବେଳେ ହଜାଇ ଦେଇଛୁ ।

ଏବେ ଆଉ ନିଜ ଭିତରେ ବୁଡ଼ିଯାଇ ଖାଲି ଗୋଟାଏ ଶାନ୍ତ ଉପଲବ୍ଧିର ଜଗତରେ ସ୍ୱାଦ ଗ୍ରହଣର ସମୟ ନାହିଁ, ଏବେ ସାରାକ୍ଷଣ ଖାଲି ଏଇୟା ଭାବୁଛି । ଏବେ ପାରୁଲ୍ ମୃଦୁ ହସ ସହିତ ଭାବୁଛି ଜଗତରେ କିଛିହେଲେ ସେମିତି ମିଳିବନି ସବୁ କିଛି ପାଇଁ ମୂଲ୍ୟ ଦେବାକୁ ପଡ଼େ । ମତେ ସେମାନଙ୍କର ପ୍ରୟୋଜନ ହେଉଛି । ଏହି ପାଇବାଟା ପାଇଁ ମୂଲ୍ୟ ଦେଇ ଦେବାକୁ ପଡୁଛି— ମତେ ମୋର ସେହି ଅନାହତ ଅବକାଶର ଗଭୀର ସ୍ୱାଦଟିକୁ ।

## ॥ ୨୮ ॥

ପାରୁଲ୍ ଅବକାଶ ପାଇଛି ବୋଲି କ'ଣ ସେହି ଆତ୍ମମଗ୍ନତାରେ ବୁଡ଼ିଯିବା ରୋଗଟା ତା'ର ଭଉଣୀର ମୁଣ୍ଡ ଉପରେ ଆସି ଘର କଲା ?

ବକୁଳ ତ କେବେ ଏଭଳି ଶୋଇ ବସି ଅଳସଭାବରେ ସ୍ମୃତିଚାରଣ କରିନି, ବକୁଳର ଏତେ ସମୟ ବା କାହିଁ ? ବକୁଳ ତ କେବଠାରୁ ଅନାମିକା ଦେବୀଙ୍କ ନାଁ ର ଜାମାଟା ଦେହରେ ପିନ୍ଧି ଧାଉଁଛି ଖାଲି ଧାଉଁଛି । ବକୁଳକୁ ପାଠକ ସମାଜ ଏବେ ମଧ ଫୋପାଡ଼ି ଦେଇନାହାନ୍ତି ।

ତେବେବେ ବକୁଳ ଜାଣିଛି ଦିନେ ଫୋପାଡ଼ି ଦେବେ । ଅନାୟାସରେ ଓଠ ଓଲଟାଇ କହିବେ— ନା ବାପା, ଯାଙ୍କ ଲେଖା ଆଉ ପଢ଼ାଯାଇ ପାରିବନି । ସେହି ମନସ୍ତତ୍ତ୍ୱର ତତ୍ତ୍ୱ ନେଇ କଥାର ଫେଣକୁ ଆହୁରି ଫେଣାଉଛନ୍ତି । ଯେପରି 'ମଣିଷ' ନାମର ଜୀବନଟାର ଖାଲି ମନ ହିଁ ଅଛି, ରକ୍ତ-ମାଂସର ଗୋଟାଏ ଦେହ ନାହିଁ ।

ଏ ଧରଣର ମନ୍ତବ୍ୟ ଅନ୍ୟମାନଙ୍କ ସମ୍ବନ୍ଧରେ କାନକୁ ଆସିଛି, ଅତଏବ ବୁଝିବା କଠିନ ନାହିଁ, ଅନାମିକାଙ୍କ ବିଷୟରେ ମଧ ଏ ମନ୍ତବ୍ୟ ସାଇତା ହୋଇ ରହିଛି । ସେତେବେଳେ ଖାଲି ସଂପାଦକଙ୍କ ଖାତାରେ ଯେ ନିମନ୍ତ୍ରଣର ତାଲିକା

ଅଛି, ସେହି ତାଲିକାର ଖାତିର୍‌ରେ ମଝି ମଝିରେ ଗୋଟାଏ ଗୋଟାଏ ନିମନ୍ତ୍ରଣ ପତ୍ର ଆସିବ ସାମାଜିକ ନିମନ୍ତ୍ରଣ ପରି । କାରଣ ବିଜ୍ଞାପନଦାତାମାନେ କେତେଗୁଡ଼ିଏ ନାଁ ମୁଖସ୍ଥ କରି ରଖିଛନ୍ତି, ସେଗୁଡ଼ାକୁ ହିଁ ସେମାନେ ଭଲ ବୁଝନ୍ତି । ଆଧୁନିକ, ଅତି-ଆଧୁନିକମାନଙ୍କର ନାଁ ମୋଟା ବୁଦ୍ଧିଆ କାରବାରୀ ଲୋକମାନଙ୍କର କାନରେ ପଶିବାକୁ ଡେରି ହୁଏ ।

ସେତେବେଳେ ସେହି ସାମୟିକ ଦାୟରେ ଲେଖା ଛପା ହେଲେ ମଧ୍ଯ ପାଠକ 'ଅନାମିକା' ନାମର ଫର୍ମାଟା ଓଲଟାଇଦେଇ ଅନ୍ୟତ୍ର ଆଖି ପକାଇବେ ! ପ୍ରକାଶକମାନେ ଯେଉଁମାନେ କି ଏବେ ମଧ୍ଯ ଦଉଡ଼ ଧାପଡ଼ କରୁଛନ୍ତି, ସେମାନେ ବହିଟାକୁ ଛାପିବାକୁ ନେଇ ବି ପକାଇ ରଖି ସଦ୍ୟ ନାଁ କରୁଥିବା ଲୋକମାନଙ୍କର ବହିଗୁଡ଼ାକୁ ଆଗ ଛପାଇବେ ।

ଯା ନିଶ୍ଚେ ହେବ । ଏହାହିଁ ହେଉଛି ନିୟତି ।

ଏ ନିୟତିତ ଆଖି ଆଗରେ କେତେ ଦେଖିଛନ୍ତି ଅନାମିକା ଦେବୀ । ଲାଇବ୍ରେରୀରେ ଯାହାଙ୍କ ବହି ପଢ଼ିବାକୁ ପାଉ ନ ଥିଲେ, ଲାଇବ୍ରେରୀଗୁଡ଼ାକ ସେମାନଙ୍କ ବହି କିଣିବାକୁ ଚାହାନ୍ତି ନାହିଁ, ପଇସାଟାକୁ ମିଛରେ ଅଟକାଇ ରଖିବେନି ବୋଲି, 'ଜନପ୍ରିୟ'ର ଦେବତା ତ ଜନଗଣ ! ସେମାନେ ଯଦି ଏକାବେଳେ ମୁହଁ ଫେରାଇ ନିଅନ୍ତି, ତା'ହେଲେ ତ 'ହୋଇଗଲା' !

ଅନାମିକାଙ୍କ ଦେବତା ହୁଏତ ଏବେ ମଧ୍ଯ ବିମୁଖ ହୋଇନାହାନ୍ତି, କିନ୍ତୁ ହେବାକୁ କେତେବେଳ ? ଅନାମିକା ଚୁପ୍‌ଚାପ୍ ଶୋଇ ସେହି ଦେବତାମାନଙ୍କ କଥା ଚିନ୍ତା କରନ୍ତି ।

ନା, ଭାଗ୍ୟ ପାଖରେ ସେ ଅକୃତଜ୍ଞ ହେବେ ନାହିଁ । ସାମାନ୍ୟ ସମ୍ବଳ ନେଇ ଏ ହାଟରେ ଆସି ଠିଆ ହୋଇଥିଲେ, ବିନିମୟରେ ପାଇଛନ୍ତି ଅଶେଷ ଅବିଶ୍ୱାସ ।

ମନ ପ୍ରତ୍ୟେକ କ୍ଷଣରେ ପରିପୂର୍ଣ୍ଣ ହୋଇଛି । ସେହି ଭଲପାଇବାର ଦାନରେ ହିଁ ନିଜର ଅକ୍ଷମତାର ଗ୍ଲାନି ପୋଛି ହୋଇଯାଏ, ମନେହୁଏ କ'ଣ ପାଇଛି ଆଉ ନ ପାଇଛି ତା'ର ହିସାବ କରିବାକୁ ବସି ଦୁଃଖକୁ ଡାକିଆଣି କ'ଣ ହେବ ? ଯାହା ପାଇଛି ତା'ର ହିସାବ କରିବାର ସାଧ୍ୟ ମୋର ନାହିଁ ।

ଭିଡ଼ ଜମାଇ ଆସନ୍ତି ଅନେକ ମୁହଁ ।

ସ୍ନେହର ପାତ୍ରମାନଙ୍କ ମୁହଁ ।

ଭିଡ଼ ଜମାଇ ଆସନ୍ତି ନିଜର ସୃଷ୍ଟ ଚରିତ୍ରମାନେ ମଧ୍ଯ । ଏମାନେ ଆଉ ଛାୟା ନୁହଁନ୍ତି, ମାୟା ନୁହଁନ୍ତି, ବଞ୍ଚନା ନୁହଁନ୍ତି, ପୂରା ଜଣେ ଜଣେ ମଣିଷ ।

ଅନାମିକା ଜାଣନ୍ତି, ପ୍ରକୃତପକ୍ଷେ ସେମାନେ ଅନାମିକାର ସୃଷ୍ଟି ମଧ୍ୟ ନୁହଁନ୍ତି । ସେମାନେ ନିଜେ ହିଁ ନିଜକୁ ସୃଷ୍ଟି କରିଛନ୍ତି । ସେମାନଙ୍କର ନିଜସ୍ୱ ସତ୍ତା ଅଛି । ସେମାନେ ନିଜର ଗତିରେ ଚାଲନ୍ତି । ଅନାମିକା ନିଜେ ସେମାନଙ୍କର ନିୟନ୍ତା ଏମିତି ଭୁଲ ଧାରଣା ଅନାମିକାଙ୍କର ନାହିଁ । ହୁଏତ ଅନାମିକାଙ୍କ ପରିଚିତ ଜଗତର କାହାରି କାହାରି ଛାୟା ଭିତରେ ସେମାନେ ବିକଶିତ ହୁଅନ୍ତି, କଲମ ତାଙ୍କର ଅନୁସରଣ ମାତ୍ର କରେ । ଅନାମିକାର ଭୂମିକା ସ୍ରଷ୍ଟାର ନୁହେଁ, ଦର୍ଶକର ।

ସେ ଯେ ଖାଲି ଏହି ସମାଜକୁ ଦେଖି ଚାଲିଛନ୍ତି ତା'ନୁହେଁ, ତାଙ୍କର ରଚିତ ଚରିତ୍ରମାନଙ୍କର ମଧ୍ୟ ସେ ହେଉଛନ୍ତି ଦର୍ଶକ ।

ସେଥିପାଇଁ ପାରୁଲ୍‌ର ଅଭିଯୋଗର ଉତ୍ତରରେ ନିଜର ଅକ୍ଷମତା ଜଣାଇ ଅନାମିକା ଚିଠି ଲେଖିଲେ— ବକୁଳ ନିଜେ ଆସି ଧରା ନ ଦେଲେ ବକୁଳର କଥା ଲେଖା ହୋଇପାରିବନି ପାରୁଲ୍‌ନାନୀ । ସେ ଏବେ ମଧ୍ୟ ପଳାଇ ଯାଉଛି, ହଜି ଯାଉଛି । ହୁଏତ କେବେହେଲେ ତା କଥା ଲେଖା ହୋଇପାରିବନି, କାରଣ ବକୁଳ ଅତି ଲାଜକୁଳୀ, ଅତି କୁଣ୍ଠିତ । ନିଜକୁ ପ୍ରକାଶ କରିବାକୁ ଲାଜରେ ମରିଯାଏ ସେ ।

ଅନାମିକାଙ୍କ ଭକ୍ତ ପାଠକମାନଙ୍କର ଏବେ ଆଉ ଅଜଣା ନାହିଁ 'ଅନାମିକା' ହେଉଛି ବକୁଳର ଛଦ୍ମବେଶର ନାମ, ସେଥିପାଇଁ ସେମାନେ ଅନାମିକା ଦ୍ୱାରା ରଚିତ ଚରିତ୍ରମାନଙ୍କ ମଧ୍ୟରେ ବକୁଳକୁ ଖୋଜିବୁଲନ୍ତି । ଆଗ୍ରହରେ ଉଦ୍‌ଭାସିତ ମୁହଁରେ ପ୍ରଶ୍ନ କରନ୍ତି— ୟାଙ୍କ ଭିତରେ ବକୁଳ କିଏ ?

ଅନାମିକା ମୃଦୁ ହସି କହନ୍ତି— ଜାଣିନି ଆଜ୍ଞା । ମୁଁ ମଧ୍ୟ ତ ସେ ବକୁଳକୁ ଖୋଜିବୁଲୁଛି ।

କିନ୍ତୁ ଅନାମିକା କ'ଣ ଖାଲି ବକୁଳକୁ ଖୋଜି ବୁଲୁଛନ୍ତି ? ଆବାଲ୍ୟର ଏହି ସାଧନାରେ ଆହୁରି ଗୋଟିଏ ଜିନିଷ କ'ଣ ଖୋଜି ବୁଲୁ ନାହାନ୍ତି ? ଖୋଜି ବୁଲୁନାହାନ୍ତି ଏହି ତାଙ୍କର ଜ୍ଞାତ ଜଗତର ସମାଜରେ ଆଉ ଜୀବନରେ ଏତେ ବେଦନା, ଏତେ ଅବିଚାର ଏତେ ନିରୁପାୟତା କାହିଁକି ରହିଛି ?

ଆଉ ଖୋଜି ବୁଲୁନାହାନ୍ତି ନା ଝକଝକ୍ ଜରିମୋଡ଼ା ଜୀବନର ଅନ୍ତରାଳରେ ଶ୍ମଶାନର କି ଭସ୍ମରାଶି ?

ତେବେକେ ଆଜି ମଧ୍ୟ ମନେ ହେଉଛି ହୁଏତ ଆହୁରି ଦେଖିବାର ଥିଲା । ଦୁଃସହ ବେଦନାଭାରାକ୍ରାନ୍ତ ପୃଥିବୀକୁ ଯେତେ ଦେଖୁଛନ୍ତି ଅନାମିକା, ହୁଏତ ସେତେବେଶୀ ଦେଖିନାହାନ୍ତି ତା'ର ଆଲୋକର ଦିଗଟାକୁ ।

ଆଲୋକ ମଧ୍ୟ ନିଶ୍ଚେ଼ ଅଛି ।

ଅଛି ଆନନ୍ଦ, ଅଛି ବିଶ୍ୱାସ, ଅଛି ପ୍ରେମ, ଅଛି ସତତା ।

ଖାଲି ସେମାନେ ତୀବ୍ର ଶିଖାର ଶକ୍ତିରେ ଆଖିକୁ ଝଲସାଇ ଦେଉନାହାନ୍ତି ବୋଲି ହୁଏତ ଆଖିରେ ପଡୁଛନ୍ତି ଅଳ୍ପ ।

ଅନାମିକାଙ୍କର ମନେପଡ଼ିଲା...... ସେ ପିଲାଟାର ମୁହଁଟା, ଯେ ଦିନେ ତା'ର ପ୍ରଥମ କବିତା ଛପା ହୋଇଥିବା ପତ୍ରିକାଟି ଧରି ଦେଖାଇବାକୁ ଆସିଥିଲା । ତା' ମୁହଁରେ ଥିଲା ଯେପରି ଭଗବାନଙ୍କର ଆଶୀର୍ବାଦର ଆଲୋକ ।

ଏବେ ମଧ୍ୟ କେତେ ପିଲା ତ ଆସନ୍ତି । ଆଜିକାଲିର ପିଲାଙ୍କର ପ୍ରଧାନ 'ହବି' ହେଲା ତ ସାହିତ୍ୟ ।

ଅନେକ ପୁଅପିଲା ଆସନ୍ତି ସେମାନଙ୍କର ନୂଆ ଲେଖା ଧରି । ଅବଶ୍ୟ ଖାଲି ଯେ ଦେଖାଇବାକୁ ଆସନ୍ତି ତା'ନୁହେଁ । ଆସନ୍ତି ଗୋଟାଏ ଅବୋଧ ଆଶାରେ । ଭାବନ୍ତି ଅନାମିକା ଇଚ୍ଛା କଲେ ଛପାଇ ଦେଇପାରିବେ !

'ଅନାମିକା'ଙ୍କ କ୍ଷମତା ସମ୍ପର୍କରେ ଧାରଣା ନାହିଁ ବୋଲି ଭାବନ୍ତି । ଆଉ ଶେଷକୁ ତାଙ୍କୁ ସହାନୁଭୂତିହୀନ ବୋଲି ହିଁ ଭାବନ୍ତି । ହୁଏତ କେଉଁଠି ଜାଗା ନ ପାଇଲେ ସେମାନେ ନିଜେ ଜାଗା ତିଆରି କରି ନେବାକୁ ଚାହାଁନ୍ତି, ସେଥିପାଇଁ ଦେଶରେ ପ୍ରତିଦିନ ନୂଆ ନୂଆ ପତ୍ରିକା ଜନ୍ମ ହେଉଛନ୍ତି ।

ଗୋଟାଏ ଦୁଇଟା ସଂଖ୍ୟା ବାହାରି ମଧ୍ୟ ଯଦି ତା'ର ସମାଧି ହୁଏ, ହେଉ । ତେବେବି ତ କେତୋଟି ପିଲାର ଚିନ୍ତାର ଶିଶୁଗୁଡ଼ିକ ଆଲୋକର ମୁହଁ ଦେଖିପାରିଲେ ।

ଦେଶରେ ଶିଶୁମୃତ୍ୟୁର ହାର କୁଆଡ଼େ କମିଯାଇଛି । ପତ୍ରିକା-ଶିଶୁମାନେ ହୁଏତ ସେହି 'ହାର'କୁ ବଞ୍ଚାଇ ରଖିବାକୁ ଚେଷ୍ଟା କରୁଛନ୍ତି । ସେହି କ୍ଷୀଣକାୟ ପତ୍ରିକାଗୁଡ଼ିକୁ ହାତରେ ଧରି ସେମାନେ ଯେତେବେଳେ ଆସନ୍ତି, ସେତେବେଳେ ସେମାନଙ୍କ ମୁହଁରେ ଯେଉଁ ଆନନ୍ଦର ଆଲୋକ ଫୁଟେ, ତାକୁ କ'ଣ ତୁଚ୍ଛ କରିବା କଥା ?

ତେବେକେ ସେ ପୁଅଟି କଥା ଭାରି ମନେପଡ଼େ । ଅଥଚ ଆଶ୍ଚର୍ଯ୍ୟ, ନାଁଟା ତା'ର ମନେ ନାହିଁ, ମନେ ଅଛି ଚେହେରାଟା, ଶ୍ୟାମଳ ବର୍ଣ୍ଣ, ପାତଳ ଲମ୍ବା ଗଢ଼ଣ, ବାଳଗୁଡ଼ିକ ନୁଖୁରା, କପାଳରେ ଗୋଟାଏ ବେଶ୍ ବଡ଼ରକମର ଦାଗ, ଆଉ ତୀକ୍ଷ୍ଣ ନାକଥିବା ମୁହଁରେ ମଧ୍ୟ ଏକ ଆଶ୍ଚର୍ଯ୍ୟ କମନୀୟତା ।

ତା'ର କବିତା ସେମାନଙ୍କର ନିଜ ପତ୍ରିକାରେ ବାହାରିନି, ବାହାରିଥିଲା ଗୋଟାଏ ନାମଜାଦା ପତ୍ରିକାରେ । କେମିତିଯେ ସେହି ଅସାଧ୍ୟ ସାଧନ ସେ କରିଥିଲା

ତା' କେବଳ ସେ ହିଁ ଜାଣିଛି, କେବଳ ମାତ୍ର ଲେଖାର ଗୁଣର ଜୋର୍‌ରେ ଯେ ଏହା ହୋଇପାରେନା ସେ କଥା ତ ସମସ୍ତେ ଜାଣିଛନ୍ତି ।

'ଗୁଣ'ଟା ଯେ ଅଛି ସେଇଟାକୁ ଚାହିଁ ଦେଖୁଛନ୍ତି, କିଏ ?

ହୁଏତ ତା'ର ଭାଗ୍ୟ ଯୋଗୁ ଏମିତି କିଏ ଲେଖାଟାକୁ ଦେଖିଥିଲେ ଯାହାଙ୍କ ହାତରେ ସେହି 'ଗୁଣ' ଟିକକୁ ଆଲୋକକୁ ଆଣି ଦେଖାଇବାର କ୍ଷମତା ଥିଲା । ଯାହା ହେଉ ପଛକେ ପୁଅଟିର ସେ ମୁହଁଟାକୁ ଭୁଲିବା କଥା ନୁହେଁ, ପିଲାଟା କହିଥିଲା— ଜାଣନ୍ତି ଜୀବନରେ ଯଦି ମୋର ଆଉ ଗୋଟିଏ ହେଲେ ଲେଖା ଛପା ନ ହୁଏ, ତା'ହେଲେ ବି ମୋର ଦୁଃଖ ଆଉ ରହିବନି !

ଅନାମିକା କହିଥିଲେ— ସେ କ'ଣ ?

—ହଁ ଆପଣଙ୍କୁ ସତ କହୁଛି । ମୋର ପାରିବାରିକ ଜୀବନର କଥା ଆପଣ ଜାଣି ନାହାନ୍ତି । ସେଠି ଅନେକ ବଞ୍ଚନା, ଅନେକ ଦୁଃଖ, ଅନେକ ଅପମାନ ରହିଛି । ତେବେକେ ମନେ ହେଉଛି— ଆଜିଠାରୁ ସବୁ କଷ୍ଟ ସହିବାର କ୍ଷମତା ମୋର ହେବ ।

ଅବଶ୍ୟ ଅତ୍ୟନ୍ତ ଆବେଗର କଥାଗୁଡ଼ିକ, ତେବେକେ କାହିଁକି କେଜାଣି ହସ ଲାଗିନି, ଅତି ଆବେଗ ବୋଲି ମଧ୍ୟ ମନେ ହେଇନି । ଯେମିତି ତା' ଭିତରେ ଏକ ଦୃଢ଼ ପ୍ରତ୍ୟୟ କାମ କରୁଛି ।

କବିତାଟା ଅବଶ୍ୟ ପ୍ରେମର କବିତା, ତେବେକେ ଆଧୁନିକ ଭଙ୍ଗୀରେ ତ ସେହି ପ୍ରେମକୁ ଧରିଛୁଇଁ ହେବନି, ତେବେକେ ଅନାମିକାଙ୍କର ମନେ ହୋଇଥିଲା ପିଲାଟା କ'ଣ ସେହି କବିତା ଭିତର ଦେଇ ତା'ର ପ୍ରେମ ନିବେଦନ କରିବାକୁ ଚାହିଁଥିଲା ?

ନାଁଟା ମନେ ନାହିଁ, ଏ ଦୁଃଖ ରହିଲା ।

ନୂଆ ନୂଆ କେତେ ଶକ୍ତିଶାଳୀ କବି ଦେଖୁଛନ୍ତି, କିନ୍ତୁ ସେମାନଙ୍କର ଚେହେରା ତ ଦେଖିପାରୁ ନାହାନ୍ତି । କିଏ ଜାଣିଛି କାହାର କପାଳରେ ରାଜଟିକା ପରି ଅଛି ସେହି କଟା ଦାଗଟା !

ପୁଅମାନଙ୍କ ଭିତରେ ଏହି 'ସାହିତ୍ୟ' ହବିଟା ଯେତେ ବେଶୀ, ଝିଅମାନଙ୍କ ଭିତରେ ତାହାର ସୁଉକିର ସୁଉକିଏ ଭାଗ ବି ନାହିଁ ।

ତେବେ ଝିଅମାନଙ୍କ ବା ସ୍ତ୍ରୀଲୋକମାନଙ୍କ ମଧ୍ୟରୁ କିଏ କ'ଣ ଖାତାର ବୋଝ ନେଇ ଆସନ୍ତି ନାହିଁ ? ଖାତାର ବୋଝ ଆଉ ପ୍ରତ୍ୟାଶାର ପାତ୍ର ଧରି ?

ଆସନ୍ତି । କିନ୍ତୁ ଅନାମିକା ଦେବୀ ଲକ୍ଷ୍ୟ କରି ଦେଖିଛନ୍ତି, ସେମାନେ ପ୍ରାୟ କେହି ଝିଅ ନୁହଁନ୍ତି, ସେମାନେ ସଂସାରରେ ଚେଙ୍କ ଖାଇଥିବା ଗୃହିଣୀ, ଅବମାନିତା ବଧୂ । ହୁଏତ ପ୍ରୌଢ଼ା, ହୁଏତ ମଧ୍ୟବୟସୀ ।

ସେମାନଙ୍କର ସାରାଜୀବନ ଧରି ତିଳେ ତିଳେ କରି ସଞ୍ଚୟ କରିଥିବା ସେହି ଖାତାଗୁଡ଼ିକ କିନ୍ତୁ ସେଗୁଡ଼ାକର ଯେ କେବେହେଲେ ଆଲୋକର ମୁହଁ ଦେଖିବାର ସମ୍ଭାବନା ନାହିଁ, ସେ କଥା ସେମାନଙ୍କୁ କହିବାକୁ କଷ୍ଟ ଲାଗେ । ଆଉ ସତ କହିବାକୁ ଗଲେ– ସେତେବେଳେ ହଠାତ୍ ନିଜକୁ ଭାରି ସ୍ୱାର୍ଥପର ଲାଗେ ଅନାମିକାଙ୍କର ।

ସେହି ବୋହୂଟିର କଥା ମନେପଡ଼ୁଛି, ତା' ନାଁଟା ମଧ୍ୟ ମନେଅଛି । ଅଥଚ ବଡ଼ ସାଧାରଣ ନାଁ– ସବିତା, ତା'ର ଲେଖା ମଧ୍ୟ ଅବଶ୍ୟ ସେମିତି । କହିବାକୁ ଗଲେ କିଛିହେଲେ ନୁହେଁ, କିନ୍ତୁ ତା'ର ଧାରଣା ଥିଲା, ପାଠକମାନଙ୍କର ଆଖି ଆଗକୁ ଆସିପାରୁନି ବୋଲି ତା' ଲେଖାର ଜୟ-ଜୟକାର ହେବାର ସୁଯୋଗ ପାଉନି ସେ । ଅତଏବ ଯେମିତି ହେଲେ ହେଉ–

ସେହି ମୂଢ଼ ପ୍ରତ୍ୟାଶାରେ ବୋହୂଟି ବାପଘରକୁ ଯାଇ ଲୁଚାଇ ଗହଣା ବିକ୍ରି କରି ଖଣ୍ଡିଏ ଚଟି ବହି ଛପାଇଦେଲା ।

ତା'ପରେ ଆଉ କ'ଣ !

ଲାଞ୍ଛନା, ଗଞ୍ଜଣା, ଧିକ୍କାରର ଶେଷ ନ ଥିଲା ।

ତା'ର ସ୍ୱାମୀ କହିଥିଲେ, ଯୋଉ ସ୍ତ୍ରୀଲୋକ ଏତେବେଶୀ ଦୁଃସାହସ କରିପାରେ, ସେ ପରପୁରୁଷ ସଙ୍ଗେ ବାହାରି ଯାଇପାରେ ମଧ୍ୟ ।

ଫଳରେ ହେଲା କ'ଣ, ବିଚାରୀ ବୋହୂଟି ତା'ର ସାରାଜୀବନର ଯେତେକ ପ୍ରାଣର ବସ୍ତୁ ଥିଲା ସବୁଯାକ ନିଆଁରେ ପକାଇଦେଲା, ନିଆଁରେ ପକାଇଦେଲା ସେ ପାଞ୍ଚଶହ କପି ବହି ମଧ୍ୟ !

ସବିତାର ସେ ମୁହଁଟା ମନେପଡ଼ିଲା ।

ଆସି କହିଥିଲା– ମାଉସୀ, ନିଜ ହାତରେ ପୁଅକୁ ଚିତାରେ ଶୁଆଇ ଦେଇ ଆସିଲି ।

ଅନାମିକା କହିଥିଲେ– ଛିଃ, ଛିଃ, ଏ କ'ଣ କହୁଛ । ତମେ ସନ୍ତାନର ମା–

ସେ କହିଥିଲା– ସେ ସନ୍ତାନ ତ ମୋର ଏକୁଟିଆ ନୁହେଁ ମାଉସୀ ! ସେ ତା'ର ବାପର, ତା'ର ବଂଶର, ତା'ର ପରିବାରର, ତା'ର ସମାଜର । ଏ ଟିକକ ହିଁ ଥିଲା ମୋର ଏକାନ୍ତ ନିଜର ।

ଏ ସବୁ ବ୍ୟର୍ଥ ଜୀବନର କାହାଣୀ କେତେ ବା ପ୍ରକାଶିତ ହୁଏ !

ଦିନ ଚାଲେ ଦିନର ନିୟମରେ, ଋତୁଚକ୍ର ଆବର୍ତ୍ତିତ ହୁଏ ଚିରନ୍ତନ ଧାରାରେ, ଜାଗତିକ କାର୍ଯ୍ୟଗୁଡ଼ିକ ମଧ୍ୟ ଚଳେ ଅନାହତ ଗତିରେ । ସମାଜଜୀବନର ବହୁ ବୈଚିତ୍ର୍ୟମୟ ଲୀଳାଖେଳାରେ ଖଜଣାଟିକୁ ମଧ୍ୟ ଅବ୍ୟାହତ ଧାରାରେ ଯୋଗାଇ ଚାଲିବାକୁ ହୁଏ ସମାଜବଦ୍ଧ ଜୀବ ହତଭାଗ୍ୟ ମଣିଷକୁ ।

କେଉଁଠି କାହାର କେତେବେଳେ ଶ୍ରାନ୍ତି-କ୍ଳାନ୍ତି ଆସୁଛି, ଆସୁଛି ବିତୃଷ୍ଣା ବିମୁଖଭାବ, କିଏ ତା' ଆଡ଼କୁ ଚାହୁଁଛି ? କିଏ ବୁଝେ କିଏ ଅଣନିଃଶ୍ୱାସୀ ହୋଇଗଲାଣି, ମୁକ୍ତି ଚାହୁଁଛି ।

ନା ସେ କଥା କେହି ଭାବନ୍ତି ନାହିଁ, ବୁଝନ୍ତି ନାହିଁ ।

ସମାଜର ଖଜଣାର ଦାୟ ବଡ଼ ଦାୟ ।

ଆପଣଙ୍କର ଯେତେବେଳେ ଏକ ମେଘମେଦୁର ସନ୍ଧ୍ୟାରେ ଏକା ବସି ଆପଣାର ନିଭୃତ ଜୀବନର ସୁଖଦୁଃଖର ସ୍ମୃତି ଭିତରେ ତଳେଇ ଯିବାକୁ ଇଚ୍ଛା ହେଉଥିବ, ସେତେବେଳେ ହୁଏତ ଆପଣଙ୍କୁ ଅକାଟ୍ୟ ଏକ ବାହାଘର ନିମନ୍ତ୍ରଣ ରକ୍ଷା କରିବାକୁ ଆଲୁଅ, ବାଦ୍ୟ ଶବ୍ଦ, ଆଉ ମଣିଷଙ୍କ ଭିଡ଼ ଭିତରକୁ ଯାଇ ଅଜାଡ଼ି ହୋଇଯିବାକୁ ପଡ଼ିବ । ଚିହ୍ନା ଲୋକଙ୍କ ସହିତ ଦେଖା ହେବାର ଆହ୍ଲାଦରେ ଶତମୁଖ ହେବାକୁ ପଡ଼ିବ ଆପଣଙ୍କୁ ।

ହୁଏତ କେଉଁଦିନ ଆପଣଙ୍କର ଏକ ଅକାରଣ ଖୁସୀ ହୋଇଥିବା ମନଟିକୁ ନେଇ ଝରକା କଡ଼ରେ ବସି କବିତା ପଢ଼ିବାକୁ ବାସନା ହେଉଛି, ସେତେବେଳେ ହୁଏତ ଆପଣଙ୍କର ଆତ୍ମୀୟ-କନ୍ୟାର ନବଜାତ ଶିଶୁଟିର ମୁହଁ ଦେଖିବାକୁ ଧାଇଁବାକୁ ପଡ଼ିବ ଦୂରବର୍ତ୍ତୀ କେଉଁ ନର୍ସିଂହୋମ୍‌କୁ !

ଅଥବା ହୁଏତ କୌଣସି ଏକ ଉଜ୍ଜ୍ୱଳ ବୈଶାଖର ଉପରଓଳି ଆପଣଙ୍କର କେଉଁ ପ୍ରିୟ ବନ୍ଧୁଙ୍କ ଘରକୁ ଯିବାକୁ ଇଚ୍ଛା ହେଉଛି ଟିକିଏ ଆଡ୍ଡା ମାରି ଆସିବାକୁ, ସେତେବେଳେ ପିଉସୀଙ୍କ ଶବଯାତ୍ରା ସଙ୍ଗେ ଶୋଭାଯାତ୍ରୀ ହୋଇ ଯାଇ ପହଞ୍ଚିବାକୁ ପଡ଼ିବ ମହାଶ୍ମଶାନରେ· !

ମୋଟ କଥା ନିଜକୁ ନେଇ ଏକା ପଡ଼ି ରହିବାର ଉପାୟ ନାହିଁ । ସମାଜର ଟ୍ୟାକ୍ସ ଯୋଗାଇ ଚଳିବାକୁ ପଡ଼ିବ ।

ଅତଏବ ଅନାମିକାଙ୍କୁ ମଧ୍ୟ 'ପୁଲକ ସଂଘ'ର ବାର୍ଷିକ ସାହିତ୍ୟସଭାର ଉଦ୍‌ବୋଧନ ପାଇଁ ଯିବାକୁ ପଡ଼ିଥିଲା ସେତେବେଳେ, ଯେତେବେଳେ କି 'ଶମ୍ପା' ନାଆଁର ଜଣେ ଚିରକାଳର ଝିଅର ମୁହଁଟା ସ୍ମରଣ କରି ପ୍ରାଣଟା ହାହାକାର କରୁଥିଲା । ସେ ପ୍ରାଣଟା ଧାଇଁଯିବାକୁ ଚାହିଁଥିଲା ତା'ରି ସନ୍ଧାନରେ ।

କିନ୍ତୁ ନୂଆକରି ହଠାତ୍ କାହିଁକି ଏ ହାହାକାର ? ହଁ, ତା'ର କାରଣ ଅଛି ।

ଆଜି ଘରକୁ ପୋଷ୍ଟକାର୍ଡ଼ଟିଏ ଆସି ଜଣାଇ ଦେଇଛି– 'ମୁଁ ମରିନି, ବଞ୍ଚିରହିଛି' ।

ହଁ, ନାମ-ସମ୍ବୋଧନହୀନ ଖାଲି ସେହି ଗୋଟିକ ଲାଇନ । ଏ ଚିଠିର ଦାବିଦାର କିଏ ଜାଣିବାର ଉପାୟ ନାହିଁ, କୋଉଠି କାହାର ନାଁ ନାହିଁ । ଠିକଣାର ଅଂଶ ଟିକକରେ ଖାଲି ଗୋଟି ଗୋଟି କରି ଲେଖା ହୋଇଛି ଠିକଣାଟା ।

ତା'ହେଲେ ?

ଏ ଚିଠିଟାକୁ 'ମୋର' ବୋଲି କିଏ ଦାବି କରିପାରିବ ?

ହିସାବରେ ଦେଖିଲେ କେହି କରି ପାରିବେନି । ଅଥବା ସେହି ଠିକଣାର ବାସିନ୍ଦାମାନେ ସମସ୍ତେ କରିପାରନ୍ତି ।

ତେବେକେ ଅନାମିକାଙ୍କର ମନେ ହେଉଥିଲା ମୁଁ ଦାବିଦାର ।

କିନ୍ତୁ କେଉଁଠାରୁ ଚିଠିଟା ପୋଷ୍ଟ କରାଯାଇଛି, କିଛି ବୁଝା ପଡ଼ିଲାନି । କାଳିମାବିହୀନ ସ୍ୱାଧୀନ ସରକାରଙ୍କ ଡାକ ବିଭାଗ ଯଥାରୀତି ଷ୍ଟାମ୍ପ୍ ଉପରେ ଗୋଟାଏ ଅସ୍ପଷ୍ଟ ଛାପର ଭଗ୍ନାଂଶ ଟିକକ ମାତ୍ର ଦାଗ ଦେଇ କର୍ତ୍ତବ୍ୟ ସାରିଛନ୍ତି ।

ଯେମିତି ସେହି ଏକ ଲାଇନ୍ ଲେଖାଟା ପଠାଇ ଯେ ମଜା କରିଛି, ଦୁଷ୍ଟ-ଝିଅଟା ଡାକ କର୍ମଚାରୀମାନଙ୍କୁ ଶିଖାଇ ଦେଇଛି 'ସ୍ପଷ୍ଟ' କରି ଛାପ ମାରନି, ମୁଁ ତା'ହେଲେ ଧରା ପଡ଼ିଯିବି ।

ଅଥଚ ସେହି କଥା ଟିକକ ଲେଖି ଜଣାଇବାର ଇଚ୍ଛାଟି ତା'ର ଏତେଦିନକେ ହେଉଛି– ମୁଁ ମରିନି, ମୁଁ ବଞ୍ଚି ରହିଛି ।

ଏହା କାହାର ହାତଲେଖା ?

ଏ କେଉଁ ସ୍ୱର୍ଗଲୋକର କଥା ?

ସାନଭାଇନା କ୍ଲାନ୍ତ ଗଳାରେ କହିଥିଲେ– ଅନ୍ୟ ସାହିରୁ ବି ପୋଷ୍ଟ କରିବା ଅସମ୍ଭବ ନୁହେଁ !

ସାନଭାଉଜ ସେଇ ଅକ୍ଷର କେତେଟାକୁ ପଥରରେ ଖୋଦେଇ କଲା ପରି ମନ ଭିତରେ ଖୋଦେଇ କରିପକାଇ ସୁଦ୍ଧା, ଆହୁରି ଥରେ ଓଲଟା ପାଲଟା କରି ଦେଖି ଦେଖି କହିଲେ– ଆଚ୍ଛା ବକୁଳ, ହାତଲେଖାଟା ଠିକ୍ ତାର ବୋଲି ମନେହେଉଛି ତମର ? କୋଉ ବାଜେ ଲୋକର କାରସାଦି ବୋଲି ମନେ ହେଉନି ତ ?

—କ'ଣ ଯେ କହୁଛ ! ତା' ହାତର ଲେଖା ଭୁଲ୍ ହେବ ? ମନଟା ଭଲ କରିଦିଅ ଭାଉଜ, ଯେତେବେଳେ ଖବର ଗୋଟାଏ ଦେଇଛି—

ଯେତେବେଳେ ଏହି ପ୍ରସଙ୍ଗ ନେଇ ଅନାମିକାଙ୍କ ସାଙ୍ଗରେ ତାଙ୍କର ସାନଭାଉଜ ଆଉ ଭାଇନା ଆଲୋଚନା କରୁଥିଲେ, ଠିକ୍ ସେତିକିବେଳେ ଏଇ ପୁଲକ ସଂଘର ଗାଡ଼ି ଆସିଲା ।

ଅକାଟ୍ୟ ଅନିବାର୍ଯ୍ୟ ଏ ଗାଡ଼ି ।

'ଯାଇ ପାରିବିନି' କହିବାର ପ୍ରଶ୍ନ ଉଠେନି ।

ଅନାମିକା କହିଦେଇ ଗଲେ— ଆଚ୍ଛା ତମେମାନେ ଚେଷ୍ଟା କରି ଦେଖ—

ଅନାମିକା ବାହାରିଗଲେ ।

ଏଥର ପୁଲକ ସଂଘର ସମସ୍ତ ପୁଲକର ଭାର ବହନ କରିବାକୁ ପଡ଼ିବ ।

ଚଳନ୍ତା ଗାଡ଼ିରେ ଭାବି ଭାବି ଯାଆନ୍ତି ଅନାମିକା— ଏହି ଖବର ଦେବାଟା ଭିତରେ କେଉଁ ମନସ୍ତତ୍ତ୍ୱ କାମ କରୁଛି ?

ସେ କ'ଣ ଭାରି କଷ୍ଟରେ ପଡ଼ିଛି ? ସେଥିପାଇଁ ଆଉ ପାରି ନ ପାରି ଫେରିଆସିବାକୁ ଚାହୁଁଛି ? ସେ କ'ଣ ଅପରାଧବୋଧରେ ପୀଡ଼ିତ ହୋଇ ଏତେଦିନରେ—

ସମସ୍ତଙ୍କ ପାଇଁ କ'ଣ ହଠାତ୍ ତା'ର ମନ କ'ଣ ହେଉଛି ?

ଚଷମାଟା ଖୋଲି ପୋଛିଲେ ଅନାମିକା ।

ଆଉ ଯେତେବେଳେ ଆଲୋକୋଜ୍ଜ୍ୱଳ ମଞ୍ଚରେ ଯାଇ ବସିଲେ, ସେତେବେଳେ ସହସା ମନେପଡ଼ିଲା 'ଦିନେ ମୁଁ ନିର୍ମଳ ମରିଯାଇଛି ଶୁଣି ମଧ୍ୟ ସଭାରେ ଆସି ଅବିଚଳ ଭାବରେ ବସି ସବୁ କାମ କରି ଯାଇଥିଲି ।

ଅଥଚ ଆଜି ଶମ୍ପା ବଞ୍ଚିରହିଛି ଖବର ପାଇ ଏତେ ଭୟଙ୍କର ଭାବରେ ବିଚଳିତ ହେଉଛି ଯେ କୌଣସିମତେ ମନ ଲଗାଇ ପାରୁନି । କେବଠାରୁ ମୁଁ ଏତେ ଦୁର୍ବଳ ହୋଇଗଲି ?

ତେବେକେ ଅଭ୍ୟାସଗତ ଭାବରେ ସବୁକଥା ହୋଇଗଲା ।

ମଞ୍ଚରୁ ଓହ୍ଲାଇ ଆସୁ ଆସୁ ଅଟୋଗ୍ରାଫ୍ ଶିକାରୀଙ୍କ ଦଳ ଘେରିଗଲେ । ଆଉ ସେମାନଙ୍କର ଦାବିକୁ ମେଣ୍ଟାଇ ଯେତେବେଳେ ଅନାମିକା ଠିକ୍ ମଟରରେ ଚଢ଼ିବାକୁ ଯାଉଛନ୍ତି, ହଠାତ୍ ପଛପଟୁ କିଏ କହିଲା— ମୋର ଗୋଟାଏ ଅଟୋଗ୍ରାଫ୍ ଦରକାର !

କିଏ ?

କିଏ ? କିଏ କହିଲା ଏ କଥା ?

ଅନାମିକା ଗାଡ଼ିର ଦୁଆରଟାକୁ ଧରି ନିଜକୁ ସମ୍ଭାଳି ନେଇ ଆଖପାଖର ଭିଡ଼ ଆଡ଼େ ଚାହିଁଲେ । ଅନାମିକାଙ୍କର ମନେହେଲା ସବୁ ମୁହଁଗୁଡ଼ିକ ଯେପରି ଏକାପ୍ରକାର । ଅସ୍ପଷ୍ଟ, ଅସ୍ପଷ୍ଟ !

## ॥ ୨୯ ॥

—ହେଇଟି ତମର ଅପରାହ୍ଣର ଖାଦ୍ୟ ସଜାଡ଼ି ଦେଲି, ଦୟା କରି ଠିକ୍ ସମୟରେ ଖାଇଦେବ ।

ସତ୍ୟବାନର ସାମନା ଟୁଲ୍‌ରେ ଗୋଟାଏ ଡିବା ରଖିଦେଇ ଶମ୍ପା କହିଲା—ଆସିଲେ ଯେମିତି ନ ଦେଖେ ଯେ ଡିବା ଖୋଲା ହୋଇନି ।

ଭୂରୁ କୁଞ୍ଚିତ କରି ସତ୍ୟବାନ କହିଲା— ସବୁ ବୁଝିଲି, କିନ୍ତୁ ଅପରାହ୍ଣର ଖାଦ୍ୟ କଥାଟାର ଅର୍ଥ ?

—ଅର୍ଥ ? ଅର୍ଥ ତ ଅତି ସିଧା । ବ୍ରେକ୍‌ଫାଷ୍ଟ୍‌ର ଅର୍ଥ ଜାଣିଛ ? ପ୍ରାତଃ ଭୋଜନ, ନା ତା ମଧ ଜାଣି ନାହିଁ ?

—ସେ କଥା ଜାଣିଛି ।

—ତେବେ ଆଉ କ'ଣ । ସକାଳର ଜଳଖିଆ ଯଦି ପ୍ରାତର୍ଭୋଜନ ହେଲା, ଦି'ପହରର ଭୋଜନଟା ଅପରାହ୍ଣର ଖାଦ୍ୟ ହେବନି କାହିଁକି ?

ଶମ୍ପାର ଆଲୋକରେ ଝଲମଲ କରୁଥିବା ମୁହଁ ଆଡ଼କୁ ଅଭିଭୂତ ଦୃଷ୍ଟିରେ ଚାହିଁ କହିଲା— ଶମ୍ପା !

—କହନ୍ତୁ ସାର୍ ?

/ —ଏତେ ଦୁର୍ଦ୍ଦଶା ଭିତରେ ଏତେ ଆହ୍ଲାଦ ତମର କେଉଁଠାରୁ ଆସେ ?

—ଦୁର୍ଦ୍ଦଶା !...... ଶମ୍ପା ଭୂରୁ କୁଞ୍ଚାଇ କହିଲା— ହେଲା ଏବେ ଦଶାଟା ଯଦି ଦୁର୍ଦ୍ଦଶା ହୁଏ, ଯଦିବା ମୁଁ ତା' ଜାଣେନି, ସେଇଟା ହେଉଛି ନିଜ ନିଜର ଧାରଣାର ବ୍ୟାପାର, ତା'ହେଲେ ବି କହିବି— 'ଆହ୍ଲାଦ' ଜିନିଷଟାର ବସା କେଉଁଠି କହିଲେ ମହାଶୟ ? ସେଇଟା କ'ଣ ବାହାରର କୌଣସି ଦୋକାନରେ ମିଳେ ? ନା ଆଖପାଖର ଗଛରେ ଫଳେ ?

—ତମ କଥା ଶୁଣିଲେ ମତେ ଆଶ୍ଚର୍ଯ୍ୟ ଲାଗୁଛି ଶମ୍ପା ! ମତେ ଡର ଲାଗୁଛି ।

— ଡର ଲାଗୁଛି ? ସେଇଟା ପୁଣି କ'ଣ ?...... ସର୍ବାଙ୍ଗରେ ଆହ୍ଲାଦ ଛୁଟାଇ ଦେଇ ଶମ୍ପା କହିଲା— ଆଶ୍ଚର୍ଯ୍ୟ ଲାଗି ପାରେ, ଏମିତି ଆଶ୍ଚର୍ଯ୍ୟ କରିଦେବା ଝିଅ ଦୈବାତ୍ ଦେଖିବାକୁ ମିଳେ, କିନ୍ତୁ ଡର ?

— ହଁ ଡର । ଲାଗୁଛି ହଠାତ୍ ଦିନେ ଦେଖିବି ଏ ସବୁଯାକ ସ୍ୱପ୍ନ, ତମେ ଆଉ ମୋ ଆଗରେ ନାହଁ ।

— ଆଗରେ ନ ଥିବା ହିଁ ସ୍ୱାଭାବିକ । ସେମିତି ହସିଲା ଶମ୍ପା, କହିଲା— ପଛରେ ଥିଲେ ଠେଲିବାକୁ ସୁବିଧା ହେବ ।

— ସେଇୟା ତ ! ସାରାଜୀବନ ମତେ ଠେଲି ନେଇ ଯିବ, ଏ କଥା ତ ମୁଁ ଜମା ଭାବିପାରୁନି ।

— 'ତମକୁ ସେଦିନ କ'ଣ ପଢ଼ିବାକୁ ଦେଇଥିଲି ?......' ମାଷ୍ଟ୍ର ମହାଶୟଙ୍କ ଭଙ୍ଗୀରେ ଗମ୍ଭୀର ଗଳାରେ ଶମ୍ପା କହିଲା— ପଢ଼ି ନାହଁ ରାଜକୁମାରୀ ଆଉ ବାମନର ଗପ ?

— ପଢ଼ିଛି । ସେ ସବୁ ପଢ଼ାଶୁଣା ଭିତରେ କୌଣସି ପ୍ରକାର ସାନ୍ତ୍ୱନା ପାଉନି । ଯାହାହେଲେ ବି ନିଜକୁ ତମ ପାଖରେ ଭାବି ପାରୁନି ।

ଶମ୍ପା ବସିପଡ଼ି ହତାଶ ଗଳାରେ କହିଲା— ଆଚ୍ଛା, ତମେ କ'ଣ ଚାହଁ କହତ ? ମତେ ତମର ଯୋଗ୍ୟ କରି ନେବାକୁ କୌଣସି କୌଶଳ ପ୍ରୟୋଗ କରିବି ?

ଭଲକଥା, ତା'ହେଲେ କ'ଣ କରାଯାଇ ପାରିବ କହ ? ପାଦ ଦୁଇଟାକୁ କାଟିପକାଇବି ? ଉହୁଁ, ସେଥିରେ ସୁବିଧା ହେବନି । ଚାରି ଚକର ଗାଡ଼ି ନ ଥାଉ, ଦୁଇ ଚକିଆ ସାଇକେଲଟା ମଧ୍ୟ ଦରକାର । ଜଣକର ଅନ୍ତତଃ ପାଦ ଥିବା ବିଶେଷ ଦରକାର । ହାତ ? ଆରେ ବାପା, ହାତ ବାଦ୍ ଦେଲେ ତମ ମୁହଁ ଆଗରେ କ'ଣ ହଲାଇବି ? ଆଖି ? ସେଇଟା ଗଲେ 'କଟାକ୍ଷ' ଗଲା । ଗୋଟାଏ କଥା କରିହେବ, ସୂର୍ପଣଖା ପରି ନାକଟା ଆଉ କାନ ଖତମ କରିଦେଲେ ହେବ । କହିବ ଯଦି ସେଇୟା କରାଯାଉ । ତା'ହେଲେ ତମେ ଯଦି କିଞ୍ଚିତ୍ ହେଲେ ସାନ୍ତ୍ୱନା ପାଇବ !

— ଶମ୍ପା !

— ହେଇଟି ଦେଖ ! ବାହାରିବାବେଳକୁ ଏମିତି ଗୋଟାଏ ନାଟକ । ଯାଉଛି ଗୋଟାଏ ଶୁଭକାର୍ଯ୍ୟରେ, ଆଉ ଦେଖିଲାବେଳକୁ ଏମିତି ସବୁ କଥା ! ପୁରୁଷଲୋକଙ୍କ ଆଖିରେ 'ଅଶ୍ରୁଧାରା'— ଏକଥା ମୁଁ ସହିପାରେ ନି ଜାଣିଛ !

ସତ୍ୟବାନ ଅନ୍ୟ ଆଡ଼କୁ ଚାହିଁ କହିଲା— ତମେ କାହିଁକି ମତେ ଭଲପାଇବାକୁ ଆସୁଥିଲା ଶମ୍ପା ?

—ସେଇୟା ତ !...... ସଙ୍ଗେ ସଙ୍ଗେ ଶମ୍ପା କହିଉଠିଲା— ସେକଥାଟାକୁ ମୁଁ ମଧ୍ୟ ଭାବି ଭାବି ମରୁଛି । କି ମରଣଦଶା ମୋର ହେଲା ଯେ, ତମଭଳି ଜଣେ ନିହାତି ମୂର୍ଖ ବୁଦ୍ଧୁକୁ ଭଲ ପାଇବାକୁ ଗଲି । ଯାଉ ସେ କଥା, ଯାହା ହୋଇଯାଇଛି ତାର ତ ଆଉ କୌଣସି ଉପାୟ ନାହିଁ ।

ଉପାୟ ନାହିଁ କିଏ କହିଲା ? ତମେ ଅନାୟାସରେ—

—ଦେଖ, ଏଥର ମୁଁ ନିଶ୍ଚେ ରାଗିଯିବି । ମୋର ରାଗ ତମେ ଜାଣିନ । ବାପା କହିଲେ, ମୋ ଘରେ ରହି ଏସବୁ ଚଳିବନି । କହିଲି, ବେଶ୍ ଚଳାଇବିନି । ଏକ ବସ୍ତ୍ରରେ ବାହାରି ଆସିଲି ।

—ସେଇୟା ତ ! ତମର ସେ ଭୟଙ୍କର ଇତିହାସଟା ମତେ ସବୁବେଳେ ଡରାଉଛି ।

—ତା'ହେଲେ ହେ ପ୍ରଭୁ, ଆପଣ ଏଇଲେ ବସି ବସି ଡରୁଥାନ୍ତୁ, ମୁଁ ଟିକିଏ ବାହାରି ପଡୁଛି ।

ସତ୍ୟବାନ ବିହ୍ୱଳ ଦୃଷ୍ଟିରେ ଚାହିଁ କହିଲା— ଏତେ ଆନନ୍ଦରେ ଭାସୁ ଭାସୁ କୋଉଠିକୁ ଯାଉଛ ?

—କହିବି ଚାହିଁନି ଯେ ?

—କହିବାକୁ ଚାହିଁନି ଯଦି କହନି ।

—ଓଃ, ବାବୁଙ୍କର କି ରାଗ ! କହିବି, କହିବି, ଫେରି ଆସିଲେ କହିବି । ଏଇଲେ ଯାଉଛି ଏଁ ? ଖାଇବ । ଆଉ ସେ ବହିଟାକୁ ପଢ଼ିପକାଇବ ।

—କୋଉଟା ? କେତେ ବହିତ କୁଢ଼ାଇ ଦେଇଛି ।

—ଆହା, କହିଲିନି ରବୀନ୍ଦ୍ରନାଥଙ୍କର 'ନୌକାଡୁବି'ଟା ପଢ଼ିପକାଅ । ଏପର୍ଯ୍ୟନ୍ତ ତ କିଛି ପଢ଼ିଲନି । ପଢ଼ି ଦେଖିବ । ଦେଖିବ ଏକମାତ୍ର ବହିପଢ଼ା ଭିତରେ ହିଁ ଜୀବନର ସବୁ ଦୁଃଖକଷ୍ଟକୁ ଭୁଲିଦେଇ ହେବ । ତମକୁ ମୁଁ ସେ ନିଶାରେ ନିଶାଖୋର କରି ପକାଇବି ଦେଖିବ !

ହସୁ ହସୁ ଆହ୍ଲାଦରେ ଭାସୁ ଭାସୁ ଶମ୍ପା ଚାଲିଗଲା ।

ଝାପ୍‌ସା ଝାପ୍‌ସା ଅନେକଗୁଡ଼ିଏ ମୁହଁ ଭିତରେ ଗୋଟିଏ ମୁହଁ ଝଲସି ଉଠିଲା ।

ରୋଗିଣା କଳା ଶୁଖିଲା ମୁହଁଟିଏ ।

ତେବେକେ ବୋଧହୁଏ ଆକାଶପୂର୍ଣ୍ଣ ଚନ୍ଦ୍ର ସୂର୍ଯ୍ୟ ଆଲୋକରେ ପରିପୂର୍ଣ୍ଣ । ବିଶ୍ୱାସ କରିବାକୁ କିଛି ସମୟ ଲାଗିଲା ।

ହୁଏତ ସେ ସମୟ ଘଡ଼ିର ହିସାବରେ ଏକ ସେକେଣ୍ଡର ସାମାନ୍ୟତମ ଭଗ୍ନାଂଶ ମାତ୍ର, ତେବେକେ ଥମକି ଅଟକି ଯାଇଥିବା କ୍ଷଣକାଳ ଯେପରି ଅନନ୍ତକାଳର ସ୍ୱାଦବାହୀ ହୋଇଗଲା ।

ସେହି ମୁହୂର୍ତ୍ତର ଅଧିକାରିଣୀର ହାତରେ ସତରେ କିଛି ଅଟୋଗ୍ରାଫ୍ ଖାତା ନ ଥିଲା, ତେବେକେ ହାତଟି ପ୍ରସାରିତ ହୋଇଥିଲା । ରୋଗା ପତଳା ନିରାଭରଣ ହାତଟିଏ ।

ଅନାମିକା ସେହି ହାତଟିକୁ ନିଜର ଟାଣୁଆ ମୁଠାରେ ଚିପିଧରି କହିଲେ – ଚଢ଼ି ଯା ।

× × × × ×

– ହସି ହସି ବାହାରିଲ ଆଉ କାନ୍ଦି କାନ୍ଦି ଫେରିଲ ଯେ ? ସତ୍ୟବାନ ତାକୁ ଘରେ ପଶିବା ଦେଖି ହାତର ବହିଟାକୁ ବନ୍ଦ କରି ତା ମୁହଁ ଆଡ଼କୁ ଚାହିଁ ଆସ୍ତେ ପ୍ରଶ୍ନ କଲା – କ'ଣ ହେଲା ?

ଶମ୍ପା ହାତର ବ୍ୟାଗ୍‌ଟାକୁ କାନ୍ଥର କଣ୍ଟାରେ ଝୁଲାଇ ରଖିବାର ଆଳରେ କାନ୍ଥ ଆଡ଼କୁ ମୁହଁ କରି କହିଲା – କାନ୍ଦି କାନ୍ଦି ! ତମକୁ କହିଛି !

କହିଲା, କିନ୍ତୁ ତା'ର କଣ୍ଠସ୍ୱରରେ ତା'ର ନିଜସ୍ୱ କଳକଣ୍ଠର ଝଙ୍କାର ଫୁଟିଲାନି । ଖାଲି ଝଙ୍କାରର ଚେଷ୍ଟାଟାହିଁ ଧରା ପଡ଼ିଲା ।

ସତ୍ୟବାନ ଆଉ କଥା କହିଲାନି, ବହିଟାକୁ ବନ୍ଦ କରି ଚୁପ୍‌ଚାପ୍ ରହିଲା ।

ଶମ୍ପା କହିଲା – ଖାଇଥିଲ ?

ସତ୍ୟବାନ କୁଣ୍ଠିତ ଗଳାରେ କହିଲା – ନା – ମାନେ, ବେଶୀ ଭୋକ କରିନି –

ଶମ୍ପା ଏଥର ଫେରି ଠିଆହେଲା, କହିଲା – ବହୁତ ବେଶୀ ଭୋକ ହେବା ଭଳି କିଛି ଦିଆଯାଇଥିଲା କି ?

– ନା, ନା, ମୋଟେ ଭୋକ କରିନି ।

ଶମ୍ପା ଏଥର ତା' ପାଖରେ ଟୁଲ୍‌ଟାରେ ବସିପଡ଼ି ହତାଶ ଗଳାରେ କହିଲା – ଆଚ୍ଛା, ତମର ଜ୍ୱାଳାରେ ମୁଁ କ'ଣ କରିବି କହି ପାରିବ ?

– କରିବାର କିଛି ନାହିଁ । ନିଜ ହାତରେ ଖାଲ କାଟି କୁମ୍ଭୀରକୁ ଆଣିଛ ।

ଶମ୍ପା କାନ୍ଥ ଆଡ଼କୁ ଚାହିଁ କହିଲା – ସେକାଳର ରାଣୀ ମହାରାଣୀମାନେ କାହିଁକି ଯେ ଗୋଟାଏ ଲେଖାଏଁ ଗୁଷାଘର ରଖୁଥିଲେ, ସେଇଟା ମର୍ମେ ମର୍ମେ

ଅନୁଭବ କରୁଛି । ଯେ କୌଣସି ସମ୍ଭ୍ରାନ୍ତଚିତ୍ତ ମହିଳାଙ୍କର ସେଇଟା ଏକାନ୍ତ ପ୍ରୟୋଜନ ।

—ଏକାନ୍ତ ପ୍ରୟୋଜନ ?

—ନିଶ୍ଚୟ, ସବୁବେଳେ ମହାରାଜାମାନଙ୍କର ଆଖି ଆଗରେ ରହିବାକୁ ହେଲେ ତ ପ୍ରେଷ୍ଟିଜ୍ ପଙ୍କଚର ହୋଇଯିବ ! କେବେ ଯେ ରାଣୀର ହସିବାକୁ ଇଚ୍ଛା ହୁଏ ଓ କେତେବେଳେ ଯେ କାନ୍ଦିବାକୁ ଇଚ୍ଛାହୁଏ –

ସତ୍ୟବାନ କଥା ମଝିରେ କହିଲା– ସବୁବେଳେ ସେହି ପ୍ରେଷ୍ଟିଜ୍‌ଟାକୁ କୁଣ୍ଢାଇ ଧରି ରହିବାକୁ ହେବ, ଏମିତି କିଛି କଥା ଅଛି ?

—ହୁଁ ବାକ୍ୟ ଫାକ୍ୟ ଏକାବେଳେ ଶିଖିଗଲଣି ଦେଖୁଛି । ତା'ହେଲେ କହୁଛି ପ୍ରେଷ୍ଟିଜ୍‌ଟା ହିଁ ମଣିଷ । ତା' ଛଡ଼ା ଆଉ ମଣିଷର କ'ଣ ରହିଲା ? ଚାରୋଟି ହାତ ପାଦ, ଚକ୍ଷୁ କର୍ଣ୍ଣ ନାସିକା, ରକ୍ତ ମାଂସ ହାଡ଼, ଏସବୁ ତ ପଶୁଜାତିର ମଧ୍ୟ ଥାଏ ।

—ସେଇଟା ତମର ତର୍କର କଥା, ସତ୍ୟବାନ କହିଲା– ମୋର ତ ମନେହୁଏ ତମମାନଙ୍କର ଏହି ପ୍ରେଷ୍ଟିଜ୍ ଜିନିଷଟା ସଉଖୀନ୍ ଜାମାପଟା ପରି । ତେବେ ? ନିଜ ଲୋକ ପାଖରେ ସେଇଟା ରକ୍ଷା କରିବାର ଏତେ ଜରୁରୀ କ'ଣ ?

ଶମ୍ପା ମୁଣ୍ଡ ହଲାଇ କହିଲା– ନୋ ନୋ । ନିଜ ଲୋକ କାହିଁକି, ସବୁଠାରୁ ବେଶୀ ଦାୟିତ୍ୱ ରହିଲା ନିଜର ନିଜ ପାଖରେ ରକ୍ଷା କରିବାର ଦାୟିତ୍ୱ ।

ସତ୍ୟବାନ ମଳିନ ଭାବରେ କହିଲା– ଏଇଥିପାଇଁ ତମକୁ ଡର ଲାଗେ ମତେ, ମନେହୁଏ ତମ ମନକୁ ଗୋଟାଏ ଜନ୍ମରେ କାହିଁକି, ସାତଜନ୍ମ ଘୂରି ଆସିଲେ ମଧ୍ୟ ପାଇବିନି ।

—ଓଃ ନିଜର ସଂପର୍କରେ କି ବିରାଟ ଧାରଣା । ଯାଉ, ଏଥର ଖାଦ୍ୟଟା ଖାଇବେ ମହାଶୟ ? ନା ସେଇଟା ମଧ୍ୟ ଧରାଛୁଆଁର ବାହାରେ ବୋଲି ମନେ ହେଉଛି ?

ସତ୍ୟବାନ ଆସ୍ତେ କହିଲା– ତା' ହେବନି । ହୁଏନି ମଧ୍ୟ । ତମେ ଯେତେବେଳେ ଦୟା କରି ନିଜେ ଅନେକ ତଳକୁ ଓହ୍ଲାଇ ଆସି ଧରାଛୁଆଁ ଭିତରେ ଠିଆହୁଅ, ସେତେବେଳେ ମନେହୁଏ ଏଥର ରାସ୍ତା ସହଜ ହୋଇଯାଉଛି । କିନ୍ତୁ ତା' ଆଉ କେତେବେଳ ? ତା'ପରେ ହିଁ ତ ସେହି ଡର ଜାଗ୍ରତ ହେଉଛି ।

—ଉଃ ! ଏଥର ତ ଦେଖୁଛି ତମେ ମୋର ଧରାଛୁଆଁର ବାହାରକୁ ଚାଲି ଯାଉଛ । ତମେ ଏ ସବୁ ଭାବୁଛ ?

—ଭାବନା ଛଡ଼ା ଆଉ ତ କିଛି କାମ ନାହିଁ !

—ତା ଅର୍ଥ ଏବଠାରୁ ମତେ ଭାବନାରେ ପଡ଼ିବାକୁ ହେଉଛି । ଯାଉ, ଖାଇବା ପ୍ରଶ୍ନଟା ତା'ହେଲେ ଟୋକେଇରେ ଘୋଡ଼ା ହୋଇ ରହିଲା ?

—ରାତି ତ ହୋଇଗଲାଣି । ଏକାଥରେ ଖାଇଦେଲେ ଚଳିବ । ବରଂ ସେପର୍ଯ୍ୟନ୍ତ ତମର ଆଜିର— କ'ଣ କହନି, ଅଭିଯାନ ନା, ସେଥିର ଗପ ଶୁଣିବି ।

ଶମ୍ପା ନିଜସ୍ୱ ଭଙ୍ଗୀରେ ଝଲସିଉଠିଲା— ଅଭିଯାନ ! ଆରେ ବାବା ! ଯାପରେ ହୁଏତ ତମେ ହିଁ ମୋର ଅଭିଧାନ ହୋଇଯିବ । ହଁ ଅଭିଯାନ ସତ !

ହଠାତ୍ ଟିକିଏ ତୁନି ହୋଇଯାଇ କାନ୍ଥ ଆଡ଼କୁ ଚାହିଁ ରହିଲା । ଯେମିତି ସହସା ତା'ର ଅଭିଯାନର ସ୍ମୃତି ଭିତରେ ହଜିଗଲା ।

ଏବେ ତା'ର ମୁହଁର ଗୋଟାଏ ପାଖରୁ ଦିଶୁଛି— ଯେମିତି ଚାଞ୍ଚୁହୋଇ ଯାଇଛି, ଆଗ କ'ଣ ଶମ୍ପାର ମୁହଁର ହାଡ଼ ଦେଖାଯାଉଥିଲା ?

ସତ୍ୟବାନ ନିଃଶ୍ୱାସଟିଏ ପକାଇ କହିଲା— ତମେ କେତେ ଶୁଖିଗଲଣି !

—ପିଉସୀ ମଧ ସେଇୟା କହୁଥିଲା, କେମିତି ଯେପରି ଆଚ୍ଛନ୍ନ ଅନ୍ୟମନସ୍କ ଗଳାରେ କହିଲା ଶମ୍ପା— ମୁଁ ଅବଶ୍ୟ ସେକଥା ମାନୁନି । କେବେହେଲେ ମୁଁ ମୋଟୀ ନ ଥିଲି । ପିଉସୀକୁ ସେଇୟା କହିଲି । ତେବେ ମା'ଙ୍କର ଜବରଦସ୍ତି ଯୋଗୁ ପ୍ରତିଦିନ ଅଳ୍ପ ଦୁଧ ଲହୁଣୀ, ମାଛ ଡିମ୍ବ ମିଠା ଇତ୍ୟାଦି ପେଟ ଭିତରକୁ ଚାଲାଣ କରିବାକୁ ବାଧ ହେଉଥିଲି ତ ! ସେଥିରେ ଗୋଟାଏ ଏଫେକ୍ଟ ନିଶ୍ଚୟ ରହିବ ।

—ପିଉସୀ ପାଖକୁ ତମେ ଯାଇଥିଲ ?...... ଟିକିଏ ପରେ ସତ୍ୟବାନ କହିଲା ।

ଶମ୍ପା ସେମିତି ଅନ୍ୟମନସ୍କ ଭାବରେ କହିଲା— ପିଉସୀ ପାଖକୁ ? ହଁ, ପିଉସୀ ପାଖକୁ ।

—ମା-ବାପାଙ୍କ ସଙ୍ଗେ ଦେଖା ହେଲା ?

ଶମ୍ପା ସଚେତନ ହେଲା ।

ଶମ୍ପା ଟିକିଏ ସଜଡ଼ା ସଜଡ଼ି ହୋଇ ବସିଲା— ଧେତ୍ ! ମୁଁ କ'ଣ ସେଠାକୁ ମାନେ ଘରକୁ ଯାଇଥିଲି ନା କ'ଣ ? ସକାଳେ ରୁଟି ଆଣିବାକୁ ବାହାରିଥିଲି, ହଠାତ୍ ଦେଖିଲି ଦୋକାନ ପାଖରେ ଗୋଟାଏ କାନ୍ଥରେ ପ୍ଲାକାର୍ଡ଼ ମରାହୋଇଛି— ପୁଲକ ସଂଘର ବାର୍ଷିକ ଉତ୍ସବରେ ଅଭିନବ ଆୟୋଜନ, ଶ୍ୟାମା ନୃତ୍ୟନାଟ୍ୟ, ବିଚିତ୍ରାନୁଷ୍ଠାନ, ଶିଳ୍ପୀ ଅମୁକ ଅମୁକ, ସଭାନେତ୍ରୀ ଦେଶବରେଣ୍ୟ ସାହିତ୍ୟିକା ଶ୍ରୀଯୁକ୍ତା ଅନାମିକା ଦେବୀ !......

ଠିକଣାଟାକୁ ଦେଖି ଗୋଡ଼ ହାତ ବରଫ ହୋଇଗଲା, କାହିଁକି, ବୁଝିପାରୁଛ ?

ଏକାବେଳେ ଆମ ଦୁଆର ପାଖରେ ! କିଛି ସମୟ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହି କର୍ତ୍ତବ୍ୟ ସ୍ଥିର କରିପକାଇଲି । ସେତେବେଳେ ଅବଶ୍ୟ ତମକୁ କହିନି, ଭାବିଲି କେଜାଣି ବାବା, ସଭାନେତ୍ରୀଙ୍କ ପାଖ ପର୍ଯ୍ୟନ୍ତ ପହଞ୍ଚିପାରିବି କି ନାହିଁ । କହିକରି ଅପ୍ରସ୍ତୁତ ହେବି !...... ହେଲେ ବୁଦ୍ଧିର ଜୋରରେ ଶେଷକୁ ପହଞ୍ଚିଗଲି ।...... ଏକବାରେ ସଭା ଶେଷରେ ଗାଡ଼ିରେ ଚଢ଼ିବା ସମୟରେ ଦେଖିଲି– ଅଟୋଗ୍ରାଫ୍ ଶିକାରୀମାନେ ଧରିପକାଇଛନ୍ତି, ମୁଁ ମଧ୍ୟ ହାତ ବଢ଼ାଇ କହିଲି– ମତେ ଗୋଟାଏ ଅଟୋଗ୍ରାଫ୍...... ଖାତା ଫାତା ଅବଶ୍ୟ ନ ଥିଲା, ସେଇତକରେ...... ଦେଖିଲି ପିଉସୀ ବିଭ୍ରାନ୍ତ ପରି ଚାରିଆଡ଼େ ଚାହୁଁଛି, ତା'ପରେ କ'ଣ ହେଲାନା ଖପ୍‌କିନା ମୋ ହାତଟାକୁ ଚିପିଧରି କହିଲା– ଉଠି ଆସ ।

–କୋଉଠିକୁ ଉଠି ଆସିବି ?

–ଏଇ ଦେଖ୍, କୋଉଠିକୁ ପୁଣି ? ଗାଡ଼ିକୁ ।

–ତା'ପରେ ?

–ତା'ପରେ ଆଉ କ'ଣ, ବାଧ୍ୟ ଝିଅ ଭଳି ଚଢ଼ିପଡ଼ିଲି । ପୁଲକ ସଂଘର ଗୋଟିଏ ଟୋକା ବୋଧହୁଏ ଥିଲା ଗାଡ଼ିରେ, ଏତେ ଦେଖିଲିନି, କ'ଣ ବା କରିଥାନ୍ତି ? ସେତେବେଳକୁ ପିଉସୀ ଆଉ ଝିଆରୀ ଦୁହେଁଯାକ ବାକ୍‌ଶକ୍ତି ରହିତ । ଟିକିଏ ପରେ ପିଉସୀ କହିଲା– ତତେ କ'ଣ କରିବି କହିଲୁ ? ଠାଇ ଠାଇକିନା ଗାଲରେ ଚାପୁଡ଼ା ଦେବି, ନା ଚୁଟି ମୁଠା ଧରି ମୁଣ୍ଡକୁ ଠୁକେଇଦେବି ?...... ମୁଁ କହିଲି– ଏ କ'ଣ ଦେଶ-ବରେଣ୍ୟା ସାହିତ୍ୟିକାଙ୍କ ଭାବର ଅଭିବ୍ୟକ୍ତି ?

ପିଉସୀ କହିଲା– ହଁ ।

ତା'ପରେ ଅନେକକ୍ଷଣ ପରେ ମୁଁ କହିଲି– ମୁଁ କିନ୍ତୁ ମୋର ଜାଗାରୁ ଅନେକଦୂରକୁ ଚାଲିଯାଉଛି– ଅତଃପର ନାଟକର ଦୁଇ ନାୟିକାଙ୍କ ଭିତରେ ଏଭଳି କଥୋପକଥନ ହେଲା ।

–ତୋ ଜାଗାଟା କେଉଁଠି ?

–ପୁଲକସଂଘର ପାଖାପାଖି । ଅନେକ ଦୂର ଚାଲିଆସିଛି ।

–ଏଇଲେ ତତେ କିଏ ଛାଡୁଛି ?

–ଧରି ପକାଇବା କଥା ତ ଉଠୁନି ବାବୁ । ନିଜେ ନିଜେ ଧରା ଦେଇଛି ।

–ତୋ'ର ଅଶେଷ ଦୟା । ଏଇଲେ ଘରକୁ ଚାଲ ।

—ଆଜି ଥାଉ ପିଉସୀ—

—କାହିଁକି ଆଜି ଥାଉ କାହିଁକି ? ତୋର ମା'-ବାପର ଅବସ୍ଥାଟା କେବେ ଭାବି ଦେଖିଛୁ ?

ସେମାନେ ତ ଗର୍ବୀ !

ସେଇ ଗର୍ବ ତୁ ରଖିବାକୁ ଦେଇଥିଲୁ ଲକ୍ଷ୍ମୀଛଡ଼ା ହତଭାଗୀ ଝିଅ ?

—ଆରେ ବାସ୍ ! ତମେ ଯେ ଅନେକ ନୂଆ ନୂଆ ଭାଷା ଶିଖିପକାଇଛ ଦେଖୁଛି ଯା ଭିତରେ—

—ତୁ ତ ଅନେକଙ୍କୁ ଅନେକ କଥା ଶିଖାଇଛୁ ପାଜି ନିଷ୍ଠୁର ଝିଅ !

—ତମେ ବୋଧହୁଏ ଏଇ ଗାଳିମନ୍ଦଗୁଡ଼ାକ ଶୁଣାଇବା ପାଇଁ ମତେ ଟାଣି ଗାଡ଼ିକୁ ଚଢ଼ାଇଦେଲ ?

—ତା' ଛଡ଼ା ଆଉ କ'ଣ ! ଇଏ ତ କିଛି ନୁହେଁ, ଆହୁରି ବହୁତ ଅଛି । ଏତେଦିନ ଧରି ଆଉ କ'ଣ ଜମେଇବା ସମ୍ଭବ ଥିଲା ତୋ ପାଇଁ !

—ତା'ହେଲେ ଯାହା ଯାହା ଅଛି ଚଞ୍ଚଳ ସାରିଦିଅ । ଅର୍ଥାତ୍ ତୂଣୀରରେ ଯେତେ ବାଣ ଜମାଇ ରଖିଛ, ସବୁ ମାରି ତୂଣୀର ଖାଲି କରିଦିଅ । ମତେ ଆହୁରି ବେଶୀ ଦୂରକୁ ଟାଣି ନେଇଗଲେ ଫେରିବାକୁ ବହୁତ ଭୋଗିବାକୁ ପଡ଼ିବ ପିଉସୀ । ସେତେବେଳେ ତ ଆଉ ତମର ପୁଲକସଂଘ ବିପୁଳ ପୁଲକରେ ମତେ ମୋର ଚାଳଘରେ ନେଇ ପହଞ୍ଚାଇଦେବାକୁ ଯିବନି ।

—ଚାଳଘର ! ତୁ ଚାଳଘରେ ରହୁଛୁ ?...... ପିଉସୀ ଯେମିତି କଟାଡ଼ି ହୋଇ ପଡ଼ିଗଲା ।

ଦେଖି ମୁଁ ହସି ହସି ଗଡ଼ିଗଲି, କହିଲି— ତା'ହେଲେ କ'ଣ ଆଶା କରିଥିଲ ? କୋଠାଘର ?

—ନା, ତୋ ସମ୍ପର୍କରେ ଆଶା-ଫାଶା ଆଉ କିଛି କେହି କରନ୍ତିନି । କିନ୍ତୁ ଇତିହାସଟା କ'ଣ ?

—ଇତିହାସ ? ବିଶଦ ଭାବରେ କହିବାକୁ ଗଲେ ସାତ ଦିନ ସାତ ରାତି ମଧ୍ୟ ସରିବନି । ସଂକ୍ଷିପ୍ତ ଭାଷଣ ହେଉଛି, ସେ ହତଭାଗ୍ୟ ଟୋକାଟା ! ଯାହାକୁ ଜାମ୍ବବାନ ବୋଲି ଜାଣିଥିଲ । ତା'ର ଜଣେ 'ପ୍ରାଣର ବନ୍ଧୁ' ପାର୍ଟି-ବିରୋଧରେ କ୍ରୁଦ୍ଧ ହୋଇ ତା'ଉପରକୁ ବୋମା ପକାଇ ସବୁଦିନ ପାଇଁ ପଦଗୌରବ ଶେଷ କରିଦେବାରୁ—

—ତା' ମାନେ ?

—ମାନେଟା ଅତି ସିଧା । ହସ୍‌ପିଟାଲ୍‌ରୁ ଯେତେବେଳେ ବାହାରିଲା, ଚିରଦିନର ଚିହ୍ନା ପାଦ ଦୁଇଟା ନାହିଁ ।

—ଶମ୍ପା !

—ଆହା-ହା, ଏମିତି ଆର୍ତ୍ତନାଦ କରିପକାଅନି, ରାସ୍ତାର ଲୋକେ କ'ଣ ଭାବିବେ ! ଆଚ୍ଛା ଆହୁରି ସଂକ୍ଷେପରେ ସାରୁଛି— ପ୍ରାଣର ବନ୍ଧୁ ଛଡ଼ା ଏଣୁ ତେଣୁ କେତେ କେତେ ବନ୍ଧୁ ତା'ର ଥିଲେ, ସେମାନଙ୍କ ସାହାଯ୍ୟରେ କେଡ଼େ ସୁନ୍ଦର ସମୁଦ୍ର ପାର ହୋଇ କୂଳକୁ ଆସିଛି—

—କୂଳକୁ ଆସିଛୁ ମାନେ ? ତୋ କଥା ବୁଝି ପାରୁନି ଶମ୍ପା, ସ୍ପଷ୍ଟକିନା ସବୁ ଖୋଲି କହିଲୁ ।

—ପିଉସୀ ଆଉ କହିବାକୁ ଗଲେ ତମର ଭାଇର ଘର ଭିତରେ ଯାଇ ପଶିଯିବାକୁ ପଡ଼ିବ । ମତେ ଓହ୍ଲାଇଦିଅ, ବସ୍‌ରେ ଚାଲିଯିବି ।

—ଘରକୁ ଯିବୁନି ?

—ଆଜି ଥାଉ ।

ପିଉସୀ ହଠାତ୍ ଟିକିଏ ତୁନି ହୋଇ ରହି ଆସ୍ତେ କହିଲା— ହଁ, ତା ଭଲ । ତୁ ନିଜେ ଆସିବୁ ।

ତା'ପରେ ସେହି ପୁଲକ ସଂଘକୁ କହିଲା— କଥାରେ କଥାରେ ଅନେକବାଟ ଚାଲି ଆସିଛେ, ଯାକୁ ତମରି ସାହିରେ ପହଞ୍ଚାଇବାକୁ ପଡ଼ିବ— '

ଗାଡ଼ି କଥାରେ କେତେ ମନା କଲି, ଶୁଣିଲାନି, କହିଲା— ହାତ ଛଡ଼େଇ ରାସ୍ତା ଉପରକୁ ଡେଇଁବୁ ଯଦି ଡିଆଁ ମାର୍ । ଟୋକାଟା ଆଉ କ'ଣ କରିବ, ଏଇଠିକୁ ଆଣି ଗଳି ମୁହଁରେ ଛାଡ଼ି ଦେଇ ଚାଲିଗଲା । ଅବଶ୍ୟ ପିଉସୀ ଟ୍ୟାକ୍ସି-ଭଡ଼ାଟା ଦେଇଥିଲା ।

—ଏ ବସ୍ତିର ଧାରରେ ଛାଡ଼ିଦେଇ ଗଲା ?

—ଉପାୟ କ'ଣ ? ବସାଟା ନ ଦେଖି ପ୍ରାଣ ଧରି କେବେହେଲେ ଚାଲି ଯାଇ ପାରିବ ? ଏବେ ଭାବୁଛି କାମଟା କ'ଣ ଭଲ କଲି, ନା ମନ୍ଦ କଲି !

—କୋଉ କାମ ?

—ଏଇ ଯୋ ହଠାତ୍ ଧରା ଦେବାଟା ! କ'ଣ ଜାଣିଛ, ହଠାତ୍ କିପ୍ରକାର ଯେ ଗୋଟାଏ ଲୋଭ ହେଲା !

ଠିକ୍ ସେହିକଥା ସେତେବେଳେ ଭାବୁଥିଲା ବକୁଳ ନାଆଁର ଗୋଟିଏ ମଣିଷ ।

"କାମଟା ଭଲ କଲି, ନା ମନ୍ଦ କଲି ?"

ଯଦି ଶମ୍ପାର ମା-ବାପା ଜାଣିଦିଅନ୍ତିଯେ ଶମ୍ପା ସଙ୍ଗେ ମୋର ଦେଖା ହୋଇଥିଲା, ଅଥଚ ମୁଁ ସେମାନଙ୍କୁ କହିନି, ସେମାନେ ମତେ କ'ଣ କହିବେ ?

କିନ୍ତୁ ମୁଁ କେମିତି କହିବି— ତମମାନଙ୍କର ଝିଅ ନିଜେ ଯାଚିହୋଇ ଆସି ମୋ ସଙ୍ଗେ ଦେଖା କରି ପୁଣି ଚାଲି ଯାଇଛି ! ତମମାନଙ୍କ ପାଖକୁ ଆସିବାକୁ ଚାହିଁଲାନି !

ସାରାରାତି ନିଦ ହେଲାନି ।

## ।। ୩୦ ।।

ଡାଏରୀ ଲେଖିବାଟା ଆବାଲ୍ୟର ଅଭ୍ୟାସ ପାରୁଲ୍‌ର ।

ସେହି ଅଭ୍ୟାସ ପାଇଁ ଅମଳବାବୁ ନାମକ ଭଦ୍ରଲୋକଟି ରାଗିଯାଉଥିଲେ । ତାଙ୍କର ଧାରଣା ଥିଲା ସ୍ୱାମୀକୁ ମଧ୍ୟ ଦେଖିବାକୁ ଦିଆଯିବନି ଏଭଳି କିଛି ଲେଖା ଲେଖିବା ସ୍ତ୍ରୀପକ୍ଷରେ ଅତ୍ୟନ୍ତ ଗର୍ହିତ । କିନ୍ତୁ ପାରୁଲ୍ ଏଭଳି ଅଦ୍ଭୁତ ଆଶ୍ଚର୍ଯ୍ୟ ଭାବରେ ଧିକ୍କାର ଦେଇଥିଲା ଯେ, ଜୋର କରି ମାଗିନେଇ ପଢ଼ିବା ସମ୍ଭବ ହେଉ ନ ଥିଲା ।

ଅମଳବାବୁ କହିଥିଲେ— ସେଥିରେ କ'ଣ ଏତେ ଲେଖୁଛ ଯେ, ମଝିରାତିରେ ଉଠି ଲେଖିବାକୁ ଇଚ୍ଛା ହେଉଛି ? ସେଇଟା ତ ତମର ପଦ୍ୟଖାତା ନୁହେଁ ?

ହସି ହସି ଗଡ଼ିଯାଥିଲା ପାରୁଲ୍— ଏ ମା' ! ତମେ ମୋର ପଦ୍ୟଖାତାଟା ଚିହ୍ନିଦେଇଛ ? ମୋ ସମ୍ପର୍କରେ ତମର ଏତେ ଲକ୍ଷ୍ୟ ?

—ଲକ୍ଷ୍ୟର କିଛି ଅଭାବ ଦେଖୁଛ ?...... କହିଥିଲେ ଅମଳବାବୁ ।

ପାରୁଲ୍ ହସ ବନ୍ଦ କରି କହିଥିଲା— ତା' ସତ । ଲକ୍ଷ୍ୟର ଅଭାବ ? ନାଃ ବରଂ ଟିକିଏ ଅଭାବ ଥିଲେ ମନ୍ଦ ହୋଇ ନ ଥାନ୍ତା !

ଅମଳବାବୁ ଗମ୍ଭୀର ହୋଇଯାଇ କହିଥିଲେ— ହୁଁ, ହେଲେ ଏ ଖାତାଟା କୋଉଥିର ?

—ଦେଖୁଛ ତ ଡାଏରୀର ।

—ଡାଏରୀ ! ଗୃହସ୍ଥ ଘରର ସ୍ତ୍ରୀଲୋକର ଡାଏରୀ ଲେଖିବାର କ'ଣ ଅଛି ?

— କିଛିହେଲେ ନାହିଁ । ପାଗଳାମି ମାତ୍ର ।

— କାହିଁ ଦେଖେ, କ'ଣ ନେଇ ପାଗଳାମି !...... କହିଥିଲେ ଅମଳବାବୁ ହାତଟାକୁ ବଢ଼ାଇ ଦେଇ ।

ସେତିକିବେଳେ ପାରୁଲ୍ ବେଦମ୍ ହୋଇ ହସିଥିଲା— ଏ ମା' ! ଦେଖିବ ବୋଲି କହୁଛ କ'ଣ ? ପରର ଚିଠି ପଢୁଛ ପଢ଼, ତା'ବୋଲି ଅନ୍ୟର ଡାଏରୀ ଦେଖିବ ? ନାଃ, ତମେ ବାପା ବହୁତ ବେଶୀ ଗାଉଁଲିଆ ! ମୋର ସାମନାରେ ଯାହା କହିଲ, ଆଉ କାହାରି ସାମନାରେ କହିବନି । ଏ ବହିଟାକୁ ତମର ସଭ୍ୟତା ଉପରେ ଛାଡ଼ି ଦେଇ ଯୁ'ଠି ସେଇଠି ପକେଇ ରଖୁଛି, ଦେଖିବନି କେବେ ।

— ଏମିତି ଗୋପନ ଜିନିଷ ଯେ ସ୍ୱାମୀକୁ ମଧ ଦେଖାଇବା ଚଳିବନି ?

— ଦେଖାଇବା ଚଳିବନି କାହିଁକି ?...... ପାରୁଲ୍ କୌତୁକରେ ଆଖି ନଚାଇ କହିଥିଲା— ମୁଁ ତମକୁ ଡରୁଛି ନା କ'ଣ ? ସେଇଥିପାଇଁ ତମେ କାଳେ ମୋର ଗୋପନ କଥା ଜାଣିପକାଇବ ବୋଲି ଡରିଯିବି ? ଅନ୍ୟର ଡାଏରୀ ଦେଖିବାଟା ହିଁ ଅସଭ୍ୟତା । ସଭ୍ୟ ସମାଜର କେତେକଗୁଡ଼ିଏ ଆଇନ ଅଛି ମାନୁଛ ତ ?

'ମାନୁନି' ଏକଥା କହିପାରି ନ ଥିଲେ ଅମଳବାବୁ, ସେଥିପାଇଁ ବିରକ୍ତ ମୁହଁରେ କହିଥିଲେ— ସେସବୁ ହେଉଛି ବିଲାତିପଣିଆର କଥା । ଆମମାନଙ୍କ ଘରେ ପୁଣି ଏସବୁ କୁଆଡୁ ଆସିଲା !

ସଙ୍ଗେ ସଙ୍ଗେ ମୁହଁଟାକୁ ଭାରି ଅମାୟିକ କରି ପାରୁଲ୍ କହିଥିଲା, ଏ ମା' ! ସେଇଯା ତ ! ଆମଘରେ ଯେ ସଭ୍ୟତା ମୋଟେ ନାହିଁ, ସେ କଥା ମନେ ନ ଥିଲା ମୋର । ତା'ହେଲେ ତ ଦେଖୁଛି ଖାତାଟାକୁ ଅତି ଗୋପନୀୟ ଜାଗାରେ ଲୁଚାଇ ରଖିବାକୁ ପଡ଼ିବ ।

କହିଥିଲା, ହେଲେ ରଖି ନ ଥିଲା ।

ଭଣ୍ଡାରଘରର ଥାକରେ ପକେଇ ରଖିଥିଲା ।

ଅଥବା ସେଇଟା ହିଁ ଅମଳବାବୁଙ୍କ ପକ୍ଷରେ ଦୁର୍ଗମ-ଦୁସ୍ତର ଜାଗା ବୋଲି ସେ ଚଲାକିଟା ଖେଳିଥିଲା । ଭଣ୍ଡାରଘରେ ଚାବି ଦେବାର କଡ଼ା ନିର୍ଦ୍ଦେଶ ଥିଲା ଅମଳବାବୁଙ୍କର । ଚାକରବାକରଙ୍କୁ ସେ ଭାରି ସନ୍ଦେହ କରୁଥିଲେ ।

ପାରୁଲ୍ ଯେତେବେଳେ କହିଥିଲା— ସବୁବେଳେ ଚାବି ଦେଇ ରଖିବି, ଭଣ୍ଡାରଘରେ ଏମିତି କ'ଣ ଅଛି ଯେ ? ଟଙ୍କା, ନା ଗହଣା, ନା ଶାଲ୍-ଚଦର ? ଅଛି ଚାଉଳ ଡାଲି ତେଲ ଲୁଣ ଛଡ଼ା ତ ଆଉକିଛି ନୁହେଁ !

ସେତେବେଳେ ଅମଳବାବୁ ପାରୁଲ୍‌କୁ ଜାଣିସିଆଣିଆ ବୋଲି ଆଖ୍ୟା ଦେଇଥିଲେ ।

ଅତଏବ ପାରୁଲ୍ ଏକନିଷ୍ଠ ଚିତ୍ତରେ ଭଣ୍ଡାରଘରେ ଚାବି ଦିଏ ଏବଂ ସେ ଚାବି କେଉଁଠି ରଖେ କିଏ ଜାଣିଛି ! ଭାରତୀୟ ସ୍ତ୍ରୀଲୋକଙ୍କର ଯେ କାନିରେ ଚାବି ବାନ୍ଧିବାର ଏକ ଚିରନ୍ତନ ରୀତି ଅଛି, ସେଇଟା ପୁଣି ପାରୁଲ୍ କରି ପାରେନି । କାନିରେ ଚାବି ବାନ୍ଧିବାର ଅଭ୍ୟାସ ତା'ର ଏପର୍ଯ୍ୟନ୍ତ ନାହିଁ ।

ପାରୁଲ୍ ଯେତେବେଳେ ଭଣ୍ଡାରଘରେ ଥାଏ, କାମଦାମ କରେ, ସେତେବେଳେ ତା' ଆଗରେ କ'ଣ ଫସ୍‌କିନା ଟାଣିନେଇ ହେବ ଖାତାଟାକୁ ? ଆଉ ପାରୁଲ୍ ଯେତେବେଳେ ଘରୁ ବାହାରି କେଉଁଠାକୁ ଯାଏ, ଚାବିଟାକୁ ଖୋଜିଲେ ମିଳେନି ।

ଅବଶ୍ୟ କୁଆଡ଼କୁ ଆଉ ଯାଉଥିଲା ପାରୁଲ, ହୁଏତ ବାପଘରର 'କନକ' ମାଉସୀଙ୍କ ପାଖକୁ । ମଫସଲରେ ଯେମିତି ସାହି ବୁଲିବା ପ୍ରଥା ଅଛି, ପାରୁଲ୍ ସେମିତି ବୁଲିପାରୁ ନ ଥିଲା । ଅମଳଙ୍କ ଡରରେ ନୁହେଁ, ନିଜର ବିତୃଷ୍ଣାରେ । ବୁଲିବାଟା ତା'ର ରୁଚିରେ ହିଁ ନ ଥିଲା ।

ସମୟ ପରି ମୂଲ୍ୟବାନ ଆଉ କ'ଣ ଅଛି ? ସେହି ସମୟଟାକୁ ନେଇ ବୃଥାରେ ଯଦି ମଣିଷ ଖେଳିବ ! ବହି ଖାତା କିଛିମଧ୍ୟ ଯଦି ନ ଥାଏ, ନିଜର ମନଟା ନାହିଁ ? ତାକୁ ହିଁ ଧରି ପାଇଥିବା ବଳକା ସମୟ ଟିକକ କଟାଇ ଦେଇ ହେବନି ?

ଖାଲି କନକ-ମାଉସୀଙ୍କ ସହିତ ରୁଚିର କିଛି ମେଳ ଥିଲା ବୋଲି ମଝିରେ ମଝିରେ ଯାଉଥିଲା ପାରୁଲ୍ ।

ତେବେବି ତା'ରି ଫାଙ୍କରେ ଦିନେ ଗୋଟାଏ କି ଦୁଇଟା ପୃଷ୍ଠାରେ ଆଖି ବୁଲାଇ ଦେଖିଥିଲେ ଅମଳବାବୁ । ଆଳ ଦେଖାଇ ଭଣ୍ଡାର ଘରେ ପଶି ଥାକକୁ ଲାଗି ଠିଆ ହୋଇ ସ୍ତ୍ରୀ ସଙ୍ଗେ କଥାବାର୍ତ୍ତା ହେଉ ହେଉ ଅନ୍ୟମନସ୍କ ପରି ଖାତାଟାର ପୃଷ୍ଠା ଓଲଟାଇ ଦେଖିଥିଲେ ।

କିନ୍ତୁ କିଛି ଲାଭ ହୋଇନି, ଗୋଟିଏ ପୃଷ୍ଠାର ପୂରାପୂରି ତଳଭାଗରେ ମାତ୍ର ଗୋଟିଏ ଲାଇନ୍ ଲେଖା ହୋଇଛି— ମଣିଷ ନାମକ ଜୀବଟା କି ହାସ୍ୟକର ! ବିଧାତାଙ୍କ ସୃଷ୍ଟିର ଭୁଲ !

ପରବର୍ତ୍ତୀ ପୃଷ୍ଠାରେ ଲେଖା ଅଛି— ଅଥବା ଜାତିଟା ନିଜର ଯଥାର୍ଥ ପରିଚୟ ଭୁଲି ମାରିଦେଇ ନିଜକୁ ହାସ୍ୟକର କରି ରହିଛି । ବିଧାତାଙ୍କ ସୃଷ୍ଟିରେ ଭୁଲ୍ ନ ଥିଲା ।

ଆଉ ଗୋଟିଏ ପୃଷ୍ଠାରେ ଲେଖା— ଆଜିର ମଧ୍ୟରାତ୍ରିର ଆକାଶଟା କି ଅପୂର୍ବ ! ଚନ୍ଦ୍ର ନ ଥିବା ଆକାଶ କି ଅସମ୍ଭବ ସୁନ୍ଦର !

ଏଇ ଜିନିଷ ଲେଖି ମଣିଷ ସମୟ ନଷ୍ଟ କରେ ? ପୁଣି ଯାକୁ ଅନ୍ୟକୁ ଦେଖାଇବା ଚଳିବନି ? ରାବିଶ୍ !

ପାରୁଲ୍ ଏବେ ମଧ୍ୟ ମଝିରେ ମଝିରେ ଡାଏରୀ ଲେଖେ ।

ଏବେ ମଧ୍ୟ ସେମିତି ଶ୍ରୀ ଆଉ ଛନ୍ଦର ଅଭାବ ! ଆଉ ଭଙ୍ଗିମାଟା ମଧ୍ୟ ସେମିତି ।

ଯେମିତି ମୁହାଁମୁହିଁ ବସି କାହାସଙ୍ଗେ କଥାବାର୍ତ୍ତା କରୁଛି ।

ଆଜି ଲେଖୁଥିଲା– ମନ ଭିତରେ ବେଶ୍ କିଛି ଅହଙ୍କାର ଜନ୍ମିଯାଇଥିଲା ତମମାନଙ୍କର ନୀତି ନିୟମ ସେହିସବୁ ବହୁବିଧ ଦାୟର ବୋଝ ମୁଁ ଆଉ ବୋହି ମରୁନି ।...... ଅହଙ୍କାର ଥିଲା...... କାତ ଛାଡ଼ି ଆଜି ବସିଅଛି ମୁହିଁ, ଧାଉଁନି କାହାରି ପଛରେ । କେଉଁଥିରେ ହେଲେ ମନ ନାହିଁ ମୋର, ନାହିଁ ସତେ କେଉଁଥିରେ । ସେ ଅହଙ୍କାରଟା ଭାଙ୍ଗିବାକୁ ବସିଲାଣି । ଅହଙ୍କାର ଥିଲା 'ଯାହାଙ୍କର ବେଡ଼ି ତାଙ୍କୁ ଭଙ୍ଗାବେଡ଼ିଗୁଡ଼ିକ ଫେରାଇଦେଇ ବହୁଦିନ ପରେ ମଥା ଟେକି ଉଠୁଛି ।'

କିନ୍ତୁ ଏବେ ଜାଣି ପାରୁଛି ସବୁ ବେଡ଼ିଗୁଡ଼ିକ ଭାଙ୍ଗିବା ସହଜ ନୁହେଁ । ସମାଜର ଦାୟ, ସଂସାରର ଦାୟ, ଚକ୍ଷୁଲଜ୍ଜାର ଦାୟ, ମମତାର ଦାୟ, ସବୁକିଛି ତ୍ୟାଗ କଲେ ମଧ୍ୟ, ଗୋଟିଏ ଦାୟକୁ କୌଣସି ପ୍ରକାରେ ତ୍ୟାଗ କରି ହେବନି । ସେଇଟା ହେଉଛି ମାନବିକତାର ଦାୟ ।...... ସେ ପିଲାଟି, ଯେ କି ଟେବୁଲ ଉପରେ ମଥା ନୁଆଁଇ ଏକମନରେ ସ୍କୁଲର ପାଠ ପଢୁଛି, ତା' ମନ ଭିତରେ କି ଝଡ଼ତୋଫାନ ଉଠୁଛି, ସେହି ଚିନ୍ତାରେ ମୋ ମନରେ ପ୍ରବଳ ତୋଫାନ ଉଠିଛି । ସ୍ଥିର ରହିବା ଅସମ୍ଭବ ହେଉଛି ।

ଆଚ୍ଛା, ଏଇଟା କ'ଣ ସ୍ନେହର ଦାୟ ?

ପିଲାଟାର ମାୟାରେ ପଡ଼ିଗଲିଣି ବୋଲି ?

ପାଗଳ ! ସେ ସବୁ କଥାକୁ ପାରୁଲ୍ ଖାତିର କରୁନି । ଆଜି ଯଦି ତା'ର ବାପ-ମା'ର ଶୁଭବୁଦ୍ଧି ହେବ, କାଲିକୁ ଆଉ ଭାବିବିନି– ଆଜି ଦିନଟା ମୋ ପାଖରେ ଥାଉ ପିଲାଟା ।...... ଯଦିଚ ମୋ ପ୍ରତିବେଶିନୀମାନେ ଏବେ ମହାଉତ୍ସାହରେ ବୁଲିବାକୁ ଆସିବା ଆରମ୍ଭ କରିଛନ୍ତି ଏବଂ ଏକଥାଟି କହି ଆନନ୍ଦର ସାଗରରେ ଭାସୁଛନ୍ତି, ଏଥର ଆମ ନାନୀ ଜବତ ହୋଇଛନ୍ତି ! ଏଇଲେ ରାଜା ଭରତଙ୍କ ଦଶା ହେଲା । ହରିଣଛୁଆଟି ପାଇଁ ସବୁ ଦରକାର ହେଉଛି । ସବୁ ଆଣିବାକୁ କରିବାକୁ ପଡୁଛି ।

ପୁଣି ଆଉଦଳେ ହିତୈଷୀ ମଧ୍ୟ ଅଛନ୍ତି, ଯେଉଁମାନେ ଦୁଃଖରେ କହନ୍ତି— ଦେଖୁଛନ୍ତି ତ ନାନୀ ଯୁଗର ଧର୍ମ ! ମା'-ବାପା ଏହି ଉଦ୍ଧତ ବୟସର ପୁଅଟାକୁ ବୁଢ଼ୀ ଢେଙ୍କେମାର ମୁଣ୍ଡରେ ଲଦିଦେଇ ନିଶ୍ଚିନ୍ତ ହୋଇ ବସିଛନ୍ତି । ଗୋଟାଏ ପିଲାର କ'ଣ କମ୍ ଝଞ୍ଜାଳ ? ଆହା, ତା' ପାଇଁ ପୁଣି ମାଛ-ମାଂସ ରାନ୍ଧିବାକୁ ପଡୁଛି । ତେବେ ଯା ମଧ୍ୟ କହୁଛି ନାନୀ, ଆପଣଙ୍କର ବେଶୀ ମାୟା ! କାହିଁକି, ଦୁଧ ଘିଅ ଛେନା ଲହୁଣିରେ କ'ଣ ପୁଷ୍ଟି ନାହିଁ ? ସେଥିପାଇଁ ଆପଣ ଏ ଟିକିଏନାକୁ ପିଲାଟା ପାଇଁ ଏତେକାଳ ପରେ ସେ ସବୁ ଛୁଇଁ ମରୁଛନ୍ତି ! ଆଉ ମାଛଟା ଯଦିବା କଲେ, ମାଂସ, ଡିମ୍ବ, ଏତେ କଥା କାହିଁକି ? ତା'ଛଡ଼ା ଯେତେ କରି ମରନ୍ତୁ, ଶେଷକୁ କ'ଣ ଏଇ ପୁଅ ଆପଣଙ୍କର ଆପଣାର ହେବ ? ହେବନି ନାନୀ, ଏ କଥା ମୁଁ ଆପଣଙ୍କ ପାଖରେ ଷ୍ଟାମ୍ପମରା କାଗଜରେ ଲେଖିଦେଇ ପାରିବି, କାମ ପଡ଼ିଲା ବେଳକୁ ଠିକ୍ ଆମ୍ବ-ଦୁଧ ମିଶିଯିବେ, ଟାକୁଆଟା ରହିବ ଖତଗଦାରେ । ନିଜେ ମରିବେ ମାୟାରେ ।

ଶୁଣି ଶୁଣି ଭାରି ହସ ଲାଗେ, ବୁଝିଲୁ ?

ମାୟା ନାମକ ବସ୍ତୁଟାର ସଂଜ୍ଞା କ'ଣ ତା ଭାବିବାକୁ ଚେଷ୍ଟା କରୁଛି । ଅଭିଧାନରେ ଅଛି— ବିଭ୍ରାନ୍ତି, ଅଳୀକ, ଯେଉଁଟା ଯାହା ନୁହଁ ତାକୁ ତାହା ଭାବିବା, ଦୃଷ୍ଟିଭ୍ରମ ! ପୁଣି ଯା ମଧ୍ୟ ଅଛି— ମମତା, ସ୍ନେହ । କୋଉଟା ତମର ଠିକ୍ ବୋଲି ମନେ ହେଉଛି ?

କାହାକୁ ଯେ ପାରୁଲ ସମ୍ବୋଧନ କରି ଲେଖୁଛି କିଏ ଜାଣିଛି । ଲେଖୁଥିଲା, ହଠାତ୍ ନାତିଟା ପଛୁ ପଛୁ ଉଠି ଆସିଲା । ବିନା ଭୂମିକାରେ କହିଲା— ବାପାଙ୍କୁ ଲେଖି ଦିଅ, ମତେ ବୋର୍ଡିଂରେ ରଖିଦେବାକୁ । ପାରୁଲ୍ ପ୍ରାୟ ଚମକି ପଡ଼ିଲା । ତେବେକେ ସମ୍ଭାଳି ଯାଇ କହିଲା— କାହିଁକି ହେ ମହାରାଜ, ହଠାତ୍ ଏ ଆଦେଶ କାହିଁକି ?

—ଏଠି ମତେ ଭଲ ଲାଗୁନି ।

—ସେଇଟା ତ ନ ଲାଗିବା କଥା । ହେଲେ ବୋର୍ଡିଂକୁ ଗଲେ ଭଲହେବ ବୋଲି ମନେ ହେଉଛି ?

—ଚେଷ୍ଟା କରିବି ।

—ହେଲେ ଏଇଠି ସେ ଚେଷ୍ଟାଟା କରି ଦେଖୁନୁ ।

—ନା ।...... ଉଦ୍ଧତ ଉତ୍ତର ଦେଲା ପିଲାଟା ।

—ତା'ହେଲେ ତ ବାପା ପାଖକୁ ଲେଖିବାକୁ ହିଁ ପଡ଼ିବ । ହେଲେ ତୁ ନିଜେ ଲେଖୁନୁ ?

ରାଜା, ପାରୁଲ୍ ଯାହାଙ୍କୁ 'ମହାରାଜ' କହେ, ସେହିପରି ଉଦ୍ଧତଭାବରେ କହିଲା– ନା, ତମେ ଲେଖିଦିଅ ।

– ବାଃ ! ତୋର ବାପା, ତୁ ଲେଖିବୁନି କାହିଁକି ?

– କହୁଛି ତ, ନା !

ପିଲାଟାର ସୁକୁମାର ଶିଶୁମୁହଁରେ ଗୋଟାଏ ଅନମନୀୟ କାଠିନ୍ୟ ରହିଥିଲା । ପାରୁଲ୍ ମଧ ଟିକେ କଠିନତା ଦେଖାଇଲା । କହିଲା– ହେଲେ ମୁଁ କାହିଁକି ଲେଖିବାକୁ ଯିବି କହ ? ତୋ'ର ଏଇଠି ଅସୁବିଧା ହେଉଛି, ତୁ ସେଇଟା ଜଣାଇବୁ ।

ରାଜା ଲାଲ ପଡ଼ିଥିବା ମୁହଁରେ କାଛକୁ ଚାହିଁ କହିଲା– ମୁଁ କ'ଣ କହୁଛି ମତେ ଏଠି ଅସୁବିଧା ହେଉଛି ବୋଲି ?

– ଏ ମା' ! ତା' ନ ହେଲେ ବୋର୍ଡ଼ିଂରେ ରଖିବାର କଥା ଉଠୁଛି କାହିଁକି ? ମୁଁ ତ ସାତ ଦିନ, ସାତ ରାତି ବସି ଭାବିଲେ ମଧ ଏକଥାଟା ମୁଣ୍ଡକୁ ଆଣିପାରି ନ ଥାନ୍ତି । ମୁଁ ହଠାତ୍ ଏମିତି କଥା ଲେଖିଲେ ବାପା ଭାବିବେ ମୁଁ ତତେ ତଡ଼ିବାକୁ ଚେଷ୍ଟା କରୁଛି ।

– କେବେହେଲେ ଭାବିବେନି । ବାପା ତମକୁ କ'ଣ ଚିହ୍ନି ନାହାନ୍ତି ?

– ଚିହ୍ନିଛନ୍ତି ସତରେ ?...... ପାରୁଲ୍ କୌତୁକରେ କହିଲା– ମୁଁ ତ ଜାଣିଥିଲି ମତେ କେହି ଚିହ୍ନନ୍ତି ନାହିଁ ।

ରାଜା କ୍ଷୁବ୍ଧ ଗଳାରେ କହିଲା– ତମ କଥାର ଅର୍ଥ ବୁଝିହେଉନି ।

ପାରୁଲ୍ ଏଥର ଶାନ୍ତ ଗଳାରେ କହିଲା– ଆଚ୍ଛା ରାଜା, ତତେ ଯଦି ମୁଁ ବାପାଙ୍କୁ ଲୁଚାଇ ତୋର ମା' ପାଖରେ ରଖି ଆସିବି ?

ରାଜା ହଠାତ୍ ଠିଆ ହୋଇପଡ଼ି କହିଲା– ତମେ ସମସ୍ତେ ମିଶି ମତେ ଏତେ ଜଳଉଛ କାହିଁକି ? ଖାଲି ବୋକାଙ୍କ ଭଳି କଥା କହୁଛ !

ନା, ରାଜା କାନ୍ଦି ପକାଇଲା ନାହିଁ, ଖାଲି ମୁହଁଟା ତା'ର ନିଆଁ ଭଳି ଲାଲ୍ ହୋଇଗଲା ।

ପାରୁଲ୍ କ'ଣ ଏ ସାନ ପିଲାଟାକୁ ଡରିବ ?

ହୁଏତ ଭିତରେ ଭିତରେ ସତରେ ଡର ମାଡ଼େ ପାରୁଲ୍‌କୁ । ତେବେକେ ସାବଧାନରେ ହାଲୁକା ଗଳାରେ କହେ, ବୁଢ଼ାମାନଙ୍କର ଦଶା ଏମିତି ହୁଏ ବୁଝିଲୁ ?

ସମସ୍ତଙ୍କୁ ଚ଼ଳେଇ ଚ଼ଳେଇ ମାରେ ସେ, ଆଉ ବୋକାଙ୍କ ପରି କଥା କହେ । ସେ କଥା ଥାଉ, ସତରେ କହୁଛି ଶୁଣ, ମୁଁ ଠିକ୍ କରିଛି ତୋ ବାପାକୁ ନ କହି ଚୁପ୍‌ଚାପ୍‌ରେ ତତେ ନେଇ—

କଥାଟା ଯେମିତି ଭାରି କୌତୁକର, ଏହିପରି କହିଲା ପାରୁଲ୍— ତତେ ନେଇ ସିଧା ତୋ' ମା' ପାଖକୁ ଚାଲିଯିବି ! ବାସ୍, ବାପା ଯେତେବେଳେ ଆସି କହିବ, କାହିଁ ମା', ରାଜା କାହିଁ ? ମୁଁ ସେତେବେଳେ ଯେମିତି ବୋକାଟିଏ ଭଳି କହିବି— କେଜାଣି ବାପା, ସେ ଯେ ସୁଟ୍‌କେସ୍ ଫୁଟ୍‌କେସ୍ ନେଇ ଦିନେ କୋଉଠାକୁ ଚାଲିଗଲା—

ପିଲାଙ୍କୁ ଭୁଲାଇବାର ଏପ୍ରକାର କଥା ଶୁଣି ରାଜା ଭୀଷଣ ରାଗିଗଲା, ଅସହିଷ୍ଣୁ ଗଳାରେ କହିଉଠିଲା,— ବେଶ୍ ତମକୁ ଲେଖିବାକୁ ହେବନି । ମୁଁ ନିଜେ ବାପାଙ୍କୁ ଲେଖିଦେଉଛି, ବୋର୍ଡ଼ିଂରେ ରଖାଇ ଦେଇ ଯିବେ ।

ପାରୁଲ୍ ଗମ୍ଭୀର ହେଲା, ଶାନ୍ତ ଗଳାରେ କହିଲା,— ଦେଖ ରାଜା, ତୋର ବାପର ମନଇଚ୍ଛା କାମ ହେତୁ ସମସ୍ତେ ମିଶି କାହିଁକି ଦୁଃଖ ପାଇବ ? ମା' ପାଇଁ ତୋର ମନ କେତେ ଖରାପ ହେଉଛି

କଥା ମଝିରେ ରାଜା କହିଲା— ନିଆଁ ହେଉଛି ।

—ଆରେ ବହୁତ ଖରାପ ହେଉଛିରେ ହେଉଛି । ଆଚ୍ଛା ବେଶ୍ ନ ହେଲା, ହେଲେ ଭଉଣୀଟି ପାଇଁ ? ଭଉଣୀ ତ ତତେ ଦେଖି ନ ପାରି—

—ତମେମାନେ ମତେ ଟିକିଏ ଶାନ୍ତି ଦେବ ?...... କହି ଘରଛାଡ଼ି ଚାଲିଗଲା ରାଜା ।

ସେ ଆଡ଼କୁ ଚାହିଁ ତୁନି ହୋଇ ବସିଲା ପାରୁଲ୍ । ଆଉ ନାତିକୁ ଡକାଡକି କରିବ, ସେ ସାହସ ହେଲାନି ।

ଟିକିଏ ପରେ ନିଜ ମନକୁ ଫେରି ଆସିଲା ପିଲାଟା, ଖଣ୍ଡେ କାଗଜରେ କେତୋଟି ଲାଇନ୍ ଲେଖି ପାରୁଲ୍ ଆଗରେ ପକାଇଦେଇ କହିଲା— ହେଇଟି ନିଅ । ତମ ଚିଠି ସଙ୍ଗେ ପଠାଇଦିଅ ।

ପାରୁଲ୍ ଅବାକ୍ ହୋଇ ଚାହିଁରହିଲା ସେଇ ଦୁଇଟା ଲାଇନ୍ ଆଡ଼କୁ ।

'ମତେ ବୋର୍ଡ଼ିଂରେ ଭର୍ତ୍ତି କରିଦେବ । ତମର ଯାହା ଖର୍ଚ୍ଚ ହେବ, ମୁଁ ବଡ଼ ହୋଇ ସବୁ ଶୁଝିଦେବି ।

ସେହି ରାତିରେ ପାରୁଲ୍ ତା'ର ସେ ଶ୍ରୀଛନ୍ଦହୀନ ଖାତାଟାରେ ଲେଖିରଖିଲା– ଜଣେ ଖାମଖିଆଲୀ ପୁରୁଷ ପରିଣାମ-ଚିନ୍ତାହୀନ ଖିଆଲ ବଶତଃ ଜଣେ ସ୍ତ୍ରୀଲୋକର ସ୍ୱାମୀ ସଂସାର ସନ୍ତାନ ସବୁ କାଢ଼ି ନେଇଛି, ଭାବିଥିଲି ଅନ୍ତତଃ ପିଲାଟାକୁ ତାକୁ ଫେରାଇ ଦେବି, ଦେଖୁଛି ସେ ଉପାୟ ନାହିଁ, ଆଉ ଫେରସ୍ତ ଦିଆଯାଇ ପାରିବନି–।

ହଁ, ପୁରୁଷଟାକୁ ହିଁ ଦୋଷ ଦେଲା ପାରୁଲ୍, ନିଜର ପୁଅ ହେଲେ ମଧ୍ୟ । ହୁଏତ ପୁରୁଷକୁ ହିଁ ବିଚକ୍ଷଣ ହେବାକୁ ପଡ଼ିବ ଏହି ସହଜାତ ଧାରଣାରେ ।

## ।। ୩୧ ।।

ମା'ଙ୍କ ଚିଠି ସବୁକାଳ ଗଭୀର ସ୍ନେହର ବସ୍ତୁ । ଯୋଉଦିନ ଆସେ, ସେଦିନ ଯେପରି ଶୋଭନର ଆଖିରେ ଆହ୍ଲାଦର ଆଲୁଅ ଜଳେ, ଆଉ ଛୋଟ ଚିଠିଟାକୁ ପଢ଼ିବାକୁ କେତେ ଯେ ସମୟ ଲାଗେ ତାକୁ !

ପାରୁଲ୍ ହୁଏତ ଜାଣେନି ଯେ ଏମିତି ଘଟଣା ଘଟେ । ରେଖା ଏକଥାକୁ ଥଟ୍ଟା ନ କରି ଛାଡୁ ନ ଥାଏ, କହୁଥାଏ– ପଢ଼ି ପଢ଼ି ତ ମୁଖସ୍ଥ ହୋଇଗଲା, ଆଉ କେତେଥର ପଢ଼ିବ ?

ଶୋଭନ ଅପ୍ରସ୍ତୁତ ଭାବରେ କହୁଥାଏ– ନା, ଗୋଟାଏ ଜାଗା ଠିକ୍ ପଢ଼ିହେଉନି, ଅକ୍ଷରଟା କେମିତି ଲାଗି ଲାଗି ଲେଖା ହୋଇଯାଇଛି !

ରେଖା ଥଟ୍ଟା କରେ– ଅକ୍ଷର ଖରାପ ହେବାର କୌଣସି ପ୍ରଶ୍ନ ନାହିଁ । ତମର ମା'ଙ୍କର ହାତଲେଖା ତ ଛାପା ଅକ୍ଷର ଭଳିଆ ।

ଶୋଭନ ଯେ କାହିଁକି ଅପ୍ରସ୍ତୁତ ହେଉଥିଲା ସେ କଥା ସେ ହିଁ ଜାଣିଛି ।

ଶୋଭନ ତ ଅନାୟାସରେ କହି ପାରିଥାନ୍ତା– ତମର ମା'ଙ୍କ ଚିଠିକୁ ମଧ୍ୟ ତମେ କମ୍ ଥର ପଢ଼ନି !

କିନ୍ତୁ ସେ ସହଜକାମଟା ପାରି ଉଠୁ ନ ଥିଲା ଶୋଭନ, ତରବର ହୋଇ ଚିଠିଟାକୁ ଟେକି ରଖି ଦେଉଥିଲା ।

ଅଥଚ ପାରି ଉଠିଥିଲେ ହୁଏତ ଜୀବନ ଏଭଳି ଜଟିଳତାର ରାସ୍ତାରେ ଯାଇ ପହଞ୍ଚି ନ ଥାନ୍ତା । ଯେତେ ତମେ ଭଦ୍ର ହୁଅ, ମାର୍ଜିତ ହୁଅ, ମଝିରେ ମଝିରେ ପ୍ରତିବାଦରେ ମୁଖର ହେବାଟାର ମଧ୍ୟ ଦରକାର ଅଛି ।

ଅପ୍ରତିବାଦ ହେଉଛି ଅନ୍ୟାୟ ଓ ଦୁଃସାହସର ଜନ୍ମଦାତା ।

ଏବେ ରେଖା ଏଠି ନାହିଁ, ମା'ଙ୍କ ଚିଠି ଶହେଥର ପଢ଼ିଲେ ମଧ୍ୟ କେହି ବ୍ୟଙ୍ଗ ହସ ହସିବେନି, ତେବେକେ ଥରଟିଏ ମାତ୍ର ପଢ଼ି ଚିଠିଟିକୁ ଟେବୁଲ ଉପରେ ପକାଇ ରଖି ପଥର ପରି କାହିଁକି ବସିଛ ଶୋଭନ ?

ମା' ତ କୌଣସି ତୀବ୍ର ତିରସ୍କାର କରି ନାହାନ୍ତି, ଚିଠି ଭିତରେ କୌଣସି ଧିକ୍କାର ବାକ୍ୟ ମଧ୍ୟ ପଠାଇ ନାହାନ୍ତି ? ତେବେକେ ସେହି ଚିଠିଟା ଜ୍ୱଳନ୍ତ ନିଆଁ ପରି କାହିଁକି ତାକୁ ଲାଗୁଛି ? ଖାଲି ସେ ଚିଠିଟା ପାଇଁ ? ନା ତା' ସହିତ ସେଇ ଟିକିଏନାକୁ କାଗଜର ଏକ ଲାଇନ ଲେଖା ଟିକକ ହିଁ ଅଗ୍ନିବାହୀ ?

ରାଜାକୁ ଭାବିବାକୁ ଚେଷ୍ଟା କରୁଛି ଶୋଭନ, ସେ ଲେଖାଟା ସହିତ ମିଳାଇ ପାରୁନି କୌଣସିମତେ । ଶୋଭନ ଏବେ ରାଜା ପାଇଁ ଯାହା କରିବ, ରାଜା ବଡ଼ ହୋଇ ସେଥିର ପାହି-ପଇସା ପର୍ଯ୍ୟନ୍ତ ଶୁଝିଦେବ, ଏବଠାରୁ ବାପକୁ ସେହି ପ୍ରତିଶ୍ରୁତି ଦେଇ ରଖିଲା ରାଜା !

ଅନେକଥର ଭାବିବାକୁ ଚେଷ୍ଟା କଲା, ଏଇଟା କିଛି ଗୁରୁତର କଥା ନୁହେଁ, ଏକାବେଳକେ ପିଲାଟାର ପିଲାଳିଆମି । ସେଠି ଯେ, ରହିବାକୁ ଭଲ ଲାଗୁନି, ଏକଥାଟା ହୁଏତ ଠିକ୍, ଅଥଚ ଏଠାକୁ ଆସିବାର ଉପାୟ ମଧ୍ୟ ଦେଖି ପାରୁନି, ସେଥିପାଇଁ ବୋର୍ଡ଼ିଂର କଥା ମୁଣ୍ଡକୁ ଆସିଛି ।

ଆଉ ସେ ପ୍ରତିଶ୍ରୁତିଟା, ଖାଲି ପ୍ରସ୍ତାବଟାକୁ ଦୃଢ଼ କରିବା ପାଇଁ ! କାଳେ ବାପା କହିବେ– ଏ ବାପା ! ବୋର୍ଡ଼ିଂ ? ସେ ତ ଗୁଡ଼ାଏ ଖର୍ଚ୍ଚ ହେବ ! ଯେମିତି ସେମିତି ଜାଗାରେ ତ ରଖାଇ ପାରିବିନି–

ସେଥିପାଇଁ ଆଗରୁ ସେ ପଥ ବନ୍ଦ କରିଦେବାର ଚାଲାକିଟା ଖେଳିଛି ।

କିନ୍ତୁ ଚେଷ୍ଟା କରି ଭାବିବା ଭାବନାଟାକୁ କ'ଣ ବିଶ୍ୱାସର ଭୂମିରେ ପ୍ରତିଷ୍ଠିତ କରାଯାଇ ପାରିବ ? ନା ସେଥିରୁ କିଛି ନିଶ୍ଚିନ୍ତତାର ଫଳ ମିଳିବ ?

ଭାବନାଟା ଅସ୍ପଷ୍ଟ ହୋଇଯାଉଛି, ଆଉ ଗୋଟିଏ ଅଜଣା ଭୟ ଯେମିତି ଗ୍ରାସ କରିବାକୁ ଆସୁଛି ଶୋଭନକୁ । ହଁ ଭୟ, ପ୍ରକୃତରେ ଭୟ ।

ଚାନ୍ଦର ଖଣ୍ଡଟିଏ ପରି ଟିକିଏନାକୁ ପୁଅ ରାଜା ହାତର ସେହି ଖଣ୍ଡିଏ ଲେଖା ଯେମିତି ଶୋଭନର ସର୍ବନାଶର ସୂଚନା ବହନ କରି ଆଣିଛି ।

ଅନେକସମୟ ପଥର ପରି ବସି ରହି ମା'ଙ୍କ ଚିଠିଟାକୁ ପୁଣି ଗୋଟାଇନେଲା ଶୋଭନ, ନେଇ ପଢ଼ିବାକୁ ଲାଗିଲା । ମା' ଲେଖିଛନ୍ତି–

'ଶୋଭନ, ପିଲାଟାର ଯନ୍ତ୍ରଣା ଆଉ ଆଖିରେ ଦେଖିପାରୁ ନ ଥିଲି । ସେଥିପାଇଁ ମୁଣ୍ଡରେ ଗୋଟାଏ ଦୁଷ୍ଟବୁଦ୍ଧି ଜୁଟିଥିଲା । ଭାବିଥିଲି, ମୋ କପାଳ ଯାହା ଥାଉ

ପଛକେ, ପରେ ତୁ ମତେ ଜେଲ୍‌ରେ ପକାଇଥାନ୍ତୁ କି ଫାଶୀ ଦେଇଥାନ୍ତୁ । ମା' ପାଖରୁ କାଢ଼ି ଆଣିବା ପିଲାଟାକୁ ଚୁପ୍‌ଚାପ୍ ଆଉଥରେ ତା' ମା' ପାଖକୁ ଯାଇ ଫେରସ୍ତ ଦେଇ ଆସିବି । ତୁ ତା'ର ସ୍ୱାମୀକୁ କାଢ଼ିନେଲୁ, ସଂସାରକୁ ଛଡ଼ାଇନେଲୁ, ସାମାଜିକ ପ୍ରତିଷ୍ଠା ପରିଚୟ କାଢ଼ିନେଲୁ, ପୁଣି ସନ୍ତାନଟାକୁ ମଧ୍ୟ ନେଲୁ ଭାବି ଛାତିକି ବଡ଼ ବାଧିଲା, କିନ୍ତୁ ଦେଖିଲି ଦୁଷ୍ଟ ବୁଦ୍ଧିଟା ବୃଥା ହୋଇଗଲା । ଆଉ ଉପାୟ ନାହିଁ । ଫେରସ୍ତ ଦେଇ ହେବନି ।

ତା'ବୋଲି ଭାବ୍‌ନା ଜିନିଷଟା ତୋ'ର ହୋଇ ରହିଗଲା ! ନା, ସେ ଆଶା କରନା ଶୋଭନ । ତା' ଜଗତରେ ଆଉ ମା' ମଧ୍ୟ ନାହିଁ କି ବାପା ମଧ୍ୟ ନାହିଁ । ଗୋଟାଏ ନିର୍ଦ୍ଦୋଷ ଶିଶୁକୁ ଖାଲି ତମମାନଙ୍କର ଦୁର୍ମତିର ଖିଆଲରେ ଏକସଙ୍ଗେ ପିତୃମାତୃହୀନ କରି ଛାଡ଼ିଦେଇଛ !

ଏ କଅଁଳ ପିଲାଟାକୁ ଏଇଲେ ସେ ଭୟଙ୍କର ଶୂନ୍ୟତାର, ଆଉ ଭୟଙ୍କର ଭାରି ଗୋଟାଏ ପଥରର ଭାର ନେଇ ଭାରସାମ୍ୟ ବଜାୟ ରଖୁ ରଖୁ ଚଳିବାକୁ ପଡ଼ିବ ।

ଭଗବାନଙ୍କ ହାତର ମାଡ଼ଟା ତେବେକେ ସହ୍ୟ ହେବ, ମଣିଷର ମାଡ଼ଟା ଅସହ୍ୟ !

କିମ୍ବା ହୁଏତ ସବୁଯାକ ଭଗବାନଙ୍କ ହାତରୁ ହିଁ ଆସେ, ମଣିଷ ନିମିତ୍ତ ମାତ୍ର ଭାଗୀ ହୁଏ ।

ବେଶୀ କଥା ଥାଉ, ପିଲାଟାକୁ ତୁ ଦେଖିଚାହିଁ ଗୋଟିଏ ବୋର୍ଡ଼ିଂରେ ରଖିଦେ, ଜବରଦସ୍ତି କରି ତୋ' ଇଚ୍ଛାଟାକୁ ତା' ଉପରେ ଚାପି ଦେବାକୁ ଚେଷ୍ଟା କରନା; ଶେଷକୁ ସମ୍ଭାଳି ପାରିବୁନି ।

ଏବେ କ'ଣ ମନେ ହେଉଛି ଜାଣିଛୁ, ତୋ'ର ସେ ପରଲୋକଗତ ପିତୃଦେବ ଅମଳବାବୁଙ୍କ ସହିତ ଅସଲରେ ତୋ'ର କିଛିହେଲେ ପ୍ରଭେଦ ନାହିଁ ।

ସେ ମଧ୍ୟ ଲୋକ ହିସାବରେ କିଛି ଖରାପ ଲୋକ ନ ଥିଲେ, ଭଦ୍ର ମାର୍ଜିତ, ସତ୍ । ଖାଲି ଭଦ୍ରଲୋକ ତାଙ୍କର ସ୍ତ୍ରୀ ପୁତ୍ରଙ୍କୁ ନିଜ ତିଆରି ନକ୍ସା ଛାଞ୍ଚରେ ଢଳେଇ କରିବାକୁ ଚାହିଁଥିଲେ, ସେମାନେ ଯେ ଅସଲରେ ମାଲମସଲା ନୁହଁନ୍ତି, ରକ୍ତମାଂସର ମଣିଷ – ଏଇଟା ଖିଆଲ କରିନାହାନ୍ତି, ତୁ ମଧ୍ୟ କଲୁନି । କରୁନାହୁଁ ।

ଏବେ ଆଉ ତୋର ମନେ ଅଛି କି ନାହିଁ ଜାଣିନି, କିନ୍ତୁ ମୋର ସେ ସ୍ମୃତିଶକ୍ତିଟା ଟିକିଏ ଅତ୍ୟନ୍ତ ବେଶୀ ରକମର, ସେଥିପାଇଁ ସବୁ ମନେଥାଏ, ମନେପଡ଼େ !

ସେଥିପାଇଁ ମନେ ପଡୁଛି, ରେଖା ଯେତେବେଳେ ତୋ ପାଖକୁ ଆସିଲା, ସେତେବେଳେ ରେଖା ଗଙ୍ଗାମାଟିରେ ଶିବ ଗଢ଼ି ପୂଜା କରୁଥିଲା । ତା'ର ବାପଘରେ

ସେ ସବୁର ପ୍ରଚଳନ ଥିଲା । ତା'ର ସେ ଶିବ ପୂଜା ନେଇ ଏମିତି ହସ-ଥଟ୍ଟା ଆରମ୍ଭ କରିଦେଲୁ ଯେ, ସେ ବିଚରା ଲାଜ ଲାଗିବାରୁ ପୂଜା ବନ୍ଦ କରିଦେଲା ।...... ତା'ପରେ ଘର କରିବାକୁ ଆସି ଶୋଇବା ଘର ଆଲମାରିର ଉପରକୁ ଲକ୍ଷ୍ମୀଙ୍କ ଫଟୋ ରଖି ଘଟ ବସାଇ ଦୁଇଓଳି ଖାଲି ଟିକିଏ ଧୂପ ଜାଳୁଥିଲା, ତା' ମଧ୍ୟ ତୋ'ର ହସଥଟ୍ଟାର ମାଡ଼ରେ ଦିନେ ଉଡ଼ିଗଲା ।

ସତ କଥା କହିବାକୁ ବାଧା ନାହିଁ, ମୁଁ ମଧ୍ୟ ସେ ସବୁ ଦେଖି ହସିଛି, କିନ୍ତୁ ସେଇଟା ମନେ ମନେ । ତୁ ମୁହଁ ଉପରେ ହସିଲୁ ।...... ତା'ପରେ କଳସୀ ଭିତରୁ ଦୈତ୍ୟ ବାହାରିଲା ।

ତୋ'ର ଯେତେ ପଦୋନ୍ନତି ହେବାକୁ ଲାଗିଲା, ସେ ସେତେ ନର୍ଭସ୍ ରହିଲା, କ୍ରମଶଃ ଗୁରୁମରା ବିଦ୍ୟାରେ 'ପି.ଏଚ୍‌ଡି.' ହୋଇଗଲା ତୋ'ର ସ୍ତ୍ରୀ । ତୁ ଆଉ ତାକୁ ତୋର ଧରାଛୁଆଁ ଭିତରେ ପାଇଲୁନି ।

ବର୍ତ୍ତମାନ ତାର ଯେଉଁ ରୂପ, ତାହା ତୋ' ଦ୍ୱାରା ସୃଷ୍ଟି ହୋଇଛି । ଏବେ ତୁ ହଠାତ୍ ଭାରତୀୟ ଭାବଧାରାରେ ଓଦା ହେବାକୁ ଆରମ୍ଭ କଲୁ, ସନାତନୀ ହେଲୁ । ଆଉ ସମୁଦ୍ରରେ ଯାଇ ପଡ଼ିଥିବା ନଦୀକୁ ପୁଣି ପାହାଡ଼ ଗୁହାକୁ ନେଇ ଆସିବାର ଜିଦ୍ ଧରିଲୁ । ଯାହା ହେବନି, ତାହା କରିବାକୁ ବସିଲେ ଏମିତି ହୁଏ ଶୋଭନ ! କଞ୍ଚା ମାଟିର ଛାଞ୍ଚରେ ପକାଇ ପୋଡ଼ି ଟାଣ କଲାପରେ ଆଉ କ'ଣ ତାକୁ ନୂଆ ଛାଞ୍ଚରେ ଢଳା ଯାଏ ? ଯାଏ ନାହିଁ, ଖାଲି ତୁ ଯାହା କରିଛୁ ସେଇୟା କରାଯାଇ ପାରିବ, ଭାଙ୍ଗି ଦେଇ ହେବ । କିଏ ଭିତରେ ଭାଙ୍ଗେ, କିଏ ବାହାରେ ଭାଙ୍ଗେ ।

ଆଶୀର୍ବାଦ ନେବୁ

— ମା'

ଶୋଭନ ତା'ର ସୁନ୍ଦର କ୍ୱାଟର୍ସର ବିରାଟ ଲନ୍‌ରେ ବସିଥିଲା, ବଗିଚାରେ ପକାଇ ବସିବାର ଉପଯୁକ୍ତ ସୁନ୍ଦର ସୌଖୀନ ଆସନରେ ।

ଶୋଭନ ପିନ୍ଧିଥିଲା ଦାମିକା ଟେରେଲିନ୍ ଟ୍ରାଉଜର୍, ହାଲୁକା ଫାଇନ୍ ନାଇଲନ୍‌ର ବୁଶ୍‌ସାର୍ଟ, ପାଦର ଚଟିରେ ସୁଦ୍ଧା ଆଭିଜାତ୍ୟର ଛାପ । ଶୋଭନର କ୍ୱାଟର୍ସ ଭିତରେ ପଶିଗଲେ ବି ଦେଖାଯିବ ଗୋଟାଘରଟା ସୁନ୍ଦର ସୌଖୀନ ଆଉ ସୁରୁଚିମଣ୍ଡିତ । ଐଶ୍ୱର୍ଯ୍ୟ ସଙ୍ଗେ ରୁଚିର ପରିଚୟ ମଧ୍ୟ ବହନ କରୁଛି ଶୋଭନର ଘର ।

ଶୋଭନର ଘର ? ସେଇଟା କ'ଣ ?

ସେ କ'ଣ ଏ ଘରଟା ? ଏଇ ଖଟ ଆଲ୍‌ମାରୀ, ସୋଫା ଡିଭାନ, ଫ୍ରିଜ୍, କୁକିଂ ରେଞ୍ଜ, ଡିନର-ସେଟ୍, ଡାଇନିଂ ଟେବୁଲ୍ ?...... ଘର ଅର୍ଥ ବୁକ୍‌କେସ୍ ଉପରେ ସଜାଯାଇଥିବା ପିତଳର ବୁଦ୍ଧମୂର୍ତ୍ତି (ପ୍ରତିଦିନ ଯେଉଁଟାକୁ ବ୍ରାସୋ ଘଷି ଚକ୍ ଚକ୍ କରି ରଖିବାକୁ ହେବ, କାନ୍ଥରେ ଟଙ୍ଗା ହୋଇଥିବା ନେପାଳୀ ଢାଲ, ବାରଣ୍ଡାରେ ଝୁଲା ହୋଇଥିବା ଅର୍କିଡ୍, ଝରକାରେ ବସାଇଥିବା କ୍ୟାକ୍‌ଟାସ୍‌ର ବୈଚିତ୍ର୍ୟ ?

ତାହେଲେ ଅବଶ୍ୟ କହିବାକୁ ହିଁ ପଡ଼ିବ ଶୋଭନର ଘର ଯେମିତି ସେମିତି ରହିଛି । କାରଣ ଶୋଭନର ଘରେ ଏକାଧିକ ସୁଦକ୍ଷ ଭୃତ୍ୟ ଅଛନ୍ତି, ଯାହାଙ୍କୁ ଦକ୍ଷତାର ଶିକ୍ଷା ଦେଇଛନ୍ତି ଏକଦାର ସୁଦକ୍ଷ ଗୃହିଣୀ ।

ଶୋଭନ ଯଦି ଏବେ ପୂର୍ବ ଅଭ୍ୟାସ ବଶତଃ ଗୋଟିଏ ପାର୍ଟି ଦେବ, ତା'ହେଲେ ସୁବ୍ୟବସ୍ଥାରେ ଟିକେ ହେଲେ ତ୍ରୁଟି ହେବନି ! ତା' ତତ୍ତ୍ୱେ ମଧ ଯଦି ଅତିଥିମାନେ ଭାବନ୍ତି, ଶ୍ମଶାନ ଭୂମିରେ ଆମେମାନେ କାହିଁକି ନିମନ୍ତ୍ରଣ ଖାଇବାକୁ ଆସିଲୁ— ତା'ହେଲେ କହିବାର କିଛି ନାହିଁ ।

ବସି ଥାଉ ଥାଉ ବୟ ଆସି ପଚାରିଲା— ସାହେବଙ୍କ ଚାହାଟାକୁ ଏଠାକୁ ଅଣାହେବ କି ନାହିଁ ।

ଅଫିସରୁ ଫେରି ଶୋଭନ ପୋଷାକ ବଦଳାଇନି, ଆସିଲାକ୍ଷଣି ଲେଟର୍‌ବକ୍ସର ଚାବି ଖୋଲିଛି, ସେ କଥା ସେ ଦେଖୁଛି ।

ସେମାନଙ୍କ ମହଲରେ ସାହେବ ଏବଂ ମେମ୍ ସାହେବଙ୍କୁ ନେଇ ଯେଉଁ-ସବୁ ଆଲୋଚନା ହୁଏ, ଭାଗ୍ୟକୁ ସାହେବଙ୍କ କାନ ପର୍ଯ୍ୟନ୍ତ ଆସେନି ।

ଶୋଭନ କହିଲା— ନା, ଭିତରକୁ ଯାଉଛି ।

ତା'ପରେ ଟିକିଏ ଛାଡ଼ି ଭିତରକୁ ଗଲା ।

ଶୋଭନ ପାଖକୁ ଗୋଟିଏ ଫୁଲଭଳି ଝିଅ ଆଉ ଦେବଦୂତ ପରି ପୁଅ ଧାଇଁ ଆସିଲେନି, କହିଲେନି— ବାପି ଆଜି ତମର ଏତେ ଡେରି ହେଲା କାହିଁକି ? କହି ଅନୁଯୋଗ କଲେ ନାହିଁ, ଖାଲି ଖାଲି ଯେପରି ସମସ୍ତ ପରିବେଶଟାହିଁ ମୌନ-ଗମ୍ଭୀର, ଗୋଟାଏ ଅଭିଯୋଗର ମୂର୍ତ୍ତିରେ ଚାହିଁ ବସିଛି ।

ଆଜି ପବନ ସୁଦ୍ଧା କ'ଣ ଅସହଯୋଗିତା କରିଛି ? ପର୍ଦ୍ଦାଗୁଡ଼ାକ ଉଡୁନି କାହିଁକି ? ଟେବୁଲ-କ୍ଲଥର୍ କୋଣଗୁଡ଼ାକ ମଧ ଉଡୁନି କାହିଁକି ? ସେଗୁଡ଼ାକ ଏଣେ ତେଣେ ହୋଇ ଉଡ଼ିଲେ ମଧ ଯେମିତି ମନେହୁଏ କେଉଁଠି କିଛି ସ୍ପନ୍ଦନ ଅଛି ପ୍ରାଣର ।

ଦୁଇଦିନ ଘର ଚାବି ବନ୍ଦ ହୋଇ ରହିଛି, ମଗନଲାଲ ଖୋଲେ ପୁଣି ଝଡ଼ାପୋଛା କରି ବନ୍ଦ କରି ରଖିଦିଏ । ଆଚ୍ଛା, ଘରଟା କ'ଣ ହଠାତ୍ ବନ୍ଦ ହୋଇଗଲା ! ରେଖା ଯେ ସବୁବେଳେ କହୁଥିଲା– ଆଉ ବଖରାଏ ଅଧିକ ଥିଲେ ଘରଟା ସତରେ ଆଇଡିଏଲ୍ ହୋଇଥାନ୍ତା !

ତା' ମାନେ ଜାଗା ଟିକିଏ ଅଣ୍ଟୁ ନ ଥିଲା । ଶୋଭନ ସେକଥା ପ୍ରତ୍ୟକ୍ଷ ଭାବରେ ଅନୁଭବ ନ କଲେ ମଧ୍ୟ, ସେମିତି ଟିକିଏ ଲାଗୁଥାଏ– ସତରେ, ସବୁ ବଖରା ଏକାବେଳେ ଭର୍ତ୍ତି ହୋଇଛି ।

ଜଣେ-ଦି'ଜଣ ମାତ୍ର ମଣିଷଙ୍କ ଅନୁପସ୍ଥିତି-ଉପସ୍ଥିତିରେ ଏତେ ବିରାଟ ପାର୍ଥକ୍ୟ ଘଟୁଛି !

ଶୋଭନ ତ ଯାହା ତାହା କିରାଣିଟିଏ ହୋଇନି ଯେ, ମନ ଲାଗୁନି ବୋଲି କିଛି ନ ଖାଇ ଶୋଇପଡ଼ିବ ? ଶୋଭନକୁ ଭୃତ୍ୟବର୍ଗଙ୍କ ପାଖରେ 'ସାହେବ'ଙ୍କ ସମ୍ମାନ ଅକ୍ଷୁଣ୍ଣ ରଖିବାକୁ ହେବ ।

ଚାହାପର୍ବ ଶେଷ କରି ଶୋଭନ ସାମନାର ଗୋଟାଏ ଘରର ଦୁଆର ଖୋଲିଲା, ପର୍ଦ୍ଦା ଆଡ଼େଇ ଠିଆହେଲା ଦ୍ୱାର ମୁହଁରେ । ସେଇଟା ସେ ଦୁଇ ଭାଇ-ଭଉଣୀଙ୍କର ଖେଳଘର ଥିଲା । ଦି'ଜଣଙ୍କର ହେଲେ ମଧ୍ୟ ଘରର ବାରଅଣା ଅବଶ୍ୟ 'ଜଣକର' । ତା'ର ଝୁଲୁଥିବା ଘୋଡ଼ା, ତା'ର ରେଳଗାଡ଼ି, ମଟରଗାଡ଼ି, ଉଡ଼ାଜାହାଜ, ତା'ର କୁକୁର, ଠେକୁଆ, ହାତୀ, ଚଢ଼େଇ, ଆଉ ବହୁବର୍ଣ୍ଣର ବହୁମାପର ବହୁ ବହୁ ବୈଚିତ୍ର୍ୟମୟ କଣ୍ଢେଇଙ୍କ ମେଳା ବସିଛି ।

ଆଚ୍ଛା, ଝିଅର ସେହି କଣ୍ଢେଇଗୁଡ଼ାକୁ ନେଇଯାଇନି କାହିଁକି ରେଖା ? ରେଖା କି ନିର୍ମମ ! ଶୋଭନ ତ ରାଜାର ଖେଳଣାଗୁଡ଼ାକ ଯେତେ ପାରିଛି, ତା'ସଙ୍ଗେ ନେଇ ଦେଇ ଆସିଛି ।

ଯଦିଚ ସେଗୁଡ଼ାକୁ ସେ ଛୁଇଁନି, ଗଙ୍ଗାତୀରର ସେହି ଘରଟିର ଗୋଟାଏ ବଖରାରେ ଭର୍ତ୍ତି ହୋଇ ରହିଛି । ତେବେକେ ତା' ଆଖି ଆଗରେ ତ ଅଛି !

ଆଉ ଏ କଣ୍ଢେଇଗୁଡ଼ାକ ?

ସେମାନଙ୍କର ପୁଣି ଆଖି ଅଛି ।

ବଡ଼ ବଡ଼ ବିସ୍ତାରିତ ଆଖି ସବୁ ।

ସେହି ଆଖିଗୁଡ଼ାକୁ ମେଲାକରି ଶୋଭନର ଆଖି ଆଗରେ ସେମାନେ ଠିଆ ହେଇଛନ୍ତି । କଣ୍ଢେଇମାନଙ୍କ ଆଖିରେ କି ଦୃଷ୍ଟି ଥାଏ ? ସେ ଦୃଷ୍ଟିରେ ବ୍ୟଞ୍ଜନା ଥାଏ ?ଭର୍ତ୍ସନା ଥାଏ ? ତୀବ୍ର ? କରୁଣ ?

ଶୋଭନର ମନେ ହେଲା, ରହିଛି ।

ଶୋଭନ ଯେପରି ତରବର ହୋଇ ସେ ତୀବ୍ରତା ଆଗରୁ ଘୁଞ୍ଚି ଆସିଲା ।

ଶୋଭନର କେଉଁଠି କ'ଣ ଗୋଟାଏ 'ଅସହ୍ୟ' ହେଉଥିଲା, ସେଥିପାଇଁ ଶୋଭନ ସେ କଣ୍ଢେଇର ମାଲିକକୁ ଚାଲିଯିବାକୁ ଦେଲା । ଅଥଚ ଶୋଭନ ଏଗୁଡ଼ାକୁ ସହି ଯାଉଛି ।

ସହି ଯାଉଛି, ଜଣେ ସ୍ତ୍ରୀଲୋକର ମନର ଭଲପାଇବାରେ ତିଳ ତିଳ କରି ଗଢ଼ା ଏ ଘରଟାକୁ, ସହିଯାଇ ରହିଛି ପ୍ରକାଣ୍ଡ ଡିନର-ଟେବୁଲ୍‌ଟାର ଗୋଟାଏ ପାଖକୁ ବସି ଏକୁଟିଆ ଖାଇବା, ବସିବା ଘରର ଗୋଟାଏ ଡିଭାନ୍‌ରେ ତୁଚ୍ଛ ଗୋଟାଏ ତକିଆ ନେଇ ଶୋଇ ରହିବା ।

ସହିଯାଉଛି, ସକାଳଓଳି ନିଦରୁ ଉଠି ଗୋଟାଏ ନିଃଶବ୍ଦ ପ୍ରେତପୁରୀ ମଝିରେ ଅଭ୍ୟସ୍ତ ନିୟମରେ ବୁଲାବୁଲି କରି ଅଫିସ୍‌କୁ ଯିବାକୁ ପ୍ରସ୍ତୁତ ହେବାଟା ।

କେତେଦିନ ହେଲା ଯେପରି ଗୋଟାଏ ଆଚ୍ଛନ୍ନତା ଭିତରେ ଥିଲା, ଠିକ୍ ଅନୁଭବ କରି ପାରୁ ନ ଥିଲା ସତରେ କ'ଣ ଘଟିଯାଇଛି । ଆଜି ମା'ଙ୍କ ଚିଠି ଯେପରି ପ୍ରବଳ ଝାଙ୍କୁଣୀଟାଏ ଦେଇ ଜଣାଇଦେଲା ଘଟନାର ସ୍ୱରୂପ କ'ଣ ।

## ॥ ୩୨ ॥

ହଠାତ୍ ବକୁଳକୁ ଯେ ଏମିତି ଗୋଟାଏ ପ୍ରସ୍ତାବର ମୁହାଁମୁହିଁ ହେବାକୁ ପଡ଼ିବ, ସେ କଥା କୋଉଦିନ କଳ୍ପନା କରି ନ ଥିଲା ।

ସେହି ଅକଳ୍ପିତ ଅବସ୍ଥାରେ ଭାସମାନ ନୌକାରେ ପାଦ ରଖି ବକୁଳ ତା'ର ପ୍ରାୟ ଅପରିଚିତ ଦଦେଇପୁଅ ଭାଇନାଙ୍କ ମୁହଁ ଆଡ଼କୁ ଚାହିଁ ରହିଲା ।

ଟିକିଏ ଆଗରୁ ବକୁଳ ଯେତେବେଳେ ସେମାନଙ୍କର 'ସାହିତ୍ୟ ଚକ୍ର'ର ପୁନର୍ମିଳନ ଅଧିବେଶନ ସାରି ଘରକୁ ଫେରୁଥିଲା, ସେତେବେଳେ ବଡ଼ ଭାଉଜଙ୍କ ଚାକରାଣୀ ଖବର ଦେଇ ଯାଇଥିଲା, ପିଉସୀ ମା', ଆପଣଙ୍କର ଦର୍ଜିପଡ଼ାର ନା କୋଉଠି ପରା କିଏ ଜ୍ଞାତି ଅଛନ୍ତି, ସେଠୁ ଆପଣଙ୍କର କିଏ ଭାଇନା ହେବେ ବୋଧହୁଏ, ଆପଣଙ୍କ ସହିତ ଦେଖା କରିବେ ବୋଲି ଅନେକ ସମୟ ହେଲା ବସିଛନ୍ତି । ଭାରି କ୍ଳାନ୍ତ ଲାଗୁଥିଲା, ପୁଣି ଏବେ କାହା ସହିତ କି କଥା କହିବାକୁ ପଡ଼ିବ, କେତେବେଳ କଥା ହେବାକୁ ପଡ଼ିବ କିଏ ଜାଣିଛି । ବକୁଳ ସଙ୍ଗେ କେବଳ ଦେଖା କରିବା ପାଇଁ ଯେତେବେଳେ ସେ ଏତେବେଳହେଲା ବସିଛନ୍ତି, ସେତେବେଳେ ଯେ ସହଜରେ ଛାଡ଼ିବେ ଏକଥା ମନେ ହେଉନି ।

ଆଉ ଏମିତି ମଧ୍ୟ ଲାଗୁନି, ବକୁଳର ଉପକାର ହୋଇପାରେ ବା ଲାଭ ହୋଇପାରେ, ଏଭଳି ବିଷୟ ନେଇ ଆସି ବକୁଳକୁ ସେହିଟିକକ ଉପହାର ଦେବାପାଇଁ ବସିଛନ୍ତି ।

ବାହାରକୁ ଯିବା ଲୁଗା ବଦଳାଇ ମୁହଁ ହାତ ଧୋଉ ଧୋଉ ଭାବିବାକୁ ଚେଷ୍ଟାକଲା ବକୁଳ, କ'ଣ ହୋଇପାରେ ? ସେପଟ ଘରର ସେ ସାନ ଜକେଇଙ୍କ ପୁଅ ପରି କୌଣସି ଅସୁବିଧାଜନକ ପ୍ରସ୍ତାବ ନେଇ ନାହାନ୍ତି ତ ? ତା'ହେଲେ ଯେ ହଇରାଣ ହେବେ ।

ସେ ପଟ ଘରର ସେ ସାନ ମଝିଆ ଭାଇନା, ଯାହାଙ୍କୁ ଅନ୍ୟ କେଉଁଠାରେ ଦେଖିଲେ ଚଟ୍‌କରି ଚିହ୍ନିବା ଅସୁବିଧା ହୋଇଥାନ୍ତା ବକୁଳକୁ, କାରଣ ସବୁଠାରୁ ଯେ ଅଧିକ ଆପଣାର ଲୋକ, ସେମାନଙ୍କ ସଙ୍ଗେ ସବୁଠାରୁ ଅଧିକ ଦୂରତ୍ୱ ଥାଏ ।

ଯିବା ଆସିବା ନାହିଁ, ପୁଅ ଝିଅଙ୍କ ବିଭାଘର ସମୟରେ ସ୍ତ୍ରୀଲୋକମାନଙ୍କର 'ପ୍ରୀତିଭୋଜନ' ସମ୍ବଳିତ କାର୍ଡ଼ ସହ ଯେଉଁ ନିମନ୍ତ୍ରଣ ପତ୍ରଟି ଆସି ପହଞ୍ଚେ, ତା'ରି ସୂତ୍ରରେ ହିଁ ଯାହା ଯେତିକି ଯିବା ଆସିବା ଅଛି ।

ତେବେକେ ବକୁଳର ସେ ଜକେଇ-ପୁଅ ଭାଇ ଆସି କହିଥିଲେ– ତତେ ଗୋଟାଏ କାମ କରିବାକୁ ପଡ଼ିବ ।

ସେଦିନ ମଧ୍ୟ ବକୁଳ ବୁଝିଥିଲା କାମଟା ଭାରି ସହଜ ନୁହେଁ, ହେଲେ ସେ ଭଦ୍ରଲୋକ ଆସି ଏଭଳି ବସି ରହି ନ ଥାନ୍ତେ ।

ନରମ ହୋଇ ବକୁଳ କହିଥିଲା– କ'ଣ କହିବେ କହନ୍ତୁ ।

ସେ ଭାରି ଅମାୟିକ ଗଳାରେ କହିଥିଲେ– ମତେ ପୁଣି ଆପଣ ଆଜ୍ଞା କ'ଣ କହୁଛୁ ? ମୁଁ କ'ଣ ପର ? ଜକେଇ ଅଲଗା ଘର ତ । ଜଣେ ଢେଢେମା'ଙ୍କର ନାତି-ନାତୁଣୀ ତ ଆମେ !

ବକୁଳର ସେତେବେଳେ ମନେ ପଡ଼ିଥିଲା– ଜଣେ ଢେଢେବାପା, ଜଣେ ଢେଢେମା'ଙ୍କ ବଂଶଧର–, ଏହି ପ୍ରସଙ୍ଗ କହି ଏକଦା ଏ ତାଙ୍କର ଜକେଇଙ୍କୁ ଯାହା ପାରନ୍ତି ତାହା, ଯାହା ଇଚ୍ଛା ତାହା କହି ଯାଇଥିଲେ ବକୁଳକୁ ବାହା ନ ଦେଇଥିବା ପାଇଁ । ଏଥିରେ କୁଆଡ଼େ ସେମାନଙ୍କ ବଂଶରେ ମଧ୍ୟ କାଳି ଲାଗିଛି, ସେମାନଙ୍କ ମୁହଁରେ ମଧ୍ୟ ଚୂନକାଳି ଲାଗିଯାଇଛି ।

ଅଥଚ ବକୁଳଠାରୁ ବୟସରେ ସେ ଯେ ବହୁତ ବଡ଼ ମଧ୍ୟ ନୁହେଁ ।

ସେ ଯାଉ, ସେ ତ ତମାଦି ହୋଇଗଲାଣି । ବକୁଳ ନମ୍ର ହୋଇ କହିଥିଲା– ଆଜ୍ଞା କ'ଣ କରିବାକୁ ହେବ ଶୁଣେ ?

ଅଥାତ୍ 'ତମେ ଆପଣ' ଦୁଇଟାଯାକକୁ ଆଡ଼େଇ ଦେଇଥିଲା ।

ଭାଇନା କହିଥିଲେ– ବିଶେଷ କିଛି ନାଇଁଲୋ, ଅତି ସାମାନ୍ୟ କାମଟିଏ । ମୋର ସାନ ପୁଅଟା ଗୋଟେ ଚାକିରି ପାଇଁ ଦରଖାସ୍ତ କରିଛି, ତତେ ତା' ପାଇଁ ଗୋଟାଏ କ୍ୟାରେକ୍ଟର୍ ସାର୍ଟିଫିକେଟ୍ ଲେଖି ଦେବାକୁ ହେବ ।

କଥାଟା ଶୁଣି ଅବଶ୍ୟ ବକୁଳର ମୁଣ୍ଡଟା ଘୂରିଯାଇଥିଲା । ପ୍ରାୟ ଥାଥାମାମା ହୋଇ ବକୁଳ କହିଥିଲା— ହେଲେ ମୁଁ ତ ତାକୁ ଜମା ଚିହ୍ନିନି, ହୁଏତ କେବେ ଦେଖିନି ମଧ୍ୟ ।

ବିଗଳିତ ହସ ହସି ଭାଇନା କହିଥିଲେ— ନିଶ୍ଚୟ ଦେଖିଥିବୁ, ବାହାଘର ଫାହାଘର କାମଦାମରେ, ତେବେ ସେ ହୁଏତ ସେତେବେଳେ ହାଫ୍‌ପ୍ୟାଣ୍ଟ ପିନ୍ଧି ପାଣି ଦେଇ ବୁଲୁଥିବ । ଆଉ ଚିହ୍ନିବା କଥା କହୁଛୁ ? ଆଲୋ ମତେ ତ ଚିହ୍ନିଛୁ ? ନା ଚିହ୍ନିନୁ ?

ସେହି ନିତାନ୍ତ ଅନ୍ତରଙ୍ଗତାରେ 'ତୁ' 'ତୁ' ଶବ୍ଦଟା କାନକୁ କଟୁ ଶୁଣାଯାଉଥିଲା, ସେଥିରେ ମନେ ମନେ ଲଜ୍ଜିତ ହେଉଥିଲା ବକୁଳ । ସତରେ ତ ନିହାତି ଆପଣାର ଲୋକ । ଏଙ୍କର ବାପା ଆଉ ମୋ ବାପା ଏକ ମାତୃଗର୍ଭଜାତ ।

ବକୁଳ କହିଥିଲା— ଆପଣଙ୍କୁ ଚିହ୍ନିନି, କ'ଣ ଯେ କହୁଛନ୍ତି ! କିନ୍ତୁ ଏବକାର ପିଲାମାନଙ୍କ ସମ୍ପର୍କରେ ଚଟ୍‌କିନା କିଛି କହିବା ମୁସ୍କିଲ୍ । କି ଧରଣର ବନ୍ଧୁମାନଙ୍କ ସହିତ ସେ ମିଶୁଛି, ହୁଏତ ଆପଣ ଆପଣଙ୍କ ନିଜ ପୁଅକୁ ନିଜେ ଭଲ କରି ଚିହ୍ନି ନ ଥିବେ ସାନ ମଝିଆ ଭାଇନା !

ଭାଇନା ଉଦ୍ଦୀପ୍ତ ହୋଇ କହି ଉଠିଥିଲେ— କିଏ ଆସି କ'ଣ ଲଗାଯୋଡ଼ା କରିଛି ବୋଧହୁଏ ? କିନ୍ତୁ ମୁଁ ତତେ ହେଇଟି କହି ଦେଉଛି ବକୁଳ, ବାହାରେ ସେ ବସେ ବୋଲି କ'ଣ ବାଜେ ପିଲା ! ନିଜ ଘରର ବାହାର ପିଣ୍ଡାରେ ବସେ, ପିଲାଦିନରୁ ଯାହାଙ୍କ ସହିତ ଚିହ୍ନାପରିଚୟ ଅଛି ସେହି ପିଲାମାନେ ଆସି ଗପସପ କରନ୍ତି, ସେତିକି । ସେମାନେ ଯିଏ ଯାହା ହୁଅନ୍ତୁ ପଛକେ, ମୋର ପ୍ରଭାଂଶୁ ସେ ପ୍ରକାର ନୁହେଁ ।

ଭାଇନା ତାଙ୍କ ପୁଅର ଜାତି ସମ୍ପର୍କରେ ନିର୍ଭୟରେ ଯେତେ ବଡ଼ ସାର୍ଟିଫିକେଟ୍ ଦେଲେ ମଧ୍ୟ, ତାଙ୍କୁ ଫେରାଇ ଦେବାକୁ ପଡ଼ିଥିଲା ବକୁଳକୁ ।

ସେ କହିଥିଲା— ଏକାବେଳେ ନ ଚିହ୍ନି ଏଭଳି ଲେଖିବାକୁ ମତେ ଅସୁବିଧା ଲାଗୁଛି ଭାଇନା !

ଭାଇନା ଅପମାନାହତ ହୋଇ ଚାଲି ଯାଇଥିଲେ ଏବଂ କହିଦେଇ ଯାଇଥିଲେ, ବାହାର ଦୁନିଆରେ ତୋର ଟିକିଏ ନାଆଁର ଖ୍ୟାତି ଅଛି ବୋଲି କହିବାକୁ ଆସିଥିଲି, ହେଲେ ସାନମଝିଆ ଖୁଡ଼ୀ ଆମମାନଙ୍କୁ ଯେମିତି ଅବଜ୍ଞାର ଆଖିରେ ଦେଖୁଥିଲେ ସେଥିରେ ଏ ଘରେ ପାଦଦେବା କଥା ନୁହେଁ ଆମମାନଙ୍କର !

ବକୁଳ ଅବାକ୍ ହୋଇ ଚାହିଁଥିଲା ସେ କ୍ରୋଧାରକ୍ତ ମୁହଁ ଆଡ଼କୁ, ଆଉ କ୍ଷଣକ ପୂର୍ବର ବିଗଳିତ-ହସ ମୁହଁଟା ସହିତ ମିଳାଇବାକୁ ଚେଷ୍ଟା କରୁଥିଲା ।

ଥାଉ, ସେ ଘଟଣାଟିତ ଘଟିଥିଲା ସେଘର ସହିତ । ପୁଣି କ'ଣ ? ସେଦିନ ସାନଭାଉଜ କହିଥିଲେ— ଦି' ଲାଇନ୍ ଲେଖିଦେଇଥିଲେ ହେଇଥାନ୍ତା । ଆପଣା ଲୋକଙ୍କ ପୁଅଟାର ଟିକିଏ ଉପକାର ହୋଇଥାନ୍ତା । ଯାହାହେଲେ ଉପକାରରେ ତ ଲାଗିଥାନ୍ତା ।

ସାନଭାଇନା କହିଥିଲେ— ନା, ନା, ସେ ଠିକ୍ କରିଛି । ଜଣା ନାହିଁ, କିଛି ନାହିଁ, କ୍ୟାରେକ୍ଟର ସାର୍ଟିଫିକେଟ୍ ଦେଇଦେଲେ ହେଲା ? ଏବର ପିଲାମାନେ ତ ଦୁଧ-ଦାନ୍ତ ଭାଙ୍ଗିବା ଆଗରୁ ପଲିଟିକ୍ସ୍ କରୁଛନ୍ତି । କିଏ କୋଉ ପାର୍ଟିରେ ପଶି ରହିଛନ୍ତି କିଏ ଜାଣିଛି !

—ବନ୍ଧୁବିଚ୍ଛେଦ ହେଲା ଏଇୟା ଆଉ କ'ଣ !

କହିଥିଲେ— ସାନଭାଉଜ ।

ସେତେବେଳେ ଶମ୍ପା ଥିଲା ।

ସେତେବେଳେ ବିଚ୍ଛେଦ ଶବ୍ଦଟାର ଅର୍ଥ ଜାଣି ନ ଥିଲେ ସାନଭାଉଜ । ସେଇଟାକୁ ହିଁ ବିଚ୍ଛେଦ କହିଥିଲେ ।

ସେ ଯାହାହେଉ, ଆଜି ପୁଣି ଦଦେଇଙ୍କ ପୁଅ କୋଉ ପରିସ୍ଥିତିରେ ପକାଇବେ କିଏ ଜାଣିଛି !

ତେବେକେ ଏଇଟା ଭାବି ନ ଥିଲା । ଏ କଥାଟା ଅଭାବନୀୟ ।

ସେ ଘରର ବଡ଼ଭାଇନା ପ୍ରସ୍ତାବ ନେଇ ଆସିଛନ୍ତି । ତମର ତ ଅନେକ ଜଣାଶୁଣା, ଶୁଣିଲି । 'ମ୍ୟାଜିସିଏନ୍ ଅଧିକାରୀ' ତମକୁ ଭାରି ଖାତିର କରନ୍ତି, ମୋର ଏ ନାତୁଣୀଟା ପାଇଁ ସେମାନଙ୍କ ଦଳରେ ପଶିବା ପାଇଁ ଯଦି ଟିକିଏ ଚାନ୍ସ୍ କରାଇ ଦେଇ ପାରନ୍ତୁ !

ବକୁଳକୁ ଲାଗିଥିଲା ସେ ମାତୃଭାଷାର କଥା ଶୁଣିନି, ଯେଉଁ ଭାଷା ଶୁଣୁଛି ତା ବକୁଳର ଅବୋଧ । ବକୁଳ ଅବାକ୍ ହୋଇ ପଚାରିଲା— କୋଉ ଦଳରେ ?

—ଆହା ସେ ମ୍ୟାଜିକ୍ ଦଳରେ !

ବକୁଳ ପ୍ରାୟ ଅଭିଭୂତ ହୋଇ କହିପକାଇଲା— ସେ କ'ଣ ମ୍ୟାଜିକ୍ ଜାଣିଛି ?

—ଆହା, ମ୍ୟାଜିକ୍ ନ ଜାଣୁ, ମ୍ୟାଜିକ୍ ଦଳରେ ଅନେକ ଝିଅଫିଅ ନିଅନ୍ତି ତ ସୁନ୍ଦରୀ ସୁନ୍ଦରୀ ଝିଅମାନଙ୍କର ଚାନ୍ସ୍ ଅଛି । ହେଇଟି ବେବୀର ଗୋଟାଏ ଫଟୋ ସାଙ୍ଗରେ ଆଣିଛି, ଏଇଟାକୁ ତୁ ଦେଖାଇବୁ ।

ବଡ଼ଭାଇନା ପକେଟ୍‌ରୁ ଗୋଟିଏ ଲଫାଫା ବାହାର କରି ସେଥିରୁ ସନ୍ତର୍ପଣରେ ଫଟୋଟିଏ ବାହାର କରି ଟେବୁଲ ଉପରେ ରଖିଲେ ।

ବକୁଳ ହାତ ବଢ଼ାଇ ଉଠାଇ ଆଣିଲା । ଚାହିଁ ରହିଲା ଫଟୋଟା ଆଡ଼କୁ ।

ତା'ର ନାନୀ ଚମ୍ପା ଭଳି ଅନେକଟା ଦେଖିବାକୁ ସେ । ବଂଶର ଗୋଟାଏ ଗଢ଼ଣ ଅଛି, ପାଖରେ ଅବା ଦୂରରେ କେଉଁଠି କେଉଁଠି ସେ କଥା ଧରା ପଡ଼େ ।

ଝିଅଟା ଯେମିତି ବଡ଼ ବଡ଼ ଆଖିରେ ଚାହିଁ ରହିଛି, ଫଟୋଟା ଉଠାହୋଇଛି ବଡ଼ ସୁନ୍ଦର ।

ବକୁଳ କ'ଣ କହିବ ଭାବି ନ ପାରି ଗୋଟାଏ ଅବାନ୍ତର କଥା କହିପକାଇଲା– ଫଟୋଟା କେଉଁଠି ଉଠା ହୋଇଛି ?

–ଭାରତ ଷ୍ଟୁଡିଓରୁ । କାହିଁକି, ଭଲ ହୋଇନି ?

–ଭଲ ହୋଇଛି ବୋଲି ତ କହୁଛି ।

–କହିଲେ ତୁ କ'ଣ ଭାବିବୁ ଜାଣିନି ବକୁଳ, ଦେଖିବାକୁ ଆହୁରି ବେଶୀ ସୁନ୍ଦର । ଏ ଫଟୋ ଯଦି ତୁ ଥରଟେ ଦେଖାଇଦେବୁ ନା ଝାମ୍ପିନେବେ । ତା'ଛଡ଼ା ଅନ୍ୟ କ୍ୱାଲିଫିକେଶନ୍ ଅଛି । ସେଥର 'ସାଇକେଲ୍‌ରେ ବଙ୍ଗ ବିଜୟ' କରି ଆସିଲା ଜାଣିଛୁ ବୋଧହୁଏ । ଏମାନଙ୍କ ଦଳରେ ଆହୁରି ପାଞ୍ଚଟା ପୁଅ ଥିଲେ, ଝିଅ ମୋର ସେକେଣ୍ଡ ହୋଇଥିଲା । ତା'ହେଲେ ଏଇଥିରୁ ଜାଣିଥିବୁ ।

ବକୁଳ ଜାଣୁଥାଏ । ଜାଣୁ ଜାଣୁ ଝାଳରେ ବୁଡ଼ିଯାଏ । ତା'ପରେ ଆସ୍ତେ କହେ– ହେଲେ ଉତ୍ତେଜିତ ହୋଇ କହିଲେ– ଖାଲି ଖାଲିରେ ତ ଆଉ ବାହାଘର ହୁଏନି ବକୁଳ ! ମୋ ଅବସ୍ଥା ତୁ ନ ଜାଣିଲେ ମଧ୍ୟ ତୋ ଭାଇମାନେ ଜାଣିଛନ୍ତି । ତା' ବାପ ତ ସବୁକାଳେ କିଛି ରୋଜଗାର କରୁ ନ ଥିଲା । ତାସ୍ ପଶା ଖେଳେ, ପାନ ଖାଏ, ଘୂରି ବୁଲେ, ଆଉ ରୋଜଗାର କଥା କହିଲାକ୍ଷଣି କହିବ– ମୋର ହାର୍ଟ ଖରାପ, ଛାତିଟା କ'ଣ ହୋଇଯାଉଛି !

ତା'ହେଲେ ? ଘରେ ଯାହା ଅଛି ଗୋଟିଆ ପୋଟିଆ କରି ଏବେ ନ ହେଲା ବିଭା ଦେଲି, ସେଥିରେ ମୋର କ'ଣ ଲାଭ ହେଲା ? ସେ ମହାରାଣୀ ପାଟରାଣୀ ହୋଇ ବସିଲେ, ମୋ ଦଶା ଯାହା ହାଡ଼ି ଭଳି ଥିଲା ଆହୁରି ବେଶୀ ଖରାପ ହୋଇଗଲା । ନା, ନା ବକୁଳ, ଏ କାମଟା ତତେ କରିଦେବାକୁ ପଡ଼ିବ ନିଶ୍ଚେ, ବହୁତ ଆଶା ନେଇ ଆସିଛି । ସେମାନେ କୁଆଡ଼େ ଭଲ ଦରମା ଦିଅନ୍ତି ।

ବକୁଳ ଧୀରେ କହିଲା– ତା'ହେଲେ ମଧ୍ୟ ଶୁଣିବାକୁ ତ ଖରାପ ଲାଗିବ । ଅନ୍ୟ କେଉଁଠି ଯଦି କେଉଁ କାମରେ–

ବଡ଼ଭାଉଜ ଆହୁରି ଅଧିକ ଉତ୍ତେଜିତ ହୋଇ କହିଲେ– ଅନ୍ୟ କେଉଁଠି ତାକୁ କି କାମ ମିଳିବ କହ ? ସ୍କୁଲ-ଫାଇନେଲ୍‌ଟା ମଧ୍ୟ ତ ପାସ୍ କରିନି । ଖାଲି ଏଇଟା ସେଇଟାରେ ମନ ଦେଉଛି । ଆଉ ଶୁଣିବାକୁ ଖରାପ ଲାଗିବା

କଥା କହୁଛୁ ? ସେ ସବୁ କଥା ଆଜିକାଲି ଅଛି ନା କ'ଣ ? ନାଇଁ, ଯିଏ ଯାହା ସୁବିଧା ବୁଝିବ, ସେଇୟା ସେ କରିବ, ବାସ୍ । ସମସ୍ତେ ଧିକ୍କାର ଦେଇ ପାରନ୍ତି, କିନ୍ତୁ କେହି ଭିକ ଦେଇ ପାରିବେନି । ମୋର ଜଣେ ସାଙ୍ଗ ମଧ ସେଦିନ ଏକଥା କହିଲା । କହିଲା— ଦେଖ ଭାଇ, ମୁଁ ଠିକ୍ କରିଛି ଝିଅମାନଙ୍କୁ ବିଭା କରିବାର ଚେଷ୍ଟା ଆଉ କରିବିନି । ତା'ର ବୁଢ଼ା ବୟସର ସଂସାର, ଏବେ ମଧ ଘରେ ଅଭିଆଡ଼ୀ ଝିଅ ଅଛି । ସେଥିପାଇଁ କହିଲା— ବିଭା ଦେବା ଚେଷ୍ଟାଫେଷ୍ଟା କରୁନି । ସାରାଜୀବନ ଧରି ଦାନ୍ତରେ ଦଉଡ଼ି ଧରି ଯୋଉ ଟିକକ ସଂସ୍ଥାନ କରିଛି, ତା' କ'ଣ ସେ ଝିଅ ତିନିଟାର ପାଦରେ ଢାଳିବାକୁ ?...... ନା ସେ ସବୁ ଭିତରେ ମୁଁ ନାହିଁ । ବରଂ ଝିଅମାନଙ୍କୁ କହିଲି— ଏତେକାଳ ଯୋଉ ବାପର ପଇସାରେ ଖାଇଲ, ପିନ୍ଧିଲ, ଲେଖାପଢ଼ା ଶିଖିଲ, ଏଥର ସେ ବୁଢ଼ା ବାପକୁ ତା ଶୁଝ ।

"ଯାହା ହେଉ ବଡ଼ ଝିଅ ଦୁଇଜଣ କ'ଣ ହେଲେ କାମ କରୁଛନ୍ତି, ସାନଝିଅଟା ଅବୁଝାମଣା, କହୁଛି ସେସବୁ ମତେ ଭଲ ଲାଗୁନି । ମୁଁ କହୁଛି ତେବେ କ'ଣ ଭଲ ଲାଗୁଛି ତତେ ? ବାପର ମୁଣ୍ଡରେ ପଣସ ଛଡ଼େଇବାକୁ ? ଯେତେବେଳେ ବାହାରୁ ଟଙ୍କା ରୋଜଗାର କରି ଆଣିବାର କ୍ଷମତା ଅଛି, ସେତେବେଳେ ଘରର ଟଙ୍କା ଭଙ୍ଗେଇ ବାହାରକୁ ଯିବୁ କାହିଁକି ?"

ମୁଁ ମଧ ସେଇକଥା ଭାବୁଛି ବକୁଳ, ମୋର ଜ୍ଞାନଚକ୍ଷୁ ମୋ ସାଙ୍ଗ ଖୋଲିଦେଇଛି । ତୁ ଟିକିଏ ମୋ ନାତୁଣୀ ପାଇଁ ଚେଷ୍ଟା କରିବୁ । କହିବୁ ଭାରି ଚଲାକ-ଚତୁର ଝିଅ, ଯାହା ଶିଖେଇବ, ସେଇୟା ଚଟ୍‌ପଟ୍ କରି ଶିଖିଦେବ ।

ବକୁଳ ହତାଶ ଭାବରେ କହିଲା— ହେଲେ ମୋର ତ ଏମିତି ଜଣାଶୁଣା କେହି ନାହାନ୍ତି ।

—ଏଇଟା ତୋର ଆଡ଼େଇଦେବା କଥା ବକୁଳ ! ମୁଁ କ'ଣ ଆଉ ଭିତରର ଖବର ନନେଇ ଆସିଛି ? ତୁ ଥରେ କହିଦେଲେ ହେଇଯିବ ।

ହୁଏତ ହେବ ।...... କିନ୍ତୁ ବକୁଳ ଏକଥାଟା କହିବ କେମିତି ?

ଅନେକ ସମୟ ଅନୁରୋଧ ଉପରୋଧ କଲା ପରେ ବଡ଼ ଭାଇନା ବିରକ୍ତ ହୋଇ ଉଠି ପଡ଼ି କହିଲେ— ତୋ'ର ଲେଖା ବହିଯାକ ଅବଶ୍ୟ ପଢ଼ିନି, ହେଲେ ଘରେ ସମସ୍ତେ କହନ୍ତି ଶୁଣିଛି । ମୋ ବୋହୂ ମଧ କହେ— ତୁ କୁଆଡ଼େ ଭାରି ସଂସ୍କାର-ମୁକ୍ତ । ଏ ଗୋଟାଏ ତୁଚ୍ଛ କଥାରେ କୁସଂସ୍କାର ଦିଗରୁ ତୁ ଆମର ବୁଢ଼ୀ ମା' ମୁକ୍ତକେଶୀ ଦେବୀଙ୍କ ଉପରକୁ ଉଠିଗଲୁ ! ଜୀବିକା ପାଇଁ ମଣିଷକୁ କେତେ କ'ଣ କରିବାକୁ ପଡ଼େ, 'ପସନ୍ଦ' ନୁହେଁ ବୋଲି କ'ଣ ଆଉ ବସି ରହିଲେ ଚଳିବ ? ସେଥିପାଇଁ ଆତ୍ମୀୟମାନଙ୍କର ଟିକିଏ ଉପକାର କରିବୁନି ?

ଯାଉ, ସେ ତ କହିଛି, ସେ ନିଜେ ଯାଇ ଅଧିକାରୀ ସାଙ୍ଗରେ ଦେଖା କରି ଚେଷ୍ଟା କରିବ । ତୋ' ନିଜର ଝିଆରୀଟା ତ ଗୋଟାଏ କାରଖାନାର ମଜୁରିଆ ସାଙ୍ଗରେ ବାହାରିଗଲା, ସେଥିରେ ଆଉ ତୋ ମୁହଁ ତଳକୁ ହେଲାନି ?

ବଡ଼ଭାଇନା ଚାଲିଗଲେ ।

ବକୁଳ ବସି ରହିଲା ।

ଭାବିବାକୁ ଲାଗିଲା ମଣିଷ ମରିଗଲେ ମଧ୍ୟ କ'ଣ ସତରେ ତା'ର ଅସ୍ତିତ୍ୱ ଥାଏ ? ମୁକ୍ତକେଶୀ ନାଆଁର ସେ ମହିଳା ଜଣକ କ'ଣ କେଉଁଠି ବସି ତାଙ୍କ ବଂଶର ଏ ପ୍ରଗତିକୁ ଚାହିଁ ଦେଖୁଛନ୍ତି ?

ବକୁଳ କ'ଣ ତା'ହେଲେ ବହୁତ ସଂସ୍କାରାଚ୍ଛନ୍ନ ?

ତା'ହେଲେ ବକୁଳର ଲେଖା ପଢ଼ିଲେ ସମସ୍ତେ ତାକୁ ଏକାବେଳେ ସଂସ୍କାରମୁକ୍ତ ବୋଲି ଭାବନ୍ତି କାହିଁକି ?

ବକୁଳ କ'ଣ ଭେଜାଲ ?

ଯାହା ଭାବେ ତାହା ଲେଖେନି ? ଅଥବା ଯାହା ଲେଖେ ତା' ଭାବେନି ?

ନା ବକୁଳର ହିସାବରେ ପ୍ରଗତି ଶବ୍ଦଟାର ଅନ୍ୟ ଅର୍ଥ ଅଛି ? 'ସଂସ୍କାର' ଶବ୍ଦଟାର ଅଛି ଅନ୍ୟ ବ୍ୟାଖ୍ୟା ?

ବକୁଳ ଅବାକ୍ ହୋଇ ଭାବିଲା, ଏତେ ସହଜରେ ଚିରକାଳୀନ ମୂଲ୍ୟବୋଧଗୁଡ଼ିକ ଏଭଳି ଝରିପଡୁଛି କିପରି ? ଏକଦା ଯେଉଁମାନେ ବଂଶମର୍ଯ୍ୟାଦା, କୁଳମର୍ଯ୍ୟାଦା, ପାରିବାରିକ ନିୟମ ଇତ୍ୟାଦି ଶବ୍ଦଗୁଡ଼ିକର ପାଦରେ ଜୀବନର ଅନେକ ଆଶା-ଆକାଂକ୍ଷା, ଆରାମ-ବିଶ୍ରାମ ବିସର୍ଜନ ଦେଇଥିଲେ, ସେମାନେ ହିଁ କିପରି ସେଗୁଡ଼ିକୁ ଭାଙ୍ଗି ସେଗୁଡ଼ିକର ଭଙ୍ଗା ଖଣ୍ଡମାନଙ୍କୁ କୁଦିଦେଇ ଚାଲି ଯାଉଛନ୍ତି ?

ତେବେକେ ବକୁଳ ବାରମ୍ବାର ସେହି 'ମୁକ୍ତକେଶୀ ଦେବୀ' ଶବ୍ଦଟାର ଆଖପାଖରେ ଘୂରିବାକୁ ଲାଗିଲା ।

ଏକଦାର ପ୍ରତାପ କେଉଁଠାରେ ବିଲୀନ ହୋଇଯାଏ, ସମ୍ରାଟର ରାଜଦଣ୍ଡ ଶିଶୁର ଖେଳଣା ହୋଇ ଧୂଳିରେ ଗଡ଼େ । ଅହରହ ପରିବର୍ତ୍ତିତ ହୁଏ ଜୀବନର ବ୍ୟାଖ୍ୟା, ସତ୍ୟ ଅବିରତ ବଦଳାଇଦିଏ ତା'ର ଖୋଳପାଟାକୁ । ଅଥଚ ତା' ଭିତରେ ହିଁ ମଣିଷ ଦେଖେ 'ଅମରତ୍ୱ'ର ସ୍ୱପ୍ନ ! 'ଚିରନ୍ତନ' ଶବ୍ଦଟାକୁ ଅଭିଧାନରୁ ପୋଛିଦିଏ ନାହିଁ ।

'ସୁବିଧା'କୁ କହେ 'ସଂସାରମୁକ୍ତି', ସ୍ୱାର୍ଥକୁ କହେ 'ସଭ୍ୟତା' ।

ଆମେମାନେ 'ଅଚଳାୟତନ' ଭାଙ୍ଗିବାକୁ ଚାହିଁଥିଲୁ, କିନ୍ତୁ ଆମେମାନେ ହାତୁଡ଼ି, ଶାବଳ, ଗଇଁତି ପ୍ରକୃତ ରୂପରେ ବ୍ୟବହାର କରିବାକୁ ଶିଖି ନ ଥିଲୁ, ସେଥି ପାଇଁ ଆମେମାନେ ଆମର ସବୁକିଛିକୁ ଭାଙ୍ଗି ଦେଇ ବସିଛେ ।

ଆଜିକାର ଯୁଗ ସେହି ଗଇଁତି ଶାବଳ ହାତରେ ଧରି ଅନେକ ବଡ଼ ବଡ଼ କଥା କହୁଛି, ଆଉ ଯଥେଷ୍ଟ ଆଘାତ ବସାଉଛି । କଥାଗୁଡ଼ାକ ଉଡ଼ିଯାଉଛି ପବନରେ ଆଉ ଆଘାତରେ ଆଘାତରେ ପାଦତଳ ମାଟି ବା ଭୂଇଁରେ ସୁଦ୍ଧା ଫଟା ଦାଗ ଉକୁଟିଉଠୁଛି ।

କିନ୍ତୁ ଏ ସବୁ କଥା ହାସ୍ୟକର ।

ମଞ୍ଚରେ ଠିଆହୋଇ କହିବାକୁ ପଡ଼ିବ '— ଯାହା ହେଉଛି ତାହା ଠିକ୍ । ଏହି ପ୍ରଗତି, ଏହି ସଭ୍ୟତା ।'

କଲମ ଅଗରେ ଲେଖିବାକୁ ପଡ଼ିବ— ଯା କିଛି ନୁହେଁ, ଏ ଖାଲି ସୂଚନା, ଆହୁରି ଅଧିକ ଦରକାର । ଆହୁରି ଆଗେଇବାକୁ ପଡ଼ିବ, ଶେଷ ପର୍ଯ୍ୟନ୍ତ 'ଶେଷ'ରେ ଯାଇ ପହଞ୍ଚିବାକୁ ପଡ଼ିବ ।

କିନ୍ତୁ ସେହି 'ଶେଷ' କେଉଁଠି ?

'ଶେଷ ନାହିଁ ଯା'ର ଶେଷ କଥା କିଏ କହିବ ?'

## ॥ ୩୩ ॥

ଆମମାନଙ୍କର ମାତାମହୀ ଯାହାଙ୍କ ନାଁ ଥିଲା ସତ୍ୟବତୀ ଦେବୀ, ସେ କୁଆଡ଼େ ଦିନେ ଏହି ପ୍ରଶ୍ନ ନେଇ ଦୀର୍ଘଦିନର ବିବାହିତ ଜୀବନର ଘରକୁ ଛାଡ଼ିଦେଇ ପୃଥିବୀର ଆଲୁଅକୁ ବାହାରି ପଡ଼ିଥିଲେ '— ବିବାହଟା କାହିଁକି ଭାଙ୍ଗି ହେବନି ?'

କହିଥିଲେ— ଏ କଥାର ଉତ୍ତର ଖୋଜିବାକୁ ମୁଁ ବାହାରିଛି ।

ପାରୁଲ୍ ଆଉ ବକୁଳ ଦୁଇଜଣଯାକ ଯେପରି ଏକାସମୟରେ ଏକା କଥା ହିଁ ଭାବନ୍ତି । ଏଇଟା ଗୋଟାଏ ଆଶ୍ଚର୍ଯ୍ୟ !

ପାରୁଲ୍ ତା'ର ଖୁସି-ଖିଆଲର ଡାଏରୀରେ ଲେଖିଚାଲେ— କିନ୍ତୁ ସେ କ'ଣ ଆଜିକାଲିର ଏ ବିବାହ ? ଯେଉଁ ବିବାହ 'ଭଲପାଇବା'ର ପତାକା ଉଡ଼ାଇ ଲୋକଲୋଚନ- ସାମନାରେ ଜୟର ଗୌରବ ନେଇ ନିଜ ନିଜକୁ ମାଲ୍ୟାବନ୍ଧନରେ ବାନ୍ଧେ ?

ସତ୍ୟବତୀ ଦେବୀଙ୍କ ନ ବର୍ଷର ଝିଅ ସୁବର୍ଣ୍ଣଲତାକୁ କୁଆଡ଼େ ଲୁଚାଇ ନେଇ ଯାଇ ବାହା ଦିଆ ହୋଇଯାଇଥିଲା, ଆଉ ସେ ମହତ୍ କର୍ମର ନାୟିକା ଥିଲେ ସୁବର୍ଣ୍ଣଲତାର ପିତାମହୀ, ସତ୍ୟବତୀର ଶାଶୁ । ସତ୍ୟବତୀ କହିଥିଲେ– ଏ ବାହା ବାହା ନୁହେଁ– କଣ୍ଢେଇ ଖେଳ–

କିନ୍ତୁ ଆଜିକାଲିର ଏହି ସଭ୍ୟ ସମାଜର 'ଭଲପାଇବା'ର ବାହାଘର ? ଏହାର ମଧ୍ୟ କଣ୍ଢେଇ ଖେଳ ସଙ୍ଗେ ତଫାତ୍ କେଉଁଠି ? ଖେଳି ଖେଳି ପୁରୁଣା ହୋଇଗଲେ, ବୈଚିତ୍ର୍ୟ ହଜାଇଲେ, ପୁଣି ଆଉ ଗୋଟେ କଣ୍ଢେଇ ଧରି ଖେଳ ଆରମ୍ଭ ହେଉଛି, ଏଇୟା ତ !...... ଆଉ ଯଦି ନୂଆକରି ଆରମ୍ଭ ନ କରିବ ମଧ୍ୟ, ଖେଳଟାକୁ ହିଁ ତ୍ୟାଗ କରିଦେବ । ଖେଳଟା ଭାଙ୍ଗିଲାକ୍ଷଣି କଣ୍ଢେଇଟାକୁ କଚାଡ଼ି ପକାଇଦେଲ ।

ଆମମାନଙ୍କର ବିଦ୍ରୋହିଣୀ ମାତାମହୀ କ'ଣ ଏଇୟା ଚାହିଁଥିଲେ ? ସେ କ'ଣ ଆଜି ଶୋଭନର ଏହି ମୁକ୍ତି ଦେଖି ଉଲ୍ଲସିତ ହୋଇଥାନ୍ତେ ?

କହିଥାନ୍ତେ– ଯେଉଁ ବାହାଘର ମିଥ୍ୟା, ଯେଉଁ ବାହାଘର ଅର୍ଥହୀନ, ତା'ରି ବୋଝ ବହି ଚଳିବା ମୂଢ଼ତା ମାତ୍ର ? ଶୋଭନ ଠିକ୍ କରିଛି ?

କିନ୍ତୁ ତା'ହେଲେ ପ୍ରକୃତ ବାହାଘର କେଉଁଟା ?

ଆଜି ଯାହା ସତ୍ୟ, ଆଗାମୀ କାଲି ତ ତା' ମିଥ୍ୟା ହୋଇ ଠିଆହୋଇ ପାରେ !......

ପାରୁଲ କଲମଟାକୁ ରଖି ଘର ଭିତରୁ ବାହାରି ଆସି ବାରଣ୍ଡାରେ ଠିଆ ହେଲା । ଗଙ୍ଗାତୀରର ବାରଣ୍ଡା । ସରିଆସୁଥିବା ଅପରାହ୍ନରେ ଗଙ୍ଗାର ସେହି ଅପୂର୍ବ ଶୋଭା, ପାଣିରେ ପବନର କମ୍ପନ, ସିରିସିରି ହୋଇ ବହି ଯାଉଛି । ଅଥଚ ଏଇ ଗତକାଲି କାଳବୈଶାଖୀର ଝଡ଼ରେ କେମିତି ଉଛୁଳୁଥିଲା !

ପ୍ରକୃତି ଶକ୍ତିମୟୀ, ପ୍ରକୃତି ଝଡ଼ ପରେ ପୁଣି ସ୍ଥିର ହେବାକୁ ଜାଣିଛି ।

ମଣିଷ କଦଳୀ-ଭଣ୍ଡାର ଖୋଳ ପରି ଭାସି ଯାଏ, ବୁଡ଼ି ତଳେଇ ଯାଏ ।

ରାଜା ବାଲିଗଲାଣି ।

ମା' ପାଖକୁ ବି ନୁହେଁ, ବାପ ପାଖକୁ ବି ନୁହେଁ । ଚାଲି ଯାଇଛି ଆସନ୍‌ସୋଲ୍‌ର ଗୋଟାଏ ବୋର୍ଡ଼ିଂ-ସ୍କୁଲକୁ ।

ଅଦ୍ଭୁତ ଅନମନୀୟ ପିଲାଟି । କଦାପି ସେ କଲିକତାରେ ରହିବନି ।

ଅବଶେଷରେ ରାମକୃଷ୍ଣ ମିଶନର ସେହି ଆସନ୍‌ସୋଲ୍ ଶାଖାରେ ବ୍ୟବସ୍ଥା କରିବାକୁ ପଡ଼ିଲା ଶୋଭନକୁ ।

ପାରୁଲ୍ ହତାଶ ହୋଇ କହିଥିଲା– ଶୋଭନ, ତୋ' ପୁଅ କୋଉଥିରେ ଗଢ଼ା ହୋଇଛି ? ପଥର, ବା ଇସ୍ପାତ ?

ଶୁଖିଲା ଗଳାରେ ଶୋଭନ କହିଥିଲା— ଅଥଚ ଖୁସିବାସୀ ଗେହ୍ଲାର ପିଲାଟିଏ ଛଡ଼ା ଆଉ କୋଉଦିନ ଅନ୍ୟ କିଛି ବୋଲି ଭାବି ନ ଥିଲି ତାକୁ ।

ପାରୁଲ୍ ମନେ ମନେ କହିଥିଲା— ତା' ମାନେ ତମେମାନେ ତାକୁ ଗଢ଼ିଲ । ପିଟି ପିଟି ଇସ୍ପାତ କରିଦେଲ ।

ଆଶ୍ଚର୍ଯ୍ୟ, ଯେତେବେଳେ ଚାଲିଗଲା ଟିକିଏ ହେଲେ ବିଚଳିତ ଭାବ ନ ଥିଲା । ବାଳଗୋପାଳଙ୍କ ପରି ସେହି କେତେ ସୁକୁମାର କଅଁଳ ମୁହଁରେ ଥିଲା କି ଅଦ୍ଭୁତ କାଠିନ୍ୟର ଛାପ ! ଯା ପରଠାରୁ ହୁଏତ ଏହି ଗୋଟିଏ ଜାତି ସୃଷ୍ଟି ହେବେ, ଯେଉଁମାନେ ବାପ-ମା'ଙ୍କୁ ଅସ୍ୱୀକାର କରିବେ, ବଂଶପରିଚୟକୁ ଅସ୍ୱୀକାର କରିବେ, ହୃଦୟବୃତ୍ତିକୁ ଅସ୍ୱୀକାର କରିବେ ମୁହଁରେ ନିଜ ନିଜକୁ ତିଆରି କରିବେ, ଏ ପୃଥିବୀର ମାଟି ଉପରେ ଚରି ବୁଲିବାର ଉପଯୁକ୍ତ କ୍ଷମତା ଆହରଣ କରି, ଆଉ ସେ କ୍ଷମତା ଅର୍ଜନ କରି ପାରିଲେ ବାପକୁ କହିବେ '— ମତେ ଲେଖାପଢ଼ା ଶିଖାଇବାକୁ ତମର ଯାହା ଖର୍ଚ୍ଚ ହୋଇଛି ତା' ଶୁଝିଦେବି ।'...... ଅଥବା କହିବେ— ଯାହା କରିଛ କରିବାକୁ ବାଧ ହୋଇ କରିଛ । ପୃଥିବୀକୁ ଆମମାନଙ୍କୁ ଆଣିଥିଲ କାହିଁକି ? ସେଥିର ଗୋଟାଏ ଦାୟିତ୍ୱ ନାହିଁ ?

ହୁଏତ ମଣିଷର ଜୀବଜଗତଠାରୁ ସେହି ଟିକକ ହିଁ ତଫାତ୍ ରହିବ । ପଶୁପକ୍ଷୀମାନେ ସେମାନଙ୍କର ଜନ୍ମ ପାଇଁ ବାପ-ମା'ଙ୍କୁ ଦାୟୀ କରିବାର ଜାଣନ୍ତି ନାହିଁ, ମଣିଷ ସେଇଟା ଜାଣିଛି ।

× × × × ×

ପାରୁଲ୍ ଅନେକକ୍ଷଣ ଠିଆହୋଇ ରହି ପୁଣି ଘରକୁ ଚାଲି ଆସିଲା । କଲମଟା ଧରି ପୁଣି ଲେଖିଲା— କିନ୍ତୁ ଏହାହିଁ କ'ଣ ଚାହିଁଥିଲେ ସତ୍ୟବତୀ ଦେବୀ ? ତାଙ୍କର ସବୁକିଛିର ବିନିମୟରେ ଏହି ଉତ୍ତରଟି ଖୋଜି ଆଣିଥିଲେ ପରବର୍ତ୍ତୀ କାଳ ପାଇଁ ?

ପାରୁଲର ମନେ ପଡୁଥାଏ ଶୋଭନର ସେହି ସମାରୋହମୟ ଜୀବନର ଛବିଟା । ସ୍ତ୍ରୀ ପୁଅ ଝିଅ ଆଉ ଅଗାଧ ଜିନିଷ ଧରି ହୁଏତ ଦିନଟିଏ କି ଓଳିଏ ପାଇଁ ମା' ପାଖକୁ ଚାଲି ଆସୁଥାଏ ସେ । ଦିନକ ପାଇଁ ସୁଦ୍ଧା ସେମାନଙ୍କୁ କେତେ ଜିନିଷ ଦରକାର ହୁଏ ଭାବି ଆଶ୍ଚର୍ଯ୍ୟ ହୋଇଯାଉଥିଲା ପାରୁଲ୍ । ସ୍ତ୍ରୀ ଚାଲିକରି ଗଲେ ବୋଧହୁଏ ଶୋଭନର ଛାତିକୁ କଷ୍ଟ ହେଉଥିଲା, ସ୍ତ୍ରୀର ଟିକିଏମାତ୍ର ଅସୁବିଧା ଦୂର କରିବାକୁ ମୁଠା ମୁଠା ଟଙ୍କା ଖର୍ଚ୍ଚ କରିବାକୁ ଦ୍ୱିଧା କରୁ ନ ଥିଲା ସେ । ଆଉ ଅଭିମାନିନୀର ମୁହଁଟା ଟିକିଏ ଭାରୀ ଦେଖାଗଲେ, ଯେପରି ନିଜେ

ଚୋର ହୋଇ ରହୁଥିଲା । କଣ୍ଟକିତ ହୋଇ ରହୁଥିଲା, କାଳେ ମା’ ବୋହୂର ସୂକ୍ଷ୍ମ ସୁକୁମାର ଅନୁଭୂତିର ମର୍ମଟି ବୁଝି ନ ପାରି କିଛି ଅଖାଡୁ କଥା କହିଦେବେ !

ଶୋଭନର ଜୀବନରେ ସ୍ତ୍ରୀର ପ୍ରସନ୍ନତା ଛଡ଼ା ଆଉ କିଛି ଯେ ଚାହିଁବାର ଥିଲା ତା’ ମନେ ହେଉ ନ ଥିଲା । ଶୋଭନର ହୃଦୟରେ ସ୍ତ୍ରୀ ଛଡ଼ା ଆଉ କୌଣସି କିଛି ସ୍ଥାନ ଅଛି କି ନାହିଁ ଭାବିବାକୁ ପଡୁଥିଲା ।

ପାରୁଲ୍ ପୁଣି ଲେଖିଲା– ଭାବୁଥିଲି ଅନ୍ୟଦିଗରେ ଯାହା ତାହା ହେଉ ପଛକେ, ଏ ହେଉଛି ପ୍ରକୃତ ବାହାଘର । ଗୋଟିଏ ଭଲପାଇବା ବିଭାଘରର ସୁଖମୟ ଦାମ୍ପତ୍ୟ ଜୀବନର ଦର୍ଶକ ମୁଁ ହୋଇଛି, ଯା ଭାବି ଆନନ୍ଦ ଲାଗୁଥିଲା ।...... ଦେଖିଛି ଆମମାନଙ୍କ ମା’ର ଜୀବନ, ଦେଖିଛି ନିଜ ନିଜର ଆଉ ସମସାମୟିକମାନଙ୍କର । କିଏ ଠକାମିଟା ମାନି ନେଇ ନ ପାରି ଯନ୍ତ୍ରଣାରେ ଛଟପଟ ହୋଇଛି ତ କିଏ ଠକାମି ସଙ୍ଗେ ହିଁ ସମାଧାନ କରି ଠାଇଁଟାକୁ ସୁରକ୍ଷିତ ରଖି ଚଳାଇ ଯାଇଛି ।...... ତା’ହେଲେ ସତ୍ୟ ବୋଲି କ’ଣ କେଉଁଠି କିଛି ନ ଥିଲା ? ତା’ କ’ଣ ହୁଏ ? କେଜାଣି ! ମୋର ଭାଇ-ଭାଉଜମାନଙ୍କୁ ତ ଦେଖିଛି, ମନେ ହୋଇନି ତ ଏମାନେ ଠକାମିର ବୋଝ ବୋହି ମରୁଛନ୍ତି । ବାହାରୁ କ’ଣ ଜଣାପଡ଼େ ?

ମୋହନର କଥା ମନେ ପଡୁଛି ।

ଅନେକଦିନହେଲା ପିଲାଟା ଆସିନି, ସେଇ ଯୋଉ ନାସିକକୁ ବଦଳି ହେବା ପରଠାରୁ ଆଉ ଏପଟକୁ ଆସିନି । ଲାଗୁଛି ତ ସୁଖୀ ସମୃଦ୍ଧ ଜୀବନର ସ୍ୱାଦରେ ଭରିରହି ଦିନ କଟାଉଛି ସେ । ସେଥିପାଇଁ ପରିତ୍ୟକ୍ତ ଆତ୍ମୀୟଜନମାନଙ୍କୁ ଗୋଟାଏ ଚିଠି ଲେଖି ଖବର ନେବାକୁ ମଧ୍ୟ ମନେ ହେଉନି । କିନ୍ତୁ କିଏ ଜାଣିଛି– ମୋହନର ଜୀବନରେ ମଧ୍ୟ ତଳେ ତଳେ କେଉଁଠି ଧ୍ୱଂସ ଦେଖା ଦେଇଛି କି ନାହିଁ !

ଭାଙ୍ଗିପଡ଼ିବାର ଆଗର ମୁହୂର୍ତ୍ତ ପର୍ଯ୍ୟନ୍ତ ତ ବାହାରୁ କିଛିହେଲେ ଧରା ପଡ଼େ ନାହିଁ ।

ମୋହନ ପାଇଁ ହଠାତ୍ ମନଟା କ’ଣ ହେଲା । ହୁଏତ ଶୋଭନର ବ୍ୟର୍ଥ ବିଧ୍ୱସ୍ତ ମୁହଁଟା ମନଟାକୁ ଉଦ୍‌ବେଳ କରି ପକାଉଛି । ରେଖା ପାଇଁ ମଧ୍ୟ ଭାରି ମନ କ’ଣ ହେଉଛି ।

କେତେଥର ମନେ ହୋଇଛି, ମୁଁ କ’ଣ ରେଖା ପାଖକୁ ଯିବି ? ତାକୁ କହିବି– କିନ୍ତୁ କ’ଣ କହିବ ଭାବି ପାରିଲାନି ପାରୁଲ । ସେମାନଙ୍କ ଜୀବନର ବୋଝ ସେମାନଙ୍କୁ ହିଁ ବହନ କରିବାକୁ ପଡ଼ିବ । ଆଉ କାହାରି କୌଣସି ଭୂମିକା ନାହିଁ ସେଠି ।

## ।। ୩୪ ।।

ବକୁଳ ଏ ଘରକୁ ଆସିଲାକ୍ଷଣି ବକୁଳର ସାନଭାଇନା କହିଲେ, ସେ ଘରର ବଡ଼ଭାଇନା କାହିଁକି ଆସିଥିଲେ ଲୋ ?

ବକୁଳ ଆଶ୍ଚର୍ଯ୍ୟ ହୋଇ କହିଲା— ଏ ମା', ତମେ ଘରେ ଥିଲ ? ତା'ହେଲେ ଦେଖା କଲନି କାହିଁକି ?

—ଧେତ୍, ସେ କଥା ଛାଡ଼୍ ! ସେସବୁ ଦେଖା ଫେଖା ଭିତରେ ମୁଁ ନାହିଁ, କହିଦେଇ ଭାଇନା ହଠାତ୍ ମୁହଁଟାକୁ ଫେରାଇଦେଲେ, ରୁଦ୍ଧ କଣ୍ଠରେ କହିଲେ— ଲୋକଙ୍କ ପାଖରେ ଦେଖାଇଲା ଭଳି ମୋର କ'ଣ ଅଛି ବକୁଳ ?

ବକୁଳ ହସିଦେଇ କହିଲା— ଅନ୍ତତଃ ତାଙ୍କ ପାଖରେ ଥିଲା । ତାଙ୍କ ମତରେ ଏ ଯୁଗରେ 'ନିନ୍ଦା'ର ବୋଲି କିଛିହେଲେ ନାହିଁ ।

ତା'ପରେ ବଡ଼ ଭାଇନାଙ୍କ ଆସିବାର ଉଦ୍ଦେଶ୍ୟ ସଂକ୍ଷେପରେ ବର୍ଣ୍ଣନା କଲା ।

ସାନଭାଇନା ଟିକିଏ ସ୍ତବ୍ଧ ହୋଇ ରହି କହିଲେ— ଅଥଚ ମନେ ହେଉଥିଲା ସେ ଘରଟା ଅଚଳ ଆୟତନ । ମୁକ୍ତକେଶୀ ଦେବୀଙ୍କ ଅସ୍ଥି ପୋତା ହୋଇ ରହିଛି ସେ ଭିଟାରେ ।

—ରହିଥିବ ଯଦି ସେ ପୋତା ଅସ୍ଥିରେ ଶିହରଣ ଲାଗୁଥିବ ।

—ଆଉ ଆମେ କେତେ ନିନ୍ଦିତ ହୋଇଛେ ! ଆମର ମା' ସେମାନଙ୍କ ପରି ନୁହଁନ୍ତି ବୋଲି ତାଙ୍କ ଉପରେ କେତେ ଲାଞ୍ଛନା କରାଯାଇ ନ ଥିଲା !

ବକୁଳ ଆସ୍ତେ କହିଲା— ଆଜି ମଧ୍ୟ ହେଉଛି ଭାଇନା । ଯେଉଁମାନେ ଟିକିଏ ଅନ୍ୟରକମର ହୁଅନ୍ତି, ସେମାନଙ୍କ ଉପର ଦେଇ ଲାଞ୍ଛନାର ଝଡ଼ ସବୁବେଳେ ବୋହିଥାଏ । ପରବର୍ତ୍ତୀ କାଳରେ ତମର ବଂଶଧରମାନେ ହିଁ ହୁଏତ ତମକୁ ମୁକ୍ତକେଶୀ ଦେବୀଙ୍କର ଯୋଗ୍ୟ ଉତ୍ତରସାଧକ ବୋଲି ଚିହ୍ନିତ କରିବେ ।

ସାନଭାଇନା ଟିକିଏ ଚୁପ୍ ରହିଯାଇ କହିଲେ— ମୁଁ ନିଜର ଭୁଲ ସଂଶୋଧନ କରିବାକୁ ଚାହିଁଥିଲି ବକୁଳ ! ସୁଯୋଗ କାହିଁ ମିଳିଲା ?

—ସତରେ ଚାହିଁଥିଲ ?

ସାନଭାଇନାଙ୍କ ଆଖି ଦୁଇଟା ଲାଲ୍ ହୋଇଗଲା । କାନ୍ଥ ଆଡ଼କୁ ଚାହିଁ କହିଲେ— ତମମାନଙ୍କର ସାନଭାଉଜଙ୍କର କଷ୍ଟ ଆଉ ଆଖିରେ ଦେଖିପାରୁନି ।

—ଖାଲି ସାନଭାଉଜଙ୍କର ?

'ମୋ କଥା ଥାଉ ବକୁଳ !'

—କିନ୍ତୁ ଏ ସମସ୍ୟାର ସମାଧାନ ତମମାନଙ୍କର ନିଜ ହାତରେ ସାନଭାଇନା !

—ସେ କଥା ତ ସବୁବେଳେ ଭାବୁଛି, ହେଲେ ଡର ଲାଗୁଛି ଯଦି ଆମ ଡାକକୁ ଅଗ୍ରାହ୍ୟ କରିବ ! ଯଦି ଫେରାଇ ଦେବ !

ବକୁଳ ମୃଦୁ ହସି କହିଲା— ସେଇଠି ତମେ ଭୁଲ କରୁଛ ଭାଇନା । ତମେ ଯଦି କହିବ— 'ତୁ ମତେ କଦାପି ଫେରାଇ ଦେଇ ପାରିବୁନି । ମୁଁ ତତେ ନିଶ୍ଚେ ଫେରାଇ ନେଇଯିବି, ନେବି, ନେବି ।' ଦେଖିବ କ'ଣ ହେବ ! କିନ୍ତୁ ମନେ ରଖ— ତା'ର ଭଲପାଇବାକୁ ଅମର୍ଯ୍ୟାଦା କରି ନୁହେଁ । ସେ ଯାହାକୁ ନିଜର ଜୀବନରେ ନିର୍ବାଚନ କରି ନେଇଛି, ତମମାନଙ୍କ ପାଖରେ ହୁଏତ ତା'ର ଅଯୋଗ୍ୟତାର ସୀମା ନାହିଁ, କିନ୍ତୁ ଯୋଗ୍ୟତା ଅଯୋଗ୍ୟତା କ'ଣ ବାହାରୁ ବିଚାର କରାଯାଏ ଭାଇନା ?

—ତା ଠିକଣାଟା ତ ତୋରି ହାତରେ !

—ତମ ହାତକୁ ମଧ୍ୟ ଚାଲିଯାଇପାରେ ଭାଇନା, ଯଦି ତମେ ପ୍ରକୃତ କ୍ଷମାର ହାତଟାକୁ ତା' ଆଡ଼କୁ ବଢ଼ାଇ ଦେଇ ପାରିବ ।

ସାନଭାଉଜ ଆସି ଠିଆହେଲେ । କହିଲେ— ପଡ଼ିଶା ଘରର ନିର୍ମଳର ସ୍ତ୍ରୀ ତମକୁ ଟିକେ ଡାକିଛି ବକୁଳ ।

ବକୁଳ ଚମକି ପଡ଼ିଲା ।

ଆଶ୍ଚର୍ଯ୍ୟ, ଏବେ ମଧ୍ୟ ବକୁଳ 'ନିର୍ମଳ' ନାଁଟା ଶୁଣିଲାମାତ୍ରେ ଚମକିପଡ଼େ ! ଜଗତରେ ଅନେକ ରହସ୍ୟ ମଧ୍ୟରେ ଏହା ଏକ ଅଦ୍ଭୁତ ରହସ୍ୟ, ଅନେକ ଆଶ୍ଚର୍ଯ୍ୟ ଭିତରେ ଏ ଏକ ପରମ ଆଶ୍ଚର୍ଯ୍ୟ ।

ଅବଶ୍ୟ ଏହି ଗଭୀରତାରେ ତଳେଇ ରହିଥିବା ବକୁଳର ଚେତନାରେ ଚମକି ଯିବାଟା ବାହାର ଜଗତରେ ଧରା ପଡ଼େନି । ବକୁଳ ସହଜ ଭାବରେ କହିଲା— କାହିଁକି ଡାକିଛି ଜାଣିଛ ?

—ଠିକ୍ ଜାଣେନି । ତେବେ ତା'ର ସେ ନାତିଟାକୁ ତ ତା'ର ବାପା ନିଜ ପାଖକୁ ନେଇ ଯାଇଛି, ମା'କୁ ମଧ୍ୟ ବୋଧହୁଏ ନେଇଯିବାକୁ ବ୍ୟସ୍ତ ହେଉଛି । ମଜା କ'ଣ ଜାଣିଛ ? ପିଲାଟାର ହାତଟାକୁ କଟା ଯାଇଛି ବୋଲି ତା' ପାର୍ଟିରେ ଆଉ ସେମାନେ ଜାଗା ଦେଲେନି । ସେମାନେ କୁଆଡ଼େ କହିଲେ— ଏମିତି ଗୋଟାଏ ଚିହ୍ନ ଧରି ଘୂରି ବୁଲିଲେ ଧରା ପଡ଼ିବାର ସମ୍ଭାବନା ଅଛି । ପିଲାଟା କହିଛି, ଆଉ ଟିକିଏ ବଳ ପାଇଯାଏ, ଦେଖିନେବି ସେମାନଙ୍କୁ । ବିଶ୍ୱାସଘାତକ ହୋଇ ସେମାନଙ୍କୁ ବିଶ୍ୱାସଭଙ୍ଗର ଶାସ୍ତି ଦେଇ ଛାଡ଼ିବି ।

ଅନ୍ୟମନସ୍କ ଭାବରେ ବକୁଳ କହିଲା— ସତରେ ?

—ହଁ ସତ । ଅଳକା ଦିନେ ସେଠାକୁ ଯାଇଥିଲା । ଆଉ ଯୋଉମାନେ ସମସ୍ତେ ସେ ଘରେ ଅଛନ୍ତି, ସେମାନଙ୍କ ସଙ୍ଗେ ତ ଅଳକାର ବହୁତ ବନ୍ଧୁତା । ସେଠୁ ସେ ଶୁଣି ଆସିଥିଲା ।

—ନିର୍ମଳ ଭାଇନାଙ୍କ ସ୍ତ୍ରୀ ଭଲ ଅଛି ?

ଜୋର୍ କରି ମାଧୁରୀ ନ କହି ନିର୍ମଳ ଭାଇନାଙ୍କ ସ୍ତ୍ରୀ ବୋଲି କହିଲା ବକୁଳ । ଯେମିତି ସମସ୍ତଙ୍କୁ ଦେଖାଇବାକୁ ଚାହିଁଲା (ହୁଏତ ନିଜକୁ ମଧ୍ୟ) ସେ ନାଁଟା ଉଚ୍ଚାରଣ କରିବାଟା ବକୁଳ ପାଖରେ କିଛି ନୁହେଁ । ଭାରି ସାଧାରଣ ।

ସାନଭାଉଜ କହିଲେ— ଜମା ଭଲ ନାହିଁ କୁଆଡ଼େ । ଚେହେରା ଦେଖିଲେ କୁଆଡ଼େ ଚିହ୍ନି ହେଉନି । ହେଉଟି ଏବେ ଯୋଉ ଚାଲିଯିବ, ଆଉ ଫେରିବ ବୋଲି ମନେ ହେଉନି ।

× × × × ×

ପାଖକୁ ଯାଇ ଖଟ ତଡ଼ରେ ବସିପଡ଼ି ବକୁଳ କହିଲା— ଯାହାହେଉ ଚେହେରାଟାକୁ ତ ବେଶ୍ ଭଲ କରିପକାଇଛ, ପୁଅପାଖକୁ ଯାଇ ତାକୁ ଆଉ କଷ୍ଟ ଦେବା ଦରକାର କ'ଣ ? ଆଉ ଦଶ ପନ୍ଦରଦିନ ଏଠି ରହିଗଲେ ସିଧାସଳଖ 'ପୁଅର ବାପ' ପାଖକୁ ଚାଲି ଯାଇ ପାରିଥାନ୍ତ ।

—'ତମ ମୁହଁରେ ଫୁଲ-ଚନ୍ଦନ ପଡୁ ବକୁଳ— ' ମାଧୁରୀ ଟିକିଏ ହସି କହିଲା— ସବୁବେଳେ ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଛି, ଯେପରି ଏହି ଘରୁ ଏହି ଖଟବିଛଣାରୁ ହିଁ ତାଙ୍କ ପାଖକୁ ଚାଲିଯାଇ ପାରିବି ଯେମିତି । ହେଲେ ପୁଅର ଆଉ ତର ସହୁନି । ହୁଏତ ଭାବୁଛି ଲୋକନିନ୍ଦା ହେଉଛି, କର୍ତ୍ତବ୍ୟରେ ତ୍ରୁଟି ହେଉଛି—

ବକୁଳ ଟିକିଏ ଚାହିଁ ରହି କହିଲା— ଖାଲି ସେଇୟା ଭାବୁଛି ? ଆଉକିଛି ଭାବି ପାରୁନି ?

ମାଧୁରୀ ତାର ଶୀର୍ଣ୍ଣ ହାତଟି ବକୁଳର କୋଳ ଉପରେ ରଖି କହିଲା— ଆଉ କ'ଣ ଭାବିବ ?

—କାହିଁକି, ମା'ର କଷ୍ଟ ହେଉଛି, ମା'କୁ ଅସୁବିଧା ହେଉଛି, ମା' ପାଇଁ ମନ କ'ଣ ହେଉଛି—

ମାଧୁରୀର ଓଠ କୋଣରେ ଟିକିଏ ହସର ରେଖା ଦେଖାଦେଲା । ବ୍ୟଙ୍ଗତିକ୍ତ ଅବଜ୍ଞାର ହସ ।

ବକୁଳ ଅବାକ୍ ହୋଇ ଚାହିଁ ଦେଖିଲା— ଏ ଭଳି ହସ ହସିବା ଜାଣିଛି ମାଧୁରୀ ?

କିନ୍ତୁ କଥାଟା ଭାରି ଭଦ୍ର କହିଲା ମାଧୁରୀ । କହିଲା— ତା'ହେଲେ ତ ଭଲକଥା ।

—ଡାକିଥିଲ ?

—ହଁ, ତମର କେତେକାମ, ତା' ଭିତରେ ଅକାରଣରେ ଡାକି ବିରକ୍ତ କଲି—

—ବାଜେ ସୌଜନ୍ୟଟିକକ ଛାଡ଼ ତ । କହ କ'ଣ କହିବ ?

—"କିଛି କହିବିନି—" ମାଧୁରୀ ଆସ୍ତେ କହିଲା, 'ଗୋଟାଏ ଜିନିଷ ଦେବି ।' ଏବେ ମଧ ଥରିଗଲା ବକୁଳର ହୃଦୟଟା, ଏ କି ଲଜ୍ଜା, ଏ କି ଲଜ୍ଜା ! ମାଧୁରୀ ଯଦି ତା' ସ୍ୱାମୀର ଗୋଟାଏ ଫଟୋ ବକୁଳକୁ ଦେବାକୁ ବସିବ, କ୍ଷତି କ'ଣ ? କାହିଁକି କେଜାଣି ହଠାତ୍ ବକୁଳର ସେ କଥା ମନେହେଲା ।

କିନ୍ତୁ ଫଟୋ ନୁହେଁ । ଖାତା ।

ଅଥବା ଫଟୋ ମଧ ।

ଖାତାଟାର ଶେଷପୃଷ୍ଠାରେ ବହୁତ ଛୋଟ ଫଟୋଟିଏ ଲଗା ହୋଇଛି ।

—"ତାଙ୍କର ସେ ଡାଏରୀର ଖାତାଟା—" ମାଧୁରୀ ତକିଆ ତଳୁ ଖାତାଟାକୁ ବାହାର କରି କହିଲା— ଖାତାଟାକୁ ନେଇ କ'ଣ କରିବି ଭାବି ପାରୁନି । ନିଜ ହାତରେ ସେ ହାତର ଲେଖାଗୁଡ଼ାକୁ ପ୍ରାଣ ଧରି ନଷ୍ଟ କରିପାରିନି ମଧ, ଅଥଚ ଡର ଲାଗୁଛି ସତରେ ଯଦି ହଠାତ୍ ମରି ଫରି ଯିବି, କିଏ ଦେଖିବ, କିଏ ପୃଷ୍ଠା ଓଲଟାଇବ— ସେଥିପାଇଁ ଶେଷକୁ ଭାବି ଠିକ୍ କଲି, ଯାହାର ଜିନିଷ ତାକୁ ହିଁ ବରଂ ଦେଇ ଦିଏ ।'

ବକୁଳ ଖାତାରେ ହାତ ବଢାଇଲା ନାହିଁ, ଅସହାୟ ଭାବରେ କହିଲା, ଯାହାର ଜିନିଷ ମାନେ ?

ଅଥଚ ବକୁଳ ପ୍ରୌଢ଼ତ୍ୱର ଶେଷ ସୀମାରେ ଆସି ପହଞ୍ଚିଲାଣି, ବକୁଳ ଅନାମିକା ଦେବୀଙ୍କ ଖୋଳପାଟାକୁ ପିନ୍ଧି ରାଜ୍ୟ ଜୟ କରି ବୁଲୁଛି ।

ବିଛଣାରେ ରଖା ହୋଇଥିବା ଖାତାଟାକୁ ବକୁଳର କୋଳ ଉପରେ ରଖିଦେଇ ମାଧୁରୀ କହିଲା— ଯାହା କହିଲି, ଠିକ୍ କହିଲି । ପ୍ରତି ପୃଷ୍ଠାରେ ଯାହାର ନାମାବଳି ରହିଛି, ତା'ରି ଜିନିଷ, ତା'ରି ପାଖରେ ରହିବାଟା ଠିକ୍ ହେବ ।

ହଠାତ୍ ମାଧୁରୀର କୋଟରଗତ ଆଖିରେ ପ୍ରତ୍ୟେକ ରେଖାରେ ଲୁହ ଭର୍ତ୍ତି ହୋଇଗଲା । ଅପରାଧୀ ପରି କାଠ ହୋଇ ବସିରହିଲା ବକୁଳ ।

ମାଧୁରୀ ନିଜେ ପୁଣି ଲାଜୁଆ ହସ ହସି କହିଲା— ଦେହଟା ଖରାପ ହୋଇ ନର୍ଭଗୁଡ଼ାକ ଏକାବେଳେ ଗଲାଣି । କଥା କହିଲାକ୍ଷଣି ଲୁହ ଆସିମରୁଛି ଆଖିକୁ । ସତରେ ଖାତାଟାକୁ ତମପାଇଁ ରଖି ଦେଇଥିଲି ।

ବକୁଳ ମାଧୁରୀର ରୋଗିଣା ହାତଟାକୁ ଧରି ଆସ୍ତେ କହିଲା— ଭାବି ବଡ଼ ସୁଖ ଥିଲା, ଅନ୍ତତଃ ତମ ଭିତରେ କିଛି ଶୂନ୍ୟତା ନାହିଁ, ଫାଙ୍କି ନାହିଁ ।

ମାଧୁରୀ ତା'ର ଶୀର୍ଣ୍ଣ ମୁହଁରେ ମଧ ତା'ର ସେହି ଅଭ୍ୟସ୍ତ ହସଟି ହସି କହିଲା— ନାହିଁ ତ । ସବୁତକ ପୂର୍ଣ୍ଣ, ଖାଲି ସେହି ପୂର୍ଣ୍ଣତାର ଗୋଟିଏ ଅଂଶ ହେଉଛ ତମେ । ତମ ପ୍ରତି ମୁଁ ବଡ଼ କୃତଜ୍ଞ ବକୁଳ, ତମେ ଆଉ ସମସ୍ତଙ୍କ ପରି ଘର-ସଂସାର ସ୍ୱାମୀ-ପୁତ୍ର ଧରି ମତ୍ତ ହୋଇଯାଇ ନାହଁ । ସେମିତି ହୋଇଥିଲେ ହୁଏତ ଏ ଖାତାକୁ କେବଠାରୁ ଛିଣ୍ଡାଇ ଫୋପାଡ଼ି ଦେବାକୁ ପଡ଼ିଥାନ୍ତା ।

ବକୁଳ ହସିବାକୁ ଚେଷ୍ଟା କରି କହିଲା— ବର ତ ଜୁଟିଲାନି, ସେଥିପାଇଁ ଘର ସଂସାରର ଜଞ୍ଜାଳ ହୋଇନି । ତା ଭିତରେ ତ୍ୟାଗର ମହତ୍ତ୍ୱ ନ ଖୋଜିବା ହିଁ ଭଲ ମାଧୁରୀ । ବରଂ ତମରି ପାଖରେ ମୁଁ— ଯାଉ, ସେକଥା ଥାଉ । ସବୁ କଥାକୁ ଉଚ୍ଚାରଣ କଲେ ମାନିବନି । ତେବେ 'ଯିବା ଦିନ' ଆସି ନଗଲେ ଯାଇ ହେବନି, ଅତଏବ ସେ ଦିନଟା ତ୍ୱରାନ୍ୱିତ କରିବାର ସାଧନା ନ କରିବା ହିଁ ଉଚିତ !

—ନାଃ, ତା' କରିନି । ଏମିତିରେ କ'ଣ ମଣିଷର ଦେହ ଖରାପ ହେଉିକା ହୁଏନି ?...... ଆଚ୍ଛା, ଭଉଣୀ, ତାଙ୍କ ଖାତାଟା ପଢ଼ି ଲାଗୁଥାଏ— ଅବଶ୍ୟ ଆଗେ କୋଉଦିନ ପଢୁନଥିଲି, ସେତେବେଳେ ଭାବୁଥିଲି ସମସ୍ତଙ୍କର ଅଳ୍ପଟିକିଏ ନିଭୃତ ଜାଗା ରହିଥିବା ଉଚିତ । କିନ୍ତୁ ଯିବା ଆଗରୁ ଖାତାଟା ମତେ ଦେଲେ ସେ । କହିଲେ "— ପଢ଼ି ଦେଖିବ । ଯିବା ଆଗରୁ ତମ ପାଖରେ ନିର୍ମଳ ହୋଇ ଯାଏ ।" ନିଜର ନାଁଟାକୁ ନେଇ ଅନେକ ସମୟରେ ଥଟ୍ଟା କରୁଥାନ୍ତି ତ ।...... ଖାତାଟି ପଢୁ ପଢୁ ମନେ ହେଉଥାଏ, 'ତମମାନଙ୍କର କଥା' ନେଇ କିଛି ଲେଖିବାର କଥା ଥିଲା ତମର, କୋଉଠି ଲେଖିଛ ? ତମର କେତେ ବହି ଅଛି, ସବୁ ତ ମୁଁ ଆଉ ପଢ଼ିନି, ଜାଣିବାକୁ ଇଚ୍ଛା ହେଉଛି, କ'ଣ ଲେଖିଛ ସେଥିରେ ?

ଧୀରେ ମୁଣ୍ଡ ହଲାଇଲା ବକୁଳ, କହିଲା ନାଃ, ସେ ଆଉ କେବେହେଲେ ଲେଖା ହୋଇନି ମାଧୁରୀ ! ଲେଖିବି ଭାବିଲେ ମନେ ହେଉଥାଏ, ଲେଖିବା ଭଳି ଅଛି କ'ଣ ? ଏ ତ ଜଗତର ନିତ୍ୟ ଘଟଣାର ଖଣ୍ଡିଏ ଅଂଶ । କେଉଁଠି ଅଛି ବିଶେଷତ୍ୱ, କେଉଁଠି ବା ମୌଳିକତ୍ୱ, ତାପରେ ହଠାତ୍—

ବକୁଳ ଟିକିଏ ତୁନି ହୋଇ ରହି କହିଲା— ସେତେବେଳେ ମନେହେଲା, ଆଉ ଲେଖି ବା କ'ଣ ହେବ ?...... ଅସଲ କଥା, ନିଜ କଥା ଲେଖିବାଟା ବଡ଼ କଷ୍ଟ । ସେମାନଙ୍କ ପାଖରେ ହିଁ ସେଇଟା ସହଜ, ଯେଉଁମାନେ 'ନିଜ କଥା' ଉପରେ ଅନେକ ରଙ୍ଗ ପାଲିସ୍ ଲଦିଦେଇ ଶୋଭା ବା ବର୍ଣ୍ଣବିଭବ

ବଢ଼ାଇଦେଇ ପାରନ୍ତି, ଯେଉଁଥିରେ କି ଜିନିଷଟା ମୂଲ୍ୟବାନ ବୋଲି ମନେ ହେବ । ସେକଥାଟା ତ ସମସ୍ତେ ପାରନ୍ତି ନାହିଁ ।

ମାଧୁରୀ ଗୋଟାଏ ନିଃଶ୍ୱାସ ପକାଇ କହିଲା– ସେକଥା ନେଇ ତାଙ୍କର ଟିକିଏ ଅଭିମାନ ଥିଲା ।

ବକୁଳ ମାଧୁରୀର ହାତଟାକୁ ଟିକିଏ ଚାପ ଦେଇ କହିଲା– ହୁଏତ ସେଇଟା ଭଲ ହୋଇଥିଲା ମାଧୁରୀ । ହୁଏତ ଲେଖିଥିଲେ ତାଙ୍କ ମନଟା ଛାଡ଼ିଯାଇ ନ ଥାନ୍ତା । ପ୍ରତ୍ୟାଶାର ପାତ୍ରଟା ଖାଲି ରହିଯାଇଥାନ୍ତା, ଅଭିମାନର ସୁଖଟାରୁ ମଧ୍ୟ ବଞ୍ଚିତ ହୁଅନ୍ତା । ଯାହାହେଉ ହୋଇନି, ସେଇଟା ଭଲ ।

–ତେବେକେ ସମୟ ପାଇଲେ ଟିକିଏ ଦେଖିବ, ତା'ପରେ ଛିଣ୍ଡାଇ ପକାଇବ, ପୋଡ଼ି ପକାଇବ, ଯାହା ତମର ଖୁସି ତା' କରିବ ବକୁଳ । ଜଗତର ଆଉ କାହାର ଆଖିରେ ପଡ଼ିଲେ ମାଧୁରୀ ନାଆଁର ଝିଅଟାକୁ ହୁଏତ କରୁଣା କରିବାକୁ ବସିବେ । ଭାବିବେ, ଆହା ବିଚରା, ବୋଧହୁଏ କିଛିହେଲେ ପାଇନି । ସେମାନଙ୍କୁ ତ ବୁଝାଇ ହେବନି, ଏମିତି ହୃଦୟ ମଧ୍ୟ ଥାଏ, ଯାହା ନିଃଶେଷ ହୋଇଯାଏ ନାହିଁ, ଦେବାଳିଆ ହୋଇଯାଏ ନାହିଁ ।

କ୍ଲାନ୍ତିରେ ମାଧୁରୀ ଆଖି ବୁଜିଲା ।

ବକୁଳ ସେହି ବନ୍ଦ ଆଖି ଆଡ଼କୁ ଚାହିଁ ଆଉ ଗୋଟିଏ ମୁହଁ ମନେ ପକାଇବାକୁ ଚେଷ୍ଟା କଲା ।

ନାଆଁଟା ଯେମିତି ସ୍ପର୍ଶ କରି ଯାଏ, ମୁହଁଟା ସେମିତି ସହଜରେ ଧରା ଦିଏନି ।...... ଅନେକ ଭାବିଲେ ଯାଇ–

କିନ୍ତୁ ସେହି ସରଳ-ସରଳ ଭୀରୁ-ଭୀରୁ ନିର୍ବୋଧ ମୁହଁଟା ଭିତରେ ଏମିତି କିଛି ଆଶ୍ୱାସ ପାଏ ନାହିଁ ବକୁଳ, ଯାହା ମାଧୁରୀ ପାଇଛି ।...... ସତରେ କ'ଣ ପାଇଛି ? ନା, ଏ ଖାଲି ତା'ର ଆପଣା ମନର ମାଧୁରୀକୁ ମିଶାଇ ରଚନା କରିଥିବା ମୂର୍ତ୍ତି ।......

ଟିକିଏ ପରେ ଆଖି ଖୋଲି ମାଧୁରୀ କହିଲା– ଆଜି ତମକୁ ସବୁ କଥା କହିବାକୁ ଡାକିଛି । ଅନେକ ପ୍ରଶ୍ନ କରିବାକୁ ମଧ୍ୟ ଡାକିଛି । ପଚାରିବାକୁ ଇଚ୍ଛା ହେଉଛି ତମର ଏ ଏତେ ବଡ଼ ଜୀବନରେ ଆଉ କେବେ କ'ଣ କୌଣସି ଭଲ ପାଇବା ଆସି ନାହିଁ ?

ହସି ପକାଇଲା ବକୁଳ– ଆରେ ବାବା ! ଏ ଯେ ଦାରୁଣ ପ୍ରଶ୍ନ ! ଚଟ୍‌କିନା ତ ମନେ ପଡୁନି ।

–ଭାବି ଭାବି ମନେ ପକାଅ । ଏତେ ପ୍ରେମର କାହାଣୀ ଲେଖିଲ, ଆଉ–

— ହୁଏତ ସେଇଥିପାଇଁ ଲେଖୁ ଲେଖୁ ଆଉ ସମୟ ପାଇଲି ନାହିଁ, ତାଛଡ଼ା— ବକୁଳ ଟିକିଏ ସହଜ ପରିହାସ ଭିତର ଦେଇ ଏ ପ୍ରସଙ୍ଗର 'ଇତି' ଟାଣିଦେଲା । କହିଲା— ତମ ଭଳି ସୁନ୍ଦରୀ ତ ନୁହେଁ ଯେ, ମୁଗ୍ଧ ଭକ୍ତର ଦଳ ପତଙ୍ଗ ପରି ଧାଇଁ ଆସିବେ ?

— ପ୍ରଶ୍ନଟାକୁ ଆଡ଼େଇ ଦେଲ ?

— ହଁ, ସେଇୟା ଭାବ । ସେଥିରେ ମଧ୍ୟ ମୋର ପ୍ରେଷ୍ଟିଜ୍ ବଜାୟ ରହିଲା । କହି ଉଠି ଠିଆହେଲା ବକୁଳ ।

— ଖାତାଟା ନେଇଯାଅ ।

— ସତରେ କ'ଣ ନେବାକୁ ପଡ଼ିବ ?

— ବାଃ ତା'ହେଲେ କ'ଣ ଖାଲି ଖାଲିରେ ତମକୁ ଡକାଇ କଷ୍ଟ ଦେଲି ? ତମକୁ ଦେଇଦେଇ ନିଶ୍ଚିନ୍ତ ହେଲି ।

## ॥ ୩୫ ॥

ମାଧୁରୀଠାରୁ ଖାତାଟାକୁ ଆଣି ଡ୍ରୟର୍ ଭିତରେ ପୂରାଇ ରଖିଲା ବକୁଳ । ବକୁଳର ଡ୍ରୟର୍‌ରେ କେବେହେଲେ ଚାବି ପଡ଼ିବା ବ୍ୟବସ୍ଥା ନ ଥିଲା, ସେଥିପାଇଁ କୌଣସିଦିନ କିଛି ଅଭାବ ମଧ୍ୟ ଅନୁଭବ କରିନି ।

ଆଜି ହଠାତ୍ ମନେହେଲା, ଯେମିତି ସେଇଟାକୁ ଚାବି ଦେଇ ବନ୍ଦ କରି ରଖି ପାରିଥିଲେ ଭଲ ହୋଇଥାନ୍ତା । ନା, କିଏ ବକୁଳର ଡ୍ରୟର୍‌ରେ ହାତ ଦେବେ, ଏ ଭାବନା ଆଉ ନାହିଁ, ଅନେକଦିନ ହୋଇଗଲା, ସେହି 'ସମ୍ଭାଳ-ସମ୍ଭାଳ'ର ସ୍ୱାଦ ବକୁଳ ଭୁଲିଗଲାଣି ।

ଲେଖୁ ଲେଖୁ ଅଧେ ପକାଇ ଦେଇଗଲେ ମଧ୍ୟ ଟାଣି ଉପରେ ପଡ଼ି ନେଇ ଯାଉଥାଏ ଶମ୍ପା । ଏବେ ବକୁଳର ଟେଲିଫୋନ୍‌ରେ କଦାଚିତ୍ କାହାର ହାତ ପଡ଼େ, ବକୁଳର ଟେବୁଲ ଡ୍ରୟର୍‌ରେ ହାତ ବାଜେନି । ଏ ଘରେ ଆହୁରି କେତେ ପୁଅ ଝିଅ ଅଛନ୍ତି, କିନ୍ତୁ ସେମାନେ ବକୁଳର ଅଚିହ୍ନା । ସେମାନେ ଏପଟକୁ ମାଡ଼ନ୍ତି ନାହିଁ ।

ତେବେକେ ବକୁଳର ମନେହେଲା ଚାବି ବନ୍ଦ କରି ଦେଇଥିଲେ ବୋଧହୁଏ ସ୍ୱସ୍ତି ମିଳିଥାନ୍ତା । ଯଦିଚ ଏ ପର୍ଯ୍ୟନ୍ତ ଗୋଟାଏ ହେଲେ ପୃଷ୍ଠା ଖୋଲି ଦେଖିନି । ଥାଉ, ଗୋଟାଏ କୋଉ ସମୟ ପାଇଁ ଥାଉ । ଆଜି ତ ଏକ୍ଷଣି ଫେର୍ ବାହାରି ଯିବାକୁ ପଡ଼ିବ ।

'ଦେଶବନ୍ଧୁ ହଲ୍'ରେ ସାହିତ୍ୟ-ସମ୍ମିଳନୀର ଆଜି ବିଶେଷ ବାର୍ଷିକ ଅଧିବେଶନ ହେଉଛି ।

ସାହିତ୍ୟରେ ଅଧୋଗତି ହେଉଛି କି ନାହିଁ ଏବଂ ଯଦି ହେଉଥାଏ ତା'ହେଲେ ପ୍ରତିକାର କ'ଣ ? ଏ ବିଷୟରେ ଜବରଦସ୍ତ ଆଲୋଚନା ହେବ । ଏ ଆଲୋଚନାରେ ଅଂଶ ଗ୍ରହଣ କରିବା ଅନାମିକା ଦେବୀଙ୍କର ଅବଶ୍ୟ କର୍ତ୍ତବ୍ୟ ।

ତିନି ଘଣ୍ଟା ଧରି ଅନାମିକା ଦେବୀ ଏବଂ ଆହୁରି ଅନେକ ଦେବ-ଦେବୀ ଭାରତୀୟ ସାହିତ୍ୟର ଭବିଷ୍ୟତ୍ ପନ୍ଥା ନିରୂପଣ କରି ଶେଷ ରାୟ ଦେଇ ଯେତେବେଳେ ବାହାରୁଥିଲେ, ସେତେବେଳେ ସ୍ତ୍ରୀଲୋକଟିଏ ଅନାମିକାଙ୍କ ପାଖକୁ ଆସି ନମସ୍କାର କରି ଠିଆହେଲା ।

ଅନାମିକା ଚମକି ପଡ଼ିଲେ— ରେଖା ? ଶୋଭନର ସ୍ତ୍ରୀ ନା ? ତମେ ଆସିଥିଲ ଏଠାକୁ ?

—ହଁ ।

—କେତେବେଳେ ଆସିଲ ? କୋଉଠି ବସିଥିଲ ? ଦେଖି ପାରି ନ ଥିଲି ତ ?

—ଆପଣମାନେ ଦେଖି ପାରିବେ, ଏମିତି ଜାଗାରେ ବସିବାକୁ ପାଇବି ?...... ଶୋଭନର ସ୍ତ୍ରୀ ରେଖା ଟିକିଏ ହସିଲା— ଆମର କ'ଣ ସେ ଟିକେଟ୍ ଅଛି ?

—କି ହଇରାଣ ! ଏଥିରେ ପୁଣି ଟିକଟ କ'ଣ ? ସାଙ୍ଗରେ କିଏ ଅଛି ନା କ'ଣ ?

—ହଁ, ନିଶ୍ଚୟ ଅଛନ୍ତି । କାହାର ଶରଣାପନ୍ନ ନ ହେଲେ ତ ପ୍ରବେଶପତ୍ର ମିଳନ୍ତା ନାହିଁ । ମୋର ଜଣେ କବି ମାଉସୀପୁଅ ଭାଇନାଙ୍କର ଶରଣାପନ୍ନ ହୋଇ ଆସିଲି ଏଠାକୁ ।

ବେଶ୍ କରିଛ । ତମେ ସାହିତ୍ୟ ଫାହିତ୍ୟ ଭାରି ଭଲପାଉଛ, ସେଇୟା ନା ?

ରେଖା ମୃଦୁ ହସି କହିଲା— ସାହିତ୍ୟକୁ ଭଲ ପାଏ କି ନାହିଁ ଜାଣିନି, ତେବେ ଜଣେ ସାହିତ୍ୟିକଙ୍କୁ ଅନ୍ତତଃ ଭଲ ଲାଗେ, ତେଣୁ ତାଙ୍କୁ ଦେଖିବାକୁ ଆସିଲି ।

ଅନାମିକା ହସିଲେ ।

କିନ୍ତୁ— ମନେ ମନେ ଭାବିଲେ ଅନାମିକା, ଏଇଟା କ'ଣ ହେଲା ? ରେଖା କ'ଣ ନରମ ହୋଇ ଯାଇଛି ? ରେଖା କ'ଣ ବକୁଳକୁ ମାଧ୍ୟମ କରି ସେମାନଙ୍କର ଫାଟି ଯାଇଥିବା ଜୀବନଟାକୁ ମରାମତି କରି ପକାଇବାକୁ ଚାହୁଁଛି ?

ଅନାମିକା ଠିକ୍ ବୁଝିପାରିଲେନି । ଅନାମିକା ସାବଧାନରେ କହିଲେ— ଭାରି ଶୁଖିଯାଇଛ !

ରେଖା କହିଲା— କାହିଁ ?

—ନିଜେ ନିଜେ କ'ଣ ବୁଝି ହେବ ? ପୁଅଝିଅ ଭଲ ଅଛନ୍ତି ?

କହିଦେଇ ମନେ ହେଲା ପଚାରି ନ ଥିଲେ ଭଲ ହୋଇଥାନ୍ତା । କୋଉଠି ପୁଅ, କୋଉଠି ଝିଅ, କିଏ ଜାଣିଛି ?

କିନ୍ତୁ ରେଖା ସେକଥା କହିଲା ନାହିଁ ।

ସେ ଖାଲି ଟିକିଏ ମଳିନ ହସ ହସି କହିଲା— ଭଲ ଥିବେ ବୋଧହୁଏ । ଶୁଣିଲି ତ ପୁଅକୁ ଆସନସୋଲ ମିଶନ ସ୍କୁଲରେ ବୋର୍ଡିଂରେ ଭର୍ତ୍ତି କରିଦେଇଛନ୍ତି ।

ଅନାମିକା ଟିକିଏ ତୁନି ରହି କହିଲେ— ଶୁଣିଲ !

ରେଖାର ମୁହଁରେ ଏବେ ମଧ୍ୟ ହସ ରହିଛି । କହିଲା— ସେଇୟା ତ ! ମା'ଙ୍କ ପାଖରେ ଚନ୍ଦନନଗରରେ ଥିଲା, ତା'ପରେ ମା'ଙ୍କ ଚିଠିରୁ ଜାଣିଲି ।

ଚାରିଆଡ଼େ ଲୋକ । ତେବେକେ ଏ ମଧ୍ୟ ଏକଧରଣର ନିର୍ଜନତା ! ଅନେକ ଲୋକଙ୍କ ଭିଡ଼ ଭିତରେ ନିଭୃତରେ କଥା କୁହାଯାଇପାରେ ।

ଅନାମିକା ଶାନ୍ତ ମୃଦୁଗଳାରେ କହିଲେ— ମା'ର ଚିଠିରୁ ଖବରଟା ଜାଣିବାକୁ ହେଲା ?

ରେଖା ଅନ୍ୟ ଦିଗକୁ ଚାହିଁ ରହିଲା ।

ଅନାମିକା ବକୁଳ ହୋଇଗଲେ ନାହିଁ । ଅନାମିକା ହୋଇ ରହି ମୃଦୁ ମାର୍ଜିତ ଗଳାରେ କହିଲେ— ସବୁକିଛି ଶେଷ ହୋଇଯିବାଟା କ'ଣ ଏତେ ସହଜ ରେଖା ?

ରେଖା ଆଖି ଉଠାଇ ଚାହିଁ କହିଲା— କଠିନ ହେଲାନି !

ଅନାମିକା ଚାହିଁ ଦେଖିଲେ— ରେଖାର ଏଭଳି ପ୍ରସାଧନବର୍ଜିତ ମୁହଁ କେବେ ଦେଖିଛନ୍ତି ଅନାମିକା ? ଖଣ୍ଡେ ସାଧା ଟାଙ୍ଗାଇଲ୍ ଶାଢ଼ୀ ପିନ୍ଧିଛି ରେଖା, ତା' ମୁହଁରେ ଉଗ୍ର ପେଇଣ୍ଟର ଆତିଶଯ୍ୟ ନାହିଁ, ମନଟା ଭରିଗଲା ମମତାରେ । ଆସ୍ତେ କହିଲେ— ରେଖା ! ବହୁତ ଜଟିଳ ଅଙ୍କ କଷିବାକୁ ତ ପୁଣି ସମୟ ଲାଗେ ।

ରେଖା ମଧ୍ୟ ମୃଦୁ ଭାବରେ କହିଲା— ହଁ ତା' ତ ଲାଗିବ । ହୁଏତ ସାରାଜୀବନ ଧରି କରିବାକୁ ପଡ଼ିବ ।

ଅନାମିକା କହିଲେ— ତମମାନଙ୍କର ଯୁଗକୁ ଆମେମାନେ ବହୁତ ବିଚକ୍ଷଣ ଆଉ ବୁଦ୍ଧିମାନ ବୋଲି ଭାବୁଥିଲୁ ବୋହୂ !

ରେଖା ତୁନିହୋଇ ରହିଲା ।

ଅନାମିକା ପୁଣି କହିଲେ— ଆଉ ଯାହାକଲେ ମଧ୍ୟ କିଛି ହେବନି ବୋଧହୁଏ ?

ରେଖା କହିଲା— ସେ ହେବାରେ କିଛି ମୂଲ୍ୟ ଅଛି ମାଉସୀ ?

—ତା ସତ । ଝିଅ ସ୍କୁଲରେ ଭର୍ତ୍ତି......

— କେବଠାରୁ ।

ବାୟୁମଣ୍ଡଳକୁ ହାଲୁକା କରିବାକୁ କହିଲେ ଅନାମିକା— ତମର ମା' ବାପା ଭଲ ଅଛନ୍ତି ?

— ଏ ପରିସ୍ଥିତିରେ ଯେତେ ଭଲ ରହିବା ସମ୍ଭବ । ଗୋଟାଏ ଶୁଝା ହୋଇଯାଇଥିବା ଋଣର ବୋଝ ପୁଣି ଯଦି ନୂଆ କରି ମୁଣ୍ଡରେ ଲଦାହୁଏ, ତା'ହେଲେ କ'ଣ ଭଲ ରହିବା ସମ୍ଭବ ?

ଅନାମିକା ଆଉ କ'ଣ କହିବେ ? ଏହି ନିଷ୍ପ୍ରଭ ମୃତକଳ୍ପ ପରିସ୍ଥିତିରେ କେଉଁ କଥା କହିବେ ?

ରେଖା ପୁଣି କହିଲା— ମଝି ମଝିରେ ଶମ୍ପାକୁ ଦେଖୁଛି—

'ଶମ୍ପା— '

'ହଁ । ଶୁଣିଥିଲି ତାକୁ ଖୋଜି ପାଉ ନାହାନ୍ତି । ସେଥିପାଇଁ ଭାବିଲି ଆପଣ ତ ଏଠାକୁ ଆଜି ଆସୁଛନ୍ତି, ଖବରଟା ଦେଇଦେବି ।

ଅନାମିକା ଟିକିଏ ହସି କହିଲେ— ଠିକ୍ ତମରି ପରି ତାକୁ ମଧ୍ୟ ଦିନେ ଆବିଷ୍କାର କରିଥିଲି ।

— ଓଃ ! ଖବର ପାଇଛନ୍ତି ?

— ହଁ, କିନ୍ତୁ ତମେ ତାକୁ ମଝିରେ ମଝିରେ କେଉଁଠି ଦେଖୁଛ ?

— ମୁଁ ଯୋଉ ଅଫିସ୍‌ରେ କାମ କରୁଛି, ସେହି ଅଫିସ୍‌ର ବିଲ୍‌ଡିଂରେ କୋଉ ଗୋଟିଏ ଜାଗାରେ ଶମ୍ପା ମଧ୍ୟ କାମ କରୁଛି ।

ଅନାମିକା ଶମ୍ପାର ଖବର ଜାଣିଥିଲେ ।

ଅନାମିକା ରେଖାର ଖବରଟା ନୂଆ ଜାଣିଲେ । କହିଲେ— ତମେ କାମ କରୁଛ ?

— ନ କଲେ କେମିତି ଚଳିବ ମାଉସୀ ? ବାପା ରିଟାୟାର୍ କଲେଣି, ତା'ପରେ ପୁଣି ଏ ବୋଝ—

— ଅଧିକ ସମସ୍ୟା ସମାଧାନରେ କ'ଣ ଏ ବୋଝ ହାଲୁକା ହେବ ବୋହୂ ?

— ଜାଣିଛି ହେବନି । ତେବେକେ କଠୋର ବାସ୍ତବ ବୋଲି ତ ଗୋଟାଏ କଥା ଅଛି ମାଉସୀ ! ସେଠି ସବୁ ଦରକାର ।

ଅନାମିକା ଏବେ ଟିକିଏ କଠିନ ଗଳାରେ କହିଲେ— ସେ ଲକ୍ଷ୍ମୀଛଡ଼ା ହତଭାଗ୍ୟ ପୁଅଟା କ'ଣ ତା'ର ସ୍ତ୍ରୀ-କନ୍ୟାର ଖର୍ଚ୍ଚଟା ମଧ୍ୟ ଦେଉନି ? ସେଇଟା ଦେବାକୁ ତ ସେ ବାଧ୍ୟ !

ରେଖା ହସିପକାଇଲା, କହିଲା— ନା ମାଉସୀ, ଆପଣମାନଙ୍କର ପୁଅ ଏତେ ଲକ୍ଷ୍ମୀଛଡ଼ା ହତଭାଗ୍ୟ ନୁହଁନ୍ତି ଯେ, ଯାହା କରିବାକୁ ବାଧ୍ୟ, ତା' କରିବେନି । ବରଂ ଟଙ୍କା ଦେବାକୁ ସେ ବହୁତ ସାଧସାଧନା କରିଛନ୍ତି ।

ଅନାମିକା ଶାନ୍ତ ହୋଇଗଲେ ।

କହିଲେ— ଓଃ ! କିନ୍ତୁ ତମକୁ ତ ଝିଅକୁ ମଣିଷ କରିବାକୁ ପଡ଼ିବ ?

ଅନ୍ୟଆଡ଼କୁ ମୁହଁ ଫେରାଇ ରେଖା କହିଲା— ମଣିଷ ହବ ନିଶ୍ଚେ । ଗରିବ ଝିଅ ଭଳି ମଣିଷ ହେବ ।

ଅନାମିକା ଟିକିଏ ତୁନିହୋଇ ରହି କହିଲେ— ତମମାନଙ୍କର ଚିତ୍ତର ଦାରିଦ୍ର୍ୟ ସେମାନଙ୍କ ଜୀବନରେ ଏହି ଦାରିଦ୍ର୍ୟକୁ ଡାକି ଆଣିଲା !

ରେଖା କହିଲା— ଆମର ଭାଗ୍ୟ ! ଅଥବା ସେମାନଙ୍କର ହିଁ ଭାଗ୍ୟ !

— ରେଖା, ଆମେମାନେ ସେ ଯୁଗକୁ ଦେଖିଛୁ, ଯେଉଁ ଯୁଗରେ ସ୍ତ୍ରୀଲୋକମାନେ ପଡ଼ି ପଡ଼ି ମାଡ଼ ଖାଉଥିଲେ । ଆମେ ତମମାନଙ୍କ ଯୁଗକୁ ମଧ୍ୟ ଦେଖିଛୁ । ତଫାତ୍‌ଟାକୁ ବେଶୀ ବୁଝିପାରୁନୁ । ଯୁଗର ହାଉଆ, ଯୁଗର ବିଦ୍ୟା, ବୁଦ୍ଧି, ବିଚକ୍ଷଣତା, କିଛିହେଲେ ତ କାମରେ ଲାଗୁନି ।

ରେଖା ଦୃଢ଼ଗଳାରେ କହିଲା— ଲାଗିବାକୁ ଆହୁରି ହୁଏତ ଦି' ଚାରିଟା ଯୁଗ ଲାଗିଯିବ ମାଉସୀ !

ଆହୁରି ବେଶୀ ମୃଦୁ ଗଳାରେ ଅନାମିକା କହିଲେ— ହୁଏତ ତମମାନଙ୍କର କଥା ହିଁ ଠିକ୍ । ହୁଏତ ସେହି ଯୁଗ ଆସୁଛି— ଯେତେବେଳେ କେହି କାହାରି ପାଖରେ ହୃଦୟର ପ୍ରତ୍ୟାଶା କରିବେନି—

— 'ହୃଦୟ !' ରେଖା ହସି ପକାଲା । କହିଲା— ଆରେ ବାପା, ସେସବୁ ଦୁର୍ଲଭ ଦାମିକା ଜିନିଷ କ'ଣ ଆଉ ବ୍ୟବହାରରେ ଲଗା ଯାଇପାରିବ ମାଉସୀ ? ସୁନା ଭରି ତିନିଶହ ଟଙ୍କାକୁ ଉଠିବା ପରେ ବଜାରରେ କେମିକ୍ୟାଲ୍ ଗହଣା ଭର୍ତ୍ତି ହୋଇଯାଇଛି ଦେଖୁଛନ୍ତି ତ ? ଏବେ ଆଉ ତା' ପିନ୍ଧିବାକୁ କେହି ଲାଜ ଅନୁଭବ କରୁନାହାନ୍ତି । ସୁନା, ମୁକ୍ତା, ହୀରା ନ ଜୁଟିଲେ କାଚ ମାଳି, ସୀସାରେ ହିଁ କାମ ଚଳେଇବ, ଏହା ହିଁ ବ୍ୟବସ୍ଥା ହୋଇଛି । ଅଳଙ୍କାରଟା ତ ରହିଲା ?

— କିନ୍ତୁ ସେ ଅଳଙ୍କାରର କି ମୂଲ୍ୟ ?

— 'କିଛି ନାହିଁ ।'...... ଶାନ୍ତ ଗଳାରେ ରେଖା କହିଲା— ମୂଲ୍ୟବୋଧଟା ହିଁ ଯେ ବଦଳି ଯାଉଛି ।

ସାହିତ୍ୟସଭାରେ ମଧ୍ୟ କିଛି ଆକର୍ଷଣୀୟ ଆୟୋଜନ ରଖିବାକୁ ପଡ଼େ । କେବଳ ସାହିତ୍ୟରେ ଲୋକେ ଜମାହୁଅନ୍ତି ନାହିଁ । ଏତେବେଳହେଲା ସେଥିପାଇଁ

ଷ୍ଟେଜ୍‌ରେ ଜଣେ ନାମଜାଦା ମୂକାଭିନେତାଙ୍କର ମୂକ ଅଭିନୟ ଚାଲିଥିଲା । ବୋଧହୁଏ କୌଣସି କୌତୂହଳର ଘଟଣାର ଅଭିବ୍ୟକ୍ତି । ଶେଷ ହେଲାମାତ୍ରେ ହସର ସ୍ରୋତ ଆଉ ହାତତାଳିର ସ୍ରୋତ ବହିଗଲା ।

ଏହାପରେ ବାଜିବ ଇଲେକଟ୍ରିକ୍ ଗୀଟାର ।

ଅନାମିକା କହିଲେ— ସେ ଯମଯନ୍ତ୍ରଣାଟା ଆଉ ସହି ପାରିବିନି, ଏଥର ଉଠୁଛି ।

—ମୁଁ ମଧ୍ୟ ଯିବି ।...... ରେଖା କହିଲା— ଯାଉଛି ମାଉସୀ ! ଶର୍ମାର ଖବର ତା'ହେଲେ ଆପଣ ଜାଣିଥିଲେ ! ଈଶ୍ୱର କରନ୍ତୁ ତା'ର ବିଶ୍ୱାସଟା ବଞ୍ଚିରହୁ ।

ରେଖା ଚାଲିଗଲା ।

ଅନାମିକା ପ୍ରାୟ ଅବାକ୍ ହୋଇ ଚାହିଁ ରହିଥିଲେ । ମଣିଷର ଏତେ ଚଞ୍ଚଳ ଏତେ ପରିବର୍ତ୍ତନ ହୋଇପାରେ ! ଯା ଆଗରୁ ଯେଉଁ ରେଖାକୁ ସେ ଦେଖିଛନ୍ତି ବାହାଘରମାନଙ୍କରେ, ବା କୌଣସି ଉତ୍ସବ-ସଭାରେ, ଏ ଝିଅ କ'ଣ ସେଇ ରେଖା ? ତା' ମୁହଁର ସେଇ ତୈଳାକ୍ତ ଅହମିକାର କୋଟିଂଟା ଧୋଇ ପୋଛି ହୋଇଗଲା କିପରି ?

ଠିକ୍ ନମ୍ର ନତମୁଖ ମଧ୍ୟ ହୋଇନି ସେ ।

ଆଉ ଏକ ଧରଣର ଅହମିକାର ପ୍ରଲେପ ତା' ମୁହଁରେ ଲାଗିଛି । ବିଷଣ୍ଣତା ସଙ୍ଗେ ଅନମନୀୟତାର ଭାବ ।

ହୁଏତ ଏଇଟା ଠିକ୍ । ତେବେବେଳେ ମନ ଭିତରେ ଯେପରି ହାହାକାର ଉଠେ । ମାଧୁରୀ ହେରିକା କ'ଣ ତା'ହେଲେ ଭୁଲ୍ ?

ହୁଏତ ସେମାନେ ହିଁ ଭୁଲ୍ ।

ନ ହେଲେ ଏ ଖାତାଟାକୁ ସେ ପ୍ରାଣଧରି ଛିଣ୍ଡାଇ ଫୋପାଡ଼ି ଦେଇ ପାରିନି, ପୋଡ଼ି ଦେଇ ପାରିନି, ସର୍ବଶେଷରେ ଟେକି ଦେଇଛି ତା'ରି ହାତକୁ । ପ୍ରତ୍ୟେକ ପୃଷ୍ଠାରେ ଲେଖାହୋଇ ରହିଛି ଯାହାର ନାଁ ।

କିନ୍ତୁ ବରର ହାତର ଲେଖାରେ ପ୍ରତ୍ୟେକ ପୃଷ୍ଠାରେ ସାହିର ଗୋଟିଏ ଝିଅର ନାଁ ଲେଖା ହୋଇଥିବା ଖାତାଟିକୁ ତ ଚିରଦିନ ସହି ଆସିଛି ମାଧୁରୀ । ଚିରଦିନ ତ ମାଧୁରୀ ସବୁ ସହି ଯାଇଥିବା ବୁଡ଼ୀ ହୋଇଯାଇଛି !

ହେଲେ ବକୁଳ ତ ଏ ଖାତାଟିକୁ କୌଣସିମତେ ଧୈର୍ଯ୍ୟ ଧରି ପୂରା ପଢ଼ି ପାରୁନି । ବକୁଳ କେବଳ ପୃଷ୍ଠା ଓଲଟାଉଛି । ବକୁଳର ଜମା ମନ ଲାଗୁନି ।

ମଝିରେ ମଝିରେ କଞ୍ଚା ଭାଷାର ଉଚ୍ଛ୍ୱସିତ ଭାବପ୍ରବଣତା ଦେଖି ବକୁଳକୁ ହସ ଲାଗିଯାଉଛି ।

'ବକୁଳ ବକୁଳ ! ତମେ ମୋର ଜୀବନର ସ୍ଥିର ଲକ୍ଷ୍ୟ ! ତମେ ମୋର ଧ୍ରୁବତାରା ! ମୋର ସବୁକିଛି ଭିତରେ ତମେ ଅଛ !...... ବକୁଳ...... ଯେତେବେଳେ ଏକା ଥାଏ, ମୁଁ ତୁନି ତୁନି ହୋଇ ତମରି ନାଁ ଉଚ୍ଚାରଣ କରେ...... ।'

ପୃଷ୍ଠାର କୋଣରେ ଲେଖା ହୋଇଥିବା ସାଲ ଓ ତାରିଖଟା ଦେଖିଲା ବକୁଳ । ଟିକିଏ ହସି ବକୁଳ ଖାତାଟିକୁ ବନ୍ଦ କଲା ।

ବକୁଳ ଭାବିଲା...... ରେଖା ଠିକ୍ କହିଛି– ଯେଉଁ ବସ୍ତୁ ଏକସମୟରେ ପରମ ମୂଲ୍ୟବାନ ଥାଏ ଆଉ ଏକ ସମୟରେ ତାହା ନିତାନ୍ତ ମୂଲ୍ୟହୀନ ହୋଇଯାଏ, ପ୍ରତିକ୍ଷଣରେ ମୂଲ୍ୟବୋଧର ପରିବର୍ତ୍ତନ ଘଟୁଛି ।

## ।। ୩୬ ।।

'ବମ୍ବେରେ ବଙ୍ଗଳା ଚିତ୍ରାଭିନେତ୍ରୀଙ୍କର ଶୋଚନୀୟ ପରିଣାମ !

ହଁ, ଖବର । ତେବେ ଦୈନିକ ଖବରକାଗଜର ନୁହେଁ । ଗୋଟାଏ ବାଜେମାର୍କା ସାପ୍ତାହିକରେ ଭାରି ଜାକଜମକରେ ବାହାରିଛି ଖବରଟା । କାରଣ ଏ ପତ୍ରିକାର ମୂଳ ଉପଜୀବ୍ୟ ହେଉଛି ସିନେମା-ଘଟିତ ରସାଳ ସମ୍ବାଦ । ଏମାନେ ଚିତ୍ରଜଗତର ତୁଚ୍ଛଠାରୁ ଉଚ୍ଚ ପର୍ଯ୍ୟନ୍ତ ସବୁ ଖବର ସଂଗ୍ରହ କରିପକାଇ ନିଜ ନିଜର ରୁଚି ଅନୁଯାୟୀ ଭାଷାରେ ଏବଂ ଭଙ୍ଗିମାରେ ପରିବେଷଣ କରି କାଗଜର ବିକ୍ରି ବଢ଼ାନ୍ତି । ଅତଏବ ଏମାନଙ୍କ ପାଖରେ ନାମଜାଦା ଆର୍ଟିଷ୍ଟମାନଙ୍କର ପ୍ରଣୟ ଏବଂ ପ୍ରଣୟଭଙ୍ଗର ଖବର ମଧ୍ୟ ଯେପରି ଆହ୍ଲାଦ ଯୋଗାଏ, ଆତ୍ମହତ୍ୟାର ଖବର ମଧ୍ୟ ଯୋଗାଏ ।

ଦୁଇ ତିନିଟା ସଂଖ୍ୟା ଏଇଲେ ଏ କଥାରେ ଭର୍ତ୍ତି କରାଯିବ । ବାଉଁଶ ଓ ଛଣର ଛାଞ୍ଚ ଉପରେ ଖାଲି ମାଟିର ପ୍ରଲେପ ନୁହେଁ, ରଙ୍ଗ-ପାଲିସ୍ ମଧ୍ୟ ଏମାନଙ୍କର ଆୟତ୍ତରେ ରହିଛି । ହଁ, ଏମାନଙ୍କୁ ମଧ୍ୟ ଏକପ୍ରକାର ଶିଳ୍ପୀ କୁହାଯାଏ ।

ଏ ପତ୍ରିକା ପ୍ୟାକେଟ୍ ଖୋଲି ପଢ଼ିବାର କଥା ନୁହେଁ, କିନ୍ତୁ ଏ ଡାକରେ ନିହାତି କିଛି ଚିଠିପତ୍ର ଆସିନି ବୋଲି 'ଅନାମିକା ଦେବୀଙ୍କ' ନାଁରେ ସଯତ୍ନରେ ପ୍ରେରିତ ଏହି ବାଜେ ପତ୍ରିକାଟାର କଭର୍ ଖୋଲି ପୃଷ୍ଠା ଓଲଟାଉଥିଲେ ବକୁଳ, ହଠାତ୍ ଗୋଟିଏ ପୃଷ୍ଠାରେ ଦୃଷ୍ଟି ଅଟକିଗଲା ।

ଏ ଚିତ୍ରଟା କାହାର ?

ମଦିର ହାସ୍ୟମୟ ଏ ମୁହଁର ଚିତ୍ରଟା କ'ଣ ଆଗେ କେଉଁଠି ଦେଖିଛି ବକୁଳ ? କିନ୍ତୁ ସେତେବେଳେ ଏମିତି ମଦିର ହାସ୍ୟର ଛାପ ନ ଥିଲା ।

ହଁ, ଏ ମୁହଁକୁ ବକୁଳ ଦେଖିଛି, କିନ୍ତୁ ଆଉ କେବେହେଲେ ଦେଖିନି । ଦେଖା ହେବନି କୌଣସିଦିନ ।

ସେହି ଚିତ୍ର ତଳେ ଛପା ଯାଇଥିବା ସମ୍ବାଦଟାକୁ ବାରମ୍ବାର ପଢ଼ିଲା ବକୁଳ, କିନ୍ତୁ ସେ ଯେମିତି ବୁଝିପାରୁ ନ ଥିଲା । ଛାଇ-ଛାଇ ଲାଗୁଛି ।

'ବମ୍ବେରେ ବଙ୍ଗଳା ଚିତ୍ରାଭିନେତ୍ରୀଙ୍କର ଶୋଚନୀୟ ଜୀବନାବସାନ !...... ବମ୍ବେର ବିଖ୍ୟାତ ନବାଗତ । ଚିତ୍ରାଭିନେତ୍ରୀ ଲାସ୍ୟମୟୀ ଯୌବନବତୀ ଶ୍ରୀମତୀ ରୂପଛନ୍ଦା ଗତ ସୋମବାର ଦିନ ତାଙ୍କର ନିଜସ୍ୱ ଫ୍ଲାଟ୍‌ରେ— ଅତିରିକ୍ତ ମାତ୍ରାରେ ନିଦ ବଟିକା ଖାଇ ଆତ୍ମହତ୍ୟା କରିଛନ୍ତି ।......

ଏହି ଆତ୍ମହତ୍ୟାର କାରଣ ଅଜ୍ଞାତ ।

ଶ୍ରୀମତୀ ରୂପଛନ୍ଦା ତାଙ୍କର ଫ୍ଲାଟ୍‌ରେ ଏକାକୀ ବାସ କରୁଥିଲେ ମଧ୍ୟ ବହୁଲୋକଙ୍କ ଯା'ଆସ ଥିଲା । ଶ୍ରୀମତୀ ରୂପଛନ୍ଦାଙ୍କ ବେପରୁଆ ଉଚ୍ଛୃଙ୍ଖଳ ଜୀବନଯାତ୍ରା ପଦ୍ଧତି, ପରିଚିତ ସମାଜକୁ କ୍ରମଶଃ ବିରୂପ କରି ପକାଉଥିଲା । ରୂପଛନ୍ଦା ସେଥିକୁ ଜମା ଖାତିର କରୁ ନଥିଲା ।

ତେବେ ସମ୍ପ୍ରତି କେହି କେହି ତାଙ୍କ ଜୀବନର ଗୋଟିଏ ରହସ୍ୟମୟ ଘଟଣାର କଥା ଉଲ୍ଲେଖ କରିଛନ୍ତି । ଆତ୍ମହତ୍ୟାର ଦୁଇଦିନ ପୂର୍ବରୁ କୁଆଡ଼େ ସେ ଜୁହୁର ଉପକୂଳରେ ଏକ ନିର୍ଜନ ପ୍ରାନ୍ତରେ ରାତ୍ରି ପର୍ଯ୍ୟନ୍ତ ଏକାକୀ ବସିଥିଲେ ଏବଂ ସେଠାରେ କୁଆଡ଼େ ଥରେ ଜଣେ ଗେରୁଆଧାରୀ ସାଧୁ ଦେଖା ଦେଇଥିଲେ ।

ସେହି ସାଧୁଙ୍କ ସଙ୍ଗେ ଏ ମୃତ୍ୟୁର କୌଣସି ଯୋଗ ଅଛି କି ନାହିଁ ସେ ରହସ୍ୟ ଅଜ୍ଞାତ, ପୁଲିସ୍ ସେହି ସାଧୁଙ୍କୁ ଅନୁସନ୍ଧାନ କରୁଛନ୍ତି ।......

ଶ୍ରୀମତୀ ରୂପଛନ୍ଦାଙ୍କର ନୈତିକ ଚରିତ୍ର ଯାହା ହୋଇଥାଉ, ବ୍ୟକ୍ତିଗତ ଭାବରେ ସେ ନାନା ସଦ୍‌ଗୁଣର ଅଧିକାରିଣୀ ଥିଲେ । ଦୁଃସ୍ଥ ଅଭାବଗ୍ରସ୍ତଙ୍କ ପ୍ରତି ତାଙ୍କର ପ୍ରବଳ ସହାନୁଭୂତି ରହିଥିଲା । ତାଙ୍କର ଏହି ଦୁର୍ବଳତାର ସୁଯୋଗ ନେଇ ଅନେକ ତାଙ୍କୁ ପ୍ରତାରଣା ମଧ୍ୟ କରିଛନ୍ତି, ଶ୍ରୀମତୀ ରୂପଛନ୍ଦାଙ୍କ ଦାନର ହାତ ଅକୁଣ୍ଠ ହିଁ ରହିଥିଲା । ପରବର୍ତ୍ତୀ ସଂଖ୍ୟାରେ 'ରୂପଛନ୍ଦାଙ୍କ ମୃତ୍ୟୁରହସ୍ୟ' ବିଶଦଭାବରେ ଜଣାଇବୁ ।

× × × × ×

ଜୀବନର ପ୍ରାରମ୍ଭ ଦେଖି କିଏ କହି ପାରିବ ସେ ଜୀବନ ଯାଇ କେଉଁଠାରେ ପହଞ୍ଚିବ ? କିପରି ଶେଷ ହେବ ?

ଜଲପାଇଗୁଡ଼ିର ସେଇ ନମ୍ର ନତମୁଖୀ ବଧୂ ନମିତା, ବମ୍ବେର ଏକ ବିଳାସ ବହୁଳ ଫ୍ଲାଟ୍‌ରେ, ଡନ୍‌ଲୋପିଲୋ ଗଦିରେ ଶୋଇ ନିଦ ଔଷଧ ଖାଇ ଚିରଦିନ ପାଇଁ ଶୋଇପଡ଼ିଲା ।

କିନ୍ତୁ ନମିତା ଯାହା ଯାହା ଚାହିଁଥିଲା ସବୁ ତ ଆହରଣ କରି ପାରିଥିଲା । ଅର୍ଥ, ପ୍ରତିଷ୍ଠା, ନାମ, ଖ୍ୟାତି, ସ୍ୱାଧୀନତା । ସେ ଚାହିଁଥିଲା ତା'ର ପୁରୁଣା

ଜଗତକୁ ଦେଖାଇ ଦେବାକୁ ଯେ ସେ ତୁଚ୍ଛ ନୁହେଁ, ମୂଲ୍ୟହୀନ ନୁହେଁ । ତେବେକେ ନମିତା ସେ ନିଦ-ବଟିକାଯାକ କିଣିବାକୁ ଯାଇଥିଲା କାହିଁକି ?

ଅସ୍ପଷ୍ଟ ଭାବରେ ମନେ ପଡୁଛି ସେହି ନତମୁଖୀ ଝିଅଟା କଥା, ଯେ, କହିଥିଲା, ମୋ ବିଷୟରେ ଗଳ୍ପ ଲେଖିବେ ? ମୁଁ ଆପଣଙ୍କୁ ପ୍ଲଟ୍ ଦେଇପାରେ ।

ଅନାମିକା ଦେବୀ ସେହି ଆବେଦନକୁ ହସି ଉଡ଼ାଇ ଦେଇଥିଲେ ବୋଲି କ'ଣ ନମିତା ଆହୁରି ଜଟିଳ ପ୍ଲଟ୍‌ର ଯୋଗାଣ ଦେବାକୁ ଆସିଥିଲା ?

କିନ୍ତୁ ଏହି ଜଟିଳ ପ୍ଲଟ୍‌ଟାକୁ ଧରି କ'ଣ ଲେଖିବାକୁ ବସିବେ ଅନାମିକା ଦେବୀ ? କ'ଣ ଲେଖିବେ ?

ଆଜିର ସମାଜରେ କ'ଣ ଏ ପ୍ଲଟ୍ ନୂଆ ହୋଇ ରହିଛି ? କୋଉଟା ନୂଆ ହୋଇ ରହୁଛି ? ନୂଆ ହୋଇ ଆସୁଛି, ମୁହୂର୍ତ୍ତକରେ ପୁରୁଣା ହୋଇଯାଉଛି । ଯା ତ ସବୁବେଳେ ଘଟୁଛି ।

ତେବେକେ ବକୁଳ ଯେପରି ଗୋଟାଏ ଅପରାଧର ଭାର ଅନୁଭବ କରୁଥିଲା । କିନ୍ତୁ ନିୟତିକୁ କ'ଣ କେହି ଅଟକାଇ ପାରନ୍ତି ?

ବକୁଳ ବସିଥିଲା ଅନେକବେଳ । ହଠାତ୍ ତଳମହଲାରେ ଭଁ ଭଁ ହୋଇ ଖୁବ୍ ଜୋର୍‌ରେ ଶଙ୍ଖ ବାଜିଉଠିଲା ।

ଏମିତି ଦିପହରର ଖରାରେ ହଠାତ୍ ଶଙ୍ଖର ଶବ୍ଦ ଶୁଭୁଛି କାହିଁକି ? ଘରେ କ'ଣ କିଛି ମଙ୍ଗଳ-ଅନୁଷ୍ଠାନର କଥା ଥିଲା ? ଅନ୍ୟମନସ୍କ ବକୁଳ ସେ ଖବର କାନରେ ଶୁଣିନି, ଅଥବା ଶୁଣି ଭୁଲିଯାଇଛି ?

କିନ୍ତୁ କାହାର ବା କ'ଣ ହୋଇପାରେ ?

ବାହା, ବ୍ରତ, ଅନ୍ନପ୍ରାଶନ— ଯାର ଯୋଗ୍ୟ କିଏ ଅଛି ?...... ଅଲକାର ଝିଅର ବାହାଘର...... ଫାହାଘର ହେଉନି ତ ? ହୁଏତ ବକୁଳକୁ କହିବା ଦରକାର ବୋଲି ଭାବିନି ।

ଆହା ସେଇଆ ହୋଇଥାଉ ।

ତା ନ ହେଲେ ସେ ଝିଅଟା ମଧ୍ୟ ଗୋଟାଏ ଜଟିଳ ଗଳ୍ପର ପ୍ଲଟ୍ ହୋଇଯିବ, ବକୁଳ କ'ଣ ସେ ଶଙ୍ଖଶବ୍ଦରେ ତଳକୁ ଓହ୍ଲାଇଯିବ ? ହସି ହସି କହିବ— କ'ଣ ଯେ, ମତେ ବାଦ୍ ଦେଇ ଜୋଇଁ ଆଣୁଛ ?

ସେଇଟା ସ୍ୱାଭାବିକ ହେବ ? ନା ! ସଜେଇଲା ସଜେଇଲା ଭଳି ଦିଶିବ ?

ଯାହାହେଉ, ବକୁଳ ଓହ୍ଲାଇ ଆସିଲା । ଆଉ ଓହ୍ଲାଇ ଆସି ସ୍ତବ୍ଧ ହୋଇଗଲା । ସେ ସ୍ତବ୍ଧତା ସେତେବେଳେ ମଧ୍ୟ ଭାଙ୍ଗିଲାନି, ଯେତେବେଳେ ଗୋଟାଏ ଝଡ଼ର ମେଘ ଆସି ଦେହ ଉପରକୁ ତେଇଁ ପଡ଼ିଲା ।

—ପିଉସୀ !

ବକୁଳ ଅବାକ୍ ହୋଇ ଦେଖୁଥିଲା, ବଡ଼ ଅଗଣାରେ ଘରର ସମସ୍ତେ ଆସି ଠିଆ ହୋଇଛନ୍ତି ଖାଲି ଅଳକା ଆଉ ଅପୂର୍ବ ବାଦ ପଡ଼ିଛନ୍ତି । ବଡ଼ ଭାଉଜ ଅଛନ୍ତି, ମଝିଆ ଭାଉଜଙ୍କ ବୋହୂ ଆଉ ଝିଅମାନେ ଅଛନ୍ତି । ରୁଗ୍ଣ ସାନମଝିଆ ଭାଉଜ ମଧ୍ୟ ଅଛନ୍ତି । ନାନା ବୟସର କେତେଗୁଡ଼ିଏ ପୁଅଝିଅ ଅଛନ୍ତି ।

ତା'ଛଡ଼ା ଅନେକଗୁଡ଼ିଏ ଚାକରାଣୀ— କାମ କଲାବାଲା ଅଛନ୍ତି ।

ଘରେ ଏତେ ଚାକରାଣୀ ଅଛନ୍ତି ବୋଲି ଜାଣି ନ ଥିଲା ବକୁଳ ।

ଜାଣି ନ ଥିଲା ଏତେ ପିଲା ଅଛନ୍ତି ।

ହଠାତ୍ ବକୁଳର ମନେପଡ଼ିଲା— ମୁଁ କ'ଣ ବା ଜାଣିଛି ? କେତେ ଟିକିଏ ବା ଚେଷ୍ଟା କରେ ଜାଣିବାକୁ ?

ଶମ୍ପାର ଆଖିରେ ଲୁହ, ଶମ୍ପାର ମା'-ବାପାଙ୍କ ଆଖିରେ ଲୁହ । ଏମିତିକି ଅଗଣା ମଝିରେ ଯାହାକୁ ଗୋଟାଏ ହାତ ଥିବା ଭାରୀ ଚଉକିରେ ବସାଇ ରଖାଯାଇଛି, ସେ ସତ୍ୟବାନର ଆଖିରେ ମଧ୍ୟ ଯେପରି ଲୁହ ।

ଖାଲି ବକୁଳର ଆଖି ଯେପରି ଶୁଖିଲା ହିଁ ରହିଛି, ସେ କଥା ନିଜେ ଅନୁଭବ କରୁଛି ବକୁଳ ।

ହଠାତ୍ ନିଜକୁ କେମିତି ଅଦରକାରୀ ଲାଗୁଛି ବକୁଳକୁ । ଯେମିତି ଏଠାରେ ବକୁଳର କୌଣସି ଭୂମିକା ନାହିଁ ।......

ଅଥଚ ରହି ପାରିଥାନ୍ତା । ବକୁଳ ସେ ସୁଯୋଗ ନେଇ ନାହିଁ ।

ଜାଣି ଜାଣି ତ ନେଇନି, ତେବେକେ ବକୁଳର ମୁହଁଟା ଭାରି ଅପ୍ରସ୍ତୁତ ଅପ୍ରସ୍ତୁତ ମନେ ହେଉଛି ।

ଦେଖିଲେ ଲାଗୁଛି ଆଜିର ଏ ନାଟ୍ୟଦୃଶ୍ୟର ନାୟିକା ହେଉଛନ୍ତି ସ୍ୱୟଂ ବକୁଳର ସାନଭାଉଜ । ଏଇଟା ତ ଠିକ୍ ହେଲା, ବକୁଳ ତ ଏହାହିଁ ଚାହିଁଥିଲା । ତେବେକେ ବକୁଳ ଏକ ଭୟଙ୍କର ଶୂନ୍ୟତା ଅନୁଭବ କରୁଛି । ଯେମିତି ବକୁଳର ଗୋଟାଏ ବଡ଼ ଜିନିଷ ପାଇବାର କଥା ଥିଲା, ବକୁଳ ସେଇଟାକୁ ଅବହେଳା କରି ହରାଇଛି ।

ବକୁଳ ବୋକା ପାଲଟି ଯାଇଛି ।

ବକୁଳ ଅବାକ୍ ହୋଇ ଦର୍ଶକର ଭୂମିକାରେ ଠିଆହୋଇ ଦେଖୁଛି ସାନଭାଉଜ ତାଙ୍କର ସଦ୍ୟଲବ୍ଧ ସ୍ୱାମୀଙ୍କ ଆଗରେ ଜଳଖିଆ ଥାଳି ଧରି ଠିଆ ହୋଇଛନ୍ତି ।

ଦେଖୁଛି, ସାନଭାଇନା ଅନୁରୋଧ କରୁଛନ୍ତି— ଆହା ବେଶୀ ପୁରି କ'ଣ ଯେ ? ଅଳ୍ପଟିକିଏ ତ ଖାଇଦିଅ । ଭାତ ଖାଇଲାବେଳକୁ ଡେରି ହେବ !

ଏହା ପୂର୍ବରୁ ନାଟକର ଯେଉଁ ଦୃଶ୍ୟଟି ଅଭିନୀତ ହୋଇଯାଇଛି, ସେଇଟା ବକୁଳ ଜାଣିନି, ସେଥିପାଇଁ ବକୁଳ ବୋକା ପାଲଟି ଯାଉଛି ।

ଗୋଟାଏ ବିରାଟ ପାହାଡ଼ ଠିଆହୋଇଥିଲା ଗୋଟା ରାସ୍ତାଟାକୁ ରୋକିଦେଇ । ସମସ୍ତ ଶୁଭକୁ ରୋଧ କରିଦେଇ । ସେହି ଅଟଳ ଅଚଳକୁ ଅତିକ୍ରମ କରାଯାଇ ପାରିବ, ଏ ବିଶ୍ୱାସ କାହାରି ନ ଥିଲା ।

ଦୁର୍ଲଙ୍ଘ୍ୟ ବାଧା । କାରଣ ବାଧାଟା ଥିଲା ମନର ।

ମନର ବାଧା ହେଉଛି ଭାଗ୍ୟର ସମସ୍ତ ପ୍ରତିକୂଳଠାରୁ ପ୍ରବଳ । ମଣିଷ ସବୁଠାରୁ ଅଧିକ ନିରୁପାୟ ହୁଏ ନିଜ ମନ ନିକଟରେ । ସେ ଜଗତର ଅନ୍ୟ ସମସ୍ତ କିଛି ଉପରେ ଶକ୍ତିଶାଳୀ ପ୍ରଭୁ ହୋଇଯାଇପାରେ, କିନ୍ତୁ ନିଜ ପାଖରେ ଶକ୍ତିହୀନ ଦାସ ମାତ୍ର ।

ସେଥିପାଇଁ ଅଭିମାନର ପାହାଡ଼ ଯେତେବେଳେ ନିଶ୍ଚଳ ହୋଇ ଠିଆ ହୋଇ ରହିଛି ଅଲଙ୍ଘ୍ୟର ଭୂମିକା ନେଇ, କେହି ଥରଟେ ଧକ୍କା ଦେଇ ଦେଖିବାକୁ ଚେଷ୍ଟା କରିନାହାନ୍ତି– ଅତିକ୍ରମ କରି ହେବକି ନାହିଁ ଦେଖେ । ପାହାଡ଼ର ସେ ପାଖର ଲୋକ କରିନାହାନ୍ତି କି ଏ ପାଖର ଲୋକ କରିନାହାନ୍ତି ।

ଅଥଚ ଭିତରେ ଭାଙ୍ଗି ଆସିଲାଣି, ଅନମନୀୟତାର ଖୋଳପାଟା ଖୋଲିଯାଇ ପଡ଼ିଗଲାଣି । ତେବେକେ ଦୂରତ୍ୱର ବ୍ୟବଧାନଟା ଦୂର ହେଉ ନାହିଁ ।

ଆଉ ଗୋଟାଏ କଥା– ମନ ଅନନ୍ତ ରହସ୍ୟମୟ !

କେତେବେଳେ ମୁହୂର୍ତ୍ତକରେ ପରିବର୍ତ୍ତନ ଘଟେ ତା'ର । ଯାହାକୁ ଆମେ ଭାବିଲେ ଦୁର୍ଲଙ୍ଘ୍ୟ ପଥରର ପାହାଡ଼, ସହସା ତାହା ମେଘର ପାହାଡ଼ ପରି ନିଶ୍ଚିହ୍ନ ହୋଇଯାଏ, ସେତେବେଳେ ଅଭିମାନ ହୋଇଯାଏ ଆବେଗ । ଯାହା କୌଣସି ପ୍ରକାର ପାରି କରିହେବନି ବୋଲି ନିଶ୍ଚେଷ୍ଟ ହୋଇ ବସି ରହିଛେ, ସେତେବେଳେ ତାହା କେତେ ଅନାୟାସରେ ହିଁ ପାରି କରିଦେଇ ହେବ ।

ତା' ନ ହେଲେ ଶମ୍ପାକୁ କେମିତି ତା ବାପାଙ୍କ କୋଳରେ ମୁହଁ ରଖି ବସିରହିବା ଦେଖାଗଲା, ଆଉ ତା'ର ବାପାଙ୍କୁ ବସିରହିବା ଦେଖାଗଲା ଶମ୍ପାର ସେଇ ମାଟିଘରର ହଲହଲ ହେଉଥିବା ବାରଣ୍ଡାରେ, ତା'ଠାରୁ ବେଶୀ ହଲୁଥିବା ଚଉକିଟା ଉପରେ ।

ହଁ ଶମ୍ପାର ମା'ଙ୍କୁ ମଧ ଦେଖା ଯାଇଥିଲା ନିଶ୍ଚେ । ଦେଖାଗଲା ଆହୁରି ଆଶ୍ଚର୍ଯ୍ୟ ପରିସ୍ଥିତିରେ । ସେ ତାଙ୍କର ଜୋଇଁର ପିଠିରେ ହାତ ରଖି ବସିଥିଲେ, ସେ ହାତରେ ଥିଲା ସ୍ନେହର ସ୍ପର୍ଶ ।

ଅଥଚ ଗୋଟିଏ ମୁହୂର୍ତ୍ତରେ ହିଁ ଘଟି ଯାଇଛି ଏ ଅଘଟଣ ! ସେହି ଅଙ୍କରେ ବକୁଳ ନ ଥିଲା ।

ସେତେବେଳେ ସକାଳର ଖରା ଆସି ପଡ଼ିଥିଲା ସେହି ବାରଣ୍ଡାଟାରେ । ନୂଆ ଶୀତର ସ୍ପର୍ଶରେ ସେ ଖରା ଟିକକ ଲୋଭନୀୟ ମନେ ହୋଇଥିଲା, ସେଥିପାଇଁ ଶମ୍ପା ସତ୍ୟବାନକୁ ଟାଣି ନେଇ ଆସି ବସାଇ ଚାହାର ଯୋଗାଡ଼ କରୁଥିଲା ।

ସେତେବେଳେ ପ୍ରତିଦିନ ପରି ଟୋଷ୍ଟ୍‌ରେ ଲହୁଣି ଲଗାଉଥିଲା ଶମ୍ପା, ଆଉ ସତ୍ୟବାନ ପ୍ରତିଦିନ ପରି ଅଭିଯୋଗ କରୁଥିଲା– ଜଣକର ରୁଟିରେ ଏତେ ବହଳିଆ କରି ଲହୁଣି ଲଗାଇବା ଅର୍ଥ ତ ଅନ୍ୟଜଣକର ରୁଟିରେ ଲହୁଣି ପାଇବ ନାହିଁ ?

ଠିକ୍ ଏତିକିବେଳେ ବଂଶୀ ଆସି କହିଲା– ଏ ଶମ୍ପା, ତତେ କିଏ ସବୁ ଖୋଜିବାକୁ ଆସିଛନ୍ତି ।

–କି– ଏ– ସେ !

ଶମ୍ପାର ହାତରୁ ଲହୁଣିର ଛୁରୀଟା ପଡୁ ପଡୁ ରହିଗଲା ।

–ମତେ ପୁଣି କିଏ ଖୋଜିବାକୁ ଆସିବେ ବଂଶୀ ଭାଇନା ? ପିଉସୀ ଆସିଛନ୍ତି କି ? ସାଙ୍ଗରେ କିଏ ଅଛି ?

–ତା' କେମିତି ଜାଣିବି ? ତୋ'ର ପ୍ରାଣର ପିଉସୀଙ୍କୁ ତ ଦେଖିବାର ସୌଭାଗ୍ୟ ମୋର କୋଉଦିନ ହେଇନି । ହେଲେ ତୁ କହୁଥିଲୁ ତୋ'ର ପିଉସୀ ଚିରକୁମାରୀ, ସେଇୟା ନା ? ଏ ତ ବେଶ୍ ସିନ୍ଦୂର ଫିନ୍ଦୁର ପିନ୍ଧିଛନ୍ତି ! ଯାଉ, କିଏ କ'ଣ ବୃତ୍ତାନ୍ତ ସେକଥା ଏଇଠି ବସି ଚିନ୍ତା ନ କରି ଚଟ୍‌ପଟ୍ ଓହ୍ଲାଇ ଯା !

–ବଂଶୀ ଭାଇନା, ମତେ କେମିତି ଡର ଡର ଲାଗୁଛି ! ତମେ ବରଂ ପଚାରି ଆସ ସେମାନେ କିଏ ? ସତରେ ମତେ ଖୋଜିବାକୁ ଆସିଛନ୍ତି କି ନାହିଁ ।

–ମୁଁ ଆଉ ପାରିବିନି । କାରଣ ସେ ସବୁ କଥା ହୋଇଯାଇଛି । ଚାଲ୍ ବାପା ଚଟ୍‌ପଟ୍ ! ତୋ'ର ପୁଣି ଡର ! ଇଏ ଯେ ରାମଙ୍କ ମୁହଁରେ ଭୂତର ନାମ ।

ସତ୍ୟବାନ ଧୀରେ କହିଲା– ଶମ୍ପା ଯାଇ ଟିକିଏ ଦେଖି ଆସୁନ ?

ଶମ୍ପା ଚଉକିଟାରେ ବସିପଡ଼ି ଶୁଖିଲା ଗଳାରେ କହିଲା– ଦି'ଜଣ କିଏ ବଂଶୀ ଭାଇନା ? ଦି'ଜଣଯାକ ସ୍ତ୍ରୀଲୋକ ?

–"ଆରେ ବାପା, ନାଇଁ ନାଇଁ । ଜଣେ ସ୍ତ୍ରୀଲୋକ ଆଉଜଣେ ତାଙ୍କର ବଡ଼ିଗାର୍ଡ଼ । ତା' ନ ହେଲେ ହୁଏତ ଜଣେ– " ହଠାତ୍ ତୁନି ହୋଇଗଲା ବଂଶୀ । ତରବର ହୋଇ କହିଲା– ହେଇଟି ଦେଖେ, ସେମାନେ ଚାଲି ଆସିଲେଣି !...... ଓଃ ପାହାଚ ଯାହା ହେଇଛି ନା, ଆପଣମାନେ ଚଢ଼ିପାରିଲେ ?

ପୁରୁଷ ଜଣକ କମ୍ପିତ ଗଳାରେ କହିଲେ– ପାରିବାକୁ ହିଁ ପଡ଼ିବ । ନ ପାରିଲେ ଚଳିବ କେମିତି ? ତା'ପରେ ପ୍ରାୟ ଥରି ଥରି ବସି ପଡ଼ିଲେ ଚଉକିରେ ।

ତା' ପରର ଘଟଣାଟା ଅତି ସଂକ୍ଷିପ୍ତ, ଅତି ସରଳ । ଏବଂ ତା' ପରର ଦୃଶ୍ୟ ଆଗରୁ କୁହାଯାଇଛି ।

ବର୍ତ୍ତମାନ ଏ ଅସୁବିଧା ଚାଲିଛି, ଶମ୍ପା କୌଣସିମତେ ମୁହଁ ଉଠାଇ ନାହିଁ । ସେଇ ଯୋଉ ବାପାଙ୍କ କୋଳରେ ମୁହଁ ଲୁଚାଇଦେଇ ପଡ଼ିଯାଇଥିଲା, ଠିକ୍ ସେମିତି ପଡ଼ିରହିଛି ।

ବଂଶୀ ବାରମ୍ବାର କହୁଛି– ଶମ୍ପା ଉଠ୍ । ବାପାଙ୍କୁ ମା'ଙ୍କୁ ପ୍ରଣାମ କର । ମା'ଙ୍କ ଆଡ଼କୁ ଚାହାଁ ।

ଶମ୍ପା ଏସବୁ ଶୁଣିଛି ବୋଲି ଜଣା ଯାଉନାହିଁ ।

ବଂଶୀ ଶମ୍ପାକୁ ତୁ ତା କରି କଥା କହେ, ଏଇଲେ ସେମାନଙ୍କ ଆଗରେ ସେମାନଙ୍କ ଝିଅକୁ ତୁ କହିବାକୁ ଯେମିତି ସଙ୍କୋଚ ଲାଗୁଛି ବଂଶୀକୁ, ନିଜକୁ ଭାରି କ୍ଷୁଦ୍ର ତୁଚ୍ଛ ଲାଗୁଛି ବଂଶୀକୁ ।

ଯେମିତି ବଂଶୀ ଏଥର ଅନୁଭବ କରିପାରୁଛି, ୟାପରେ ସେ ଅଦରକାରୀ ହୋଇଯିବ ଶମ୍ପା ନାଆଁର ଝିଅଟାର ଜୀବନରେ, ଅବାନ୍ତର ହୋଇଯିବ ତା'ର ବନ୍ଧୁଙ୍କ ଜୀବନରେ ।

ଏତେଦିନପରେ ଏମାନେ ଆସିଛନ୍ତି ବାଧା ଅତିକ୍ରମର ପ୍ରସ୍ତୁତି ନେଇ, ଶମ୍ପାକୁ ପରାଜିତ କରିବାର ସଙ୍କଳ୍ପ ନେଇ । ଏମାନେ ହାରି ଫେରି ଯିବେନି ।

ତା'ପରେ ?

ତା'ପରେ ବଂଶୀ ରହିଥିବ, ଆଉ ରହିଥିବ ତା'ର ମାଟିଘରର ବସାରେ ଅନ୍ଧକାର, ଅନ୍ଧକାରର ଘରଟା ଆଉ ଲଡ଼ବଡ଼ ହେଉଥିବା ବାରଣ୍ଡାଟା ।

କିନ୍ତୁ ସେତେବେଳେ କ'ଣ କୌଣସିଦିନ ଆଉ ଏଠି ସକାଳର ଖରା ଆସି ପଡ଼ିବ ? ଦି'ପହରର ପବନ ଟିକକ ବୋହିବ ?

× × × ×

ଶମ୍ପା କହିଥିଲା, "ବଂଶୀ ଭାଇନା, ଆମ ସାଙ୍ଗରେ ଚାଲ । ମୁଁ କେମିତି ସାହସ ପାଉନି ।

ବଂଶୀ ହସି ପକାଇଥିଲା– ତୋ ବାପଘରକୁ ତୁ ଯାଉଛୁ, ମୁଁ ଯିବି ଭରସା ଦେବାକୁ ?

ଶମ୍ପାର ବାପ-ମା' ମଧ୍ୟ ଅନୁରୋଧ କରିଥିଲେ– ଯେତିକି ଦେଖିଲୁ ବୁଝି ପାରୁଛୁ । ତମେ ହିଁ ଏମାନଙ୍କର ସହାୟ ତମକୁ ମଧ୍ୟ ଯିବାକୁ ପଡ଼ିବ ।

ହେଲେ ବଂଶୀ କେମିତି ଯିବ ?

ତା'ର ଯେ ଠିକ୍ ଏଇକ୍ଷଣି ବହୁତ କାମ ଅଛି ।

ସେମାନେ ଝିଅଜୋଇଁଙ୍କୁ ନେଇଯିବା ପାଇଁ ଉଦ୍ୟମ କରୁଛନ୍ତି, ଜୋଇଙ୍କର କୌଣସି ବାଧା ଆପତ୍ତି କାନରେ ପୂରାଉ ନାହାନ୍ତି, ଝିଅର କଥା ତ ଜମା ନୁହେଁ । କହୁଛନ୍ତି– ଥରକୁଥର ଭୁଲ କରିଛୁ, ଆଉ ଭୁଲ୍ କରିବାକୁ ଆମେମାନେ ରାଜି ନୋହୁ ।

ଯା ମଝିରୁ ବଂଶୀ ତା'ର ଭୀଷଣ ଦରକାରୀ କାମ ଥିବା ପାଇଁ ଚାଲିଗଲା । ଶମ୍ପା କହିଲା– ଆଉ କୋଉଦିନ ଦେଖା କରିବନି ବଂଶୀ ଭାଇନା ?

ବଂଶୀ ହସିପକାଇ କହିଲା– ଏଇ ଦେଖ, ଯାପରେ କ'ଣ ବଂଶୀଭାଇନା କଥା ତୋ'ର ମନେ ଥିବ ?

ଶମ୍ପା ଶାନ୍ତ ଗଳାରେ କହିଲା– ମୁଁ ଏମିତି ଅକୃତଜ୍ଞ ବୋଲି ତମର ମନେହେଉଛି ବଂଶୀଭାଇନା ?

ବଂଶୀ କହିଲା– ନା, ନା, ଏକଥା ମୁଁ ଏମିତି କହିଦେଲି । ଜାଣିଛୁ ମୁଁ ଏମିତି ଉଚ୍ଚସ୍ତରର ଲୋକଙ୍କୁ ଦେଖିଲେ ଡରେ ।

–ତମ ସାଙ୍ଗକୁ ମଧ୍ୟ ଡର ଲାଗେ ।

–ତାକୁ ତ ତୁ ମନେଇ ନେବୁ ।

କହି ପଳାଇ ଯାଇଥିଲା ବଂଶୀ ।

ହଁ, ମନେଇ ନେବାର କ୍ଷମତା ଅଛି ଶମ୍ପାର ।

ତା'ବୋଲି ବାପ-ମା'ଙ୍କ ପାଗଳାମିର ହାଉଆରେ ନିଜକୁ ଭସାଇ ଦେଲାନି । ମା' କହିଥିଲେ– ଲୋକବାକଙ୍କୁ ନିମନ୍ତ୍ରଣ କରି ଠିକ୍ ନିୟମରେ ବାହାଘରର ଆୟୋଜନଟା କରିବି–

ଶମ୍ପା ଜୋର୍‌ରେ ହସିଦେଇ କହିଥିଲା– ତମ ଧର୍ମ ହେବ ମା', ଆଉ ଲୋକହସା କରନି ।

–ଏମିତି ତ ଆଜିକାଲି କେତେ ହେଉଛି– " ମା'ର ଗଳାଟା କ୍ଷୀଣ ଶୁଣାଗଲେ ମଧ୍ୟ ଶୁଣାଯାଇଥିଲା– ଆମରି ଆତ୍ମୀୟ-କୁଟୁମ୍ବଙ୍କ ଘରେ ହେଉଛି । କେତେଦିନ ଆଗରୁ ରେଜିଷ୍ଟ୍ରୀ ହୋଇଯାଇଛି, ପୁଣି ନୂଆକରି ମଙ୍ଗଳଣ ହେରିକା ସବୁ କରି ଭଲକରି ବାହା ଦେଉଛନ୍ତି ।

–ସେମାନଙ୍କର ବହୁତ ସଉକ୍ ଅଛି ମା', ମୋର ଆଉ ବେଶୀ ଭଲ ପାଇଁ ଇଚ୍ଛା ନାହିଁ ।

ଶମ୍ପାର ବାପା ନିଶ୍ଚିତ ଥିଲେ ଏମାନେ ଏଇଠି ରହିବେ, ସେଥିପାଇଁ ନିଜର ଘରଟାକୁ ଧଉଳା ଧଉଳି ଝଡ଼ାଝଡ଼ି କରିଥିଲେ ଝିଅ ଜ୍ୱାଇଁଙ୍କ ପାଇଁ ।

ନିଜର ?

ପାଖରେ ସେ ସାନଘରଟା ହିଁ ଯଥେଷ୍ଟ ।

କିନ୍ତୁ ଶମ୍ପା ସେ ପ୍ରସ୍ତାବ ହସି ଉଡ଼ାଇଦେଲା । କହିଲା— ବାପା, ଏକରେ ତ ଏ ଅପଦାର୍ଥର ବେକରେ ମାଳା ଦେଇଛି, ତା'ପରେ ପୁଣି ଯଦି 'ଘରଜୋଇଁ' ହୋଇଯିବ ନା, ତା'ହେଲେ ତ ମୋର ମରିବା ଛଡ଼ା ଆଉ ଗତି କିଛି ନ ଥିବ । ଘରଜୋଇଁ ଆଉ ପୋଷିଆ ପୁଅ ଏମାନେ ତ ଶୁଣିଛି ଜଗତରେ ସବୁଠାରୁ ଉଚ୍ଚରେ ।

ଶମ୍ପା ହସିଦେଇଥିଲା— ନା ବାପା, ସେଇଟା ଆଉ ମୁଁ କରିବିନି, ସେଥିରେ ତମମାନଙ୍କର ପ୍ରେଷ୍ଟିଜ୍‌ଟା ଜୋର୍‌ରେ ପଙ୍କ୍‌ଚର୍ ହୋଇଯିବ ବୋଲି ମନେ ହେଉଛି । ତେବେ ଖୋଜାଖୋଜି କରି ଗୋଟାଏ କୋଠାଘରେ ଯାଇ ରହିବି । ସେଇଥିପାଇଁ ତ କହୁଛି ଗୋଟାଏ ଭଲ ଚାକିରି ମୋର ନିହାତି ଦରକାର । ବାପା, ଗୋଟାଏ ବେଶୀ ଦରମା ମିଳୁଥିବା ଚାକିରିଟିଏ ଯୋଗାଡ଼ କରି ଦିଅନ୍ତ ନାହିଁ ? କେତେ କୃଷ୍ଣ ବିଷ୍ଣୁଙ୍କ ସଙ୍ଗେ ତ ତମର ଚିହ୍ନା ପରିଚୟ ଅଛି ।

—ଚିହ୍ନାଲୋକଙ୍କ ଦେଇ କୌଣସି କାମ ହୁଏ, ଏଇଟା ତୋ ଧାରଣା ?

—ହୁଏନି କହୁଛ ? ତା'ହେଲେ ନିଜେ ପଡ଼ିଉଠି ଲାଗିବି ବାବା ! ଦେଖିବ ସେତେବେଳେ ମୁଁ କେମିତି ସୁନ୍ଦର ଛବି ଭଳି ଘରଟିଏ କରିବି ।

ଶମ୍ପାର ଆଖିରେ ଆତ୍ମବିଶ୍ୱାସର ଦୀପ୍ତି ।

ଶମ୍ପାର ମୁହଁରେ ଦୃଢ଼ତାର ଛାପ ।

କିନ୍ତୁ ଏମିତି ଅଘଟଣଟା ଘଟିଲା କେଉଁ ଯୋଗସୂତ୍ରରେ ? ଶମ୍ପାର ବାପ-ମା' କେମିତି ଯାଇ ପହଞ୍ଚିଲେ ସେ ମାଟିଘରେ ?

ସେ ଏକ ଅଭାବିତ ଯୋଗାଯୋଗ ।

ଅଥବା ବିଧାତାଙ୍କର ଭାବିତ । ଆପଣା କାମ କରାଇନେବାର ବିଷୟରେ ଅନେକ କୌଶଳ ସେ କରନ୍ତି । ଆଉ ତାଙ୍କ ପାଇଁ ଥାଏ ଅନ୍ୟ ଆୟୋଜନ ।

ସେହି ଆୟୋଜନର ଚେହେରାଟା ହେଉଛି ଏମିତି—

ଶମ୍ପାର ମା' ରମଳା ଉପରଓଳି କୁଆଡ଼େ କୋଉ ମନ୍ଦିରକୁ ଯାଇଥିଲେ । ସେଠାରେ କୁଆଡ଼େ ଭରା ସଞ୍ଜଟାରେ କେଉଁ କାଳୀସାଧିକାଙ୍କ ଉପରେ 'ଦେବୀ' 'ଭର' କରନ୍ତି । ସେ ସେହି ଅବସ୍ଥାରେ ଆର୍ତ୍ତଜନଙ୍କର ସବୁପ୍ରକାର ଆକୁଳ ପ୍ରଶ୍ନର ଉତ୍ତର ଦିଅନ୍ତି । ରୋଗବ୍ୟାଧିଠାରୁ ଆରମ୍ଭ କରି ହଜିଥିବା, ପାଇଥିବା,

ନିରୁଦ୍ଦେଶ, ଝିଅର ବାହାଘର, ପୁଅର ଚାକିରି, ମକଦ୍ଦମାର ଫଳାଫଳ, ସବୁ ତାଙ୍କର ଆୟତ୍ତାଧୀନ ।

ରମଳା ତା'ର ଆକୁଳ ପ୍ରଶ୍ନ ଧରି ଯାଇଥିଲା ।

ଏହି ଅଲୌକିକର ସମ୍ବାଦଦାତ୍ରୀ ହେଉଛି ଘରର ବାସନ ମାଜିବା ଚାକରାଣୀ । ରମଳା କାହାକୁ କିଛି ନ କହି ଚୁପ୍‌ଚାପ୍ ତା' ସହିତ ଚାଲିଯାଇଥିଲା ।

ଚିରକାଳର ଆତ୍ମସମ୍ଭ୍ରମବୋଧରେ ସଚେତନ, ମର୍ଯ୍ୟାଦାବୋଧରେ ପ୍ରଖର, ସ୍ୱଳ୍ପଭାଷୀ ରମଳାର ଏମିତି ଅଧଃପତନ ନିଶ୍ଚେ ଅବିଶ୍ୱାସ୍ୟ । ଚାକରାଣୀ ସହିତ ଗୋଟାଏ ରିକ୍ସାରେ ସେ ଯିବାଟା ଭାବି ହେଉନି । ତା ଛଡ଼ା ଏତେ ସାହସ ସେ ଚାକରାଣୀଟା ପାଇଲା କେଉଁଠାରୁ ଯେ ? ରମଳା ପାଖରେ ଏହି ଅଲୌକିକ କାହାଣୀ ବର୍ଣ୍ଣନା କରି ତାକୁ ନେଇପାରିଲା ?

ଚାକରାଣୀକୁ ଡାକି କାମର ନିର୍ଦ୍ଦେଶ ଦେବା ବ୍ୟତୀତ କେବେ ସେମାନଙ୍କ ସଙ୍ଗେ ଦିପଦ ଅଧିକ କଥା କହିଛି ରମଳା ?

ଅଥଚ ଏବେ ତା' ସହିତ ଅନ୍ତରଙ୍ଗ ସଖୀ ପରି—

ବିଧାତା ଯାହାକୁ ଅନ୍ୟ ଗଢ଼ଣ ଦେବାକୁ ଚାହିଁବେ, ତାକୁ ଦୁଃଖର ନିଆଁରେ ପୋଡ଼ିବାହିଁ ହେଲା ତାଙ୍କର କାମ ।

ଖାଲି ତ ସେହି ହୃଦୟହୀନ ଝିଅଟା ନୁହେଁ, ଆଉଜଣେ ମଧ୍ୟ ତିଳ ତିଳ କରି କ୍ଷୟ କରୁଛି ରମଳାକୁ ଅନେକଦିନ ହେଲା ।

ଦିନ ପରେ ଦିନ, ସପ୍ତାହ ପରେ ସପ୍ତାହ, କ୍ରମଶଃ ମାସ ପରେ ମାସ କଟିଯାଉଛି— ସାଗର ସେପାରିକୁ ଚାଲି ଯାଇଥିବା ଆଉ ଏକ ହୃଦୟହୀନ ସନ୍ତାନ ଫେରି ଆସୁନି କି ଚିଠି ଦେଉନି । ଯଦିବା କେବେ ଦେଉଛି, ତାହା ଏକାବେଳେ ସଂକ୍ଷିପ୍ତର ପରମ ନମୁନା ।

ବାପ-ମା'ର ଅନେକ ଅଭିଯୋଗ ଅନୁଯୋଗ, ଉଦ୍‌ବେଗ, ଆକୁଳ ପ୍ରଶ୍ନର ଉତ୍ତରରେ ଲେଖୁଛି, ଏତେ ଭାବିବାର କ'ଣ ଅଛି ? ମରି ଯାଇଥିଲେ କିଏ ନା କିଏ ଖବର ଦେଇଥାନ୍ତେ । ଜାଣିଛ ତ ଚିଠି ଦେବାରେ ମୁଁ ଏକାବେଳେ ଅଳସୁଆ ।

ଅଥବା କେତେବେଳେ ଅନେକଗୁଡ଼ିଏ ପଇସା ଖର୍ଚ୍ଚ କରି ଗୋଟାଏ ଟେଲିଗ୍ରାମ କରନ୍ତି ତା'ର କୁଶଳ ସମ୍ବାଦ ଜଣାଇବାକୁ । ଚିଠି ଲେଖାର ଆଳସ୍ୟର ସପକ୍ଷରେ ତ ସେହି ଭଳି ଯୁକ୍ତି, ଆଉ ଫେରି ନ ଆସିବାର ସପକ୍ଷରେ ?

ତୁ ତ ପାଞ୍ଚବର୍ଷର କୋର୍ସ ପଢ଼ିବାକୁ ଯାଇଥିଲୁ, ସାଢ଼େ ନଅ ବର୍ଷ ହୋଇଗଲା ଆସୁନୁ କାହିଁକି ? ଯାର ଉତ୍ତର ?

ହେଲେ ତାହା ତ ତା'ର ଜୀବନର ଘଟଣାପଞ୍ଜିକାରେ ପ୍ରକାଶିତ । ପାଠ ଶେଷ କଲାପରେ ବର୍ଷେ ଖଣ୍ଡେ ଭ୍ରମଣ କରିଛି ।

ୟୁରୋପ ଆମେରିକାର ମୋଟାମୋଟି ଦ୍ରଷ୍ଟବ୍ୟଗୁଡ଼ିକୁ ଦେଖୁଦେଖୁ ଚାକିରି ପାଇଗଲା ଯେଉଁ ଚାକିରିଟା ବର୍ତ୍ତମାନ ଉଠି ଉଠି ଆକାଶକୁ ଛୁଇଁଲାଣି । ଦେଶକୁ ଫେରି ଆସିଲେ ସେଥିର ଦଶଭାଗରୁ ଏକଭାଗ ଦରମାର ଚାକିରି ଜୁଟିବ ?

ତା'ହେଲେ ? କେଉଁ ସୁଖ ପାଇଁ ସେ ଫେରି ଆସିବ ? କେଉଁ ଆଶାରେ ? ଖାଲି ବାପ-ମା'ଙ୍କୁ ଆଖିରେ ଦେଖିବାକୁ ? ଏତେ ଭାବପ୍ରବଣ ହେଲେ ଚଳିବନି ।

ରମଳାର ନିଜର ଭାଇନା ଆଉ ଭୋଇଁ ରମଳାକୁ ଧିକ୍କାର କରି କହିଥିଲେ— ପାଗଳ ଛଡ଼ା ଆଉ କେହି ତମ ପୁଅକୁ କହିବନି— ତୁ ଚାଲିଆ ତୋ'ର ସେ ରାଜ୍ୟ ଆଉ ଐଶ୍ୱର୍ଯ୍ୟ ଛାଡ଼ି । ଆସି ଆମସଙ୍ଗେ ଲୁଣଭାତ, ପେଜଭାତ ଖାଇ ଚାକିରି ଚାକିରି ବୋଲି ଟୋ-ଟୋ ହୋଇ ଘୂରିବୁଲ । ତୋ'ର ଏ ଅସ୍ଥିରତାର କୌଣସି ଅର୍ଥ ହୁଏନି ରମଳା !

ରମଳା ସ୍ୱାମୀଙ୍କ ପାଖରେ ତୀବ୍ର ହେଲା, କହିଲା— ତମେ ମଧ୍ୟ କ'ଣ ଏକଥା କହିବ ? କେତେଟା ଟଙ୍କା ପାଇଁ ପୁଅ ଚିରକାଳ ପୃଥିବୀର ସେ ପଟେ ପଡ଼ିଥିବ ?

ଅଭିଯୁକ୍ତ ଆସାମୀ କହିଦେଇ ପାରିଲାନି— ନା, ନା, ଏକଥା ମୁଁ କହୁନି । ପୁଅକୁ ଦେଖିବାକୁ ମୋର ମଧ୍ୟ କ'ଣ ପ୍ରାଣ ଚାହୁଁନି ?

ଯାହା କହିଥିଲେ ପିତୃହୃଦୟର ପରିଚୟ ଦିଆହୋଇ ପାରିଥାନ୍ତା ।

କିନ୍ତୁ କେମିତି ଦେବ ସେ ପରିଚୟ ?

ଚାକିରି ବଜାରର ହାଲ୍‌ଚାଲ ସେ କ'ଣ ଜାଣିନି ?

ସେଥିପାଇଁ ସେ ଶୁଖିଲା ଗଳାରେ କହିଲା— ନ କହି ମଧ୍ୟ ଉପାୟ କ'ଣ ଅଛି ? ତାକୁ ମୁଁ ମୋର ମୁଣ୍ଡର ରାଣ ପକାଇ ଫେରାଇ ଆଣି ତା'ର ଉପଯୁକ୍ତ କୋଉ କାମ ତାକୁ ଜୁଟେଇ ଦେଇ ପାରିବି ? ସେଠି ସେ ରାଜା ପରି ରହିଛି—

—ଖାଲି କ'ଣ ରାଜା ପରି ରହିବାଟା ହିଁ ସବୁ ? ବାପ ମା, ନିଜ ଦେଶ, ସମାଜ, ଏସବୁ କିଛି ନୁହେଁ ?

—"ସେଇଟା ତା'ର ଭାବିବା କଥା......" ମାନୁ ହତାଶ ଗଳାରେ କହିଲା— ମଣିଷ ମାତ୍ରେ ତ ଏହା ହିଁ ଜାଣେ ରାଜା ପରି ରହିବାଟା ହିଁ ସବୁ ।

—ମୁଁ ଏଥର ତାକୁ ରାଣ ପକାଇ ଚିଠି ଦେବି ।......" ରମଳା ଉତ୍ତେଜିତ ଗଳାରେ ଘୋଷଣା କରିଥିଲା ଏବଂ ଚିଠି ମଧ୍ୟ ଦେଇଥିଲା ।

ଈଶ୍ୱର ଜାଣନ୍ତି କ'ଣ ରାଣ ସେ ପକାଇଥିଲା । କିନ୍ତୁ ସେ ଚିଠିର ଆଉ ଉତ୍ତର ଆସିଲାନି । ପ୍ରତ୍ୟାଶାର ଦିନଗୁଡ଼ାକ ଅସ୍ପଷ୍ଟ ହେଉ ହେଉ କ୍ରମଶଃ ମିଳେଇ ଯାଉଛି ।

ଏହାପରେ ଯଦି ରମଲା ସିଧାସଳଖ ଦେବୀଙ୍କ ମୁହଁରୁ ନିଜର ବିଦୀର୍ଣ୍ଣ ହୃଦୟର ପ୍ରଶ୍ନର ଉତ୍ତର ପାଇବାର ଆଶ୍ୱାସନା ପାଇବ, ତା'ହେଲେ ସେଠାକୁ ଧାଇଁଯିବନି ? ସେ ଆଶ୍ୱାସନାଟା କାହାଠାରୁ ପାଉଛି ତା' କ'ଣ ବିବେଚନା କରି ଦେଖିବାକୁ କହିବ ? ସେହି ବାସନ ମାଜୁଥିବା ଚାକରାଣୀଟାକୁ ହିଁ ସେତେବେଳେ ତା'ର ଦେବୀଙ୍କ ଅଂଶ ବୋଲି ମନେ ହେଉଥିଲା ।

ଅଥଚ ମାତ୍ର କିଛିଦିନ ଆଗେ ମଧ୍ୟ କ'ଣ ରମଲା ସ୍ୱପ୍ନରେ ବି ଭାବି ପାରୁଥିଲା ସେ ଏମିତି ଗୋଟାଏ ଗ୍ରାମ୍ୟ କାର୍ଯ୍ୟ କରି ପାରିବ ?

ଅଳକାର ଗୁରୁଭକ୍ତିର ଆଡ଼ମ୍ବର ଦେଖି ସେ ମନେ ମନେ ହସୁଥିଲା ।

ରମଲାର ଶାଶୁ ଯେତେବେଳେ ବଞ୍ଚିଥିଲେ, ସେତେବେଳେ ରମଲା ବରର ବଦଳି ଚାକିରି ପାଇଁ ବାହାରେ ବାହାରେ ବୁଲୁଥିଲା, ଜାଣି ନ ଥିଲା ଶାଶୁ କୁସଂସ୍କାରାଚ୍ଛନ୍ନ ଥିଲେ କି ସଂସ୍କାରମୁକ୍ତ ଥିଲେ । କିନ୍ତୁ କଲିକତାରେ ହେଡ୍‌ଅଫିସ୍‌କୁ ସ୍ୱାମୀଙ୍କର ବଦଳି ହେବାକୁ ଆସି ସ୍ଥାୟୀଭାବରେ କଲିକତାରେ ରହିବାଠୁ ବଡ଼ ଯା'ଙ୍କୁ ଦେଖୁଛି । ଦେଖୁଛି ତାଙ୍କର ନୀତି-ନିୟମ ।

କାହାର ଦେହ ଖରାପ ହେଲେ ବଡ଼ ଗୃହିଣୀ ଡାକ୍ତରୀ ଔଷଧଠାରୁ ଅନେକ ବେଶୀ ଆସ୍ଥା ରଖୁଥିଲେ 'ମା' କାଳୀଙ୍କ ଖଣ୍ଡା-ଧୁଆ ପାଣି' ଅଥବା ମସଜିଦ୍‌ର ପାଣି ଉପରେ ।

ରମଲା ମନେ ମନେ ସେହି ବଡ଼ ଯା'ଙ୍କୁ ମୂର୍ଖ ଗାଉଁଲୀ ଛଡ଼ା ଆଉକିଛି ବୋଲି କେବେ ଭାବିନି ।

କିନ୍ତୁ ସେତେବେଳେ ତ ରମଲା ଏକାବେଳକେ ସଜ ।

ସେତେବେଳେ ରମଲାର ପୁଅ ପଟାପଟ୍ କରି ଫାଷ୍ଟ ହୋଇ କ୍ଲାସ ଉତ୍ତୀର୍ଣ୍ଣ ହେଉଥିଲା, ସେତେବେଳେ ରମଲାର ଛବି ଭଳି ଝିଅଟା ନାଚି ଗାଇ ସାରାଦିନ ଅନର୍ଗଳ ଭାବରେ ଢଗ ଆବୃତ୍ତି କରି ଘରକୁ ସରଗରମ କରି ରଖୁଥିଲା । ସେତେବେଳେ ରମଲା କିପରି ଜାଣିବ ସନ୍ତାନର ମା'ଙ୍କୁ ଭୂତକୁ ଭଗବାନଙ୍କୁ ସମସ୍ତଙ୍କୁ ମାନିବାକୁ ପଡ଼େ, ମାନିବାକୁ ପଡ଼ିପାରେ ।

ରୁଦ୍ଧଦ୍ୱାର କକ୍ଷରେ 'ଦେବୀ' ରମଲାର କେଉଁ ପ୍ରଶ୍ନର କି ଉତ୍ତର ଦେଲେ, ସେ କଥା ରମଲା ଜାଣିଛି ଆଉ ଦେବୀ ଜାଣିଛନ୍ତି, ତେବେ ରମଲା ଘରକୁ ଫେରିଲା ଯେମିତିକି ଏକ ଆଶା-ପ୍ରତ୍ୟାଶାରେ ଛଳ ଛଳ ହେଉ ହେଉ ।

ଘରେ ପଶି ଦେଖିଲା ସ୍ୱାମୀ ଚୁପ୍‌ଚାପ୍ ବିଛଣାରେ ବସିଛନ୍ତି । ଥମକିପଡ଼ି ପଚାରିଲା— ଏମିତି ବସିଛ ଯେ ?

ମାନୁ ସେ କଥାର ଉତ୍ତର ନ ଦେଇ ପଚାରିଲା — ଏକା ଏକା କୁଆଡ଼େ ଯାଇଥିଲେ ?

—ଏକା ନୁହେଁ...... ସଂକ୍ଷିପ୍ତ ଉତ୍ତର ଦେଲା ରମଳା । ତା'ପରେ ହଠାତ୍ ନିଜପଟୁ ହିଁ କହିଲା— ଗୋଟେ ଜାଗାକୁ ଯାଇଥିଲି, ପରେ କହିବି ।

— ପୁଅର ଚିଠିଟେ ଆସିଛି ଦି'ପହରେ, ତମକୁ ଖୋଜୁଥିଲି —

ପୁଅର ଚିଠି ଆସିଛି !

ରମଳା ବିହ୍ୱଳଭାବରେ ଚାହିଁ କହିଲା— ପୁଅର ? ପୁଅର ଚିଠି ଆସିଛି ? ସତରେ ଆସିଛି ? ଆଗୋ ତା'ହେଲେ ତ ଜଗତରେ ଅବିଶ୍ୱାସର ବୋଲି କିଛି ନାହିଁ । ଏଇକ୍ଷଣି ଜାଣିକରି ଆସିଲି ଶୀଘ୍ର ଖବର ଆସିବ । ଆଉ ଆଜି— କାହିଁ ପୁଅର ଚିଠି ? ଦିଅ । କାହା ପାଖକୁ ଲେଖିଛି ?

ରମଳାର କଣ୍ଠରେ ବ୍ୟସ୍ତତା ।

ମାନୁ ଧୀରେ ତକିଆ ତଳରୁ ଚିଠିଟାକୁ ବାହାର କରି କହିଲା— ତମର ଚିଠି, ମୁଁ ଖୋଲି ଦେଖିଛି, ଧୈର୍ଯ୍ୟ ଧରି ରହିବା କଷ୍ଟ ହେଉଥିଲା—

— ସେଥିପାଇଁ ଏତେ କୈଫିୟତ୍ ଦେବାର କ'ଣ ଅଛି ? କ'ଣ ଲେଖିଛି ? ଭଲ ଅଛି ତ ?

— ଭଲ ? ହଁ— ଭଲ ଅଛି ତ !

ମାନୁର କଣ୍ଠସ୍ୱରରେ ବିଦ୍ରୂପର ଛାୟା ।

ରମଳାର ନିୟମ ହେଉଛି ପୁଅର ଚିଠି ଆସିଲେ ତରତରରେ ଥରଟେ ଆଖି ବୁଲାଇ ଦେଇ ପରେ ବସି ଧୀରସୁସ୍ଥରେ ଟିକିନିଖି କରି ପଢ଼ିବ । ଯେତେ ସଂକ୍ଷିପ୍ତ ଚିଠି ହୋଇଥାଉ, ଥରକୁ ଥର ନ ପଢ଼ିଲେ ରମଳାର ଚଳେ ନାହିଁ ଯେମିତି ।

ଆଜି କିନ୍ତୁ ଥରେ ଆଖି ବୁଲାଇ ଆଣି ବସିପଡ଼ିଲା ରମଳା । ଦ୍ୱିତୀୟଥର ଆଉ ପଢ଼ିପାରିଲା ନାହିଁ । ରମଳାର ମୁହଁଟା ଧଳା ଦେଖାଗଲା ।

— "ତମେ ଯେଉଁ ଋଣ ପକାଇଲ, ତା'ରି ପ୍ରତିକ୍ରିୟା— " ମାନୁ ସେହିପରି ବିଦ୍ରୂପ ଆଉ ହତାଶାଭରା ସ୍ୱରରେ କହିଲା— ମୁଁ ଜାଣିଥିଲି ! ଏମିତି ଚିଠିଟେ ଯେ ଆସିବ ଏକଥା ମତେ ଜଣା ଥିଲା । ହେଲା । ଏଥର ଯାଅ ପୁଅର ନିମନ୍ତ୍ରଣ ପାଇ ପୁଅର ଘର ବୁଲି ଆସ । କେତେ ବଡ଼ ସାନ୍ତ୍ୱନା ଦେଇଛି— ରାସ୍ତାଖର୍ଚ୍ଚ ପଠାଇବ ! ଏ ପୁଅ ପାଖରେ ତମେ ତମର କାନ୍ଦଣା ଗାଇବାକୁ ଯାଇଥିଲ ? ସେ କଥାର ମାନ ରଖିଲା ?

ରମଳା କିଛିକ୍ଷଣ ସ୍ତବ୍ଧ ହୋଇ ରହି ଆସ୍ତେ କହିଲା— ସେ ଦେଶଟା ଏତେ ଭଲ ଲାଗିଗଲା ଯେ, ଜନ୍ମଭୂମିକୁ ଥରଟେ ମଧ୍ୟ ଆସିବାକୁ ଇଚ୍ଛା ହେଲାନି ?

ସେ ପକ୍ଷରେ କୌଣସି ଉତ୍ତର ମିଳିଲା ନାହିଁ ଏ ପ୍ରଶ୍ନ ପାଇଁ ।

ରମଳା ପୁଣି କହିଲା— ସେଠି ଘର କିଣିଛି, ଗାଡ଼ି କିଣିଛି, ସେ ଦେଶର ନାଗରିକ ହୋଇଯାଇଛି, ତା'ହେଲେ କ'ଣ ବାହା ହେବାଟା ବାକି ଥିବ ?

—ନ ଥିବା ହିଁ ସମ୍ଭବ ।

—ମୋର ଦି'ଦିଇଟା ପିଲାଙ୍କୁ ହଜାଇଦେଲି । ବିଦେଶରେ ପଢ଼ିବାକୁ ନ ପଠାଇଥିଲେ ଏମିତି ହୁଅନ୍ତା ନାହିଁ ।

—ଶମ୍ପାକୁ ଆମେ ବିଦେଶକୁ ପଢ଼ିବାକୁ ପଠାଇବା ।

—ତା କଥା ଅଲଗା, ତାକୁ ତମେ ଘରୁ ତଡ଼ିଦେଇଥିଲ । ତା'ର ଖବର ପାଇ ମଧ୍ୟ ତୁନି ହୋଇ ବସି ରହିଛ ।

ରମଳା ମଧ୍ୟ ଯେ ସେ ଅପରାଧର ଭାଗୀଦାର, ସେ କଥା ଆଉ ମନେ ପକାଇ ଦିଏ ନାହିଁ ତା' ସ୍ୱାମୀ । ଏବେ ମଧ୍ୟ ସେମିତି ତୁନି ହୋଇ ମୁଣ୍ଡ ତଳକୁ କରି ବସିରହେ । ହୁଏତ ମନେ ମନେ ଭାବେ, ମୁଁ ମୋର ପାପର ପ୍ରାୟଶ୍ଚିତ୍ତ କରିବାକୁ ଗଲିନି, ଏହି ଯାହା ଦୁଃଖ ।

କିନ୍ତୁ ଏ କଥା ସେ ଭାବି ନ ଥିଲା, ପ୍ରାୟଶ୍ଚିତ୍ତ କରିବାର ସୁଯୋଗ ସେଇକ୍ଷଣି ଆସି ପହଞ୍ଚିଯିବ ।

ଆସିଲା ଏକ ଅଦ୍ଭୁତ ଯୋଗାଯୋଗରେ ।

ନ ହେଲେ 'ପୁଲକ ସଂଘ'ର ସେହି ପିଲାଙ୍କ ଦଳର ଜଣେ ସେମାନଙ୍କର ସ୍ମାରକ ପୁସ୍ତିକାଟିକୁ ଠିକ୍ ଆଜିକୁ କରି ଅନାମିକା ଦେବୀଙ୍କୁ ଦେବା ପାଇଁ ଆସନ୍ତା କାହିଁକି ? ଆଉ ଠିକ୍ ସେଇ ସମୟଟାରେ ହିଁ ସେମାନଙ୍କର ଅନାମିକା ଦେବୀ ଘରେ ଅନୁପସ୍ଥିତ ଥାଆନ୍ତେ କାହିଁକି ?

ଅବଶ୍ୟ ବକୁଳ ତ ବାରମାସଯାକ ଏମିତି ଅନୁପସ୍ଥିତ ରହେ । ପିଲାଟି ଖାଲି ବହିଟାକୁ ଦେଇ ଚାଲିଯାଇଥିଲେ କିଛି ଘଟି ନ ଥାନ୍ତା । କିନ୍ତୁ ଘଟିବାକୁ ହିଁ ପଡ଼ିବ ଯେ !

ଲଗ୍ନ ଆସିଯାଇଛି ସେହି ଅଘଟନ ଘଟଣା ଘଟିବାର ।

ସେଥିପାଇଁ ପିଲାଟି ବହିଟିକୁ ଚାକର ହାତରେ ନ ଦେଇ ଘରର କାହା ହାତରେ ଦେଇ, ଯିବାକଥା ଜଣାଇଲା, ଆଉ ସେଇଟା ଦେବା ପରେ ସେହି ଘରର ଲୋକଙ୍କୁ କହିଦେଇ ଗଲା— ତାଙ୍କୁ କହିଦେବେ, ସେଦିନ ଯେଉଁ ସ୍ତ୍ରୀଲୋକଙ୍କୁ ନେଇ ପହଞ୍ଚାଇ ଦେବାକୁ କହିଥିଲେ, ତାଙ୍କୁ ନେଇ ଠିକ୍ ଜାଗାରେ ପହଞ୍ଚାଇ ଦେଇଥିଲି । ଆଉ କହିବେ— ଆସନ୍ତା ମାସରେ ଯଦି ଆମର ମ୍ୟାଗାଜିନ୍ ପାଇଁ ଗୋଟାଏ —

କିନ୍ତୁ ଶେଷାଂଶଟା କିଏ ଶୁଣିଲା ?

କାନର ପର୍ଦ୍ଦାରେ ଅଝାଡ଼ି ହୋଇ ପଡ଼ିଲା ଖାଲି 'ସେ ସ୍ତ୍ରୀଲୋକଙ୍କୁ ।'

କିଏ ସେ ସ୍ତ୍ରୀଲୋକ ? ଦେଖିବାକୁ କେମିତି ? କେତେ ବୟସ ? କେଉଁଠି ପହଞ୍ଚାଇ ଦେଇଥିଲ ? ଗୋଟାଏ ଚାଳଘରେ ? କୋଉଠି ସେ ଚାଳଘର ? ଦେଖାଇ ଦେବ ଚାଲ ! ଦେଖାଇ ଦେବ ଚାଲ !

ଏଇଲେ ?

ହଁ, ହଁ, ଏଇଲେ ତ । ଏଇଲେ ଛଡ଼ା ଆଉ କେତେବେଳେ ? ତମକୁ କ'ଣ ମୁଁ ଛାଡ଼ିଦେବି ନା କ'ଣ ?

ଟ୍ୟାକ୍ସିରେ ?

ତା'ଛଡ଼ା ପୁଣି କ'ଣ ? ଚାଲ ଚାଲ । ଦେଖି ଆସେ, ଚିହ୍ନି ଆସେ, ସତ କି ନୁହେଁ ବୁଝି ଆସେ । ତା'ପରେ ଦେଖିବି ପ୍ରାୟଶ୍ଚିତ୍ତ କରି ପାରିବି କି ନାହିଁ ?

ରମଲା କହିଥିଲା— ମୁଁ ମଧ୍ୟ ଯିବି ।

କିନ୍ତୁ ସେତେବେଳେ ରମଲା ଯାଇପାରି ନ ଥିଲା ।

ଯଦି ଠିକ୍ ହୋଇ ନ ଥିବ ? ଯଦି ରମଲାକୁ ଭାଙ୍ଗି ଚୂନା ହୋଇ ଫେରିବାକୁ ପଡ଼ିବ ? ତା'ଠୁ ବରଂ ଏକାବେଳେ ନିଶ୍ଚିତ ହୋଇ ପ୍ରସ୍ତୁତି ନେଇ ଭୋର୍ ସକାଳେ—

ଦେଖାଯାଉ, ସେ ଝିଅ ପୁଣି ଆଉଥରେ କେମିତି ହଜିଯିବ !

## ॥ ୩୭ ॥

✓ ରାଜେନ୍ଦ୍ରଲାଲ ଷ୍ଟ୍ରୀଟ୍‌ର ସେହି ଘର ।

କେତେ ଜନ୍ମମୃତ୍ୟୁର ସାକ୍ଷୀ, କେତେ ଉତ୍ସବ ଆଉ ଉତ୍ତେଜନା, ଆଲୋଡ଼ନ ଆଉ ଆୟୋଜନର ହିସାବରକ୍ଷକ, କେତେ ସୁଖଦୁଃଖର ନୀରବ ଦର୍ଶକ ! ସେହି ଘରଟିର ଚାରିକାନ୍ଥର ଆଢୁଆଳରେ ତିନିପୁରୁଷ ଧରି ଯେଉଁ ଜୀବନଯାତ୍ରା ପ୍ରବହମାନ, ସେ ଧାରା ହୁଏତ ଆପାତଦୃଷ୍ଟିରେ ସ୍ତିମିତ, ନିର୍ବିକାର, ତେବେବି ମଝି ମଝିରେ ସେଠାରେ ଘୂର୍ଣ୍ଣୀ ଉଠେ । ହୁଏତ ଏ ଘରର ପ୍ରତିଷ୍ଠାତାଙ୍କ ସେହି ଚିତ୍ତବିଦ୍ରୋହୀ

ଗୃହିଣୀ ସୁବର୍ଣ୍ଣଲତାଙ୍କ ଆତ୍ମାର ନିଷ୍ଫଳ ବେଦନା ଏ ଘରର ପ୍ରତ୍ୟେକଟି ଇଟାର ପଞ୍ଜରାରେ ରୁଦ୍ଧଶ୍ୱାସ ହୋଇ ରହିଛି ବୋଲି ସେହି ରୁଦ୍ଧଶ୍ୱାସ ବିକୃତ ହୋଇ ଦେଖା ଦେଉଛି । ତେବେକେ ବାସିନ୍ଦାମାନଙ୍କର ପ୍ରତିଦିନର ଚେହେରା ବର୍ଣ୍ଣହୀନ ବୈଚିତ୍ର୍ୟହୀନ ସ୍ତିମିତ । ପ୍ରତିଦିନ ଘଣ୍ଟାର ଏକସମୟରେ ଏମାନଙ୍କ ରନ୍ଧାଘରୁ ଚୁଲି ଧରିବାର ଇନ୍ଧନରୁ ଧୂଆଁ ଉଠେ, ସେହି ଏକାସମୟରେ ଚାକର ଯାଏ ବଜାରକୁ, ରନ୍ଧାର ଶବ୍ଦ, ବାସନ ମାଜିବାର ଶବ୍ଦ, ମସଲା ବାଟିବାର ଶବ୍ଦ, ଆଉ ମହିଳାମାନଙ୍କର ଅସନ୍ତୋଷ ଏବଂ ଅଭିଯୋଗରେ ମୁଖର କଣ୍ଠର ଶବ୍ଦ ଜଣାଇଦିଏ, ଏମାନେ ଅଛନ୍ତି, ଏମାନେ ରହିଥିବେ ।

ହୁଏତ ପୃଥିବୀରେ ଏମାନେ ହିଁ ଥାଆନ୍ତି, ଯେଉଁମାନଙ୍କର ଦିନରାତି ଗୁଡ଼ିକ ଏକା ପ୍ରକାରର ।

ଖାଲି ଏମାନଙ୍କର ଉତ୍ସବର ଦିନଗୁଡ଼ିକ ଅନ୍ୟରକମର । ମୃତ୍ୟୁର ଦିନଗୁଡ଼ିକ ଅନ୍ୟରକମର ।

ସେହି ଅନ୍ୟରକମର ଛାୟା ଆଜି ଓହ୍ଲାଇଛି ଆକାଶ ଉପରେ । ଘରର ଏପଟ ଭାଗରେ ଯେତେବେଳେ ବହୁ ଦୁଃଖ ଆଉ ବହୁ ଯନ୍ତ୍ରଣା ଆଉ ବହୁ ପ୍ରତ୍ୟାଶାର ଶେଷରେ ଗୋଟାଏ ପୁନର୍ମିଳନର ନାଟକ ଅଭିନୀତ ହେଉଥିଲା, ଆଉ ଏକ ଭାଗର କୋଠରିରେ ସେତେବେଳେ ଚାଲିଥିଲା ମର୍ମାନ୍ତିକ ଦୃଶ୍ୟ ।

ମର୍ମାନ୍ତିକ, ବଡ଼ ମର୍ମାନ୍ତିକ !

ଏ ଘରର ସେ ଝଲମଲ ହେଉଥିବା ଉଚ୍ଛ୍ୱସିତ ହେଉଥିବା ବେପରୁଆ ଉଦ୍ଦଣ୍ଡୀ ଝିଅଟା ଏକାବେଳେ ସ୍ଥିର ହୋଇଯାଇ ଶୋଇପଡ଼ିଛି ନେଳିଆମୁହଁ ଆଉ ନିଦ୍ରିତ ଆଖିରେ । ତା' ଘର ଭିତରେ ଶରାହତ ବାଘ ପରି ଯେଉଁ ମଣିଷଟା ଏ କାନ୍ଥଠାରୁ ସେ କାନ୍ଥ ପର୍ଯ୍ୟନ୍ତ ଅସମାନ ଭାବରେ ପଦଚାରଣ କରି ବୁଲୁଛି, ଆଖିର ନିଆଁ ଲିଭି ଆସିଛି ତା'ର । ଟିକିଏ ପରେ ବେକର ହାଡ଼ ଭାଙ୍ଗି ଲଟକି ପଡ଼ିବ ସେ ।

ଆଉ ସେହି ନିଥର ହୋଇଯାଇଥିବା ଝିଅଟିର ବିଛଣାରେ ଲୋଟିଯାଇ ବିଛଣାଟାକୁ ଆଉ ନିଜକୁ ବିଧ୍ୱସ୍ତ କରି ଯେଉଁ ମଣିଷଟା କାନ୍ଦ ଚିପି ରଖିବାର ବ୍ୟର୍ଥ ଚେଷ୍ଟାରେ ବେଶୀ ଜୋରରେ କାନ୍ଦିପକାଉଛି, ତା'ର ଆଉ ଏବେ ମନେ ପଡୁନି 'ହଠାତ୍ ଚିତ୍କାର କରିପକାଇ ମୁଁ କି କାମ କରିପକାଇଛି !' ତା'ର ଏବର ମନଟା ତୀବ୍ର ଆର୍ତ୍ତନାଦ କରି କହିବାକୁ ଚାହୁଁଛି— ମୋ ଝିଅ, ମୋ ବେବୀ, ମୋ

କୃଷ୍ଣା, ମୋର ସର୍ବସ୍ୱ ଯଦି ଚାଲିଗଲା, ତେବେ ଆଉ ମୁଁ ମିଛ ଢାଲ ବୁଣି ବୁଣି ମୁହଁରକ୍ଷା କରିବା ଚେଷ୍ଟାରେ ଆଉ ଲାଭ କ'ଣ ?

ସେହି ନିଷ୍ଠୁର ହୃଦୟହୀନ ଲୋକଟା ଅଳକାକୁ ଶାସନ କରିବାକୁ ଆସିଥିଲା, କହିଥିଲା— ଚୁପ୍ ! ଏକଦମ୍ ଚୁପ୍ କରି ରହ । ଏତେଦିନ ହେଲା ମୁଁ ଚୁପ୍ କରି ରହିଛି, ଏଥରଠୁ ତମର ପାଳି ।

କିନ୍ତୁ ଅଳକା ନାଆଁର ସେହି 'ଅତି ଆଧୁନିକା' ହେବାର ଚେଷ୍ଟାରେ ବିକୃତ ହୋଇଯାଇଥିବା ମଣିଷଟା ତା' କରିପାରିନି, ଯିଏକି ସେହି ସୁବର୍ଣ୍ଣଲତାର ବଂଶଧରର ସ୍ତ୍ରୀ, ରାଜେନ୍ଦ୍ରଲାଲ ଷ୍ଟ୍ରୀଟ୍‌ର ଏ ଘରଟାର କିଛି ଅଂଶରେ ଯାହାର ରହିଛି ଆଇନ ସମ୍ମତ ଅଧିକାର, ସେହି ଅଳକା ତୁନି ହୋଇ ରହିପାରିନି ।

ହଁ, ସେହି ଆଇନସଙ୍ଗତ ଅଧିକାର ବଳରେ ହିଁ ଅଳକା ତା'ର ପେଇଣ୍ଟ୍ କରିବା ମୁହଁ ଆଉ ରଙ୍ଗ ଲଗାଇଥିବା ଓଠ ବଙ୍କାଇ କହୁଥାଏ 'ମୋ ଘରେ ମୁଁ ଯାହା ଖୁସି କରିବି, କାହାରି କିଛି କହିବାକୁ ଆସିବାର ଅଧିକାର ନାହିଁ । ଭଲ କରିବି ମୋ ଝିଅକୁ ମୁଁ ନଚେଇବି, ଗୀତ ଗାଇବା ଶିଖାଇବି, ସମାଜରେ ଛାଡ଼ିଦେବି ।...... ଏ ଘରର, ଏ ଲୁଣିମରା କାନ୍ଥର ପ୍ରତ୍ୟେକ ଖଞ୍ଜାରେ 'ସନାତନୀ' ସଂସ୍କାର ଏବେ ମଧ୍ୟ ବସିଛି, ଆଉ ଏ ସଂସାରରେ ଜୀବନଯାତ୍ରା ଉପରେ ଆଖି ଦେଖାଇବାକୁ ଆସୁଛି, ତାକୁ ମୁଁ ଜାଣିନି, ତାକୁ ମୁଁ ମାନିବିନି, ମାନିବିନି । ତମେମାନେ ହେଉଛ କୂପମଣ୍ଡୂକ, ତମମାନଙ୍କ ପାଖରେ ଆଗେଇଯାଉଥିବା ପୃଥିବୀର ଖୋଲା ପବନ ଆସି ପଶିପାରୁନି । ତମର ଘରେ କୁଆଡ଼େ ଜଣେ ପ୍ରଗତିଶୀଳ ଲେଖିକା ଅଛନ୍ତି, ଅନ୍ତତଃ ଶୁଣୁଛି ବାହାର ଜଗତର ପାଠକ ସମାଜରେ ତାଙ୍କ ନାଁର ସେହି ବିଶେଷଣ ରହିଛି, କିନ୍ତୁ ମୁଁ ତ ତାଙ୍କର କିଛିହେଲେ ପ୍ରଗତିର ଚିହ୍ନ ଦେଖୁନି । ସେ ତମରିପରି ସଂସ୍କାରରେ ଆଚ୍ଛନ୍ନ । ନ ହେଲେ ମତେ ଏତେ ଲଢ଼ିବାକୁ ପଡ଼ି ନ ଥାନ୍ତା, ମୁଁ ଟିକିଏ ଅନୁକୂଳ ପବନ ପାଇଥାନ୍ତି । ମୁଁ କାହାରି ପାଖରେ କୌଣସି ଅନୁକୂଳ ପବନ ପାଇନାହିଁ, ସାରାଜୀବନ ପ୍ରତିକୂଳତା ସଙ୍ଗେ ଯୁଦ୍ଧ କରି କରି ନୌକାକୁ କୂଳ ଆଡ଼କୁ ନେଇ ଚାଲିଛି । ଏମିତିକି ତମେ ସ୍ୱାମୀ, ତମେମଧ୍ୟ ମୋର ପ୍ରତ୍ୟେକଟି କାର୍ଯ୍ୟକୁ, ପ୍ରତ୍ୟେକଟି କଥାକୁ ଅପସନ୍ଦ ଦୃଷ୍ଟିରେ ଦେଖି ଆସିଛ । କେବେହେଲେ ସାହାଯ୍ୟ କି ସହାୟତା କରି ନାହଁ । ତେବେକେ ଦେଖ, ମୁଁ କ'ଣ ହାରି ଯାଇଛି ? ନା ହାର୍ ମାନିଛି ?...... ନା, ମୁଁ ପରାଜୟ ସ୍ୱୀକାର କରିବିନି । ମୋ ଜୀବନରେ ଯାହା ପାଇନି, ଯେଉଁ ଜୀବନ ମୁଁ ପାଇନି, ସେ ଜୀବନ, ସେ ପାଇବା ମୁଁ ମୋର ଝିଅକୁ ଦେବି ।

ଏଯାବତ୍ ପ୍ରାୟ ଏମିତି ନାଟକୀୟ ଭାଷାରେ କଥା କହି ଆସିଛି ଅଳକା । ଅପୂର୍ବ ତୁନି ହୋଇ ରହିଛି, ତୁନି ହୋଇ ରହିବାକୁ ବାଧ୍ୟ ହୋଇଛି । ପ୍ରତିବାଦ କଲାକ୍ଷଣି ଅଳକା ଏଭଳି ଝଡ଼ ସୃଷ୍ଟି କରିଦିଏଯେ ଘର ଭିତରେ ମାନସମ୍ମାନ ବଞ୍ଚାୟ ରହେନି ।

ଅଥଚ ଆଜିକାଲିର କାଳରେ ଏ ରାସ୍ତା ଉପରର ଘରର ଭାଗ ଛାଡ଼ି ଦେଇ ମାନସମ୍ମାନ ନେଇ ଅନ୍ୟତ୍ର ଚାଲିଯିବାଟା ସହଜ ନୁହେଁ ।

ସେଥିପାଇଁ ତୁନି ହୋଇ ରହିବାକୁ ପଡ଼ିଛି ଅପୂର୍ବକୁ ଏବଂ ଅଳକା ସେହି 'ଚୁପ୍ କରାଇ ରଖିବାର' ଆତ୍ମପ୍ରସାଦରେ ଡଗମଗ କରୁ କରୁ ଗୋଟାଏ ଅଜଣା ଜଗତ ଆଡ଼କୁ ଅନ୍ଧ ପରି ଧାଇଁଯାଇଛି । ସେ ଧାଇଁବାର ବାହନ ଥିଲା ତା'ର ଝିଅ । ଯୋଉ ଝିଅଟା ଏବେ ଜବାବ ଦେଇଛି ।

ନା, ଆଉ କୋଉଦିନ ତାକୁ ଧରି ଧାଇଁ ପାରିବନି ଅଳକା ।

ସେଥିପାଇଁ ଏବେ ଅପୂର୍ବର ଦିନ ଆସିଛି ।

କଥା କହିବାର ଦିନ ।

ନିଆଁ ଟେଳା ପରି ଦୁଇ ଆଖିରେ ସେହି ଶୋକାହତା ଆଡ଼କୁ ଚାହିଁ ନିର୍ମାୟିକ ପରି କହିଲା– ଚୁପ୍ ! ଚୁପ୍ ! ଚୁପ୍ ହୋଇ ରହ ! କୁଁ ଶବ୍ଦ ମଧ କରନି ।

କିନ୍ତୁ ତା' ଆଗରୁ ସେ ଶବ୍ଦ କରିସାରିଥିଲା ଅଳକା । ମାତୃହୃଦୟ କ'ଣ ଥରଟେ ପାଇଁ ସୁଦ୍ଧା ହାହାକାରରେ ଫାଟି ନ ପଡ଼ି ରହିବ ?

ଅଳକା ଆତ୍ମଗ୍ଲାନିରେ ହାହାକାର କରି କହିଲା– ମୁଁ କ'ଣ କଲି ! ମୁଁ କ'ଣ କଲି ! ମୁଁ ଲୋକଲଜ୍ଜା ଭୟରେ ମୋର ସୁନାର ଝିଅକୁ ହଜାଇଦେଲି । ମୋ ଖୁକୁ, କାହିଁକି ମୁଁ ତୋ'ର ନିଷ୍ଠୁର ବାପକୁ ଡରିବାକୁ ଗଲି !

କାହିଁକି ତତେ ଧରି ଏମାନଙ୍କ ସଂସାରକୁ ଛାଡ଼ି ଚାଲି ଗଲିନି !

ତା'ପରେ ଆଉ କହି ପାରି ନ ଥିଲା ଅଳକା ।

ଚିରଦିନର ମୁଖରା ସେହି ଝିଅଟାକୁ ଚିରଦିନ 'ଚୁପ୍ ହୋଇ ରହିବା' ମଣିଷଟା ଚୁପ୍ କରି ଦେଇଛି ।

କିନ୍ତୁ ସେଥିରେ ଆଉ ଲାଭ କ'ଣ ହେଲା ?

ସେହି ଥରକର ହାହାକାରରେ ତ ଘରଟାଯାକର ଲୋକ ଜାଣିପକାଇଲେ ଘଟଣାଟା କ'ଣ । ଚାକର ଚାକରାଣୀ ମଧ ଜାଣିପକାଇଲେ । ଅତଏବ ବାହିର ଲୋକେ ମଧ ଜାଣିପକାଇଲେ ବୋଲି କହିବାକୁ ହେବ ।

ଏ ଘରର ଅନ୍ୟ ସଦସ୍ୟମାନେ ସାଧ ଅନୁସାରେ ଅଳକାର ଘର ଆଗରେ ଆସି ଠିଆ ହେଉ ନଥାନ୍ତି । ଅଳକାର ଔଦ୍ଧତ୍ୟ, ଅଳକାର ସ୍ୱେଚ୍ଛାଚାର, ଅଳକାର ବିଶ୍ୱକୁ ତୁଚ୍ଛ ଦୃଷ୍ଟିରେ ଦେଖିବା ଭାବ ସମସ୍ତଙ୍କୁ ଦୂରକୁ ଘୁଞ୍ଚାଇ ରଖୁଥାଏ ।

କିନ୍ତୁ ଆଜି ଆଉ ଅଳକାର ସେ ଗୌରବ ନାହିଁ, ଆଜି ଅଳକାର ମୁହଁର ରଙ୍ଗ ପୋଛି ହୋଇଯାଇଛି, ଆଖିର କଜ୍ଜ୍ୱଳ ଧୋଇ ହୋଇଯାଇଛି, ଉଦ୍ଧତ ଉଚ୍ଚଚୂଡ଼ା ଖୋଷାଟା ଭାଙ୍ଗି ଲୋଟି ପଡ଼ିଛି, ଅଳକା ପରାଜିତର ଚେହେରା ନେଇ ପଡ଼ି ରହିଛି ।

ତେବେ ଆଉ ଆସିବାକୁ ବାଧା କ'ଣ ?

ଗୋଟିଏ ବିଧବା ଝିଅ ଓ ଗୋଟିଏ ମୃତ ଝିଅର ସନ୍ତାନସନ୍ତତିଙ୍କୁ ଧରି ଏବଂ ବାତର ଯନ୍ତ୍ରଣା ଧରି ଆସି ଠିଆ ହୋଇଛନ୍ତି ସ୍ୱୟଂ ମଝିଆ ଦେଠେଇ, ଯେ କି ଅଳକାର ମୁହଁକୁ କେବେ ଚାହୁଁ ନ ଥିଲେ । ବଡ଼ ଗୃହିଣୀ ତାଙ୍କର ଜ୍ୱାଳାଭରା ପ୍ରାଣ ଧରି ଆସିଛନ୍ତି । ପୁଅର ସ୍ତ୍ରୀ ଅଳକା କୋଉଦିନ ହେଲେ ତାଙ୍କୁ ମଣିଷ ବୋଲି ଗଣ୍ୟ କରୁ ନଥିଲା, ଗୁରୁଜନ ବୋଲି ସମୀହ କରୁ ନ ଥିଲା, ସେ ମଧ୍ୟ ସେଥିପାଇଁ ସେହି ଭିନ୍ନ ହୋଇଯାଇଥିବା ପୁଅ, ପୁଅର ସ୍ତ୍ରୀର ଛାଇ ସୁଦ୍ଧା ମାଡ଼ୁ ନ ଥିଲେ ।

କିନ୍ତୁ ଆଜିର କଥା ସ୍ୱତନ୍ତ୍ର ।

ଆଜି ସେ ପ୍ରତିପକ୍ଷର ସକଳ ଦର୍ପ ଚୂର୍ଣ୍ଣ ହୋଇଛି !

ନିଜ ପ୍ରାଣ ପଛକେ ଫାଟି ଯାଉଥାଉ, ତେବେକେ ମନର ଅଗୋଚରରେ ନିଃଶବ୍ଦ ଉଚ୍ଚାରଣ କରି କହୁଥାନ୍ତି– ହେ ନାରାୟଣ, ଦେଖିଲି 'ଦର୍ପହାରୀ' ନାମ ହେଉଛି ତମର ଅସଲ ନାମ ।

ଘରଟାର ଏକାଂଶରେ କୋଣଟା ଆଡ଼କୁ ଛାୟା ପରି ଠିଆ ହୋଇଛି ଶମ୍ପା ଆଉ ତା'ର ବାପା-ମା'...... ଯେଉଁ ଶମ୍ପା ବହୁଦିନ ପରେ ଆଜି ପ୍ରଥମ କରି ଆଉଥରେ ଏ କୋଠାକୁ ଆସି ଆହ୍ଲାଦରେ, ବେଦନାରେ, ବିସ୍ମୟରେ କୌତୂହଳରେ ଚାରିଆଡ଼କୁ ଚାହିଁ ଦେଖୁଥିଲା । ସହସା ସେହି ଆର୍ତ୍ତନାଦ ଶୁଭିଲା ପବନକୁ ବିଦୀର୍ଣ୍ଣ କରିଦେଇ ।

–ମୁଁ କ'ଣ କଲି ! ମୁଁ କ'ଣ କଲି !

–''ଭଗବାନ ତମେ କ'ଣ କଲ ! ଏ କ'ଣ କଲ ତମେ ! ଏ ଶୋକର ସାନ୍ତ୍ୱନା ଅଛି ! ମୁଁ କ'ଣ କଲି !'' ଏ ଶୋକ ସାନ୍ତ୍ୱନାର ବାହାରେ !

ଶମ୍ପା ଅବାକ୍ ହୋଇ ଯେପରି ନିଜର ଭାଗ୍ୟକୁ ଦେଖୁଥିଲା । ଏତେଦିନ ହେଲା କିଛି ହେଲାନି, ଠିକ୍ ଆଜି ଘଟିଲା ଏ ଦୁର୍ଘଟଣା !

ଶମ୍ପା ଗୋଟାଏ ଅଦ୍ଭୁତ ବିଷାଦ-ବେଦନାରେ ଆଚ୍ଛନ୍ନ ହୋଇ ଠିଆ ହୋଇଥିଲା ସେ ନୀଳ ପଡ଼ିଯାଇଥିବା ଝିଅଟାର ସ୍ତବ୍ଧ ଦେହଟା ଆଡ଼କୁ ଚାହିଁ ।

ସେହି ଝିଅଟା ଶମ୍ପାର ଆଶୈଶବର ସଙ୍ଗିନୀ ନୁହେଁ, ଚିତ୍ତଜଗତର ସଖୀ ନୁହେଁ, ଏମିତିକି ସଂପର୍କ ସୂତ୍ରରେ ଯେଉଁ ବନ୍ଧନ ଟିକକ ରହିବା ଉଚିତ, ସେ ବନ୍ଧନର ଗ୍ରନ୍ଥି ମଧ୍ୟ ନ ଥିଲା ପରସ୍ପର ଭିତରେ । ତେବେବେ ସେ ଦୁଇଜଣ ପ୍ରାୟ ସମବୟସୀ, ଜନ୍ମରୁ ଦୁଇଜଣଯାକ ଗୋଟିଏ ଛାତ ତଳେ ରହିଛନ୍ତି ।

ଯେତେବେଳେ ଅପୂର୍ବ ତା'ର ସ୍ତ୍ରୀ-କନ୍ୟାଙ୍କୁ ନେଇ ରନ୍ଧାଘରକୁ ଅଲଗା କରିପକାଇ ନ ଥିଲା, ସେତେବେଳେ ଶମ୍ପା ଆଉ ଏ ଝିଅଟା ଏକାଠି ଖାଇଛନ୍ତି, ଏକାଠି ବସିଛନ୍ତି ।

ଏତେଦିନହେଲା ଶମ୍ପା ଅନୁପସ୍ଥିତ ଥିଲା, ଜାଣି ପାରି ନ ଥିଲା ସେମାନଙ୍କର ସେ କାଚର ପାର୍ଟିସନ୍ ଦେଇଥିବା ବଖରାର ଆଢୁଆଳରେ କ'ଣ ଘଟୁଛି, ସେ ଘଟଣା କେଉଁ ପରିଣତି ଆଡ଼କୁ ଆଗେଇ ଯାଉଛି ।...... ଆଜି ହେଇଟି ଏଇକ୍ଷଣି ଆସି ଚରମ ପରିଣତିର ମୁହାଁମୁହିଁ ଠିଆହୋଇ କିଛି ଭାବିବାର କ୍ଷମତା ହଜାଇ ଦେଇଛି ଶମ୍ପା, ଖାଲି ଆଚ୍ଛନ୍ନ ହୋଇ ଚାହିଁ ରହିଛି ।

ଆଉ ଏ ଘରର ଆଉଜଣେ ସଦସ୍ୟା ?

ଅଳକା ନାଁର ସେହି ପ୍ରଗତିଶୀଳ ମହିଳା ଜଣକ ପାଖରେ ସେ କୁଆଡ଼େ ଚିରକାଳ ବ୍ୟଙ୍ଗର ପାତ୍ରୀ ?

ସେହି ଲେଖିବା ବକୁଳ ?

ଏ ଘରେ ଯେ ମାନୁନି, ଏ ଘରେ ଯେ ନିଜକୁ ଲୁଚାଇ ରଖିବାର ଭୂମିକାରେ ହିଁ ଅଭ୍ୟସ୍ତ ?

ହଁ, ତାକୁ ମଧ୍ୟ ଏଠାକୁ ଆସିବାକୁ ପଡ଼ିଛି ।

ସମ୍ପର୍କର ଦାୟରେ ନୁହେଁ, ହୃଦୟର ଦାୟରେ !

ବକୁଳର ମନ ଭିତରେ କେଉଁଠି ଯେମିତି କନ୍‌କନ୍ ହେଉଛି ।

ଆମେ ଝିଅଟାକୁ ଚାହିଁ ଦେଖିନୁ, ଆମେ ଆମର କର୍ତ୍ତବ୍ୟ କରିନୁ । ତାକୁ ତା'ର ସେହି ନିର୍ବୋଧ ଆଉ ଆଧୁନିକତାର ବିକାରଗ୍ରସ୍ତ ମା' ହାତରେ ସମର୍ପଣ କରି ରଖିଦେଇଛୁ । ତା'ର ଏହି ପରିଣାମର ଭୟାବହ ଆଶଙ୍କା କ'ଣ ଆମ ମନ ଭିତରେ ଦେଖା ଦେଇ ନ ଥିଲା ?

ଦେଖା ଦେଇଥିଲା ।

ତେବେକେ ଆମେ 'ତା'ର ଛେଳି ଯୋଉପଟେ ଇଚ୍ଛା ସେ କାଟୁ' କହି ଦାୟିତ୍ୱ ଆଡ଼େଇ ବସିରହିଲୁ । ସେହି ଭୟାବହତା ହିଁ ଆସି ଚିଲ ପରି ଝାମ୍ପି ନେଇଗଲା ଝିଅଟାକୁ ।

ଆଉ କିଛି କରିବାର ନାହିଁ, ଭୁଲ ସଂଶୋଧନର ଆଉ କୌଣସି ଉପାୟ ନାହିଁ ।

ଆମମାନଙ୍କର ନାହିଁ କି ତା' ମା'ର ନାହିଁ ।

କିନ୍ତୁ ତା'ର ବାପା କ'ଣ ନିର୍ଦ୍ଦୋଷ ?

ସେ କ'ଣ ତା'ର କର୍ତ୍ତବ୍ୟ କରିଛି ? ନା ଏକ ନିଷ୍ଠୁର ହିଂସ୍ରତା ଧରି ବସି ବସି ଅପେକ୍ଷା କରିଛି, କେବେ ତା' ମା'ର ଦର୍ପ ଚୂର୍ଣ୍ଣ ହେବ ?

ଅସମ୍ଭବ, ଏ ହୁଏତ ଅସମ୍ଭବ, ତେବେକେ ତୁନି କରାଇ ଦେଇଥିବା ଅଳକା ମଝି ମଝିରେ ବନ୍ଧ ଭାଙ୍ଗି କଥା କହି ପକାଉଛି— ତୀବ୍ର ଅଭିଯୋଗର କଥା—

—ଜାଣୁଛି ଜାଣୁଛି, ଆଜି ତମର ଭାରି ଆହ୍ଲାଦ ହେଉଛି ! ଆଜି ତମର ଶତ୍ରୁ ହାରିଯାଇଛି ବରାବର ତମେ ମତେ ଧମକାଉଥିଲ— ଏତେ ବେଶୀ ମୁହଁ ଦେବାର ପ୍ରତିଫଳ ଦିନେ ତମେ ପାଇବ । ପାଇଲି ସେ ପ୍ରତିଫଳ । ଏଇଲେ ତମକୁ ଆନନ୍ଦ ଲାଗିବନି ? ଲଢ଼େଇରେ ଜିତିବାର ଆନନ୍ଦ !

ବକୁଳ ଆଗେଇ ଆସିଲା ।

ଯେଉଁ ବୋହୂଟି ସବୁକାଳେ ଔଦ୍ଧତ୍ୟ ସହିତ ତା' କଥାକୁ ହସି ଉଡ଼ାଇ ଦେଇ ଆସିଛି, ତାକୁହିଁ ଦୃଢ଼ସ୍ୱରରେ କହିଲା— ଏସବୁ କି କଥା ହେଉଛି ଅଳକା ?...... ଖାଲି ତମକୁ କଷ୍ଟ ଲାଗୁଛି ? ଅପୂର୍ବକୁ କଷ୍ଟ ଲାଗୁନି ?

ଅଳକା ମୁହଁ ଟେକି ଲାଲ୍ ଲାଲ୍ ଆଖିରେ କହିଲା— ଉପଦେଶ ଦେବାକୁ ଆସିଛନ୍ତି ? ଦିନ ପାଇଛନ୍ତି, ତା'ର ସଦ୍‌ବ୍ୟବହାର କରୁଛନ୍ତି ? କରିବେ ନିଶ୍ଚୟ । ତେବେ 'ଏ ଦିନ' ଆପଣମାନେ ପାଇପାରି ନ ଥାନ୍ତେ । ସେଇ ନିଷ୍ଠୁର ଲୋକଟା, ଯାହାର ଦୁଃଖରେ ଆପଣଙ୍କର ସହାନୁଭୂତି ହେଉଛି, ତାରି ପାଇଁ ଏ 'ଦିନ' ପାଇଲେ ଆପଣମାନେ । ମୁଁ ଆପଣମାନଙ୍କର ସେଇ ପଚା ସମାଜକୁ ମାନୁ ନ ଥିଲି, ମୁଁ 'କଳଙ୍କ'କୁ କେୟାର୍ କରୁ ନ ଥିଲି, ଖାଲି ଯାଙ୍କରି ଡରରେ— ହଁ, ଯାଙ୍କରି ଡରରେ ଖାଲି ମୋ ଝିଅ—

ବକୁଳ ଆସ୍ତେ ଆସ୍ତେ ଘୁଞ୍ଚି ଆସିଲା ।

ସେଇ ଅନୁତାପରେ ଜର୍ଜ୍ଜରିତ ବିକାରଗ୍ରସ୍ତ ମଣିଷଟା ବର୍ତ୍ତମାନ ପ୍ରାୟ ପାଗଳ କହିଲେ ଚଳେ । ତା କଥାରେ କାନଦେଲେ ଚଳିବନି ।

ବର୍ତ୍ତମାନ ଏହି ବିପଦରୁ ଉଦ୍ଧାର ପାଇବାକୁ ହେବ ।

ଏ ମୃତ୍ୟୁ ଶୋକର ପବିତ୍ରତା ନେଇ ଆସି ନାହିଁ, ଆସିଛି ବିପଦର ଭୟାବହତା ନେଇ ।

ବକୁଳ ବାହାରକୁ ଆସି ଡାକିଲା – ସାନ ଭାଇନା !

ଯାହା କରିବା କଥା ଏ ସାନଭାଇନାଙ୍କୁ କରିବାକୁ ପଡ଼ିବ ।

ତା'ପରେ ବକୁଳ ଅଗଣାର ଏପଟେ, ଯେଉଁଠାରେ ଉଚ୍ଚ କାନ୍ଥରେ ଏଘରର ପ୍ରାକ୍ତନ ଗୃହକର୍ତ୍ତା ପ୍ରବୋଧଚନ୍ଦ୍ର ଆଉ ତାଙ୍କ ଗୃହିଣୀ ସୁବର୍ଣ୍ଣଲତାର ଚିତ୍ର ଟଙ୍ଗା ହୋଇ ରହିଛି, ସେଠାକୁ ଚାଲି ଆସିଲା ।

ସେଆଡ଼କୁ ଚାହିଁ ରହିଲାନି, ଅନ୍ୟ ଗୋଟାଏ ପଟକୁ ଚାହିଁ ମନେ ମନେ କହିଲା – ମା', ତମେ କ'ଣ ସବୁବେଳେ ଏହି ମୁକ୍ତି ଚାହିଁଥିଲ ? ଏହି ଶୃଙ୍ଖଳମୁକ୍ତି ? ତମର ପ୍ରାଣକୁ ଖିନ୍‌ଭିନ୍ କରି ଚାହିଁବାର ଫଳ କ'ଣ ଏଇୟା ?

## ।। ୩୮ ।।

ବକୁଳର ଏ ପ୍ରଶ୍ନର ପ୍ରତିଧ୍ୱନି ଧ୍ୱନିତ ହୋଇଛି ସୁବର୍ଣ୍ଣଲତାର ଆହୁରି ଜଣେ ଆତ୍ମଜାର କଣ୍ଠରେ । '......ହେଲେ ଏଇୟାକୁ କ'ଣ ଆମେମାନେ ଚାହିଁଥିଲୁ ? ମୁଁ, ତମେ, ଆମମାନଙ୍କର ମା' ଆଇ, ଦେଶର ଅସଂଖ୍ୟ ବନ୍ଦିନୀ ସ୍ତ୍ରୀଲୋକ ? ଏହା ହିଁ କ'ଣ ସେ ସ୍ୱାଧୀନତାର ରୂପ ? ଯେଉଁ ସ୍ୱାଧୀନତା ପାଇଁ ଏକଦା ପରାଧୀନ ସ୍ତ୍ରୀଲୋକମାନେ ପଥରରେ ମୁଣ୍ଡ ପିଟିଛନ୍ତି, ନିଃଶବ୍ଦ ଆର୍ତ୍ତନାଦରେ ବିଧାତାଙ୍କୁ ଅଭିସମ୍ପାତ ଦେଇଛନ୍ତି ? ଏ କ'ଣ ସେହି ମୁକ୍ତିର ଆଲୋକ, ଯେଉଁ ମୁକ୍ତିର ଆଶାରେ ଲୁହାର କାରାଗାରରେ ଶୃଙ୍ଖଳିତା ସ୍ତ୍ରୀଲୋକମାନେ ତପସ୍ୟା କରିଛନ୍ତି, ପ୍ରତୀକ୍ଷା କରିଛନ୍ତି ?...... ନା ବକୁଳ, ଆମେ ଏହା ଚାହିଁ ନ ଥିଲୁ ।'

ବକୁଳ ଆଗରେ ଟେବୁଲ୍ ଉପରେ ଯେଉଁ ଖୋଲା ଚିଠିଟା ପଡ଼ିରହିଥିଲା, ତା'ର ଉପର ପୃଷ୍ଠାର ଏହି କେତୋଟି ଲାଇନ୍ ଆଡ଼କୁ ଅନେକ ସମୟ ଧରି ଚାହିଁଥିଲା ବକୁଳ । ଯେମିତି ଅକ୍ଷର ଗଣି ଗଣି ପଢୁଥିଲା ।

ତା'ପରେ କଲମଟା ଟେକି ନେଲା, ପ୍ୟାଡ୍‌ଟା ନେଲା । ଆସ୍ତେ ଆସ୍ତେ ଲେଖିବାକୁ ଲାଗିଲା । କିଏ ଜାଣିଛି ସେ ଚିଠିଟାର ଜବାବ ଦେଉଛି, ନା ନିଜର ପ୍ରଶ୍ନର ହିଁ ଜବାବ ଖୋଜୁଛି ।

'କିନ୍ତୁ ଆମମାନଙ୍କର ଚାହିଁବା ନେଇ କ'ଣ ପୃଥିବୀ ଚଳିବ ? ଏହି ଅନନ୍ତକାଳର ପୃଥିବୀ କେବେହେଲେ କ'ଣ କାହାର 'ଚାହିଁବା'ର ମୁହଁକୁ ଚାହିଁ ଚାଲୁଛି ? ଚାଲିବାର ରାସ୍ତା ବଦଳାଇଛି, ଜାଣିଲାପରେ ଥମକି ଠିଆ ହୋଇଛି ?...... ପ୍ରକୃତି ତା'ର ଅସରନ୍ତି ସମ୍ପଦର ଡାଲା ଧରି ଯେଉଁ ଋତୁଚକ୍ରରେ ଆବର୍ତ୍ତିତ ହେଉଛି, ସେ କ'ଣ କାହାରି ଚାହିଁବା ଉପରେ ନିର୍ଭର କରି ? ଜଗତରେ ଯାହା କିଛି ଘଟି ଯାଉଛି, ତାହା କାହାର ଇଚ୍ଛାରେ ? ଯାହା କିଛି ଅସଙ୍ଗତି, ଯାହା କିଛି ଭଲମନ୍ଦ, କାହାର ତପସ୍ୟାରେ, କାହାର ମୁଣ୍ଡପିଟିବା ହେତୁ ? କାହାରି ନୁହେଁ, କାହାରି ନୁହେଁ, ମଣିଷର ଭୂମିକା ହେଉଛି ଛିନ୍ନମସ୍ତକ ସୈନିକର ଭୂମିକା ।

ଆମେ ଭାବି ମରୁଛୁ– ମୁଁ କରୁଛି, ତମେ କରୁଛ, ସେମାନେ କରୁଛନ୍ତି, ଏମାନେ କରୁଛନ୍ତି, କିନ୍ତୁ ସେଇଟା କ'ଣ ସତ ?

ପୃଥିବୀ ତା'ର ଆପଣା ନିୟମରେ ଚଳେ, ପ୍ରକୃତି ତା'ର ଆପଣା ନିୟମରେ ଚଳେ, ସମାଜ ମଧ ଚଳେ ତା'ର ଆପଣା ନିୟମରେ । ମଣିଷ ସେଠି ନିମିତ୍ତ ମାତ୍ର । ତେବେକେ ମଣିଷ ବଦ୍ଧପରିକର ହୋଇ ସଙ୍କଳ୍ପ କରେ, ଏଇଟାକୁ ମୁଁ ନିୟନ୍ତ୍ରଣ କରିବି । ସେଥିପାଇଁ ସବୁବେଳେ ଦଉଡ଼ ଧାପଡ଼, ସବୁବେଳେ ବାଦ ଆଉ ସବୁବେଳେ ମୁଣ୍ଡ ପିଟା ଚାଲିଛି । ସେହି ଅତି 'ବୁଦ୍ଧିମାନ'ଙ୍କ ଦଳ ନିଜର ବୁଦ୍ଧିର ଅହଙ୍କାରରେ ସମାଜର ଗୋଟାଏ ଛାଞ୍ଚ ଗଢ଼ିପକାଇ ସେଇଟାକୁ କେବଳ ଚଳାଇବାକୁ ଚାହେଁ ଆଉ ନ ଚଳିଲେ ଆର୍ତ୍ତନାଦ କରି ମରେ– ଗଲା, ଗଲା, ସବୁ ରସାତଳକୁ ଗଲା ! ଯେମିତି ବନ୍ୟାରେ ଯେତେବେଳେ ଗ୍ରାମ, ନଗର, ଫସଲର କ୍ଷେତ ବୁଡ଼ିଯାଏ, ଆର୍ତ୍ତନାଦ ଉଠେ– 'ଗଲା ସବୁ ଗଲା !' କିନ୍ତୁ ସେ ଆର୍ତ୍ତନାଦରେ ମହାକାଳର କିଛି ଯାଏ ଆସେ ନାହିଁ । ପୃଥିବୀର କେଉଁଠି କିଛି କ୍ଷତଚିହ୍ନ ରହେନି ।

ଯାହା କ୍ଷତି ହୁଏ– ସେ କ୍ଷତି ବ୍ୟକ୍ତିର– ମନୁଷ୍ୟର । ଯାହା ଲାଭ-ଲୋକସାନ, ତାହା ମାତ୍ର କେତେଜଣ ଲୋକଙ୍କର । ସେମାନେ ଯେମିତି ଚାହିଁଥିଲେ ପାଇଲେ ନାହିଁ । ଯେଉଁ ଜୀବନର ସ୍ୱପ୍ନ ଦେଖିଥିଲେ ସେଇଟା ହେଲାନାହିଁ, ସେଇଟା ଭାଙ୍ଗି ଚୂନା ହୋଇଗଲା । ଖାଲି ଏତିକି । ତା'ଠାରୁ ବେଶୀ କିଛି ନୁହେଁ । ସେହି ଧ୍ୱଂସ ଉପରେ ପୁଣି ଫଳେ ନୂତନ ଫସଲ, ପୁଣି ଗଢ଼ିଉଠେ ନୂତନ ଗ୍ରାମ ସହର ।

ଆମେ ନିଜର କଳ୍ପନାରେ ସମାଜର ଗୋଟାଏ ଛାଞ୍ଚ ଗଢ଼ିଥିଲୁ, ଆମମାନଙ୍କର ସର୍ବାଙ୍ଗର ଶୃଙ୍ଖଳ ଯେଉଁଠି ଯେଉଁଠି ଯନ୍ତ୍ରଣାରେ ପୀଡ଼ିତ କରୁଛି । ସେଠାକାର ବନ୍ଧନକୁ ଶିଥିଳ କରିବାକୁ ଚାହିଁଥିଲୁ, ଭାବିଥିଲୁ ଏ ଶିକୁଳିରେ ନଟ୍‌ବୋଲ୍ଟୁ, କବ୍ଜା,

ସ୍କୁ ଏଗୁଡ଼ିକ ଟିକିଏ ହୁଗୁଳା ହେଉ, କିନ୍ତୁ ଆମମାନଙ୍କର ଚାହିଁବାଟା ହିଁ ତ ଶେଷ ଚାହିଁବା ନୁହେଁ ! ଆହୁରି କେତେ 'ଚାହିଁବା'ର ରାସ୍ତା ଧରି ସେହି ସ୍କୁ, କବ୍ଜା, ନଟ୍-ବୋଲ୍ଟଗୁଡ଼ିକ ଖୋଲି ହୋଇ ହୋଇ ଛିଟିକିପଡ଼ି ହଜିଯାଉଛି ।...... ଯିବ ତ । କାରଣ ଆହୁରି ଏକ ନୂଆ ଛାଞ୍ଚ ଜନ୍ମ ହେବାର ଅପେକ୍ଷାରେ ରହିଛି ।

ଏହିପରି ହିଁ ଏ ଅନନ୍ତକାଳର ପୃଥିବୀର ଅସରନ୍ତି ଜୀବଜଗତ, ମହାକାଳର ଖଜଣା ଯୋଗାଇ ଚାଲିଛନ୍ତି । ସେମାନେ ଭାବୁଛନ୍ତି, ଚେଷ୍ଟା କରୁଛନ୍ତି, ପ୍ରତ୍ୟାଶା କରୁଛନ୍ତି, ତପସ୍ୟା କରୁଛନ୍ତି, ଲଢ଼େଇ କରୁଛନ୍ତି, ତା'ପରେ କୁଆଡ଼େ ବିଲୀନ ହୋଇଯାଉଛନ୍ତି ।

ସେଥିପାଇଁ ଗୋଟିଏ ଯୁଗରେ ଯାହା 'ନିର୍ଭୁଲ ଛାଞ୍ଚ'– ପରବର୍ତ୍ତୀ ଯୁଗରେ ତା' ଭୁଲରେ ଭର୍ତ୍ତି । ବହୁ ଚିନ୍ତାବିତ୍ଙ୍କ ଚିନ୍ତାର ଫଳ, ବହୁ କଲ୍ୟାଣକାମୀମାନଙ୍କର କଲ୍ୟାଣ ଚେଷ୍ଟା, ଆଉ ବହୁତ ତାପସଙ୍କର ତପସ୍ୟାର ଫଳ ଯେଉଁ ସମାଜବ୍ୟବସ୍ଥା, ତାକୁ ଦେଖି ପରବର୍ତ୍ତୀକାଳ ବ୍ୟଙ୍ଗ କରେ, ବିଦ୍ରୂପ କରେ, ଅବଜ୍ଞା କରେ ।

ଭାବେ ଏମାନେ କି ବୋକା ଥିଲେ !

କି ମୂର୍ଖ !

ତେବେବେ ସମାଜ ଚିରଦିନ 'ଜୀବନ' ନେଇ ପରୀକ୍ଷା ନିରୀକ୍ଷା ଚଳେଇଯିବ । କାହାରି ଚାହିଁବାକୁ ଖାତିର କରିବନି ।

ବକୁଳ ହୁଏତ ଚିଠିଟା ଲେଖୁଛି । ତା'ର ସାନମଝିଆ ନାନୀ ପାରୁଲ୍ର ଚିଠିର ଜବାବ ।

ନହେଲେ ସାମ୍ନାର ଖୋଲାଚିଠିର ପୃଷ୍ଠା ଓଲଟାଇବା ଦରକାର କ'ଣ ? ସେ ପଟେ ପାରୁଲ୍ ଯାହା ଲେଖିଛି, ସେଇଟା ପୁଣି ଦେଖିବାକୁ ଗଲା କାହିଁକି ବକୁଳ ?

ଭୁଲ୍ କରି ହୁଏତ ଓଲଟା ପଟଟା ଓଲଟାଉଛି ବକୁଳ, ସେଥିପାଇଁ ଆଗର କଥାଗୁଡ଼ାକ ସଙ୍ଗେ ଯୋଗସୂତ୍ର ଖୋଜି ପାଉନି ।

ପାରୁଲ୍ ସବୁବେଳେ ବସେଇ ବସେଇ ପରିଷ୍କାର କରି ଲେଖେ, ଏବେ ମଧ୍ୟ ଏହି ଉତ୍ତାଳ ପ୍ରଶ୍ନରେ ତା' ହାତ ଲେଖାରେ ଦ୍ରୁତତାର ଛାପ ସେମିତି ନାହିଁ, ଯେମିତି ଥାଏ ବକୁଳର ଲେଖାରେ । 'ଅନାମିକା ଦେବୀ' ହୋଇ ଅନେକ ଲେଖିବାକୁ ପଡ଼େ ବକୁଳକୁ, ସେଥିପାଇଁ ସେ ଯେତେବେଳେ 'ବକୁଳର କଥା' ଲେଖିବାକୁ ବସେ, ସେତେବେଳେ ଦ୍ରୁତତା ଆଉ ବ୍ୟସ୍ତତାର ଛାପ ପଡ଼ିଯାଏ ।

ପାରୁଲ୍‌ର ବାହାରର ଜୀବନ ଚିରକାଳ ଶାନ୍ତ ଛନ୍ଦରେ ଆବର୍ତ୍ତିତ । ଖାଲି ପାରୁଲ୍‌ର ଭିତରର ଜୀବନ ଚିର-ଅଶାନ୍ତ ।

ତେବେକେ ପାରୁଲ୍ ମୁକ୍ତା ପରି ଅକ୍ଷର ଲେଖିପାରେ । ଲେଖିଛି—

'ଗୋଟାଏ ଅବିଶ୍ୱାସ୍ୟ ଘଟନା ଘଟିଗଲା କିଛିଦିନ ଆଗେ । ତୋ'ଛଡ଼ା ଆଉ କାହାକୁ କହିବି !

ହଠାତ୍ ଖବର ପାଇଲି ଶୋଭନର ଭୀଷଣ ଦେହ ଖରାପ, ଅଫିସ୍‌ରେ ହଠାତ୍ ଚୈତନ୍ୟ ହରାଇ ଚଉକିରେ ପଡ଼ିଯାଇଥିଲା, ହସ୍ପିଟାଲ୍‌କୁ ନେଇ ଯାଇଛନ୍ତି ଅଫିସ୍‌ର ଜଣେ ଚିହ୍ନା ପିଲା, ମୁଁ ଥରେ ଯେତେବେଳେ ଯାଇଥିଲି ମାଉସୀ କହୁଥିଲା, ଖବରଟା ସେ ପଠାଇଲା ।

ବୁଝି ପାରୁଥିବୁ, କି ଅବସ୍ଥାରେ କି ଭାବରେ ଧାଇଁ ଯାଇଥିବି !

ଯାଇ ଦେଖିଲି ହସ୍ପିଟାଲ୍‌ରୁ ଘରକୁ ଆଣିଛନ୍ତି ।

ଆଉ ଦେଖିଲି ରେଖା ସେବା କରୁଛି ।

ତାକୁ ମଧ୍ୟ ସେମାନେ ଖବର ଦେଇଥିଲେ ।

ମୁଁ ଧାଇଁଯିବା ପାଇଁ ମତେ ସାଙ୍ଗ ଯୋଗାଡ଼ କରିବାକୁ ପଡ଼ିଥିଲା, ସେଥିପାଇଁ ଯାହା ଟିକିଏ ଡେରୀ ହୋଇଥିଲା, ତା'ର ତ ତା' ହୋଇନି । ସେ ନିଜେ ଏକା ଚାଲିଆସିଛି ।

ମନର ଅଗୋଚରରେ ପାପ ନାହିଁ ବକୁଳ, ସେହି ପ୍ରାୟ ଅଚୈତନ୍ୟ ପୁଅଟାକୁ ଦେଖି ମଧ୍ୟ ମୋର ମନ କହିଲା— ଭଗବାନ ଯାହା କରନ୍ତି ମଙ୍ଗଳ ପାଇଁ କରନ୍ତି, ଏ କଥାଟା କୋଉଦିନ ବିଶ୍ୱାସ କରୁ ନ ଥିଲି, ଆଜି କଲି । ଶୋଭନର ସେହି ମୃତ୍ୟୁତୁଲ୍ୟ ଅସୁସ୍ଥତା ଶୋଭନକୁ ଆଉଥରେ 'ଜୀବନ'ର ସ୍ୱାଦ ଫେରାଇଦେଲା । ଅସୁସ୍ଥତା ବଦଳରେ ଆଉଥରେ ସୁଖ ଫେରି ପାଇଲା ଶୋଭନ ।

ମାତୃହୃଦୟର ବ୍ୟାକୁଳତା ଧରି ଯାଇଥିଲି, କିନ୍ତୁ 'ମାତୃ-ଅଧିକାର'ର ଦାବୀ ଧରି ପୁଅର ମୁଣ୍ଡ ପାଖରେ ବସିବାକୁ ଗଲି ନାହିଁ । ବାହାର ଲୋକଙ୍କ ପରି ଖାଲି ପାଖରେ ଟିକିଏ ବସିଲି, ଖାଲି ବୋହୂକୁ ପଚାରିଲି, ଅବସ୍ଥା କେମିତି, କ'ଣ ଔଷଧ ଖାଉଛି, ଡାକ୍ତର କ'ଣ କହୁଛନ୍ତି, ଆଉଥରେ ଡାକ୍ତର କେତେବେଳେ ଆସିବେ । ପଚାରିଲି କେତେଦିନ ଡାକ୍ତରଖାନାରେ ରହିବାକୁ ପଡ଼ିଥିଲା । ଖାଲି ପଚାରିଲିନି— ତୁ କେବେ ଆସିଲୁ । କେତେବେଳେ ଆସିଲୁ ?

ଯେମିତି ସେ ଅଛି । ଯେମିତି ସେ ବରାବର ଥିଲା ।

ତା' ଆସନରେ ଯାଇ ସେ ଯେତେବେଳେ ପୁନଃପ୍ରତିଷ୍ଠିତ ହୋଇଛି, ସେତେବେଳେ ଆଉ କାହିଁକି ତାକୁ ମନେ ପକାଇଦେବି– ଦିନେ ତୁ ନିଜର ଇଚ୍ଛାରେ ଏ ଆସନକୁ ଛାଡ଼ିଦେଇ ଚାଲିଯାଇଥିଲୁ ।

ଶୋଭନର ତୃଷିତ ଦୃଷ୍ଟି ଯେ ସବୁବେଳେ ତା' ସ୍ତ୍ରୀକୁହିଁ ଖୋଜୁଛି, ସେ କଥାରେ ମନରେ ମୋର କିଛି ଅଭିମାନ ଜମି ଉଠିନି ବକୁଳ, କିଛି କ୍ଷୋଭ ମଧ୍ୟ ଜମିନି ।

ମନେ ହୋଇଥିଲା, ବଞ୍ଚିଗଲି । ମୁଁ ରକ୍ଷା ପାଇଗଲି ।

'ଭଲପାଇବାର' ପ୍ରକୃତ ଚେହେରା ଦେଖି ମୁଁ ବଞ୍ଚିଗଲି । ବଞ୍ଚିଗଲି ଯେତେବେଳେ ଦେଖିଲି ଚାକରବାକରଙ୍କୁ ବୋହୂ ଗାଳି ଦେଉଛି, ଘର ଅସଜଡ଼ା କରି ରଖିଛନ୍ତି କାହିଁକି ବୋଲି । ବଞ୍ଚିଗଲି ବୋହୂ ଆଉଥରେ ରନ୍ଧାଘର ଓ ଭଣ୍ଡାରଘରର କେନ୍ଦ୍ରରେ ପ୍ରତିଷ୍ଠିତ ହୋଇଛି ବୋଲି ।

ଶୋଭନ ଯାହା ଖାଇବା କଥା ବୋହୂ ତିଆରି କରେ, ଏବଂ ଏମିତି ନିପୁଣଭାବରେ କରେ ଯେ ସ୍ୱୀକାର କରିବାକୁ ଲାଜ ଲାଗୁନି, ମୋ ଦେଇ ଯାର ଚାରିଭାଗରୁ ଭାଗେ ହୋଇ ନ ଥାନ୍ତା ।

ଆସ୍ତେ ଆସ୍ତେ ସୁସ୍ଥ ହୋଇ ଉଠୁଥିଲା ଶୋଭନ, ତା' ମୁହଁରେ ନୂତନ ସ୍ୱାସ୍ଥ୍ୟ ଓ ଲାବଣ୍ୟ ସହିତ ଯେଉଁ ଆଶା ଆଉ ଆନନ୍ଦର ସୌନ୍ଦର୍ଯ୍ୟ ଫୁଟି ଉଠିଥିଲା, ସେ କଥା ଦେଖି ବର୍ତ୍ତି ଯାଉଥିଲି ।

ବୁଝିଲି, ସ୍ତ୍ରୀ ଫେରିଆସିବା, ଦୁଇଜଣଙ୍କ ମଝିରେ ଥିବା ଭୁଲ୍-ବୁଝାମଣାର ଅବସାନ, ଏହାହିଁ ତା'ପକ୍ଷରେ ମୃତସଞ୍ଜୀବନୀର କାମ କରୁଛି ।

ଭାବିଲି ଏଥର ପଳାଇଯାଏ ।

ବେଶୀ ସ୍ୱାଦ ପାଇବାର ଲୋଭରେ ଦରକାର ନାହିଁ । ଖାଲି ସେ ହତଭାଗ୍ୟ ପିଲାଟାକୁ ବୋର୍ଡ଼ିରୁ ନେଇଆସିବା କଥା କହି ଯାଇ ପାରିଲେ–

ସେଦିନ ଶୋଭନ ବେଶ୍ ଭଲ ଥିଲା, ଭାବିଲି ଏଥର କହିବି । ଯାଇ ଦେଖିଲି ବିଛଣାରେ ବସି ଖବରକାଗଜ ପଢୁଛି ଶୋଭନ, ବୋହୂ ପାଖରେ ଚଉକିରେ ବସିଛି, ବୋଧହୁଏ ଶୋଭନର ଜାମାରେ ବୋତାମ ଲଗାଉଛି । ଚାଲି ଆସିଲି । ଛନ୍ଦଭଙ୍ଗ କରିବାକୁ ଇଚ୍ଛା ହେଲାନି । ଏପଟ ସେପଟ ଘୂରି ବୁଲିଲି ।

କିଛିସମୟ ପରେ ଏଘରକୁ ଆସି ଦେଖିଲି ବୋହୂ ଶୋଭନର ଆଲମାରି ଖୋଲି ଯେତେକ ପୋଷାକ ବାହାର କରି ଖରାରେ ଦେଉଛି, ଆଲମାରିର ଦେରାଜ ହେରିକା ଖୋଲା ହୋଇ ପଡ଼ିଛି ।

ଆହ୍ଲାଦର ଚାଞ୍ଚଲ୍ୟ ବହୁତ ବେଶୀ ଚାଞ୍ଚଲ୍ୟ ବକୁଳ, ସେ ଆହ୍ଲାଦକୁ ଯେମିତି ନିଜ ଭିତରେ ଧରି ରଖିପାରୁ ନ ଥିଲି !

ସେତିକିବେଳେ ବୋହୂ ଆସିଲା ସେ ଘରକୁ ।

କହି ପକାଇଲି— ଏଥର ଜଣେ ପିଅନ-ଫିଅନ କାହାକୁ କହି ମତେ ପଠାଇ ଦେବାର ବ୍ୟବସ୍ଥା କରିବୁ ବୋହୂ । ଶୋଭନ ତ ଏବେ ଭଲ ଅଛି ।

ବକୁଳ ଲୋ !, ତା'ର ଉତ୍ତର ଶୁଣି ବୋକା ହୋଇଗଲି ।

ପାରୁଲ୍‌ବାଲା କେବେହେଲେ ଜୀବନରେ ଏମିତି ବୋକା ହୋଇଯାଇ ନ ଥିଲା !

ଅଥଚ ସେ ବେଶ୍ ସହଜ ଗଳାରେ କହିଲା— ଭଲ ଅଛନ୍ତି, ତେବେ ଏବେ ମଧ୍ୟ ତ ଅଳ୍ପ ଦେଖାଶୁଣା କରିବା ଦରକାର । ଆପଣ ମଧ୍ୟ ଚାଲିଯିବେ ?

'ମୁଁ ମଧ୍ୟ' ଚାଲିଯିବି ! ଏ ପୁଣି କି ଭାଷା !

ବୋକା ଭଳି କହି ପକାଇଲି, ଭାରି ବୋକା ଭଳି କହି ପକାଇଲି, 'ମୁଁ ମଧ୍ୟ' ମାନେ ?

ରେଖା କହିଲା, ମୁଁ ତ କାଲି ଚାଲି ଯାଉଛି । ଛୁଟି ସରିଗଲା ।

ତା'ପରେ ଟିକିଏ ହସି କହିଲା— ଆପଣଙ୍କର ତ ଆଉ ଛୁଟି ସରିବାର ପ୍ରଶ୍ନ ନାହିଁ । ଆହୁରି କିଛିଦିନ ରହିଥିଲେ ଭଲ ହୋଇଥାନ୍ତା ।

ତେବେକେ ସେତେବେଳେ ମଧ୍ୟ ପୂରା କଥାଟା ମୁଁ ବୁଝି ପାରି ନ ଥିଲି ବକୁଳ !

—ହୁଏତ ଅଚେତନ ମନର ଇଚ୍ଛାଟା ହିଁ ମତେ ବୁଝିବାକୁ ଦେଇ ନ ଥିଲା !

ଆଖି ଆଗରେ ପ୍ରିୟଜନଙ୍କ ମୃତ୍ୟୁ ଘଟିଲେ, ସେଇଟାକୁ ନିଶ୍ଚିତ ଦେଖି ମଧ୍ୟ ଯେମିତି ଥରକୁ ଥର ମନେହୁଏ, ହେଇଟି ବୋଧହୁଏ ଛାତିଟା ଉଠପଡ଼ ହେଉଛି, ହେଇଟି ବୋଧହୁଏ ନିଃଶ୍ୱାସର ଶବ୍ଦ ହେଉଛି, ସେହିପରି ଅବୋଧ ପ୍ରତ୍ୟାଶାରେ ହିଁ ଭାବିଲି, ହୁଏତ ହଠାତ୍ ଚାଲି ଆସିଛି ବୋଲି ଏକାବେଳେ ଇସ୍ତଫା ଦେଇ ଦେଇ ଆସିପାରିନି, ସେଥିପାଇଁ ଛୁଟି ସରିବାର ପ୍ରଶ୍ନ ଉଠିଛି, ଅଥବା ହୁଏତ, ଏମିତି ହଠାତ୍ ଦଉଡ଼ି ଚାଲି ଆସିଥିଲା ସଙ୍କଟାପନ୍ନ ଅସୁସ୍ଥତାର ଖବର ଶୁଣି, ଆସି ଦେଖିଲା କି ଭୁଲ ସେ କରିଛି ଦୂରରେ ବସି ରହି !

ଭଲ ପାଇବାର ଘରେ ଭଲପାଇବାର ଲୋକଙ୍କ ପାଖରେ ନୂଆ କରି ବନ୍ଦୀ ହୋଇଯାଇ ଅଟକି ଯାଇଛି । ତେବେକେ ସେଠାର ଋଣଟା ଶୁଝିବାକୁ ଥରଟେ ହେଲେ ତ ଯିବାକୁ ପଡ଼ିବ ।

ସେଥିପାଇଁ କହିଲି— ଓଃ ! ହେଲେ କେତେଦିନ ପାଇଁ ଯିବାକୁ ପଡ଼ିବ ? ତା'ହେଲେ ସେ କେତେଦିନ ରହିଯିବି ।

ରେଖା ମୋ'ଠାରୁ ଅନେକବେଶୀ ଅବାକ୍ ହୋଇ କହିଲା,— କେତେଦିନ ପାଇଁ ମାନେ ? ଏଥର ତ ଚାଲିଯିବି !

—ଚାଲିଯିବୁ ? ଏଠୁ ପୁଣି ଚାଲିଯିବୁ ? ରେଖା ହଠାତ୍ ଜୋର୍‌ରେ ହସିପକାଇଲା ।

ହୁଏତ କାନ୍ଦଟାକୁ ହସରେ ରୂପାନ୍ତରିତ କରି ପକାଇବାର କୌଶଳ ସେ ଶିଖି ପକାଇଛି ।

ବୋଧହୁଏ ସେହି ହସଟା ହିଁ ହସି କହିଲା— ଏ ମା' ! ଆପଣ କ'ଣ ଭାବିଥିଲେ ମୁଁ ସବୁଦିନ ପାଇଁ ଏଠାରେ, ରହିବି ବୋଲି ଆସିଛି ? ହଠାତ୍ ଦେହଖରାପ ଶୁଣି—

ମୁଁ କହିଲି— ହଠାତ୍ ଦେହଖରାପ ଶୁଣି ରହି ନ ପାରି ଧାଇଁ ଚାଲି ଆସିବାଟାହିଁ ତ ଚିରକାଳ ରହିବାର ସୂଚନା ବୋହୂ ! ଥରଟେ ତମେମାନେ ଭୁଲ କରିଛ, ଆଉ ଭୁଲ କରନି । ଏଇଟା ହିଁ ତୋର ଚିରକାଳର ଜାଗା, ଚିରକାଳ ଏଇଠି ହିଁ ରହିବୁ ।

ସେ ମୋର ମୁହଁ ଆଡ଼କୁ ଟିକିଏ ଚାହିଁ କହିଲା— କ'ଣ ଯେ କହୁଛନ୍ତି !

ବେଶ୍ ସହଜରେ କହିଲା ।

ଆଉ କିଛି କହି ପାରିଲିନି ବକୁଳ । ସେହି ଅତି ସହଜ ଭଙ୍ଗୀ ନିକଟରେ କ'ଣ କାକୁତି-ମିନତି କରିବି ! କେଉଁ ଭାଷାରେ !

ଶୋଭନ ପାଖକୁ ଯାଇ ବସିପଡ଼ିଲି ।

ବୋଧହୁଏ କାନ୍ଦି ପକାଇଲି କହିଲେ ଠିକ୍ କୁହା ହୁଅନ୍ତା । ଯାହା ପାରୁଲ୍‌ର ଜୀବନରେ କେବେହେଲେ ଘଟିନାହିଁ ।

କହିଲି— ଶୋଭନ, ତୁ ବୋହୂକୁ କ'ଣ କହିଛୁ ?

ତା'ପରେ ତା' ମୁହଁ ଆଡ଼କୁ ଚାହିଁ ଦେଖିଲି ।

ଦେଖି ଆଶ୍ଚର୍ଯ୍ୟ ହୋଇଗଲି ।

ପୁଣି ଏ ମୁହଁଟାକୁ କେଉଁଠାରୁ ଫେରି ପାଇଲା ପିଲାଟା, ଯେଉଁ ମୁହଁଟାକୁ ପ୍ରଥମ ଦିନ ଆସି ଦେଖିଥିଲି ! ଏଇଟା ଯେମିତି ସେହି ମୁହଁଟା । ସେହି କଳା ପଡ଼ିଯାଇଥିବା ଶୁଖିଲା ମୁହଁଟା । ହଠାତ୍ ପାଇଥିବା ଲାବଣ୍ୟ ଟିକକ କୁଆଡ଼େ ଗଲା ? ଏତେ ଆକସ୍ମିକରେ ଏମିତି ଚାଲି ଯାଇ ପାରେ ?

ତା' ମୁହଁ ଆଗରେ ଏବେ ମଧ୍ୟ ଖବରକାଗଜଟା ରହିଛି ।

ପ୍ରାୟ ତା'ରି ଆଢୁଆଳରୁ ଶୁଖିଲା ଗଳାରେ କହିଲା— ମୁଁ କ'ଣ କହିବି ?

ରାଗିଗଲି । କହିଲି ଆଗରୁ ଖବରକାଗଜ କାଢ଼ । ସ୍ପଷ୍ଟ ଆଖିରେ ଚାହିଁ କହ— କିଛି କହିଲୁନି ବା କାହିଁକି ? କାହିଁକି କହିଲୁନି ତମେ ଗଲେ ଚଳିବନି ?

ଶୋଭନ କହିଲା— ଯାହା ହେବନି, ତା' ହେବାକୁ ଚେଷ୍ଟା କରିବାଟା ପାଗଳାମି !

—'ଏଇଟା କ'ଣ ସୁସ୍ଥତା ?' କହିଲି ତୋର ଦେହଖରାପ ଶୁଣି ରେଖା କେମିତି ଧାଇଁ ଆସିଥିଲା, ତା' ତୁ ଦେଖି ପାରିଲୁନି ? ତୋ'ର କ'ଣ ଆଖି ନାହିଁ ? 'ଭଲ ପାଇବା'କୁ ଚିହ୍ନି ପାରିଲୁନି ?

ସେ କ'ଣ କହିଲା ଜାଣିଛୁ ?

କହିଲା— ଚିହ୍ନିପାରିଲେ ମଧ୍ୟ କ'ଣ ? ସବୁଠାରୁ ଉପରେ ହେଉଛି ପ୍ରେଷ୍ଟିଜ୍ । ଯେଉଁ ଜିନିଷଟା 'ଭାଙ୍ଗି ଯାଇଛି' କହି ସମସ୍ତଙ୍କ ଆଗରେ ଫୋପାଡ଼ି ଦେଇଛି, ସେଇଟାକୁ ତ ଆଉ ପୁଣି ସମସ୍ତଙ୍କ ଆଗରେ ଗୋଟାଇ ନେଇ ହେବନି !

— କାହିଁକି ନେଇ ହେବନି ? ଖାଲି ଏଇୟା ସମସ୍ତଙ୍କ ପାଖରେ ଧରା ପଡ଼ିଯିବା— ଆମେ ଭୁଲ କରିଥିଲୁ, ଏଇୟା ତ ! ଆଉ କ'ଣ ? ସେ କଥାଟାକୁ କିଏ କେତେଦିନ ମନେ ରଖିବ ଶୋଭନ ? କିଏ କାହା କଥା ନେଇ ବେଶୀଦିନ ମୁଣ୍ଡ ଘୂରାଏ ? ସମସ୍ତେ ଦି'ଦିନ ପରେ ଭୁଲିଯିବେ । ମୁଁ କହୁଛି ଶୋଭନ, ତୁ ସେହି ଗୋଟିଏ ମିଥ୍ୟା, ଟିକିଏ ପ୍ରେଷ୍ଟିଜ୍‌ର ଅହଙ୍କାରରେ ପୁଣି ଭୁଲ୍ କରନା । ତୁ ଯାକୁ କହ !

ଶୋଭନ ମୋ ଆଡୁ ଆଖି ଫେରାଇ ନେଇ କାନ୍ଥରେ ଦୃଷ୍ଟି ରଖି କହିଲା— ଏକା ମୋର ପ୍ରେଷ୍ଟିଜ୍ ନୁହେଁ ମା' । ତେବେକେ କହିଥିଲି ।

— କହିଥିଲୁ ? ଶୋଭନ, ସେ କ'ଣ ଉତ୍ତର ଦେଲା ?

ଶୋଭନ ସେତେବେଳେ ଟିକିଏ ହସିଲା । ହସି କହିଲା— ଉତ୍ତର ଦେଲା, କହିଲା— ଆଉ ହେବନି ।

ମୃତ୍ୟୁ ପାଖରେ ଯେମିତି ଅସହାୟତା, ଯେମିତି ନିରୁପାୟତା, ୟା ମଧ୍ୟ ଯେମିତି ସେଇଭଳି । ସେମାନଙ୍କର ନିଜ ହାତର ଦଣ୍ଡ ସେମାନଙ୍କ ପାଖରେ ମୃତ୍ୟୁ ପରି ଅନିବାର୍ଯ୍ୟ ।

ଅତଏବ ରେଖା ଏ ଘରକୁ ସଜାଡ଼ିଦେଇ ଫେରିଯିବ, ରେଖା ତା'ର ନିଃସଙ୍ଗ ସ୍ୱାମୀର କେଉଁଠି କି ଅସୁବିଧା ରହିଛି ସେ କଥା ଟିକିନିଖି କରି ଦେଖି ତା' ସାଧ

ଅନୁସାରେ ପ୍ରତିକାର କରି ଯିବ, ରେଖା କୁଆଡ଼େ ବାକି ଜୀବନଟା କାନ୍ଦକୁ ହସରେ ରୂପାନ୍ତରିତ କରି ହସି ହସି ପୃଥିବୀରେ ବୁଲିବ, ଆଉ ଶୋଭନ ନାମକ ପୁଅଟା 'ଅନୁଶୋଚନା' ନାମକ ପାଉଁଶ ତଳର ନିଆଁରେ ତିଳ ତିଳ କରି ପୋଡ଼ିହୋଇ, ଶୀଘ୍ର ବୁଢ଼ା ହୋଇଯିବ, ଜୀବନର ସବୁ ଆକର୍ଷଣ ହରାଇବ, ଆଉ ଛଟପଟ ହେବ ଅଶାନ୍ତ ଯନ୍ତ୍ରଣାରେ । ତେବେକେ କେହି ହେଲେ ଭାବିବେନି, ଏତେ ନିରୁପାୟତା କାହିଁକି ? ଉପାୟ ତ ଥିଲା ଆମରି ହାତରେ । ଆମରି ହାତରେ ହିଁ ଅଛି । କାରଣ ଆମମାନଙ୍କର ସ୍ନେହଟା ରହିଛି ସେଇଟା ମରି ଯାଇନି ।

ଭାବି ପାରିଥାନ୍ତେ ଯଦି ସେମାନଙ୍କର ସେ ସାହସ ଥାଆନ୍ତା, ସେ ଶକ୍ତି ଥାଆନ୍ତା ! ଯେଉଁ ଶକ୍ତିରେ ସେହି 'ସମସ୍ତ'ଙ୍କର ଆଖିକୁ ଅବହେଳା କରି ହୋଇଥାନ୍ତା !

ତା'ର ଅର୍ଥ କେହି କେଉଁଠି ଆଗେଇ ନାହାନ୍ତି ବକୁଳ, ଆଗେଇ ଯାଉନାହାନ୍ତି । ଆମେମାନେ ମଧ୍ୟ ଯେଉଁଠି ଥିଲେ, ଏମାନେ ମଧ୍ୟ ସେଇଠି ଅଛନ୍ତି ।

ରେଖା ଚାଲିଗଲା । ମୁଁ ରହିଥିଲି ଆଉ କେତେଦିନ । ବସି ବସି ପୁଅଟାର ଯନ୍ତ୍ରଣା-ପୀଡ଼ିତ ମୁହଁଟାକୁ ଦେଖିଲି, ଯେଉଁ ଯନ୍ତ୍ରଣାର ଛାୟା ଦେଖିଛି ରେଖାର ମୁହଁରେ ମଧ୍ୟ !

ଏବେ ଫେରି ଆସିଛି । ଗଙ୍ଗାର ଏହି ତରଙ୍ଗ ସାମନାରେ ବସି ବସି ଭାବୁଛି, ଆମେ କ'ଣ ଏଇୟା ଚାହିଁଥିଲେ ? ଏହି ମୁକ୍ତି ?

ତୁ ତ ଜାଣିଚୁ ଆମର ଆଈ ସତ୍ୟବତୀ ଦେବୀଙ୍କ କଥା !

ସେ କୁଆଡ଼େ ଏ ପ୍ରଶ୍ନର ଉତ୍ତର ଖୋଜିବାକୁ ଗୃହସଂସାରର ସୀମା ଛାଡ଼ିଦେଇଥିଲେ – 'ବିବାହ' ଜିନିଷଟା ଭାଙ୍ଗିବାର ନୁହେଁ କାହିଁକି ? ସେ କ'ଣ ଏବେ କେଉଁଠି ବସି ତାଙ୍କର ପ୍ରଶ୍ନର ଅନୁକୂଳ ଉତ୍ତର ପାଇ ଭାରି ଖୁସୀ ହୋଇ ଯାଇଛନ୍ତି ? ଦେଖୁଛନ୍ତି, ସେଇଟା ଭାଙ୍ଗିବାର କି ନୁହେଁ ? ଏ ପ୍ରଶ୍ନଟାହିଁ ଆଜି ହାସ୍ୟକର ହୋଇଯାଇଛି !

ହୁଏତ ବହୁତ ପୁରୁଣା, ବହୁତ ବ୍ୟବହୃତ ସେହି ବିବାହ ପ୍ରଥାଟା ହିଁ ଆଉ ପୃଥିବୀରେ ରହିବନି । ହୁଏତ –

ବକୁଳ ଚିଠିର ଏ ପୃଷ୍ଠାଟାକୁ ଠେଲି ରଖିଦେଇ ନିଜର ଲେଖା ପ୍ୟାଡ୍‌ଟା ଉପରେ ଆଖି ପକାଇଲା । ଆଉ ଅତ୍ୟନ୍ତ ଦ୍ରୁତତା ସହ ଲେଖି ଚାଲିଲା '– କିନ୍ତୁ ସେଥିରେ କ୍ଷତି କ'ଣ ? ଏମିତି ଗୋଟିଏ କାଳ ଥିଲା, ଯେତେବେଳେ ସେ ପ୍ରଥାଟା ନ ଥିଲା । ବାହା ପ୍ରଥା ନାହିଁ, ସେମାନେ କେବଳ ଜୀବଜଗତର ନିୟମରେ ହିଁ ଚଳୁଛନ୍ତି ।

ଅବଶ୍ୟ କୌଣସି ଗୋଟାଏ ନିୟମ ମାନି ଚଳନ୍ତି । ସେମିତି ତ ପଶୁପକ୍ଷୀ କୀଟପତଙ୍ଗମାନେ ମଧ୍ୟ ଚଳନ୍ତି । ସ୍ତ୍ରୀ-ପୁରୁଷଙ୍କ ନିଗୂଢ଼ ଆକର୍ଷଣର ବନ୍ଧନଟାକୁ କେହି ଆଡ଼େଇ ଦେଇ ପାରନ୍ତି ନାହିଁ ।

ପୃଥିବୀର ଇତିହାସରେ କୌଣସି 'ସଭ୍ୟତା' ହିଁ ଏ ବନ୍ଧନରୁ ମୁକ୍ତିଲାଭର ପଥ ବତାଇ ପାରିନାହାନ୍ତି । ସେଇଟା ରହିବ, ଏବଂ ଦେଶକାଳ ଆଉ ପାତ୍ରଙ୍କ ସୁବିଧା ଅନୁଯାୟୀ ନୂଆ ବ୍ୟବସ୍ଥା ତିଆରି ହେବ । ସୃଷ୍ଟି ହେବ ନୂଆ ନୂଆ ସଭ୍ୟତା ।

ନୂଆ ମଣିଷମାନେ ତାକୁ ହିଁ ଅନୁସରଣ କରି ଚଳିବେ । କହିବେ ଏଇଟା 'ନିର୍ଭୁଲ' ।

ସେବକାର 'ବର୍ତ୍ତମାନ'ର ସଭ୍ୟତା ନେଇ ଗୌରବ ବୋଧ କରିବେ, ଶିଳ୍ପ ନେଇ, ସାହିତ୍ୟ ନେଇ, ସମାଜନୀତି, ରାଜନୀତି ନେଇ ଗୌରବ ବୋଧ କରିବେ ।

କହିବେ— ଦେଖ, ଏ ହେଉଛି ଅମର ! ଏ ଅବିନଶ୍ୱର !

ମହାକାଳ ଅବଶ୍ୟ ଅଲକ୍ଷ୍ୟରେ ବସି ହସିବେ, ହସିବାଟା ହିଁ ଯେତେବେଳେ ତାଙ୍କର ପେସା ।

ଏକଦା ଏହି ମଣିଷ ଜାତିଟା ଗୁହାରୁ ବାହାରିପଡ଼ି ନାନାପ୍ରକାର ଚେଷ୍ଟା ଆରମ୍ଭ କରିଥିଲା । ଖାଲି ବଞ୍ଚିରହିବାର ଚେଷ୍ଟା । ଆଉକିଛି ନୁହେଁ । ଖାଲି କ୍ଷୁଧାର ନିବୃତ୍ତି କରି ବଞ୍ଚି ରହିବା । କ୍ରମଶଃ ଦେଖିଲା ଚେଷ୍ଟାର ଅସାଧ କିଛି କାମ ନାହିଁ । ଭାରି ଖୁସୀ ହୋଇଗଲା । ନିଜର କୃତିତ୍ୱ ଦେଖି ମୋହିତ ହୋଇଗଲା, ମୁଗ୍ଧ ହୋଇଗଲା, ଅବିରାମ ଚେଷ୍ଟା ଚାଲିଲା । ଅବଶେଷରେ ଗୁହାରୁ ଆସି ଚନ୍ଦ୍ରରେ ଚଢ଼ିଲା ।...... ଆହୁରି ଧାଉଁଛନ୍ତି, ଧାଉଁଛନ୍ତି ଊର୍ଦ୍ଧ୍ୱଶ୍ୱାସରେ । ଏ ମଣିଷମାନେ ଜାଣି ପାରୁ ନାହାନ୍ତି ସେମାନଙ୍କର ଚାଲିବା ରାସ୍ତାଟା ପୁଣି ଗୁହା ଆଡ଼କୁ ହୋଇଯାଉଛି !

ହେବ ତ ।

ହେବାକୁ ବାଧ୍ୟ । ପଥଟା ଯେ ବୃତ୍ତପଥ ।

ତେବେକେ କାଳ ହାତର ଛୋଟ କଣ୍ଢେଇ ଏହି ମନୁଷ୍ୟଗୁଡ଼ିକ ସେମାନଙ୍କର କ୍ଷଣକାଳର ଜୀବନର ସମ୍ବଳ ଟିକକ ନେଇ 'ଆଗକୁ ଯାଉଛୁ' କହି ଧାଇଁବେ !

ଧାଇଁବେ, ଧାଁଧପଡ଼ କରିବେ, ଡେଇଁବେ, ଚିତ୍କାର କରିବେ, ମାରିବେ, ମରିବେ, ଲୋଭରେ ବୁଡ଼ିଯିବେ, ହିଂସାରେ ଉନ୍ମତ୍ତ ହେବେ, ସ୍ୱାର୍ଥରେ ଅନ୍ଧ ହେବେ, ଆଉ ରାଗରେ ଜ୍ଞାନଶୂନ୍ୟ ହୋଇଯିବେ ।

ନିଜର ଦୁଃଖ ପାଇଁ ଦୋଷ ଦେବେ ଅନ୍ୟକୁ, ଆଉ ସମ୍ପଦ ପାଇଁ ନିଜର ମହିମାର ଅହଙ୍କାରରେ ସ୍ଫୀତ ହେବେ ।

ସେ ଜୀବନଟା ପାଇଁ ସାମାନ୍ୟତମ ପ୍ରୟୋଜନ, ତା'ର ପ୍ରୟୋଜନର ସୀମା ବଢ଼ାଇ ବଢ଼ାଇ ଆହୁରି 'ଅଧିକ'ର ପଛରେ ଅଜ୍ଞାନ ପରି ଧାଇଁବେ, ଯେଉଁ ସୁନାର କଣା ମାତ୍ର 'ନେଇ'ଯିବାର ଉପାୟ ନାହିଁ ଜାଣିଛନ୍ତି, ସେହି ସୁନାର ପାହାଡ଼ ଗଢ଼ି ତୋଳିବାକୁ ଜୀବନର ସମସ୍ତ ଶ୍ରେୟଗୁଡ଼ିକୁ ଜଳାଞ୍ଜଳି ଦେବେ ।

ଏହାରି ଭିତରେ ପୁଣି କିଛି ମଣିଷ ଚିତ୍କାର କରି କହିବେ– ଚଳିବନି, ଚଳିବନି । ଏସବୁ ଚଳିବନି ।

ତେବେକେ ଚଳିବ ।

କେତେଜଣ ମଣିଷ ଗଭୀର ଗଳାରେ କହିବେ– ସେଇଟା ଠିକ୍ ନୁହେଁ, ସେଇଟା ଅନ୍ୟାୟ, ସେଇଟା ପାପ ।

ଯେପରି ପାପପୁଣ୍ୟର ମାପକାଠି ତାଙ୍କରି ହାତରେ ରହିଛି । ଯେପରି ଆଜି ଯାହା ପରମ ପାପ, ଆଗାମୀ କାଲି ତାହା ପରମ ପୁଣ୍ୟ ହୋଇ ସଭାରେ ଆସି ଆସନ ଗ୍ରହଣ କରିବନି । ତେବେକେ ସେମାନେ ଚଳାଇଯିବେ ଚେଷ୍ଟା । ଭାବିବେ ସେମାନଙ୍କର ହାତରେ ହିଁ ରହିଛି ନିର୍ଭୁଲ ଛାଞ୍ଚ ?

ତା' ବୋଲି କ'ଣ କେଉଁଠି କିଛି ନାହିଁ !

ଅଛି ।

ତେବେକେ କେଉଁଠି କିଛି ରହିଛି ।

ତେବେକେ କେଉଁଠି କିଛି ରହିଥାଏ ।

ରହିଥିବ ।

ଏକାନ୍ତ ତପସ୍ୟା କେବେହେଲେ ଏକାବେଳକେ ବ୍ୟର୍ଥ ହୋଇଯାଏ ନାହିଁ । ସେଥିପାଇଁ ସୁବର୍ଣ୍ଣଲତାର ସଂସାରରେ ଶମ୍ପାମାନଙ୍କର ଆବିଷ୍କାର ସମ୍ଭବ ହୁଏ । ଯେଉଁମାନେ ସର୍ବସ୍ୱ ମୂଲ୍ୟରେ ପ୍ରେମକୁ ପ୍ରତିଷ୍ଠିତ କରି ଜୀବନକୁ ପାଇବାର ଦୁଃସାହସ ରଖନ୍ତି ।

ଅତଏବ ବିରାଟ ଲେଖିକା ଅନାମିକା ଦେବୀ ଏବେ ମଧ୍ୟ କେଉଁ କେଉଁଦିନ, ଯେଉଁଦିନ ଜୀବନର ସବୁକିଛି ନିହାତି ଅର୍ଥହୀନ ଲାଗେ, ଛୋଟ ପିଲା ପରି ରାତ୍ରିର ଆକାଶ ଆଡ଼କୁ ଚାହିଁ ଚାହିଁ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ରକୁ ଖୋଜନ୍ତି, ଆହୁରି ଅଧିକ ଛୋଟ ପିଲାଙ୍କ ପରି ଅସହାୟ ଗଳାରେ କହନ୍ତି– ଦେଖ,

ଯେଉଁ ଲେଖା ଆଗାମୀ କାଲି ହିଁ ପାଣିର ଝୋଟି ପରି ମିଳାଇଯିବ, ସାରା ଜୀବନଯାକ ସେଇ ଲେଖା ହିଁ ଲେଖିଲି,— ଖାଲି ବକୁଳର କଥାଟା ଆଉ ଲେଖା ହେଲାନାହିଁ ।...... ତମର ଆଉ ବକୁଳର କଥା ।

କ'ଣ ଲେଖିବି କହ ? ସେମାନେ ତ ପରାଜୟ ସ୍ୱୀକାର କରି ମରିଛନ୍ତି ପରାଜିତ ହେବାର କଥା କ'ଣ ଲେଖାଯାଏ ? ସେହି ପରାଜୟ ସ୍ୱୀକାର କରିବ ଭିତରେ ଯେଉଁ ପାଇବାଟା, ତାହାର କଥା କହିବାକୁ ଗଲେ ଲୋକେ ହସିବେ କହିବେ, 'ସେମାନେ କି ଅକିଞ୍ଚିତ୍କର ଥିଲେ !' ତା'ହେଲେ ?

ପ୍ରତ୍ୟକ୍ଷରେ ଯେଉଁମାନେ ଜିତିଛନ୍ତି, ଏବେ ତା'ହେଲେ ସେମାନଙ୍କ କଥା ହିଁ ଲେଖିବାକୁ ହେବ ।

ସେଥିପାଇଁ ବର୍ତ୍ତମାନ ଶମ୍ପାର କଥା ହିଁ ଲେଖା ହେଲା । ଯୋଉ ଶମ୍ପା ଖଟି ଖଟି ଶୁଖିଯାଉଥିବା ମୁହଁରେ ମହା ଉତ୍ସାହର ଆଲୋକ ବୋଳିହୋଇ କ... '— ମୋର ନୂଆ ଘର-ସଂସାରକୁ ଦେଖିବାକୁ ଗଲନାହିଁ ପିଉସୀ ? ଯେମି... ସଜାଡ଼ିଛିନା ଦେଖିଲେ ମୋହିତ ହୋଇଯିବ । ଦକ୍ଷିଣର ବାରଣ୍ଡାରେ ବେତ ମୋଢ଼ା ପକାଇ ଦେଇଛି । ଆଉ ତମର ଜାମ୍ବବାନକୁ ତ ପ୍ରାୟ ମଣିଷ କ... ସାରିଲେଣି । ଚକଲଗା ଗାଡ଼ିରେ ହିଁ ଥରେ ସାନମଝିଆ ପିଉସୀ ପାଖକୁ ନେଇଯି... ବୋଲି ଠିକ୍ କରିଛି ।'

———o———

